

# ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତି

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ଢେଙ୍କାନାଳର

# ଐତିହ୍ୟ ଓ ସଂସ୍କୃତି


ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ମାର୍ଥାପୁର ଶାସନ

ଢେଙ୍କାନାଳ



ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

ବିନୋଦ ବିହାରୀ, କଟକ-୨

ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତି

ଲେଖକ :
ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର
ମାର୍ଥାପୁର ଶାସନ, ଢେଙ୍କାନାଳ

ପ୍ରକାଶକ :
ଶ୍ରୀ ଗଙ୍ଗାଧର ତ୍ରିପାଠୀ
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ, କଟକ-୨

ପ୍ରଥମ ସଂସ୍କରଣ : ୨୦୧୨

ପ୍ରଚ୍ଛଦ : ସୁଧାକର ବିଶ୍ୱାଳ

ଅକ୍ଷରସଜ୍ଜା :
ମା' ଶାରଳା ଡି.ଟି.ପି., କଟକ

ମୁଦ୍ରଣ :
ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ.୨୭୦.୦୦

DHENKANALARA
AITIHYA O' SANSKRUTI

**Writer :**
Pandit Antaryami Mishra

**Publisher :**
Sri Gangadhar Tripathy
**Prachi Sahitya Pratisthan**
Binodbehari, Cuttack-2

First Edition : 2012

**Cover Design :**
Sudhakar Biswal

**Laser Typeset :**
Maa Sarala D.T.P., Ctc.

**Printer :**
Sangita Printers, Cuttack

**Price :** Rs.270.00

# ଉତ୍ସର୍ଗ ପତ୍ର

ପରମ ପୂଜନୀୟା ଜନନୀ ସ୍ୱର୍ଗୀୟା ଦୁର୍ଗାବତୀ ମିଶ୍ର

ଓ

ପରମ ପୂଜନୀୟ ଜନକ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ
ତଥା ରାମାୟଣବିତ୍ ସ୍ୱର୍ଗୀୟ ସତ୍ୟବାଦୀ ମିଶ୍ର

ଙ୍କ

ପୁଣ୍ୟ ସ୍ମୃତିରେ ସମର୍ପିତ ।

# ମୁଖବନ୍ଧ

ଓଡ଼ିଶାର ମଧ୍ୟାଞ୍ଚଳରେ ଅବସ୍ଥିତ ଢେଙ୍କାନାଳ ପ୍ରାଚୀନ ଯୁଗରୁ ଐତିହ୍ୟ ଓ ସଂସ୍କୃତି ସଂପନ୍ନ ଭୂଖଣ୍ଡ ରୂପେ ସୁବିଦିତ । ସବୁଜ ବନାନୀ, ଶସ୍ୟଶ୍ୟାମଳା କ୍ଷେତ, ଶୋଭାମୟୀ ପର୍ବତମାଳା, ପୂଣ୍ୟତୋୟା ସ୍ରୋତସ୍ୱିନୀ ତଥା ନଭଶ୍ଚୁମ୍ବୀ ମନ୍ଦିର ପରିଶୋଭିତ ଏହି ଭୂଖଣ୍ଡ ଯୁଗେ ଯୁଗେ ବୀରଭୂମି ରୂପେ ମହିମାମଣ୍ଡିତ । ଶବର ବୀର ଢେଙ୍କା ନାମରେ ନାମିତ ଏହି ପ୍ରାଚୀନ ରାଜ୍ୟ ଦଶାର୍ଣ୍ଣ ପ୍ରଦେଶ, ଝାଡ଼ଖଣ୍ଡ, ଓଡ୍ରବିଷୟ, କୋଦାଳକ ମଣ୍ଡଳ, ଯମଗର୍ତ୍ତ ମଣ୍ଡଳ, କରମଳ ମଣ୍ଡଳ, ଭୀମନଗରୀ ଦଣ୍ଡପାଟ ଓ ଢେଙ୍କାନାଳ ପ୍ରଭୃତି ବହୁ ନାମରେ ଖ୍ୟାତ । ପ୍ରାଚୀନ ଶାସ୍ତ୍ର, ସାହିତ୍ୟ, ଶିଳାଲେଖ, ତାମ୍ରପତ୍ର ଓ ଲୋକକାହାଣୀରେ ଏହାର ଗୌରବ ଗାଥା ଅଙ୍କିତ । ପୂଣ୍ୟ ସଲିଳା ବ୍ରାହ୍ମଣୀ, ସ୍ୱଚ୍ଛନୀରା ରାମିଆଳ, ଖରସ୍ରୋତା ଡଉଁରୀ, ସର୍ପସଦୃଶା ସାପୁଆ, ଧୀରଗାମିନୀ ବଡ଼ଯୋଡ଼ା ପ୍ରଭୃତି ନଦୀ ଏହି ମାଟିକୁ ପୂତ ଓ ପବିତ୍ର କରିଛି । ଶୈଳଶୈବକ୍ଷେତ୍ର କପିଳାସ, ରାମଦାମ ସପ୍ତଶଯ୍ୟା, ମହିମାଧାମ ମହିମାଗାଦୀ, ଅଷ୍ଟଶମ୍ଭୁ ପୀଠ କୁଆଁଲୋ, ନାଗକ୍ଷେତ୍ର ନାଗନା, ପ୍ରାଚୀନ ରାଜଧାନୀ କରମୂଳ, ବିଧ୍ୱଂସ୍ତପ୍ରାୟ ଭୀମନଗରୀ, ସରାଙ୍ଗର ଅନନ୍ତ ଶୟନ ଓ ଢେଙ୍କାନାଳର ଶ୍ରୀ ବଳଦେବଜୀଉ ଏ ମାଟିର ଗର୍ବ ଓ ଗୌରବ । ଏହି ଭୂଖଣ୍ଡରେ ଅନାର୍ଯ୍ୟ, ଶବର, ଆର୍ଯ୍ୟ, ନାଗ, ଶାକ୍ତ, ଶୈବ, ନାଥ, ବୈଷ୍ଣବ, ବୈଦିକ ଓ ମହିମା ସଂସ୍କୃତିର ମହାମିଳନ ସଂଘଟିତ ହୋଇ ମଧ୍ୟଯୁଗରୁ ଏହା ଏକ ସାମରିକ ଶକ୍ତିସମ୍ପନ୍ନ, ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ, ବିଭବଶାଳୀ ତଥା ସଂସ୍କୃତିସଂପନ୍ନ ଭୂଖଣ୍ଡରୂପେ ଖ୍ୟାତି ଲାଭ କରିଥିଲା ।

ପ୍ରସ୍ତର ସଭ୍ୟତା ଯୁଗରୁ ଏହି ଭୂଖଣ୍ଡରେ ମାନବର ସୃଷ୍ଟି ଓ ବିକାଶ ଘଟିଥିଲେ ହେଁ ବୈଦିକ ଯୁଗର ଅନ୍ତିମ କାଳରେ ଓଡ୍ରମାନେ ଏଠାରେ ଅନୁପ୍ରବେଶ କରିଥିଲେ । ସେହି କାରଣରୁ ଗ୍ରୀକ୍ ଲେଖକ ପ୍ଲିନୀ ଏହି ଅଞ୍ଚଳକୁ ଓରେଟସ୍ ଅଞ୍ଚଳ ବା ଓଡ୍ର ଅଞ୍ଚଳ ବୋଲି ଲେଖିଛନ୍ତି । ପ୍ରମାଣିତ ହୁଏ, ଓଡ୍ରମାନେ ବିନ୍ଧ୍ୟାଞ୍ଚଳ ପାର ହେବାପରେ ଓଡ଼ିଶାରେ ଅନୁପ୍ରବେଶ କାଳରେ ବ୍ରାହ୍ମଣୀ ଉପତ୍ୟକାରେ ପ୍ରଥମେ ନିବାସ କରିଥିଲେ । ଇତିହାସରେ ମଧ୍ୟ ଏହି ଅଞ୍ଚଳ ଓଡ୍ରବିଷୟ ନାମରେ ପରିଚିତ । ଏହି ପୁରୋଦୃଷ୍ଟିରେ ବ୍ରାହ୍ମଣୀ ଅବବାହିକାକୁ ''ଆଦି ଓଡ୍ରଭୂମି''

ବୋଲି କୁହାଯାଇଛି । ଓଡ୍ରମାନେ ପ୍ରଥମେ ଯେତେବେଳେ ଏହି ଆଦି ଓଡ୍ରଭୂମିରେ ବସତି ସ୍ଥାପନ କଲେ ସେତେବେଳ ଏହି ଭୂଖଣ୍ଡରେ ଅଠରଜଣ ଖଣ୍ଡଦଳପତି ଶାସନ କରୁଥିଲେ । ପରବର୍ତ୍ତୀ କାଳରେ ପରଜଙ୍ଗ ସନ୍ନିକଟ କୋଦାଳକ ନଗରୀରେ ରାଜତ୍ୱ କରୁଥିବା ଶୁଲ୍‌କୀ ରାଜନ୍ୟବୃନ୍ଦ ସେହି ଅଷ୍ଟାଦଶ ଖଣ୍ଡଦଳପତିଙ୍କୁ ପରାସ୍ତ କରିଥିଲେ ବୋଲି ସେମାନଙ୍କ ପ୍ରଦତ୍ତ ତାମ୍ରଶାସନରେ ଉଲ୍ଲେଖ ରହିଛି । ଶୁଲ୍‌କୀମାନେ ମଧ୍ୟ ଢେଙ୍କାନାଳର ଦକ୍ଷିଣାଞ୍ଚଳ ଅର୍ଥାତ୍ ବର୍ତ୍ତମାନ ଗଢ଼ିଉଠିଥିବା ଢେଙ୍କାନାଳ ସହରାଞ୍ଚଳରେ ରାଜତ୍ୱ କରୁଥିବା ଢେଙ୍କା ଶବରଙ୍କୁ ପରାସ୍ତ କରି ବିକ୍ରମାଦିତ୍ୟ ଉପାଧିରେ ଭୂଷିତ ହୋଇଥିଲେ । ଗୁପ୍ତଯୁଗ ଓ ଏହାର ପରବର୍ତ୍ତୀ କାଳରେ ଢେଙ୍କାନାଳର ମଧ୍ୟାଞ୍ଚଳରେ ନାଗମାନେ ରାଜତ୍ୱ କରୁଥିଲେ । ସେତେବେଳେ ନାଗସଭ୍ୟତା ଓ ସଂସ୍କୃତିର କେନ୍ଦ୍ରସ୍ଥଳ ଥିଲା ନାଗନା ନଗରୀ । ସଂସ୍କୃତିର ଉତ୍ତରଣରେ ନାଗସଂସ୍କୃତି ସହିତ ଶୈବ ସଂସ୍କୃତିର ସମନ୍ୱୟ ଘଟି ନାଗନା ନଗରୀରେ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଅନ୍ତର୍ଭୁକ୍ତ ନାଗନାଥ ପୂଜା ପାଇଲେ । ଭାରତର ଉତ୍ତର-ପଶ୍ଚିମ ଦିଗରେ ତକ୍ଷଶିଳା ନଗରୀ ଯେପରି ତକ୍ଷକ ରାଜାମାନଙ୍କ ରାଜଧାନୀ ତଥା ଶିକ୍ଷାକ୍ଷେତ୍ର ରୂପେ ପ୍ରସିଦ୍ଧି ଲାଭ କରିଥିଲା, ସେହିପରି ପୂର୍ବ-ଦକ୍ଷିଣ ଦିଗରେ ନାଗନା ନଗରୀ ଜ୍ୟୋତିର୍ଲିଙ୍ଗ ଉପାସନା ଓ ମହାକାର୍ତ୍ତିକୀ ତୀର୍ଥର ମାନ୍ୟତା ଲାଭ କରିଥିଲା ।

ସପ୍ତମ-ଅଷ୍ଟମ ଶତାବ୍ଦୀରେ ଯାଜପୁରର ଭୌମ ରାଜନ୍ୟବୃନ୍ଦ ଏହି ଅଞ୍ଚଳ ଅଧିକାର କରି ପଶ୍ଚିମ ସୀମାରେ ଭୌମନଗରୀ ଦୁର୍ଗ ପ୍ରତିଷ୍ଠା କଲେ । କୋଦାଳକ ନଗରୀର ସ୍ତମ୍ଭବଂଶ, କରମୂଳ ନଗରୀର ନାଗବଂଶ, ଯମଗର୍ତ୍ତ ନଗରୀର ତୁଙ୍ଗବଂଶ ଓ ତଳମୂଳ ନଗରୀର ନନ୍ଦବଂଶ ଭୌମକରମାନଙ୍କ ଅଧୀନରେ ମଣ୍ଡଳାଧିପତି ଭାବରେ ଢେଙ୍କାନାଳ ଅଞ୍ଚଳକୁ ଶାସନ କଲେ । ସେହି ସମୟରେ ଉତ୍ତର ଭାରତରୁ ବହୁ ବିଦ୍ୱାନ୍ ବ୍ରାହ୍ମଣ ଆସି ବ୍ରାହ୍ମଣୀ ଅବବାହିକାରେ ନିବାସ କଲେ ବୋଲି ପ୍ରାପ୍ତ ତାମ୍ରଶାସନ ସମୂହରୁ ଉପଲବ୍ଧ ହୋଇଥାଏ । ବ୍ରାହ୍ମଣୀ ଅବବାହିକାର ମାର୍ଥାପୁର ଶାସନ, ମୁଣ୍ଡଇଲେ ଶାସନା, କନ୍ତିଓ ଓ ସାନ୍ଧା ପ୍ରଭୃତି ଗ୍ରାମରେ ଏହି ବ୍ରାହ୍ମଣମାନେ ନିବାସ କରିଥିଲେ । ଭୌମକର ରାଜତ୍ୱ ପରେ ସୋମବଂଶୀମାନେ ଢେଙ୍କାନାଳ ଅଧିକାର କଲେ । ଏହି ବଂଶର ସାମନ୍ତ ରାଜା ଚନ୍ଦ୍ରକେଶରୀ କପିଳାସର ପ୍ରଥମ ଶିବ ମନ୍ଦିର ଓ ଚାନ୍ଦପୁରରେ ହରିହର ମନ୍ଦିର ନିର୍ମାଣ କରିଥିଲେ, ଯାହାକି କାଳର କରାଳଗତିରେ ଭାଙ୍ଗିଯାଇଛି ।

ଦ୍ୱାଦଶ ଶତାବ୍ଦୀରୁ ଗଙ୍ଗମାନେ ଏହି ଅଞ୍ଚଳ ଅଧିକାର କରିବା ସହିତ ଭୌମନଗରୀର ନାମ ଭୀମନଗରୀ ରଖିଲେ । ଗଙ୍ଗବଂଶୀ ତୃତୀୟ ଅନଙ୍ଗଭୀମଦେବ ନାଗନାର ନାଗନାଥ ମନ୍ଦିର ଓ ତଦୀୟ ପୁତ୍ର ପ୍ରଥମ ନରସିଂହଦେବ କପିଳାସର ବର୍ତ୍ତମାନ ଶିବମନ୍ଦିର ନିର୍ମାଣ କରିଛନ୍ତି । ପଞ୍ଚଦଶ ଶତାବ୍ଦୀରେ ସୂର୍ଯ୍ୟବଂଶୀମାନେ ଢେଙ୍କାନାଳରେ ରାଜତ୍ୱ କରିଥିଲେ । ଗଜପତି ପ୍ରତାପରୁଦ୍ରଦେବଙ୍କ ସେନାପତି ହରି ବିଦ୍ୟାଧର ୧୫୩୧ ମସିହାରେ କରମୂଳ ପାଟଣା ରାଜ୍ୟ ସନନ୍ଦ ଲାଭ କଲେ । ସେ ଆପଣାର ବାହୁବଳରେ କ୍ଷୁଦ୍ର ଭୂମ୍ୟାଧିକାରୀମାନଙ୍କୁ ପରାସ୍ତ କରି ଅଭିନବ ଢେଙ୍କାନାଳ ରାଜ୍ୟ ଗଠନ କଲେ ଓ ୧୫୮୧ରେ କରମୂଳରୁ ରାଜଧାନୀ ଢେଙ୍କାନାଳ ଗଡ଼କୁ ଉଠାଇ ଆଣିଲେ । ତାଙ୍କ ବଂଶର ୧୯ଜଣ ରାଜା ସ୍ୱାଧୀନତା ପର୍ଯ୍ୟନ୍ତ ଢେଙ୍କାନାଳରେ ରାଜତ୍ୱ କରିଥିଲେ ।

ଆଦିବାସୀ ସଂସ୍କୃତି ଢେଙ୍କାନାଳର ମୌଳିକ ସଂସ୍କୃତି ହୋଇଥିଲେ ହେଁ ଓଡ୍ରମାନେ ନିବାସ କରିବା ପରେ ଆଦିବାସୀ ସଂସ୍କୃତି ଓ ଆର୍ଯ୍ୟ ସଂସ୍କୃତିର ମହାମିଳନ ଏହି ଭୂଖଣ୍ଡରେ ଘଟିଥିଲା । ତତ୍‌ପରେ ଏହି ମାଟିରେ ଶୈବ ସଂସ୍କୃତିର ବ୍ୟାପକ ପ୍ରସାର ଘଟିଥିଲା । ସପ୍ତମ-ଅଷ୍ଟମ ଶତାବ୍ଦୀରେ ଶୈବ ସଂସ୍କୃତି ସହିତ ଶାକ୍ତ ଓ ବୈଷ୍ଣବ ସଂସ୍କୃତିର ସମନ୍ୱୟାତ୍ମକ ଧାରା ଏହି ମାଟିରେ ପ୍ରବାହିତ ହୋଇଥିଲା । ମଧ୍ୟଯୁଗରୁ ଢେଙ୍କାନାଳରେ ବୈଷ୍ଣବ ସଂସ୍କୃତି ଓ ଭାଗବତ ଧର୍ମର ପ୍ରସାର ଘଟିଲା । ଦେଓଗାଁ ଓ ଢେଙ୍କାନାଳରେ ଶ୍ରୀବଳଦେବଜୀଉଙ୍କ ମନ୍ଦିର ପ୍ରତିଷ୍ଠା ହେବାପରେ ଏହି ମାଟିରେ ଜଗନ୍ନାଥ ସଂସ୍କୃତିର ବ୍ୟାପକ ପ୍ରଚାର ହେଲା । ଗୌରବର କଥା, ଉନବିଂଶ ଶତାବ୍ଦୀରେ ଢେଙ୍କାନାଳରୁ ମହିମାଧର୍ମ ଜନ୍ମନେଇ ଆବିଶ୍ୱ ପ୍ରସାରିତ ହୋଇଥିଲା । ପରିଣାମ ସ୍ୱରୂପ, ଢେଙ୍କାନାଳ ଏକ ସମନ୍ୱୟାତ୍ମକ ସାଂସ୍କୃତିକ ପୀଠ ରୂପେ ପ୍ରସିଦ୍ଧି ଲାଭ କଲା ।

ପ୍ରାଚୀନ କାଳରୁ ଢେଙ୍କାନାଳରେ ଶିକ୍ଷାର ପ୍ରସାର ଘଟିଥିଲା । ଜୟସିଂହଙ୍କ ପ୍ରଦତ୍ତ ତାମ୍ରଶାସନରୁ ଜଣାଯାଏ ବେଦ ଭାଷ୍ୟକାର ସ୍କନ୍ଦ ସ୍ୱାମୀ ଏଠାରେ ନିବାସ କରୁଥିଲେ । ଏତଦ୍‌ଭିନ୍ନ ମହେନ୍ଦ୍ରସ୍ୱାମୀ, ବାମନସ୍ୱାମୀ, ଚିତ୍ର ରଥ, ଜଗଦ୍ଧାର ଭଟ୍ଟ ପ୍ରଭୃତି ଅଗଣିତ ବୈଦିକ ବିଦ୍ୱାନ୍ ଏହି ଭୂଖଣ୍ଡରେ ନିବାସ ପୂର୍ବକ ବୈଦିକ ଶିକ୍ଷାର ପ୍ରସାର ଘଟାଇଥିଲେ । ମଧ୍ୟଯୁଗରେ ଢେଙ୍କାନାଳରେ ସତାଇଶିଗୋଟି ବ୍ରାହ୍ମଣ ଶାସନ ଓ ବତିଶି ଗୋଟି କରବାଡ଼ ପ୍ରତିଷ୍ଠିତ ହୋଇଥିଲା । ଏହି ଶାସନ ଓ

କରବାଡ଼ ସମୂହରେ ଅଣ-ଆନୁଷ୍ଠାନିକ ଶିକ୍ଷା ପ୍ରଚଳନ ଥିଲା । ଊନବିଂଶ ଶତାବ୍ଦୀରେ ଢେଙ୍କାନାଳରେ ଇଂରାଜୀ ଶିକ୍ଷା ପ୍ରଚଳନ ହୋଇଥିଲା । ବ୍ୟାସକବି ଫକୀରମୋହନ ସେନାପତି ସ୍ୱରଚିତ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ଯେ ଗଡ଼ଜାତମାନଙ୍କ ମଧ୍ୟରେ ପ୍ରଥମେ ଢେଙ୍କାନାଳରେ ଇଂରାଜୀ ଶିକ୍ଷା ପ୍ରଚଳନ ହୋଇଥିଲା । ୧୮୬୨ରେ ଢେଙ୍କାନାଳରେ ମଧ୍ୟ ଇଂରାଜୀ ବିଦ୍ୟାଳୟ ସହିତ ଗୋଟିଏ ସଂସ୍କୃତ ଟୋଲ୍ ପ୍ରତିଷ୍ଠିତ ହୋଇଥିଲା । ପରେ ପରେ ଢେଙ୍କାନାଳର ବିଭିନ୍ନ ମୁଖ୍ୟ ଗ୍ରାମ ମାନଙ୍କରେ ପ୍ରାଥମିକ ବିଦ୍ୟାଳୟ ସ୍ଥାପନା ହୋଇ ଆଧୁନିକ ଶିକ୍ଷାର ବିସ୍ତାର ହୋଇଥିଲା । ଗୌରବର କଥା, ୧୮୯୬ ମସିହାରେ ଢେଙ୍କାନାଳର ମଧ୍ୟଇଂରାଜୀ ବିଦ୍ୟାଳୟଟି ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ ହେଲା । ସଂପ୍ରତି ଏହି ଅନୁଷ୍ଠାନ ବ୍ରଜନାଥ ବଡ଼ଜେନା ଉଚ୍ଚ ବିଦ୍ୟାଳୟ ନାମରେ ପରିଚିତ ତଥା ଓଡ଼ିଶାର ଏକ ପ୍ରାଚୀନ ଓ ପ୍ରମୁଖ ଶିକ୍ଷାନୁଷ୍ଠାନ ରୂପେ ମର୍ଯ୍ୟାଦାବନ୍ତ । ସ୍ୱାଧୀନତା ପରେ ଢେଙ୍କାନାଳ ଠାରେ ମହାବିଦ୍ୟାଳୟ ତଥା ପରବର୍ତ୍ତୀ କାଳରେ ଢେଙ୍କାନାଳର କୋଣେ ଅନୁକୋଣେ ବହୁ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି ।

ପ୍ରାଚୀନ କାଳରୁ ଢେଙ୍କାନାଳ ବାଣୀପୀଠ ରୂପେ ମହିମାନ୍ୱିତ । ସପ୍ତମ-ଅଷ୍ଟମ ଓ ନବମ ଶତାବ୍ଦୀରେ ଉତ୍ତର ଭାରତରୁ ବେଦାଧ୍ୟାୟୀ ବ୍ରାହ୍ମଣଗଣ ଏଠାରେ ସ୍ଥାୟୀ ବସବାସ କରି ସାରସ୍ୱତ ଚେତନାର ଉନ୍ମେଷ ଘଟାଇଥିଲ । ସୁପ୍ରସିଦ୍ଧ ବେଦ ଭାଷ୍ୟକାର ସ୍କନ୍ଦସ୍ୱାମୀ ମହାରାଜା ଜୟସିଂହଙ୍କ ଠାରୁ ସନନ୍ଦ ଲାଭ କରି ବ୍ରାହ୍ମଣୀ ତଟରେ ନିବାସ କରିଥିଲେ । ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ କପିଳାସରେ ବିଶ୍ୱପ୍ରସିଦ୍ଧ ଭାଷ୍ୟସମୂହ ରଚନା କରି ସାରସ୍ୱତ ଚେତନାର ବିକାଶ ଘଟାଇଥିଲେ । ନାଥ ସଂପ୍ରଦାୟର ମୁଖ୍ୟ ପୀଠ କପିଳାସରେ ଅଗଣିତ ନାଥଯୋଗୀ ପଦାର୍ପଣ କରି ଏ ମାଟିରେ ନାଥ ସାହିତ୍ୟର ପ୍ରସାର ଘଟାଇଥିଲେ । ମାଟିର ମହାକବି ସାରଳାଦାସ ଓଡ଼ିଆ ମହାଭାରତ ରଚନା କରିବାର ପୂର୍ବରୁ କପିଳାସରେ ବସି ଦାସ କଳଶା ଚଉତିଶା ରଚନା କରିଥିଲେ । ଏତଦ୍‌ଭିନ୍ନ ଭକ୍ତକବି ଦୀନକୃଷ୍ଣ, ରାଜକବି ନୃସିଂହ, ରାଜା କୁଞ୍ଜବିହାରୀ, ବଳରାମ ସାମନ୍ତ, ରାଜା ବ୍ରଜବିହାରୀ, ଶୋକୁନ ପଟ୍ଟନାୟକ, କବି ବ୍ରଜନାଥ ବଡ଼ଜେନା, ମହାରାଜ ଭଗୀରଥ, ବନମାଳୀ ସିଂହ, ଗୋବିନ୍ଦ ଚନ୍ଦ୍ର ମହାପାତ୍ର, ସୁଲକ୍ଷଣା ଦେବୀ, କବି ଦାମୋଦର ପଟ୍ଟନାୟକ, ବୈଷ୍ଣବକବି ପାର୍ବତୀ ଚରଣ, ରାଣୀ କୃଷ୍ଣଚନ୍ଦ୍ର ପ୍ରିୟା, ପଣ୍ଡିତ ବୈଷ୍ଣବ ମହାପାତ୍ର,

ପଣ୍ଡିତ ନଗେନ୍ଦ୍ରନାଥ ମହାପାତ୍ର, ପଣ୍ଡିତ ଚକ୍ରଧର ଦାଶ, ପଣ୍ଡିତ ଗଣେଶ୍ୱର ମିଶ୍ର, ଲୋକନାଥ ରଥ, ପଣ୍ଡିତ ରାମଚନ୍ଦ୍ରନନ୍ଦ, ପଣ୍ଡିତ ବୈଦ୍ୟନାଥ ଦାଶ, ପଣ୍ଡିତ କେଶବଚନ୍ଦ୍ର ମିଶ୍ର, ପଣ୍ଡିତ ବାସୁଦେବ ପଟ୍ଟନାୟକ, ନାଟ୍ୟକାର ଚନ୍ଦ୍ରଶେଖର ପାଣି, ପଣ୍ଡିତ ଗଙ୍ଗାଧର ମିଶ୍ର, କବିଭୂଷଣ ରାଜକିଶୋର ପଟ୍ଟନାୟକ, ପ୍ରଫେସର ଗୋଲକ ବିହାରୀ ଧଳ, କବି ଗୌରହରି ପଣ୍ଡା, କବି ଧନେଶ୍ୱର ପାଣି ଓ ସତ୍ୟବ୍ରତ ମହାନ୍ତି ପ୍ରଭୃତି ଢେଙ୍କାନାଳର ଅଗଣିତ ସ୍ରଷ୍ଟା ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରିଯାଇଛନ୍ତି । ଏମାନଙ୍କ ବ୍ୟତୀତ ଅଗଣିତ ସ୍ରଷ୍ଟା ଯୁଗୋପଯୋଗୀ ସାରସ୍ୱତ ସୃଷ୍ଟି ଦ୍ୱାରା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଯାହା ଏକ ସ୍ୱତନ୍ତ୍ର ଆଲୋଚନା ପ୍ରତୀକ୍ଷା କରିଥାଏ । ସଂପ୍ରତି ଢେଙ୍କାନାଳର ଯେଉଁ ସ୍ରଷ୍ଟାଗଣ ଜାତୀୟ ଓ ରାଜ୍ୟସ୍ତରରେ କୃତୀତ୍ୱ ଅର୍ଜନ କରିଛନ୍ତି ସେମାନେ ହେଲେ ପ୍ରଫେସର ନୃସିଂହଚରଣ ପଣ୍ଡା, ପ୍ରଫେସର ନୃସିଂହ କୁମାର ରଥ, କବି ନୃସିଂହ ତ୍ରିପାଠୀ, କବି ଶ୍ରୀବତ୍ସ ନାୟକ, କବି ହରମୋହନ ଦାସ, ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର, କୃପାସାଗର ସାହୁ, ପ୍ରବାସିନୀ ମହାକୁଡ଼ ତିୱାରୀ ଆନନ୍ଦ ଚନ୍ଦ୍ର ପତି, ଦିଲ୍ଲୀଶ୍ୱର ମହାରଣା, ରଙ୍ଗାଧର ଷଡ଼ଙ୍ଗୀ, ସରୋଜିନୀ ସାହୁ, ଜୟନ୍ତୀ ସାହୁ, ଜ୍ୟୋତିନନ୍ଦ, ତପନ କୁମାର ଶତପଥୀ, ରାଜକିଶୋର ମିଶ୍ର, ବିଜୟ ମହାପାତ୍ର ଓ ପ୍ରଶାନ୍ତ କୁମାର ପଟ୍ଟନାୟକ ପ୍ରଭୃତି । ଏତଦ୍‌ଭିନ୍ନ ବହୁ ଲେଖକ ସାରସ୍ୱତ ସାଧନାରେ ନିମଗ୍ନ ।

ଭାରତର ସ୍ୱାଧୀନତା ସଂଗ୍ରାମକୁ ଢେଙ୍କାନାଳର ଦାନ ଅତୁଳନୀୟ । ବିଶ୍ୱର ସର୍ବକନିଷ୍ଠ ସ୍ୱାଧୀନତା ସଂଗ୍ରାମୀ ବାଜି ରାଉତ ଏ ମାଟିର ଗର୍ବ । ଅନ୍ୟ ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ଗଡ଼ଜାତ ଗାନ୍ଧୀ ସାରଙ୍ଗଧର ଦାସ, ମହେଶ ଚନ୍ଦ୍ର ସୁବାହୁ ସିଂହ, ଆର୍ତ୍ତତ୍ରାଣ ପାତ୍ର, ବେଣୁଧର ପଣ୍ଡା, ଲକ୍ଷ୍ମୀଧର ସାହୁ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର, ମୂକ୍ଷା ମଳିକ, ନରୋତ୍ତମ ଦାସ, ହରମୋହନ ପଟ୍ଟନାୟକ, ବୈଷ୍ଣବ ପଟ୍ଟନାୟକ, ବ୍ରଜ କିଶୋର ଧଳ, ନାଲୁ ମହମଦ, ସତ୍ୟବାଦୀ ମିଶ୍ର, ଅଲେଖ ପ୍ରସାଦ ଦାସ, ମହନ୍ତ ପଧାନ, କୃତ୍ତିବାସ ପଧାନ, ଶ୍ରୀକାନ୍ତ ରାଉତ, କାହ୍ନୁଚରଣ କର, କାହ୍ନୁଚରଣ ପତି ପ୍ରଭୃତିଙ୍କ ଭୂମିକା ଉଲ୍ଲେଖନୀୟ । ସଂଗ୍ରାମୀଙ୍କ ଅତୀତ ଡାକ୍ତର ରାଧାନାଥ ମିଶ୍ର, ବୈଜ୍ଞାନିକ ଡକ୍ଟର ଦାଶରଥି ମିଶ୍ର, ପ୍ରଫେସର ଦୟାନିଧି ପଟ୍ଟନାୟକ, ପ୍ରଶାସକ ବିମଳ କିଶୋର ମିଶ୍ର, ନ୍ୟାୟମୂର୍ତ୍ତି ଜୟକୃଷ୍ଣ ମିଶ୍ର, ନ୍ୟାୟମୂର୍ତ୍ତି ଗତିକୃଷ୍ଣ ମିଶ୍ର, ନ୍ୟାୟମୂର୍ତ୍ତି ଶରତଚନ୍ଦ୍ର ମହାପାତ୍ର, ନ୍ୟାୟମୂର୍ତ୍ତି

ଦେବେନ୍ଦ୍ର ମୋହନ ପଟ୍ଟନାୟକ, ବାବାଜୀ ବଳରାମ ଦାସ, ସାହିତ୍ୟିକ ଅନ୍ନଦା ଶଙ୍କର ରାୟ ପ୍ରଭୃତି ଢେଙ୍କାନାଳର ବରପୁତ୍ର । ଏମାନଙ୍କ ବ୍ୟତୀତ ଶିକ୍ଷ, ସ୍ୱାସ୍ଥ୍ୟ, ପ୍ରଶାସନ, ପ୍ରଯୁକ୍ତି ବିଦ୍ୟା ଚିକିତ୍ସା ବିଜ୍ଞାନ ପ୍ରଭୃତି ବିଭିନ୍ନ କ୍ଷେତ୍ରରେ କୃତୀତ୍ୱ ହାସଲ କରିଥିବା ଢେଙ୍କାନାଳର ଅନେକ ପ୍ରତିଭା ରହିଛନ୍ତି । ଏପରିକି ଆନ୍ତର୍ଜାତୀୟ କ୍ଷେତ୍ରରେ ଢେଙ୍କାନାଳର ଅନେକ ପ୍ରତିଭା ପ୍ରସିଦ୍ଧି ଲାଭ କରିଛନ୍ତି ।

ଢେଙ୍କାନାଳରେ ଅନୁଷ୍ଠିତ ହେଉଥିବା ପର୍ବପର୍ବାଣୀ ମଧ୍ୟରେ ଢେଙ୍କାନାଳର ରଥଯାତ୍ରା ଓ ଲକ୍ଷ୍ମୀପୂଜା, କପିଳାସର ଶିବରାତ୍ରି, ଯୋରନ୍ଦାର ମହିମାମେଳା, ସପ୍ତଶଯ୍ୟାର ଶ୍ରୀରାମ ନବମୀ, ଭୀମନଗରୀର ମକର ମେଳା, ଭୁବନର ଦଶହରା, ମାର୍ଥାପୁରର ଦୋଳଯାତ୍ରା, ଅରଖପାଳର ବାଲିଯାତ୍ରା ଓ ପଣ୍ଡିମେଶ୍ୱରଙ୍କ ରାସଯାତ୍ରା ପ୍ରଭୃତି ବିଶେଷ ଲୋକପ୍ରସିଦ୍ଧି ଲାଭ କରିଛି । ମଧ୍ୟଯୁଗରୁ ଏହି ମାଟିରେ ଓଡ଼ିଶୀ ନୃତ୍ୟ ଓ ସଂଗୀତର ଆଦର ବୃଦ୍ଧି ପାଇଥିଲା । ଊନବିଂଶ ଶତାବ୍ଦୀରେ ଢେଙ୍କାନାଳରେ ଏକ ସ୍ଥାୟୀ ରଙ୍ଗମଞ୍ଚ ନିର୍ମିତ ହୋଇ ନୃତ୍ୟ ସଂଗୀତ ଶିକ୍ଷା ସହିତ ଅନେକ ନାଟକ ମଞ୍ଚସ୍ଥ ହୋଇଥିଲା । ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଢେଙ୍କାନାଳରେ ରାସଦଳ, ଛଉନୃତ୍ୟ ଓ ରାମଲୀଳା ସମଗ୍ର ଓଡ଼ିଶାରେ ସୁଖ୍ୟାତି ଲାଭ କରିଥିଲା । ପ୍ରାଚୀନ କିର୍ତ୍ତୀରାଜିରୁ ଢେଙ୍କାନାଳର ଉଚ୍ଚକୋଟୀର କଳା, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ନିଦର୍ଶନ ମିଳିଥାଏ । ଏଥିରେ ଉତ୍କଳୀୟ ଶିଳ୍ପକଳା ଅନୁସୃତ ହୋଇଥିଲେ ହେଁ ଢେଙ୍କାନାଳର ସ୍ୱାତନ୍ତ୍ର୍ୟ ପ୍ରକଟିତ ହୋଇଛି । ପ୍ରାଚୀନ କାଳରୁ ସମନ୍ୱୟାତ୍ମକ ସାଂସ୍କୃତିକ ଭାବଧାରାରେ ପ୍ଲାବିତ ଢେଙ୍କାନାଳ ସଂପ୍ରତି ଏକବିଂଶ ଶତାବ୍ଦୀର ଦ୍ୱାରଦେଶରେ ଉପଗତ । ଶିକ୍ଷା, ସଂସ୍କୃତି, ସାହିତ୍ୟ, କଳା ପ୍ରତ୍ୟେକ କ୍ଷେତ୍ରରେ ଢେଙ୍କାନାଳ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଛି । ଯୁଗେ ଯୁଗେ ଏହି ପ୍ରାଚୀନ ଭୂଖଣ୍ଡ ସାଧୁ, ସନ୍ଥ, ଜ୍ଞାନୀ, ଗୁଣୀଙ୍କ ନିବାସସ୍ଥଳୀ ଭାବରେ ପ୍ରସିଦ୍ଧି ଲାଭ କରିଛି । ଏ ସଂପର୍କରେ ଢେଙ୍କାନାଳରେ ଗୋଟିଏ ପ୍ରସିଦ୍ଧ ଲୋକୋକ୍ତି ରହିଛି ।

ଗୌରବୋଜ୍ଜ୍ୱଳ ଢେଙ୍କାନାଳ,
ଜ୍ଞାନୀଗୁଣୀଙ୍କ ବାସ ସ୍ଥଳ ।
ଅନେକ ଜନ୍ମତପ ଫଳେ,
ଜନ୍ମ ଲଭିବ ଢେଙ୍କାନାଳେ ।

ଢେଙ୍କାନାଳର ବିପୁଳ ଐତିହାସିକ ବିଭବ, ଗୌରବୋଜ୍ଜ୍ୱଳ ସାଂସ୍କୃତିକ ଧାରା, ଉଚ୍ଚକୋଟୀର ଶିଳ୍ପନୈପୁଣ୍ୟ, ଉଚ୍ଚାଙ୍ଗ ସାହିତ୍ୟ ଓ ସୃଜନଶୀଳ ପରଂପରା

ସଂପର୍କରେ ଆଦୌ ଗବେଷଣା ହୋଇନାହିଁ । ଅନେକ ବ୍ୟକ୍ତି କିମ୍ଭୂତ କିମାକାର କାଳ୍ପନିକ କାହାଣୀ ସଂଯୋଜିତ କରି ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତିକୁ ବିକୃତ କରିଛନ୍ତି । ଉଦାହରଣ ସ୍ୱରୂପ, କପିଳାସ ମନ୍ଦିର ପ୍ରଥମ ନରସିଂହ ଦେବ ନିର୍ମାଣ କରିଛନ୍ତି ବୋଲି ପାଠସ୍ଥିତ ଦଧିନଉତି ଶିଳାଲେଖରେ ଉଲ୍ଲେଖ ଥିଲେହେଁ କେତେକ ଏହାକୁ ଗଜପତି ପ୍ରତାପରୁଦ୍ରଦେବ ନିର୍ମାଣ କରିଛନ୍ତି ବୋଲି ଉଲ୍ଲେଖ କରିଛନ୍ତି । ଏପରିକି ଡକ୍ଟର ହରେକୃଷ୍ଣ ମହତାବ, ଡକ୍ଟର ଦୀନେଶଚନ୍ଦ୍ର ସରକାର ଓ ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ପ୍ରଭୃତି ଲବ୍ଧପ୍ରତିଷ୍ଠ ଗବେଷକ ଦଧିନଉତି ଶିଳାଲେଖ ଅଧ୍ୟୟନ ପୂର୍ବକ କପିଳାସ ମନ୍ଦିର ପ୍ରଥମ ନରସିଂହଦେବ ନିର୍ମାଣ କରିଥିବା ନିର୍ଣ୍ଣୟ କରିଥିବା ସ୍ଥଳେ ରାଜସ୍ୱ ବିଭାଗ ଆନୁକୂଲ୍ୟରେ ତଥା ସ୍ୱର୍ଗୀୟ ନୀଳମଣି ସେନାପତି ଓ ଶ୍ରୀଯୁକ୍ତ ପ୍ରେମାନନ୍ଦ ତ୍ରିପାଠୀଙ୍କ ସଂପାଦକୀୟରେ ପ୍ରକାଶିତ ଢେଙ୍କାନାଳ ଗେଜେଟିୟରେ ଏହି ମନ୍ଦିରର ନିର୍ମାଣକର୍ତ୍ତା ଭାବରେ ତୃତୀୟ ନରସିଂହଦେବଙ୍କ ନାମ ଉଲ୍ଲେଖ ରହିଛି । ସେହିପରି କୁଆଁଲୋଠାରେ ରାଜତ୍ୱ କରୁଥିବା ସ୍ତମ୍ଭବଂଶୀୟ ରାଜା କୁଳସ୍ତମ୍ଭ ନବମ ଶତାବ୍ଦୀରେ ଢେଙ୍କା ଶବରକୁ ପରାସ୍ତ କରି ବିକ୍ରମାଦିତ୍ୟ ଉପାଧିରେ ଭୂଷିତ ହୋଇଥିଲେ ହେଁ କେହି କେହି ଷୋଡ଼ଶ ଶତାବ୍ଦୀରେ ବେଶାଳିଆର ଭଞ୍ଜସାମନ୍ତ ଶ୍ରୀଧର ଭଞ୍ଜ ଢେଙ୍କା ଶବରକୁ ନିହତ କରିବା ଉଲ୍ଲେଖ କରିଛନ୍ତି । ବିଶ୍ୱ ପ୍ରସିଦ୍ଧ ଭାଗବତ ଭାଷ୍ୟକାର ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀଙ୍କର କପିଳାସସ୍ଥିତ ସମାଧି ମନ୍ଦିରକୁ କେହି ଗଜପତି ପ୍ରତାପରୁଦ୍ରଙ୍କର ବୋଲି ଚିତ୍ରଣ କରିଛନ୍ତି । ଢେଙ୍କାନାଳର ରାଜବଂଶ ଇତିହାସ ଲେଖିବାକୁ ଯାଇ ଅନେକ ଭୁଲ ତଥ୍ୟ ପରିବେଷଣ କରିଛନ୍ତି । ଦୁଃଖର ବିଷୟ, ଢେଙ୍କାନାଳ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟରେ ଥିବା ୱେବ ସାଇଟ୍ (N.I.C.)ରେ ମହାରାଜା ଭଗୀରଥଙ୍କ ପରେ ପୀତାମ୍ବର ଦେବଙ୍କ ନାମ ରହିଛି, ଯାହା ସଂପୂର୍ଣ୍ଣ ଭ୍ରମାତ୍ମକ । ଢେଙ୍କାନାଳ ଅଞ୍ଚଳରୁ ପ୍ରାପ୍ତ ଶିଳାଲେଖ, ତାମ୍ରପତ୍ର ଓ ପ୍ରାଚୀନମୁଦ୍ରା ସଂପର୍କରେ ଅଦ୍ୟାବଧି ବିଧିବଦ୍ଧ ଗବେଷଣା ହୋଇନାହିଁ । ବିଡ଼ମ୍ବନା ହେଉଛି, ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତି ସମ୍ବନ୍ଧରେ ଅନେକ କିଛି ନଜାଣି ବହୁତ ଲେଖିବାକୁ ଚେଷ୍ଟା କରୁଛନ୍ତି । ବିଭିନ୍ନ ପତ୍ରପତ୍ରିକା ଓ ସ୍ମରଣିକାରେ କେତେକ ଲେଖକ ଭୁଲ ତଥ୍ୟ ସମ୍ବଳିତ ଆଲେଖ୍ୟ ପ୍ରକାଶ କରୁଛନ୍ତି । ଭାରତର କନିଷ୍ଠତମ ସହୀଦ ବାଜିରାଉତ ସମେତ ଅନ୍ୟ ସହୀଦ ମାନଙ୍କର ଶବ ଶଗଡ଼ରେ କଟକ ଯାଇଥିଲେ ହେଁ କେହି ଡଙ୍ଗାରେ ବା ମାଲଗାଡ଼ିରେ ଯିବା କଥା ଲେଖିଛନ୍ତି ।

ନିକଟରେ ଜିଲା ସଂସ୍କୃତି ପରିଷଦ ଆନୁକୂଲ୍ୟରେ ପ୍ରକାଶିତ ସ୍ମରଣିକାରେ ଖୋଦ୍ ସଂସ୍କୃତି ଅଧିକାରୀ ଢେଙ୍କାନାଳର ପ୍ରଥମ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ଲେଖକ ପ୍ରଫେସର ଗୋଲକ ବିହାରୀ ଧଳଙ୍କ ନାମ ନଲେଖି ଅନ୍ୟ ଜଣକ ନାମ ଲେଖିଥିଲେ । ଏତାଦୃଶ ଅନେକ ଉଦାହରଣ ରହିଛି ।

ଇତିହାସ ହିଁ ଜାତିର ସମଷ୍ଟିଗତ ସ୍ମୃତି । ଗୌରବୋଜ୍ଜ୍ୱଳ ଐତିହ୍ୟର ସ୍ମୃତିଚାରଣ ହିଁ ସଭ୍ୟତାର ପରିମାପକ । ଇତିହାସରୁ ଜାତିର ସାମଗ୍ରିକ ପ୍ରଗତିର ଧାରା ଉପଲବ୍ଧ ହୋଇଥାଏ । ଯେଉଁ ଜାତି ଆପଣାର ପୂର୍ବ ଐତିହ୍ୟରେ ଉଦ୍‌ବୁଦ୍ଧ ଓ ଉଲ୍ଲସିତ ହୋଇ ଅଗ୍ରସର ହୋଇଥାଏ ସେହି ଜାତିର ଜାତୀୟ ଜୀବନ ଉନ୍ନତ ଓ ଜାତୀୟ ପ୍ରଗତି ତ୍ୱରାନ୍ୱିତ ହୋଇଥାଏ । ସଂସ୍କୃତି ଜୀବନକୁ ସରସ, ସୁନ୍ଦର, ସମୃଦ୍ଧ, ସୁସଂହତ ଓ ସୃଶୃଙ୍ଖଳିତ କରିଥାଏ । ସଂସ୍କୃତି ହେଉଛି ମୌଳିକ ମୂଲ୍ୟବୋଧ ଅନପ୍ରେରିତ ବୈଶିଷ୍ଟ୍ୟପୂର୍ଣ୍ଣ ଜୀବନପନ୍ଥା, ଯେଉଁଥିରେ ଗୋଟିଏ ଜାତି ଜୀବନଧାରଣ କରେ । ଏହା କଳା, ଧର୍ମ, ସାହିତ୍ୟ, ସାମାଜିକ ଅନୁଷ୍ଠାନ ଓ ବ୍ୟବହାର ମାଧ୍ୟମରେ ପ୍ରକାଶିତ ମୂଲ୍ୟବୋଧର ସାମଗ୍ରିକତା, ମିଳିତ ଅନୁରୋଧରେ ଅନୁପ୍ରେରିତ ବ୍ୟକ୍ତି ଓ ଜନତାର କ୍ରିୟାକଳାପ । ଏହି ଗୁରୁତ୍ୱପୂର୍ଣ୍ଣ କଥାକୁ ଆଖି ଆଗରେ ରଖି ମୁଁ ''ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତି'' ସଂପର୍କରେ ସ୍ୱତନ୍ତ୍ର ପୁସ୍ତକଟିଏ ରଚନା କରିବାକୁ ମନସ୍ଥ କଲି । ତତ୍‌ପୂର୍ବରୁ ମୁଁ କପିଳାସ ସଂପର୍କରେ ଗବେଷଣାତ୍ମକ ଗ୍ରନ୍ଥଟିଏ ରଚନା କରିଥିଲି । ପ୍ରଭୁ ଶ୍ରୀ ଶ୍ରୀ ଚନ୍ଦ୍ରଶେଖରଙ୍କ କରୁଣାରୁ ଗ୍ରନ୍ଥଟି ଭାରତ ସରକାରଙ୍କ ସୂଚନା ଓ ପ୍ରସାରଣ ମନ୍ତ୍ରଣାଳୟର ପ୍ରକାଶନ ବିଭାଗ ଦ୍ୱାରା ପ୍ରକାଶିତ ହୋଇ ବିଶେଷ ପାଠକୀୟ ଆଦୃତି ଲାଭ କରିଥିଲା, ଯାହା ମୋତେ ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତି ସଂପର୍କୀୟ ପୁସ୍ତକ ରଚନା କରିବାକୁ ଅନୁପ୍ରେରିତ କରିଥିଲା । ଦୀର୍ଘ ଚାରିଦଶନ୍ଧି ଧରି ସମାଜ, ପ୍ରଜାତନ୍ତ୍ର, ସମ୍ବାଦ, ଖବର, ସମୟ, ରାଷ୍ଟ୍ରଦୀପ, ଝଙ୍କାର, ପ୍ରଜାତନ୍ତ୍ର-ପ୍ରତିଭା, ସହକାର, ସହଯୋଗୀ, ସପ୍ତର୍ଷି ଓ ଉତ୍କଳ ପ୍ରସଙ୍ଗ ପ୍ରଭୃତି ପତ୍ରପତ୍ରିକାରେ ମୁଁ ଢେଙ୍କାନାଳ ସଂପର୍କରେ ଅନେକ ପ୍ରବନ୍ଧ ଲେଖି ଅଗଣିତ ପାଠକଙ୍କର ଶ୍ରଦ୍ଧା, ସ୍ନେହ ଓ ସମ୍ମାନ ଲାଭ କରିଛି । ଅନେକ ପାଠକ ମଧ୍ୟ ଢେଙ୍କାନାଳ ସଂପର୍କରେ ଖଣ୍ଡିଏ ସ୍ୱତନ୍ତ୍ର ପୁସ୍ତକ ଲେଖିବାକୁ ମୋତେ ଅନୁରୋଧ କରିଥିଲେ ।

ଶ୍ରୀ ଶ୍ରୀ ବଳଦେବଜୀଉଙ୍କ କୃପା ଉପରେ ଭରସା ରଖି ଢେଙ୍କାନାଳର ଗୌରବୋଜ୍ଜ୍ୱଳ ଇତିହାସ ଓ ସମନ୍ୱୟାତ୍ମକ ସଂସ୍କୃତି ସଂପର୍କରେ ତଥ୍ୟ ସଂଗ୍ରହରେ ମନଦେଲି । ପ୍ରାଥମିକ ଅବସ୍ଥାରେ ମୋତେ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା । କାରଣ, ମୁଁ ସ୍ୱାଧୀନ ଭାବରେ ଯାତାୟତ କ୍ଷମ ନୁହେଁ ଏବଂ କୌଣସି ସ୍ଥାନ ବା ବ୍ୟକ୍ତିବିଶେଷଙ୍କ ନିକଟକୁ ଯିବାକୁ ହେଲେ ମୋର ମୋଟରକାର ଭଡ଼ା କରିବା ସହିତ ଜଣେ ସହାୟକଙ୍କୁ ସାଥୀରେ ନେଇ ଯିବାକୁ ପଡୁଥିଲା । ଯାହା ଥିଲା ବ୍ୟୟବହୁଳ । ସୀମିତ ଆୟ ଭିତରେ ସକଳ କାର୍ଯ୍ୟ ସଂପନ୍ନ କରିବା ଏକ ରକମ ଅସମ୍ଭବ ହୋଇ ପଡୁଥିଲା । ଏଥି ନିମିତ୍ତ ଯେଉଁ ଉଦାର ବ୍ୟକ୍ତି ବିଶେଷ ସାହାଯ୍ୟ ଦେବେ ବୋଲି କହିଥିଲେ ସେମାନେ ନିରାଶ କଲେ । ତଥାପି ମୋ ଲକ୍ଷ୍ୟରୁ ମୁଁ ବିଚ୍ୟୁତ ହେଲିନାହିଁ । କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ନିମିତ୍ତ ଇଚ୍ଛା ଥିଲେ ହେଁ ନିଜସ୍ୱ ପାଠାଗାର, ଗବେଷଣା ଗୃହ, ଆଲୋଚନା କକ୍ଷ, ପ୍ରଭୃତି ନଥିବାରୁ କାର୍ଯ୍ୟରେ ବିଶେଷ ଅଗ୍ରଗତି କରିପାରିଲି ନାହିଁ । ଏ ଦିଗରେ ମୋ ନିମିତ୍ତ ସବୁଠୁ ବଡ଼ ଅସୁବିଧା ଥିଲା ମୋର ଖଣ୍ଡିଏ ବାସଗୃହ ନଥିଲା, ଏପରିକି ବସି ଲେଖିବାକୁ କୋଠରୀଟିଏ ନଥିଲା । କେବଳ ମୋ ଜନ୍ମମାଟିର ଇତିହାସ ଓ ସଂସ୍କୃତିକୁ ମୁଁ ଆଲୋକିତ କରିବି, ଏହାହିଁ ଥିଲା ମୋ ନିମିତ୍ତ ଆଶ୍ୱାସନା । ଢେଙ୍କାନାଳ ଜିଲା ଅଭିଲେଖାଗାରେ, ଦେବୋତ୍ତର କାର୍ଯ୍ୟାଳୟ, ବିଭିନ୍ନ ମଠ ମନ୍ଦିର, କଟକ ରାଜସ୍ୱ ପର୍ଷଦ, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ରାଜ୍ୟ ଅଭିଲେଖାଗାରେ, ହରେକୃଷ୍ଣ ରାଜ୍ୟ ପାଠାଗାର, କେଦାରନାଥ ଗବେଷଣା ପରିଷଦ, କଲିକତା ସଂଗ୍ରହାଳୟ, ଜାତୀୟ ପାଠାଗାର, ପାଟନା ସଂଗ୍ରହାଳୟ, ନାଗପୁର ସଂଗ୍ରହାଳୟ ପ୍ରଭୃତିରୁ ଅନେକ ତଥ୍ୟ ସଂଗ୍ରହ କଲି । ତଥ୍ୟ ନିମିତ୍ତ ଅନେକ ସ୍ଥାନରୁ ମଧ୍ୟ ନିରାଶ ହେବାକୁ ପଡ଼ିଲା ।

ପରିଶେଷରେ ବାଗ୍‌ଦେବୀଙ୍କ କରୁଣାରୁ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା ପ୍ରକାଶିତ ମାସିକ ପତ୍ରିକା ''ପ୍ରଜାତନ୍ତ୍ର ପ୍ରତିଭା''ରେ ଦୀର୍ଘ ପାଞ୍ଚବର୍ଷ ଧରି ଧାରାବାହିକ ଭାବରେ ''ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତି'' ସ୍ତମ୍ଭ ପ୍ରକାଶ କଲି । ଏ ଦିଗରେ ସ୍ୱର୍ଗୀୟ ଗୋରାଚାନ୍ଦ ମିଶ୍ର, ଡକ୍ଟର ଗୋବିନ୍ଦଚନ୍ଦ୍ର ଚାନ୍ଦ, ଚିତ୍ତରଞ୍ଜନ ଚିରଞ୍ଜୀବ୍ ଓ ସୁରେଶ କୁମାର ପ୍ରଧାନ ମୋତେ ବହୁ ସାହାଯ୍ୟ କରିଛନ୍ତି । ଧାରାବାହିକ ପ୍ରକାଶନ ହେବାପରେ ବହୁ ପାଠକଙ୍କ ଠାରୁ ଅନେକ ଫୋନ୍ ଓ ଚିଠି ପାଇଲି । ତନ୍ମଧ୍ୟରୁ ଅନେକ ଚିଠି ଆଜି ସୁଦ୍ଧା ମୁଁ ସାଇତି ରଖିଛି । ଅନେକ ପାଠକ ମଧ୍ୟ ଆଲେଖ୍ୟ ସମୂହକୁ ଏକତ୍ର କରି ସ୍ୱତନ୍ତ୍ର ପୁସ୍ତକଟିଏ ପ୍ରକାଶ

କରିବାକୁ ଅନୁରୋଧ କରିଥିଲେ । ଧାରାବାହିକର ଆଲେଖ୍ୟ ସମୂହ ''ପ୍ରାଚୀନ ଢେଙ୍କାନାଳ'' ଠାରୁ ଆରମ୍ଭ ହୋଇ :''ଗଡ଼ଜାତ ମିଶ୍ରଣରେ ଢେଙ୍କାନାଳ'' ପର୍ଯ୍ୟନ୍ତ ପ୍ରକାଶିତ ହୋଇଥିଲା ତଥା ଢେଙ୍କାନାଳର ସଂସ୍କୃତି ସଂପର୍କରେ କେତୋଟି ଆଲେଖ୍ୟ ମୁଁ ପରିବେଷଣ କରିଥିଲି । ସେହି ସବୁ ଆଲେଖ୍ୟର ଏକତ୍ର ସଙ୍କଳନ ବର୍ତ୍ତମାନ ''ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତି'' ପୁସ୍ତକାକାରରେ ପ୍ରକାଶିତ ହେବାକୁ ଯାଉଛି । କଟକ ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନର ସତ୍ୱାଧିକାରୀ ଶ୍ରୀଯୁକ୍ତ ଗଙ୍ଗାଧର ତ୍ରିପାଠୀ ତଥା ତାଙ୍କର ଦୁଇ ସୁପୁତ୍ର ଶ୍ରଦ୍ଧେୟ ଶକ୍ତି ଓ ଶ୍ରଦ୍ଧେୟ ବିଭୁ ବହୁ ପରିଶ୍ରମ ଓ ଅର୍ଥବ୍ୟୟ କରି ସଙ୍କଳନଟିକୁ ପ୍ରକାଶ କରୁଛନ୍ତି । ସଙ୍କଳନଟି ଅଗଣିତ ପାଠକଙ୍କ ମଧ୍ୟରେ ଢେଙ୍କାନାଳର ଗୌରବମୟ ଇତିହାସ ଓ ସମନ୍ୱୟାତ୍ମକ ସାଂସ୍କୃତିକ ଧାରାର ସମୃଦ୍ଧ ଓ ସୃଜନଶୀଳ ପରଂପରାକୁ ଅକ୍ଷୁର୍ଣ୍ଣ ରଖି ଚିନ୍ତା ଓ ଚେତନାର ବୌଦ୍ଧିକ ଉତ୍କର୍ଷ ସାଧନ ପୂର୍ବକ ଭାବାତ୍ମକ ଐକ୍ୟର ଗୌରବବୋଧ ଜାଗ୍ରତ କରିପାରିଲେ କୃତାର୍ଥ ହେବି ।। ଇତି ।

ବିଦୁଷାଂ ଅନୁଚରଃ
ଶ୍ରୀ ଶ୍ରୀ ଗୁରୁଚରଣାଶ୍ରିତ
ଅନ୍ତର୍ଯ୍ୟାମୀ ମିଶ୍ର

ମହାବିଷୁବ ସଂକ୍ରାନ୍ତି, ୨୦୧୧
ମାର୍ଥାପୁର ଶାସନ, ଢେଙ୍କାନାଳ

# ସୂଚୀପତ୍ର

# ଢେଙ୍କାନାଳ ଐତିହ୍ୟ ଓ ସଂସ୍କୃତି

## ଚିତ୍ରସୂଚୀ

୨୧. ଅଶ୍ୱଖୋଲାର ନୈସର୍ଗିକ ଶୋଭା ।

୨୨. ଅଶ୍ୱଖୋଲାର ଦେବୀ ମନ୍ଦିର ।

୨୩. ଶ୍ରୀ ସିଦ୍ଧଗଣେଶ, ଗଣେଶ ଖୋଲା, କରମୂଳ ।

୨୪. ଶ୍ରୀ ଦୌଡ଼େଶ୍ୱର, କରମୂଳ ।

୨୫. ଶ୍ରୀ ବାଲୁଙ୍କେଶ୍ୱର, ମାର୍ଥାପୁର ଶାସନ ।

୨୬. କପିଳାସ ମନ୍ଦିର ।

୨୭. ଶ୍ରୀ ବିଶ୍ୱନାଥ ମନ୍ଦିର, କପିଳାସ ।

୨୮. ଶ୍ରୀ ନାରାୟଣ ମନ୍ଦିର, କପିଳାସ ।

୨୯. ଦତ୍ତାତ୍ରେୟ ସାଇ ଆଶ୍ରମ, କପିଳାସ ।

୩୦. ମହିମା ତପୋବନ, କାଦୁଆ ।

୩୧. ଯୋରନ୍ଦା ମହିମାଗାଦୀ ।

୩୨. ଯୋରନ୍ଦା ସୁନାଛତ୍ରୀ ଓ ରୂପାଛତ୍ରୀ ।

୩୩. ଶ୍ରୀ ନାଗନାଥେଶ୍ୱର ମନ୍ଦିର, ନାଗନା ।

୩୪. ଶ୍ରୀ ଅନ୍ନକୋଟୀଶ୍ୱର, ଲତାଦେଇପୁର ।

୩୫. କୁଆଁଲୋ ଅଷ୍ଟଶମ୍ଭୁ ମନ୍ଦିର ।

୩୬. ଶ୍ରୀ ଦଶଭୂଜା କନକେଶ୍ୱରୀ, କୁଆଁଲୋ ।

୩୭. ଅନନ୍ତ ଶୟନ, ସରାଙ୍ଗ ।

୩୮. ଶ୍ରୀ ଶଙ୍କରେଶ୍ୱର ମନ୍ଦିର, ଶଙ୍କରପୁର ।

୩୯. ଭୀମନଗରୀ ରାମଚଣ୍ଡୀ ।

୪୦. ହରିହର ମୂର୍ତ୍ତି, ରାମଚଣ୍ଡୀ ପୀଠ ।

୪୧. ଦଶଖମ୍ଭ ମଣ୍ଡପ, ଚିତଳପୁର ।

୪୨. ହିନ୍ଦୋଳ ରାଜ ପ୍ରାସାଦ ।

୪୩. ଶ୍ରୀ ଉଗ୍ରେଶ୍ୱର, ଚିତଳପୁର ।

୪୪. ଶ୍ରୀ କୁମ୍ଭେଶ୍ୱର, ଦେଓପଡ଼ା ।

୪୫. ଶ୍ରୀ ହରପାର୍ବତୀ, କୁମ୍ଭେଶ୍ୱର ମନ୍ଦିର ।

୪୬. ଶ୍ରୀ ଶଙ୍ଖଚକ୍ରଧାରୀ ବିଷ୍ଣୁ, କୁମ୍ଭେଶ୍ୱର ମନ୍ଦିର ।

୪୭. ମଙ୍ଗଳା ଠାକୁରାଣୀ, ତେନ୍ତୁଳିଆ ପଡ଼ା ।

୪୮. ପ୍ରାଚୀନ ପଶ୍ଚିମେଶ୍ୱର ମନ୍ଦିର, ଗଙ୍ଗାଧର ପ୍ରସାଦ ।

୪୯. ଶ୍ରୀ ପଶ୍ଚିମେଶ୍ୱର, ଗଙ୍ଗାଧର ପ୍ରସାଦ ।

୫୦. ଜୀବନ ଖୋଲ ଯଜ୍ଞ ମଣ୍ଡପ ।

୫୧. ଶ୍ରୀ ବୃଦ୍ଧେଶ୍ୱର, ଭୁବନ ।

୫୨. ସହୀଦ ସ୍ମୃତି ସ୍ତମ୍ଭ, ନୀଳକଣ୍ଠପୁର ।

୫୩. ଶ୍ରୀ ପତିତ ପାବନଜୀଉ, ଗଡ଼ପରଜଙ୍ଗ ।

୫୪. ଶ୍ରୀ ରାମେଶ୍ୱର, ତେନ୍ତୁଳି ସିଂହା ।

୫୫. ଶ୍ରୀ କନକେଶ୍ୱର, ଏକଘରିଆ ।



# ପ୍ରାଚୀନ ଢେଙ୍କାନାଳ

ସବୁଜ ବନାନୀ, ଶସ୍ୟଶ୍ୟାମଳା ଭୂଖଣ୍ଡ, ପ୍ରାକୃତିକ ଶୋଭାମୟୀ ପର୍ବତ, ପୂଣ୍ୟତୋୟା, ସ୍ରୋତସ୍ୱିନୀ ତଥା ନଭଶ୍ଚୁମ୍ବୀ ମନ୍ଦିର ପରିଶୋଭିତ ଢେଙ୍କନାଳ ବହୁ ପ୍ରାଚୀନ କାଳରୁ ଐତିହ୍ୟ, ସଂସ୍କୃତି ଓ ଗୌରବ ବିମଣ୍ଡିତ ବୀରଭୂମି ରୂପେ ମହିମାନ୍ୱିତ । ଶବର ବୀର ଢେଙ୍କା ନାମରେ ନାମିତ ଏହି ବୀରଭୂମିରେ ଅନାର୍ଯ୍ୟ, ଆର୍ଯ୍ୟ, ଶୈବ, ବୈଷ୍ଣବ, ଶାକ୍ତ, ମହିମା ଓ ବୌଦ୍ଧ ସଂସ୍କୃତିର ମହାମିଳନ ସଂଘଟିତ ହୋଇ ପ୍ରାଚୀନ ଶାସ୍ତ୍ର, ସାହିତ୍ୟ, ଶିଳାଲେଖ, ତାମ୍ରପତ୍ର ଓ ଲୋକ କାହାଣୀରେ ଏହାର ଗୌରବ ଗାଥା ଅଙ୍କିତ । ମଧ୍ୟଯୁଗୀୟ ପ୍ରଶାସନିକ ଅଭିଲେଖରେ ଏହା ସଭ୍ୟ ଓ ସମୃଦ୍ଧ ରାଜ୍ୟ ରୂପେ ଚିତ୍ରିତ । ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ ଏହି ଭୂଖଣ୍ଡ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଛି । ଏହି ଅଭିଜାତ ସୌନ୍ଦର୍ଯ୍ୟ ଓ ବୌଦ୍ଧିକ ସୁଗନ୍ଧଭରା ଭୂଖଣ୍ଡର ସାରସ୍ୱତ ଔଜ୍ଜଲ୍ୟ ଓଡ଼ିଆବାଣୀ ଭଣ୍ଡାରକୁ ଦୀପ୍ତିମନ୍ତ କରିଛି । ଓଡ଼ିଶାର ମଧ୍ୟାଞ୍ଚଳରେ ଅବସ୍ଥିତ ଢେଙ୍କାନାଳର ଭାଷା, ସାହିତ୍ୟ, ନୃତ୍ୟ, ସଂଗୀତ, ଶିଳ୍ପ, ଭାସ୍କର୍ଯ୍ୟ, କଳା ଓ ସ୍ଥାପତ୍ୟରେ ସ୍ୱାତନ୍ତ୍ର୍ୟ ଓ ସୌରଭ ବିଦ୍ୟମାନ ।

ଏହି ପ୍ରାଚୀନ ଭୂଖଣ୍ଡ ପ୍ରାରମ୍ଭରୁ ଢେଙ୍କାନାଳ ନାମରେ ପରଚିତ ନଥିଲା । ଗବେଷକଙ୍କ ମତରେ ଢେଙ୍କାନାଳ୍, ଅନୁଗୁଳ, ତାଳଚେର ଓ ପାଲଲହଡ଼ା ପ୍ରଭୃତି ଅଞ୍ଚଳ ପ୍ରାଚୀନ ଓଡ଼ିଶାର ପଶ୍ଚିମାଞ୍ଚଳ ଥିଲା । ବ୍ରାହ୍ମଣୀ ନଦୀ ଦ୍ୱାରା ଏହି ଅଞ୍ଚଳ ଦୁଇ ଭାଗରେ ବିଭକ୍ତ ହୋଇଥିବାରୁ ଏହାକୁ ଉତ୍ତର ବ୍ରାହ୍ମଣୀୟ ଓ ଦକ୍ଷିଣ ବ୍ରାହ୍ମଣୀୟ ଏହି ଦୁଇ ଭାଗରେ ବିଭକ୍ତ କରାଯାଇଥିଲା । ବ୍ରାହ୍ମଣୀ ଉପତ୍ୟକାରୁ ଆବିଷ୍କୃତ ପ୍ରଚୁର ପରିମାଣର ପ୍ରସ୍ତର ଉପକରଣ ସେ ଅଞ୍ଚଳରେ ଆଦି ମାନବର ସୃଷ୍ଟି ଓ ବସତି ସ୍ଥାପନ ସଂପର୍କରେ ସୂଚନା ପ୍ରଦାନ କରିଥାଏ । ଏହାର ଅଧିକାଂଶ ଅଞ୍ଚଳ ପ୍ରାଚୀନ କାଳରେ ଘନ ଜଙ୍ଗଲ ଓ ଦୀର୍ଘ ପର୍ବତମାଳାରେ ପରିପୂର୍ଣ୍ଣ ଥିଲା । ମାଲ୍ୟଗିରି, ବାହାଡ଼ାପାଳ ପର୍ବତ, ରଞ୍ଜାଗଡ଼, ସୁନ୍ଦରାଖୋଲ, କପିଳାସ, ସପ୍ତଶଯ୍ୟା, ଅନନ୍ତପୁର, ଉଦୟଗିରି, ନିମିନ୍ଧା, ଦଲାର, ଅଶ୍ୱଖୋଲା ଓ ବାରିଫୁଲଝରୀ ପ୍ରଭୃତି ଗିରିଶୃଙ୍ଗ ତଥା ବ୍ରାହ୍ମଣୀ, ରାମିଆଳ, ଡମଶାଳ, ସୁଆଗୀ, ଡଉଁରୀ, ସମାକୋଇ, ମାଙ୍କଡ଼ା ପ୍ରଭୃତି ନଦୀ ସମୂହ ଏହାର ଗର୍ବ ଓ ଗୌରବ ।

ଏହି ବିସ୍ତୀର୍ଣ୍ଣାଞ୍ଚଳର ଭୂଗର୍ଭରେ ପ୍ରଚୁର ପରିମାଣରେ ଗ୍ରାନାଇଟ୍, ଖାଣ୍ଡେଶଲାଇଟ୍, ଲୌହପଥର , କୋଇଲା, କ୍ରୋମାଇଟ୍, ଗ୍ରାଫାଇଟ୍, ଚୂନ ପଥର, ଅଭ୍ର, ମାଙ୍ଗାନିଜ୍ ଓ ଚିନାମାଟି ବିଦ୍ୟମାନ । ଏହାର ବନାଞ୍ଚଳରେ ଘନ ଶାଳ ବୃକ୍ଷ ରାଜି ସାଙ୍ଗକୁ ଅସନ, ଅଁଳା, ବାହାଡ଼ା, ଗମ୍ଭାରୀ, ହରିଡ଼ା, ଜାମୁ, କେନ୍ଦୁ, କୁମ୍ଭୀ, କୁସୁମ, ପିଆଶାଳ, ଶିଶୁ, ସୁନାରୀ, କଙ୍ଗଡ଼ା, ରାଇ ଓ ବିଭିନ୍ନ କିସମର ବାଉଁଶ ପରିଦୃଷ୍ଟ ।

ଭୂତତ୍ତ୍ୱବିତ୍‌ଙ୍କ ମତରେ ଏହି ଅଞ୍ଚଳ ଗଣ୍ଡଓ୍ୱାନା ଲାଣ୍ଡର ଅଂଶବିଶେଷ ଥିଲା । ପ୍ରାଚୀନକାଳରୁ ଏହି ଅଞ୍ଚଳରେ ବିଭିନ୍ନ ଆଦି ଜନଜାତି ବାସ କରୁଥିଲେ ହେଁ ଗଣ୍ଡମାନଙ୍କ ପ୍ରାଧାନ୍ୟ ରହିଥିଲା । ଆଦିମ ଅଧିବାସୀଙ୍କ ମଧ୍ୟରେ ଜୁଆଙ୍ଗ, ପାତୁଆ, କୋହ୍ଲ, ମଲାର, ଭୂମିଜ, ସାନ୍ତାଳ ପ୍ରଭୃତି ବାସ କରୁଥିଲେ । ତନ୍ମଧ୍ୟରୁ ଗଣ୍ଡମାନେ ଦଳପତି ବୋଲାଇ ବିଭିନ୍ନ ଅଞ୍ଚଳର ଅଧିପତି ହୋଇଥିଲେ । ପରବର୍ତ୍ତୀ ରାଜନ୍ୟବୃନ୍ଦଙ୍କ ପ୍ରଦତ୍ତ ତାମ୍ର ଶାସନରେ ''ସକଳ ଗୋନ୍ଦମାଧିପତି'' ଉଲ୍ଲିଖିତ ହୋଇଥିବାରୁ ଏହାର ସତ୍ୟତା ପ୍ରତିପାଦନ ହୋଇଥାଏ । ଅର୍ଥାତ୍ ପରବର୍ତ୍ତୀକାଳରେ ଆର୍ଯ୍ୟ ନୃପତି ବୃନ୍ଦ ଏହି ଗଣ୍ଡ ଦଳପତିମାନଙ୍କୁ ପରାସ୍ତ କରି ଏହି ଅଞ୍ଚଳ ଅଧିକାର କରିବା ସହିତ ଆପଣାରୁ ସକଳ ଗୋନ୍ଦମାଧିପତି ଭାବରେ ଉଦ୍‌ଘୋଷଣା କରିଥିଲେ । ଏ ପର୍ଯ୍ୟନ୍ତ ଗଣ୍ଡମାନେ ଆପଣାକୁ ରାଜ ବଂଶଧର ଭାବେ ପରିଚିତ କରାଇଥାନ୍ତି । ବ୍ରାହ୍ମଣୀ ନଦୀର ଉତ୍ତର ପାର୍ଶ୍ୱରେ ଗଣ୍ଡମାନେ ବହୁ ପରିମାଣରେ ବାସ କରୁଅଛନ୍ତି । ବ୍ରାହ୍ମଣୀର ଦକ୍ଷିଣାଞ୍ଚଳ ଶବର ଅଧ୍ୟୁଷିତ ଓ ପୂର୍ବ ଦକ୍ଷିଣାଞ୍ଚଳ ଡମ ଅଧ୍ୟୁଷିତ ଥିଲା । ବ୍ରାହ୍ମଣୀ ନଦୀର ଅବଦାନ ଏହି ଭୂଖଣ୍ଡକୁ ଅତୁଳନୀୟ । ଏହି ନଦୀ ପଥରେ ହିଁ ଆଦିମ ଅଧ୍ୟୁଷିତ ବିଶାଳ ଭୂଖଣ୍ଡକୁ ଆର୍ଯ୍ୟ ସଂସ୍କୃତିର ଅନୁପ୍ରବେଶ ଘଟି ଏକ ଉନ୍ନତ ସଂସ୍କୃତି ଓ ସଭ୍ୟତାର ବିକାଶ ଘଟିଥିଲା । ଏହି ଅନୁପ୍ରବେଶର ସଠିକ୍ କାଳ ନିର୍ଣ୍ଣୟ ହୋଇ ପାରିନଥିଲେ ହେଁ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଏଠାରେ ମୌର୍ଯ୍ୟଶାସନ ଅବ୍ୟାହତ ରହିବା ହୃଦ୍‌ବୋଧ ହୋଇଛି । ପରବର୍ତ୍ତୀ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଏହି ଅଞ୍ଚଳ ଖାରବେଳଙ୍କ ସାମ୍ରାଜ୍ୟର ଅଂଶ ବିଶେଷ ଥିଲା । ଗ୍ରୀକ୍ ଲେଖକ ପ୍ଲୀନୀ ଉଲ୍ଲେଖ କରିଛନ୍ତି ଯେ ଓରେଟ୍‌ସ ଅଞ୍ଚଳ ସ୍ଥିତ ମେଲିୟସ୍ ପର୍ବତ ସନ୍ନିକଟରେ ସୁଆରିସ୍ ଓ ମୋନେଡ଼୍‌ସ ଜାତିର ଆଦିମ ଅଧିବାସୀମାନେ ବାସ କରୁଥିଲେ । ତାଙ୍କ ବର୍ଣ୍ଣିତ ମେଲିୟସ୍ ପର୍ବତ ହେଉଛି ପାଲଲହଡ଼ାର ମାଲ୍ୟଗିରି ଏବଂ ସୁଆରିସ୍ ହେଉଛନ୍ତି ଶବର ତଥା ମୋନେଡ଼ସ ହେଉଛନ୍ତି ମୁଣ୍ଡା । ଗ୍ରୀକ୍ ଭାଷାରେ ଓରେଟ୍‌ସ ଅର୍ଥ

ଓଡ୍ର । ଏଥିରୁ ହୃଦ୍‌ବୋଧ ହୁଏ, ଢେଙ୍କାନାଳ ଅଞ୍ଚଳ ପ୍ରଥମ ଶତାବ୍ଦୀ ସମୟରୁ ଓଡ୍ର ଦେଶ ଭାବେ ଖ୍ୟାତି ଲାଭ କରିଥିଲା । ପ୍ଲିନୀଙ୍କ ପରେ ଦ୍ୱିତୀୟ ଶତାବ୍ଦୀରେ ଟଲେମୀ ଭାରତର ଏକ ବିସ୍ତୃତ ଭୌଗୋଳିକ ବିବରଣରେ ପୂର୍ବ ମହୋଦଧି (ବଙ୍ଗୋପସାଗର) କୂଳରେ ପ୍ରସିଦ୍ଧି ଲାଭ କରିଥିବା ଦଶାର୍ଣ୍ଣ ବନ୍ଦରର ନାମ ଉଲ୍ଲେଖ କରିଛନ୍ତି । ଏହି ଦଶାର୍ଣ୍ଣ ବନ୍ଦର ହେଉଛି ବର୍ତ୍ତମାନର ଧାମରା । ଅନୁଭୂତ ହୁଏ, ଦଶାର୍ଣ୍ଣ ବନ୍ଦରଠାରୁ ବ୍ରାହ୍ମଣୀ ନଦୀ ସଂଯୋଗରେ ଢେଙ୍କନାଳ ଅଞ୍ଚଳରେ ସଭ୍ୟତାର ଅନୁପ୍ରବେଶ ଘଟିଥିଲା, ଯାହାକି ବୈଦେଶିକଙ୍କ ବିବରଣୀରେ ସୁସ୍ପଷ୍ଟ । ଗୌରବର କଥା, ସେହି ସମୟରୁ ଓଡ୍ର ଏକ ସ୍ୱତନ୍ତ୍ର ଜାତି ତଥା ସେମାନଙ୍କର ଭୂଖଣ୍ଡ ଓଡ୍ର ଦେଶ ରୂପେ ଖ୍ୟାତି ଲାଭ କରି କଳିଙ୍ଗ ଠାରୁ ଭିନ୍ନ ଥିଲା । ଅତଏବ, ବ୍ରାହ୍ମଣୀ ଅବବାହିକାରେ ଖ୍ରୀ:ପୂ: କାଳରୁ ଓଡ୍ର ସଭ୍ୟତାର ଉନ୍ମେଷ ଘଟି ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀ ସମୟକୁ ଏହା ଆନ୍ତର୍ଜାତୀୟ ଖ୍ୟାତି ଲାଭ କରିଥିଲା ।

ପୁରାଣ ପ୍ରସିଦ୍ଧ ବ୍ରାହ୍ମଣୀ ନଦୀ ଢେଙ୍କାନାଳ ଅଞ୍ଚଳରେ ପ୍ରବାହିତ ହୋଇ ଏହି ଭୂଖଣ୍ଡକୁ ପୂତ ଓ ପବିତ୍ର କରିଛି । ପୁରାଣ, ଶାସ୍ତ୍ର, ଓ ଅଭିଲେଖରେ ଏହି ପୂଣ୍ୟ ସଲିଳା ନଦୀ ବ୍ରାହ୍ମୀ, ବ୍ରାହ୍ମଣୀ, ଦଶାର୍ଣ୍ଣ, ଶଙ୍ଖଜ୍ୟୋତି ପ୍ରଭୃତି ବହୁ ନାମରେ ଖ୍ୟାତ । ଓଡ଼ିଶାର ଏହା ଦ୍ୱିତୀୟ ବୃହତ୍ତମ ନଦୀ ଏବଂ ଓଡ଼ିଶାର ଧର୍ମ, ଦର୍ଶନ, ସଂସ୍କୃତି, ସଭ୍ୟତା ଓ ପରମ୍ପରାକୁ ଏହାର ଦାନ ଅତୁଳନୀୟ । ବିନ୍ଧ୍ୟ ପର୍ବତମାଳାର ପୂର୍ବ ଦକ୍ଷିଣ କୋଣସ୍ଥ ଛୋଟନାଗପୁର ମାଳଭୂମି ଅନ୍ତର୍ଗତ ହଜାରିବାଗ ପର୍ବତ ଶ୍ରେଣୀରୁ ଶଙ୍ଖ ଓ ଜ୍ୟୋତି ନାମକ ଦୁଇଗୋଟି ଜଳଧାରା ପ୍ରବାହିତ ହୋଇ ପାନପୋଷ ଠାରେ ମିଳିତ ହେବାପରେ ଶଙ୍ଖଜ୍ୟୋତି ଏବଂ ପରେ ବ୍ରାହ୍ମୀ ବା ବ୍ରାହ୍ମଣୀ ନାମରେ ପୂର୍ବ ମହୋଦଧିରେ ମିଳିତ ହୋଇଛି । ଏହି ପୂଣ୍ୟତୋୟା ନଦୀ ଢେଙ୍କାନାଳର ମଧ୍ୟ ଭାଗରେ ପ୍ରବାହିତ । ଏହାରି ଅବବାହିକାରେ ଢେଙ୍କାନାଳର ପ୍ରାଚୀନ ଦୁର୍ଗ, ଜନପଦ, ମନ୍ଦିର, ମୂର୍ତ୍ତି ପ୍ରଭୃତି ଅବସ୍ଥିତ । ପ୍ରାଚୀନ ଶାସ୍ତ୍ରରେ ବ୍ରାହ୍ମଣୀକୁ ପୂଣ୍ୟତୋୟା, ପୂଣ୍ୟସଲୀଳା, ପାପନାଶିନୀ, ନବଧାଗଙ୍ଗା, ବ୍ରହ୍ମାତନୟା ଉଲ୍ଲେଖ କରାଯାଇ ଗଙ୍ଗାର ଅନ୍ୟତମ ଧାରାର ମାନ୍ୟତା ପ୍ରଦାନ କରାଯାଇଛି ।

ଆଦ୍ୟା ଗୋଦାବରୀ ଗଙ୍ଗା ଦ୍ୱିତୀୟା ଚ ପୁନଃ ପୁନା
ତୃତୀୟା କଥିତା ରେବା ଚତୁର୍ଥୀ ଜାହ୍ନବୀ ସ୍ମୃତା ।

କାବେରୀ, ଗୋମତୀ, କୃଷ୍ଣା, ବ୍ରାହ୍ମୀ, ବୈତରଣୀ ତଥା
ବିଷ୍ଣୁ ପାଦାଗ୍ର ସମ୍ଭୂତା ନବଧା ଭୂମି ସଂସ୍ଥିତା ।

ବ୍ରାହ୍ମଣୀ ଅବବାହିକାରେ ବିକ୍ରମଖୋଲ ଶିଳା ଲିପିରୁ ଖ୍ରୀ:ପୂ: ୨୦୦୦ ପୂର୍ବରୁ ଏହି ନଦୀ କୂଳରେ ଉନ୍ନତ ସଭ୍ୟତାର ବିକାଶ ଘଟିଥିଲା ବୋଲି ପ୍ରମାଣିତ ହୁଏ । ଏଣୁ ନିଃସନ୍ଦେହରେ କୁହାଯାଇପାରେ, ଢେଙ୍କାନାଳ ଅଞ୍ଚଳରେ ଖ୍ରୀ:ପୂ: କାଳରୁ ଉନ୍ନତ ସଭ୍ୟତାର ପରିପ୍ରକାଶ ଘଟି ପରବର୍ତ୍ତୀ କାଳରେ ଏକ ସ୍ୱତନ୍ତ୍ର ଉଡ୍ର ସଭ୍ୟତା ଭାବରେ ତାହା ଆତ୍ମ ପ୍ରକାଶ କରିଥିଲା ।

ଖ୍ରୀଷ୍ଟ ପରକାଳରେ ଢେଙ୍କାନାଳ ଅଞ୍ଚଳଟି ସାତବାହାନ ବଂଶୀୟ ରାଜା ଗୌତମୀ ପୁତ୍ର ସାତକର୍ଣ୍ଣୀଙ୍କ ସାମ୍ରାଜ୍ୟ ଭୁକ୍ତ ଥିଲା । ବଶିଷ୍ଠ ପୁତ୍ର ପୁଲୁମାଭିଙ୍କ ନାସିକ ଗୁମ୍ଫା ଭିଲେଖରୁ ଜଣାଯାଏ ମହେନ୍ଦ୍ର ଓ ମଳୟ ପର୍ବତ ତାଙ୍କ ସାମ୍ରାଜ୍ୟରେ ଅବସ୍ଥିତ ଥିଲା । ଏହି ମଳୟ ପର୍ବତ ହିଁ ବ୍ରାହ୍ମଣୀ ଅବବାହିକା ମାଲ୍ୟଗିରି । ପ୍ରମାଣିତ ହୁଏ ଦ୍ୱିତୀୟ ଶତାବ୍ଦୀରେ ଢେଙ୍କାନାଳ ସାତକର୍ଣ୍ଣୀ ସାମ୍ରାଜ୍ୟର ଅଂଶ ବିଶେଷ ଥିଲା । ସେ ସମୟର କୌଣସି ମୁଦ୍ରା ବା ଅଭିଲେଖ ଏପର୍ଯ୍ୟନ୍ତ ମିଳି ନଥିବାରୁ ତତ୍‌କାଳୀନ ସାମାଜିକ ଓ ରାଜନୈତିକ ତଥ୍ୟ ଅନୁପଲବ୍ଧ । ଅନୁମିତ ହୁଏ, ସେହି ସମୟରେ ବ୍ରାହ୍ମଣୀ ଉପକୂଳରେ ଉନ୍ନତ ସଭ୍ୟତାର ବିକାଶ ଘଟିଥିଲେ ହେଁ ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳ ଆଦିମ ଅଧିବାସୀଙ୍କ ଅଧିକାରରେ ଥିଲା । ଉତ୍ତରାଞ୍ଚଳରେ ଗୋଟିଏ ଗୋଟିଏ ଅଞ୍ଚଳରୁ ଭିନ୍ନ ଭିନ୍ନ ଗଣ୍ଡଦଳପତି ଏବଂ ଦକ୍ଷିଣାଞ୍ଚଳରେ ଅନେକ ଶବର ଦଳପତି କ୍ଷୁଦ୍ର କ୍ଷୁଦ୍ର ଅଂଶରେ ରାଜତ୍ୱ କରୁଥିଲେ । ଗୁପ୍ତ ଯୁଗୀୟ କୌଣସି ପ୍ରତୀକ ଏହି ଅଞ୍ଚଳରୁ ମିଳିନାହିଁ ବା ସମୁଦ୍ରଗୁପ୍ତ ଏହି ପଥରେ ଅଭିଯାନ କରିନଥିଲେ । ଅତଏବ, ଏହି ଅଞ୍ଚଳ ଗୁପ୍ତ ସାମ୍ରାଜ୍ୟଭୁକ୍ତ ନଥିଲା । ସେହି ସମୟରେ ସମଗ୍ର ଅଞ୍ଚଳଟି କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବିଭକ୍ତ ହୋଇ ବିଭିନ୍ନ ଭୂମ୍ୟାଧିକାରୀଙ୍କ ଅଧୀନରେ ଥିବା ହୃଦ୍‌ବୋଧ ହୁଏ । ଏହି ସମୟରେ ଢେଙ୍କାନାଳର ଗଣ୍ଡ, ଡମ (ଗୋଦରା) ଓ ଶବର ଦଳପତି ବୃନ୍ଦ ଧନୁ, ବର୍ଚ୍ଛା ଓ ମଲ୍ଲ ଯୁଦ୍ଧରେ ପାରଙ୍ଗମ ଥାଇ ନିଜ ଅଞ୍ଚଳର ସୁରକ୍ଷା କରୁଥିଲେ । ପ୍ରତ୍ୟେକ ଦଳପତିଙ୍କର ସୁଶିକ୍ଷିତ ସୈନ୍ୟବାହିନୀ ଥିଲେ । ଅଦ୍ୟାବଧି ସେମାନଙ୍କର ବଂଶଧର ବୃନ୍ଦ ଆପଣାକୁ ରାଜବଂଶଜ ପରିଚୟ ଦେବା ସହିତ ତତ୍‌କାଳୀନ ସାମରିକ କୌଶଳ ପ୍ରଦର୍ଶନ କରୁଅଛନ୍ତି । ଓଡ଼ିଶାର ଏହି ଆଦିବାସୀ ସାମରିକ ସଂସ୍କୃତି ବିଷୟରେ ଅଧିକ ଅନୁସନ୍ଧାନ ହୋଇନାହିଁ । ତତ୍‌କାଳୀନ ପ୍ରତ୍ନତାତ୍ତ୍ୱିକ

ଅବଶେଷ ନ ମିଳିଥିଲେ ହେଁ ଢେଙ୍କାନାଳର ବିରାଶାଳ, ଢୋଲପଶି, କଙ୍କଡ଼ା ସୋହଡ଼ା, ଶିବୁଲା, ରଞ୍ଜାଗଡ଼, ଦଲାର, ମଠ ତେନ୍ତୁଳିଆ, ସିଂହାରୀ ଖୋଲା ପ୍ରଭୃତି ସ୍ଥାନମାନଙ୍କରେ ଏହି ଆଦିବାସୀ ଦଳପତିଙ୍କ ରାଜଧାନୀର ଭଗ୍ନାବଶେଷ ଦୃଷ୍ଟିଗୋଚର ହୋଇଥାଏ ।

ଢେ଼ଙ୍କାନାଳର ପ୍ରାଚୀନ ଦଳପତିମାନଙ୍କ ମଧ୍ୟରେ ଗଣ୍ଡମାନେ ପ୍ରଧାନ । ଆଚାର ବିଚାରରେ ଅନ୍ୟାନ୍ୟ ଆଦିମ ଅଧିବାସୀଙ୍କଠାରୁ ଗଣ୍ଡମାନେ ଉନ୍ନତ । ଉଲ୍ଲେଖଯୋଗ୍ୟ ଯେ, ଏମାନେ ରାଜବଂଶୀୟ ପରିଚୟ ଦେଇ ଖଣ୍ଡାୟତଙ୍କ ସଦୃଶ ବିବାହ ପରେ ର ପଇତା ପକାଇଥାନ୍ତି ଗଣ୍ଡମାନଙ୍କ ଭାଷା ଓଡ଼ିଆ ତଥା ଏମାନେ ହିନ୍ଦୁ ଦେବାଦେବୀଙ୍କୁ ବିଶ୍ୱାସ କରନ୍ତି । ଆଦିମ ଯୁଗରୁ କୃଷି ଓ ମୃଗୟା ଏମାନଙ୍କର ପ୍ରଧାନ ଜୀବିକା । ବର୍ତ୍ତମାନ ମଧ୍ୟ ଅନେକ ଗଣ୍ଡଙ୍କର ପ୍ରଚୁର ଭୂସମ୍ପତ୍ତି ରହିଅଛି । ଏଥିରୁ ସେମାନଙ୍କର ପ୍ରାଚୀନ ଆଭିଜାତ୍ୟ ଅନୁମେୟ । ଢେଙ୍କାନାଳର ଉତ୍ତରାଞ୍ଚଳରେ ଗଣ୍ଡମାନେ ରାଜତ୍ୱ କରୁଥିବର ପ୍ରମାଣ ମିଳେ । ''ସିଂହ'' ସଂଜ୍ଞାଧାରୀ ଏହି ଗଣ୍ଡ ରାଜାମାନେ ପ୍ରବଳ ପରାକ୍ରମୀ ଥିଲେ । ଧନୁ ଓ ବର୍ଚ୍ଛା ଯୁଦ୍ଧରେ ସେମାନ ପାରଙ୍ଗମ ଥିଲେ । ଢେଙ୍କାନାଳର ବିଭିନ୍ନ ଅଞ୍ଚଳରୁ ଶୁକ୍ଳୀ ରାଜା ଓ ଜୟସିଂହଙ୍କ ତାମ୍ରଶାସନ ଲେଖରୁ ହୃଦ୍‌ବୋଧ ହୁଏ ସେମାନେ ଗଣ୍ଡରାଜାମାନଙ୍କୁ ଅଧୀନସ୍ଥ କରି 'ସକଳ ଗୋନ୍ଦମାଧିପତି' ବୋଲାଇଥିଲେ । ଏଥିରୁ ପ୍ରମାଣିତ ହେଉଛି ପ୍ରାଚୀନ କାଳରୁ ସପ୍ତମ-ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ଗଣ୍ଡମାନେ ଢେଙ୍କାନାଳର ଉତ୍ତରାଞ୍ଚଳରେ ନିରବଚ୍ଛିନ୍ନ ଶାସନ କରିଥିଲେ ଏବଂ ସପ୍ତମ-ଅଷ୍ଟମ ଶତାବ୍ଦୀଠାରୁ ଶୁକ୍ଳୀବଂଶୀ ସ୍ତମ୍ଭ ତଥା 'ଯମଗର୍ତ୍ତମଣ୍ଡଳାଧିପତି' ଜୟ ସିଂହଙ୍କ ଅଧୀନସ୍ଥ ହେଲେ । ଗଣ୍ଡମାନଙ୍କ ସଂପର୍କରେ ଅଧିକ ଗବେଷଣା ହୋଇ ନଥିଲେ ହେଁ ବର୍ତ୍ତମାନ ବ୍ରାହ୍ମଣୀର ଉତ୍ତରାଞ୍ଚଳ ବିରାଶାଳ, ଢୋଲପଶି, କଙ୍କଡ଼ା ସୋହଡ଼ା, କଣ୍ଟାପାଳ, କଙ୍କଡାହାଡ଼, ପଥରଗଡ଼, କରଡ଼ାଖମଣ, କୀର୍ତ୍ତନପୁର, ଆଖୁପାଳ, କନ୍ଦରା, ମାଣ୍ଡିଆପଡ଼ା, ଡଙ୍ଗାପାଳ, ନାଗେଶ୍ୱର, ଡୋଲିଆ, ତଣ୍ଡୀମୁଣ୍ଡା ଓ ଟାଙ୍ଗରାପଡ଼ା ପ୍ରଭୃତି ଗ୍ରାମମାନଙ୍କରେ ବହୁଳ ପରିମାଣରେ ଗଣ୍ଡ ବାସ କରୁଥିବାରୁ ବିଶ୍ୱାସ କରାଯାଏ, ଢେଙ୍କାନାଳର ଉତ୍ତରାଞ୍ଚଳ ଗଣ୍ଡଦଳପତିଙ୍କ ଶାସନରେ ସୁରକ୍ଷିତ ଥିଲା ।

ବ୍ରାହ୍ମଣୀର ଦକ୍ଷିଣାଞ୍ଚଳ ପୂର୍ବ ଓ ଦକ୍ଷିଣ ଦୁଇ ଭାଗରେ ବିଭକ୍ତ ଥିଲା । ପୂର୍ବାଞ୍ଚଳରେ ତମ ରାଜାମାନେ ରାଜତ୍ୱ କରୁଥିଲେ । ଏ ଅବଧି, ଗଁଦିଆର ପୂର୍ବ

ଦିଗରେ ଜଙ୍ଗଲ ମଧ୍ୟରେ ''ଡମରାଜାକଟକ'' ରହିଅଛି । ବୋଧହୁଏ, ଏହି ପ୍ରାଚୀନ ସ୍ଥାନ ଡମରାଜାମାନଙ୍କ ରାଜଧାନୀ ଥିଲା । ଗଡ଼ର ଭଗ୍ନାବଶେଷରୁ ଉପଲବ୍ଧି ହୁଏ, ଡମମାନେ ଦୁର୍ଦ୍ଧର୍ଷ, ଯୁଦ୍ଧ ପ୍ରିୟ ଓ ଶକ୍ତିଶାଳୀ ଭୂମ୍ୟାଧିକାରୀ ଥିଲେ । ସେମାନେ ଥିଲେ ଢେଙ୍କାନାଳର ପୂର୍ବାଞ୍ଚଳର ରକ୍ଷକ । ବର୍ତ୍ତମାନ ମଧ୍ୟ ଏହି ଡମମାନଙ୍କ ବଂଶଧର 'ଗୋଦରା' ନାମ ଧରି ମଠ ତେନ୍ତୁଳିଆ, ପାଳଗାଣ୍ଡୁଆ, ଓଡ଼ସିଂହା ପ୍ରଭୃତି ଗ୍ରାମମାନଙ୍କରେ ବାସ କରୁଅଛନ୍ତି । ଅନୁମିତ ହୁଏ, ଏମାନଙ୍କର ପୂର୍ବଜ ବୃନ୍ଦ ଢେଙ୍କାନାଳର ପୂର୍ବାଞ୍ଚଳରେ ଆଧିପତ୍ୟ ବିସ୍ତାର କରୁଥିଲେ । ଏମାନେ ଡମ ବା ଗୋଦରା ହେଲେ ହେଁ ଆଚରଣରେ ଉନ୍ନତ । ଜାତିର ଡମ ହେଲେ ହେଁ ଏମାନେ ଅମେଧ ଭକ୍ଷଣ କରନ୍ତି ନାହିଁ । ହିନ୍ଦୁ ଆଚାର ବିଚାରରେ ରହି ଏମାନେ ଓଡ଼ିଆରେ କଥାବାର୍ତ୍ତା କରନ୍ତି । ଐତିହାସିକଙ୍କ ମତରେ ଏହି ଡମ ବା ଗୋଦରା ଜାତି ଦ୍ରାବିଡ଼ ଜାତିର ଏକ ଶାଖା ଏବଂ ଓଡ଼ିଶାର ପାର୍ବତ୍ୟାଞ୍ଚଳରେ ଏମାନେ ପ୍ରାଚୀନକାଳରୁ ରାଜତ୍ୱ କରୁଥିଲେ । ଗୋଦରାମାନେ ମଧ୍ୟ ଆପଣାରୁ ରାଜବଂଶୀୟ ବୋଲି ପରିଚୟ ଦେଇଥାଆନ୍ତି । ପରବର୍ତ୍ତୀକାଳରେ ଷୋଡଶ ଶତାବ୍ଦୀରେ ଢେଙ୍କାନାଳ ରାଜା ମୁଣ୍ଡମାରୀ ଯୁଦ୍ଧରେ ଗୋଦରାମାନଙ୍କୁ ପରାସ୍ତ କରିଥିଲେ । ଅତଏବ, ପ୍ରାଚୀନ ଯୁଗରୁ ମଧ୍ୟଯୁଗ ପର୍ଯ୍ୟନ୍ତ ଡମ ବା ଗୋଦରାମାନେ ଢେଙ୍କାନାଳର ପୂର୍ବାଞ୍ଚଳରେ ରାଜତ୍ୱ କରୁଥିଲେ ।

ଢେଙ୍କାନାଳର ଦକ୍ଷିଣାଞ୍ଚଳରେ ପ୍ରାଚୀନ କାଳରୁ ଶବରମାନେ ରାଜତ୍ୱ କରୁଥିଲେ । ବର୍ତ୍ତମାନ ଏହି ଶବରମାନଙ୍କ ରାଜ୍ୟର କେନ୍ଦ୍ରସ୍ଥଳ 'ଢେଙ୍କା ପୀଢ଼ରେ ଢେଙ୍କାନାଳ ସହର ଗଢ଼ି ଉଠିଛି । ପାଣିଓହଳା ପର୍ବତର ପାର୍ବତ୍ୟ ଉପତ୍ୟକାରେ ପରବର୍ତ୍ତୀକାଳରେ ଢେଙ୍କାନାଳର ରାଜପ୍ରସାଦ ନିର୍ମିତ । ଏହାର ଅନତି ଦୂରରେ, ବର୍ତ୍ତମାନର ଜିଲ୍ଲାପାଳଙ୍କ ବାସଭବନ ସମ୍ମୁଖରେ ଶବରମାନଙ୍କ ଦ୍ୱାରା ନିର୍ମିତ ଜଳାଶୟ ଗୋଡ଼ି ପୋଖରୀ ନାମ ଧରି ଶବର ସଭ୍ୟତାର ସାକ୍ଷୀ ରୂପେ ବିଦ୍ୟମାନ । ଏହି ଗୋଡ଼ି ପୋଖରୀରେ ପୂର୍ବ ହୁଡ଼ାରେ ଶବର ଆରାଧିତା ଦେବୀ ଜେନାଦେଇ ବିରାଜିତା । ପ୍ରାଚୀନ କାଳରୁ ଏଠାରେ ଶବରପଲ୍ଲୀ ଥିବା ବିଶ୍ୱାସ କରାଯାଏ । ଏହି ଶବର ପଲ୍ଲୀଗୁଡ଼ିକ ହେଉଛି– ଢେଙ୍କାନାଳୀ, ଗୁଡ଼ିଆନାଳୀ, କଣ୍ଟାନାଳୀ, ଦୁଧିଆନାଳୀ, ଗୁଣ୍ଡିଚାନାଳୀ, ମଥୁରାନାଳୀ ଓ ଚାରନାଳୀ । ତନ୍ମଧ୍ୟରୁ 'ଢେଙ୍କାନାଳୀ' ଥିଲା ମୁଖ୍ୟ ଶବରପଲ୍ଲୀ, ଯାହାର ଅବସ୍ଥିତି ଗୋଡ଼ିପୋଖରୀ ସନ୍ନିକଟରେ ଥିଲା । ଅନ୍ୟାନ୍ୟ ଶବରପଲ୍ଲୀମାନଙ୍କ ମଧ୍ୟରୁ ଗୁଡ଼ିଆନାଳୀ ସଂପ୍ରତି

ଢେଙ୍କାନାଳ ସହରର ଏକ ଓ୍ୱାର୍ଡ଼ ଭାବେ ଏବଂ 'କଣ୍ଟାନାଳୀ' ବନମାଳୀ ପ୍ରସାଦ ନାମରେ ବିଦ୍ୟମାନ । ଏହି ଶବର ପଲ୍ଲୀରେ ରାଜୁତି କରୁଥିବା ଶବର ରାଜାମାନଙ୍କ ମଧ୍ୟରେ 'ଢେଙ୍କା' ଅମିତ ବଳଶାଳୀ ଥିଲା । ଦକ୍ଷିଣାଞ୍ଚଳର ସମସ୍ତ ଶବର ରାଜା ଢେଙ୍କା ଶବରର ଅଧୀନସ୍ଥ ଥିଲେ । ପ୍ରାଚୀନକାଳରୁ ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ଶବରମାନେ ଢେଙ୍କାନାଳର ଦକ୍ଷିଣାଞ୍ଚଳରେ ନିରବଚ୍ଛିନ୍ନ ଆଧିପତ୍ୟ ବିସ୍ତାର କରିଥିଲେ ହେଁ 'ଢେଙ୍କା' ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲା । ତାହାରି ନାମାନୁସାରେ ବଡ଼ ବସ୍ତିଟି ଢେଙ୍କାନାଳୀ ନାମରେ ଖ୍ୟାତ ଥିଲା । ଢେଙ୍କାର ଅନ୍ୟ ଜଣେ ବଳଶାଳୀ ଭାଇର ନାମ ଥିଲା 'ବିଲଙ୍କା' । ସେ କପିଳାସ ପର୍ବତରେ ରାଜଧାନୀ ସ୍ଥାପନ କରି ସେହି ଅଞ୍ଚଳରେ ରାଜତ୍ୱ କରୁଥିଲା । ଏ ପର୍ଯ୍ୟନ୍ତ କପିଳାସ ପର୍ବତରେ ଶ୍ରୀ ଚନ୍ଦ୍ରଶେଖର ମନ୍ଦିରର ପୂର୍ବ ଦିଗରେ ବିଲଙ୍କାଗଡ଼ର ଭଗ୍ନାବଶେଷ ଓ ନିର୍ଜଳ ଗଡ଼ଖାଇ ବିଦ୍ୟମାନ । 'ବିଲଙ୍କା'ର ବଡ଼ଭାଇ ଢେଙ୍କାକୁ ପାର୍ଶ୍ୱବର୍ତ୍ତୀ କୌଣସି ଦଳପତି ବା ରାଜା ପରାସ୍ତ କରିପାରୁ ନଥିଲେ । ଇତିହାସରୁ ଜଣାଯାଏ 'ଢେଙ୍କା' ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ଦକ୍ଷିଣାଞ୍ଚଳରେ ରାଜତ୍ୱ କରିଥିଲେ । ପଣ୍ଡିତ ବିନାୟକ ମିଶ୍ର ସୂରଚିତ Dynasties of Medival Orissa ପୁସ୍ତକର ୩୨ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ଯେ କୋଦାଳକ ଠାରେ ଅଷ୍ଟମ ଶତାବ୍ଦୀରେ ରାଜତ୍ୱ କରୁଥିବା ଶୁଲ୍କୀ ବଂଶ ରାଜା କାଞ୍ଚନ ସ୍ତମ୍ଭଙ୍କର ପୁତ୍ର ପ୍ରଥମ କୁଳସ୍ତମ୍ଭ 'ଢେଙ୍କା' ନାମକ ଶବର ରାଜାଙ୍କୁ ପରାସ୍ତ କରି ଓ ହତ୍ୟାକରି ନିଜକୁ ବିକ୍ରମାଦିତ୍ୟ ପଦବୀରେ ଭୂଷିତ କରି ଗର୍ବ ଅନୁଭବ କରୁଥିଲେ । ଏହି ତଥ୍ୟ District Gazzetteer, Dhenkanal ଦ୍ୱାରା ସମର୍ଥିତ । ଢେଙ୍କାନାଳ ରାଜବଂଶର ପ୍ରତିଷ୍ଠାତା ଉଦୀୟମାନ ହରି ବିଦ୍ୟାଧର ଷୋଡଶ ଶତାବ୍ଦୀର ଶେଷ ଭାଗରେ ଢେଙ୍କା ଶବରର ରାଜଧାନୀ 'ଢେଙ୍କା' ପୀଢ଼ ସନ୍ନିକଟରେ ରାଜଧାନୀ ସ୍ଥାପନ କଲେ ଏବଂ ତାହାରି ନାମାନୁସାରେ ରାଜ୍ୟର ନାମ 'ଢେଙ୍କାନାଳ' ରଖିଲେ । କିମ୍ବଦନ୍ତୀ ଅନୁଯାୟୀ ଢେଙ୍କାପୀଢ଼ ସନ୍ନିକଟରେ ବର୍ତ୍ତମାନର ବିଜ୍ଞାନ ଉପବନ ଦକ୍ଷିଣ ପଶ୍ଚିମରେ ଥିବା ବୃହତ୍ ପ୍ରସ୍ତର ଖଣ୍ଡକୁ ସ୍ଥାନୀୟ ଲୋକେ ଢେଙ୍କା ମୁଣ୍ଡ ପଥର କହୁଛନ୍ତି ।



# ନାଗ ସଂସ୍କୃତିରେ ଢେଙ୍କାନାଳ

ଗୁପ୍ତଯୁଗ ଓ ଏହାର ପରବର୍ତ୍ତୀ କାଳରେ ଢେଙ୍କାନାଳ ଭୂଖଣ୍ଡରେ ନାଗସଂସ୍କୃତିର ଉତ୍ତରୋତ୍ତର ବିକାଶ ଘଟିଥିଲା । ତୃତୀୟ ଶତାବ୍ଦୀ ଠାରୁ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ଚାରିଶହ ବର୍ଷ ଢେଙ୍କାନାଳ ସମେତ ସମଗ୍ର ଉତ୍ତରାଞ୍ଚଳ ନାଗ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ତୃତୀୟ ଶତାବ୍ଦୀର ପ୍ରାରମ୍ଭରେ ଏହି ଅଞ୍ଚଳରୁ ସାତକର୍ଣ୍ଣୀମାନଙ୍କର ଆଧିପତ୍ୟ ବିସ୍ତାର ଲାଭ କରିଥିଲା । ଇତିହାସ ଅନୁଧ୍ୟାନରୁ ଜଣାଯାଏ, ବିନ୍ଧ୍ୟାଟବୀର ନାଗ ସମ୍ରାଟ ବୃନ୍ଦ ଏହି ଭୂଖଣ୍ଡର ଅଧିପତି ଥିଲେ । ଅସନପାଟ ଶିଳାଲେଖ ଓ 'ସୀତାବିଞ୍ଜି' ଅଭିଲେଖରୁ ପ୍ରମାଣିତ ହୁଏ, ଢେଙ୍କାନାଳ ଓ କେନ୍ଦୁଝର ସମେତ ସମଗ୍ର ଉତ୍ତରାଞ୍ଚଳ ଏହି ସମୟରେ ନାଗ ସାମ୍ରାଜ୍ୟର ଅନ୍ତର୍ଭୂକ୍ତ ଥିଲା । ବିନ୍ଧ୍ୟାଟବୀରେ ମୁଖ୍ୟ ସମ୍ରାଟ୍ ରାଜତ୍ୱ କରୁଥିଲେ ହେଁ ବିଭିନ୍ନ ଅଞ୍ଚଳର ନାଗ ସାମନ୍ତ ଗଣ ସେମାନଙ୍କ ଅଧୀନସ୍ଥ ମଣ୍ଡଳାଧିପତି ଥିଲେ । ସ୍ଥଳ ବିଶେଷରେ ଅନେକ ନାଗସାମନ୍ତ ସ୍ୱାଧୀନ ଭାବେ ଶାସନ କରୁଥିଲେ । ଢେଙ୍କାନାଳ ଅଞ୍ଚଳରୁ ନାଗ ରାଜତ୍ୱର ପ୍ରମାଣ ତଥା ନାଗସଭ୍ୟତା ଭଗ୍ନାବଶେଷ ଉପଲବ୍ଧ ହେଉଥିବାରୁ ଅନୁଭୂତ ହୁଏ, ତୃତୀୟ-ଚତୁର୍ଥ-ପଞ୍ଚମ ଓ ଷଷ୍ଠ ଶତାବ୍ଦୀରେ ଢେଙ୍କାନାଳ ନାଗ ସଭ୍ୟତା ଓ ସଂସ୍କୃତିର କେନ୍ଦ୍ରସ୍ଥଳ ଥିଲା ।

ଢେଙ୍କାନାଳ ସହରର ଐଶାନ୍ୟ କୋଣରେ ୩୦ କି.ମି. ଦୂରରେ ଗଁନ୍ଦିଆ ବ୍ଲକର ବଣିଆପଡ଼ା ଗ୍ରାମଠାରୁ ଦୁଇ କି.ମି. ପୂର୍ବରେ ପ୍ରାଚୀନ 'ଡମରାଜା କଟକ' ବିଦ୍ୟମାନ । ଏହି ଗିରି ଦୁର୍ଗର ଭଗ୍ନାବଶେଷରୁ ଜଣାଯାଏ ଏହା କୌଣସି ପ୍ରାଚୀନ ରାଜାଙ୍କ ରାଜଧାନୀ ଥିଲା । ପଣ୍ଡିତ ରାମଚନ୍ଦ୍ର ନନ୍ଦଙ୍କ ବିରଚିତ ଢେଙ୍କାନାଳ ଇତିହାସରୁ ଉପଲବ୍ଧ ହୁଏ, ଏହି ପ୍ରାଚୀନ ଦୁର୍ଗ ନିର୍ମାଣ ସଂପର୍କରେ ବହୁ ଲୋକ କାହାଣୀ ବିଦ୍ୟମାନ । ଭଗ୍ନାବଶେଷରୁ ଉପଲବ୍ଧ ହୁଏ ପ୍ରାଚୀନ ଗିରି ଦୁର୍ଗଟି ଉପରଗଡ଼ ଓ ତଳଗଡ଼ ଦୁଇ ଭାଗରେ ବିଭକ୍ତ ଥାଇ ଗୋଟିଏ ସମତଳ ପାର୍ବତ୍ୟ ପ୍ରାନ୍ତର ଦ୍ୱାରା ସଂଯୁକ୍ତ ଥିଲା । ତଳଗଡ଼ରେ ଗୋଟିଏ ପ୍ରାଚୀନ ପ୍ରସ୍ତର ବାମ୍ଫୀ ଏବଂ କେତେକ ପଥରକୂପ ଦୃଷ୍ଟି ଗୋଚର ହୋଇଥାଏ । ଦୁର୍ଗ ବାହାର ପ୍ରାଚୀର ସୀମାରେ ଗଡ଼ର ଅଧିଷ୍ଠାତ୍ରୀ ଦେବୀ ଏ ଅବଧି ବିରାଜିତା । ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ମସୃଣ ଶିଳାରେ ଖୋଦିତ ଏହି ଦେବୀ ବିଗ୍ରହ ଏକ ବିରଳ

ପ୍ରତ୍ନବିଭବ । ଏହି ଦେବୀ ମୂର୍ତ୍ତିର ବୈଚିତ୍ର୍ୟ ହେଉଛି; ମୂର୍ତ୍ତିର ନିମ୍ନାଂଶ ସର୍ପାକୃତ ଓ ଉର୍ଦ୍ଧ୍ୱାଂଶ ନାରୀ ଆକୃତି । ମସ୍ତକ ଉପରେ ସପ୍ତଫଣାକୃତି ସର୍ପ ଛତ୍ର ଶୋଭିତ । ବାମ ହସ୍ତରେ କୁମ୍ଭ ଓ ଦକ୍ଷିଣ ହସ୍ତରେ ପାନପାତ୍ର । ଏହା ହେଉଛି ନାଗମାତା ଇଳା ଦେବୀଙ୍କ ମୂର୍ତ୍ତି । ସ୍ଥାନୀୟ ବ୍ୟକ୍ତିଙ୍କ ମତରେ ଏହା ଅନନ୍ତେଶ୍ୱରୀ ମୂର୍ତ୍ତି । ଇଳା ଦେବୀଙ୍କ ମୂର୍ତ୍ତି ସନ୍ନିକଟରେ ଜୁଟା ଜୁଟଧାରୀ ଉପବୀତ ଶୋଭିତ ସୂର୍ଯ୍ୟ ଦେବଙ୍କ ପ୍ରସ୍ତର ମୂର୍ତ୍ତି ସିନ୍ଦୁର ଚର୍ଚ୍ଚିତ । ନାଗ ଓ ସୌର ଉପାସନାର ଏହି ଯୁଗଳମୂର୍ତ୍ତି ଦୁର୍ଲଭ ପ୍ରତ୍ନବିଭବ । ଇତିହାସରୁ ଜଣାଯାଏ, ଶାକ ଦେଶାଗତ ସୌର ଉପାସକ ବୃନ୍ଦ ମଧ୍ୟ ନାଗ ଉପାସକ ଥିଲେ । ଏମାନେ ପରବର୍ତ୍ତୀ କାଳରେ ସୂର୍ଯ୍ୟବଂଶୀ ଓ ଚନ୍ଦ୍ରବଂଶୀ ଭାବରେ ପରିଚିତ ହୋଇ ଦଳ ମୁଖ୍ୟଙ୍କ ନାମାନୁସାରେ ବିଭିନ୍ନ ଗୋତ୍ରରେ ବିଭକ୍ତ ହୋଇଯାଇଥିଲେ । ଢେଙ୍କାନାଳର ଜନଜାତିଙ୍କ ମଧ୍ୟରେ ନାଗସ ଗୋତ୍ରୀୟଙ୍କ ସଂଖ୍ୟା ଅଧିକ ଥିବାରୁ ହୃଦ୍‌ବୋଧ ହୁଏ, ଉପକୂଳ ଅଞ୍ଚଳରୁ ତୃତୀୟ ଚତୁର୍ଥ ଶତାବ୍ଦୀରେ ପୂର୍ବ ଦିଗରୁ ଢେଙ୍କାନାଳ ଭୂଖଣ୍ଡରେ ନାଗ ସଂସ୍କୃତିର ଅନୁପ୍ରବେଶ ଘଟିଥିଲା । ଢେଙ୍କାନାଳର ପୂର୍ବାଞ୍ଚଳରେ ଅବସ୍ଥିତ ପ୍ରାଚୀନ ନାଗ ରାଜାଙ୍କ ଗିରିଦୁର୍ଗ ଡମରାଜା କଟକ ଏହାର ଜ୍ୱଳନ୍ତ ଉଦାହରଣ । ଐତିହାସିକ ରାଖାଲ ଦାସ ବନ୍ଦୋପାଧ୍ୟାୟଙ୍କ ମତରେ ଓଡ଼ିଶାର ପାର୍ବତ୍ୟାଞ୍ଚଳରେ ନାଗ ବଂଶୀୟ ରାଜାମାନଙ୍କର ଶାସକ ଚାଲୁଥିଲା । ଅତଏବ, ନିଃସନ୍ଦେହରେ କୁହାଯାଇପାରେ ଯେ ନାଗବଂଶୀୟ ରାଜନ୍ୟ ବୃନ୍ଦ ଢେଙ୍କାନାଳ ଅଞ୍ଚଳରେ ତୃତୀୟ ଚତୁର୍ଥ ଶତାବ୍ଦୀରେ ଅନୁପ୍ରବେଶ କରିଥିଲେ ଏବଂ ଡମ ରାଜା କଟକ ସେମାନଙ୍କ ସଂସ୍ଥାପିତ ଗିରି ଦୁର୍ଗ । ସେମାନେ ରଣକୌଶଳ ଦୃଷ୍ଟିରୁ ଏହି ପାର୍ବତ୍ୟ ଦୁର୍ଗକୁ ଉପରଗଡ଼ ଓ ତଳଗଡ଼ ଦୁଇ ଭାଗରେ ନିର୍ମାଣ ପୂର୍ବକ ନାଗମାତା ଇଳାଙ୍କୁ ଦୁର୍ଗରକ୍ଷୟିତ୍ରୀ ଭାବରେ ପ୍ରତିଷ୍ଠା କରିଥିଲେ । ପ୍ରାଚୀନ ନାଗ ସଭ୍ୟତାର ଅବଶେଷ ପରିପୂର୍ଣ୍ଣ ଏହି ଗିରିଦୁର୍ଗ ଅଦ୍ୟାବଧି ଲୋକଲୋଚନ ଅନ୍ତରାଳରେ ।

ଢେଙ୍କାନାଳରେ ନାଗ ସଭ୍ୟତାର ସମୃଦ୍ଧ ପ୍ରାଚୀନ ନଗରୀ ହେଉଛି 'ନାଗନା' । ବ୍ରାହ୍ମଣୀ ଉପତ୍ୟକାର ମଧ୍ୟ ଭାଗରେ ଅବସ୍ଥିତ ପ୍ରାଚୀନ ନାଗନା ନଗରୀ ସଂପ୍ରତି ନାଗନା ଗ୍ରାମ ନାମରେ ପରିଚିହ୍ନିତ । ଢେଙ୍କାନାଳ ସହରର ଉତ୍ତରରେ କୋଡ଼ିଏ କିଲୋ ମିଟର ଦୂରରେ ପୂଣ୍ୟତୋୟା ବ୍ରାହ୍ମଣୀ ନଦୀର ଦକ୍ଷିଣ ପାର୍ଶ୍ୱରେ ଏହି ଗ୍ରାମଟି ଅବସ୍ଥିତ । ଏହି ପ୍ରାଚୀନ ଗ୍ରାମ ସନ୍ନିକଟରେ ରୂପା ବଳିଆ ପର୍ବତରେ ନାଗ ରାଜାଙ୍କ ଗିରି ଦୁର୍ଗର ଭଗ୍ନାବଶେଷ ଓ ପ୍ରାଚୀନ ବାମ୍ଫୀ

ବିଦ୍ୟମାନ । ଭାରତବର୍ଷର ପଶ୍ଚିମାଞ୍ଚଳରେ ତକ୍ଷକ ବଂଶୀୟ ରାଜନ୍ୟ ବୃନ୍ଦଙ୍କ ରାଜଧାନୀ ଯେପରି ତକ୍ଷଶୀଳା ନଗରୀ ନାମରେ ପ୍ରସିଦ୍ଧି ଲାଭ କରିଥିଲା, ପୂର୍ବାଞ୍ଚଳରେ ନାଗ ରାଜନ୍ୟ ବୃନ୍ଦଙ୍କ ରାଜଧାନୀ 'ନାଗନା ନଗରୀ' ନାମରେ ଖ୍ୟାତି ଅର୍ଜନ କରିଥିଲା । ଗବେଷକଙ୍କ ମତରେ ଭାରତର ପୂର୍ବାଞ୍ଚଳରେ ବ୍ରାହ୍ମଣୀ ନଦୀ କୂଳରେ ନାଗନା ନଗରୀ ନାଗ ଉପାସନାର କେନ୍ଦ୍ରବିନ୍ଦୁ ଥିଲା । ଅଦ୍ୟାବଧି ଏଠାରେ ଦେବୀ ନାଗନାମୀ (ନାଗନାଇଁ) ପୂଜିତା । ଏହି ଦେବୀ ତ୍ରିଫଣା ବିଶିଷ୍ଟ ନାଗମାତା ମୂର୍ତ୍ତି ଏବଂ ସଂପ୍ରତି ଗ୍ରାମଦେବୀ ରୂପେ ଆରାଧିତା । ଏହି ନାଗନା ଗ୍ରାମ ଓ ତତ୍‌ପାର୍ଶ୍ୱବର୍ତ୍ତୀ ସମସ୍ତ ଗ୍ରାମରେ ଏ ଅବଧି ବହୁଳ ଭାବରେ ନାଗସ ଗୋତ୍ରୀୟ ଜନଜାତି ନିବାସ କରୁଅଛନ୍ତି । ଏଥିରୁ ପ୍ରମାଣିତ ହୁଏ, ଡମରାଜା କଟକ ଯେପରି ନାଗ ରାଜାମାନଙ୍କ ରାଜଧାନୀ ଥିଲା, ସେହିପରି ରୂପା ବଳିଆ ପର୍ବତରେ ରାଜତ୍ୱ କରୁଥିବା ନାଗ ରାଜନ୍ୟବୃନ୍ଦ ନାଗନା ଗ୍ରାମ ବସାଇ ସେଠାରେ ନାଗମାତାଙ୍କ ମୂର୍ତ୍ତି ପୂଜା କରୁଥିଲେ । ବହୁ ପ୍ରାଚୀନ କାଳରୁ ବ୍ରାହ୍ମଣୀ ନଦୀ ମାଧ୍ୟମରେ ଉପକୂଳ ଅଞ୍ଚଳରୁ ଏଠାରେ ନାଗ ସଭ୍ୟତାର ଅନୁପ୍ରବେଶ ଘଟିଥିଲା ।

ମହନୀୟତା ହେଉଛି, ବୈଦିକ ଯୁଗରେ ଏହି ପ୍ରାଚୀନ କ୍ଷେତ୍ର ମହାକାର୍ତ୍ତିକୀ ତୀର୍ଥ ନାମରେ ମାନ୍ୟତା ଲାଭ କରିଥିଲା । ପୁଣ୍ୟତୋୟା ବ୍ରାହ୍ମଣୀନଦୀ ଏହି ପବିତ୍ର କ୍ଷେତ୍ରରେ ଉତ୍ତରଗାମୀ ହୋଇଥିବାରୁ ଅଗଣିତ ଆର୍ଯ୍ୟ ଏଠାରେ ସ୍ନାନାନ୍ତେ ପିତୃ ପୁରୁଷଙ୍କୁ ପିଣ୍ଡଦାନ କରୁଥିଲେ । ପ୍ରାଚୀନ ଶ୍ଳୋକରୁ ଜଣାଯାଏ, ଏହି ଉତ୍ତର ବାହିନୀ ତୀର୍ଥରେ ସ୍ନାନ କଲେ ବିଷ୍ଣୁ ଲୋକ ପ୍ରାପ୍ତ ହୋଇଥାଏ ।

ମହାକାର୍ତ୍ତିକୀ ବିପ୍ରାୟାଂ ଯତ୍ରତୋତ୍ତର ବାହିନୀ
ତତ୍ରସ୍ନାନ ନରଃ କୃତ୍ୱା ବିଷ୍ଣୁଲୋକ ସଚ୍ଛତି ।

ଏହି ଶ୍ଳୋକରୁ ହୃଦ୍‌ବୋଧ ହୁଏ, ଉତ୍ତର ବାହିନୀ ନଦୀରେ ମହାକାର୍ତ୍ତିକରେ ସ୍ନାନ କଲେ ବିଷ୍ଣୁ ଲୋକ ପ୍ରାପ୍ତି ହୋଇଥାଏ । ବ୍ରାହ୍ମଣୀ ନଦୀ ତା'ର ଗତିପଥରେ କେବଳ ଏହି ସ୍ଥାନରେ ଉତ୍ତରବାହିନୀ ହୋଇଥିବାରୁ ପ୍ରମାଣିତ ହୁଏ, ବହୁ ପୁରାକାଳରୁ ଏହି ପବିତ୍ର ସ୍ଥାନ ଉତ୍ତର ବାହିନୀ ତୀର୍ଥର ମାନ୍ୟତା ଲାଭପୂର୍ବକ ଅଗଣିତ ଆର୍ଯ୍ୟଙ୍କୁ ଆକୃଷ୍ଟ କରିଥିଲା । ପୁରାତତ୍ତ୍ୱବିଦ୍ ପଣ୍ଡିତ ନଗେନ୍ଦ୍ରନାଥ ମହାପାତ୍ରଙ୍କ ମତରେ ନାଗନା ପ୍ରାଚୀନ କାଳରେ ଏକ ପ୍ରସିଦ୍ଧ ତୀର୍ଥ ଥିଲା ଏବଂ ସର୍ବଭାରତୀୟ ସ୍ତରରେ ଏହାର ସୁଖ୍ୟାତି ରହିଥିଲା । ଭାରତର ବିଭିନ୍ନ ପ୍ରାନ୍ତରରୁ ଯାତ୍ରୀମାନେ ଏଠାକୁ ଆସି ସ୍ନାନ, ଦାନ ଓ ପିଣ୍ଡୋତ୍ସର୍ଗ କରୁଥିଲେ । ତାଙ୍କ ମତରେ

ଏହି ପବିତ୍ର ତୀର୍ଥରେ ମହାପ୍ରସାଦର ପ୍ରଚଳନ ଥିଲା । ଅନୁମିତ ହୁଏ, ରୂପାବଳିଆ ପର୍ବତସ୍ଥିତ ନାଗରାଜାମାନେ ଏହି ପବିତ୍ର ତୀର୍ଥ ସମୀପରେ ଦେବୀ 'ନାଗନାମୀ'ଙ୍କ ମୂର୍ତ୍ତି ପ୍ରତିଷ୍ଠା ପୂର୍ବକ ନାଗ ଉପାସନାର ପ୍ରସାର କରିଥିଲେ ତଥା ନାଗ ସଭ୍ୟତାର ସ୍ମାରକୀ ସଦୃଶ 'ନାଗନା' ଗ୍ରାମ ବସାଇ ଥିଲେ ।

ପରବର୍ତ୍ତୀକାଳରେ ଶୈବ ସଂସ୍କୃତିର ଉତ୍ତରଣରେ ନାଗନା ଦ୍ୱାଦଶ ଜ୍ୟୋର୍ତିଲିଙ୍ଗ ଆରାଧିତ ନାଗନାଥେଶଙ୍କ ଲୀଳା ଭୂମି ନାମରେ ସୁବିଦିତ ହେଲା । ବିଞ୍ଛ ପ୍ରାଞ୍ଛଙ୍କ ମତରେ ଚତୁର୍ଥ-ପଞ୍ଚମ ଶତାବ୍ଦୀରୁ ନାଗନାଥ ଦ୍ୱାଦଶ ଜ୍ୟୋର୍ତିଲିଙ୍ଗ ମଧ୍ୟରେ ମାନ୍ୟତା ପାଇଲେ । ଭାରତର ଯେଉଁ ବାରଟି ସ୍ଥାନରେ ଶିବଲିଙ୍ଗ ପ୍ରଥମେ ଆବିର୍ଭାବ ହୋଇ ବିଶ୍ୱପ୍ରସିଦ୍ଧ ଲାଭ କରିଥିଲେ 'ନାଗନାଥ' ତନ୍ମଧ୍ୟରୁ ଅନ୍ୟତମ । ଶୈବାଚାର୍ଯ୍ୟ ନକୁଳୀଶଙ୍କ ଆବିର୍ଭାବ ଅର୍ଥାତ୍ ଚତୁର୍ଥ ଶତାବ୍ଦୀଠାରୁ ଏହି ପବିତ୍ର ନାଗନାଥ ପୀଠ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । ଏଠାରେ ନାଗ ସଂସ୍କୃତି ଓ ଶୈବ ସଂସ୍କୃତିର ମଧୁର ସମନ୍ୱୟ ସଂଘଟିତ ହୋଇଥିଲା । ଅନୁମିତ ହୁଏ, ଦେବୀ ନାଗନାମୀଙ୍କ ମୂର୍ତ୍ତି ପ୍ରତିଷ୍ଠା ପୂର୍ବରୁ ଏହି କ୍ଷେତ୍ରରେ ନାଗନାଥ ଶିବଲିଙ୍ଗଙ୍କର ଆର୍ବିଭାବ ଘଟିଥିଲା । ନାଗରାଜାମାନେ ଶିବଲିଙ୍ଗ ସନ୍ନିକଟରେ ନାଗନାମୀଙ୍କୁ ସ୍ଥାପନା କରି ଶୈବ ସଂସ୍କୃତି ସହିତ ନାଗ ସଂସ୍କୃତିର ସମନ୍ୱୟ ଘଟାଇଥିଲେ । ଭାରତର ଯେଉଁ ବାରଟି ସ୍ଥାନରେ ଶିବ ଲିଙ୍ଗଙ୍କର ପ୍ରଥମ ଆର୍ବିଭାବ ଘଟିଥିଲା । ସେହି ସବୁ ଲିଙ୍ଗ ହେଉଛନ୍ତି ସୋମନାଥ, ମଲ୍ଲିକାର୍ଜ୍ଜୁନ, ମହାକାଳ, ମନ୍ଦେଶ୍ୱର, ବୈଦ୍ୟନାଥ, ଭୀମଶଙ୍କର, ରାମେଶ, ନାଗେଶ, ବିଶ୍ୱେଶ, ତ୍ର୍ୟମ୍ବକ, କେଦାର ଓ ଘୃସୁଣେଶ । ଦ୍ୱାଦଶ ଜୋର୍ତିଲିଙ୍ଗଙ୍କ ଅବସ୍ଥିତ ସଂପର୍କୀୟ ଶ୍ଳୋକ ହେଉଛି–

ସୌରାଷ୍ଟ୍ରେ ସୋମନାଥଞ୍ଚ ଶ୍ରୀ ଶୈଳେ ମଲ୍ଲିକାର୍ଜ୍ଜୁନମ୍,<br>
ଉଜ୍ଜୟିନ୍ୟାଂ ମହାକାଳ ମୋଙ୍କରମ୍ ମନ୍ଦେଶ୍ୱରମ୍ ।<br>
ପରଲ୍ୟାଂ ବୈଦ୍ୟନାଥଂ ଚ ଡାକିନ୍ୟାଂ ଭୀମ ଶଙ୍କରମ୍,<br>
ସେତୁବନ୍ଧେ ତୁ ରାମେଶଂ ନାଗେଶଂ ଦାରୁକାବନେ ।<br>
ବାରଣସ୍ୟାଂତୁ ବିଶ୍ୱେଶଂ ତ୍ର୍ୟମ୍ବକଂ ଗୌତମୀ ତଟେ,<br>
ହିମାଳୟେ ତୁ କେଦାରଂ ଘୃସୁଣେଶ ଶିବାଳୟେ ।

ଏଥିରୁ ଉପଲବ୍ଧି ହୁଏ ଦ୍ୱାଦଶ ଜ୍ୟୋର୍ତିଲିଙ୍ଗଙ୍କ ମଧ୍ୟରୁ ନାଗେଶଙ୍କର ଅବସ୍ଥିତ ଦାରୁକାବନ ମଧ୍ୟରେ । ନାଗନାସ୍ଥିତ ରୂପାବଳିଆ ପର୍ବତଠାରୁ

ବ୍ରାହ୍ମଣୀନଦୀ ପର୍ଯ୍ୟନ୍ତ ସୁବିସ୍ତୃତ ତୀର୍ଥ ଭୂମିରେ ବିରାଟ ଦାରୁକାବନ ରହିଥିବାର ପ୍ରମାଣ ପ୍ରାଚୀନ ଶାସ୍ତ୍ରରୁ ପରିଦୃଷ୍ଟ ହୁଏ । ବର୍ତ୍ତମାନ ପଶ୍ଚିମ ଭାରତବାସୀ ଦ୍ୱାରକା ସନ୍ନିକଟ ନାଗେଶଙ୍କୁ ଜ୍ୟୋତିର୍ଲିଙ୍ଗ ରୂପେ ଚିହ୍ନିତ କରୁଥିଲେ ହେଁ ପ୍ରକୃତରେ ବ୍ରାହ୍ମଣୀତଟସ୍ଥ ପ୍ରାଚୀନ ନାଗନାଥ ହିଁ ଦ୍ୱାଦଶ ଜ୍ୟୋର୍ତିଲିଙ୍ଗ ଅନ୍ତର୍ଭୁକ୍ତ ଅଟନ୍ତି । ଦ୍ୱାରକା ସନ୍ନିକଟ ନାଗେଶଙ୍କ ଠାରୁ ବ୍ରାହ୍ମଣୀ ତଟସ୍ଥ ନାଗେଶ ବହୁ ପ୍ରାଚୀନ । ଉଭୟ ଶିବଲିଙ୍ଗ ଦର୍ଶନ କଲେ, ହୃଦ୍‌ବୋଧ ହୁଏ ଦ୍ୱାରକା ସନ୍ନିକଟ ନାଗେଶ ବା ନାଗନାଥ ଲିଙ୍ଗ ଓ ମନ୍ଦିର ପଞ୍ଚଦଶ ବା ଷୋଡଶ ଶତାବ୍ଦୀର ପ୍ରତିଷ୍ଠିତ । କିନ୍ତୁ ତାହାର ବହୁ ପୂର୍ବରୁ ବ୍ରାହ୍ମଣୀତଟସ୍ଥ ନାଗନାଥ ମନ୍ଦିର ନିର୍ମାଣ କରାଯାଇଛି । ସମ୍ଭବତଃ ପ୍ରାଚୀନ ମନ୍ଦିରଟି କୌଣସି କାରଣରୁ ଭାଙ୍ଗିଯିବାରୁ ଦ୍ୱାଦଶ ଶତାବ୍ଦୀରେ ବର୍ତ୍ତମାନର ମନ୍ଦିରଟି ନିର୍ମିତ । ଏଥିରୁ ପ୍ରମାଣିତ ହେଉଛି, ନାଗନାସ୍ଥିତ ନାଗନାଥ ହିଁ ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ । ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ଅଷ୍ଟମ ଶତାବ୍ଦୀରେ ନୀଳାଚଳ ଧାମରେ ଗୋବର୍ଦ୍ଧନ ପୀଠ ସ୍ଥାପନ ତଥା ଶ୍ରୀଜଗନ୍ନାଥଙ୍କ ପୁନଃ ପ୍ରତିଷ୍ଠାପରେ ନାଗନାଥଙ୍କ ସ୍ତୁତି କରିଛନ୍ତି–

ଯାମ୍ୟେ ସଦଙ୍ଗେ ନଗରେଽତି ରମ୍ୟେ
ବିଭୂଷିତାଙ୍ଗମ୍ ବିବିଧୈଶ୍ଚଭୋଗୈଃ,
ସଦ୍‌ଭୁକ୍ତି ମୁକ୍ତି ପ୍ରଦମୀଶମେକଂ
ଶ୍ରୀ ନାଗନାଥଂ ଶରଣଂ ପ୍ରପଦ୍ୟେ ।

ଉଲ୍ଲେଖଯୋଗ୍ୟ ଯେ, ଅଷ୍ଟମ ଶତାବ୍ଦୀରେ ଦ୍ୱାରକା ସନ୍ନିକଟ ନାଗନାଥ ପ୍ରସିଦ୍ଧି ଲାଭ କରିନଥିଲେ । ଅଥଚ ସେହି ସମୟରୁ ବ୍ରାହ୍ମଣୀ ତଟସ୍ଥ ନାଗନାଥ ପ୍ରସିଦ୍ଧି ଲାଭ କରିସାରିଥିଲେ ତଥା ଦ୍ୱାରକା ଜ୍ୟୋତିର୍ଲିଙ୍ଗ ରୂପେ ଆଦି ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ସ୍ୱୀକୃତ ହୋଇଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି, ଚତୁର୍ଥ ଶତାବ୍ଦୀରୁ ନାଗନାସ୍ଥିତ ନାଗନାଥ ଶୈବାଚାର୍ଯ୍ୟବୃନ୍ଦଙ୍କ ଦ୍ୱାରା ଦ୍ୱାଦଶ ଜ୍ୟୋର୍ତିଲିଙ୍ଗ ରୂପେ ମାନ୍ୟତା ଲାଭ ପୂର୍ବକ ଅଷ୍ଟମ ଶତାବ୍ଦୀ ସମୟରୁ ବିଶ୍ୱ ପ୍ରସିଦ୍ଧି ଲାଭ କରି ସାରିଥିଲେ ।

ଦ୍ୱାଦଶ ଜ୍ୟୋର୍ତିଲିଙ୍ଗ ଅନ୍ତର୍ଭୁକ୍ତ ଭାରତର ପୂର୍ବାଞ୍ଚଳରେ ଅବସ୍ଥିତ ନାଗନାଥେଶ୍ୱରଙ୍କର ପ୍ରାଚୀନ ମନ୍ଦିର ରୂପାବଳିଆର ନାଗବଂଶୀୟ ରାଜାଙ୍କ ଦ୍ୱାରା ପ୍ରଥମେ ନିର୍ମାଣ କରାଯାଇଥିଲା । ସେହି ପ୍ରାଚୀନ ମନ୍ଦିରଟି ଭୂସ୍ଖଳନ ଫଳରେ ଭାଙ୍ଗିଯିବାରୁ ବର୍ତ୍ତମାନର ମନ୍ଦିର ଦ୍ୱାଦଶ ଶତାବ୍ଦୀର ଗଙ୍ଗବଂଶୀ ତୃତୀୟ

ଅନଙ୍ଗଭୀମ ଦେବଙ୍କ ଦ୍ୱାରା ନିର୍ମିତ । ନାଗନା ସନ୍ନିକଟ ଭୀମପୁର (ଭୂଇଁପୁର) ଓ ପଶ୍ଚିମଦିଗସ୍ଥ ଭୀମନଗରୀ ଦୁର୍ଗ ମଧ ଅନଙ୍ଗଭୀମ ଦେବଙ୍କ କୀର୍ତ୍ତି । ଉଲ୍ଲେଖଯୋଗ୍ୟ ଯେ ତଦୀୟ ପୁତ୍ର ଲାଙ୍ଗୁଳା ନରସିଂହଦେବ କପିଳାସ ଶିବ ମନ୍ଦିର ନିର୍ମାଣ ପୂର୍ବକ ଦଧିନଉତି ଶିଳାଲେଖରେ ପିତୃ ଜନପଦ ନାଗନା ଓ ଭୀମପୁରର ନାମ ଉଲ୍ଲେଖ କରିଛନ୍ତି । ପଞ୍ଚରଥ ଶୈଳୀରେ ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ନାଗନା ମନ୍ଦିରର ଉଚ୍ଚତା ୪୫ ଫୁଟ । ମନ୍ଦିରଟି ଜଗମୋହନ, ଭୋଗମଣ୍ଡପ ଓ ଗର୍ଭଗୃହ ବା ଗମ୍ଭୀରା ଏରୂପ ତିନି ଭାଗରେ ବିଭକ୍ତ । ଗମ୍ଭୀରାରେ ସଂୟମ୍ଭୂ ଜ୍ୟୋର୍ତିଲିଙ୍ଗ ନାଗନାଥେଶ୍ୱର । ଜଗମୋହନରେ ଦୁଇଗୋଟି ବୃଷଭ ପ୍ରତିଷ୍ଠିତ । ପ୍ରଥମଟି ମନ୍ଦିର ନିର୍ମାଣ ସମୟର ଏବଂ ଦ୍ୱିତୀୟଟି ପରବର୍ତ୍ତୀ କାଳର । ଦ୍ୱିତୀୟ ବୃଷଭର ନିମ୍ନ ଭାଗରେ ପ୍ରାଚୀନ ଓଡ଼ିଆ ଅକ୍ଷରରେ ଗୋଟିଏ ପଂକ୍ତି ଶିଳାଲେଖ ଉତ୍କୀର୍ଣ୍ଣ । ଲିପିତତ୍ତ୍ୱବିଦ୍ ଅଧ୍ୟାପକ ସୁବ୍ରତ ଆଚାର୍ଯ୍ୟଙ୍କ ପାଠୋଦ୍ଧାର ଅନୁଯାୟୀ ।

''(ନାଗନା)ଥେଶ୍ୱର (ରା)ୟ ପ୍ରୀତୟେ ନୀଳାମ୍ବର''

ପ୍ରମାଣିତ ହୁଏ, ସପ୍ତଦଶ ଶତାବ୍ଦୀରେ ଢେଙ୍କାନାଳର ରାଜା ନୀଳାମ୍ବର ରାୟସିଂହ ଭ୍ରମରବର ଏହି ବୃଷଭଟି ସ୍ଥାପନା କରିଥିଲେ । ମନ୍ଦିର ବେଢ଼ାରେ ଏକାଦଶ ରୁଦ୍ର ଅଙ୍କିତ ବିଶାଳ ପ୍ରାଚୀନ ବାମ୍ଫୀ ରହିଛି, ଯାହାଙ୍କ ଦ୍ୱାଦଶ ଶତାବ୍ଦୀ ପୂର୍ବର ବୋଲି ଅନୁମିତ । ନିକଟରେ ତ୍ରିଫଣା ବିଶିଷ୍ଟା ଦେବୀ ନାଗନାମୀ ଗ୍ରାମଦେବତୀ 'ନାଗନାଈଁ' ନାମରେ ପୂଜିତା । ମୁଖ୍ୟମନ୍ଦିର କାନ୍ଥରେ ଭୈରବ ଓ ଚାମୁଣ୍ଡା ମୂର୍ତ୍ତି ଥିବାରୁ ଏହା ଏକଦା ତନ୍ତ୍ରପୀଠ ଥିବାର ହୃଦ୍‌ବୋଧ ହୁଏ । ଏହି ପ୍ରାଚୀନ ମନ୍ଦିର ଓ ପୀଠସ୍ଥଳୀ କ୍ରମେ ଦବି ଯାଉଥିବାର ଯେ କୌଣସି ଦର୍ଶକ ଅନୁଭବ କରିପାରିବେ । ମୁଖ୍ୟ ମନ୍ଦିରର ପ୍ରାଚୀର ଓ ମନ୍ଦିରର ସ୍ଥିତି ଦେଖିଲେ ଏହା ସହଜରେ ଅନୁଭବ କରିହୁଏ । ମନ୍ଦିରଠାରୁ ବ୍ରାହ୍ମଣୀତଟ ପର୍ଯ୍ୟନ୍ତ ସୁବିସ୍ତୃତ କ୍ଷେତ୍ର ଦର୍ଶନମାତ୍ରେ ଉପଲବ୍ଧ ହୁଏ ଯେ ଏକ ପ୍ରାଚୀନ କ୍ଷେତ୍ର ଭୂମିତଳେ ଲୁକ୍‌କାୟିତ । ଅନୁମିତ ହୁଏ, ପ୍ରାଚୀନ ନାଗକ୍ଷେତ୍ର ନାଗନା ଭୂସ୍ଖଳନ ଯୋଗୁ ଧ୍ୱସ୍ତବିଧ୍ୱସ୍ତ ହେବାରୁ ମନ୍ଦିରଟି ପୁନର୍ବାର ନିର୍ମିତ ।

ପ୍ରାଚୀନ କାଳରୁ ନାଗନା ନଗରୀ ନାଗକ୍ଷେତ୍ର ରୂପେ ପ୍ରସିଦ୍ଧି ଲାଭ କରିଥିଲେ ହେଁ ଶୈବ ସଂସ୍କୃତିର ଉତ୍ତରଣରେ ଏଠାରେ ନାଗ ଓ ଶୈବ ସଂସ୍କୃତିର ମହା ମିଳନ ସଂଘଟିତ ହୋଇଥିଲା । ଭାରତର ଗୌରବୋଜ୍ଜ୍ୱଳ ଐତିହ୍ୟରେ ଏହା ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଥିଲେ ହେଁ ସଂପ୍ରତି ଅବହେଳିତ । ଏପରିକି, ଏହି

ପ୍ରାଚୀନ କ୍ଷେତ୍ର ଅଦ୍ୟାବଧି ପର୍ଯ୍ୟଟନସ୍ଥଳୀ ଭାବରେ ପରିଚିହ୍ନିତ ହୋଇନାହିଁ । ଦୁଃଖର ବିଷୟ, ଢେଙ୍କନାଳ ସହରଠାରୁ ମାତ୍ର ୨୦ କି.ମି. ଉତ୍ତରରେ ବ୍ରାହ୍ମଣୀ ତଟସ୍ଥ ପ୍ରାକୃତିକ ଶୋଭାମୟୀ ବିସ୍ତୀର୍ଣ୍ଣ ଭୂଖଣ୍ଡରେ ଏହାର ଅବସ୍ଥିତି ଲେ ହେଁ ଏଯାବତ୍ ଏହି ପ୍ରାଚୀନ କ୍ଷେତ୍ରରୁ ସବୁଦିନିଆ ରସ୍ତାଟିଏ ନିର୍ମାଣ ହୋଇପାରି ନାହିଁ । ୧୯୬୭ ଜୁନ୍ ୧୬ ତାରିଖରେ ଓଡ଼ିଶାର ତତ୍‌କାଳୀନ ସଂସ୍କୃତି ନିର୍ଦ୍ଦେଶକ ସ୍ୱର୍ଗୀୟ ବିମଳ କିଶୋର ମିଶ୍ର ପୀଠଟିକୁ ପରିଦର୍ଶନ ପୂର୍ବକ ପ୍ରତ୍ନତାତ୍ତ୍ୱିକ ସଂରକ୍ଷଣ, ଭୂଖନନ ଓ ସର୍ବେକ୍ଷଣର ମତାମତ ଦେଇଥିଲେ ହେଁ ତାହା ଅଦ୍ୟାବଧି କାର୍ଯ୍ୟକାରୀ ହୋଇନାହିଁ । ସର୍ବୋପରି ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ଏହାର ପ୍ରାଚୀନ ମନ୍ଦିରଟି ଦୀର୍ଘକାଳ ଧରି ଦବି ଯାଉଥିଲେ ହେଁ ସୁରକ୍ଷାର ବନ୍ଦୋବସ୍ତ କରଯାଇ ପାରିନାହିଁ । ମନ୍ଦିରର ସୁରକ୍ଷା, ପ୍ରତ୍ନତାତ୍ତ୍ୱିକ ଅନ୍ୱେଷଣ ଓ ଭୂଖନନ ହୋଇ ସର୍ବେକ୍ଷଣ ହେଲେ ଅନେକ ଅନାଲୋଚିତ ଐତିହ୍ୟ ଲୋକଲୋଚନାକୁ ଆସିପାରିବ ।

ଡମରାଜା କଟକ ଓ ନାଗନା ବ୍ୟତୀତ କରମୂଳ ସନ୍ନିକଟ ଗଣେଶ ଖୋଲରେ ଥିବା ଗିରିଦୁର୍ଗ ମଧ୍ୟ ପ୍ରାଚୀନ ନାଗ ରାଜାମାନଙ୍କ କୀର୍ତ୍ତି । ଏଠାରେ ପ୍ରଥମେ ନାଗରାଜାମାନେ ରାଜତ୍ୱ କରୁଥିଲେ ଏବଂ ପରବର୍ତ୍ତୀ କାଳରେ ଶତ୍ରୁ ଆକ୍ରମଣର ସମ୍ମୁଖୀନ ହୋଇ ଉତ୍ତର ଦିଗସ୍ଥ ସୁକିନ୍ଦାରେ ରାଜତ୍ୱ କଲେ । ଢେଙ୍କାନାଳର ବିଭିନ୍ନ ସ୍ଥାନରେ ରାଜତ୍ୱ କରୁଥିବା ନାଗ ରାଜନ୍ୟବୃନ୍ଦ ଏହି ଅଞ୍ଚରେ ନାଗ ସଂସ୍କୃତିର ବ୍ୟାପକ ପ୍ରସାର ଘଟାଇଥିଲେ । ଢେଙ୍କନାଳରେ ମଧ୍ୟ ଅଦ୍ୟାବଧି ମହାନାଗ ବା ମହାନାୟକମାନେ ଆପଣାକୁ ନାଗବଂଶୀ କ୍ଷତ୍ରିୟ ରୂପେ ପରିଚୟ ପ୍ରଦାନ କରିଥାନ୍ତି । ଏତଦ୍‌ଭିନ୍ନ ଢେଙ୍କନାଳ ଅଞ୍ଚଳରେ ବାସ କରୁଥିବା ଜନଜାତିଙ୍କ ମଧ୍ୟରେ ପ୍ରଚଳିତ ନାଗପୂଜା, ନାଗବ୍ରତ, ନାଗଲଚଉଠି ପ୍ରଭୃତି ପର୍ବପର୍ବାଣୀରୁ ନାଗ ସଂସ୍କୃତିର ପ୍ରାଚୀନତା ସୁସ୍ପଷ୍ଟ । ସର୍ବୋପରି, ଢେଙ୍କାନାଳର ଇଷ୍ଟ ଶ୍ରୀ ବଳଦେବ ଜୀଉ ପ୍ରଥମରେ ସପ୍ତଫେଣା ଯୁକ୍ତ ନାଗମୂର୍ତ୍ତି ଭାବେ ତଳମୂଳ ଠାରେ ପୂଜା ପାଉଥିଲେ ଏବଂ ପରବର୍ତ୍ତୀକାଳରେ ବଳଦେବ ମୂର୍ତ୍ତିରେ ରୂପାନ୍ତରିତ ହୋଇ ସଂପ୍ରତି ଢେଙ୍କାନାଳ ସହରର ଭବ୍ୟ ମନ୍ଦିରରେ ପୂଜିତ ବୋଲି ଗବେଷକମାନେ ବିଶ୍ୱାସ କରନ୍ତି । ଅତଏବ, ନାଗ ସଂସ୍କୃତି ହିଁ ଢେଙ୍କାନାଳର ଆଦି ସଂସ୍କୃତି । ପରବର୍ତ୍ତୀ ସମୟରେ ଶୈବ, ଶାକ୍ତ, ବୈଦିକ ଓ ବୈଷ୍ଣବ ପ୍ରଭୃତି ସଂସ୍କୃତିରର ପରିପ୍ରସାର ଘଟିଥିଲେ ହେଁ ନାଗ ସଂସ୍କୃତିର ମୌଳିକ ମୂଲ୍ୟବୋଧ ଏ ମାଟିରେ ଅକ୍ଷୁର୍ଣ୍ଣ ରହିଛି ।

❑

# ଭୌମକର ରାଜତ୍ୱରେ ଢେଙ୍କାନାଳ

ସପ୍ତମ ଶତାବ୍ଦୀରୁ ଓଡ଼ିଶାର ଭୌମକର ରାଜତ୍ୱର ଆରମ୍ଭ ହୋଇ ତିନି ଶହବର୍ଷ ପର୍ଯ୍ୟନ୍ତ ଏହା ବଳବତ୍ତର ରହିଲା । ଭୌମକରବଂଶ ରାଜା ଓ ରାଣୀବୃନ୍ଦ ଏହି ସମୟରେ ଓଡ଼ିଶାରେ ସୁଶାସନ ପ୍ରତିଷ୍ଠା କରିଥିଲେ । ସେମାନେ ସମଗ୍ର ଓଡ଼ିଶାକୁ ତୋଷଳ ନାମରେ ଶାସନ କରିଥିଲେ । ସେମାନଙ୍କ ରାଜଧାନୀ ଆଧୁନିକ ଯାଜପୁର ସନ୍ନିକଟ ଗୁହେଶ୍ୱର ପାଟକ ଥିଲେ ହେଁ ବିଭିନ୍ନ ଅଞ୍ଚଳର ମଣ୍ଡଳାଧିପତି ବୃନ୍ଦ ସେମାନଙ୍କ ଅଧୀନସ୍ଥ ସାମନ୍ତ ଥିଲେ । ଭୌମକର ଯୁଗରେ ଓଡ଼ିଶାର ବୌଦ୍ଧ ଓ ଶୈବ ସଂସ୍କୃତିର ଉତ୍ତରୋତ୍ତର ବିକାଶ ଘଟିବା ସହିତ ବୈଦିକ ସଂସ୍କୃତି ସହିତ ଏହାର ମହାମିଳନ ସଂଘଟିତ ହୋଇଥିଲା । ଏହି ବଂଶର ରାଜାମାନେ ବୌଦ୍ଧଧର୍ମର ପୃଷ୍ଠପୋଷକ ହୋଇଥିଲେ ହେଁ ରାଣୀମାନେ ବୈଦିକ ଓ ଶୈବ ଧର୍ମର ପୃଷ୍ଠପୋଷକ ଥିଲେ । ଏହି ସମୟରେ ସମଗ୍ର ଢେଙ୍କାନାଳ ଭୂଖଣ୍ଡଟି ଭୌମକର ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ଥାଇ ବିଭିନ୍ନ ମଣ୍ଡଳାଧିପତିଙ୍କ ଦ୍ୱାରା ଶାସିତ ହେଉଥିଲା । ସୂଚନାଯୋଗ୍ୟ ଯେ ଢେଙ୍କାନାଳ, ତାଳଚେର ଓ ଅନୁଗୁଳ ଅଞ୍ଚଳରୁ କେତେଗୁଡ଼ିଏ ଭୌମକରକାଳୀନ ତାମ୍ରପାତ୍ର ମିଳିଅଛି । ଏଥିରୁ ପ୍ରାମଣିତ ହୁଏ, ଢେଙ୍କାନାଳ ସମେତ ସମଗ୍ର ଭୂଖଣ୍ଡଟି ଭୌମକର ଶାସନାଧୀନ ଥିଲା ।

ତେରୁଣ୍ଡିଆ ତାମ୍ର ଶାସନ (Epigrohica Indiaca, Vol XX VIII page 215)ରୁ ଜଣାଯାଏ ଲକ୍ଷ୍ମୀଙ୍କର ଭୌମକର ବଂଶର ପ୍ରତିଷ୍ଠାତା ଥିଲେ । କିନ୍ତୁ ସେ ଢେଙ୍କାନାଳ ଅଞ୍ଚଳ ଅଧିକାର କରିଥିବାର କୌଣସି ତଥ୍ୟ ଉପଲବ୍ଧ ନୁହେଁ । ସେତେବେଳେ ଢେଙ୍କାନାଳର ବିଭିନ୍ନ ଅଞ୍ଚଳରେ ନାଗରାଜାମାନେ ରାଜତ୍ୱ କରୁଥିଲେ । କ୍ରମେ ଭୌମକର ବଂଶର ଆଧିପତ୍ୟ ବୃଦ୍ଧି ହୋଇ ନାଗରାଜାମାନଙ୍କର ପରାକ୍ରମର ହ୍ରାସ ଘଟିଲା । ଏହାର ମୁଖ୍ୟ କାରଣ ହେଉଛି, ଭୌମକର ଶାସନର ପ୍ରାରମ୍ଭରେ ଓଡ଼ିଶାରେ ବୌଦ୍ଧଧର୍ମର ପ୍ରାବଲ୍ୟ ବୃଦ୍ଧି ପାଇବା ସହିତ ଯାଜପୁର ଅଞ୍ଚଳର ରତ୍ନଗିରି, ଲଳିତଗିରି ଓ ପୁଷ୍ପଗିରି ପ୍ରଭୃତି ବୌଦ୍ଧବିହାର ବିଶ୍ୱ ପ୍ରସିଦ୍ଧ ଲାଭ କରିଥିଲା । ଏହି ସବୁ ବୌଦ୍ଧ ବିହାର ସହିତ ବ୍ରାହ୍ମଣୀ ନଦୀ ସଂଯୋଗରେ ଢେଙ୍କାନାଳର ବିଭିନ୍ନ ଅଞ୍ଚଳରେ ବୌଦ୍ଧଧର୍ମ ପ୍ରସାର ଲାଭ

କରିଥିଲା । ସଂଯୋଗ କ୍ରମେ ସୋନପୁରର ରାଜବଧୂ ଲକ୍ଷ୍ମୀଙ୍କରା, ସମଲର ରାଜା, ଇନ୍ଦ୍ରଭୂତି, ତଦୀୟ ପୁତ୍ର ପଦ୍ମ ସମ୍ଭବ ତଥା କେନ୍ଦୁଝରର ରାଜପୁତ୍ର ଶାନ୍ତରକ୍ଷିତ ବୌଦ୍ଧଧର୍ମରେ ନୂତନ ମତବାଦ ସୃଷ୍ଟି ପୂର୍ବକ ଏହାକୁ ବିଶେଷ ଲୋକପ୍ରିୟ କରିପାରିଥିଲେ । ପରିଣାମ ସ୍ୱରୂପ ସୋନପୁର, ଅନୁଗୁଳ, ତାଳଚେର, ଢେଙ୍କାନାଳ ଓ କେନ୍ଦୁଝର ଅଞ୍ଚଳରେ ବୌଦ୍ଧ ମତବାଦର ପ୍ରସାର ଘଟି ନାଗ ସଂସ୍କୃତି ଲୋକପ୍ରିୟତା ହରାଇଲା । ବ୍ରାହ୍ମଣୀ ନଦୀ ମାଧ୍ୟମରେ ଏହି ସବୁ ଅଞ୍ଚଳ ସହିତ ଯାଜପୁର ଅଞ୍ଚଳର ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ ହୋଇ ସମଗ୍ର ଭୂଖଣ୍ଡ ଗୋଟିଏ ସାଂସ୍କୃତିକ ପରିସୀମା ଅନ୍ତର୍ଭୁକ୍ତ ହେଲା । କ୍ରମେ ଭୌମକର ରାଜା ଓ ରାଣୀବୃନ୍ଦ ଢେଙ୍କାନାଳ ଅଞ୍ଚଳର ନାଗରାଜନ୍ୟ ବୃନ୍ଦଙ୍କୁ ପରାଜିତ କରି ସମଗ୍ର ଢେଙ୍କାନାଳ ଅଞ୍ଚଳଟିକୁ ଆପଣ ସାମ୍ରାଜ୍ୟଭୁକ୍ତ କରିନେଲେ ତଥା ଏହାର ମଧ୍ୟାଞ୍ଚଳରେ ଭୌମନଗରୀ ଦୁର୍ଗ ସ୍ଥାପନା କରିଥିଲେ, ଯାହାକି ପରବର୍ତ୍ତୀ କାଳରେ ଭୀମନଗରୀ ନାମରେ ଅଭିଲେଖ ଓ ସାହିତ୍ୟରେ ପରିଦୃଷ୍ଟ ।

ଜୟାଶ୍ରମ ବୌଦ୍ଧ ବିହାର ଓଡ଼ିଶାର ମଧ୍ୟାଞ୍ଚଳସ୍ଥିତ ବ୍ରାହ୍ମଣୀ ଅବବାହିକାରେ ଅବସ୍ଥିତ ଥିଲା । ସଂପ୍ରତି ଏହା ପଶ୍ଚିମେଶ୍ୱର ଶିବ ମନ୍ଦିର ନାମରେ ପରିଚିହ୍ନିତ । ଅଦ୍ୟାବଧି ମନ୍ଦିର ପରିସରରେ ଧ୍ୟାନୀ ବୁଦ୍ଧିମୂର୍ତ୍ତି ବିଦ୍ୟମାନ, ଯାହା ଉଦୟଗିରିରୁ ପ୍ରାପ୍ତ ବୃଦ୍ଧମୂର୍ତ୍ତି ସଦୃଶ ତଥା ସମକାଳୀନ (Dist-gazzetteer, Dhenkanal Page 49-50) । ପଶ୍ଚିମେଶ୍ୱରଙ୍କ ଶିବଲିଙ୍ଗ ଏକ ଭଗ୍ନ ବୌଦ୍ଧସ୍ତୂପ ସଦୃଶ ପ୍ରତୀୟମାନ । ମନ୍ଦିରର ପ୍ରବେଶ ପଥରେ ପୂଜିତ ନବଗ୍ରହମୂର୍ତ୍ତି ସିନ୍ଦୁର ଚର୍ଚ୍ଚିତ ହୋଇ ଅସ୍ପଷ୍ଟ ହେଲେ ହେଁ ବୌଦ୍ଧଦେବୀ ସଦୃଶ ରୂପ ଧାରଣ କରିଛନ୍ତି । ମନେହୁଏ ବୌଦ୍ଧଧର୍ମର ପତନ କାଳରେ ବିହାରଟିକୁ ଶିବ ମନ୍ଦିରରେ ରୂପାନ୍ତର କରାଯାଇଛି । ପୀଠଠାରୁ ବ୍ରାହ୍ମଣୀ ନଦୀର ଜଳାଧାର ପର୍ଯ୍ୟନ୍ତ ପାବଚ୍ଛ ବିଦ୍ୟମାନ । ନଦୀର ଅପରପାର୍ଶ୍ୱରେ ପ୍ରସ୍ତର ଦେହରେ ବିଶାଳ କ୍ଷୀରଶାୟୀ ବିଷ୍ଣୁ ପ୍ରତିମା ଅଙ୍କିତ । ଏହାକୁ ସରାଙ୍ଗସ୍ଥିତ ଅନନ୍ତଶୟନ ବିଷ୍ଣୁ ପ୍ରତିମା କୁହାଯାଉଛି । ଧ୍ୟାନୀ ବୁଦ୍ଧି ମୂର୍ତ୍ତିର ନିର୍ମାଣକାଳରୁ ଜଣାଯାଏ ସପ୍ତମ-ଅଷ୍ଟମ ଶତାବ୍ଦୀରେ ଜୟାଶ୍ରମ ବୌଦ୍ଧ ବିହାର ପ୍ରତିଷ୍ଠିତ ହୋଇଥିଲା । ଭୌମକର ରାଜା ତୃତୀୟ ଶିବକର ଦେବଙ୍କ ପ୍ରଦତ୍ତ ତାମ୍ରଶାସନ (Odisha under the Bhauma Kings, Page 32-44)ରୁ ପ୍ରମାଣିତ ହୁଏ ସେ ସାମନ୍ତରାଜା ବିନୀତ ତୁଙ୍ଗଙ୍କ ଅନୁରୋଧ କ୍ରମେ ପ୍ରସିଦ୍ଧ ସ୍ଥପତି ଅମୃତଚ୍ଛାରକଙ୍କ ଦ୍ୱାରା ନିର୍ମିତ ଏହି ବୌଦ୍ଧ ମୂର୍ତ୍ତିଙ୍କ ପୂଜା ସକାଶେ

ବିନୀତ ତୁଙ୍ଗ, କଲଣ ଗ୍ରାମ ଦାନ କରିଥିଲେ । ସୂଚନାଯୋଗ୍ୟ ଯେ ସେହି ସମୟରେ ଢେଙ୍କାନାଳ, ତାଳଚେର, ଅନୁଗୁଳ ଅଞ୍ଚଳ ଯାଜପୁରରେ ରାଜୁତି କରୁଥିବା ଭୌମରାଜା ଓ ରାଣୀମାନଙ୍କର ଶାସନାଧୀନ ଥିଲା ଏବଂ ସେମାନଙ୍କ ଅଧୀନରେ କୋଦାଳରେ ଶୁଲ୍କି ବଂଶ, ଯମଗର୍ଭ ମଣ୍ଡଳର ତୁଙ୍ଗ ବଂଶ ଜୟପୁରର ନନ୍ଦ ବଂଶ ପ୍ରଭୃତି ମଣ୍ଡଳାଧିପତି ବୃନ୍ଦ ଶାସନକାର୍ଯ୍ୟ ନିର୍ବାହ କରୁଥିଲେ । ପ୍ରୋକ୍ତ ତାମ୍ରଶାସନଟି ନବମ ଶତାବ୍ଦୀରେ ପ୍ରଦତ୍ତ ହୋଇଥିଲେ ହେଁ ତା'ର ବହୁପୂର୍ବରୁ ଜୟାଶ୍ରମ ବୌଦ୍ଧ ବିହାର ପ୍ରସିଦ୍ଧି ଲାଭ କରିଥିଲା । ସେହି ସମୟରେ ଢେଙ୍କାନାଳ ସମେତ ସମଗ୍ର ଓଡ଼ିଶାରେ ଶୈବ ସଂସ୍କୃତି ସହିତ ବୌଦ୍ଧ ସଂସ୍କୃତିର ମିଳନ ପର୍ବ ଆରମ୍ଭ ହୋଇଯାଇଥିଲା । ନବମ ଶତାବ୍ଦୀ ପୂର୍ବରୁ 'କୁଆଁଳୋର' ଅଷ୍ଟଶମ୍ଭୁ ମନ୍ଦିର ଏବଂ 'ସରାଙ୍ଗ'ର ଅନନ୍ତଶୟନ ବିଷ୍ଣୁ ପ୍ରତିମା ନିର୍ମାଣ ହୋଇଥିବାରୁ ହୃଦ୍‌ବୋଧ ହୁଏ ଯେ ବ୍ରାହ୍ମଣୀ ଅବବାହିକାରେ ସପ୍ତମ-ଅଷ୍ଟମ-ନବମ ଶତାବ୍ଦୀରେ ଶୈବ, ବୈଷ୍ଣବ ଓ ବୌଦ୍ଧ ସଂସ୍କୃତିର ମହାମିଳନ ଘଟି ଏକ ସମନ୍ୱୟାତ୍ମକ ସାଂସ୍କୃତିକ ଭାବଧାରା ପ୍ରବାହିତ ହୋଇଥିଲା । ପ୍ରଦତ୍ତ ତାମ୍ର ପତ୍ରରୁ ଜଣାଯାଏ, ଜୟାଶ୍ରମ ବୌଦ୍ଧ ବିହାର ଏକ ପ୍ରସିଦ୍ଧ ବୌଦ୍ଧ ପୀଠ, ସାଧନସ୍ଥଳୀ ତଥା ଶିକ୍ଷାକେନ୍ଦ୍ର ଥିଲା । ଏଠାରେ ବହୁ ସଂଖ୍ୟକ ବୌଦ୍ଧ ଭିକ୍ଷୁ ଓ ଭିକ୍ଷୁଣୀ ବାସ କରୁଥିଲେ । ଓଡ଼ିଶା ତଥା ଓଡ଼ିଶା ବାହାରେ ମହାଯାନ ଓ ସହଜଯାନ ପ୍ରସାର ନିମିତ୍ତ ଏହି ବିହାରର ଭୂମିକା ମହତ୍ତ୍ୱପୂର୍ଣ୍ଣ ଥିଲା । ଏଠାରେ ବୌଦ୍ଧ ତନ୍ତ୍ରଯାନର ଭିତ୍ତି ସ୍ଥାପନା ହୋଇଥିବା କେହି କେହି ମତପ୍ରଦାନ କରିଥାନ୍ତି । ଜୟାଶ୍ରମ ବୌଦ୍ଧ ବିହାରର ପଶ୍ଚିମରେ ବ୍ରାହ୍ମଣୀ ତଟରେ ପ୍ରାଚୀନ ବଜ୍ରକୋଟ ନଗରୀ ଅବସ୍ଥିତ । ସେଠାରେ ଥିବା ଭିଙ୍ଗେଶ୍ୱର ମନ୍ଦିର ସପ୍ତମ ଶତାବ୍ଦୀରେ ନିର୍ମିତ । ଜୟାଶ୍ରମ ବୌଦ୍ଧ ବିହାର ଓ ବଜ୍ରକୋଟର ମଧ୍ୟସ୍ଥଳରେ ବ୍ରାହ୍ମଣୀ ନଦୀ କୂଳରେ ସମଲ ନାମକ ଏକ ପ୍ରାଚୀନ ଗ୍ରାମ ମଧ୍ୟ ରହିଅଛି । ଏତାଦୃଶ ସ୍ଥିତିରେ ବଜ୍ରକୋଟ ବୌଦ୍ଧ ସାଧକ ବଜ୍ରଯାନୀ ଇନ୍ଦ୍ରଭୂତିଙ୍କ ସାଧନା ପୀଠ ଏବଂ ସମଲ ତାଙ୍କ ରାଜଧାନୀ ସମ୍ଭଲ ନଗରୀ ଥିବା ସମ୍ଭାବନାକୁ ଏଡ଼ାଇ ଦେଇହେବ ନାହିଁ । ଇନ୍ଦ୍ରଭୂତିଙ୍କର ସମ୍ଭଲ ରାଜ୍ୟ ମଧ୍ୟ କେନ୍ଦୁଝର ଓ ସୋନପୁର ମଝିରେ ଅବସ୍ଥିତ ଥିବା ପ୍ରସଙ୍ଗ ଗବେଷକମାନେ ସ୍ୱୀକାର କରିଯାଇଛନ୍ତି (ଦ୍ରଷ୍ଟବ୍ୟ-ଆଶ୍ଚର୍ଯ୍ୟ ଚର୍ଯ୍ୟଚୟ- ଡକ୍ଟର କରୁଣାକର ପୃ.୧୩) । ସମଲ ବଜ୍ରକୋଟ ଓ ଜୟାଶ୍ରମ ବିହାରର ସ୍ଥିତି ଠିକ୍ ସୋନପୁର ଓ କେନ୍ଦୁଝରର

ମଧ୍ୟ ଭାଗରେ ହୋଇଥିବାରୁ ବିଶ୍ୱାସ କରାଯାଏ ଢେଙ୍କାନାଳ ମାଟିରୁ ହିଁ ବୌଦ୍ଧ ଧର୍ମରେ ନୂତନ ମତବାଦର ଉନ୍ମେଷ ଘଟିଥିଲା ।

ଯାଜପୁରଠାରୁ ତାଳଚେର ପର୍ଯ୍ୟନ୍ତ ସମଗ୍ର ଭୂଖଣ୍ଡ ବ୍ରାହ୍ମଣୀ ନଦୀ ଦ୍ୱାରା ସଂଯୁକ୍ତ ହୋଇ ଗୋଟିଏ ସାଂସ୍କୃତିକ ଧାରା ପ୍ରବାହିତ ହେବାରୁ ଭୌମବଂଶର ନୃପତି ବୃନ୍ଦ ବ୍ରାହ୍ମଣୀ ତଟସ୍ଥ ଭୌମ ନଗରୀ ଠାରେ ଦ୍ୱିତୀୟ ରାଜଧାନୀ ସ୍ଥାପନା କରିଥିଲେ । ଢେଙ୍କାନାଳ ଠାରୁ ୩୦ କି.ମି. ପଶ୍ଚିମରେ ନାଧରା ରାମଚଣ୍ଡୀ ଓ ଧଳପୁର ଗ୍ରାମର ମଧ୍ୟ ଭାଗରେ ଅବସ୍ଥିତ ଏହି ଭୌମନଗରୀ ପରବର୍ତ୍ତୀ କାଳରେ ଭୀମନଗରୀ ଭାବରେ ବହୁକାଳ ପରିଚିହ୍ନିତ ହୋଇ ସଂପ୍ରତି ବିଧ୍ୱସ୍ତ ପ୍ରାୟ । ଢେଙ୍କାନାଳ ଇତିହାସରେ ଏହି ଭୀମନଗରୀକୁ ଦଣ୍ଡପାଟ ବା ଶାସନ ବିଭାଗର ଅଂଶ ବିଶେଷ ବୋଲି କୁହାଯାଇଛି । ସଂପ୍ରତି କେବଳ ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ଏଠାରେ ରହିଅଛି । ଢେଙ୍କାନାଳ, ଅନୁଗୁଳ ଓ ତାଳଚେରଠାରୁ ସମଦୂରରେ ଅବସ୍ଥିତ ଏହି ପ୍ରାଚୀନ ଦଣ୍ଡପାଟର ଶଙ୍କୁସ୍ଥାନ ବର୍ତ୍ତମାନ କୃଷି ଭୂମିରେ ରୂପାନ୍ତରିତ । ବହୁବର୍ଷ ପୂର୍ବେ ଏହି ସ୍ଥାନରୁ କେତେଗୁଡ଼ିଏ ପ୍ରାଚୀନ ରକ୍ତବର୍ଣ୍ଣ ମୃଣ୍ମୟ ପାତ୍ର, ଲୌହକଡ଼ି ଓ ପ୍ରାଚୀନ ମୁଦ୍ରା ମିଳିଥିଲା । ସେହି ମୁଦ୍ରାର ଅନେକାଂଶ ସ୍ଥାନୀୟ ବାସିନ୍ଦା ନେଇ ଯାଇଥିଲେ ହେଁ ଢେଙ୍କାନାଳର ତତ୍କାଳୀନ ରାଜା ସୁରପ୍ରତାପ କିଛି ସଂଗ୍ରହ କରି ୧୯୧୬ ମସିହା ମେ ମାସ ୩୧ ତାରିଖରେ ଇଂରେଜ ଛୋଟଲାଟଙ୍କ ନିକଟକୁ ପଠାଇଥିଲେ । ଏଥିରେ ପଚିଶ ପ୍ରକାର ମୁଦ୍ରା ଥିଲା ଏବଂ ସମସ୍ତ ମୁଦ୍ରା ଦିଲ୍ଲୀ ମୁସଲମାନ ଓ ମୋଗଲ ଶାସକଙ୍କ ନାମାଙ୍କିତ । କିନ୍ତୁ ତାହାର ବହୁ ପୂର୍ବରୁ ଭୌମ ନୃପତି ବୃନ୍ଦ ଏହି ନଗରୀ ପ୍ରତିଷ୍ଠା କରିଥିଲେ । ସେମାନଙ୍କ ପ୍ରଦତ୍ତ ତାମ୍ର ଶାସନ ଏହି ପ୍ରାଚୀନ ନଗରୀର ଚତୁଃପାର୍ଶ୍ୱ ଗ୍ରାମମାନଙ୍କରୁ ମିଳିଥିବାରୁ ପ୍ରମାଣିତ ହୁଏ ସପ୍ତମ, ଅଷ୍ଟମ ଶତାବ୍ଦୀରୁ ଏହି ଦୁର୍ଗ ପ୍ରତିଷ୍ଠିତ ।

ଢେଙ୍କାନାଳ, ଅନୁଗୁଳ ଓ ତାଳଚେର ଅଞ୍ଚଳରୁ ଭୌମକର ରାଜା ଓ ରାଣୀମାନଙ୍କର କେତେଗୁଡ଼ିଏ ତାମ୍ରଶାସନ ମିଳିଅଛି । ତନ୍ମଧ୍ୟରୁ ତୃତୀୟ ଶୁଭକର ଦେବଙ୍କ ହିନ୍ଦୋଳ ତାମ୍ର ଶାସନ, ପ୍ରଥମ ତ୍ରିଭୁବନ ମହାଦେବୀଙ୍କ ଢେଙ୍କାନାଳ ତାମ୍ର ଶାସନ, ଚତୁର୍ଥ ଶୁଭାକର ଦେବଙ୍କ ତାଳଚେର ତାମ୍ରଶାସନ, ତୃତୀୟ ଶିବକର ଦେବଙ୍କ ତାଳଚେର ତାମ୍ର ଶାସନ, ତୃତୀୟ ଶାନ୍ତିକର ଦେବଙ୍କ ତାଳଚେର ତାମ୍ରଶାସନ, ପଞ୍ଚମ ଶୁଭାକର ଦେବଙ୍କ 'ତଳତଳି' ତାମ୍ର ଶାସନ

ଏବଂ ଦଣ୍ଡୀ ମହାଦେବୀଙ୍କ ଶାନ୍ତିରା ଗ୍ରାମ ତ୍ରାମ ଶାସନ ବିଶେଷ ପ୍ରଣିଧାନ ଯୋଗ୍ୟ । ଏହି ତାମ୍ର ପାତ୍ର ସମୂହ ତତ୍‌କାଳୀନ ଶାସନ ପଦ୍ଧତିର ଜ୍ୱଳନ୍ତ ଉଦାହରଣ । ପ୍ରଦତ୍ତ ତାମ୍ର ଶାସନ ଗୁଡ଼ିକରେ ଭୌମକର ରାଜା ଓ ରାଣୀ ବୃନ୍ଦ ବୈଦିକାଚାର୍ଯ୍ୟ ଓ ଶୈବାଚର୍ଯ୍ୟଙ୍କୁ ଭୂସମ୍ପତ୍ତି ଦାନ କରିବାର ପ୍ରମାଣ ବିଦ୍ୟମାନ । ତୃତୀୟ ଶୁଭାକର ଦେବ ହିନ୍ଦୋଳ ତାମ୍ର ଶାସନରେ ପୁଳିନ୍ଦ ରାଜଙ୍କ ଅନୁରୋଧ କ୍ରମେ ବୈଦ୍ୟନାଥ ଭଟ୍ଟାରକଙ୍କ ପୂଜା ନିମିତ୍ତ 'ନୋଡ଼ିଲୋ' ନାମକ ଗ୍ରାମ ଦାନ କରିଥିଲେ (Orissa under Bhauma King Page 10) ତ୍ରିଭୁବନ ମହାଦେବୀଙ୍କ ପ୍ରଦତ୍ତ ତାମ୍ର ଶାସନରୁ ଜଣାଯାଏ ସେ ଭୌମ ନଗରୀରକିୟତ ଦୂରରେ ବ୍ରାହ୍ମଣୀ ନଦୀର ଅପର ପାର୍ଶ୍ୱରେ ସ୍ଥିତ କନ୍ତିଓ ଗ୍ରାମ ଜଗଦ୍ଧାର ଭଟ୍ଟଙ୍କୁ ଦାନ କରିଥିଲେ । ଏଥିରୁ ହୃଦ୍‌ବୋଧ ହୁଏ, ଭୌମକର ରାଜାରାଣୀ ବୃନ୍ଦ ବୌଦ୍ଧ ଧର୍ମ ସହିତ ବୈଦିକ ଓ ଶୈବଧର୍ମର ମଧ୍ୟ ପୃଷ୍ଟପୋଷକ ଥିଲେ । ସେହି ସମୟରେ ଜୟ ସିଂହ ନାମଧାରୀ ଅନ୍ୟ ଜଣେ ରାଜା ଯାଜପୁର ସନ୍ନିକଟ ମନ୍ଦାକିନୀ ନଦୀ କୂଳରୁ ବେଦାଧ୍ୟାୟୀ ମହେନ୍ଦ୍ର ସ୍ୱାମୀ ଓ ସ୍କନ୍ଦ ସ୍ୱାମୀଙ୍କୁ ଢେଙ୍କାନାଳର ଗୋଟିଏ ବ୍ରାହ୍ମଣ ଶାସନ ଦାନ କରିଥିଲେ । ସେହି ପ୍ରାଚୀନ ଶାସନଟି ବର୍ତ୍ତମାନର ବ୍ରାହ୍ମଣୀ ତଟସ୍ଥ ମାର୍ଥାପୁର ଶାସନ ବୋଲି ଅନୁମିତ ହୋଇଥାଏ ।

ବିଶ୍ୱପ୍ରସିଦ୍ଧ ପୁଷ୍ପଗିରି ବିହାର ଧର୍ମଶାଳାନ୍ତର୍ଗତ କାଏମା ପାହାଡ଼ ଉପରେ ଅବସ୍ଥିତ ଥିଲା । ଫଳରେ ବୌଦ୍ଧ ସାଧକ ବୃନ୍ଦ ଏଠାରେ ନିବାସ ପୂର୍ବକ ବ୍ରାହ୍ମଣୀ ନଦୀରେ ନୌକାରେ ଜୟାଶ୍ରମ ବିହାରକୁ ଯିବା ଆସିବା କରୁଥିଲେ । ତେଣୁ ବ୍ରାହ୍ମଣୀ କୂଳରେ ଅନେକ ସ୍ତୂପ ନିର୍ମାଣ କରାଯାଇଥିଲା । ତନ୍ମଧ୍ୟରେ ଭୁବନ ସନ୍ନିକଟ ବ୍ରାହ୍ମଣୀ ତଟ ବକୁଳ ବନରେ ଗୋଟିଏ ସ୍ତମ୍ଭ ପ୍ରତିଷ୍ଠା କରାଯାଇଥିଲା, ଯାହାକି ଶୈବ ସଂସ୍କୃତିର ଉତ୍ତରଣରେ ସଂପ୍ରତି ବୁଦ୍ଧେଶ୍ୱର ଶିବ ଲିଙ୍ଗ ରୂପେ ପରିଚିହ୍ନିତ । ଉଲ୍ଲେଖଯୋଗ୍ୟ ଯେ ଭୌମରାଣୀ ତ୍ରିଭୁବନ ମହାଦେବୀ ପ୍ରସିଦ୍ଧ ଭୁବନ ଗ୍ରାମ ବସାଇଥିଲେ ବୋଲି ପ୍ରବାଦ ରହିଛି । ପରବର୍ତ୍ତୀକାଳରେ ଭୁବନ ଗ୍ରାମ ବାର ଗୋଟି ରାଜସ୍ୱ ଗ୍ରାମ ରୂପେ ପରିଚିହ୍ନିତ ହୋଇ ବର୍ତ୍ତମାନ 'ଭୁବନ ବିଜ୍ଞପିତ ପରିଷଦ ଅଞ୍ଚଳ' ନାମରେ ଖ୍ୟାତ । ଅଷ୍ଟମ ଶତାବ୍ଦୀରେ ଏହି ଭୁବନ ସନ୍ନିକଟ ବ୍ରାହ୍ମଣୀ ତଟସ୍ଥ ପ୍ରାକୃତିକ ଶୋଭାମୟୀ ପୀଠରେ ବୌଦ୍ଧ ଭିକ୍ଷୁମାନେ ବୌଦ୍ଧ ସ୍ତମ୍ଭ ପ୍ରତିଷ୍ଠା କରିଥିଲେ । ଏତଦ୍‌ଭିନ୍ନ ବ୍ରାହ୍ମଣୀ କୂଳରେ ଅନ୍ୟାନ୍ୟ ବୌଦ୍ଧ

ଆଶ୍ରମ ସେ ସମୟରେ ପ୍ରତିଷ୍ଠିତ ହୋଇଥିଲେ ହେଁ କାଳର କରାଳ ନାତିରେ ସେ ସବୁ ଧ୍ୱଂସ ହୋଇଯାଇଛି ଏବଂ ସେଗୁଡ଼ିକର ଇତିହାସ ମଧ୍ୟ ଅନୁପଲବ୍ଧ ।

ଆଦିବାସୀ ମିଶ୍ର ସଂସ୍କୃତି ହିଁ ଢେଙ୍କାନାଳର ମୂଳ ସଂସ୍କୃତି । ପରବର୍ତ୍ତୀକାଳରେ ଶୈବ ସଂସ୍କୃତିର ମିଳନରେ ଏକ ସମନ୍ୱୟାତ୍ମକ ସାଂସ୍କୃତିକ ଧାରା ଏ ମାଟିରେ ପ୍ରବାହିତ ହୋଇଥିଲା । ବୌଦ୍ଧ ସଂସ୍କୃତିର ଅନୁପ୍ରବେଶ ଫଳରେ ଏହା ଜାତିଭେଦ ଶୂନ୍ୟତା ସ୍ପର୍ଶରେ ମାନବୀୟ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ ହେଲା । ଏ ମାଟିରେ ସେହି ସପ୍ତମ-ଅଷ୍ଟମ ଓ ନବମ ଶତାବ୍ଦୀରେ ବୌଦ୍ଧ ତନ୍ତ୍ରମତର ପ୍ରଚାର ଫଳରେ ଶକ୍ତିବାଦର ପ୍ରାବଲ୍ୟ ବୃଦ୍ଧି ହୋଇଥିଲା । ପରିଣାମରେ ଢେଙ୍କାନାଳର କୋଣେ ଅନୁକୋଣେ ଶକ୍ତି ଉପାସନାର ବ୍ୟାପକତା ଅନୁଭୂତ ହେଲା । ଭୂଖଣ୍ଡର ବିଭିନ୍ନ ପ୍ରାନ୍ତରେ ଭିନ୍ନ ଭିନ୍ନ ଦେବୀ ମୂର୍ତ୍ତି ପ୍ରତିଷ୍ଠିତ ହୋଇ ବିଭିନ୍ନ ପ୍ରକାର ଉପାସନା ଧାରା ପ୍ରବର୍ତ୍ତନ କରାଗଲା । ଏହି ସବୁ ଉପାସନା ପୀଠମାନଙ୍କ ମଧ୍ୟରେ କପିଳାସ ଓ ନାଧରା ହିନ୍ଦୁ ତନ୍ତ୍ରଧାରା ଅନ୍ତର୍ଭୁକ୍ତ ହୋଇଥିଲେ ହେଁ କୁଆଁଳୋ ଆଦିବାସୀ ତନ୍ତ୍ରଧାରା ରୂପେ ପ୍ରସିଦ୍ଧି ଲାଭ କଲା । କପିଳାସରେ ଚତୁର୍ଭୁଜା ପାର୍ବତୀ, ନାଧରାରେ ରାମଚଣ୍ଡୀ ଏବଂ କୁଆଳୋଠାରେ ସ୍ତମ୍ଭେଶ୍ୱରୀ ଉପାସିତା ହେଲେ । ଗୌରରେ କଥା, ସ୍ତମ୍ଭେଶ୍ୱରୀ ଆଦିବାସୀ ପୂଜିତା ହେଲେ ହେଁ ସ୍ତମ୍ଭ ରାଜନ୍ୟକୂଳଙ୍କ ଇଷ୍ଟଦେବୀର ମାନ୍ୟତା ଲାଭ କଲେ । ତତ୍‌ସହିତ ଶୁଦ୍ଧ ହିନ୍ଦୁ ତନ୍ତ୍ରାରାଧ୍ୟା କନକ ଦୁର୍ଗା କୁଆଁଳୋଠାରେ ପ୍ରତିଷ୍ଠିତା ହେଲେ । ଏହି ତିନିଗୋଟି ଶକ୍ତି ପୀଠକୁ କେନ୍ଦ୍ରକରି ସମଗ୍ର ଢେଙ୍କାନାଳ ଭୂଖଣ୍ଡରେ ଶାକ୍ତଧାରା ପ୍ରବାହିତ ହେବାକୁ ଲାଗିଲା । ମହନୀୟତା ହେଉଛି, ଆଦିବାସୀ, ନାଗ, ବୌଦ୍ଧ ଓ ଶୈବ ସଂସ୍କୃତିର ସମନ୍ୱୟ ଧାରାରେ ଶାକ୍ତ ସଂସ୍କୃତି, ସମ୍ମିଳିତ ହୋଇ ଏକ ଦିବ୍ୟ ସାଂସ୍କୃତିକ ଧାରାରେ ଏ ମାଟି ପ୍ଳାବିତ ହେଲା । ଠିକ୍, ଏହି ସମୟରେ ସରଙ୍ଗଠାରେ ଓ ଭୀମକାଣ୍ଡଠାରେ ବିଶାଳ ବିଷ୍ଣୁ ପ୍ରତିମା ନିର୍ମାଣ କରାଯାଇ ବୈଷ୍ଣବ ସଂସ୍କୃତିର ପ୍ରସାର ପ୍ରଚେଷ୍ଟା କରାଗଲା । ମୋଟ ଉପରେ କହିଲେ, ସପ୍ତମ-ଅଷ୍ଟମ ଓ ନବମୀ ଶତାବ୍ଦୀ ଥିଲା ଢେଙ୍କାନାଳର ସାଂସ୍କୃତିକ ସୁବର୍ଣ୍ଣ ଯୁଗ । ସେହି ସମୟରେ ଏହି ମାଟିରେ ସକଳ ସଂସ୍କୃତିର ସମନ୍ୱୟ ସୂଚକ ଦିବ୍ୟଧାରା ପ୍ରବାହିତ ହୋଇ ଭିନ୍ନ ଭିନ୍ନ ସଂପ୍ରଦାୟର ଅଧିବାସୀଙ୍କ ମାନସରେ ସମନ୍ୱୟ ଚେତନା ସୃଷ୍ଟି ହୋଇଥିଲା ।

ଭୌମ ରାଜତ୍ୱରେ ଢେଙ୍କାନାଳର ଶାସନ ପ୍ରଣାଳୀ ଉଚ୍ଚକୋଟୀର ଥିଲା । ଭୌମରାଜନ୍ୟ ବୃନ୍ଦ ଯାଜପୁର ଠାରେ ନିବାସ କରୁଥିଲେ ହେଁ କୋଦାଳକ ଓ କରମୂଳର ମଣ୍ଡଳାଧିପତି ପ୍ରକୃତ ଶାସନ କରୁଥିଲେ । ତତ୍‌କାଳୀନ ଅଭିଲେଖମାନଙ୍କରୁ ଜଣାଯାଏ ସେତେବେଳେ ଢେଙ୍କାନାଳରେ ବିଭିନ୍ନ ଗ୍ରାମମାନଙ୍କରେ ବ୍ରାହ୍ମଣ, ଗୋପାଳ ଓଡ଼ଚଷା, ତନ୍ତୀ, ଶୁଣ୍ଢି ପ୍ରଭୃତି ବିଭିନ୍ନ ପାଟକ ଏକତ୍ର ନିବାସ କରୁଥିଲେ । ପ୍ରଜାମାନଙ୍କ ଠାରୁ କର ଆଦାୟ କରାଯାଉଥିଲା । ତାମ୍ର ଶାସନ ବର୍ଣ୍ଣିତ ଗ୍ରାମ ଚତୁଃ ସୀମାରୁ ଜଣାଯାଏ, ଭୂବନ୍ଦୋବସ୍ତ ପ୍ରଚଳନ ଥିଲା । କେତେକ ଗ୍ରାମକୁ ନେଇ ବିଷୟ ବା ଖଣ୍ଡ ଏବଂ କେତେଗୁଡ଼ିଏ ବିଷୟ ବା ଖଣ୍ଡର ସମ୍ମିଶ୍ରଣରେ ମଣ୍ଡଳ ହେଉଥିଲା । ଢେଙ୍କାନାଳର ତତ୍‌କାଳୀନ ଗୋଇଲୋ ବିଷ, କୋଙ୍କୁଳ ଖଣ୍ଡ, ତାଲଚେର ଖଣ୍ଡ ତଥା କୋଦାଳ, ଯମଗର୍ତ୍ତ ଓ କରମୂଳ ମଣ୍ଡଳ ସୁପ୍ରସିଦ୍ଧ ଥିଲା । ମହାରାଜା, ରାଜା, ସାମନ୍ତ, କୁମାର, ଅମାତ୍ୟ, ବିଷୟକ, ଆୟୁକ୍ତ, ଦଣ୍ଡ ପାଶିକ, ଚାଟ ଓ ଭାଟ ପ୍ରଭୃତି ରାଜ ପଦବୀ ଓ କର୍ମଚାରୀ ପଦବୀ ରହିଥିଲା । ଏଥିରୁ ହୃଦ୍‌ବୋଧ ତତ୍‌କାଳୀନ ଶାସନ ପଦ୍ଧତି ଶାସ୍ତ୍ରାନୁମୋଦିତ ଥିଲା । ରାଜ୍ୟରେ ଦେବତା, ସନ୍ନ୍ୟାସୀ, ଜ୍ଞାନୀ ଓ ଗୁଣୀ ଲୋକଙ୍କର ଆଦର ରହିଥିଲା । ତାମ୍ର ଶାସନ ବର୍ଣ୍ଣିତ ଶବ୍ଦମାନଙ୍କରୁ ପ୍ରମାଣିତ ହୁଏ, ସେହି ସମୟରେ ଲିଖିତ ଓଡ଼ିଆ ଭାଷା ନଥିଲେ ହେଁ କଥିତ ଓଡ଼ିଆ ଭାଷାର ପ୍ରଚଳନ ଥିଲା । ବିଶେଷତଃ, ସୋନପୁର ଢେଙ୍କାନାଳ ଓ କେନ୍ଦୁଝର ସିଦ୍ଧାଚାର୍ଯ୍ୟଙ୍କର ଚାରଣ ଭୂମି ଥିବାରୁ ଏହି ଭୂଖଣ୍ଡକୁ ଓଡ଼ିଆ ଭାଷାର ଆଦି ପୀଠ ମାନ୍ୟତା ଦେବା ସମୀଚୀନ । ଏହି ମାଟିରେ ରଚିତ ବୌଦ୍ଧଗାନ ଓ ଦୋହା ପ୍ରଥମ ଲିଖିତ ଓଡ଼ିଆ ସାହିତ୍ୟ ରୂପେ ମହିମାବନ୍ତ ।

ପୂର୍ବୋକ୍ତ ଭୌମ ନଗରୀରେ ଭୌମକର ରାଜରାଣୀ ବୃନ୍ଦ ସାମୟିକ ନିବାସ କରୁଥିଲେ । ଗୁହେଶ୍ୱର ପାଟକ ବା ଯାଜପୁର ନିବାସ କାଳରେ ସେମାନଙ୍କର ଇଷ୍ଟ ଥିଲେ ବିରଜା ଏବଂ ଭୌମନଗରୀ ବାସକାଳରେ ସେମାନଙ୍କର ଇଷ୍ଟଦେବୀ ଥିଲେ ନାଧରାସ୍ଥିତ ରାମଚଣ୍ଡୀ । ଏହି ରାମଚଣ୍ଡୀ ହେଉଛନ୍ତି ପୁରାଣ ବର୍ଣ୍ଣିତ ଭୀମାଦେବୀ । ଦେବୀ ମୂର୍ତ୍ତି ପ୍ରକୃତରେ ମହିଷାମର୍ଦ୍ଦିନୀ ଅଷ୍ଟଭୂଜା ଦୁର୍ଗା । ଦେବୀ ପୁରାଣରେ ଉଲ୍ଲେଖ ଅଛି, ଚତୁର୍ଭୁଜା ଦୁର୍ଗା ପ୍ରଚଣ୍ଡ ଭାବ ଧାରଣ କଲେ ଭୀମା ଆଖ୍ୟା ଧାରଣ ପୂର୍ବକ ଅଷ୍ଟଭୁଜା ହୋଇଥାନ୍ତି । ଜଗଜ୍ଜନନୀ ଶ୍ରୀମୁଖରେ କହିଛନ୍ତି, ''ଭୀମା ଦେବୀତ ବିଖ୍ୟାତଂ ତନ୍ମେ ନାମ

ଭବିଷ୍ୟତି ।'' ଦେବୀଙ୍କୁ ପ୍ରତିଷ୍ଠା ପୂର୍ବକ ମନ୍ଦିର ନିର୍ମାଣ ସମୟରେ ପାର୍ଶ୍ୱ ଦେବତା ଭାବରେ ଗଣେଶ, କାର୍ତ୍ତିକେୟ ଓ ନୃସିଂହଙ୍କ ବିଗ୍ରହ ସ୍ଥାପନା କରାଗଲା । ମହନୀୟତା ହେଉଛି, ଭୌମବଂଶ କର୍ତ୍ତୃକ ଏହି ଦେବୀ ମୂର୍ତ୍ତି ପୌରାଣିକ ପରମ୍ପରାରେ ଧ୍ୟାନ ଅନୁଯାୟୀ ନିର୍ମିତ ।

ସଦ୍ୟୋଭିନ୍ନଜଙ୍ଘନାଭାଂ ହରିମହିଷଯୁଗନ୍ୟସ୍ତପାଦାନ୍ନ ଯୁଗ୍ମଂ
ଦକ୍ଷେ ଖଡ୍ଗଦଧାନା ମିଷୁଧିଶରଚୟାଦେକ ମାକର୍ଷୟନ୍ତୀମ୍ ।
ଚକ୍ରଂ ଶୂଳଂ ତୁ ବାମେ ପରଶୁମଥଧନୁ ର୍ନାଗପଞ୍ଚୀଶହସ୍ତାମ୍
ଶ୍ରୀ ରାମାର୍ଚ୍ଚାଙ୍ଘ୍ରିଂ ଯୁଗ୍ମାଂ ଭବଭୟଶମନୀଂ ରାମଚଣ୍ଡୀଂ ଭଜାମି ।



# ଢେଙ୍କାନାଳରେ ଶୁକ୍ଳୀ ସାମ୍ରାଜ୍ୟ

ଭୌମକର ରାଜା ଓ ରାଣୀବୃନ୍ଦ ସପ୍ତମ ଶତାବ୍ଦୀ ଠାରୁ ଦଶମ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ ବିଶାଳ ଓଡ଼ିଶାକୁ ଉତ୍ତର ତୋଷଳ ଓ ଦକ୍ଷିଣ ତୋଷଳ ଦୁଇଭାଗରେ ବିଭକ୍ତ କରି ଶାସନ କରିଥିଲେ । ଗବେଷକଙ୍କ ମଧ୍ୟରେ ସେମାନଙ୍କ ରାଜ୍ୟ ବଙ୍ଗଦେଶ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ଢେଙ୍କାନାଳ, ଅନୁଗୁଳ ଓ ତାଳଚେର ଅଞ୍ଚଳ ଭୌମ ସାମ୍ରାଜ୍ୟର ପଶ୍ଚିମାଞ୍ଚଳରେ ଅବସ୍ଥିତ ଥାଇ ଉତ୍ତର ତୋଷଳ ଅନ୍ତର୍ଭୁକ୍ତ ଥିଲା । ଭୌମ ସମ୍ରାଟ୍ ବ୍ରାହ୍ମଣୀ କୂଳରେ ଭୌମନଗରୀ ସ୍ଥାପନା ପ୍ରସଙ୍ଗ ପୂର୍ବରୁ ବର୍ଣ୍ଣିତ । ଏହି ଭୌମରାଜାଙ୍କ ଅଧୀନରେ ବହୁ ମଣ୍ଡଳାଧିପତି ଥିଲେ । ତନ୍ମଧ୍ୟରୁ ଢେଙ୍କାନାଳ ଅଞ୍ଚଳ କୋଦାଳକ, କରମୂଳ ଓ ଯମଗର୍ତ୍ତ ମଣ୍ଡଳାଧୀନ ଥିଲା । ଏହି ମଣ୍ଡଳତ୍ରୟ ମଧ୍ୟରେ କୋଦାଳକ ମଣ୍ଡଳ ସୁବିସ୍ତୃତ ମଣ୍ଡଳ ଥିଲା । ଏହି କୋଦାଳକ ମଣ୍ଡଳରେ ଶୁକ୍ଳୀ ବଂଶୀ ସ୍ତମ୍ଭ ସଞ୍ଜ୍ଞାଧାରୀ ରାଜନ୍ୟବୃନ୍ଦ ମଣ୍ଡଳାଧିପତି ଭାବରେ ଶାସନ କରୁଥିଲେ । ଇତିହାସ ଅନୁଧ୍ୟାନରୁ ଜଣାଯାଏ କୋଦାଳକ ମଣ୍ଡଳର ସ୍ତମ୍ଭବଂଶୀ ବୃନ୍ଦ ପ୍ରବଳ ପ୍ରତାପୀ ଥାଇ କରମୂଳ ଓ ଯମଗର୍ତ୍ତ ମଣ୍ଡଳକୁ ମଧ୍ୟ ଅଧୀନସ୍ଥ କରିଥିଲେ । କେତେକଙ୍କ ମଧ୍ୟରେ, ସମୟକ୍ରମେ ସେମାନେ ନିଜକୁ ସ୍ୱାଧୀନ ରାଜା ଭାବେ ଘୋଷଣା ପୂର୍ବକ ବଙ୍ଗ ଦେଶ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । ସଂପ୍ରତି, ଏହି ପ୍ରସିଦ୍ଧ ରାଜବଂଶର ରାଜଧାନୀ ଏକ ବିଧ୍ୱଂସ୍ତ ନଗରୀ ଭାବ ଢେଙ୍କାନାଳ ଜିଲ୍ଲାରେ ପରଜଙ୍ଗଥାନା କୁଆଁଳୋ ଗ୍ରାମ ରୂପେ ପରିଚିହ୍ନିତ ।

କୋଦାଳକର ସ୍ତମ୍ଭ ରାଜନ୍ୟ ବର୍ଗ ଶୁକ୍ଳୀ ବଂଶୀ ବା ପ୍ରାଚୀନ ଶୋଲାଙ୍କୀ ବଂଶୀ ବୋଲି ଐତିହାସିକମାନେ ମତ ପ୍ରକାଶ କରିଥାନ୍ତି । ଏହି ବଂଶକୁ ଚାଲୁକ୍ୟ ବଂଶ ମଧ୍ୟ କୁହାଯାଏ । ସୂଚନାଯୋଗ୍ୟ ଯେ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ, ଶ୍ରୀଯୁକ୍ତ ବିଜୟ ଚନ୍ଦ୍ର ମଜୁମ୍ଦାର, ରାଖାଲ ଚନ୍ଦ୍ର ବାନାର୍ଜୀ, ନଗେନ୍ଦ୍ରନାଥ ବସୁ, ମନେମୋହନ ଚକ୍ରବର୍ତ୍ତୀ ପ୍ରଭୃତି ବିଜ୍ଞବୃନ୍ଦ ଏହି ବଂଶ ରାଜନ୍ୟ ବୃନ୍ଦଙ୍କ ଉପରେ ବିଭିନ୍ନ ମତପୋଷଣ ପୂର୍ବକ ମେଦିନୀପୁର ନିକଟରେ ଥିବା ଶୁକଳୀମାନଙ୍କଠାରୁ ସେମାନଙ୍କର କୁଳଗ୍ରନ୍ଥ ଉଦ୍ଧାର କରିଛନ୍ତି । ଗବେଷକମାନଙ୍କ ମତରେ ଏହି ବଂଶରେ ପ୍ରସିଦ୍ଧ ବୀର ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଓ ଶାଳୀବାହନଙ୍କ ଜନ୍ମ ।

ଏହି ବଂଶର ବହୁ ରାଜା ବିକ୍ରମାଦିତ୍ୟ ଉପାଧି ଧାରଣ କରିଥିଲେ । ସେହି ବଂଶର ଏକ ଶାଖା ବ୍ରାହ୍ମଣୀ ଅବବାହିକାର କୋଦାଳକ (ଅଧୁନା କୁଆଁଳୋ ନାମେ ପରିଚିତ) ନଗରୀଠାରେ ରାଜଧାନୀ ସ୍ଥାପନ ପୂର୍ବକ କିଛି କାଳ ସ୍ୱାଧୀନ ରାଜା ରୂପେ ଏବଂ କିଛିକାଳ ଭୌମକର ବଂଶ ର ସାମନ୍ତ ରାଜା ଭାବେ ରାଜତ୍ୱ କରିଥିଲେ । ଢେଙ୍କାନାଳ, ହିନ୍ଦୋଳ, ତାଳଚେର ଓ ଅନୁଗୁଳ ଅଞ୍ଚଳରେ ରାଜତ୍ୱ କରୁଥିବା ଶୁଳ୍କୀ ରାଜନ୍ୟ ବୃନ୍ଦ ରାଣକ, ମହାରାଜା, ମହାରାଜାଧିରାଜ ପ୍ରଭୃତି ଉପାଧି ବ୍ୟବହାର କରୁଥିବା ସେମାନଙ୍କ ପ୍ରଦତ୍ତ ତାମ୍ରଶାସନରୁ ଉପଲବ୍ଧି ହୋଇଥାଏ । ଏହି ବଂଶୋଦ୍ଭବ ରଣ ସ୍ତମ୍ଭଙ୍କର 'ଜରାଗ୍ରାମ ତାମ୍ରଶାସନ' (J.B.O.R.S. Vol IV P-168-71)ରୁ ଜଣାଯାଏ ଶୁଳ୍‌କୀ ସାମ୍ରାଜ୍ୟ ବଙ୍ଗଦେଶ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏଥିରୁ ପ୍ରମାଣିତ ହୁଏ, ଶୁଳ୍‌କୀମାନେ ଭୌମକର ରାଜବଂଶର ଅଧୀନସ୍ଥ ଥିଲେ ହେଁ କେତେକ କାଳ ସ୍ୱାଧୀନ ଭାବରେ ରାଜତ୍ୱ କରି ରାଜ୍ୟର ସୀମା ବଙ୍ଗଦେଶ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ମଧ୍ୟ ପ୍ରଦେଶସ୍ଥ ମାସେର ଗ୍ରାମ ଶିଳାଲେଖ । (E.I. Vol XX IX P 18)ରୁ ଜଣାଯାଏ ଶୁଳ୍କୀମାନେ ମଧ୍ୟ ମଧ୍ୟଭାରତରେ ରାଜତ୍ୱ କରୁଥିଲେ । ପ୍ରମାଣିତ ହୁଏ, ପଶ୍ଚିମ ଭାରତରୁ ମୁସଲମାନମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ଶୁଳ୍‌କୀମାନେ ମଧ୍ୟ ଭାରତ ଓ ପୂର୍ବଭାରତ ଅଧିକାର ପୂର୍ବକ କୋଦାଳକ ନଗରୀରେ ରାଜଧାନୀ ସ୍ଥାପନ କରିଥିଲେ ଏବଂ ପରବର୍ତ୍ତୀ କାଳରେ ଭୌମକରମାନଙ୍କ ଦ୍ୱାରା ପରାଜିତ ହୋଇ ସାମନ୍ତ ପଦବୀ ଧାରଣ କରିଥିଲେ ।

ବର୍ତ୍ତମାନ ସୁଦ୍ଧା ଏହି ବଂଶର ୯ ଗୋଟି ତାମ୍ରଶାସନ ମିଳିଅଛି । ସେଗୁଡ଼ିକ ହେଉଛି ଜୟ ସ୍ତମ୍ଭଙ୍କର ଲୋଳପୁର ତାମ୍ରଶାସନ (J.B.O.R.S. Vol II P-409-12), ଜୟସ୍ତମ୍ଭଙ୍କର ଶିଙ୍ଗ ମଣ୍ଡଳ ତାମ୍ରଶାସନ (J.B.O.R.S. Vol II P-412-17) ଜୟସ୍ତମ୍ଭଙ୍କର ଚନ୍ଦ୍ରପୁର ତାମ୍ରଶାସନ (J.B.O.R.S. Vol II P-405-409) ରଣସ୍ତମ୍ଭଙ୍କର କୋଲାମୋକା ତାମ୍ରଶାସନ (J.B.O.R.S. Vol II P-396-400) ରଣସ୍ତମ୍ଭଙ୍କର ହିନ୍ଦୋଳ ତାମ୍ରଶାସନ (E.I. Vol XX VIII) ରଣସ୍ତମ୍ଭଙ୍କର ଢେଙ୍କାନାଳ ତାମ୍ରଶାସନ (J.B.O.R.S. Vol IV P-151-57) କୁଳସ୍ତମ୍ଭଙ୍କର ଝରବରା ତାମ୍ରଶାସନ (J.B.O.R.S. Vol IV P-151-52) କୁଳ ସ୍ତମ୍ଭଙ୍କର ତାଳଚେର ତାମ୍ରଶାସନ (E.I. Vol XII P- 156-58) ଏବଂ ରଣସ୍ତମ୍ଭଙ୍କର ପୁରୀ ତାମ୍ରଶାସନ (J.A.S.B. Vol LXIV P-123-27) । ଏହି ତାମ୍ରଶାସନ ମଧ୍ୟରୁ

ଅଧିକାଂଶ ଢେଙ୍କାନାଳ ଜିଲ୍ଲାର ସାଆନ୍ଦା, ପାଟରପଦା, କନ୍ଦର ସିଂହା, ଚାନ୍ଦପୁର, ଶ୍ରୀମୂଳା ପ୍ରଭୃତି ଗ୍ରାମମାନଙ୍କରୁ ତଥା ତାଳଚେର ଓ ହିନ୍ଦୋଳରୁ ପ୍ରାପ୍ତ ହୋଇଥିଲା । ପରବର୍ତ୍ତୀକାଳରେ ପୁରୀରୁ ଏହି ବଂଶର ଅନ୍ୟଗୋଟିଏ ତାମ୍ରଶାସନ ପ୍ରାପ୍ତ ହୋଇଅଛି । ଉଲ୍ଲେଖଯୋଗ୍ୟ ଯେ, ଢେଙ୍କାନାଳ, ତାଳଚେର, ଅନୁଗୁଳ ଓ ହିନ୍ଦୋଳ ଅଞ୍ଚଳରୁ ସେହି ସମୟର କେତେଗୋଟି ଭୌମକର ରାଜା ତଥା ରାଣୀମାନଙ୍କର ତାମ୍ରଶାସନ ମିଳିଅଛି । ତନ୍ମଧ୍ୟରେ ତୃତୀୟ ଶୁଭାକର ଦେବଙ୍କ ହିନ୍ଦୋଳ ତାମ୍ରଶାସନ, ପ୍ରଥମ ତ୍ରିଭୁବନ ମହାଦେବୀଙ୍କ ଢେଙ୍କାନାଳ ତାମ୍ରଶାସନ ଓ ହିନ୍ଦୋଳ ତାମ୍ରଶାସନ, ଚତୁର୍ଥ ଶୁଭାକର ଦେବଙ୍କ ତାଳଚେର ତାମ୍ରଶାସନ, ତୃତୀୟ ଶିବକର ଦେବଙ୍କ ତାଳଚେର ତାମ୍ରଶାସନ, ତୃତୀୟ ଶାନ୍ତିକର ଦେବଙ୍କ ତାଳଚେର ତାମ୍ରଶାସନ, ପଞ୍ଚମ ଶୁଭାକର ଦେବଙ୍କ ତଳତଳି ତାମ୍ରଶାସନ ଓ ଧର୍ମ ମହାଦେବୀଙ୍କ ତଳତଳି ତାମ୍ରଶାସନ ବିଶେଷ ପ୍ରଣିଧାନ ଯୋଗ୍ୟ । ଶୁଲ୍କୀବଂଶ ଓ ଭୌମକର ବଂଶରେ ଏହି ସବୁ ତାମ୍ରଶାସନ ବିଧିବଦ୍ଧ ଗବେଷଣାତ୍ମକ ଆଲୋଚନା କରାଯାଇ ନଥିଲେ ହେଁ ବିଭିନ୍ନ ଐତିହାସିକ ଓ ଗବେଷକଙ୍କ ଦ୍ୱାରା ସୂଚନାତ୍ମକ ଅଧ୍ୟୟନ କରାଯାଇ ଓଡ଼ିଆ ଇତିହାସ ତଥା ଢେଙ୍କାନାଳର ଐତିହ୍ୟ ସଂପର୍କରେ ବହୁ ଅଜ୍ଞାତ ତଥ୍ୟ ଲୋକଲୋଚନକୁ ଆସିପାରିଛି ।

ଶୁଲ୍‌କୀମାନଙ୍କର ରାଜଧାନୀ କୋଦାଳକ ନଗରୀ ଢେଙ୍କାନାଳ ଜିଲ୍ଲାର କାମାଖ୍ୟାନଗର ଉପଖଣ୍ଡସ୍ଥ ପରଜଙ୍ଗ ଥାନା କୁଆଁଲୋ ଗ୍ରାମରେ ଅବସ୍ଥିତ ଥିଲା । ଏଠାରେ ବର୍ତ୍ତମାନ ପ୍ରାଚୀନ ଅଷ୍ଟଶମ୍ଭୁ ପୀଠ, ସ୍ତମ୍ଭେଶ୍ୱରୀ ପୀଠ ଓ ବହୁ ପ୍ରାଚୀନ ପୁଷ୍କରିଣୀର ଭଗ୍ନାବଶେଷ ଦୃଷ୍ଟିଗୋଚର ହୋଇଥାଏ । ଶୁଲ୍‌କୀ ରାଜନ୍ୟବୃନ୍ଦ ସଠିକ୍ କେତେକାଳ ଏଠାରେ ରାଜତ୍ୱ କରିଥିଲେ ତାହା ଅଦ୍ୟାବଧି ନିର୍ଣ୍ଣୟ କରାଯାଇପାରି ନାହିଁ । କେବଳ ସେମାନଙ୍କ ମଧ୍ୟରୁ ପାଞ୍ଚ ପୁରୁଷର ଇତିହାସ ଉପଲବ୍ଧ । ସେହି ପାଞ୍ଚଜଣ ଶୁଲ୍‌କୀ ରାଜା ହେଉଛନ୍ତି କାଞ୍ଚନ ସ୍ତମ୍ଭ, କଳହ ସ୍ତମ୍ଭ (ବିକ୍ରମାଦିତ୍ୟ), ରଣସ୍ତମ୍ଭ ବା କୁଳସ୍ତମ୍ଭ, ଜୟସ୍ତମ୍ଭ (ମହାରାଜାଧିରାଜ) ଏବଂ କୁଳସ୍ତମ୍ଭ (ମହାରାଜା) । ରଣସ୍ତମ୍ଭଙ୍କ ପ୍ରଦତ୍ତ ତାଳଚେର ତାମ୍ରଶାସନରେ ଭୌମକର ସମ୍ବତ୍ ୧୦୩ ଉଲ୍ଲିଖିତ ଥିବାରୁ ହୃଦ୍‌ବୋଧ ହୁଏ ସେ ୮୩୯-୪୩ ଖ୍ରୀଷ୍ଟାବ୍ଦରେ ଭୌମକର ରାଜାଙ୍କ ଅଧୀନରେ ରାଜୁତି କରୁଥିଲେ । ରଣସ୍ତମ୍ଭ ହେଉଛନ୍ତି ୩ୟ ରାଜା ଅର୍ଥାତ୍ ପ୍ରଥମ ରାଜା କାଞ୍ଚନ ସ୍ତମ୍ଭ ଆନୁମାନିକ ସପ୍ତମ ଶତାବ୍ଦୀର ଶେଷ ଭାଗରେ ରାଜୁତି କରୁଥିବା ବ୍ୟକ୍ତି କହଯାଇପାରେ । ପ୍ରାମାଣିତ ହେଉଛି

ଭୌମକର ବଂଶର ଉନ୍ମେଷ କାଳରେ ଏହି ରାଜବଂଶର ଉନ୍ମେଷ ଘଟିଥିଲା ତଥା ଭୌମକର ରାଜନ୍ୟ ବୃନ୍ଦଙ୍କ ସମତାଳରେ ଶୁଲ୍‌କୀ ରାଜନ୍ୟବୃନ୍ଦଙ୍କର ମଧ ଉତ୍ତରୋତ୍ତର ଅଭିବୃଦ୍ଧି ଘଟିଥିଲା । କାଞ୍ଚନ ସ୍ତମ୍ଭଙ୍କ ଠାରୁ ଏହି ବଂଶର ଇତିହାସ ଉପଲବ୍‌ଧି ହୋଇଥାଏ, ଅଥଚ ସେ କେତେ ବର୍ଷ ରାଜତ୍ୱ କରିଥିଲେ ତାହ ନିର୍ଣ୍ଣୟ କରଯାଇପାରି ନାହିଁ । ତୃତୀୟ ପୁତ୍ର ମହାପରାକ୍ରମୀ କଳହସ୍ତମ୍ଭ ଭୌମକରମାନଙ୍କ ଅଧୀନସ୍ଥ ଥିଲେ ହେଁ ବିକ୍ରମାଦିତ୍ୟ ଉପାଧି ଧାରଣ କରିଥିଲେ । ତାଙ୍କ ପୁତ୍ର ରଣସ୍ତମ୍ଭ, ନିଦୟସ୍ତମ୍ଭ ଓ ଅଲାନସ୍ତମ୍ଭ ନାମରେ ପରିଚିତ ଥିଲେ । ସେ ମଧ ଭୌମକର ବଂଶ ରାଜା କୁସୁମହାର ବା ତୃତୀୟ ଶୁଭାକରଦେବଙ୍କ ଅଧୀନସ୍ଥ ଥିଲେ । ଶେଷରାଜା ଜୟସ୍ତମ୍ଭ ମହାରାଜାଧି ରାଜ ଉପାଧିରେ ଭୂଷିତ ଥିଲେ ।

ପ୍ରାପ୍ତ ତାମ୍ରଶାସନରୁ ପ୍ରମାଣିତ ହୁଏ କୋଦାଳକ ନଗରୀ ଏକ ମନ୍ଦିରମୟୀ ନଗରୀ ଥିଲା । ଏହି ନଗରୀର ନଭଶ୍ଚୁମ୍ବୀ ଦେବାଳୟ ଚତୁଃପାର୍ଶ୍ୱବର୍ତ୍ତୀ ରାଜନ୍ୟବୃନ୍ଦଙ୍କ କୀର୍ତ୍ତି ସମୂହକୁ ଧିକ୍‌କାର କରୁଥିଲା । କୁଆଁଲୋଠାରେ ବର୍ତ୍ତମାନ ଅନେକ ପ୍ରାଚୀନ ଶିବମନ୍ଦିର, ମନ୍ଦିରର ଭଗ୍ନାବଶେଷ ତଥା ବହୁ ପୁଷ୍କରିଣୀର ଭଗ୍ନାବଶେଷ ଦୃଷ୍ଟିଗୋଚର ହୋଇଥାଏ । କିନ୍ତୁ ଶୁଲ୍କୀବଂଶ ରାଜପ୍ରାସାଦର ଭଗ୍ନାବଶେଷ ଅଦ୍ୟାବଧି ଅନାବିଷ୍କୃତ । ସୂଚନାଯୋଗ୍ୟ ଯେ, ଢେଙ୍କାନାଳ ଇତିହାସର ବର୍ଣ୍ଣନାନୁଯାୟୀ କୋଦାଳକ ନଗରୀରେ ଏକଶତ ପୁଷ୍କରିଣୀ ରହିଥିଲା । ସଂପ୍ରତି ଅନେକ ପୁଷ୍କରଣୀ ପୋତି ହୋଇ କୃଷିକ୍ଷେତ୍ରରେ ପରିଣତ ହୋଇଛି । ତଦନୁରୂପ ରାଜପ୍ରସାଦ ଭୂଗର୍ଭସ୍ଥ ହେବା ଅସମ୍ଭବ ନୁହେଁ । ତାମ୍ରଶାସନଗୁଡ଼ିକ କୋଦାଳକ ନଗରୀରୁ ପ୍ରଦତ୍ତ ହୋଇଥିବାରୁ ବିଶ୍ୱାସ କରଯାଏ ଯେ ନିଶ୍ଚିତ ଭାବେ ଶୁଲ୍‌କୀବଂଶୀ ରାଜାଗଣ ଏହି ସ୍ଥାନରେ ସୁରମ୍ୟ ରାଜପ୍ରସାଦ ନିର୍ମାଣ କରିଥିଲେ । ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ଓ ଭୂଖନନ ହେଲେ ଏହାର ସତ୍ୟାସତ୍ୟ ନିର୍ଣ୍ଣୟତା ହୋଇପାରିବ ।

ଶୁଲ୍‌କୀବଂଶୀ ସ୍ତମ୍ଭ ଉପାଧିଧାରୀ ରାଜାମାନଙ୍କ ପ୍ରଦତ୍ତ ତାମ୍ରଶାସନରେ ଅର୍ଦ୍ଧଚନ୍ଦ୍ର ଯୁକ୍ତ ବୃଷଭ ଖୋଦିତ ହୋଇଥିବାରୁ ପ୍ରତୀୟମାନ ହୁଏ, ଏହି ରାଜନ୍ୟବୃନ୍ଦ ଶୈବ ଥିଲେ । ପ୍ରାଚୀନ ଇତିହାସ ଓ ପୁରାଣରେ ମଧ ଶୁଲ୍‌କୀମାନଙ୍କୁ ଶିବାଂଶ ସମ୍ଭୂତ କୁହାଯାଇଛି । ସେମାନେ ତାମ୍ରଶାସନରେ ଶିବଙ୍କର ମହିମା ଉଲ୍ଲେଖ କରିବା ସହିତ ଆପଣାରୁ "ପରମାହେଶ୍ୱର" ଭାବରେ ପରିଚିତ କରାଇଛନ୍ତି । ଶିବଭକ୍ତିର ସ୍ୱାଭିମାନରେ ସ୍ତମ୍ଭନୃପତି ବୃନ୍ଦ କୋଦାଳକ ନଗରୀରେ

ଅଗଣିତ ଶିବମନ୍ଦିର ନିର୍ମାଣ କରିଥିଲେ । ଅଦ୍ୟାବଧି ଏଠାରେ ଆଠଗୋଟି ଭଗ୍ନ ମନ୍ଦିର ପରିଦୃଷ୍ଟ ହୋଇଥାଏ । ତେଣୁ ଏହି ପୀଠକୁ ଅଷ୍ଟଶମ୍ଭୁ ପୀଠ କୁହାଯାଉଅଛି । ଏହି ପୀଠରେ ପୂଜିତ ଅଷ୍ଟଶମ୍ଭୁ ହେଉଛନ୍ତି କନକେଶ୍ୱର, ସ୍ୱପ୍ନେଶ୍ୱର, ଐଶାନେଶ୍ୱର, କପିଳେଶ୍ୱର, ବୈଦ୍ୟନାଥେଶ୍ୱର, ପଶ୍ଚିମେଶ୍ୱର, ବାଣେଶ୍ୱର ଓ ଲୋକନାଥେଶ୍ୱର । ତନ୍ମଧ୍ୟରୁ କନକେଶ୍ୱର ମୁଖ୍ୟ ମନ୍ଦିରରେ ପୂଜିତ । କନକେଶ୍ୱର ମନ୍ଦିରର ଚତୁଃପାର୍ଶ୍ୱରେ ପାଞ୍ଚଗୋଟି ମନ୍ଦିରର ଭଗ୍ନାବଶେଷ ରହିଅଛି । କନକେଶ୍ୱର ଶିବଲିଙ୍ଗ ଭୂମିପତନଠାରୁ ଆଠଫୁଟ୍ ଉଚ୍ଚ । ଲିଙ୍ଗ ଚତୁଃପାର୍ଶ୍ୱରେ ଥିବା ଶକ୍ତି ନଷ୍ଟ ହୋଇଯିବାରୁ ୧୯୮୦ ମସିହାରେ ନୂତନ ଶକ୍ତି ନିର୍ମାଣ କରାଯାଇଛି । ଶକ୍ତି ନିର୍ମାଣ ସମୟରେ ୧୨ଫୁଟ ତଳୁ ଲିଙ୍ଗ ଫୁଟି ବାହାରି ଥିବାର ଜଣାଗଲା । ଏହି ମନ୍ଦିରର ଉଚ୍ଚତା ୮୦ ଫୁଟ ହେଲେ ହେଁ ଏହାର ଚୂଡ଼ା ଭାଙ୍ଗି ଯାଇଥିବାରୁ ମନ୍ଦିରର ପ୍ରକୃତ ଉଚ୍ଚତା ନିର୍ଣ୍ଣୟ ସମ୍ଭବ ନୁହେଁ । ଅଷ୍ଟଶମ୍ଭୁ ମନ୍ଦିରରେ ପ୍ରତ୍ୟେକଟି ମନ୍ଦିର ସୂକ୍ଷ୍ମ କାରୁକାର୍ଯ୍ୟ ପୂର୍ଣ୍ଣ । ବିଶେଷତଃ ମୁଖ୍ୟମନ୍ଦିର ଅର୍ଥାତ୍ କନକେଶ୍ୱର ମନ୍ଦିରର ଦ୍ୱାର ଦେଶରେ ଥିବା ଗଙ୍ଗା ଯମୁନା ମୂର୍ତ୍ତି ଓ ପଶ୍ଚିମ ପାର୍ଶ୍ୱ ମନ୍ଦିର କାନ୍ଥରେ ଥିବା ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ଅତୀବ ରମଣୀୟ । ପୀଠର ପୂର୍ବଦିଗରେ ଏକ ସ୍ୱତନ୍ତ୍ର ଆସ୍ଥାନରେ ଦଶଭୁଜା ମହିଷମର୍ଦ୍ଦିନୀ ଦୁର୍ଗା ବିରାଜିତା । ଏହି ଦେବୀ କନକେଶ୍ୱରୀ ବା କନକ ଦୁର୍ଗା ନାମରେ ଖ୍ୟାତ । ଚତୁର୍ଦ୍ଦିଗରେ ସୂକ୍ଷ୍ମ କାରୁକାର୍ଯ୍ୟ ସଂପନ୍ନ ପ୍ରତ୍ନବିଭବ ପଡ଼ିଅଛି ।

ପ୍ରାଚୀନ କୋଦାଳକ ନଗରୀ କେବଳ ଯେ ଶୈବକ୍ଷେତ୍ର ଥିଲା ତାହା ନୁହେଁ, ଏକ ପ୍ରାଚୀନ ଶକ୍ତିପୀଠ ରୂପେ ମଧ୍ୟ ମାନ୍ୟତା ଲାଭ କରିଥିଲା । ଏହି ନଗରୀର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ସ୍ତମ୍ଭେଶ୍ୱରୀ । ଏହି ପ୍ରାଚୀନ ଦେବୀମୂର୍ତ୍ତି ଶୁଲ୍କୀ ବଂଶୀ ନୃପତିଙ୍କର ଇଷ୍ଟଦେବୀ ଥିଲେ । ସ୍ତମ୍ଭେଶ୍ୱରୀ ଓଡ଼ିଶାର ସର୍ବପ୍ରାଚୀନ ଶାକ୍ତଦେବୀ । ସ୍ତମ୍ଭେଶ୍ୱରୀଙ୍କର ଦାସାନୁଦାସ ଭାବରେ ଶୁଲ୍କୀବଂଶର ପ୍ରତ୍ୟେକ ରାଜା ପୁରୁଷାନୁକ୍ରମେ ସ୍ତମ୍ଭ ଉପାଧିରେ ଭୂଷିତ ହେଉଥିଲେ । କୁଳସ୍ତମ୍ଭଙ୍କ ପ୍ରଦତ୍ତ ତାମ୍ରଶାସନରେ ''ସ୍ତମ୍ଭେଶ୍ୱରୀ ଲବ୍ଧବର ପ୍ରାସାଦଃ ଶୁଲ୍କକଲୋଽଭୂତ କ୍ଷିତପଃ'', ରଣସ୍ତମ୍ଭଙ୍କ ପ୍ରଦତ୍ତ ତାମ୍ରଶାସନରେ ''ଅସ୍ୟ କୁଳଦେବତା ଭଗବତୀ ସ୍ତମ୍ଭେଶ୍ୱରୀ'' ତଥା ଜୟସ୍ତମ୍ଭଙ୍କ ପ୍ରଦତ୍ତ ତାମ୍ରଶାସନରେ ''ସ୍ତମ୍ଭେଶ୍ୱରୀ ଲବ୍ଧବର ପ୍ରଭାବୋ ମହାନୁଭବଃ ପରମ ମାହେଶ୍ୱରୋ'' ପ୍ରଭୃତି ଉଲ୍ଲିଖିତ ଥିବାରୁ ଏହା ସ୍ପଷ୍ଟ ଯେ ଶିବ ଶୁଲ୍କୀ ବଂଶର କୁଳଦେବତା ଥିଲେ 'ସ୍ତମ୍ଭେଶ୍ୱରୀ' ଏବଂ ସେମାନେ ତାଙ୍କର

କୃପାରୁ ପରମ ମାହେଶ୍ୱର ହୋଇପାରିଥିଲେ । ଶୁଲ୍‌କୀବଂଶ ରାଜନ୍ୟବୃନ୍ଦ ସ୍ତମ୍ଭେଶ୍ୱରୀଙ୍କର ଭବ୍ୟ ମନ୍ଦିର କୋଦାଳକ ନଗରୀରେ ନିର୍ମାଣ କରିଥିବା ପ୍ରସଙ୍ଗ ଢେଙ୍କାନାଳ ଇତିହାସରେ ଉଲ୍ଲିଖିତ ରହିଛି । କିନ୍ତୁ ଅଧୁନା ସେହି ମନ୍ଦିରର ଚିହ୍ନବର୍ଣ୍ଣ ନାହିଁ । ସ୍ତମ୍ଭେଶ୍ୱରୀ ସଂପ୍ରତି କୋଦାଳକ ସନ୍ନିକଟ ସିଙ୍ଗଡ଼ା ଗ୍ରାମ ମୁଣ୍ଡରେ ବନଲତା ପରିଶୋଭିତ ମୁକ୍ତ ଆସ୍ଥାନରେ ବିରାଜିତା, ସ୍ଥାନୀୟ ଲୋକେ ଏହାଙ୍କୁ ସିଙ୍ଗଡ଼ାଚଣ୍ଡୀ କହୁଛନ୍ତି । ଏହି ଦେବୀ ଚତୁର୍ଭୁଜା ମହିଷମର୍ଦ୍ଦିନୀ ଚଣ୍ଡୀ ମୂର୍ତ୍ତି । ପ୍ରତ୍ନତାତ୍ତ୍ୱିକ ଓ ମୂର୍ତ୍ତିକଳା ଦୃଷ୍ଟିରୁ ବିଚାର କଲେ ହୃଦ୍‌ବୋଧ ହୁଏ, ଏହି ପ୍ରାଚୀନଦେବୀ ମୂର୍ତ୍ତି ଚତୁର୍ଥ ବା ପଞ୍ଚମ ଶତାବ୍ଦୀର । ପାଞ୍ଚଫୁଟ ଉଚ୍ଚତା ବିଶିଷ୍ଟ ଏହି ଦେବୀ ମୂର୍ତ୍ତି ହସ୍ତରେ ଖଡ୍‌ଗ,ପାନ ପତ୍ର ଓ ତୋମର ଧାରଣ ପୂର୍ବକ ସ୍ତମ୍ଭାକାର ଏକ ଶିଳାରୁ ଉତ୍‌ଥିତ । ଶିଳାଟି ଦେବୀଙ୍କ ପୃଷ୍ଠଦେଶରେ ବିଦ୍ୟମାନ ।

ଶୁଲ୍‌କୀ ନୃପତି ବୃନ୍ଦ ଶାକ୍ତ ଥିଲେ । ସ୍ତମ୍ଭେଶ୍ୱରୀ ଓ କନକଦୁର୍ଗାଙ୍କର ଶାସ୍ତ୍ରୋକ୍ତ ଉପାସନା ନିମିତ୍ତ ସେମାନେ ଉତ୍ତର ଭାରତରୁ ଶାକ୍ତ ବ୍ରାହ୍ମଣଙ୍କୁ ଆଣି ଢେଙ୍କାନାଳର ବିଭିନ୍ନ ସ୍ଥାନରେ ରଖାଇଥିଲେ । କୋଦାଳକ ସନ୍ନିକଟ ମୁଣ୍ଡଇଲେ ବଳଭଦ୍ରପୁର ଗ୍ରାମରେ ସେମାନଙ୍କର କୁଳପୁରୋଧା ନିବାସ କରୁଥିଲେ । ଏହି ପୁରୋଧାଙ୍କର ମୂଳ ସଂଜ୍ଞା ମିଶ୍ର ଥିଲେ ହେଁ ପ୍ରସିଦ୍ଧ ଚଣ୍ଡୀପାଠକ ଭାବରେ ତାଙ୍କର ସୁଖ୍ୟାତି ରହିଥିବାରୁ ସେ ମିଶ୍ର ପରିବର୍ତ୍ତେ ଚଣ୍ଡ ସଂଜ୍ଞା ବ୍ୟବହାର କରୁଥିଲେ । ଏହି ପୁରୋଧା ଯଜୁର୍ବେଦ କାଣ୍ୱଶାଖା କୃଷ୍ଣାତ୍ରେୟ ଗୋତ୍ରୋଦ୍ଭବ । ପୁରୋଧାଙ୍କ ଗୃହରେ କନକ ଦୁର୍ଗାଙ୍କର ବିଜେ ପ୍ରତିମା ରହୁଥିଲା । କାଳର କରାଳଗତିରେ ଶୁଲ୍‌କୀମାନେ ଯେତେବେଳେ କୋଦାଳକ ନଗରୀ ପରିତ୍ୟାଗ ପୂର୍ବକ ଢେଙ୍କାନାଳ ଓ କେନ୍ଦୁଝର ସୀମାରେ ଅବସ୍ଥିତ କାଳିଆହତା ଗ୍ରାମରେ ନିବାସ କଲେ ସେମାନଙ୍କ ପୁରୋଧା ମଧ୍ୟ ଏହି ବିଜେ କନକ ଦୁର୍ଗା ପ୍ରତିମାଙ୍କୁ ସାଥିରେ ଧରି ଆସିଥିଲେ । ସଂପ୍ରତି ଶୁଲ୍‌କୀ ବଂଶୀମାନେ କାଳିଆହତା ଗ୍ରାମରେ ଏବଂ ପୁରୋଧାଙ୍କ ବଂଶଧର ବୃନ୍ଦ ବିରାଶାଳ ଗ୍ରାମରେ ନିବାସ କରୁଛନ୍ତି । ପୁରୋଧା ବଂଶ ଭଗବାନ ଚଣ୍ଡ ବା ଚନ୍ଦଙ୍କ ଠାରୁ ପୁନର୍ବାର ମିଶ୍ର ସଂଜ୍ଞା ଧାରଣ କରିଛନ୍ତି । କନକଦୁର୍ଗା ବର୍ତ୍ତମାନ ବିରାଶାଳର ସେହି ମିଶ୍ର ବଂଶର ଇଷ୍ଟଦେବୀ ।

ପ୍ରାଚୀନ କୋଦାଳକ ନଗରୀ ଏକ ସାମରିକ ମର୍ଯ୍ୟାଦା ସଂପନ୍ନ ରାଜଧାନୀର ମାନ୍ୟତା ଲାଭ କରିଥିଲା । ସେହି ସମୟରେ ଏହି ନଗରୀରେ ସାମନ୍ତ, ଅମାତ୍ୟ, କୁମାରାମାତ୍ୟ, ଅନ୍ତରଙ୍ଗ ପ୍ରଭୃତି ରାଜ ବିରାଦର ବାସ

କରୁଥିଲେ । ସମଗ୍ର ରାଜ୍ୟକୁ କେତୋଗୋଟି ଖଣ୍ଡ ଓ ବିଷୟରେ ବିଭକ୍ତ କରାଯାଇଥିଲା । ବିଷୟରେ ବିଷୟପତି, ଦଣ୍ଡପାଶିକ, ସ୍ଥାନାନ୍ତରିକ, ଚାଟ ଓ ଭଟ ପ୍ରଭୃତି ରହି ଶାସନକାର୍ଯ୍ୟ ନିର୍ବାହ କରୁଥିଲେ । ଶୁଲ୍‌କୀମାନେ ଢେଙ୍କାନାଳରେ ଉତ୍ତରାଞ୍ଚଳରେ ପ୍ରାଚୀନ କାଳରୁ ରାଜତ୍ୱ କରୁଥିବା ଗଣ୍ଡ ଦଳପତିମାନଙ୍କୁ ପରାସ୍ତ କରି ଏହି ବିଶାଳ ଭୂଖଣ୍ଡ ଅଧିକାର କରିଥିବାରୁ ଆପଣାକୁ ସକଳ ଗୋନ୍ଦମାଧିପତି ଉପାଧିରେ ଭୂଷିତ କରିଥିଲେ । ଏହି ବଂଶର କୁଳସ୍ତମ୍ଭ ଢେଙ୍କାନାଳର ପୂର୍ବ ଦକ୍ଷିଣରେ ରାଜତ୍ୱ କରୁଥିବା ଢେଙ୍କା ଶବରକୁ ଯୁଦ୍ଧରେ ପରାସ୍ତ ଓ ନିହତ କରି ବିକ୍ରମାଦିତ୍ୟ ପଦବୀରେ ଭୂଷିତ ହୋଇଥିଲେ । (Dist-gazetteer, Dhenkanal P-51) ଶୁଲ୍‌କୀମାନଙ୍କର ଶାସନପଦ୍ଧତି ଶାସ୍ତ୍ରାନୁମୋଦିତ ଉନ୍ନତ ଶାସନ ପଦ୍ଧତି ଥିଲା । ଖଣ୍ଡାଧିପ ଓ ବିଷୟପତିଙ୍କ କାର୍ଯ୍ୟ କୁମରାମାତ୍ୟ ଓ ସାମନ୍ତଗଣ ତଦାରଖ କରୁଥିଲେ । ସେମାନଙ୍କର ସୈନ୍ୟ ଚାଟ ଓ ଭଟ ଦୁଇଶ୍ରେଣୀରେ ବିଭକ୍ତ ଥିଲେ । ତାମ୍ରଶାସନରୁ ଉପଲବ୍‌ଧ ହୁଏ, ସମଗ୍ର ରାଜ୍ୟରେ ଭୂବନ୍ଦୋବସ୍ତ କରାଯାଇ ପ୍ରତ୍ୟେକ ଗ୍ରାମର ସୀମା ସରହଦ ଓ ଭୂରାଜସ୍ୱ ନିର୍ଦ୍ଧାରଣ କରାଯାଇଥିଲା । ନଗର ଓ ଗ୍ରାମମାନଙ୍କରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଗୋକୁଟ (ଗଉଡ଼), ତନ୍ତୀ ଓ ଶୁଣ୍ଢୀ ପ୍ରଭୃତି ପ୍ରତ୍ୟେକ ସଂପ୍ରଦାୟର ଲୋକ ନିବାସ କରୁଥିଲେ । ସେମାନେ 'ରୁପ୍ୟ' ନାମକ ଏକ ମୁଦ୍ରା ମଧ ପ୍ରଚଳନ କରାଇଥିଲେ ।

ଶୁଲ୍‌କୀ ରାଜତ୍ୱରେ ନିର୍ମିତ ମନ୍ଦିର ଓ ପ୍ରାସାଦ ନଗର ଓ ଦ୍ରାବିଡ଼ ପଦ୍ଧତିର ଶିଳ୍ପ ମାନ୍ୟତାରେ ନିର୍ମାଣ କରାଯାଇଥିଲା । ଏଥିରେ ଗୁପ୍ତକାଳୀନ କଳା ଓ ସ୍ଥାପତ୍ୟ ପ୍ରତିଭାତ ହୋଇ ଆଞ୍ଚଳିକ ଓ ଲୌକିକତାର ସ୍ୱାତନ୍ତ୍ର୍ୟ ପ୍ରକଟିତ ହୋଇଥିଲା । ସେହି ସମୟରେ ନିର୍ମିତ ମନ୍ଦିରର ଅବୟବ ଓ ଦଣ୍ଡାୟମାନ ଭଙ୍ଗୀ ଦୀର୍ଘ, ସରଳ ତଥା ସ୍ଥୁଳାକୃତି । ମନ୍ଦିର କାନ୍ଥରେ ପୁରାଣ ବର୍ଣ୍ଣିତ ଶିବ, ପାର୍ବତୀ, ଗଣେଶ, କାର୍ତ୍ତିକେୟ, ଦୁର୍ଗା ଓ ଅର୍ଦ୍ଧନାରୀଶ୍ୱର ପ୍ରତିକୃତି ବହୁଳ ଭାବରେ ଖୋଦିତ । ଏତଦ୍‌ଭିନ୍ନ ତହିଁରେ ସୂର୍ଯ୍ୟ, ଚନ୍ଦ୍ର, ଗଙ୍ଗା, ଯମୁନା, ଅଷ୍ଟଗ୍ରହ, ପୂର୍ଣ୍ଣକୁମ୍ଭ ଓ ମିଥୁନ ଚିତ୍ର ମଧ ପରିଦୃଷ୍ଟ ହୋଇଥାଏ । ସାମାଜିକ ଜୀବନରେ ଧର୍ମର ପ୍ରାଧାନ୍ୟ ବୃଦ୍ଧି ନିମିତ୍ତ ମନ୍ଦିର ସମୂହକୁ ଚତୁର୍ବର୍ଗ ଫଳପ୍ରାପ୍ତିର ପ୍ରତୀକ ରୂପେ ନିର୍ମାଣ କରାଯାଇଥିଲା ।

ଶୁଲ୍‌କୀ ରାଜନ୍ୟବୃନ୍ଦ ଶୈବ ଓ ଶାକ୍ତ ଥିଲେ ହେଁ ବୈଦିକ ଧର୍ମର ପୃଷ୍ଟପୋଷକତା କରିଥିଲେ । ସେମାନେ ବୈଦିକ ଓ ବୈଷ୍ଣବଙ୍କୁ ଭୂସଂପତ୍ତି

ଦାନକରି କୋଦାଳକ ରାଜ୍ୟରେ ଆର୍ଯ୍ୟ ସଭ୍ୟତାର ବିସ୍ତାର ଘଟାଇଥିଲେ । ତାଙ୍କ ରାଜତ୍ୱରେ ଢେଙ୍କାନାଳ, ତାଳଚେର ଓ ଅନୁଗୁଳ ଅଞ୍ଚଳରେ ବହୁ ବ୍ରାହ୍ମଣ ଶାସନ ପ୍ରତିଷ୍ଠିତ ହୋଇଥିଲା । ଏତଦ୍‌ଭିନ୍ନ କୁଳସ୍ତମ୍ଭ ବେଦବିଦ୍ ବ୍ରାହ୍ମଣର ଅନନ୍ତଙ୍କୁ ସିଙ୍ଗଡ଼ାଗ୍ରାମ, ରଣସ୍ତମ୍ଭ ବେଦାଧ୍ୟାୟୀ ସୁଦର୍ଶନଙ୍କୁ ଯୋଡ଼ ଗ୍ରାମ, ବେଦଜ୍ଞ ବ୍ରାହ୍ମଣ ଯାଚୁକଙ୍କୁ ଜରାଗ୍ରାମ, ଜୟସ୍ତମ୍ଭ ବେଦତତ୍ତ୍ୱଜ୍ଞାତା ବାମନ ଭଟ୍ଟଶର୍ମ୍ମଣଙ୍କୁ ଚାନ୍ଦପୁର ଗ୍ରାମ, ରଷିବକଙ୍କୁ ଲୋଳପୁର ଗ୍ରାମ ଓ ଚିତ୍ରଦୀକ୍ଷିତଙ୍କୁ ଶ୍ରୀମୂଳା ଗ୍ରାମ ଦାନ କରିଥିଲେ । କୋଦାଳକ ରାଜସଭାରେ ବିଦ୍ୱାନମାନଙ୍କର ଆଦର ରହିଥିଲା । ଉତ୍ତର ଭାରତରୁ ବହୁ ବ୍ରାହ୍ମଣ ସେହି ସମୟରେ ଆସି ସେମାନଙ୍କର ଅନୁଗ୍ରହ ପ୍ରାର୍ଥୀ ହୋଇଥିଲେ । ସେହି ସମୟରେ ସୁପ୍ରସିଦ୍ଧ ବେଦ ଭାଷ୍ୟକାର ମହେନ୍ଦ୍ର ସ୍ୱାମୀ ଓ ସ୍କନ୍ଦସ୍ୱାମୀ ରାଜା ଜୟସିଂହଙ୍କଠାରୁ ତାମ୍ରଶାସନ ଲାଭ କରି ବ୍ରାହ୍ମଣୀ ଅବବାହିକାରେ କାର୍ଯ୍ୟାଟି ଶାସନ ପ୍ରତିଷ୍ଠା କରିଥିଲେ । ପରବର୍ତ୍ତୀକାଳରେ ଏହି ଶାସନ ମହାରଥାପୁର ଓ ମାର୍ଥାପୁର ଶାସନ ନାମରେ ପ୍ରସିଦ୍ଧି ଲାଭ କରିଥିଲା । ଉଲ୍ଲେଖଯୋଗ୍ୟ ଯେ, ସେହି ସମୟରେ ତାଳଚେର ସନ୍ନିକଟରେ ଜୟାଶ୍ରମ ବୌଦ୍ଧ ବିହାର ଓ ଅନ୍ୟାନ୍ୟ ସ୍ଥାନରେ ବୌଦ୍ଧ ସ୍ତୂପ ପ୍ରତିଷ୍ଠିତ ହୋଇଥିଲେ ହେଁ ଶୁଲ୍‌କୀମାନେ ବୌଦ୍ଧଧର୍ମର ଅନୁଗାମୀ ନହୋଇ ବୈଦିକ, ବୈଷ୍ଣବ, ଶୈବ ଓ ଶାକ୍ତଧର୍ମର ପୃଷ୍ଠପୋଷକତା କରିଥିଲେ । ଫଳରେ ବ୍ରାହ୍ମଣୀ ଅବବାହିକାରେ ଭୀମକାଣ୍ଡ ଓ ସରାଙ୍ଗଠାରେ ବିଶାଳ ବିଷ୍ଣୁ ପ୍ରତିମା ନିର୍ମାଣ ହେବା ସହିତ ବହୁ ଶିବମନ୍ଦିର ନିର୍ମାଣ ହୋଇଥିଲା ।

ଶୁଲ୍‌କୀ ରାଜନ୍ୟବୃନ୍ଦ ଅଷ୍ଟମ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ଚାରିଶହ ବର୍ଷ ଢେଙ୍କାନାଳରେ ନିରବିଚ୍ଛିନ୍ନ ସାମ୍ରାଜ୍ୟ ପ୍ରତିଷ୍ଠା କରିବାପରେ ଦ୍ୱାଦଶ ଶତାବ୍ଦୀରେ ତୃତୀୟ ଅନଙ୍ଗଭୀମ ଦେବଙ୍କ କର୍ତ୍ତୃକ ପରାସ୍ତ ହୋଇ କାଳିଆହତା ଗ୍ରାମରେ ୨୨ ଗୋଟି ପଲ୍ଲୀଗ୍ରାମରେ ଜାୟଗିରୀଦାର ଭାବରେ ନିବାସ କଲେ । ବର୍ତ୍ତମାନ ମଧ୍ୟ ଏମାନଙ୍କର ବଂଶଧରଙ୍କ ମଧ୍ୟରେ ରାଜକୀୟ ସ୍ୱାଭିମାନ ପରିଲକ୍ଷିତ ହୋଇଥାଏ । ସେମାନଙ୍କର ରାଜଧାନୀ କୋଦାଳକ ନଗରୀ ସଂପ୍ରତି ବିଧ୍ୱସ୍ତ ପ୍ରାୟ । ଏଠାରେ ଥିବା ପ୍ରତ୍ନବିଭବ ସଂରକ୍ଷିତ ପ୍ରତ୍ନବିଭବ ଉଦ୍‌ଘୋଷିତ ହୋଇଥିଲେ ହେଁ ସଂରକ୍ଷଣରେ ବିଧି ବ୍ୟବସ୍ଥା ଗ୍ରହଣ କରଯାଇ ପାରି ନାହିଁ । ପ୍ରାଚୀନ କୋଦାଳକ ନଗରୀ ସମେତ ବ୍ରାହ୍ମଣୀ ଅବବାହିକାର ଭୂଖନନ, ସର୍ବେକ୍ଷଣ ଓ ପ୍ରତ୍ନତାତ୍ତ୍ୱିକ ଅଧ୍ୟୟନ ହୋଇପାରିଲେ ଅନେକ ଅଜ୍ଞାତ ତଥ୍ୟ ଲୋକଲୋଚନକୁ ଆସିପାରିବ ।



# ସୋମବଂଶ ରାଜତ୍ୱରେ ଢେଙ୍କାନାଳ

ଦଶମ ଶତାବ୍ଦୀର ମଧ୍ୟଭାଗରୁ ଯାଜପୁରର ଭୌମ ବଂଶର ପତନ ଘଟି ସୋମ ରାଜନ୍ୟବୃନ୍ଦ ଉତ୍କଳର ଅଧିପତି ହେଲେ । ଭୌମ ଓ ସୋମବଂଶ ପରସ୍ପର ବୈବାହିକ ସୂତ୍ରରେ ସମ୍ବନ୍ଧିତ ହୋଇଥିଲେ । ଭୌମବଂଶର କୌଣସି ଉତ୍ତରାଧିକାରୀ ନଥିବାରୁ ସୋମବଂଶୀ ଯଯାତି ୧ମ ଜଗଜ୍ଜନନୀ ବିରଜାଙ୍କ କୃପାରୁ ଉତ୍କଳ ସିଂହାସନ ଆରୋହଣ କରି ତ୍ରିକଳିଙ୍ଗାଧିପତି ବୋଲାଇଲେ । ଉତ୍କଳରେ ଯଯାତି ବିଶେଷ ପ୍ରସିଦ୍ଧି ଲାଭ କରିଥିଲେ । ସେ ମଧ୍ୟ କାନ୍ୟକୁବ୍‌ଜରୁ ଦଶହଜାର ବେଦଜ୍ଞ ବ୍ରାହ୍ମଣ ଅଣାଇ ଯାଜପୁରରେ ଦଶ୍ୱାଶ୍ୱମେଧ ଯଜ୍ଞ କରାଇଥିଲେ । ତାଙ୍କ ବଂଶ ଓଡ଼ିଶାର ପୁରପଲ୍ଲୀରେ କେଶରୀ ବଂଶ ରୂପେ ପରିଚିତ ହେଲେ ହେଁ ଇତିହାସରେ ଏହି ବଂଶ ସୋମବଂଶ ନାମରେ ପରିଚିହ୍ନିତ । ଏହି ବଂଶର ରାଜନ୍ୟବୃନ୍ଦ ରାୟପୁର ସନ୍ନିକଟ ପାଣ୍ଡୁର ପୁରରେ ପ୍ରଥମେ ରାଜଧାନୀ ସ୍ଥାପନ ପୂର୍ବକ ପଣ୍ଡୁବଂଶ ରୂପରେ ପରିଚିତ ହେଲେ । ପରବର୍ତ୍ତୀ କାଳରେ ସେମାନେ ଦୁଇଭାଗରେ ବିଭକ୍ତ ହୋଇ ପ୍ରଥମଟି କୋଶଳରେ ତଥା ଦ୍ୱିତୀୟଭାଗ ସୋନପୁର, ବିନିକା ଏବଂ ଚୌଦ୍ୱାରରେ ରାଜଧାନୀ ସ୍ଥାପନ କଲେ । ଜନ୍ମେଜୟଙ୍କ ପୁତ୍ର ଯଯାତି ଭୌମରାଜଧାନୀ ଯାଜପୁର ଅଧିକାର କରିବା ପରେ ସୋମବଂଶୀମାନେ ସମଗ୍ର ଓଡ଼ିଶାର ଅଧିପତି ବୋଲାଇଲେ । ବିଶେଷତଃ ଯାଜପୁର ଅଧିକାର କରିବାପରେ ସମଗ୍ର ବ୍ରାହ୍ମଣୀ ଉପତ୍ୟକା ସେମାନଙ୍କ ରାଜ୍ୟ ଭୁକ୍ତ ହେଲା ।

ସୋମବଂଶୀବୃନ୍ଦ ଢେଙ୍କାନାଳରେ ବ୍ରାହ୍ମଣୀ ଉପତ୍ୟକା ଅଧିକାର କରିବା ସମୟରେ କରମୂଳ ମଣ୍ଡଳରେ ନାଗବଂଶ ଓ କୋଦାଳକ ମଣ୍ଡଳରେ ଶୁଲ୍କୀବଂଶ ନାମକୁ ମାତ୍ର ଶାସନ କରୁଥିଲେ । କୋଦାଳକ ଓ କରମୂଳ ବ୍ୟତୀତ ପ୍ରାଚୀନ ଭୌମ ନଗରରେ ସୋମବଂଶୀ ବୃନ୍ଦ ସେମାନଙ୍କ ନୂତନ ରାଜଧାନୀ ସ୍ଥାପନ କରିଥିଲେ । ନିଜେ ଉତ୍କଳାଧିପତି ଯଯାତିକେଶରୀ ଏହି ଅଞ୍ଚଳରୁ ପ୍ରତ୍ୟକ୍ଷ ଶାସନ କରିନଥିଲେ ହେଁ ବ୍ରାହ୍ମଣୀ ଅବବାହିକାରେ କାନ୍ୟକୁବ୍‌ଜାଗତ ବ୍ରାହ୍ମଣମାନଙ୍କୁ ଭୂସଂପତ୍ତି ଦାନ କରିଥିଲେ । ତାଙ୍କ ବଂଶଧର ଚନ୍ଦ୍ରକେଶରୀ ଓ କର୍ଣ୍ଣକେଶରୀ ଢେଙ୍କାନାଳ ଅଞ୍ଚଳରେ ରାଜତ୍ୱ କରିଥିଲେ । କପିଳାସ ମନ୍ଦିର ଭୋଗମଣ୍ଡପ ସ୍ଥିତ

ବୃଷଭ ଶିଳାଲେଖରେ ଚନ୍ଦ୍ରକେଶରୀଙ୍କ ନାମ ଅଙ୍କିତ ହୋଇଥିବାରୁ ବିଶ୍ୱାସ କରାଯାଏ ସେ ଏହି ଅଞ୍ଚଳ ଶାସନ କରୁଥିଲେ । ଏତଦ୍‌ଭିନ୍ନ ସନ୍ଧ୍ୟାକର ନନ୍ଦୀଙ୍କ ''ରାମଚରିତ''ରେ ଉଲ୍ଲେଖ ରହିଛି ଗୌଡ଼ରାଜା ରାମପାଳ ଉତ୍କଳର ସୋମବଂଶୀ କର୍ଣ୍ଣ କେଶରୀଙ୍କୁ ପରାସ୍ତ କରିଥିଲେ । ସାରଳାଦାସଙ୍କ ମହାଭାରତରେ ମଧ କର୍ଣ୍ଣକେଶରୀଙ୍କ ନାମ ଉଲ୍ଲେଖ ରହିଛି । ସୂଚନାଯୋଗ୍ୟ ଯେ, ରତ୍ନିଗିରିରୁ ପ୍ରାପ୍ତ ଏକ ତାମ୍ରଶାସନରୁ କର୍ଣ୍ଣକେଶରୀଙ୍କ ରାଜତ୍ୱ ଦୃଢ଼ୀଭୂତ ହୁଏ । ଢେଙ୍କାନାଳ ଇତିହାସରେ ଉଲ୍ଲେଖ ଅଛି ଯେ ବ୍ରାହ୍ମଣୀ ଉପତ୍ୟକାରେ ଚନ୍ଦ୍ରକେଶରୀ, କର୍ଣ୍ଣ କେଶରୀ, କନକ କେଶରୀ, ବୃଦ୍ଧକେଶରୀ ପ୍ରଭୃତି ବହୁରାଜା ଶାସନ କରୁଥିଲେ । ଏଥିରୁ ପ୍ରମାଣିତ ହେଉଛି, ସୋମବଂଶର ଏକ ଶାଖା ଢେଙ୍କାନାଳ ଅଞ୍ଚଳ ଶାସନ କରୁଥିଲେ ଏବଂ ସେମାନଙ୍କ ମଧ୍ୟରେ କର୍ଣ୍ଣକେଶରୀ ଓ ଚନ୍ଦ୍ରକେଶରୀ ମୁଖ୍ୟ ଥିଲେ ।

ସେହି ସମୟରେ ଢେଙ୍କାନାଳରେ ତିନି ଗୋଟି ଦୁର୍ଗ ପ୍ରସିଦ୍ଧି ଲାଭ କରିଥିଲା । କୋଦାଳକ ଗଡ଼ରେ ଶୁଲ୍କୀ ବଂଶୀବୃନ୍ଦ ରାଜତ୍ୱ କରୁଥିଲେ, ସୋମବଂଶୀ ଚନ୍ଦ୍ରକେଶରୀ କରମୂଳର ନାଗବଂଶୀ ରାଜାଙ୍କୁ ପରାସ୍ତ କରି କରମୂଳ ଅଧିପତି ହେଲେ । କିମ୍ବଦନ୍ତୀ ଅନୁଯାୟୀ, ସେହି ପରାଜିତ ନାଗବଂଶ ରାଜା ଉତ୍ତରଦିଗ ଦିଗ୍‌ବିଜୟ ପୂର୍ବକ ସୁକିନ୍ଦାଠାରେ ରାଜଧାନୀ ସ୍ଥାପନ କଲେ । ସୋମବଂଶର ଅନ୍ୟତମ ରାଜା କର୍ଣ୍ଣକେଶରୀ ଭୌମପରିତ୍ୟକ୍ତ ଭୌମନଗରୀଠାରେ ସ୍ୱରାଜଧାନୀ ସ୍ଥାପନ କଲେ । ରତ୍ନଗିରି ତାମ୍ରଶାସନରୁ ଜଣାଯାଏ ବ୍ରାହ୍ମଣୀ ଅବବାହିକାରେ କର୍ଣ୍ଣକେଶରୀଙ୍କର ସୁଖ୍ୟାତି ରହିଥିଲା । ରତ୍ନଗିରି ତାମ୍ରଲେଖରୁ ଉପଲବ୍ଧି ହୁଏ ଉଦ୍ୟୋତ କେଶରୀ ହେଉଛନ୍ତି କର୍ଣ୍ଣକେଶରୀଙ୍କ ପିତାମହ, ପିତା ଜନ୍ମେଜୟ ଓ ଭ୍ରାତା ପୁରଞ୍ଜୟ । ଏଥିରୁ ପ୍ରମାଣିତ ହୁଏ କର୍ଣ୍ଣକେଶରୀ ଓ ଚନ୍ଦ୍ରକେଶରୀ ଉଭୟ ହେଉଛନ୍ତି ଯଯାତି କେଶରୀଙ୍କ ଭାଇ ଏବଂ ଭାଇଙ୍କଠାରୁ ସେ ଦୁହେଁ ବ୍ରାହ୍ମଣୀ ଉପତ୍ୟକା ଲାଭ କରିଥିଲେ । ସନ୍ଧ୍ୟାକର ନନ୍ଦୀ ରାମଚରିତରେ ଲେଖିଛନ୍ତି ଯେ ଗୌଡ଼ଅଧିପତି ରାମପାଳଙ୍କ ଜନୈକ ଜୟସିଂହ ନାମକ ସାମନ୍ତ କର୍ଣ୍ଣକେଶରୀଙ୍କୁ ପରାସ୍ତ କରିଥିଲେ । ସୂଚନାଯୋଗ୍ୟ ଯେ ସେହି ଜୟସିଂହ ବ୍ରାହ୍ମଣୀ ତଟରେ ଏକ ଗ୍ରାମବେଦ ଭାଷ୍ୟକାର ମହେନ୍ଦ୍ର ସ୍ୱାମୀ ଓ ସ୍କନ୍ଦସ୍ୱାମୀଙ୍କୁ ଦାନ ଦେଉଥିଲେ । ଏଥିରୁ ହୃଦ୍‌ବୋଧ ହୁଏ, କର୍ଣ୍ଣକେଶରୀଙ୍କ ରାଜତ୍ୱରେ ଦଣ୍ଡ ଭୁକ୍ତି ବା ଆଧୁନିକ

ମେଦିନୀପୁର ସାମନ୍ତରାଜା ବେଦଭାଷ୍ୟକାର ବ୍ରାହ୍ମଣ ଦ୍ୱୟଙ୍କୁ ଢେଙ୍କାନାଳର ଏକ ଗ୍ରାମଦାନ କରିଥିବାରୁ ସେ ନିଶ୍ଚୟ କର୍ଣ୍ଣ କେଶରୀଙ୍କୁ ପରାସ୍ତ କରିଥିଲେ । ପ୍ରକୃତପକ୍ଷେ, କର୍ଣ୍ଣକେଶରୀ ମହାପରାକ୍ରମୀ ଥାଇ ଭୌମ ନଗରୀରେ ସୁଶାସନ ପ୍ରତିଷ୍ଠା କରିଥିଲେ । ଢେଙ୍କାନାଳ ଇତିହାସ ବର୍ଣ୍ଣନାନୁସାରେ ତତ୍‌ପ୍ରତିଷ୍ଠିତ କର୍ଣ୍ଣପୁର ଗ୍ରାମ ଏ ଅବଧି ତାଳଚେର ଅନୁଗୁଳ ସୀମାରେ ଅବସ୍ଥିତ ଏବଂ ତତ୍‌ପ୍ରତିଷ୍ଠିତ ଶିବଲିଙ୍ଗ ଅଦ୍ୟାବଧି ପୂଜିତ ।

ଭୌମବଂଶର ଶେଷରାଣୀ ଧର୍ମା ମହାଦେବୀ ଭୌମ ନଗରୀରେ ଶେଷ ଜୀବନ ବିତାଇ ଥିଲେ । ସେଠାରେ ନିବାସ ପୂର୍ବକ ସେ ଶେଷ ଜୀବନ ରାମଚଣ୍ଡୀଙ୍କ ଶରଣାମତ ହୋଇଥିଲେ । ତାଙ୍କ ପ୍ରଦତ୍ତ ତଳତଳି ତାମ୍ରଶାସନରୁ ଜଣାଯାଏ ସେ ଧର୍ମପରାୟଣା ଥିଲେ । କିନ୍ତୁ ନିଃସନ୍ତାନ ଭାବରେ ତାଙ୍କର ମୃତ୍ୟୁ ଘଟିବାରୁ ସୋମବଂଶୀ ଯଯାତି ଉତ୍କଳ ସିଂହାସନ ଆରୋହଣ କଲେ ଏବଂ ତଦୀୟ ଭ୍ରାତ ଭୌମ ନଗରୀରେ ରହି ଢେଙ୍କାନାଳ ଅଞ୍ଚଳ ଶାସନ କଲେ । ସେହି ଭାଇମାନଙ୍କ ମଧ୍ୟରୁ ଚନ୍ଦ୍ରକେଶରୀ କରମୂଳ ଅଧିପତି ହେବା କଥା ପୂର୍ବରୁ ବର୍ଣ୍ଣିତ । ଚନ୍ଦ୍ରକେଶରୀ ଭୌମନଗରୀର ଅପରପାର୍ଶ୍ୱରେ ଚନ୍ଦ୍ରପୁର (ବର୍ତ୍ତମାନ ଚାନ୍ଦପୁର) ଗ୍ରାମ ବସାଇଥିଲେ ବୋଲି ଢେଙ୍କାନାଳ ଇତିହାସରେ ଉଲ୍ଲେଖ ରହିଛି । ଏପରିକି ଚନ୍ଦ୍ରକେଶରୀ ଚନ୍ଦ୍ରପୁରଠାରେ ଗୋଟିଏ ହରିହର ମନ୍ଦିର ନିର୍ମାଣ କରିଥିଲେ ବୋଲି ପ୍ରବାଦ ରହିଛି । ବର୍ତ୍ତମାନ ସେହି ମନ୍ଦିରର ଅସ୍ତିତ୍ୱ ନାହିଁ, ଅଥଚ ପ୍ରାଚୀନ ହରିହର ମୂର୍ତ୍ତି ନାଧରା ପୀଠରେ ଏ ଅବଧି ବିରାଜିତ । ଏହି ହରିହର ମୂର୍ତ୍ତିଟିର ଉଚ୍ଚତା ୪ଫୁଟ ୬ ଇଞ୍ଚ । ଏହାର ବାମାର୍ଦ୍ଧ ହରି ଓ ଦକ୍ଷିଣାର୍ଦ୍ଧ ହର । ବାମ ଜାନୁରେ ପୀତାମ୍ବର, ଦକ୍ଷିଣ ଜାନୁରେ ଗଜଚର୍ମ । ବାମପାର୍ଶ୍ୱ ହସ୍ତ ଦ୍ୱୟରେ ଶଙ୍ଖଚକ୍ର, ଦକ୍ଷିଣ ପାର୍ଶ୍ୱ ହସ୍ତରେ କପାଳ ଓ ଅକ୍ଷମାଳା । ମସ୍ତକର ବାମାର୍ଦ୍ଧ ମୁକୁଟ ଓ ଦକ୍ଷିଣାର୍ଦ୍ଧରେ ଜଟାଜୁଟ । ବାମ ପାଦତଳେ କୃତାଞ୍ଜଳି ପୁଟରେ ପକ୍ଷୀରାଜ ଗରୁଡ଼ । ଦକ୍ଷିଣ ପଦତଳେ ବୃଷଭ ଓ ନନ୍ଦୀ ଦଣ୍ଡାୟମାନ । ଉପରି ଭାଗରେ ଦିଓଟି ମାଳାଧାରିଣୀ ବ୍ୟୋମଚାରଣୀ ସୁରାଙ୍ଗନା । ଏତାଦୃଶ କମନୀୟ ହରିହର ମୂର୍ତ୍ତି ବିଶ୍ୱରେ ବିରଳ । ମନେହୁଏ, ଚାନ୍ଦପୁର ସ୍ଥିତ ମନ୍ଦିରଟି ପ୍ରାକୃତିକ ବିପର୍ଯ୍ୟୟ ଯୋଗୁ ଧ୍ୱଂସ ପାଇବାପରେ ହରିହର ମୂର୍ତ୍ତି ନାଧରା ପୀଠରୁ ସ୍ଥାନାନ୍ତରିତ ହୋଇଥିଲେ । ପ୍ରମାଣିତ ହୁଏ, ପ୍ରାଚୀନ କାଳରୁ ଚାନ୍ଦପୁର ହରିହର ତୀର୍ଥ ରୂପେ ପ୍ରସିଦ୍ଧ ଲାଭ କରିଥିଲା । ସୂଚନାଯୋଗ୍ୟ

ଯେ, ଏହି ଗ୍ରାମଟିକୁ ଶୁକ୍ଳୀବଂଶ ରାଜା ଜୟ ସ୍ତମ୍ଭ ବାମନ ଭଟ୍ଟଙ୍କୁ ଦାନ ଦେଇଥିଲେ । (J.B.O.R.S Vol 2 Pages 405)

ଚନ୍ଦ୍ରକେଶରୀଙ୍କ ଅନ୍ୟତମ କୀର୍ତ୍ତି ହେଉଛି କପିଳାସ ମନ୍ଦିର। ପୁରାଣ ପ୍ରସିଦ୍ଧ ଶୈଳ ଶୈବକ୍ଷେତ୍ର କପିଳାସ ହେଉଛି ପ୍ରଭୁ ଶିଖରେଶ୍ୱରଙ୍କ ନିତ୍ୟନିବାସ ସ୍ଥଳୀ । ପୂର୍ବରୁ ସେଠାରେ କୌଣସି ମନ୍ଦିର ନଥିଲା । ମୁକ୍ତାକାଶ ତଳେ ପୟୋଃମୃତ କୁଣ୍ଡ ନିକଟରେ ଶିଖରେଶ୍ୱର ବା ଚନ୍ଦ୍ରଶେଖରଙ୍କ ଲିଙ୍ଗ ବିରାଜମାନ ଥିଲେ । ଚନ୍ଦ୍ରଶେଖରଙ୍କ ଆଦି ସେବକ ଚିନ୍ତାପତ୍ରୀମାନେ ନାନାଦି ଫଳମୂଳ ଭୋଗକରି ଠାକୁରଙ୍କ ପୂଜା କରୁଥିଲେ । ସୋମବଂଶୀ ଚନ୍ଦ୍ରକେଶରୀ ପ୍ରଥମେ ଏହି ପୀଠରେ ମନ୍ଦିର ନିର୍ମାଣ ପୂର୍ବକ ଶିବଲିଙ୍ଗ ପଶ୍ଚିମରେ ବୃହତ୍ ଶାଳଗ୍ରାମ ପ୍ରତିଷ୍ଠା କରିଥିଲେ । ଫଳରେ କପିଳାସ ମଧ୍ୟ ହରିହର କ୍ଷେତ୍ରରେ ପରିଣତ ହେଲା । ପୀଠର ଭୋଗମଣ୍ଡପ ଉପରେ ଯେଉଁ କୃଷ୍ଣଶିଳା ନିର୍ମିତ ବୃଷଭ ଓ ଗରୁଡ଼ଙ୍କ ଯୁଗଳ ମୂର୍ତ୍ତି ବିରାଜିତ ତହିଁରୁ ପ୍ରମାଣ ମିଳିଥାଏ ଯେ କପିଳାସ ହରିହର ପୀଠ ଭାବରେ ପ୍ରସିଦ୍ଧି ଲାଭ କରିଥିଲା । ମନ୍ଦିର ନିର୍ମାଣ ପରେ ଚନ୍ଦ୍ରକେଶରୀ ବୃଷଭ ଓ ଗରୁଡ଼ଙ୍କ ଯୁଗଳ ବାହନ ମୂର୍ତ୍ତି ଏହି ପୀଠରେ ପ୍ରତିଷ୍ଠା କରିଥିଲେ । ଏହି ଯୁଗଳ ବାହନ ମୂର୍ତ୍ତିର ବୃଷଭର ଅଗ୍ରଭାଗସ୍ଥିତ ଶିଳାପଟରେ ଯେଉଁ ଚାରିଗୋଟି ପଂକ୍ତି ଖୋଦିତ ହୋଇଅଛି ତାହା ଅଦ୍ୟାବଧି ସଂପୂର୍ଣ୍ଣ ପାଠ ହୋଇପାରି ନାହିଁ । ଯାହା ଢେଙ୍କାନାଳ ଇତିହାସର ପ୍ରଣେତା ପଣ୍ଡିତ ରାମଚନ୍ଦ୍ର ନନ୍ଦ ପାଠୋଦ୍ଧାର କରିଛନ୍ତି ତାହା ନିମ୍ନରେ ପ୍ରଦତ୍ତ ହେଲା ।

(୧) ଓଁ ସ୍ୱସ୍ତି ଚନ୍ଦ୍ରକେଶରୀ ଦେବସ୍ୟ ଭୁଜ ପରାକ୍ରାନ୍ତରା

(୨) ଜ୍ୟୈ ମାଘ ଦି୮ ଇଳା ଘଣ୍ଟିମ....... ନିଧି....... ଚ

(୩) ଷ୍ଟକ ଗ୍ରାମସ୍ଥ ଚାଙ୍ଗ ଭଟ୍ଟ ପ୍ରଣମତି ( ? )

(୪) ଅତ୍ର ଦେ......... କୃପୟା........

ପାଠୋଦ୍ଧାରରୁ ପ୍ରମାଣିତ ହେଉଛି ଚନ୍ଦ୍ରକେଶରୀ କପିଳାସରେ ପ୍ରଥମେ ମନ୍ଦିର ନିର୍ମାଣ କରିଥିଲେ । ଅବଶ୍ୟ ସେହି ମନ୍ଦିର ବର୍ତ୍ତମାନ ନାହିଁ । ତାହା ଭାଙ୍ଗିଯବାରୁ ବର୍ତ୍ତମାନର ମନ୍ଦିର ଲାଙ୍ଗୁଳା ନରସିଂହଦେବଙ୍କ ଦ୍ୱାରା ନିର୍ମିତ । ଶିଳାଲେଖରୁ ଉପଲବ୍ଧ ହେଉଛି, ଚନ୍ଦ୍ରକେଶରୀ ପ୍ରଥମେ ମନ୍ଦିର ନିର୍ମାଣ କରି ସେବା ପୂଜା ନିମିତ୍ତ ଗ୍ରାମଦନ କରିଥିଲେ । କିନ୍ତୁ କେଉଁ ଗ୍ରାମ ଦାନ କରିଥିଲେ ତାହା ସ୍ପଷ୍ଟ ଜଣାଯାଉନାହିଁ । ଉଲ୍ଲେଖଯୋଗ୍ୟ ଯେ ସୋମବଂଶୀମାନେ ପଶ୍ଚିମ

ଓଡ଼ିଶାରେ ବାସ କରୁଥିବା ସମୟରେ ବିଷ୍ଣୁ ଉପାସକ ଥିଲେ । ପରବର୍ତ୍ତୀକାଳରେ ସେମାନେ ମଧ୍ୟ ଓ ପୂର୍ବ ଓଡ଼ିଶାରେ ରାଜତ୍ୱ କରିବା ସମୟରେ ସେମାନେ ଶିବ ଉପାସକରେ ରୂପାନ୍ତରିତ ହେଲେ । ପରିଣାମ ସ୍ୱରୂପ ଓଡ଼ିଶା ମାଟିରେ ହିଁ ବୈଷ୍ଣବ ଓ ଶୈବ ସଂସ୍କୃତିର ସମନ୍ୱୟ ଧାରା ପ୍ରବାହିତ ହୋଇ ବ୍ରାହ୍ମଣୀ ଅବବାହିକାର ଚାନ୍ଦପୁର ଓ କପିଳାସ ଉଭୟ ପୀଠରେ ହରିହର ଉପାସନା ବଳବତ୍ତର ହୋଇଥିଲା । ତତ୍ତ୍ୱତଃ ହରି ଓ ହର ଏକ ଏବଂ ଅଭିନ୍ନ ।

ଦ୍ୱୌ ଦ୍ୱୌ ଶଙ୍ଖକପାଳ ଭୂଷିତକରୌ ମୁକ୍ତାସ୍ଥିମାଳାଧରୌ,
ଦେବୌ ଦ୍ୱାରବତୀଶ୍ମଶାନିଳୟୌ ନାଗାରିଗୋବହଟୌ ।
ଦକ୍ଷଯଜ୍ଞବଳିଯଜ୍ଞ ମନ୍ଥନବିଧୌ ଶ୍ରୀ ପାର୍ବତୀ ବଲ୍ଲଭୌ
ପାପଂ ମେ ହରତଃ ସଦା ହରିହରୌ ଶ୍ରୀବସ୍ତ ଗଙ୍ଗାଧରୌ ।

କର୍ଣ୍ଣକେଶରୀ ଓ ଚନ୍ଦ୍ରକେଶରୀଙ୍କ ବ୍ୟତୀତ ଅନ୍ୟ ଯେଉଁ ସୋମବଂଶୀ ରାଜା ବ୍ରାହ୍ମଣୀ ଅବବାହିକାରେ ରାଜତ୍ୱ କରୁଥିଲେ ସେମାନଙ୍କ ମଧ୍ୟରେ କନକ କେଶରୀ ଅନ୍ୟତମ । ଢେଙ୍କାନାଳ ଇତିହାସ ବର୍ଣ୍ଣନାନୁଯାୟୀ ଏହି ରାଜା ମଧ୍ୟ ଭୌମ ନଗରୀରେ ରାଜତ୍ୱ କରୁଥିଲେ । ଭୌମନଗରୀ ଦୁର୍ଗର ପୂର୍ବ ଦିଗରେ ତତ୍ ପ୍ରତିଷ୍ଠିତ ଶିବଲିଙ୍ଗ କନକ ଈଶ୍ୱର ବା କନକେଶ୍ୱର ନାମରେ ସୁପ୍ରସିଦ୍ଧ । ଭୌମନଗରୀ ଦୁର୍ଗର ପଶ୍ଚିମରେ ରଣେଶ୍ୱରଙ୍କ ଶିବଲିଙ୍ଗ ବିଦ୍ୟମାନ । କିମ୍ବଦନ୍ତୀ ଅନୁଯାୟୀ ଏହି ଶିବଲିଙ୍ଗ ସୋମବଂଶୀ 'ରାଣକ ରଣକେଶରୀଙ୍କ' ଦ୍ୱାରା ପ୍ରତିଷ୍ଠିତ । ଏହି ରାଜାଙ୍କ ନାମ ଗୋବିନ୍ଦପୁର ଶିଳାଲେଖରୁ ମଧ୍ୟ ମିଳିଥାଏ । ଅନୁମିତ ହୁଏ, ସେମାବଂଶର ଅନେକ ରାଜା ରଣକ ବା ସାମନ୍ତ ଭାବରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଶାସନ କରୁଥିଲେ । ବିଶେଷତଃ ବ୍ରାହ୍ମଣୀ ଉପତ୍ୟକାରେ ସେମାନଙ୍କର ଆଧିପତ୍ୟ ବିସ୍ତାର ହୋଇଥିଲା । ଢେଙ୍କାନାଳ ଇତିହାସ ଅନୁଯାୟୀ ଭୁବନ ସନ୍ନିକଟ ବୁକଳ ବନରେ ଯେଉଁ ପ୍ରକାଣ୍ଡ ଶିବଲିଙ୍ଗ ଆରାଧିତ ତାହା ବୁଦ୍ଧ କେଶରୀଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବାରୁ ବୁଦ୍ଧେଶ୍ୱର ନାମରେ ସୁପ୍ରସିଦ୍ଧ । ଏହି ଶିବଲିଙ୍ଗ ଏକ ବୌଦ୍ଧସ୍ତୂପରୁ ଶିବଲିଙ୍ଗରେ ରୂପାନ୍ତରିତ ହୋଇଥିବା ପ୍ରସଙ୍ଗ ପୂର୍ବ ଅଧ୍ୟାୟରେ ଆଲୋଚିତ । ଏହା ବ୍ୟତୀତ, ଭୌମନଗରୀ ପଶ୍ଚିମ ପାର୍ଶ୍ୱସ୍ଥ କମଳାଙ୍ଗ ଗ୍ରାମର କମଳେଶ୍ୱର କମଳକେଶରୀ ଏବଂ ଦକ୍ଷିଣ ପାର୍ଶ୍ୱସ୍ଥ କୁଣ୍ଡଳେଶ୍ୱର କୁଣ୍ଡଳକେଶରୀଙ୍କ ଦ୍ୱାରା ପ୍ରତିଷ୍ଠିତ ବୋଲି ଢେଙ୍କାନାଳ ଇତିହାସରେ ଉଲ୍ଲେଖ ରହିଅଛି । ଏଥିରୁ ପ୍ରମାଣିତ ହେଉଛି, ଶୈବ ସଂସ୍କୃତିର

ଉତ୍ତରଣରେ ସୋମରାଜନ୍ୟବୃନ୍ଦ ବ୍ରାହ୍ମଣୀ ଅବବାହିକାରେ ବହୁ ଶିବଲିଙ୍ଗ ପ୍ରତିଷ୍ଠା କରିଥିଲେ ।

ବ୍ରାହ୍ମଣୀ ଅବବାହିକାରେ ଦଶମ ଶତାବ୍ଦୀର ମଧ୍ୟ ଭାଗରୁ ସୋମବଂଶ ଟାଜତ୍ୱ ଆରମ୍ଭ ହୋଇଥିଲା । ତାହାର ଦେଢ଼ଶହ ବର୍ଷ ପୂର୍ବରୁ ଏହି ଅବବାହିକା ବୌଦ୍ଧତନ୍ତ୍ର ଅଧ୍ୟୁଷିତ ହୋଇଥିଲା । ବିଶେଷତଃ ଲକ୍ଷ୍ମୀଙ୍କରାଙ୍କ ପ୍ରବର୍ତ୍ତିତ ସହଜଯାନର ମୁଖ୍ୟ ପ୍ରଚାରସ୍ଥଳୀ ଥିଲା ବ୍ରାହ୍ମଣୀ ତଟସ୍ଥ ଜୟାଶ୍ରମବୌଦ୍ଧ ବିହାର ଏହି ବୌଦ୍ଧବିହାରରେ ଅନେକ ବୌଦ୍ଧଭିକ୍ଷୁଣୀ ବାସ କରୁଥିଲେ । ସେମାନେ ସହଜଯାନର ସାଧିକା ଥିଲେ । ଏତଦ୍‌ଭିନ୍ନ ଗବେଷକମାନଙ୍କର ମତ ଯେ ସୋନପୁର ଓ କେନ୍ଦୁଝର ମଧ୍ୟସ୍ଥିତ ଭୂଖଣ୍ଡ ହିଁ ଉଡ୍ରାଖ୍ୟ ପୀଠ । ଏଥିରୁ ପ୍ରମାଣିତ ହେଉଛି ସୋନପୁର ଓ କେନ୍ଦୁଝର ମଝିରେ ଅବସ୍ଥିତ ବ୍ରାହ୍ମଣୀ ଉପତ୍ୟକା ହିଁ ବୌଦ୍ଧ ସିଦ୍ଧାଚାର୍ଯ୍ୟଙ୍କର ଚାରଣ ଭୂମି ଥିଲା । ଏହି ପରିପ୍ରେକ୍ଷୀରେ ଭୌମଯୁଗରୁ ବ୍ରାହ୍ମଣୀ ଅବବାହିକାରେ ବୌଦ୍ଧତନ୍ତ୍ରର ପ୍ରାବଲ୍ୟ ବୃଦ୍ଧି ହୋଇଥିଲା । ସୋମବଂଶ ରାଜତ୍ୱରେ ଜୟାଶ୍ରମ ବୌଦ୍ଧ ବିହାର ପଣ୍ଡିମେଶ୍ୱର ଶିବପୀଠ ଏବଂ ଭୁବନ ସନ୍ନିକଟ ବୌଦ୍ଧ ସ୍ତୂପ ବୃଦ୍ଧେଶ୍ୱର ଶିବପୀଠରେ ପରିଣତ ହେଲା । ଏତଦ୍‌ଭିନ୍ନ ବ୍ରାହ୍ମଣୀ କୂଳେ କୂଳେ କମଳେଶ୍ୱର, ରଣେଶ୍ୱର, କନକେଶ୍ୱର, ଉଗ୍ରେଶ୍ୱର ପ୍ରଭୃତିଙ୍କ ଶିବଲିଙ୍ଗ ସ୍ଥାପନ ହୋଇ ଶୈବ ସାମ୍ରାଜ୍ୟ ସୃଷ୍ଟି ହୋଇଥିଲା । ମହାନୀୟତା ହେଉଛି, ସୋମବଂଶୀ ଚନ୍ଦ୍ର କେଶରୀ ହରିହର ଉପାସନା ପ୍ରବର୍ତ୍ତନ କରାଇ ଶୈବ ଓ ବୈଷ୍ଣବ ସଂସ୍କୃତିରେ ସମନ୍ୱୟ ସୃଷ୍ଟି କରିପାରିଥିଲେ । ଗୌରବର କଥା, ସୋମବଂଶ ରାଜତ୍ୱରେ ସିଦ୍ଧାଚାର୍ଯ୍ୟ ବୃନ୍ଦ ଏହି ଭୂଖଣ୍ଡରେ ପ୍ରଥମ ଓଡ଼ିଆ ସାହିତ୍ୟ ରଚନା କରିଥିଲେ, ଯହିଁରୁ ବହୁଳାଂଶ ପରବର୍ତ୍ତୀ କାଳରେ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଙ୍କ ଦ୍ୱାରା ନେପାଳରୁ ଉଦ୍ଧାର କରାଯାଇଛି । ସେହି ପ୍ରାଚୀନତମ ଓଡ଼ିଆ ସାହିତ୍ୟ ଉପରେ ସନ୍ଦର୍ଭ ରଚନା ପୂର୍ବକ ଡକ୍ଟର କରୁଣାକର କର ଅନେକ ଅଜ୍ଞାତ ତଥ୍ୟ ଲୋକ ଲୋଚନକୁ ଆଣିଛନ୍ତି । ସେ ମଧ୍ୟ ପରୋକ୍ଷରେ ସ୍ୱୀକାର କରିଛନ୍ତି ଯେ ସୋନପୁର ଓ କେନ୍ଦୁଝର ମଝିରେ ଅବସ୍ଥିତ ଏହି ଭୂଖଣ୍ଡ ଓଡ଼ିଆ ସାହିତ୍ୟ ସୃଷ୍ଟିର ଆଦିଭୂମି । ଏହି ପୁରୋଦୃଷ୍ଟିରୁ ବ୍ରାହ୍ମଣୀ ଅବବାହିକାରେ ସୋମବଂଶ ରାଜତ୍ୱ ମହତ୍ୱପୂର୍ଣ୍ଣ । ଏହି ସମୟରେ ଧାର୍ମିକ ସଂସ୍କାର ସହିତ ପ୍ରଭୃତ ସାରସ୍ୱତ କଲ୍ୟାଣ ସଂଘଟିତ ହୋଇଥିଲା ।

ସୋମବଂଶ ରାଜତ୍ୱରେ ଏହି ଭୂଖଣ୍ଡରେର ନିର୍ମିତ କପିଳାସର ପ୍ରଥମ ଶିବ ମନ୍ଦିର ଓ ଚାନ୍ଦପୁରର ହରିହର ମନ୍ଦିର କାଳର କରାଳଗତିରେ ଧ୍ୱଂସ

ହୋଇଯାଇଥିଲେ ହେଁ କପିଳାସ ପୀଠସ୍ଥିତ ବୃଷଭ ଗରୁଡ଼, ଯୁଗଳ ମୂର୍ତ୍ତି ତଥ ନାଧରା ପୀଠସ୍ଥିତ ହରିହର ମୂର୍ତ୍ତିରେ ତତ୍କାଳୀନ ଉନ୍ନତ ଶିଳ୍ପ ଶୈଳୀର ପରିଚୟ ଉପଲବ୍ଧ ହୋଇଥାଏ । ଉଭୟ ପ୍ରତ୍ନବିତ୍ତବଙ୍କୁ ଅନୁଧ୍ୟାନ କଲେ ହୃଦ୍‌ବୋଧ ହୁଏ, ସେଗୁଡ଼ିକ ସଂପୂର୍ଣ୍ଣ କଳିଙ୍ଗ ଶ୍ରେଣୀୟ । ଅର୍ଥାତ୍ ଏଥିରେ ଦ୍ରାବିଡ଼ ଶିଳ୍ପଶୈଳୀର ପ୍ରଭାବ ଆଦୌ ନାହିଁ । ମନ୍ଦିରର ସ୍ଥିତି ନଥିବାରୁ ସଂପୂର୍ଣ୍ଣ ଶିଳ୍ପଶୈଳୀ ଆକଳନ ସମ୍ଭବ ନୁହେଁ ।

ଚନ୍ଦ୍ରକେଶରୀଙ୍କ ବୃଷଭ ଶିଳାଲେଖ ବ୍ୟତୀତ ଏହି ବଂଶର ଅନ୍ୟ କୌଣସି ଶିଳାଲେଖ ବା ତାମ୍ରଲେଖ ଏ ଅବଧି ଅନାବିଷ୍କୃତ । ତଥାପି, ବ୍ରାହ୍ମଣୀ ଅବବାହିକାରେ ବହୁ ବ୍ରାହ୍ମଣ ସ୍ୱୀକାର କରନ୍ତି, ସେମାନଙ୍କ ପୂର୍ବ ପୁରୁଷଙ୍କ କେଶରୀ ବଂଶ ଆଣି ଢେଙ୍କାନାଳରେ ରଖାଇଥିଲେ । ଏଣୁ, ନିଃସନ୍ଦେହରେ କୁହାଯାଇପାରେ ଯେ ବ୍ରାହ୍ମଣୀ ଅବବାହିକାରେ ବ୍ରାହ୍ମଣ୍ୟ ଧର୍ମର ପ୍ରସାର ଘଟାଇବାରେ ସୋମବଂଶର ଭୂମିକା ଗୁରୁତ୍ୱ ପୂର୍ଣ୍ଣ । ପ୍ରଶାସନର ଆଭିଲେଖିକ ପ୍ରମାଣ ନ ମିଳିଥିଲେ ହେଁ ଜଣାଯାଏ, ସୋମବଂଶୀ ରାଜନ୍ୟବୃନ୍ଦ ଏହି ଅବବାହିକାରେ ସୁଶାସନ ପ୍ରତିଷ୍ଠା କରିଥିଲେ । ପ୍ରତ୍ୟେକ ଗ୍ରାମର ଜମିଜମା ନିର୍ଦ୍ଧାରଣର ପୂର୍ବକ ରୟତମାନଙ୍କଠାରୁ ରାଜସ୍ୱ ଆଦାୟ ହେଉଥିଲା । ସୋମ ରାଜନ୍ୟବୃନ୍ଦ ପ୍ରାଚୀନ ଭାରତୀୟ ରାଜତନ୍ତ୍ର ଶାସନର ଅନୁଗାମୀ ଥିଲେ । ସେମାନେ ନିଜକୁ ପୌରାଣିକ ପରମ୍ପରାରେ ଉଦ୍‌ବୁଦ୍ଧ କରାଇ ପ୍ରଜାଙ୍କର ପ୍ରିୟଭାଜନ ହୋଇପାରିଥିଲେ । ସୋମ ରାଜନ୍ୟବୃନ୍ଦ କରମୂଳ ଓ ଭୌମନଗରୀରେ ରାଜଧାନୀ ସ୍ଥାପନ କରିଥିଲେ ହେଁ ସମଗ୍ର ଭୂଖଣ୍ଡରେ ଥିବା କ୍ଷୁଦ୍ର ଭୂମ୍ୟାଧିକାରୀଙ୍କୁ ଅଧୀନସ୍ଥ କରିଥିଲେ ।

ମୋଟ ଉପରେ ଉଲ୍ଲେଖ କଲେ, ଦଶମ ଶତାବ୍ଦୀର ମଧ୍ୟ ଭାଗରୁ ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଦୀର୍ଘ ଦୁଇଶହ ବର୍ଷ ବ୍ରାହ୍ମଣୀ ଉପତ୍ୟକାରେ ସୋମବଂଶୀ ରାଣକ ବା ସାମନ୍ତ ବୃନ୍ଦ ସୁଶାସନ ପ୍ରତିଷ୍ଠା କରିଥିଲେ । ଅଧିକନ୍ତୁ, ସେମାନେ ଏହି ଭୂଖଣ୍ଡରେ ଧର୍ମ ସମନ୍ୱୟର ବାର୍ତ୍ତା ପ୍ରଚାର କରିବା ସହିତ ଓଡ଼ିଆ ଲିଖିତ ସାହିତ୍ୟର ଆଦ୍ୟ ପରମ୍ପରାର ସୁଯୋଗ ସୃଷ୍ଟି କରିଥିଲେ । ଢେଙ୍କନାଳର ଐତିହ୍ୟ ଓ ସଂସ୍କୃତିରେ ଏହି ଯୁଗକୁ ସଂସ୍କାର ଓ ସଂସ୍କୃତି ଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ ।

❑

# ଗଙ୍ଗ ରାଜତ୍ୱରେ ଢେଙ୍କାନାଳ (ପୂର୍ବାର୍ଦ୍ଧ)

ଦ୍ୱାଦଶ ଶତାବ୍ଦୀର ପ୍ରଥମ ପାଦରେ ଗଙ୍ଗବଂଶୀ ଚୋଡ଼ଗଙ୍ଗ ଦେବ ସୋମବଂଶର ଶେଷ ରାଜା ସୁବର୍ଣ୍ଣ କେଶରୀଙ୍କୁ ପରାସ୍ତ କରି ଉତ୍କଳ ଅଧିକାର କଲେ । କୋର୍ଣ୍ଣି ତାମ୍ରଶାସନରୁ ଜଣାଯାଏ ଚୋଳଗଙ୍ଗଙ୍କ ଉତ୍କଳ ବିଜୟ ୧୧୧୨ ଖ୍ରୀଷ୍ଟାବ୍ଦ ପୂର୍ବରୁ ହୋଇଥିଲା । ସେ ୧୧୩୫ ଖ୍ରୀଷ୍ଟାବ୍ଦରେ ଆପଣାର ରାଜଧାନୀ ମୁଖଲିଙ୍ଗମ ଠାରୁ କଟକରୁ ଉଠାଇ ଆଣିଲେ । ଐତିହାସିକମାନଙ୍କ ମତରେ ୧୧୩୫ ଠାରୁ ଚୋଡ଼ଗଙ୍ଗ ଗଙ୍ଗାଠାରୁ ଗୋଦବାରୀ ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଭୂଖଣ୍ଡର ଅଧୀଶ୍ୱର ହୋଇଥିଲେ । ଅର୍ଥାତ୍ ସେହି ୧୧୩୫ଠାରୁ ଗଙ୍ଗ ରାଜନ୍ୟବୃନ୍ଦ ଉତ୍କଳ ଅଧିପତି ହେଲେ । ସେହି ସମୟରେ ଢେଙ୍କାନାଳ ଅଞ୍ଚଳରେ ରାଜତ୍ୱ କରୁଥିବା ସୋମବଂଶୀ ସାମନ୍ତବୃନ୍ଦ ଦୁର୍ବଳ ହୋଇପଡ଼ିଲେ । ଫଳରେ କ୍ଷୁଦ୍ର ଭୂମ୍ୟାଧିକାରୀମାନେ ନିଜକୁ ସ୍ୱାଧୀନ ଘୋଷଣା କଲେ । ଶୁଲ୍‌କୀ ରାଜାଙ୍କ ବଂଶଧରମାନେ କୋଦାଳକ ନଗରୀରେ ନାମକୁ ମାତ୍ର ଶାସନ କରୁଥିଲେ ହେଁ ସେମାନଙ୍କର କୌଣସି ଆଧିପତ୍ୟ ନଥିଲା । ସୋମବଂଶ ସାମନ୍ତ ନୃପତିବୃନ୍ଦ ଭୌମନଗରୀ ଓ କରମୂଳରେ ଶାସନ କରୁଥିଲେ ମଧ୍ୟ ସେମାନଙ୍କର ପ୍ରଭୁତ୍ୱ ଓ କ୍ଷମତା ଲୋପ ପାଇସାରିଥିଲା । ଏତଦ୍‌ଭିନ୍ନ, ଗଙ୍ଗବଂଶର ରାଜଧାନୀ କଟକ ଓ ଚୌଦ୍ୱାର ଢେଙ୍କାନାଳଠାରୁ ଅନତିଦୂରରେ ଅବସ୍ଥିତ ଥିବାରୁ ଗଙ୍ଗା ରାଜନ୍ୟବୃନ୍ଦ ଏହି ଅଞ୍ଚଳକୁ ପ୍ରତ୍ୟକ୍ଷ ଶାସନରେ ରଖିଥିଲେ । ପୂର୍ବରୁ ସୋମବଂଶ ଅଧୀନରେ ଥିବା ଭୂମ୍ୟାଧିକାରୀବୃନ୍ଦ ଗଙ୍ଗମାନଙ୍କ ଅଧୀନତା ସ୍ୱୀକାର କରିଥିଲେ ।

ସୂଚନାଯୋଗ୍ୟ ଯେ, ପଶ୍ଚିମରେ ରାଜୁତି କରୁଥିବା ରତନପୁରର କଳଚୁରି ବା ହୈହୟ ରାଜବଂଶ ସହିତ ଗଙ୍ଗବଂଶର ପ୍ରାରମ୍ଭରୁ ବିବାଦ ଲାଗି ରହିଥିଲା । ତେଣୁ ଗଙ୍ଗ ରାଜନ୍ୟ ବୃନ୍ଦ ଢେଙ୍କାନାଳର ପଶ୍ଚିମଦିଗସ୍ଥ ଭୌମନଗରୀକୁ ନିଜ ଦଖଲକୁ ନେଇ ସେହି ପ୍ରାଚୀନ ଦୁର୍ଗରେ ବହୁ ସୈନ୍ୟ ମହଜୁଦ୍ ରଖିଥିଲେ । ଚୋଡ଼ଗଙ୍ଗ ଦେବଙ୍କ ପରେ ତଦୀୟ ପୁତ୍ର କାମାର୍ଣ୍ଣବ ଦେବ ଭୌମ ନଗରୀ ଦୁର୍ଗରେ କିଛିକାଳ ଅବସ୍ଥାନ କରି ହୈହୟ ବଂଶ ନୃପତି ପୃଥ୍ୱୀଦେବ ଦ୍ୱିତୀୟ ଉତ୍କଳ ଆକ୍ରମଣ ପ୍ରତିରୋଧ କରିଥିଲେ । କାମାର୍ଣ୍ଣବଙ୍କ ପରେ ରାଘବ, ରାଜ ରାଜ ଦ୍ୱିତୀୟ, ଅନାୟଙ୍କ ଭୀମ ଓ ରାଜରାଜ ଦେବ ମଧ୍ୟ ଭୌମ ନଗରୀକୁ

ପଶ୍ଚିମାଞ୍ଚଳର ଏକ ସାମରିକ ଘାଟୀ ଭାବରେ ବ୍ୟବହାର କରିଥିଲେ । ଫଳରେ ଭୌମନଗରୀ ଗଙ୍ଗ ନୃପତିବୃନ୍ଦଙ୍କର ସାମୟିକ ନିବାସ ସ୍ଥଳୀରେ ପରିଣତ ହୋଇଥିଲା । ଅନଙ୍ଗ ଭୀମଦେବ ତୃତୀୟଙ୍କ ବାଲ୍ୟାବସ୍ଥା ଭୌମନଗରୀରେ ହିଁ କଟିଥିଲା । ସେ ଏହି ଦୁର୍ଗରେ ଯୁବାବସ୍ଥାରେ ମଲ୍ଲଯୁଦ୍ଧ, ଗଦାଯୁଦ୍ଧ, ତୀର ଚାଳନା ଓ ଅନ୍ୟାନ୍ୟ ସାମରିକ ବିଦ୍ୟା ଶିକ୍ଷା କରିଥିଲେ । ମାଦଳା ପାଞ୍ଜିର ଉଲ୍ଲେଖ ଅନୁଯାୟୀ ତୃତୀୟ ଅନଙ୍ଗଭୀମ ଦେବଙ୍କ ଭୌମନଗରୀ ନିବାସକାଳୀନ ନାମ ଥିଲା ଭୀମ ପରିରାୟ । ତାଙ୍କରି ନାମାନୁସାରେ ଭୌମନଗରୀ ନାମ ପରିବର୍ତ୍ତନ କରାଯାଇ ଭୀମନଗରୀ ରଖାଗଲା । ଭୀମ ପରିରାୟ ଅସାଧାରଣ ବୀର ଥିଲେ । ସେତେବେଳେ ଭୀମନଗରୀ ହିଁ ଥିଲା ତାଙ୍କ ରାଜ୍ୟର ପଶ୍ଚିମ ସୀମା । ଚୌଦ୍ୱାର ଠାରୁ ଭୀମନଗରୀ ପର୍ଯ୍ୟନ୍ତ ରାଜ୍ୟ ଗଙ୍ଗ ଶାସନାଧୀନ ଥିଲେ ହେଁ ବ୍ରାହ୍ମଣୀର ଉତ୍ତରାଞ୍ଚଳରେ ପ୍ରାଚୀନ କୋଦାଳକ ନଗରୀ ନିବାସୀ ସ୍ତମ୍ଭ ନୃପବୃନ୍ଦ ସାମନ୍ତ ରାଜା ଭାବରେ କିଛି ଅଞ୍ଚଳ ଶାସନ କରୁଥିଲେ । ଅନଙ୍ଗ ଭୀମ ଦେବ ପ୍ରଥମେ ଯୁଦ୍ଧରେ ସେମାନଙ୍କୁ ପରାସ୍ତ କରି ବିତାଡ଼ିତ କଲେ । ଅନଙ୍ଗ ଭୀମଦେବଙ୍କ ସହିତ ସ୍ତମ୍ଭରାଜାଙ୍କର ଏହି ଐତିହାସିକ ଯୁଦ୍ଧ ୧୨୧୦ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ହୋଇଥିଲା । ତତ୍‌ପରବର୍ଷ ଅର୍ଥାତ୍ ୧୨୧୧ରେ ତାଙ୍କର ଅଭିଷେକ ହୋଇଥିଲା । ଭୀମନଗରୀ ସନ୍ନିକଟରେ ସେହି ଯୁଦ୍ଧ ସଂଘଟିତ ହୋଇଥିଲା । ଯୁଦ୍ଧର ସ୍ମାରକୀ ସଦୃଶ୍ୟ ଅଦ୍ୟାବଧି ''ଖଣ୍ଡାଧୁଆ ପୋଖରୀ'' ସେହି ସ୍ଥାନରେ ଅବସ୍ଥିତ । ପ୍ରବାଦ ଅଛି, ଏହି ଯୁଦ୍ଧରେ ଅନଙ୍ଗ ଭୀମଦେବ ବହୁ ବ୍ରାହ୍ମଣ ସୈନ୍ୟଙ୍କୁ ବଧ କରିଥିବାରୁ ବ୍ରହ୍ମ ହତ୍ୟା ପାପରେ ଲିପ୍ତ ହୋଇଥିଲେ । ବ୍ରହ୍ମହତ୍ୟା ପାପରୁ ମୁକ୍ତି ପାଇବା ନିମିତ୍ତ ସେ କପିଳାସବାସୀ ଶିଖରେଶ୍ୱରଙ୍କ (ଚନ୍ଦ୍ରଶେଖର) ଶରଣାପନ୍ନ ହୋଇଥିଲେ । ସେହି ସମୟରେ କପିଳାସରେ ଚନ୍ଦ୍ରକେଶରୀଙ୍କ କୃତ ମନ୍ଦିର ବିଦ୍ୟମାନ ଥିଲା । ଅନଙ୍ଗଭୀମ ଦେବ ପୀଠର ପୂର୍ବ ଦିଗରେ ବିଶ୍ୱନାଥଙ୍କ ମନ୍ଦିର ନିର୍ମାଣ କରିଥିଲେ । ଏତଦ୍‌ଭିନ୍ନ ସେ ନାଗନାର ନାଗନାଥ ମନ୍ଦିର ନିର୍ମାଣ ତଥା ସନ୍ନିକଟରେ ସ୍ୱ-ନାମରେ ଭୀମପୁର ଗ୍ରାମ ବସାଇଥିଲେ । ଏହି ଭୀମପୁର ବା ଭୂଇଁପୁର ଗ୍ରାମ ଓଡ଼ିଶା ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବାରୁ ପ୍ରତିବର୍ଷ ସୁନିଆ ଦିବସରେ ପ୍ରଜାମାନଙ୍କଠାରୁ ରାଜସ୍ୱ ଆଦାୟ ନିମିତ୍ତ ପ୍ରଥମେ ଏହି ଗ୍ରାମର ସର୍ବରାକାରଙ୍କ ନିକଟକୁ ଆଦେଶାଯାଏ । ସୂଚନାଯୋଗ୍ୟ ଯେ, ସେହି ସମୟରେ କପିଳାସ ପର୍ବତରେ ବିଲଙ୍କା ନାମରେ ଜନୈକ ଶବର ରାଜା ରାଜୁତି

କରୁଥିଲେ । ଏ ଅବଧି ନିର୍ଜଳ ଗଡ଼ଖାଇ ଓ ରାଜପ୍ରାସାଦର ଭଗ୍ନାବଶେଷକୁ ବିଲଙ୍କାଗଡ଼ କୁହାଯାଉଛି । ଅନଙ୍ଗଭୀମ ଦେବ ତଥା ତାଙ୍କ ସେନାପତି ବିଷ୍ଣୁ ସମାନ୍ତରାୟ ପ୍ରବଳ ପରାକ୍ରମୀ ବିଲଙ୍କାକୁ ପରାସ୍ତ କରିଥିଲେ । ପରିଣାମ ସ୍ୱରୂପ ଅନଙ୍ଗଭୀମଦେବ ସ୍ୱ-ପରାକ୍ରମରେ ସମଗ୍ର ଢେଙ୍କାନାଳ ଭୂଖଣ୍ଡରେ ନିଜର ଆଧିପତ୍ୟ ବିସ୍ତାର କରି ଭୀମନଗରୀରେ ନିବାସ କଲେ । ସେ ଭୌମମାନଙ୍କ ପ୍ରାଚୀନ ରାଜଧାନୀ ଭୀମନଗରୀ ଦୁର୍ଗରୁ ପୁନଃ ନିର୍ମାଣ ପୂର୍ବକ ସୁଦୃଢ କରିଥିଲେ । ସେତେବେଳେକୁ ଦିଲ୍ଲୀରେ ମୁସଲମାନ ରାଜତ୍ୱ ଆରମ୍ଭ ହେଲାଣି । ଅନଙ୍ଗଭୀମଦେବଙ୍କର ବହୁବାର ମୁସଲମାନ ସେନାଙ୍କ ସହିତ ଯୁଦ୍ଧ ସଂଘଟିତ ହୋଇଛି । ସେ ମୁସଲମାନମାନଙ୍କୁ ଯୁଦ୍ଧରେ ପରାସ୍ତ କରି ବହୁ ଧନରତ୍ନ ଆଣି ଭୀମନଗରୀ ଦୁର୍ଗରେ ରଖିଥିଲେ । ଦୁର୍ଗ ବିଧ୍ୱଂସ୍ତ ହେବାପରେ ସ୍ଥାନୀୟ ବ୍ୟକ୍ତିମାନେ ବହୁ ମୁଦ୍ରା ଏଠାରୁ ପାଇଥିଲେ । ୧୯୧୬ ମସିହାରେ ଢେଙ୍କାନାଳର ରାଜା ସୁରପ୍ରତାପ ମହୀନ୍ଦ୍ର ବାହାଦୂର ସେହି ପ୍ରାଚୀନ ମୁଦ୍ରାରୁ କିଛି ସଂଗ୍ରହ କରି ତତ୍‌କାଳୀନ ଛୋଟଲାଟ ସାର୍ ଏଡ଼ୱାର୍ଡ଼ ଆଲବର୍ଟ ଗେଟ୍ ସାହେବଙ୍କ ନିକଟକୁ ପଠାଇଥିଲେ । ଏହି ମୁଦ୍ରା ଅତି ବିରଳ । ଏଗୁଡ଼ିକ ଅଦ୍ୟାବଧି ବିହାର ଓଡ଼ିଶା ପୁରାତନ ମୁଦ୍ରା ଗୁପ୍ତିରେ ସଂରକ୍ଷିତ ଅଛି । ପ୍ରାପ୍ତ ହୋଇଥିବା ୨୫ ପ୍ରକାର ମୁଦ୍ରା ମୁସଲମାନ ରାଜତ୍ୱକାଳୀନ । ଏଥିରୁ ପ୍ରମାଣିତ ହୁଏ, ମସୁଲମାନଙ୍କ ଠାରୁ ଅପହୃତ ବହୁ ମୁଦ୍ରାରେ ଭୀମନଗରୀ ପରିପୂର୍ଣ୍ଣ ଥିଲା । ଅନଙ୍ଗଭୀମ ଦେବ ଏହି ଦୁର୍ଗକୁ ଭୀମନଗରୀ ଦଣ୍ଡପାଟ ନାମରେ ଅଭିହିତ କରାଇଥିଲେ । ୧୨୧୧ ଖ୍ରୀଷ୍ଟାବ୍ଦରେ ରାଜରାଜଦେବ ୩ୟଙ୍କ ମୃତ୍ୟୁପରେ ଅନଙ୍ଗଭୀମ ଦେବଙ୍କୁ ଭୀମନଗରୀରୁ ନିଆଯାଇ ଚୌଦ୍ୱାର ଠାରେ ରାଜପଦରେ ଅଭିଷିକ୍ତ କରାଗଲା । ଏ ସଂପର୍କରେ ମାଦଳାପାଞ୍ଜିରେ ଉଲ୍ଲେଖ ରହିଛି । ''ଏ ଉତ୍ତାରୁ ତାଙ୍କ ସାନଭାଇ ଭୀମ ପରିରାୟଙ୍କୁ ଭୀମନଗରୀ ଦଣ୍ଡପାଟରୁ ଆଣି ରାଜା କଲେ । ଏ ଦ୍ୱିତୀୟ ଅନଙ୍ଗଭୀମ ଦେବ ବୋଇଲେ, ଏ ରାଜା ନଗର ଚଉଦୁଆର କଟକ ବିଜେ କରିଥାନ୍ତି''........ ଚୌଦ୍ୱାର ରାଜଧାନୀ ହେଲେ ହେଁ ମୁସଲମାନ ତଥା ହୈହୈୟମାନଙ୍କୁ ପ୍ରତିରୋଧ କରିବା ନିମିତ୍ତ ସେ ଭୀମନଗରୀରେ ରହୁଥିଲେ ।

ଅନଙ୍ଗଭୀମଦେବ ତୃତୀୟ ହିଁ ଢେଙ୍କାନାଳ ଭୂଖଣ୍ଡରେ ଶ୍ରୀଜଗନ୍ନାଥ ସଂସ୍କୃତିର ପ୍ରଥମ ପ୍ରଚାରକ । ଭୀମନଗରୀର ଦକ୍ଷିଣ ଦିଗରେ ଅନୁଗୂଳ ରାଜ୍ୟ ତଳମୂଳ ଗ୍ରାମଠାରେ ଶ୍ରୀବଳଦେବ ଜୀଉ ବିରାଜିତ ଥିଲେ । ଗବେଷକଙ୍କ

ମତରେ ଏହି ମୂର୍ତ୍ତି ପ୍ରଥମେ ସପ୍ତଫେଣୀଯୁକ୍ତ ନାଗମୂର୍ତ୍ତି ଥିଲେ ଏବଂ ବଜ୍ରଲେପ ଦ୍ୱାରା ବଳଦେବ ମୂର୍ତ୍ତିରେ ରୂପାନ୍ତରିତ । ସଂପ୍ରତି ଏହି ଠାକୁର୍ ଢେଙ୍କାନାଳ ସହରରେ ଶ୍ରୀବତ୍ସ ଖଣ୍ଡଶାଳ ରୀତିରେ ନିର୍ମିତ ଭବ୍ୟମନ୍ଦିରରେ ବିରାଜିତ । ଏହି ମୂର୍ତ୍ତିଙ୍କୁ ଅନଙ୍ଗଭୀମଦେବ ତଳମୂଳଠାରୁ ପୁରୀ ନେବାକୁ ବ୍ୟବସ୍ଥା କରିଥିଲେ । କିନ୍ତୁ ପଥ ମଧ୍ୟରେ ସ୍ୱପ୍ନାଦେଶ ହେବାରୁ ସେ ଏହି ମୂର୍ତ୍ତିଙ୍କୁ ହିନ୍ଦୋଳ ରାଜ୍ୟାନ୍ତର୍ଗତ ଚିତଳପୁର ଠାରେ ଗୋଟିଏ ଦଶଖମ୍ଭ ମଣ୍ଡପ ନିର୍ମାଣ କରାଇ ବିଜେ କରାଇଲେ । ଚିତ୍ତଳପୁର ଠାରେ ଅଦ୍ୟାବଧି ସେହି ଦଶଖମ୍ଭ ମଣ୍ଡପ ଅବସ୍ଥିତ । ପରେ ଭୀମନଗରୀ ଦୁର୍ଗଠାରେ ଏକ ଭବ୍ୟ ମନ୍ଦିର ନିର୍ମାଣ କରାଇ ଠାକୁରଙ୍କୁ ସେହି ମନ୍ଦିରରେ ବିଜେ କରାଇ ତିନି ଧୂପ ଓ ପାଞ୍ଚ ଅବିକାଶ ପୂଜାର ସୁବନ୍ଦୋବସ୍ତ କରିଥିଲେ । ପରବର୍ତ୍ତୀ କାଳରେ ଯବନମାନଙ୍କ ଭୟରେ ସେବକମାନେ ଠାକୁରଙ୍କୁ ନେଇ କାଣ୍ଡବିନ୍ଧା ଗ୍ରାମରେ ପୋଖରୀ ହୁଡ଼ାରେ ପୋତି ପକାଇଲେ । କୌଣସି ଏକ ଶବର ଟୁଙ୍ଗା ଖୋଳୁ ଖୋଳୁ ମୂର୍ତ୍ତିର ସନ୍ଧାନ ପାଇ ନିକଟସ୍ଥ ବେଶାଳିଆ ସାମନ୍ତ ଭଞ୍ଜଙ୍କୁ ଜଣାଇଲେ ଏବଂ ଭଞ୍ଜ ସାମନ୍ତ କାଣ୍ଡବିନ୍ଧା ପୋଖରୀ ହୁଡ଼ାରୁ ଠାକୁରଙ୍କୁ ଆଣି ବେଶାଳିଆରେ ମଣ୍ଡପ ନିର୍ମାଣ ପୂର୍ବକ ପୂଜାକଲେ । ଷୋଡଶ ଶତାବ୍ଦୀରେ ଢେଙ୍କାନାଳ ରାଜବଂଶ ପ୍ରତିଷ୍ଠିତ ହେବାପରେ ବଳଦେବ ଜୀଉ ଢେଙ୍କାନାଳ ଗଡ଼ରେ ଭବ୍ୟ ମନ୍ଦିରରେ ବିରାଜିତ । ଭକ୍ତ ରାମଦାସଙ୍କ ରଚିତ "ବଳଭଦ୍ର ବୋଲି" ପୋଥିରୁ ଜଣାଯାଏ–

"ଏ ପ୍ରଭୁ ସିଦ୍ଧ ବଳଭଦ୍ର ମୂରତି ପୂର୍ବେ ଝାଡ଼ଖଣ୍ଡେ ଥିଲେ,
ତଳମୂଳ ବୋଲି ଅନୁଗୋଳ ସୀମା ଦଶଖମ୍ଭ ମଣ୍ଡପରେ ।
ଝାଡୁଆ ଲୋକ ସ୍ୱଭାବେ ଜ୍ଞାନ ଥୋକ ପ୍ରଭୁଙ୍କୁ ଚିହ୍ନିବେ କାହିଁ,
ଦେବତା ବୋଲି ଭୟକରି ଭଜନ୍ତି ଭାବ ଭକତିତ ନାହିଁ ।
ତହିଁ କେତେ କାଳ ରହି ହଳଧର ସେଠାରୁ ବାହାର ହୋଇ,
ହିନ୍ଦୋଳ ସୀମା ଚିତ୍ତଳ ପୁରଠାରେ ବିଜୟ କିଲୋ ଗୋସାଇଁ ।
ପଥର ମଣ୍ଡପ ତୋଳାଇ ସେଲୋକ ପ୍ରଭୁଙ୍କୁ ବିଜେ କରାଇ,
ଯେତେ ପ୍ରକାରେ ତାଙ୍କର ପୂଜାବିଧି କିଛି ହିଁ ଜାଣନ୍ତି ନାହିଁ ।
ଝାଡୁଆ ଲୋକ ସ୍ୱଭାବେ ଜ୍ଞାନଥୋକ ପ୍ରଭୁଙ୍କୁ ସେବି ରହିଲେ,
ତହିଁ କେତେକାଳ ରହି ହଳଧର ଭୀମନଗ୍ରୀକି ଆଇଲେ ।

ଦେଖିଲେ ଲୋକ ଜ୍ଞାନବନ୍ତ ବିବେକ ଝାଡ଼ଖଣ୍ଡ ଭାଷା ନାହିଁ,
ବୈଷ୍ଣବ ବ୍ରାହ୍ମଣ ଗୁରୁପାଦେ ସେବା ଜୀବଠାରେ ଦୟା ବହି ।
ଦେଖିଣ ଆନନ୍ଦ ହୋଇ ଆଦିକନ୍ଦ ମନରେ ସନ୍ତୋଷ ହେଲେ,
ଭୀମନଗ୍ରୀ କୋଟ ବ୍ରାହ୍ମୀ ନଦୀତଟ ସେଠାରେ ବିଜୟ କଲେ ।
ସେ କାଳେ ଅନଙ୍ଗଭୀମ ଦେବ ବୋଲି ରାଜାଏ ଏଥିରେ ହୋଇ,
ସେଠାରେ ପଥର ମଣ୍ଡପ ତୋଳାଇ ବିଜେ କରାଇଲେ ନେଇ ।
ସେ ରାଜା ଧାର୍ମିକ ସୁଜ୍ଞାନୀ ବିବେକ ଭକତି ଲକ୍ଷଣ ତାର,
ପ୍ରଭୁଙ୍କୁ ବହୁତ ଭକତି ଭାବରେ ସେବାକରେ ନୃପବର ।
ତାଙ୍କରି ମନ ଜାଣନ୍ତି ଅନ୍ତର୍ଯ୍ୟାମୀ ଏଠାରେ ରହିବ ନାହିଁ ।
ରାତ୍ର ଅର୍ଦ୍ଧମାନେ ରାଜାଙ୍କୁ ବୋଇଲେ ଓଡ଼ିଶାକୁ ଯାଅ ତୁହି ।
ଏଥି ଉତ୍ତାରେ କେତେଦିନ ଅନ୍ତରେ ଅନଙ୍ଗ ଭୀମ ନୃପତି,
ଓଡ଼ିଶାକୁ ରାଜା ହୋଇବାକୁ ଗଲା ପ୍ରଭୁଙ୍କୁ ସାଙ୍ଗରେ ଘେତି ।
ପ୍ରଭୁଙ୍କ ମନ ଓଡ଼ିଶାରୁ ନିଉନ ରାଜା ବଳକୃତ କଲା,
ହାତୀ ଉପରେ ଅମାରୀ ସଜକରି ପ୍ରଭୁଙ୍କୁ ବସାଇ ନେଲା ।
ସେଦିନ ଡେଙ୍ଗ ବୋରେଇ ଠାରେ ଆସି ରାଜା ବସା କରି ରହି,
ପ୍ରଭୁଙ୍କ ଆଜ୍ଞା ହୋଇଲା ତୁ ଆମ୍ଭଙ୍କୁ ଏହିଠାରେ ଯାଅ ଥୋଇ ।
ଆମ୍ଭେ ଝାଡ଼ଖଣ୍ଡ ଛାଡ଼ିଣ ନଯିବୁ ଆମ୍ଭର ଏଥିରେ ପ୍ରିୟ,
ସର୍ବ ମଙ୍ଗଳ ଶୁଭ ତୋର ହୋଇବ ମନରେ ଦୁଃଖ ନ ପାଅ ।
ଜଗନ୍ନାଥନେତ ଶିରରେ ବାନ୍ଧିଣ ଓଡ଼ିଶାରେ ହୁଅ ରାଜା,
ତୋହୋ ଦେହେକ ବିପତ୍ତି ନପଡ଼ିବ ମୋତେ କରିଅଛୁ ପୂଜା ।
ପ୍ରଭୁଙ୍କ ଆଜ୍ଞା କରିବାକୁ ଅବଜ୍ଞା ରାଜାର ଶକ୍ୟ ନୋହିଲା,
ପଥର ଦେଉଳ ତୋଳାଇ ସେଠାରେ ବିଜେ କରାଇଣ ଗଲା ।
ନାମ ହେଲା ବଳରାମପୁର ବିଷ ପ୍ରଭୁଙ୍କୁ ଖଞ୍ଜିଲା ଖଞ୍ଜା,
ଭୋଗ ରାଗ ସବୁ ରାଜକାର୍ଯ୍ୟ କରି ଓଡ଼ିଶାକୁ ଗଲା ରାଜା ।''

ପ୍ରାଚୀନ ପୋଥି ''ବଳଭଦ୍ର ବୋଲି''ର ଉଲ୍ଲିଖିତ ପଂକ୍ତିରୁ ଜଣାଯାଏ, ଅନଙ୍ଗଭୀମଦେବ ଶ୍ରୀ ବଳଦେବଜୀଉଙ୍କୁ ତଳମୂଳଠାରୁ ଚିତ୍ତଳପୁର ଏବଂ ଭୀମନଗରୀରେ ବିଜେ କରାଇଥିଲେ । ୧୨୧୧ ଖ୍ରୀଷ୍ଟାବ୍ଦରେ ରାଜା ହେବାକୁ ଯିବା ସମୟରେ ହାତୀ ଉପରେ ଠାକୁରଙ୍କୁ ବସାଇ ନେବାବେଳେ ଠାକୁରଙ୍କ

ଆଦେଶ ମତେ ଡେଙ୍ଗବୋରେଇ ଗ୍ରାମ ଠାରେ ମଣ୍ଡପ ତୋଳାଇ ବିଜେ କରାଇଲେ ତଥା ସମଗ୍ର ବଳରାମପୁର ବିଷ ବା ପ୍ରଗଣା ଠାକୁରଙ୍କ ସେବା ପୂଜା ନିମିତ୍ତ ଖଞ୍ଜି ଦେଲେ । ସେହି ସମୟରେ ଢେଙ୍କାନାଳରେ ରାଜବଂଶ ପ୍ରତିଷ୍ଠିତ ହୋଇନଥିଲା । ପରବର୍ତ୍ତୀ ମୁସଲମାନ ଆକ୍ରମଣ ଭୟରେ ସେବକମାନେ ଠାକୁରଙ୍କୁ କାଣ୍ଡବିନ୍ଧା ପୋଖରୀ ହୁଡ଼ାରେ ପୋତି ପକାଇଥିଲେ ଏବଂ ମୂର୍ତ୍ତି ଉଦ୍ଧାର ହେବାପରେ ଢେଙ୍କାନାଳଗଡ଼ରେ ଶ୍ରୀବତ୍ସ ଖଣ୍ଡଶାଳ ରୀତିରେ ନିର୍ମିତ ମନ୍ଦିରରେ ପୂଜିତ । ଏ ଅବଧି ବଳରାମପୁର ବିଷରେ ଠାକୁରଙ୍କ ଚାଷ ଜମି ରହିଅଛି । ଡେଙ୍ଗବୋରେଇ ଗ୍ରାମରେ ଯେଉଁ ମଣ୍ଡପରେ ପ୍ରଭୁ ବିଜେ ହୋଇଥିଲେ, ସେଠାରେ ବର୍ତ୍ତମାନ ଶ୍ରୀ ରଘୁନାଥ ଜୀଉ ଆରାଧିତ । ସେ ଯାହାହେଉ, ଦ୍ୱାଦଶ ଶତାବ୍ଦୀରେ ଶେଷ ସମୟ ଓ ତ୍ରୟୋଦଶ ଶତାବ୍ଦୀର ପ୍ରାରମ୍ଭରେ ଅନଙ୍ଗଭୀମଦେବ ଢେଙ୍କାନାଳ ଭୂଖଣ୍ଡରେ ଜଗନ୍ନାଥ ସଂସ୍କୃତିର ପ୍ରସାର ଘଟାଇଥିଲେ । ସେ ମଧ୍ୟ କଟକଠାରେ ଏକ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ, ଯାହା ୧୩୬୧ ଖ୍ରୀଷ୍ଟାବ୍ଦରେ ଫିରୋଜ ସାହାଙ୍କ ଦ୍ୱାରା ଧ୍ୱଂସ୍ତ ହୋଇଥିଲା । ତତ୍‌ପ୍ରଦତ୍ତ ନାଗରୀ ତାମ୍ର ଶାସନରୁ ଉପଲବ୍ଧ ହୁଏ ଅନଙ୍ଗଭୀମଦେବ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର ନିର୍ମାଣ ପରେ ବ୍ରାହ୍ମଣମାନଙ୍କୁ ପୁରୁଷୋତ୍ତମ ପ୍ରୀତ୍ୟର୍ଥେ ଭୂମିଦାନ କରିଥିଲେ । ଐତିହାସିକଙ୍କ ମତରେ ସେ ଭୁବନେଶ୍ୱର ମନ୍ଦିର ଓ ପୁରୀ ମନ୍ଦିରର ପ୍ରଭୁତ କଲ୍ୟାଣ ନିମିତ୍ତ ବହୁ ଭୂସମ୍ପତ୍ତି ଦାନ କରିଥିଲେ । ଲିଙ୍ଗରାଜା ମନ୍ଦିର ଶିଳାଲେଖ ଓ ପୁରୀ ପାତାଳେଶ୍ୱର ମନ୍ଦିର ଅଭିଲେଖରୁ ଏହାର ସତ୍ୟତା ପ୍ରତିପାଦନ ହୋଇଥାଏ । ଗୁରୁତ୍ୱପୂର୍ଣ୍ଣ ହେଉଛି, ଚାଟେଶ୍ୱର ମନ୍ଦିର ଶିଳାଲେଖରେ ଅନଙ୍ଗଭମୀଦେବ ଓ ତାଙ୍କ ସେନାପତି ବିଷ୍ଣୁ ସାମନ୍ତ ରାୟଙ୍କର ମୁସଲମାନ ସହିତ ଯୁଦ୍ଧ ଓ ଅଭିଯାନ ବର୍ଣ୍ଣିତ । ମହତ୍ତ୍ୱପୂର୍ଣ୍ଣ ହେଉଛି, ପ୍ରବଳ ପରାକ୍ରମୀ ଅନଙ୍ଗଭୀମଦେବ ବିଶାଳ ଓଡ଼ିଶା ସାମ୍ରାଜ୍ୟକୁ ପୁରୁଷୋତ୍ତମ ଜଗନ୍ନାଥଙ୍କ ପଦତଳେ ସମର୍ପଣ ପୂର୍ବକ ଆପଣାକୁ ରାଉତ ଭାବେ ଉଦ୍‌ଘୋଷଣା କରିଥିଲେ ।

ମାଦଳା ପାଞ୍ଜି ବର୍ଣ୍ଣନାନୁସାରେ ଅନଙ୍ଗଭୀମ ଦେବ ସମଗ୍ର ଓଡ଼ିଶାରେ ଭୂବନ୍ଦୋବସ୍ତ କରାଇଥିଲେ । ଏହି ବନ୍ଦୋବସ୍ତର ବିବରଣୀରୁ ଜଣାଯାଏ ସମଗ୍ର ଢେଙ୍କାନାଳ ଅଞ୍ଚଳଟି ଗଙ୍ଗ ରାଜାଙ୍କ ପ୍ରତ୍ୟକ୍ଷ ଶାସନାଧୀନ ଥିଲା । ସେହି ସମୟରେ ଭୀମନଗରୀ ଗଙ୍ଗବଂଶର ଦ୍ୱିତୀୟ ରାଜଧାନୀ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । କରମୂଳ ରାଜବଂଶ ପ୍ରତିପତ୍ତି ହରାଇଲେ ତଥା କୋଦାଳକ ସ୍ତମ୍ଭ

ବଂଶ ବତାଡ଼ିତ ହୋଇ କେନ୍ଦୁଝର ସୀମାନ୍ତ କାଳିଆହତା ଠାରେ ସାମନ୍ତରାଜା ଭାବରେ ନିବାସ କଲେ । ଏ ଅବଧି ସେମାନଙ୍କ ବଂଶଧର କାଳିଆହତାରେ ରହିଛନ୍ତି । ଫଳରେ ସମଗ୍ର ଢେଙ୍କାନାଳ ଅନଙ୍ଗ ଭୀମ ଦେବଙ୍କ ରାଜତ୍ୱ କାଳରୁ ଗଙ୍ଗ ଶାସନାଧୀନ ହେଲା । କେବଳ ସେତିକ ନୁହେଁ, ସୋମବଂଶ ରାଜତ୍ୱ କାଳରୁ ଉତ୍କଳର ସୀମା ପଶ୍ଚିମରେ ଭୌମ ନଗରୀ ବା ଭୀମ ନଗରୀ ପର୍ଯ୍ୟନ୍ତ ଥିଲେ ହେଁ ଅନଙ୍ଗଭୀମ ଦେବଙ୍କ ରାଜତ୍ୱରେ ଏହା ସୋନପୁର ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲା । ଅନଙ୍ଗଭୀମଦେବଙ୍କ ମୁଦଲଭାଷା ଉଦ୍‌ଘୋଷଣା ଜଣାଯାଏ, "ଏ ଓଡ଼ିଶା ରାଜ୍ୟ ଯେ କେଶରୀରାଜାମାନଙ୍କୁ ଆଦିକରି ଗଙ୍ଗ ବଂଶ ଆମ୍ଭ ଛଅ ପାଟ ସରିକ ରାଜ୍ୟ ଭୋଗ ହେଉଥିଲା ପୂର୍ବଦିଗେ ଅର୍କକ୍ଷେତ୍ର ସମୁଦ୍ର ତୀରଠାରୁ ପଶ୍ଚିମେ ଭୀମନଗରୀ ଦଣ୍ଡପାଟ ସରିକି । ×××××× ପଶ୍ଚିମେ ଆୟ କଲୁ ଭୀମନଗରୀ ଦଣ୍ଡପାଟ ଠାରୁ ବୌଦ ସୀମା ସୁନୁପୁର ସରିକ ××××××" ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି, ସମଗ୍ର ଢେଙ୍କାନାଳ ସମେତ ଅନୁଗୁଳ, ଆଠମଲିକ, ବୌଦ ଓ ସୋନପୁର ଗଙ୍ଗ ସାମ୍ରାଜ୍ୟଭୁକ୍ତ ଥିଲା । ଏହି ଭୂଖଣ୍ଡରେ ପୂର୍ବରୁ ଶୈବ, ନାଗ, ଶାକ୍ତ ଓ ବୈଷ୍ଣବ ସଂସ୍କୃତିର ପ୍ରସାର ଘଟିଥିଲେ ହେଁ ଅନଙ୍ଗଭୀମ ଦେବଙ୍କ ରାଜତ୍ୱରେ ଜଗନ୍ନାଥ ସଂସ୍କୃତିର ପ୍ରବାହ ଅନୁଭୂତ ହୋଇଥିଲା । କପିଳାସରେ ସେ ବୃଦ୍ଧେଶ୍ୱର (ବୁଢ଼ାଲିଙ୍ଗ)ଙ୍କ ମନ୍ଦିର ଓ ନାଗନାରେ ନାଗନାଥେଶ୍ୱରଙ୍କ ମନ୍ଦିର ନିର୍ମାଣ କରିଥିବାରୁ ତାଙ୍କୁ କେତେକ ଶୈବଧର୍ମାବଲମ୍ବୀ ବିବେଚନା କରିଥାନ୍ତି । ପ୍ରକୃତପକ୍ଷେ, ସେ ଥିଲେ ଉଦାରଚେତା ସମନ୍ୱୟବାଦୀ ଯାହାକି ଢେଙ୍କାନାଳ ଅଞ୍ଚଳରେ ତାଙ୍କ କିର୍ତ୍ତୀରାଜିରୁ ସୁସ୍ପଷ୍ଟ । ଶୈବ, ଶାକ୍ତ ଓ ବୈଷ୍ଣବ ସଂସ୍କୃତି ସହିତ ଜଗନ୍ନାଥ ସଂସ୍କୃତିର ଅପୂର୍ବ ସମନ୍ୱୟ ସେ ଢେଙ୍କାନାଳ କାହିଁକି ସମଗ୍ର ଓଡ଼ିଶା ଭୂଖଣ୍ଡରେ ଘଟାଇ ପାରିଥିଲେ ।

ଗଙ୍ଗ ରାଜତ୍ୱ ପୂର୍ବରୁ ପୁରାଣ ପ୍ରସିଦ୍ଧ ଶୈବ ଶୈଳକ୍ଷେତ୍ର କପିଳାସରେ ଚନ୍ଦ୍ରକେଶରୀଙ୍କ ଦ୍ୱାରା ମନ୍ଦିର ନିର୍ମାଣ ହୋଇ ଏହି ତୀର୍ଥ ହରିହର ତୀର୍ଥର ମାନ୍ୟତା ଲାଭ କରିଥିଲା । ପୁଣ୍ୟପୀଠ କପିଳାସ ସାଧୁସନ୍ଥ ମହାତ୍ମାଙ୍କ ନିତ୍ୟ ନିବାସସ୍ଥଳୀ । ଅନଙ୍ଗଭୀମଦେବ ଏହି ପର୍ବତରେ ରାଜୁତି କରୁଥିବା ଶବର ରାଜା ବିଲଙ୍କାରୁ ପରାସ୍ତ କରି କପିଳାସ ପୀଠର ପ୍ରସିଦ୍ଧି କାମନା କରି ଏଠାରେ ବୃଦ୍ଧେଶ୍ୱରଙ୍କ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କ ରାଜତ୍ୱର ପ୍ରାଥମିକ କାଳରେ ଅର୍ଥାତ୍ ୧୨୧୧ ଠାରୁ ୧୨୩୮ ପର୍ଯ୍ୟନ୍ତ ରାଜତ୍ୱର ପ୍ରଥମାର୍ଦ୍ଧରେ କପିଳାସରେ

ଚନ୍ଦ୍ରକେଶରୀଙ୍କ କୃତ ମନ୍ଦିର ଅକ୍ଷୁର୍ଣ୍ଣ ରହିଥିଲା । ବୋଧହୁଏ, ତାଙ୍କ ରାଜତ୍ୱର ଶେଷ କାଳରେ ମନ୍ଦିରଟି ଭାଙ୍ଗି ଯାଇଥିଲା । ଅନଙ୍ଗଭୀମଦେବ ମନ୍ଦିର ପୁନଃ ନିର୍ମାଣ କାମନା କରିଥିଲେ ହେଁ ତାଙ୍କ ଜୀବଦଶାରେ ତାହା ସମ୍ଭବ ହୋଇନଥିଲା । ହୈହେୟ ବଂଶ ସହିତ ଗଙ୍ଗ ବଂଶର ଶତ୍ରୁତା ପାଠକଙ୍କୁ ପୂର୍ବରୁ ଅବଗତ ଥିବ । ଉଦାରଚେତା ଅନଙ୍ଗଭୀମଦେବ ଆପଣାରେ କନ୍ୟା ଚନ୍ଦ୍ରିକା ଦେବୀଙ୍କ ସହିତ ହୈହେୟ ରାଜପୁତ୍ର ପରମାର୍ଦ୍ଦୀ ଦେବଙ୍କ ବିବାହ କରାଇ ମହାନତାର ପରିଚୟ ଦେଇଥିଲେ । ଏହି ବିବାହ ଉତ୍ସବ ଭୀମନଗରୀ ଦୁର୍ଗଠାରେ ମହାସମାରୋହରେ ଅନୁଷ୍ଠିତ ହୋଇଥିଲା । ପରବର୍ତ୍ତୀ କାଳରେ ମୁସଲମାନ ତୁଘାନ ଖାଁ ସହିତ ଯୁଦ୍ଧରେ ପରମାର୍ଦ୍ଦୀ ଦେବଙ୍କ ବିୟୋଗ ଘଟିଥିଲା । ତଦ୍ଦୀୟ ଧର୍ମପତ୍ନୀ ଚନ୍ଦ୍ରିକାଦେବୀ ଭୁବନେଶ୍ୱରରେ ଅନନ୍ତ ବାସୁଦେବ ମନ୍ଦିର ନିର୍ମାଣ କରିଥିଲେ । ଏଥିରୁ ହୃଦ୍‌ବୋଧ ହେଉଛି ଅନଙ୍ଗଭୀମଦେବ ଓ ତଦ୍ଦୀୟ କନ୍ୟା ଶୈବ ସଂସ୍କୃତି ସହିତ ଜଗନ୍ନାଥ ସଂସ୍କୃତିର ସମନ୍ୱୟ କାମନା କରିଥିଲେ ।

ଐତିହାସିକ ମତରେ ଗଙ୍ଗ ରାଜତ୍ୱରେ ଢେଙ୍କାନାଳ, ଅନୁଗୁଳ ଓ ତାଳଚେର ପ୍ରଭୃତି ଅଞ୍ଚଳ 'କୋଟାଟବୀ' ନାମରେ ଖ୍ୟାତ ଥିଲା । ପଣ୍ଡିତ ରାମଚନ୍ଦ୍ରନନ୍ଦଙ୍କ ରଚିତ ଢେଙ୍କାନାଳ ଇତିହାସରେ ମଧ୍ୟ ଉଲ୍ଲିଖିତ ଅଛି ଯେ ଭୀମ ନଗରୀ ଏହି କୋଟାଟବୀ ରାଜ୍ୟର ରାଜଧାନୀ ଥିଲା । କୋଟର ଅର୍ଥ ଦୁର୍ଗ ଏବଂ କୋଟୀଟବୀର ଅର୍ଥ ଦୁର୍ଗ ପରିପୂର୍ଣ୍ଣ । ପୂର୍ବେ ଭୀମନଗରୀ ଦୁର୍ଗର ଚତୁଃପାର୍ଶ୍ୱରେ ବହୁ କୋଟ ବା ଦୁର୍ଗ ରହିଥିଲା । ବର୍ତ୍ତମାନ ମଧ୍ୟ ସେହି ସବୁ ସ୍ଥାନର କୋଟ ଆଖ୍ୟା ରହିଅଛି । ଯଥା ପୂର୍ବରେ ଯମୁନାକୋଟ, ପଶ୍ଚିମରେ ବଜ୍ରକୋଟ, ଦକ୍ଷିଣରେ ପୁରୁଣାକୋଟ, ଦଦୁରକୋଟ, ଅଚଳକୋଟ ଏବଂ ପୂର୍ବ ଦକ୍ଷିଣରେ ତାଳବରକୋଟ ତଥା କାମଧେନୁ କୋଟ । ଏଥିରୁ ସୂଚିତ ହେଉଛି, ଅନଙ୍ଗଭୀମଦେବ ଭୀମନଗରୀ ଦଣ୍ଡପାଟର ଚତୁର୍ଦ୍ଦିଗରେ ବିଭିନ୍ନ ସ୍ଥାନରେ କୋଟ ନିର୍ମାଣ ପୂର୍ବକ ପଶ୍ଚିମାଞ୍ଚଳ ସୁରକ୍ଷା ବିଧି ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ସେ ଏହିସବୁ କୋଟରେ ଅବସ୍ଥିତ ସୈନ୍ୟବୃନ୍ଦଙ୍କୁ ବହୁ ପରିମାଣରେ ଭୂସମ୍ପତ୍ତି ଜାୟଗିରୀ ସ୍ୱରୂପ ପ୍ରଦାନ କରିଥିଲେ । ବର୍ତ୍ତମାନ ଏହିସବୁ ସ୍ଥାନ ଓ ତତ୍ ପାର୍ଶ୍ୱବର୍ତ୍ତୀ ସ୍ଥାନମାନଙ୍କରେ ପାଇକମାନଙ୍କ ବଂଶଧରମାନେ ନିବାସ କରୁଅଛନ୍ତି । ଏତଦ୍‌ଭିନ୍ନ ଢେଙ୍କାନାଳ ଅଞ୍ଚଳରେ ସେହି ସମୟରେ ନିବାସ କରୁଥିବା କ୍ଷୁଦ୍ର ଭୂମ୍ୟାଧିକାରୀ ବୃନ୍ଦ ଗଙ୍ଗବଂଶର ଅଧୀନସ୍ଥ ଥିଲେ ତଥା ଆବଶ୍ୟକ ପଡ଼ିଲେ

ସୈନ୍ୟସାମନ୍ତ ସହ ଗଙ୍ଗବାହିନୀରେ ଯୋଗ ଦେଉଥିଲେ । ଯୁଦ୍ଧରେ କୃତୀତ୍ୱ ପ୍ରଦର୍ଶନ କରୁଥିବା ପାଇକମାନଙ୍କୁ ଗଙ୍ଗ ନୃପତିବୃନ୍ଦ ଉତ୍ତରକବାଟ, ଦକ୍ଷିଣ କବାଟ, ପଶ୍ଚିମ କବାଟ, ରଣସିଂହ, ସୁବାହୁ ସିଂହ, ଲେଙ୍କା, ବଳୀୟାର ସିଂହ, ଗୁମାନସିଂହ, ମହାନାୟକ ପ୍ରଭୃତି ପଦପଦବୀରେ ଭୂଷିତ କରୁଥିଲେ । ଏପର୍ଯ୍ୟନ୍ତ ସେମାନଙ୍କ ବଂଶଧରମାନେ ସେହି ସବୁ ପଦବୀ ବ୍ୟବହାର କରୁଅଛନ୍ତି । ଅନଙ୍ଗଭୀମଦେବ ବ୍ରାହ୍ମଣୀ ତଟରେ ସ୍ୱନାମରେ ଭୀମପୁର ବା ଭୂଇଁପୁର ଗ୍ରାମ ବସାଇଥିବା ପୂର୍ବରୁ କୁହାଯାଇଛି । ସେହି ସ୍ଥାନରେ ସେ ଭୀମାଦେବୀଙ୍କ ମୂର୍ତ୍ତି ପ୍ରତିଷ୍ଠା ପୂର୍ବକ ମନ୍ଦିର ନିର୍ମାଣ କରିଥିଲେ । ଏହି ଦେବୀ ବର୍ତ୍ତମାନ ଗ୍ରାମ ଦେବତୀ ରୂପେ ପରିଚିତ । ଅନଙ୍ଗଭୀମଦେବଙ୍କ ସେନାପତି ବିଷ୍ଣୁ ସାମନ୍ତରାୟ ଏହି ଅଞ୍ଚଳରେ ବିଷ୍ଣୁପୁର ନାମରେ ଏକ ବ୍ରାହ୍ମଣ ଶାସନ ଓ ସାମନ୍ତରାୟ ପୁର ନାମରେ ଏକ ଗ୍ରାମ ବସାଇଥିଲେ । ଗ୍ରାମ ଦୁଇଟି ଅଦ୍ୟାବଧି ସେହି ନାମରେ ରହିଅଛି ।

୧୧୩୭ ଠାରୁ ୧୨୩୮ ପର୍ଯ୍ୟନ୍ତ ଦୀର୍ଘ ଶହେ ବର୍ଷ ଢେଙ୍କାନାଳରେ ଗଙ୍ଗବଂଶ ସୁଶାସନ ପ୍ରତିଷ୍ଠା କରିଥିଲେ । ଗଙ୍ଗ ରାଜତ୍ୱର ଏହି ଅବାଲୋଚିତ ଅଧ୍ୟାୟରୁ ଉପଲବ୍ଧି ହୁଏ, ଗଙ୍ଗ ନୃପତିମାନେ ଓଡ଼ିଶାର ମଧ୍ୟାଞ୍ଚଳରେ ଅବସ୍ଥିତ ଢେଙ୍କାନାଳ ଭୂଖଣ୍ଡକୁ ସାମରିକ ଓ ସାଂସ୍କୃତିକ ଦୃଷ୍ଟି କୋଣରୁ ଗୁରୁତ୍ୱ ପ୍ରଦାନ କରିଥିଲେ । ସେହି ସମୟରେ ଏହି ଭୂଖଣ୍ଡରେ ଏକ ସମନ୍ୱୟାତ୍ମକ ସାଂସ୍କୃତିକ ଧାରା ପ୍ରବାହିତ ହୋଇ ଶୈବ, ଶାକ୍ତ, ନାଗ, ବୈଷ୍ଣବ ଓ ଜଗନ୍ନାଥ ସଂସ୍କୃତିର ମହାମିଳନ ସଂଘଟିତ ହୋଇଥିଲା ।



# ଗଙ୍ଗ ରାଜତ୍ୱରେ ଢେଙ୍କାନାଳ (ଉତ୍ତରାର୍ଦ୍ଧ)

ତୃତୀୟ ଅନଙ୍ଗଭୀମ ଦେବଙ୍କ ପରେ ତଦୀୟ ପୁତ୍ର ପ୍ରଥମ ନରସିଂହଦେବ ୧୨୩୮ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କଲେ । ଏହାଙ୍କ ଶାସନରେ ଓଡ଼ିଶାର ଗୌରବ ଚରମ ସୀମାରେ ପହଞ୍ଚି ଥିଲା । ଏହି ରାଜାଙ୍କ ପୋଷାକରେ ଲାଙ୍ଗଡ଼ ସଦୃଶ ଗୋଟିଏ ରହିଥିବାରୁ ତାଙ୍କୁ ଲୋକମାନେ ଲାଙ୍ଗୁଳା ନରସିଂହ ଦେବ କହୁଥିଲେ । କୋଣାର୍କର ସୂର୍ଯ୍ୟମନ୍ଦିର, ରେମୁଣା ଗୋପୀନାଥ ମନ୍ଦିର ଓ କପିଳାସର ଶିବ ମନ୍ଦିର ପ୍ରଭୃତି ୧ମ ନରସିଂହ ଦେବଙ୍କ କୀର୍ତ୍ତି ତାଙ୍କ ପିତାଙ୍କ ରାଜତ୍ୱ ଶେଷବେଳକୁ କପିଳାସରେ ଚନ୍ଦ୍ରକେଶରୀ ନିର୍ମାଣ କରିଥିବା ଶିବମନ୍ଦିରଟି ଭାଙ୍ଗି ଯାଇଥିଲା । ଅନଙ୍ଗଭୀମ ଦେବ ଏହି ମନ୍ଦିରକୁ ନିର୍ମାଣ କରିବା ନିମିତ୍ତ ଆଶାପୋଷଣ କରିଥିଲେ ହେଁ ସ୍ୱ-ଜୀବଦ୍ଦଶାରେ କରିପାରି ନଥିଲେ । ରାଜତ୍ୱର ପ୍ରାରମ୍ଭରେ ନରସିଂହ ଦେବ ମୁସଲମାନ ଆକ୍ରମଣକାରୀଙ୍କ ସହିତ ଯୁଦ୍ଧରେ ଲିପ୍ତ ଥିବାରୁ ପରେ କପିଳାସର ଶିବମନ୍ଦିର ନିର୍ମାଣ କରାଇଥିଲେ ।

କପିଳାସ ପୀଠ ସ୍ଥିତ ଦଧିନଉତି ଶିଳା ଲେଖରୁ ଜଣାଯାଏ ମନ୍ଦିରଟି ନରସିଂହ ଦେବଙ୍କ ରାଜତ୍ୱର ୧୦ ଅଙ୍କରେ ଅର୍ଥାତ୍ ୧୨୪୬ ଖ୍ରୀଷ୍ଟାବ୍ଦରେ ନିର୍ମାଣ କରାଯାଇଥିଲା । ଏହି ଦଧିନଉତି ଥିବା ଶିଳାଲେଖଟି ତିନି ଭାଗରେ ବିଭକ୍ତ । ପ୍ରଥମ ଭାଗଟି ଉପର ଗୋଲଚୂଡ଼ା ବା ଘଡ଼ି, ଦ୍ୱିତୀୟ ଭାଗଟି ମଧ୍ୟ ଭାଗ ବା ହାଣ୍ଡି ଏବଂ ତୃତୀୟ ଭାଗଟି ତଳଅଂଶ ବା କର୍ପୂରୀ; ପ୍ରଥମ ଭାଗରେ ଦୁଇଟି ପଂକ୍ତି, ଦ୍ୱିତୀୟ ଭାଗରେ ଛଅଗୋଟି ପଂକ୍ତି ଓ ତୃତୀୟ ଭାଗରେ ଦୁଇଗୋଟି ପଂକ୍ତି ଏ ରୂପେ ଦଶଗୋଟି ପଂକ୍ତି ଶିଳାଲେଖରେ ଖୋଦିତ ହୋଇଛି । Inscriptions of Orissa Vol V part I page 136) ଅନୁଯାୟୀ ଶିଳାଲେଖ ପାଠୋଦ୍ଧାର ହେଉଛି—

**୧ମ ପଂକ୍ତି :** ସ୍ୱସ୍ତି (।) ସତ୍ୟ (ତ୍ୟ) ଦ୍ୱାପର ତ୍ରେତା କଳିଜୁ (ଯୁ)ଗେ ନରସିଂହ ଦେବ ଦେଉଳ ଘୀଲା କୈଳାସ ଶିଖରେ ସ୍ୱ—

**୨ୟ ପଂକ୍ତି :** ରି (।) ବଇସାଖ ସୁକ (କ୍ଲ) ତ୍ରଓ୍ୱୋ (ୟୋ) ଦସି ଚନ୍ଦ୍ରବାରେ ସ୍ରାହି ଦସ ୧୦ବ (ବୀ) ରଶ୍ରୀ ନରସିଂହ ଦେବ ରାଜା (।।)

**୩ୟ ପଂକ୍ତି :** ସ୍ୱସ୍ତି (।) ଚ(ତୁ)ର୍ଦ୍ଦଶ ଭୁବନାଧିପତି ଶ୍ରୀମତ୍ ପୁରୁଷୋତ୍ତମ ଚରଣା ଦେଶ (ଶା) ତା (ତ) ସମର ମୁଖାନେକ

**୪ର୍ଥ ପଂକ୍ତି :** ରିପୁ ଦର୍ପ ମର୍ଦ୍ଦନ ଭୁଜବଳ ପରାକ୍ରମ (ଃ) ପରମ ମାହେଶ୍ୱର(ଃ) ପର (ମ) ଭଟ୍ଟାରକ (ଃ) ଜଗନ୍ମୂଳ କାରଣ ଶୀ (ଶ୍ରୀ) ଦୁ-

**୫ମ ପଂକ୍ତି :** ର୍ଗା ପୁତ୍ର (ଃ) ଶୀ (ଶ୍ରୀ) ପୁରୁଷୋତ୍ତମ ପୁତ୍ର (ଃ) ତ୍ରୟୀ ବସୁନ୍ଧରା ସମୁଦ୍ଧରଣ ପ୍ରଚଣ୍ଡ ଦୋର୍ଦ୍ଦଣ୍ଡ ମା (ମ)ହା ବରାହ(ଃ) ମହାରାଜାଧୀ (ଧି) ରାଜ

**୬ଷ୍ଠ ପଂକ୍ତି :** ପର (ମେ)ଶ୍ୱର(ଃ) ଗଂ (ଗ)ଙ୍ଗାନ୍ୱୟା ବଲମ (ମ୍ୱ)ନଃ ସ୍ତମ୍ଭ (ଃ) ଶ୍ରୀମଦ୍ ଅ(ନ)ନ୍ତ ବର୍ମ (ଗଜ)ତ୍ତି (ପ୍ତି) ବି (ବୀ) ରଶୀ (ଶ୍ରୀ) ନରସିଂହ ଦେବ ବିଜୟ (ୟୀ) (।)

**୭ମ ପଂକ୍ତି :** କୈଳାସ ଶିଖରେଶ୍ୱର (ରୀ) ନାଗନା ଭୀମପୁର ମୟାଦଦ (ତ୍ତ) ଏତଦ୍ (ଦ)ଧର୍ମ ବିରୋର୍ଥ (ଧାତ୍) ନରକଂଜା (ଯା)ତି (।) ଏ

**୮ମ ପଂକ୍ତି :** ତଦ (ଦ) ଧର୍ମ ପାଳନଂ ସ (ସ୍ୱ)ର୍ଗ ଲୋକଂ ଗଛତି । ବୀର ଶ୍ରୀ ନରସିଂହ ଦେବ ସଦା ବିଜଇ (।।)

**୯ମ ପଂକ୍ତି :** ସ୍ୱସ୍ତି (।) ଶ୍ରୀ ବୀର ନରସିଂହ ଦେବ ରାଜ୍ୟେ ୧୮ ସ୍ୱାହି କୈଳାସ

**୧୦ମ ପଂକ୍ତି :** ଦେବକଈ ତୁଳସୀ ସେନାପତି ରାୟି ଗ୍ରାମ ଚତୁରସି(ସୀ) ମା (ପ୍ର)ଦତ (ତ୍ତ) (।।)

କପିଳାସର ଦଧିନଉତି ଶିଳାଲିପିଟି ଏକ ତ୍ରୈଭାଷିକ ଶିଳାଲିପି । ସଂସ୍କୃତ ଭାଷା, ଅପଭ୍ରଂଶ ମାଗଧୀ ଭାଷା ଓ ପ୍ରାଚୀନ ଓଡ଼ିଆ ଭାଷା ମିଶ୍ରିତ ଶବ୍ଦାବଳୀରେ ଶିଳଲେଖଟି ଖୋଦିତ । ଲିପିତତ୍ତ୍ୱ ଦୃଷ୍ଟିରୁ ପ୍ରତ୍ନ ଓଡ଼ିଆ ଲିପିରେ ଖୋଦିତ ଏହି ଶିଳା ଲେଖଟି ଗୁରୁତ୍ୱପୂର୍ଣ୍ଣ । ମହତ୍ୱ ପୂର୍ଣ୍ଣ ହେଉଛି, ଶିଳା ଲେଖଟିରେ ପ୍ରଥମେ ଗଜପତି ଶବ୍ଦ ବ୍ୟବହାର କରାଯାଇଛି । ପାଠୋଦ୍ଧାରରୁ ହୃଦ୍‌ବୋଧ ହୁଏ, ପ୍ରଥମ ନରସିଂହ ଦେବଙ୍କ ୧୦ ଅଙ୍କ ବୈଶାଖ ଶୁକ୍ଳ ତ୍ରୟୋଦଶୀ ସୋମବାର ମନ୍ଦିର ପ୍ରତିଷ୍ଠା ହୋଇଥିଲା । ଏହା ହେଉଛି ୧୨୪୬ ଖ୍ରୀଷ୍ଟାବ୍ଦ ଅପ୍ରେଲ ମାସ ୩୦ ତାରିଖ । ନରସିଂହ ଦେବ ଠାକୁରଙ୍କ ସେବା ପୂଜା ନିମିତ୍ତ ସ୍ୱପିତୃ ପ୍ରତିଷ୍ଠିତ ନାଗନା ଓ ଭୀମପୁର ଜନପଦ ଦାନ କରିଥିଲେ ବୋଲି ଉଲ୍ଲେଖ କରିଛନ୍ତି । ସେ

ସ୍ୱରାଜଦ୍ୱର ୧୮ ଅଙ୍କରେର ତୁଳସୀ ସେନାପତିଙ୍କୁ ଦେଉଳ ତତ୍ତ୍ୱାବଧାରକ ରୂପେ ନିଯୁକ୍ତି ପ୍ରଦାନ କରି ରାୟିତଏଲା ଗ୍ରାମ ଚତୁଃସୀମା ସହ ଜାୟଗିରୀ ଦେଇଥିଲେ ।

୨୨୩୯ ଫୁଟ ଉଚ୍ଚତା ବିଶିଷ୍ଟ କପିଳାସ ପର୍ବତର କଟି ଦେଶରେ ୧୫୦୦ ଫୁଟ ଉଚ୍ଚରେ ମନ୍ଦିରଟି ଅବସ୍ଥିତ । ନରସିଂହ ଦେବ ନିର୍ମାଣ କରିଥିବା କୋଣାର୍କ ମନ୍ଦିର ଭାଙ୍ଗି ଯାଇଥିଲେ ହେଁ କପିଳାସ ମନ୍ଦିରଟି ଅକ୍ଷୁର୍ଣ୍ଣ ରହିଛି । ୬୦ଫୁଟ ଉଚ୍ଚତା ବିଶିଷ୍ଟ ଏହି ମନ୍ଦିରଟି ଏକ ରେଖ ଦେଉଳ । ମନ୍ଦିରରେ କୌଣସି ଶିଳ୍ପ ଚାତୁରୀ ପରିଲକ୍ଷିତ ହୁଏନାହିଁ । ମନ୍ଦିର ଗର୍ଭ ଗୃହରେ ଶିଖରେଶ୍ୱର ବା ଚନ୍ଦ୍ରଶେଖରଙ୍କ ସ୍ୱୟଂଭୂ ଲିଙ୍ଗ ସହିତ ଅନନ୍ତ ନାଗ ପରିବେଷ୍ଟିତ ସୁବୃହତ୍ ଶାଳଗ୍ରାମ ଆରାଧିତ । ମନ୍ଦିର ଓ ଭୋଗମଣ୍ଡପ ମଧ୍ୟରେ ବୃଷଭ ବିରାଜିତ । ଐଶାନ୍ୟ କୋଣରେ ପୟୋଃମୃତ କୁଣ୍ଡ ଓ ଅଗ୍ନିକୋଣରେ ପାପନାଶିନୀ ଜମ୍ବକୁଣ୍ଡ । ମନ୍ଦିରର ଉତ୍ତରପାର୍ଶ୍ୱରେ କ୍ଷୁଦ୍ର ମନ୍ଦିରରେ ସୁଚିକ୍କଣ କୃଷ୍ଣ ଶିଳା ନିର୍ମିତ୍ତ କମନୀୟ ପାର୍ବତୀ ବିଗ୍ରହ ଆରାଧିତା । ମୋହନରେ ଗଣେଶ ଓ ଚଣ୍ଡୀଙ୍କ ବ୍ୟତୀତ ମନ୍ଦିର ଗାତ୍ରର ଦକ୍ଷିଣ ପାର୍ଶ୍ୱରେ ଗଣେଶ, ପଶ୍ଚିମ ପାର୍ଶ୍ୱରେ କାର୍ତ୍ତିକେୟ ଓ ଉତ୍ତର ପାର୍ଶ୍ୱରେ ଜଟାଜୁଟ ମଣ୍ଡିତା ଅପର୍ଣ୍ଣା ଦେବୀ । ସମସ୍ତ ମୂର୍ତ୍ତିରେ ଉଚ୍ଚକୋଟୀର ଶିଳ୍ପ ନୈପୁଣ୍ୟ ପ୍ରକଟିତ । ଗୌରବର କଥା, ମନ୍ଦିର ଗାତ୍ରରେ ପଶ୍ଚିମ ପାର୍ଶ୍ୱରେ ଦଧି ନଉତିର ନିମ୍ନରେ ଶ୍ରୀ ଜଗନ୍ନାଥ ବିଗ୍ରହ ପାଷାଣରେ ଖୋଦିତ । ଶିବ ଉପାସନା ସହିତ ଜଗନ୍ନାଥ ଉପାସନାର ସମନ୍ୱୟ ହିଁ କପିଳାସର ବୈଶିଷ୍ଟ୍ୟ । ମନ୍ଦିରର ଶୀର୍ଷ ଦେଶରେ ତ୍ରିଶୂଳ ପରିବର୍ତ୍ତେ ଅର୍ଦ୍ଧଚକ୍ର ପୀନାକ ବିଦ୍ୟମାନ । ପ୍ରାଚୀନ କାଳରୁ ଏହି ରମଣୀୟ ପୁରାଣ ପ୍ରସିଦ୍ଧ କ୍ଷେତ୍ର ହରିହର କ୍ଷେତ୍ର ରୂପେ ମହିମାମଣ୍ଡିତ । ପୀଠର ପରମ୍ପରା ବଜାୟ ରଖି ନରସିଂହ ଦେବ ଏହି କ୍ଷେତ୍ରରେ ମନ୍ଦିର ନିର୍ମାଣ କରିବା ସହିତ ତିନିଧୂପ ପାଞ୍ଚ ଅବକାଶରେ ଦୈନନ୍ଦିନ ନୀତି ତଥା ଛତିଶା ନିଯୋଗର ସୁବନ୍ଦୋବସ୍ତ କରିଥିଲେ । ତଦନୁଯାୟୀ ପୁରୀ ଶ୍ରୀମନ୍ଦିର ସଦୃଶ ଏହି ପୀଠରେ ସକଳ ନୀତି ପାଳନର ବିଧି ରହିଛି ।

ନରସିଂହ ଦେବଙ୍କ ଦ୍ୱାରା କପିଳାସରେ ମନ୍ଦିର ନିର୍ମାଣ ହେବାପରେ ପୀଠର ମହାତ୍ମ୍ୟ ବୃଦ୍ଧି ହେଲା । ମୁସଲମାନଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ ବଙ୍ଗ ଓ ବୃନ୍ଦାବନ ପ୍ରଭୃତି ସ୍ଥାନରୁ ବହୁ ସାଧୁସନ୍ଥ କପିଳାସରେ ଆସି ନିବାସ କଲେ । କ୍ରମେ ଏହା ଦ୍ୱିତୀୟ ବାରଣାସୀର ମାନ୍ୟତା ଲାଭ କଲା । ରାଜା ସ୍ୱୀୟ ଗୁରୁ ଭାବ ସଦାଶିବଙ୍କ ସହିତ ଏହି ପୀଠରେ ପଦାର୍ପଣ କରି ତୁଳା ପୁରୁଷ ଦାନ କରିବା

ସହିତ ସାଧୁ ସନ୍ନ୍ୟାସୀ ତଥା ବ୍ରାହ୍ମଣଙ୍କୁ ଭୂସମ୍ପତ୍ତି ଦାନ କରିଥିଲେ । ତଦ୍ଧୀୟ ସେନାପତି ବିଷ୍ଣୁ ସାମନ୍ତରାୟ ବ୍ରାହ୍ମଣମାନଙ୍କୁ ବିଷ୍ଣୁପୁର ନାମରେ ଏକ ବ୍ରାହ୍ମଣ ଶାସନ ଓ ସାମନ୍ତରାୟପୁର ନାମରେ ଅନ୍ୟ ଏକ ବ୍ରାହ୍ମଣ ଶାସନ ଦାନ ଦେଇଥିଲେ । ସୂଚନାଯୋଗ୍ୟ ଯେ, ନରସିଂହଦେବ କୋଣାର୍କ ମନ୍ଦିର ନିର୍ମାଣ ନିମିତ୍ତ ଢେଙ୍କାନାଳର ରଙ୍ଗଥଳୀ ନାମକ ସ୍ଥାନରୁ ଲୌହବଡ଼ି ଦେଇଥିଲେ । ସେତେବେଳେ ରଙ୍ଗଥଳୀରେ ଲୌହ କାରଖାନା ଥିଲା । ବର୍ତ୍ତମାନ ମଧ୍ୟ ସେହି ସ୍ଥାନରେ ଲୌହମଳର ଛୋଟ ପାହାଡ଼ ରହିଛି । ଗ୍ରାମଟି ସଂପ୍ରତି କାମାଖ୍ୟାନଗର ଉପଖଣ୍ଡ ପରଜଙ୍ଗ ଥାନାରେ ଅବସ୍ଥିତ । ସେହି ଲୌହକଡ଼ି ଏ ପର୍ଯ୍ୟନ୍ତ ଅମ୍ଳାନ ରହିଛି । ଅର୍ଥାତ୍ ଦୀର୍ଘ ଆଠଶହ ବର୍ଷ ଧରି ଏହା କଳଙ୍କି ଲାଗି ନାହିଁ । ଏତଦ୍‌ଭିନ୍ନ କପିଳାସକୁ ଶୈବ ଶ୍ରୀକ୍ଷେତ୍ରର ମର୍ଯ୍ୟାଦା ପ୍ରଦାନ କାମନାରେ ନରସିଂହଦେବ କପିଳାସରେ ମୁକ୍ତି ମଣ୍ଡପ (ବର୍ତ୍ତମାନ ଜପମଣ୍ଡପ) ଓ ଭୋଗ ଗୋବର୍ଦ୍ଧନ ମଠର ଏକ ଶାଖା ସ୍ଥାପନ କରିଥିଲେ । ପରବର୍ତ୍ତୀକାଳରେ ତାହା ବ୍ରହ୍ମଚାରୀ ମଠ ନାମରେ ପ୍ରସିଦ୍ଧି ଲାଭ କଲା । ଏହି ପୀଠର ଗୁରୁକ୍ରମାନ୍ୱୟରୁ ଜଣାଯାଏ ଭୋଗ ବର୍ଦ୍ଧନ ମଠର ଶିଷ୍ୟମାନେ ଏଠାରେ ବ୍ରହ୍ମଚାରୀ ପଦରେ ଅଭିଷିକ୍ତ ହୋଇଥାନ୍ତି । ବ୍ରହ୍ମଚାରୀ ମଠ ସ୍ଥାପନ ହେବାପରେ କାଶୀ, ପୁରୀ, ଉଜ୍ଜୟିନୀ, କାଞ୍ଚି ପ୍ରଭୃତି ତୀର୍ଥରୁ ସାଧୁସନ୍ଥ ମହାତ୍ମା କପିଳାସ ପଦାର୍ପଣ କଲେ ତଥା କପିଳାସର ବ୍ରହ୍ମଚାରୀ ମଠ ଚତୁର୍ଦ୍ଦଶ ବିଦ୍ୟା କ୍ଷେତ୍ରର ମାନ୍ୟତା ଲାଭ କଲା । ପରିଣାମରେ ସର୍ବଭାରତୀୟ ସ୍ତରରେ କପିଳାସ ଏକ ପୁରାଣ ପ୍ରସିଦ୍ଧ ତୀର୍ଥ ତଥା ବିଦ୍ୟାକ୍ଷେତ୍ର ରୂପେ ପ୍ରସିଦ୍ଧ ଲାଭ କଲା ।

୧ମ ନରସିଂହ ଦେବଙ୍କ ପରେ ତାଙ୍କ ପୁତ୍ର ୧ମ ଭାନୁଦେବ ୧୨୬୪ରେ ସିଂହାସନ ଆରୋହଣ କଲେ । ସେ ପ୍ରତାପଭାନୁ ନାମରେ ସୁପରିଚିତ । ଏହି ଗଙ୍ଗ ନରପତି ଭୋଗବର୍ଦ୍ଧନ ମଠର ମହେଶ୍ୱରାନନ୍ଦ ସରସ୍ୱତୀଙ୍କ ଶିଷ୍ୟ ରାମକୃଷ୍ଣା ନନ୍ଦଙ୍କୁ କପିଳାସ ବ୍ରହ୍ମଚାରୀ ମଠ ସନନ୍ଦ ପ୍ରଦାନ କରିଥିଲେ । ମଠସ୍ଥିତ ଗୁରୁ କ୍ରମାନ୍ୱୟରୁ ଜଣାଯାଏ, ରାମକୃଷ୍ଣନନ୍ଦଙ୍କ ଶିଷ୍ୟ ଶ୍ରୀଧର ସ୍ୱାମୀ ପାଦ କପିଳାସ ବ୍ରହ୍ମଚାରୀ ମଠରେ ସାଧନାରେ ବ୍ରତୀ ରହି ନରସିଂହ ମନ୍ତ୍ରରେ ସିଦ୍ଧି ଲାଭ କରିବା ପରେ ଶ୍ରୀମଦ୍‌ଭାଗବତ ଓ ଗୀତା ପ୍ରଭୃତି ଶାସ୍ତ୍ର ସମୂହର ଟୀକା ପ୍ରଣୟନ କଲେ । ପରବର୍ତ୍ତୀ କାଳରେ ଶ୍ରୀଧର ସ୍ୱାମୀ ପୁରୀ ଗୋବର୍ଦ୍ଧନ ମଠର ଦଶମ ଶଙ୍କରାଚାର୍ଯ୍ୟ ପଦବୀ ଅଳଙ୍କୃତ କରିଥିଲେ । ଶ୍ରୀଧର ସ୍ୱାମୀଙ୍କ ବିଶ୍ୱପ୍ରସିଦ୍ଧ ''ଶ୍ରୀଧରୀ'' ଟୀକା ସମୂହ ଗଙ୍ଗ ରାଜତ୍ୱ କାଳରେ

କପିଳାସରେ ହିଁ ରଚିତ ହୋଇଥିଲା । ପୂଜ୍ୟପାଦ ଶ୍ରୀଧର ସ୍ୱାମୀ କପିଳାସ ପୀଠରେ ଯେଉଁ ପ୍ରସିଦ୍ଧ ଟୀକାମାନ ପ୍ରଣୟନ କରିଥିଲେ ସେଗୁଡ଼ିକ ହେଉଛି ଶ୍ରୀମଦ୍ ଭଗବତ୍ ଗୀତାର ସୁବୋଧିନୀ ଟୀକା, ଶ୍ରୀମଦ୍‌ଭାଗବତ୍‌ର ଭାବାର୍ଥ ଦୀପିକା ଭାଷ୍ୟ, ବିଷ୍ଣୁ ପୁରାଣର ଆତ୍ମ ପ୍ରକାଶ ଟୀକା, ସନତ୍‌ସୁଜାତୀୟର ବାଳବୋଧିନୀ ଟୀକା, ଗୀତାସାରର ବ୍ରହ୍ମ ସମ୍ବୋଧିନୀ ଟୀକା, ଭାଗବତ ପୁରାଣ ବିଷୟକ ଦେବସ୍ତୁତି, ଟୀକା, ପଦାର୍ଥ ପ୍ରକାଶିକା ପୁରାଣ ଟୀକା, ବ୍ରଜବିହାର କାବ୍ୟ ଏବଂ କେତେକ ଧର୍ମଶାସ୍ତ୍ର, ତତ୍‌କୃତ ଟୀକା ସମୂହ ଶତାବ୍ଦୀ ଶତାବ୍ଦୀ ଧରି ବିଦ୍ୱାନ ମହଲରେ ''ଶ୍ରୀଧରୀ'' ନାମରେ ମହିମାବନ୍ତ । ନୃସିଂହଙ୍କ କୃପାରୁ ସେ ଏହି ସବୁ ଟୀକା ରଚନା କରିଥିବାରୁ ପୂଜ୍ୟ ଶ୍ରୀଧର ସ୍ୱାମୀ ପାର୍ବତୀ ମୂର୍ତ୍ତିଙ୍କର ଦକ୍ଷିଣ ପାର୍ଶ୍ୱରେ ନୃସିଂହ ମୂର୍ତ୍ତିଙ୍କୁ ପ୍ରତିଷ୍ଠିତ କରି ଶାକ୍ତ ସଂସ୍କୃତି ସହିତ ବୈଷ୍ଣବ ସଂସ୍କୃତିର ସମନ୍ୱୟ ପ୍ରତିପାଦନ କରିପାରିଥିଲେ । ଶ୍ରୀଧର ସ୍ୱାମୀ ଅଦ୍ୱୈତ ପରମ୍ପରାର ଦଣ୍ଡୀ ସନ୍ନ୍ୟାସୀ ହେଲେ ହେଁ ତାଙ୍କ ଅନ୍ତଶ୍ଚେତନା ବୈଷ୍ଣବ ଭାବପନ୍ନ ଥିଲା । ସ୍ୱୟଂ ପ୍ରେମାବତାର ଶ୍ରୀଚୈତନ୍ୟ ମହାପ୍ରଭୁ ତାଙ୍କୁ ଗୁରୁ ବୋଲି ସ୍ୱୀକାର କରିଛନ୍ତି ।

ଶ୍ରୀଧର ସ୍ୱାମୀ ପ୍ରଭାବେତେ ଭାଗବତ ଜାନୀ
ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ ଗୁରୁକରି ମାନି ।

ଶ୍ରୀଧର ସ୍ୱାମୀଙ୍କ ଟୀକା ଅନୁକରଣରେ ପରବର୍ତ୍ତୀ କାଳରେ ଅତିବଡ଼ି ଜଗନ୍ନାଥ ଦାସ ଓଡ଼ିଆ ଭାଗବତ ରଚନା କରିଥିଲେ । ଯାହା ଫଳରେ ଲକ୍ଷଲକ୍ଷ ଓଡ଼ିଆ ବିନା ବିଦ୍ୟାଳୟରେ ସାକ୍ଷର ହୋଇ ପାରିଥିଲେ ତଥା ଗ୍ରାମେ ଗ୍ରାମେ ଭାଗବତଟୁଙ୍ଗୀ ସ୍ଥାପନା ହୋଇଥିଲା । କପିଳାସ ପୀଠରେ ଶ୍ରୀଧରଙ୍କ ଦ୍ୱାରା ରଚିତ ଏହି ବିଶ୍ୱ ପ୍ରସିଦ୍ଧ ଟୀକା ତତ୍‌କାଳୀନ ବିଦ୍ୱାନ ମଣ୍ଡଳୀଙ୍କ ମଧ୍ୟରେ ଆଲୋଡ଼ନା ସୃଷ୍ଟି କରିଥିଲା । କେତେକ ଏହି ଟୀକା ବିରୁଦ୍ଧରେ ଭକ୍ତିର ପ୍ରାଧାନ୍ୟ ସଂପର୍କୀୟ ଦ୍ୱନ୍ଦ୍ୱ ଉପୁଜାଇ ଥିଲେ । ପ୍ରବାଦ ଅଛି, ସ୍ୱୟଂ କାଶୀ ବିଶ୍ୱନାଥ ଏହାର ମୀମାଂସା କରି ସ୍ୱପ୍ନାଦେଶ ଦେଇଥିଲେ ।

ଅହଂ ବେତ୍ତି ଶୁକଂ ବେତ୍ତି ବ୍ୟାସ ବେତ୍ତିନୋ ବେତ୍ତିବୋ
ଶ୍ରୀଧରଂ ସକଳଂ ବେତ୍ତି ଶ୍ରୀନୃସିଂହ ପ୍ରସାଦତଃ ।

ପ୍ରଭୁ ବିଶ୍ୱନାଥ ଘୋଷଣା କଲେ ଯେ ପ୍ରଭୁ ନୃସିଂହଙ୍କ କୃପାରୁ ଶ୍ରୀଧର ଅଖଣ୍ଡ ଜ୍ଞାନର ଅଧିକାରୀ, ତାଙ୍କରି ଟୀକା ଅନୁକରଣରେ ଶ୍ରୀମଦ୍ ସନାତନ ଗୋସ୍ୱାମୀ, ଜୀବ ଗୋସ୍ୱାମୀ, ବିଶ୍ୱନାଥ ଚକ୍ରବର୍ତ୍ତୀ ଓ ବଳଦେବ ବିଦ୍ୟାଭୂଷଣ

ପ୍ରମୁଖ ମହାତ୍ମାମାନେ ବିସ୍ତୃତ ଟୀକା ପ୍ରଣୟନ କରିଛନ୍ତି । ସୂଚନାଯୋଗ୍ୟ ଯେ, ଶ୍ରୀମଦ୍‌ଭାଗବତ ପାଠରେ ପ୍ରଥମରେ ଯେଉଁ "ନାରାୟଣଂ ନାମସ୍କୃତ୍ୟଂ......" ଶ୍ଳୋକଟି ବୋଲାଯାଏ ତାହା ମୂଳ ଭାଗବତରେ ନଥିଲା । ଏହି ପ୍ରାତଃ ସ୍ମରଣୀୟ ଶ୍ଳୋକଟିକୁ ଶ୍ରୀଧର ସ୍ୱାମୀ ରଚନା କରି ଭାଗବତର ଭାବାର୍ଥ ଦୀପିକା ଭାଷ୍ୟ ପ୍ରାରମ୍ଭରେ ସଂଯୋଜନା କରିଛନ୍ତି । ଅତଏବଃ କପିଳାସ ପୀଠରୁ ଶ୍ରୀଧର ସ୍ୱାମୀଙ୍କ ଲେଖନୀରୁ ନିସୃତ ଏହି ଶ୍ଳୋକ ଲକ୍ଷ ଲକ୍ଷ ଭାଗବତ ପାଠକଙ୍କୁ ଉଦ୍‌ବୃଦ୍ଧ କରି ଆସିଛି । ପ୍ରକୃତ ପକ୍ଷେ ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ ହେଉଛନ୍ତି ବିଶ୍ୱର ଗୌରବ ଏବଂ ତାଙ୍କ ସଦୃଶ ମହାତ୍ମାଙ୍କୁ କପିଳାସ ପୀଠ ଲାଭ କରି ଧନ୍ୟ ।

କପିଳାସ ସହିତ ପୁରୀ, ଭୁବନେଶ୍ୱର ଓ ବାରାଣସୀର ପ୍ରତ୍ୟକ୍ଷ ସଂପର୍କ ଗଙ୍ଗ ଯୁଗରେ ହିଁ ସ୍ଥାପିତ ହୋଇଥିଲା । ଫଳରେ ଦ୍ୱାଦଶ ଶତାବ୍ଦୀରୁ ଅନଙ୍ଗଭୀମଦେବଙ୍କ ଦ୍ୱାରା ଢେଙ୍କାନାଳରେ ଯେଉଁ ଦ୍ୱୈତବାଦ ପ୍ରସାର ଘଟିଥିଲା ତାହା ପରବର୍ତ୍ତୀ ଗଙ୍ଗ ରାଜାଙ୍କ ସମୟରେ ଅଦ୍ୱୈତ ଓ ଶୈବଶାକ୍ତ ମତ ସହିତ ସମ୍ମିଳିତ ହୋଇ ଏକ ସମନ୍ୱୟାତ୍ମକ ସଂସ୍କୃତି ଢେଙ୍କାନାଳ ମାଟିରେ ସମୃଦ୍ଧ ହେବାକୁ ଲାଗିଲା । ଭାନୁଦେବଙ୍କ ରାଜତ୍ୱରେ ମାଧ୍ୱାଚାର୍ଯ୍ୟଙ୍କ ଶିଷ୍ୟ ନରହରି ତୀର୍ଥ କପିଳାସରେ ପଦାର୍ପଣ କରି ଢେଙ୍କାନାଳରେ ମଧ୍ୱମତ ପ୍ରଚାରରେ କିଛିକାଳ ଅତିବାହିତ କରିଥିଲେ । ପ୍ରବାଦ ଅଛି, ନରହରି ତୀର୍ଥ କପିଳାସରେ ବ୍ରହ୍ମଚାରୀ ମଠରେ ଗିରିବର ଗିରିଧାରୀଙ୍କୁ ସ୍ଥାପନା କରିଥିଲେ । ଭାନୁଦେବ ସେହି ଠାକୁରଙ୍କ ସେବା ପୂଜା ସକାଶେ ଖଞ୍ଜା ପ୍ରଦାନ କରିଥିଲେ । ପରିଣାମରେ, ଢେଙ୍କାନାଳ ଅଞ୍ଚଳରେ ଗଙ୍ଗ ଯୁଗରୁ ଭାଗବତ ଧର୍ମର ପ୍ରଚାର ଘଟିଥିଲା ।

ଭାନୁଦେବଙ୍କ ଅନ୍ତେ ୧୨୭୮ରୁ ୧୩୦୬ ପର୍ଯ୍ୟନ୍ତ ନରସିଂହ ଦେବ ୨ୟ ରାଜା ହେଲେ । ସେ ନାବାଳକ ଥିବା ସମୟରେ ନରହରି ତୀର୍ଥ ତାଙ୍କର ପ୍ରତିନିଧି ରୂପେ ଶାସନକାର୍ଯ୍ୟ ଚଳାଉଥିଲେ । ସେହି ସମୟରେ ଚୌଦ୍ୱାର ସ୍ଥିତ ଗଙ୍ଗ ରାଜାଙ୍କ ରାଜ ସଭାରେ କପିଳାସ ପୀଠ ସ୍ଥିତ ସାଧୁ ସନ୍ଥ ଓ ପଣ୍ଡିତ ମଣ୍ଡଳୀଙ୍କର ଆଦର ରହିଥିଲା । ଭାନୁଦେବଙ୍କ ପରେ ନରସିଂହ ଦେବ, ମୁସଲମାନ ଆକ୍ରମଣ ପ୍ରତିରୋଧ କରିବାରେ ବହୁ ସମୟ ଅତିବାହିତ କରିଥିଲେ । ସେ ମଧ ରାଜ୍ୟର ପଶ୍ଚିମାଞ୍ଚଳରେ ଥିବା ଭୀମନଗରୀ ଦୁର୍ଗରୁ ସୁଦୃଢ଼ କରିଥିଲେ ତଥା ଏହି ଦୁର୍ଗରେ ପଶ୍ଚିମ ପଟୁ ମୁସଲମାନଙ୍କୁ ପ୍ରତିରୋଧ କରିବା ନିମିତ୍ତ ବହୁ ସୈନ୍ୟ ସାମନ୍ତ ମହଜୁଦ୍ ରଖିଥିଲେ । ୨ୟ ନରସିଂହ ଦେବଙ୍କ

ପରେ ୧୩୦୬ରୁ ୧୩୨୮ ପର୍ଯ୍ୟନ୍ତ ଭାନୁଦେବ ୨ୟ ଶାସନ କରିଥିଲେ । ତାଙ୍କ ପ୍ରଦତ୍ତ ତାମ୍ର ଶାସନରୁ ଜଣାଯାଏ ସେ ପ୍ରତାପବୀର ଭାନୁଦେବ ନାମରେ ପରିଚିତ ଥିଲେ । ଏହି ପ୍ରତାପୀ ରାଜା ମୁସଲମାନଙ୍କ ସହିତ ସଂଘର୍ଷରେ ଜୟଲାଭ ପୂର୍ବକ ବହୁ ଧନ ସମ୍ପତ୍ତି ଭୀମନଗରୀ ଦୁର୍ଗରେ ଠୁଳ କରିଥିଲେ । ପ୍ରତାପ ଭାନୁଦେବ ୧୨୩୪ ଖ୍ରୀଷ୍ଟାବ୍ଦରେ କପିଳାସର ବ୍ରହ୍ମଚାରୀ ପୀଠ ସ୍ଥିତ ପୂଜ୍ୟ ଶ୍ରୀଧର ସ୍ୱାମୀଙ୍କୁ ମଠ ସୁପରିଚାଳନା ନିମିତ୍ତ ସଡଙ୍ଗୀ, ମୂଳମଣ ଓ କଇଥା ଗ୍ରାମ ଦାନ ଦେଇଥିଲେ । ଏ ପର୍ଯ୍ୟନ୍ତ ସେହି ଗ୍ରାମମାନଙ୍କରେ ବ୍ରହ୍ମଚାରୀ ମଠର ଜମି ରହିଅଛି ଏବଂ ଷଡଙ୍ଗୀ ଠାରେ ଶ୍ରୀଧର ସ୍ୱାମୀଙ୍କ ସ୍ମୃତିରେ ଶ୍ରୀଧର ସ୍ୱାମୀ ସ୍ମୃତି ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି । ପୂଜ୍ୟ ଶ୍ରୀଧର ସ୍ୱାମୀ ପୁରୀର ଦଶମ ଶଙ୍କରାଚାର୍ଯ୍ୟ ଆସନ ଅଳଙ୍କୃତ କରିଥିଲେ ହେଁ କପିଳାସ ତାଙ୍କର ପ୍ରିୟ ସାଧନା ସ୍ଥଳୀ ଥିଲା । ସେ ଶେଷ ଜୀବନ କପିଳାସରେ କଟାଇଥିଲେ ଏବଂ ଅଦ୍ୟାବଧି ତାଙ୍କ ସମାଧି ବିଶ୍ୱନାଥ ମନ୍ଦିର ଓ ବ୍ରହ୍ମଚାରୀ ମଠ ମଧ୍ୟରେ ଅବସ୍ଥିତ ।

ପ୍ରତାପ ଭାନୁଦେବଙ୍କ ରାଜତ୍ୱରେ କପିଳାସର ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇଥିଲା । ତାଙ୍କ ପରେ ତୃତୀୟ ନରସିଂହ ଦେବ ୧୩୨୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ରାଜା ହେଲେ । ସେ କପିଳାସ ପୀଠରେ ବ୍ରାହ୍ମଣଙ୍କୁ ନୃସିଂହପୁର ନାମକ ବ୍ରାହ୍ମଣ ଶାସନ ଦାନ ଦେଇଥିଲେ । ତାଙ୍କର ଅନ୍ୟାନ୍ୟ କୀର୍ତ୍ତିରେ ସବିଶେଷ ତଥ୍ୟ ଅଦ୍ୟାବଧି ଅନୁପଲବ୍‌ଧ । ତୃତୀୟ ନରସିଂହଦେବଙ୍କ ପରେ ୧୩୫୨ ଖ୍ରୀଷ୍ଟାବ୍ଦରେ ତୃତୀୟ ଭାନୁଦେବ ସିଂହାସନ ଆରୋହଣ କଲେ । ଏହାଙ୍କ ରାଜତ୍ୱରେ ଗଙ୍ଗ ରାଜତ୍ୱର ପତନ ଆରମ୍ଭ ହୋଇଥିଲା । ତାଙ୍କ ସମୟରେ ଫିରୋଜ ଖାଁ ଓଡ଼ିଶା ଆକ୍ରମଣ କରି କଟକରେ ତୃତୀୟ ଅନଙ୍ଗଭୀମଦେବ ନିର୍ମାଣ କରିଥିବା ପୁରୁଷୋତ୍ତମ ମନ୍ଦିର ଭାଙ୍ଗି ଦେଇଥିଲେ । ଫିରୋଜ ସାହାଙ୍କ ଆକ୍ରମଣରେ ଭୀତ ହୋଇ ଭାନୁଦେବ ପ୍ରଥମେ ମହାନଦୀ ପଠାସ୍ଥିତ ଧବଳେଶ୍ୱର ପୀଠରେ ଆଶ୍ରୟ ନେଇଥିଲେ ହେଁ ପରେ କପିଳାସ ପୀଠ ସ୍ଥିତ ବିଲଙ୍କାଗଡ଼ରେ କିଛି କାଳ ସପରିବାର ନିବାସ କରିଥିଲେ । ତୃତୀୟ ଭାନୁଦେବଙ୍କ ପରେ ତାଙ୍କ ପୁତ୍ର ୪ର୍ଥ ନରସିଂହ ଦେବ ୧୩୭୮ ଠାରୁ ୧୪୧୪ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ରାଜା ଶୈବ ଥିଲେ । ଏହାଙ୍କ ସମୟରୁ ଓଡ଼ିଶାର ରାଜା ଗଜପତି ଉପାଧି ବ୍ୟବହାର କରିଥିଲେ । ଏହି ରାଜା ଆପଣାର ଜଣେ ସେନାପତିଙ୍କୁ ଢେଙ୍କାନାଳ ଅଞ୍ଚଳରେ ଦାୟିତ୍ୱ ପ୍ରଦାନ କରି ପୂର୍ବୋକ୍ତ କରମୂଳ

ପାଟଣା ଠାରେ ସାମନ୍ତ ରାଜା ଭାବରେ ଅବସ୍ଥାନ କରାଇଥିଲେ । ପୂର୍ବରୁ କରମୂଳଠାରେ ଥିବା ରାଜବଂଶ ଲୋପ ପାଇଥିଲା । ଚତୁର୍ଥ ନରସିଂହ ଦେବ ଯାଜପୁର ସନ୍ନିକଟ ସିଦ୍ଧେଶ୍ୱର ମନ୍ଦିରକୁ ଭୂମିଦାନ କରିଥିବାରୁ ସ୍ତମ୍ଭାଭିଲେଖ ସେଠାରେ ରହିଅଛି । ସେ ମଧ୍ୟ ଯାଜପୁର କାଳିମେଘାର ବାର୍ଷଗଣ ଗୋତ୍ରର ଜନୈକ ବିଦ୍ୱାନ୍ ବ୍ରାହ୍ମଣଙ୍କୁ କପିଳାସ ପୀଠରେ ଜମି ଦାନ ପୂର୍ବକ ରାଜପଣ୍ଡିତ ସ୍ୱରୂପରେ ବରଣ କରି ମାର୍ଥାପୁର ଶାସନାରେ ରଖାଇଥିଲେ । ଚତୁର୍ଥ ନରସିଂହ ଦେବଙ୍କ ପରେ ଚତୁର୍ଥ ଭାନୁଦେବ ୧୪୧୪ ରୁ ୧୪୩୫ ପର୍ଯ୍ୟନ୍ତ ରାଜା ହୋଇଥିଲେ । ଏହି ରାଜା ଗଙ୍ଗବଂଶର ଶେଷ ରାଜା ଥିଲେ । ତାଙ୍କ ରାଜତ୍ୱରେ ମଧ୍ୟ କରମୂଳ ଅଧିପତି ସାମନ୍ତ ରାଜା ଭାବରେ ଢେଙ୍କାନାଳ ଅଞ୍ଚଳରେ ରାଜତ୍ୱ କରି କପିଳାସ ମନ୍ଦିରର ପ୍ରତ୍ୟକ୍ଷ ଦାୟିତ୍ୱରେ ରହିଥିଲେ । ଏହି ସମୟରେ ଯାଜପୁର ଅଞ୍ଚଳରୁ ବହୁ ଶ୍ରୋତ୍ରିୟ ବ୍ରାହ୍ମଣ ରାଜାନୁଗ୍ରହ ଲାଭ କରି ଢେଙ୍କାନାଳର ବିଭିନ୍ନ ଅଞ୍ଚଳରେ ବସବାସ କଲେ । ଏତଦ୍‌ଭିନ୍ନ ବହୁ ସାଧୁସନ୍ଥ ଏହି ସମୟରେ ଢେଙ୍କାନାଳ ଅଞ୍ଚଳରେ ମଠ ସ୍ଥାପନା କରିଥିଲେ ।

ଦ୍ୱାଦଶ ଶତାବ୍ଦୀରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ତିନଶହ ବର୍ଷର ଗଙ୍ଗ ରାଜତ୍ୱରେ ଢେଙ୍କାନାଳରେ ସୁଶାସନ ପ୍ରତିଷ୍ଠା ହୋଇଥିଲା । ସେହି ସମୟରେ ଭୀମନଗରୀ ଦୁର୍ଗ ଏକ 'ଦଣ୍ଡପାଟ'ର ମାନ୍ୟତା ଲାଭ କରିବା ସହିତ ପଶ୍ଚିମାଞ୍ଚଳର ସୁରକ୍ଷା ଘାଟୀ ରୂପେ ବ୍ୟବହୃତ ହେଉଥିଲା । କରମୂଳଠାରେ ପୁନର୍ବାର ରାଜଧାନୀ ସ୍ଥାପିତ ହୋଇଥିଲା । ବିଶେଷତଃ ଗଙ୍ଗ ରାଜତ୍ୱରେ କପିଳାସ ସର୍ବ ଭାରତୀୟ ସ୍ତରରେ ଧର୍ମ ଓ ସଂସ୍କୃତିର ପ୍ରାଣକେନ୍ଦ୍ରରେ ପରିଣତ ହୋଇଥିଲା । ଗଙ୍ଗ ରାଜତ୍ୱରେ ଢେଙ୍କାନାଳରେ ଶୈବ, ଶାକ୍ତ, ନାଗ, ବୈଷ୍ଣବ ଓ ବୈଦିକ ସଂସ୍କୃତିର ସମନ୍ୱୟରେ ଏକ ସମନ୍ୱିତ ବିକାଶଶୀଳ ସଂସ୍କୃତିର ଅଭ୍ୟୁଦୟ ଘଟିଥିଲା । ଏହି ସମୟରୁ ଢେଙ୍କାନାଳର ସୁବର୍ଣ୍ଣଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ ।



# ସୂର୍ଯ୍ୟବଂଶ ରାଜତ୍ୱରେ ଢେଙ୍କାନାଳ

ଗଙ୍ଗବଂଶ ପରେ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି କପିଳେନ୍ଦ୍ର ଦେବ ୧୪୩୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ରାଜା ହେଲେ । ରଘୁଦେବପୁର ତାମ୍ରଶାସନରୁ ଜଣାପଡ଼େ କପିଳେନ୍ଦ୍ରଦେବ ସ୍ୱବାହୁବଳରେ ଗଙ୍ଗ ସିଂହାସନ ଆରୋହଣ କରିଥିଲେ (J.A.H.R.S. Vol XX III Pages 163 to 172) ଏବଂ ୧୪୩୫ ମସିହା ଜୁନ୍ ୨୯ ତାରିଖ ବୁଧବାର ଭୁବନେଶ୍ୱରଠାରେ ତାଙ୍କର ଅଭିଷେକ ହୋଇଥିଲା । ସେହି ସମୟରେ ଓଡ଼ିଶାର ରାଜନୈତିକ ଅସ୍ଥିରତା ସୃଷ୍ଟି ହୋଇଥିଲା । ଏତଦ୍‌ଭିନ୍ନ ଉତ୍ତର ଦିଗରୁ ବଙ୍ଗର ମୁସଲମାନ ଶାସକ ଓ ଦକ୍ଷିଣ ଦିଗରୁ ବାହମନୀ ସୁଲତାନ ଓଡ଼ିଶା ଆକ୍ରମଣ କରିଥିଲେ । ଫଳରେ ୧୪୩୫ ଠାରୁ ୧୪୫୮ ପର୍ଯ୍ୟନ୍ତ କପିଳେନ୍ଦ୍ର ଦେବ ଯୁଦ୍ଧରେ ବ୍ୟାପୃତ ରହି ଓଡ଼ିଶାର ପରିସୀମା ଗଙ୍ଗା ଠାରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ବୃଦ୍ଧି କରିଥିଲେ ଏବଂ ''ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର'' ଉପାଧି ଧାରଣ କରିଥିଲେ । ଦୀର୍ଘକାଳ ଯୁଦ୍ଧରେ ବ୍ୟାପୃତ ରହିଥିଲେ ମଧ୍ୟ ତାଙ୍କରି ରାଜତ୍ୱରେ ଓଡ଼ିଶାର କଳା, ସ୍ଥାପତ୍ୟ ଓ ସାହିତ୍ୟର ପ୍ରଭୁତ କଲ୍ୟାଣ ସାଧିତ ହୋଇଥିଲା । କପିଳେନ୍ଦ୍ର ଦେବଙ୍କ ରାଜତ୍ୱରେ ଓଡ଼ିଆ ଭାଷା ସରକାରୀ ବା ରାଜକୀୟ ଭାଷାର ମର୍ଯ୍ୟାଦା ଲାଭ କରିଥିଲା । ଦୀର୍ଘ ବତିଶି ବର୍ଷ ଓଡ଼ିଶାରେ ସୁଶାସନ ପ୍ରତିଷ୍ଠାପୂର୍ବକ କପିଳେନ୍ଦ୍ର 'ଦ୍ୱିତୀୟ ଖାରବେଳ' ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲେ ।

ସମଗ୍ର ଓଡ଼ିଶା ସହିତ ଢେଙ୍କାନାଳ ମଧ୍ୟ କପିଳେନ୍ଦ୍ର ଦେବଙ୍କ ବିଶାଳ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ସେହି ସମୟରେ କଟକ ଓଡ଼ିଶାର ରାଜଧାନୀ ଥିଲା । ଗଜପତି ଦାକ୍ଷିଣାତ୍ୟ ଯୁଦ୍ଧରେ ଦୀର୍ଘକାଳ ଅତିବାହିତ କରିବାର ସୁଯୋଗରେ ଢେଙ୍କାନାଳ ଅଞ୍ଚଳର କ୍ଷୁଦ୍ର ଭୂମ୍ୟାଧିକାରୀମାନେ ଆପଣାକୁ ସ୍ୱାଧୀନ ଘୋଷଣା କଲେ । ଉତ୍ତର ଦିଗରେ ଶିବୁଳାପଶି ଠାରେ ଜେନାବଂଶୀ ସାମନ୍ତ ନିଜକୁ ସ୍ୱାଧୀନ ରାଜା ଘୋଷଣା କରିବା ସହିତ ପୂର୍ବଦିଗସ୍ଥ ଡମରାଜା କରମୂଳର ସାମନ୍ତ ରାଜାଙ୍କୁ ମାନିଲେ ନାହିଁ । ସୌରିବ ବିଷ ଓ ପଳାଶୁଣୀ ବିଷ କେନ୍ଦୁଝର ରାଜା ଦଖଲ କରିନେଲେ । ଢେଙ୍କାନାଳ ସହର ଓ ଏହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ବେଣାଳିଆରେ ଭଞ୍ଜ ରାଜା ଶାସନ କଲେ । କେବଳ ବାହ୍ମଣୀ ନଦୀର କୂଳେ

କୂଳେ ପୂର୍ବରେ କରମୂଳଠାରୁ ପଶ୍ଚିମରେ ହଦଗଡ଼ ପର୍ଯ୍ୟନ୍ତ ମାତ୍ର ସାତକୋଶ ବ୍ୟାପୀ କ୍ଷୁଦ୍ର ଜନପଦ କରମୂଳ ପାଟଣା ରାଜ୍ୟ ଭାବରେ ଗଜପତିଙ୍କ ଅଧୀନରେ ରହିଲା । ଉଲ୍ଲେଖଯୋଗ୍ୟ ଯେ, ସେହି ସମୟରେ ଅଭିନବ ଢେଙ୍କାନାଳ ରାଜ୍ୟ ପ୍ରତିଷ୍ଠା ହୋଇନଥିଲା । କପିଳାସର ଶିଖରେଶ୍ୱର ମନ୍ଦିର ଗଜପତିଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଥିଲା । ଗଜପତିଙ୍କ ଦ୍ୱାରା ନିଯୁକ୍ତ ରାଜକର୍ମଚାରୀ ଏବଂ କରମୂଳ ପାଟଣାର ସାମନ୍ତ ରାଜା କପିଳାସ ମନ୍ଦିରର ନୀତି, ନିଯୋଗ, ପର୍ବ ପର୍ବାଣୀ ତଥା ସାଧୁସନ୍ଥ ମହାତ୍ମାଙ୍କ ପରିଚର୍ଯ୍ୟା ବିଷୟ ବୁଝୁଥିଲେ ।

ଗୌରବର କଥା, ସେହି ସମୟରେ ମାଟିର ମହାକବି ସାରଳାଦାସ ଓଡ଼ିଆ ମହାଭାରତ ରଚନା କରିଥିଲେ । ଏହି ପରମଗ୍ରନ୍ଥରେ ମହାକବି ସାରଳା ଦାସ କପିଳାସର ବର୍ଣ୍ଣନା ତଥା ପାଣ୍ଡବମାନଙ୍କର ଏହି ତୀର୍ଥରେ ପଦାର୍ପଣ ସହିତ ନିଜେ କପିଳାସରେ ପୂର୍ବ ଜନ୍ମରେ ଦ୍ୱାରପାଳ ଥିବା ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । ଏଥିରୁ ପ୍ରମାଣିତ ହୁଏ, ସୂର୍ଯ୍ୟବଂଶୀ ରାଜତ୍ୱରେ କପିଳାସ ଏକ ପ୍ରସିଦ୍ଧ ତୀର୍ଥ ରୂପେ ମହିମା ମଣ୍ଡିତ ଥିଲା । ଗବେଷକଙ୍କ ମତରେ ''କଳସା ଚଉତିଶା'' ମହାଭାରତ ରଚନାର ପୂର୍ବରୁ ଲେଖାଯାଇଥିଲା । ସାରଳା ଦାସ ମଧ୍ୟ ସ୍ୱରଚିତ ମହାଭାରତରେ ଉଲ୍ଲେଖ କରିଛନ୍ତି ଯେ ''ବେଦ ମନ୍ତ ଯୁକତେ ସେ ପଢ଼ନ୍ତି କଳସା'', ଅର୍ଥାତ୍, ମହାଭାରତ ରଚନାର ପୂର୍ବରୁ କଳସା ଚଉତିଶା ରଚିତ ହୋଇ ଓଡ଼ିଶାରେ ବିଶେଷ ଲୋକପ୍ରିୟତା ଲାଭ କରିଥିଲା । ଏହି 'କଳସା ଚଉତିଶା'ର କବି ହେଉଛନ୍ତି ବତ୍ସା ଦାସ । ସେ ଚଉତିଶାର ଶେଷ ପଦରେ ଲେଖିଛନ୍ତି–

କ୍ଷିତିପତି ଠାକୁର ଯେ କପିଳାସେ ସ୍ଥିତି
କ୍ଷମେ ବତ୍ସା ଦାସ ତାଙ୍କ କଳସା ପଢ଼ନ୍ତି ।

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି କବି ବତ୍ସା ଦାସ କପିଳାସରେ ନିବାସ କରୁଥିଲେ ଏବଂ ମହାଭାରତ ରଚନାର ବହୁପୂର୍ବରୁ କଳସା ଚଉତିଶା ରଚନା କରିଥିଲେ । ଏହି କଳସା ଚଉତିଶା ଓଡ଼ିଶାରେ ବିଶେଷ ଲୋକପ୍ରିୟତା ଅର୍ଜନ କରିବା ସହିତ ଏକ ସ୍ୱତନ୍ତ୍ର 'କଳସା ବାଣୀ' ରୂପେ ପ୍ରଚାରିତ ହୋଇଥିଲା ।

ଗଜପତି କପିଳେନ୍ଦ୍ର ଦେବଙ୍କ ରାଜତ୍ୱରେ କପିଳାସ ମୁକ୍ତି ମଣ୍ଡପରେ ବହୁ ଜ୍ଞାନୀ ଗୁଣୀ ପଣ୍ଡିତ ବିରାଜମାନ କରୁଥିଲେ । ସେମାନଙ୍କ ମଧ୍ୟରେ ପଣ୍ଡିତ ନାରାୟଣ ମିଶ୍ର, ତଦ୍ଧୀୟ ଭ୍ରାତା ପଣ୍ଡିତ ଜଳେଶ୍ୱର ମିଶ୍ର, ପଣ୍ଡିତ ନୃସିଂହ ବାଜପେୟୀ ପ୍ରଭୃତି ପ୍ରଧାନ । ସେମାନଙ୍କ ମଧ୍ୟରୁ ପଣ୍ଡିତ ନୃସିଂହ ବାଜପେୟୀ

ଶେଷ ଜୀବନରେ କାଶୀରେ ନିବାସ କରିଥିଲେ । ଏହି ପଣ୍ଡିତମାନଙ୍କ ଦ୍ୱାରା କପିଳ ସଂହିତା, ଏକାମ୍ରପୁରାଣ, ସ୍ୱର୍ଣ୍ଣାଦ୍ରି ମହୋଦୟ, ଏକାମ୍ର ଚନ୍ଦ୍ରିକା, ବିରଜା ମାହାତ୍ମ୍ୟ, ପୁରୁଷୋତ୍ତମ ମାହାତ୍ମ୍ୟ, ନୀଳାଦ୍ରି ମହୋଦୟ, ତୀର୍ଥ ଚିନ୍ତାମଣି ପ୍ରଭୃତି ରଚନା କରାଯାଇ ଓଡ଼ିଶାର ତୀର୍ଥ ସମୂହର ମହିମା ପ୍ରକଟିତ ହୋଇଥିଲା । ଏତଦ୍‌ଭିନ୍ନ ପଣ୍ଡିତ ନାରାୟଣ ମିଶ୍ର ପୂର୍ବମୀମାଂସା ଓ ଉତ୍ତର ମୀମାଂସା ଉପରେ ଟୀକା, ପଣ୍ଡିତ ଜଳେଶ୍ୱର ମିଶ୍ର ''ଜଳେଶ୍ୱର ପଦ୍ଧତି'', ପଣ୍ଡିତ ନୃସିଂହ ବାଜପେୟୀ ''ସଂକ୍ଷେପ ଶାରୀରିକ ବାର୍ତ୍ତିକ'' ଓ ''କାଶୀ ମୀମାଂସା'' ପ୍ରଣୟନ କରିଥିଲେ । ନିଜେ ରାଜା କପିଳେନ୍ଦ୍ର ''ପରଶୁରାମ ବିଜୟ'' ନାମକ ନାଟକ ଲେଖିଥିଲେ ।

ଗଜପତି କପିଳେନ୍ଦ୍ରଦେବ ଓଡ଼ିଶାରେ ସୂର୍ଯ୍ୟବଂଶ ପ୍ରତିଷ୍ଠା ତଥା ବତିଶି ବର୍ଷ ଶାସନ କରିବା ପରେ ୧୪୬୬ ଖ୍ରୀଷ୍ଟାବ୍ଦ ନଭେମ୍ବର ୨୫ ତାରିଖ ମଙ୍ଗଳବାର ସୁଦୂର ଦାକ୍ଷିଣାତ୍ୟର କୃଷ୍ଣାନଦୀ ତୀରରେ ଦେହତ୍ୟାଗ କରିଥିଲେ । ତାଙ୍କ ଅନ୍ତେ ଗଜପତି ପୁରୁଷୋତ୍ତମ ଦେବ ଓଡ଼ିଶାର ରାଜା ହୋଇଥିଲେ । ସେହି ସମୟରେ କାଞ୍ଚିରାଜା ସାଲ୍ୱ ନରସିଂହ ଦେବ ଓ ବାହମନୀ ସୁଲତାନ ଦକ୍ଷିଣ ଦିଗରେ ଆକ୍ରମଣ କରିଥିଲେ । ପୁରୁଷୋତ୍ତମ ଦେବ ଦୁଇଥର କାଞ୍ଚି ଯୁଦ୍ଧରେ ଅବତୀର୍ଣ୍ଣ ହେବା ତଥା ସ୍ୱୟଂ ପ୍ରଭୁ ବଳରାମ ଓ ଜଗନ୍ନାଥ ଯୋଦ୍ଧା ରୂପରେ ରଣକ୍ଷେତ୍ରରେ ପଦାର୍ପଣ କରିବା ପ୍ରସଙ୍ଗ କିମ୍ବଦନ୍ତୀ ଭାବରେ ସୁବିଦିତ । ଏଥିରୁ ଅନୁମିତ ହୁଏ ପୁରୁଷୋତ୍ତମ ଦେବ ମଧ୍ୟ ରାଜତ୍ୱର ବହୁକାଳ ଯୁଦ୍ଧରେ ଲିପ୍ତ ରହିଥିଲେ ।

ସେହି ସମୟରେ ଢେଙ୍କାନାଳର ସ୍ଥିତି ମଧ୍ୟ ଭଲ ନଥିଲା । କରମୂଳର ସାମନ୍ତ ରାଜା ଗଜପତିଙ୍କର କରଦ ରାଜା ଥିଲେ ହେଁ ଅନ୍ୟାନ୍ୟ କ୍ଷୁଦ୍ର ଭୂଖଣ୍ଡର ଅଧିକାରୀମାନେ ସର୍ବଦା ପରସ୍ପର ମଧ୍ୟରେ ଯୁଦ୍ଧରେ ବ୍ୟାପୃତ ଥିଲେ । ଫଳରେ ଢେଙ୍କାନାଳର ପଶ୍ଚିମ ଦିଗସ୍ଥ କେତେକ ଅଞ୍ଚଳ ତାଳଚେର ଓ ଅନୁଗୁଳ ରାଜାଙ୍କ ଦ୍ୱାରା ଅଧିକୃତ ହୋଇଥିଲା । କେବଳ ବ୍ରାହ୍ମଣୀ କୂଳରେ ସାତକୋଶ ପରିମିତ ରାଜ୍ୟ କରମୂଳ ପାଟଣା ନାମରେ ଅଭିହିତ ଥିଲା । ଗଜପତି ପୁରୁଷୋତ୍ତମ ଦେବ କାଞ୍ଚି ବିଜୟପରେ କପିଳାସ ସ୍ଥିତ ଶ୍ରୀ ଶିଖରେଶ୍ୱରଙ୍କ ଦର୍ଶନ କରିବା ସହିତ କରମୂଳ ରାଜ୍ୟ ପରି ଦର୍ଶନ କରିଥିଲେ । ସେ ନିଜ ନାମରେ ବ୍ରାହ୍ମଣୀ ନଦୀର ଉତ୍ତର ତୀରରେ ''ପୁରୁଷୋତ୍ତମପୁର'' ନାମକ ବ୍ରାହ୍ମଣ ଶାସନ ୧୪୮୫ ଖ୍ରୀଷ୍ଟାବ୍ଦରେ ବସାଇ ଯାଜପୁର ଅଞ୍ଚଳର ବ୍ରାହ୍ମଣଙ୍କୁ ଭୂସମ୍ପତ୍ତି ଦାନ କରି ରଖାଇଥିଲେ । ସେହି

ଶାସନଟିର ରାଜସ୍ୱ ନାମ ''ପୁରୁଷୋତ୍ତମ ପୁର'' ଥିଲେ ହେଁ ସଂପ୍ରତି ମଣିପୁର ନାମରେ ପରିଚିତ । ଏତଦ୍‌ଭିନ୍ନ ପୁରୁଷୋତ୍ତମ ଦେବଙ୍କ ଢେଙ୍କାନାଳ ଅଞ୍ଚଳର ଅନ୍ୟାନ୍ୟ କୀର୍ତ୍ତି କିଛି ଜଣାଯାଇ ନାହିଁ । ସେହି ସମୟରେ ଗଜପତି ପୁରୁଷୋତ୍ତମ ଦେବ ସ୍ୱରାଜଧାନୀ କଟକର ପୂର୍ବରେ ଷୋହଳ ଗୋଟି ବ୍ରାହ୍ମଣ ଶାସନ ବସାଇ ଥିଲେ । ସେହି ସବୁ ବ୍ରାହ୍ମଣ ଶାସନ ହେଉଛି ପୁରୁଷୋତ୍ତମ ପୁର, ସିଙ୍ଗିମା ପୁର, ପଦ୍ମପୁର, ଗଙ୍ଗାପୁର, ରୋଦ୍ରମା ପୁର, ମୋହନୀପୁର, ଏଲମାପୁର, ସତ୍ୟଭାମାପୁର, କୃଷ୍ଣପୁର, ବିଶ୍ୱନାଥପୁର, ମାର୍କଣ୍ଡପୁର, ହୀରାପୁର, ଲକ୍ଷ୍ମୀନାରାୟଣପୁର, ପାଟପୁର ପ୍ରଭୃତି । ଏହି ଷୋହଳଗୋଟି ଶାସନ ସହିତ କରମୂଳ ପାଟଣା ରାଜ୍ୟର ମାର୍ଥାପୁର, ବିଷ୍ଣୁପୁର, ସାମନ୍ତ ସିଂହାର ପୁର ଓ ପୁରୁଷୋତ୍ତମ ପୁର ଶାସନର ପ୍ରତ୍ୟକ୍ଷ ସଂପର୍କ ରହିଥିଲା । ଗଜପତି ମଧ କରମୂଳ ରାଜ୍ୟର ବ୍ରାହ୍ମଣମାନଙ୍କୁ କପିଳାସ ହରପାର୍ବତୀଙ୍କ ସନ୍ନିଧାନରେ ପ୍ରଚୁର ସମ୍ପତ୍ତି ଦାନ କରିଥିଲେ ।

ଗଜପତି ପୁରୁଷୋତ୍ତମ ଦେବଙ୍କ ମୃତ୍ୟୁପରେ ୧୪୯୭ ଖ୍ରୀଷ୍ଟାବ୍ଦରେ ପ୍ରତାପରୁଦ୍ରଦେବ ଗଜପତି ଆସନ ଅଳଙ୍କୃତ କରିଥିଲେ । ପ୍ରାଥମିକ ଅବସ୍ଥାରେ ସେ ବିଜୟନଗର ରାଜାଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ରହିଥିଲେ । ତାଙ୍କ ରାଜତ୍ୱରେ ଓଡ଼ିଶାରେ ବୈଷ୍ଣବ ଧର୍ମରେ ମଧୁର ରସ ପ୍ରବାହିତ ହୋଇଥିଲା । ସେହି ସମୟରେ ଓଡ଼ିଶାରେ ପଞ୍ଚସଖା ଓ ଶ୍ରୀଚୈତନ୍ୟଙ୍କର ମିଳିତ ବୈଷ୍ଣବ ଲୀଳା ସଂଘଟିତ ହୋଇଥିଲା । ତତ୍‌କାଳୀନ କବି ମାଧବ ପଟ୍ଟନାୟକ, ସ୍ୱରଚିତ ''ବୈଷ୍ଣବ ଲୀଳାମୃତ'' ବାକ୍ୟରେ ଏହି ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । ଗଜପତି ପ୍ରତାପରୁଦ୍ରଙ୍କ ଦେବଙ୍କର ବୈଷ୍ଣବ ଗୁରୁ ଥିଲେ ଶ୍ରୀଚୈତନ୍ୟ । ଶ୍ରୀଚୈତନ୍ୟଙ୍କ ବୃଦ୍ଧ ପ୍ରପିତାମହ ମଧୁକର ମିଶ୍ର ଯାଜପୁର ନିବାସୀ ଥିଲେ । ସେ କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ୧୪୫୧ ଖ୍ରୀଷ୍ଟାବ୍ଦରେ ଯାଜପୁର ତ୍ୟାଗ କରି ଶ୍ରୀହଟ୍ଟ ଜିଲ୍ଲାର ବଡ଼ ଗଙ୍ଗା ଗ୍ରାମରେ ନିବାସ କରିଥିଲେ । ତାଙ୍କ ପ୍ରପୌତ୍ର ଶ୍ରୀଚୈତନ୍ୟ ସନ୍ନ୍ୟାସ ଧର୍ମ ଗ୍ରହଣ ପୂର୍ବକ ପୁରୀରେ ୧୮ ବର୍ଷ ନିବାସ କରିଥିଲେ । ଗଜପତି ପ୍ରତାପରୁଦ୍ର ଦେବ ଦାକ୍ଷିଣାତ୍ୟ ଯୁଦ୍ଧରେ ପରାସ୍ତ ହୋଇ ଗୋଦାବରୀ ନଦୀର ଦକ୍ଷିଣାଂଶ ବିଜୟ ନଗର ରାଜା କୃଷ୍ଣଦେବ ରାୟଙ୍କୁ ଛାଡ଼ିବା ପରେ ଦୁଃଖରେ ମ୍ରିୟମାଣ ହୋଇ ଶ୍ରୀଚୈତନ୍ୟଙ୍କ ଠାରୁ ବୈଷ୍ଣବ ଦୀକ୍ଷା ଗ୍ରହଣ କଲେ । ଫଳରେ ଓଡ଼ିଶାର ପ୍ରଶାସନ ଦୁର୍ବଳ ହୋଇପଡ଼ିଲା ଏବଂ ବୈଷ୍ଣବ ଧର୍ମର ପ୍ରଭାବ ଓଡ଼ିଶାର ରାଜନୈତିକ ଓ ସାମାଜିକ ଜୀବନରେ ପ୍ରତିଫଳିତ ହୋଇଥିଲା ।

ପ୍ରତାପରୁଦ୍ର ଦେବ ଏକଦା ଗୋହତ୍ୟା ପାପରେ ଲିପ୍ତ ହୋଇ ଶ୍ରୀଜଗନ୍ନାଥଙ୍କର ଶରଣାପନ୍ନ ହେଲେ । ଜଗନ୍ନାଥଙ୍କ ସ୍ୱପ୍ନାଦେଶାନୁସାରେ ଗଜପତି ଗୋହତ୍ୟା ପାପ ଖଣ୍ଡନ ନିମିତ୍ତ ଶୈଳ ଶୈବକ୍ଷେତ୍ର କପିଳାସରେ ମହାରୁଦ୍ର ଯଜ୍ଞ ଓ ଓଡ଼ିଆ ମହାଭାରତ ପାରାୟଣ କରାଇଥିଲେ । କରମୂଳ ରାଜ୍ୟର ସାମନ୍ତ ରାଜାଙ୍କ ତତ୍ତ୍ୱାବଧାନରେ କପିଳାସ ପୀଠରେ ଏକଶହ ଆଠ ଦିନ ମହାରୁଦ୍ର ଯଜ୍ଞ, ମହାରୁଦ୍ରାଭିଷେକ, ଚଣ୍ଡୀପାଠ ଏବଂ ସଂପୂର୍ଣ୍ଣ ଓଡ଼ିଆ ମହାଭାରତ ପାରାୟଣ ହୋଇଥିଲା । ପ୍ରବାଦ ଅଛି, ଗଜପତି ପ୍ରତାପରୁଦ୍ର ଦେବ କଳାଚାନ୍ଦୁଆ ଟାଣି ତାହାରି ତଳେ ଶୁଦ୍ରମୁନି ଶାରଳା ଦାସ କୃତ ଓଡ଼ିଆ ମହାଭାରତ ପାରାୟଣ କରିଥିଲେ । ସଂପୂର୍ଣ୍ଣ ପାରାୟଣ ପରେ ଠାକୁରଙ୍କ କୃପାରୁ କଳାଚାନ୍ଦୁଆଟି ଧଳା ହୋଇ ଗଜପତି ପାପ ମୁକ୍ତ ହୋଇଥିଲେ । କେତେକଙ୍କ ମତରେ, ମହାଭାରତ ବୋଲା ହେବା ସମୟରେ ଯେତେବେଳେ ଭୀମଙ୍କ ଗଦା ଘାତରେ ହସ୍ତୀମାନେ ଆକାଶରେ ଉଡ଼ିଲେ ଗଜପତି ବିଶ୍ୱାସ କଲେ ନାହିଁ । ଫଳରେ କଳାଚାନ୍ଦୁଆର ଏକ ଚତୁର୍ଥାଂଶ କଳା ରହିଲା । ତେଣୁ ବ୍ରାହ୍ମଣ ପଣ୍ଡିତ ମଣ୍ଡଳୀ ପୁନର୍ବାର ମହାଭାରତ ପାରାୟଣ କଲେ । ଦ୍ୱିତୀୟବାର ସେହି ଏକାପୋଥି ପାରାୟଣ ହୋଇଥିଲେ ହେଁ ଭୀମଙ୍କ ଗଦାଘାତରେ ଆକାଶରେ ଉଡୁଥିବା ହସ୍ତୀଗଣ ତଳକୁ ଖସିଲେ । ଦ୍ୱିତୀୟବାର ପାରାୟଣରେ ଗଜପତିଙ୍କର ବିଶ୍ୱାସ ଜନ୍ମିଲା ତଥା କଳାଚାନ୍ଦୁଆଟି ସଂପୂର୍ଣ୍ଣ ଧବଳବର୍ଣ୍ଣ ଧାରଣ କଲା । ସେହି ମହାଯଜ୍ଞ, ମହାରୁଦ୍ରାଭିଷେକ ଓ ପାରାୟଣରେ ଗଜପତି ମାର୍ଥାପୁର, ପୁରୁଷୋତ୍ତମା ପୁର ଓ ବିଷ୍ଣୁପୁର ବ୍ରାହ୍ମଣ ଶାସନର ବ୍ରାହ୍ମଣ ମଣ୍ଡଳୀଙ୍କୁ ବହୁ ଭୂସମ୍ପତ୍ତି ଓ ଧନରତ୍ନ ଦାନ ଦେଇଥିଲେ ।

ଏହି ସମୟରେ କପିଳାସ ପୀଠ ପରିଚାଳନାରେ ତ୍ରୁଟି ପରିଲକ୍ଷିତ ହୋଇଥିଲା । କାରଣ କରମୂଳରେ ସାମନ୍ତ ରାଜା ହିଁ କପିଳାସ ପୀଠର ପରିଚାଳନା ଦାୟିତ୍ୱରେ ଥିଲେ, କିନ୍ତୁ ସ୍ଥାନୀୟ ଭୂମ୍ୟାଧିକାରୀମାନେ ଆପଣାକୁ ସ୍ୱାଧୀନ ଘୋଷଣା ପୂର୍ବକ ଭୂରାଜସ୍ୱ ନ ଦେବାରେ ନୀତିନିଯୋଗ ପର୍ବପର୍ବାଣୀ ତଥା ପରିଚାଳନାରେ ବ୍ୟତିକ୍ରମ ପରିଲକ୍ଷିତ ହୋଇଥିଲା । ପ୍ରତାପରୁଦ୍ର ଦେବ ଏହା ଲକ୍ଷ୍ୟ କରି କପିଳାସ ପାଦଦେଶସ୍ଥିତ ନାଗିଆ ପଶି, ଯାଁନ୍ଦାପଶି, ସାନ୍ଦାପଶି, ବିଶ୍ୱନାଥପୁର, ବାଇଁଶିଆ, ସାନ୍ଦାପଶି ପାଟଣା, ଦେଓଗାଁ ପ୍ରଭୃତି ଗ୍ରାମ କପିଳାସ ଠାକୁରଙ୍କ ନୀତିନିଯୋଗ ଓ ଖଞ୍ଜା ନିମିତ୍ତ ସନନ୍ଦ ପ୍ରଦାନ କଲେ । ପୂର୍ବରୁ ଦେଓଗାଁ ଗ୍ରାମ ନଥିଲା । ଗଜପତି ଦେଓଗାଁ ଠାରେ ଗ୍ରାମ ବସାଇ କପିଳାସର

ସେବାସୀ ଚିନ୍ତାପତ୍ରୀମାନଙ୍କୁ ରଖାଇଲେ । ଢେଙ୍କାନାଳ ଇତିହାସରେ ଚିନ୍ତାପତ୍ରୀମାନଙ୍କୁ ଶବର ବୋଲି ଉଲ୍ଲେଖ କରାଯାଇଛି । କପିଳାସ ହେଉଛି ନାଥ ସଂପ୍ରଦାୟର ମୁଖ୍ୟ ପୀଠ । ନାଥ ମହନ୍ତମାନେ ହିଁ ଏହି ପୀଠର ମୁଖ୍ୟ ସେବକ । ଶିବରାତ୍ରି ଦିନ ସକଳ ଭୋଗର ଅଧିକାରୀ ହେଉଛନ୍ତି ଏହି ନାଥ ମହନ୍ତ ବୃନ୍ଦ । ଚିନ୍ତାପତ୍ରୀମାନେ ପ୍ରାଚୀନକାଳରୁ ନାଥ ମହନ୍ତଙ୍କ ଅଧୀନରେ ଠାକୁରଙ୍କ ସେବା କରି ଆସୁଅଛନ୍ତି । ଗଜପତି ପ୍ରତାପରୁଦ୍ରଦେବ ଚିନ୍ତାପତ୍ରୀମାନଙ୍କୁ ପୀଠର ପାଦଦେଶ ଦେଓଗାଁରେ ଜମିବାଡ଼ି ପ୍ରଦାନ ପୂର୍ବକ ସ୍ଥାୟୀ ବସତି ସ୍ଥାପନ କରିଥିଲେ । ଗଜପତି ମଧ ଗୋହତ୍ୟା ପାପ ଖଣ୍ଡନ ନିମିତ୍ତ ତତ୍‌କାଳୀନ ନାଥ ମହନ୍ତ ପରଶୁରାମ ନାଥ ଗୋସ୍ୱାମୀଙ୍କୁ କରମୂଳ ରାଜ୍ୟର ବାଲିବନ୍ଧ, ଜୁଆଳିବନ୍ଧ ପ୍ରଭୃତି ଗ୍ରାମଦାନ କରିବା ସହିତ ସନନ୍ଦ ପ୍ରଦାନ କରିଥିଲେ ।

''ରାଜାଧିରାଜ ବୀରବର ପ୍ରତାପଦେବ ଗଜପତି ଗୌଡ଼େଶ୍ୱର ମକର ୨୫ଦିନ ୭ ଅଙ୍କ କପିଳ ନାମକ ଷଣ୍ଢବଧ କରଣେ ପାପ ବିଧ୍ୱଂସନେ ଯଜ୍ଞକରଣେ ସନନ୍ଦ ପରଶୁରାମ ନାଥ ଗୋସାଇଁଙ୍କୁ ଦିଆକେ''

ସନନ୍ଦରୁ ଉପଲବ୍ଧ ହୁଏ, ପ୍ରତାପ ଦେବଙ୍କ ରାଜତ୍ୱର ୭ ଅଙ୍କ ଅର୍ଥାତ୍ ୧୫୦୨ ଖ୍ରୀଷ୍ଟାବ୍ଦରେ ମହାରୁଦ୍ର ଯଜ୍ଞ ଓ ମହାରୁଦ୍ରାଭିଷେକ ଅନୁଷ୍ଠିତ ହୋଇଥିଲା । କପିଳାସ ପୀଠର ସୁପରିଚାଳନା ନିମିତ୍ତ ପ୍ରତାପରୁଦ୍ରଦେବ କରମୂଳ ରାଜ୍ୟର ବ୍ରାହ୍ମଣ ମଣ୍ଡଳୀଙ୍କୁ ନେଇ ପୁରୀର ମୁକ୍ତି ମଣ୍ଡପ ସଦୃଶ ଏକ ପଣ୍ଡିତ ସଭା ଗଠନ କରିଥିଲେ । ରାଜପୁରୋଧା ଏହି ପଣ୍ଡିତ ସଭାର ଅଧ୍ୟକ୍ଷ ଆସନ ଅଳଙ୍କୃତ କରିଥିଲେ । ତାହାଙ୍କୁ ଧର୍ମାଧ୍ୟକ୍ଷ ଉପାଧି ପ୍ରଦାନ କରାଗଲା । ତାଙ୍କରି ନିର୍ଦ୍ଦେଶରେ କପିଳାସ ପୀଠରେ ସକଳ ନୀତି, ନିଯୋଗ ଓ ପର୍ବପର୍ବାଣୀ ସମାହିତ ହେବା ନିମିତ୍ତ ଗଜପତି ଘୋଷଣା କଲେ । ଅଦ୍ୟାବଧି, କପିଳାସ ପୀଠରେ ସେହି ପରମ୍ପରା ଅନୁସୃତ ।

ଗଜପତି ପ୍ରତାପରୁଦ୍ର ଦେବ ଥିଲେ ଶ୍ରୀ ଜଗନ୍ନାଥଙ୍କର ପରମ ଭକ୍ତ । ସେ ଦେଓଗାଁଠାରେ ଗୋଟିଏ ବଳଦେବ ଜୀଉ ମନ୍ଦିର ନିର୍ମାଣ କରିଥିଲେ । ଘୋର ଅରଣ୍ୟ ମଧ୍ୟରେ ଶିଳ୍ପୀମାନେ ଦିଗ ନିର୍ଣ୍ଣୟ ନକରିପାରି ମନ୍ଦିରର ମୁଖଶାଳା ପଶ୍ଚିମ ଦିଗକୁ ନିର୍ମାଣ କରିଦେଲେ । ଫଳରେ ଏହି ମନ୍ଦିରର ମୁଖଶାଳାଟି ମନ୍ଦିର ଓ ମନ୍ଦିରଟି ମୁଖଶାଳା ହେଲା ଅର୍ଥାତ୍ ଦେଉଳକୁ ମୁଖଶାଳା ବଳି ପଡିଲା । ଦେଓଗାଁଠାରେ ଚନ୍ଦନ ପୋଖରୀ ଓ ସରଘର ତଥା ଧର୍ମଶାଳା ମଧ୍ୟ

ପ୍ରତାପରୁଦ୍ରଦେବଙ୍କ କୀର୍ତ୍ତି ଦେଓଗାଁ । ବଳଦେବଜୀଉଙ୍କ ରଥଯାତ୍ରା ତଥା ଏହି ମନ୍ଦିର ପରିସରରେ ଶିଖରେଶ୍ୱରଙ୍କ ବିବାହୋତ୍ସବ ମଧ୍ୟ ପ୍ରତାପରୁଦ୍ରଦେବ ଆରମ୍ଭ କରିଥିଲେ । ଏତଦ୍‌ଭିନ୍ନ ସେ କରମୂଳ ପାଟଣା ରାଜ୍ୟରେ କରମୂଳ, କାବରା ଓ ଦଳାର ଗ୍ରାମରେ ଦଧିବାମନ ମୂର୍ତ୍ତି ପ୍ରତିଷ୍ଠା ପୂର୍ବକ ସେବାପୂଜାର ସୁବନ୍ଦୋବସ୍ତ କରିଥିଲେ । ଫଳରେ, ଢେଙ୍କାନାଳ ଅଞ୍ଚଳରେ ଜଗନ୍ନାଥ ସଂସ୍କୃତିର ପ୍ରସାର ଘଟିଥିଲା । ସୂଚନାଯୋଗ୍ୟ ଯେ, ଦେଓଗାଁ ବଳଦେବଜୀଉ ମନ୍ଦିରରେ କେବଳ ବଳଦେବ ଓ ଜଗନ୍ନାଥ ପୂଜା ପାଉଛନ୍ତି ତଥା ସୁଭଦ୍ରା ମନ୍ଦିରର ଗୋଟିଏ କୋଣରେ ବିରାଜମାନ । କିମ୍ବଦନ୍ତୀରୁ ଜଣାଯାଏ, ସୁଭଦ୍ରା ପୂଜକମାନଙ୍କୁ କୋପ କରିବାରୁ ପରବର୍ତ୍ତୀକାଳରେ ପୂଜକ ବୃନ୍ଦ ତାଙ୍କୁ ସିଂହାସନରୁ ନେଇ ମନ୍ଦିରର ଗୋଟିଏ କୋଣରେ ରଖି ଅଛନ୍ତି । ଦେଓଗାଁ ବଳଦେବଜୀଉ ମନ୍ଦିରର ସ୍ୱତନ୍ତ୍ର ଜମିଜମା ନାହିଁ । କପିଳାସ ଠାକୁରଙ୍କ ଜମିଜମା ଆୟରୁ ଏହି ଠାକୁରଙ୍କ ନୀତ୍ତିନିଯୋଗ ଓ ପର୍ବପର୍ବାଣୀ ନିର୍ବାହ ହୁଏ ।

ଶ୍ରୀଚୈତନ୍ୟ ମହାପ୍ରଭୁ ପ୍ରତାପରୁଦ୍ରଙ୍କ ରାଜତ୍ୱକାଳରେ କପିଳାସ ପୀଠରେ ପଦାର୍ପଣ ପୂର୍ବକ ଜଗଦ୍‌ଗୁରୁ ଶ୍ରୀଧରସ୍ୱାମୀଙ୍କ ସାଧନା ଓ ସମାଧିପୀଠ ତଥା ଶିଖରେଶ୍ୱରଙ୍କୁ ଦର୍ଶନ କରିଥିଲେ । ''ଚୈତନ୍ୟ ଚରିତାମୃତ''ରେ ଅଛି–

ପ୍ରଶସ୍ତ ପଥ ଛାଡ଼ି ଉପପଥେ ଚାଲିଲା,
କଟକ ଡାହାନ କରି ବନେ ପ୍ରବେଶିଲା ।

ବିଞ୍ଛ ପ୍ରାଞ୍ଜଙ୍କ ମତରେ ବୃନ୍ଦାବନ ଯାତ୍ରା ସମୟରେ ଶ୍ରୀଚୈତନ୍ୟ କପିଳାସ ଦର୍ଶନ କରିଥିଲେ । ପୀଠସ୍ଥିତ ବିଶ୍ୱନାଥ ମନ୍ଦିର ମୁଖଶାଳାରେ ପାଷାଣରେ ଶ୍ରୀଚୈତନ୍ୟଙ୍କ ପାଦପଦ୍ମ ବିଦ୍ୟମାନ । ବିଶ୍ୱାସ କରାଯାଏ ଯେ, ଶ୍ରୀଚୈତନ୍ୟ ଶ୍ରୀଧର ସ୍ୱାମୀଙ୍କୁ ଗୁରୁ ରୂପେ ସ୍ୱୀକାର କରିଥିବାରୁ ତାଙ୍କ ସାଧନା ଓ ସମାଧିପୀଠ ସନ୍ନିକଟରେ ସ୍ୱପ୍ନଦ ଚିହ୍ନ ରଖିଯାଇଛନ୍ତି ।

୧୫୩୧ ଖ୍ରୀଷ୍ଟାବ୍ଦ ସମୟକୁ କରମୂଳର ସାମନ୍ତରାଜା ନିଃସନ୍ତାନ ଭାବରେ ପରଲୋକ ଗମନ କଲେ । ତେଣୁ ଗଜପତି ପ୍ରତାପରୁଦ୍ର ଦେବ ନିଜର ସମର ସଚିବ ଉଦୀୟମାନ ବୀର ହରିବିଦ୍ୟାଧରଙ୍କୁ ସାତକୋଶ ପରିମିତ କରମୂଳ ପାଟଣା ରାଜ୍ୟ ୧୫୩୧ରେ ସନନ୍ଦ ପ୍ରଦାନ କଲେ । ୧୫୩୧ ମସିହାରେ ହରିବିଦ୍ୟାଧରଙ୍କୁ କରମୂଳ ରାଜ୍ୟ ଓ କପିଳାସ ମନ୍ଦିର ଦାୟିତ୍ୱ ଅର୍ପଣ କଲାପରେ ପ୍ରତାପରୁଦ୍ର ଦେବ କିଛିକାଳ ପୁରୀରେ ନିବାସ କରିଥିଲେ । ୧୫୩୩ ଖ୍ରୀଷ୍ଟାବ୍ଦ

ଅକ୍ଷୟ ତୃତୀୟାରେ ଶ୍ରୀଚୈତନ୍ୟ ପୁରୀ ଶ୍ରୀମନ୍ଦିରରେ ତନୁ ତ୍ୟାଗ କଲେ । ଗଜପତି ତାଙ୍କୁ କୋଇଲି ବୈକୁଣ୍ଠରେ ସମାଧି ଦେଇ ପୁରୀରୁ ମୟୂରଭଞ୍ଜ ଗଲେ ଏବଂ ସେଠାରୁ ବୃନ୍ଦାବନ ଯାତ୍ରା କରିଥିଲେ । ପଥ ମଧରେ ମୟୂରଭଞ୍ଜର ରାମଚନ୍ଦ୍ର ପୁର ଗ୍ରାମରେ ୧୫୩୩ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ହୋଇଥିଲା । ସେହି ଗ୍ରାମରେ ଅବସ୍ଥାନ କରୁଥିବା ସମୟରେ ପ୍ରତାପରୁଦ୍ର ଦେବ ନିମ କାଠର ଏକ ଗୌରାଙ୍ଗ ମୂର୍ତ୍ତି ସେଠାରେ ସ୍ଥାପନା ପୂର୍ବକ ଗ୍ରାମଟିର ନାମ ପ୍ରତାପପୁର ରଖିଥିଲେ । ତାଙ୍କ ଅନ୍ତେ ଓଡ଼ିଶାରେ ୧୫୩୪ ଠାରୁ ଭୋଇବଂଶ ରାଜତ୍ୱ ଆରମ୍ଭ ହୋଇଥିଲା ।

ସୂର୍ଯ୍ୟବଂଶ ରାଜତ୍ୱରେ ଢେଙ୍କାନାଳ ଅଞ୍ଚଳରେ ସାଂସ୍କୃତିକ ଉତ୍ତରଣ ସଂଘଟିତ ହୋଇଥିଲା । ପୂର୍ବ ଅଧ୍ୟାୟରେ ଆଲୋଚନା କରାଯାଇଛି ଯେ, ଲାଙ୍ଗୁଳା ନରସିଂହ ଦେବ କପିଳାସ ମନ୍ଦିରର ପଶ୍ଚିମ ପାର୍ଶ୍ୱ କାନ୍ଥରେ ଶ୍ରୀଜଗନ୍ନାଥ ମୂର୍ତ୍ତି ଖୋଦନ କରାଇଥିଲେ । ଗଜପତି ପ୍ରତାପରୁଦ୍ର ଏହି ଅଞ୍ଚଳରେ ବଳଦେବଜୀଉ ଓ ଦଧିବାମନ ମନ୍ଦିର ନିର୍ମାଣ ପୂର୍ବକ ଜଗନ୍ନାଥ ସଂସ୍କୃତିର ବ୍ୟାପକ ପ୍ରସାର ଘଟାଇଥିଲେ । ପ୍ରତାପରୁଦ୍ରଦେବଙ୍କ ଆନୁକୂଲ୍ୟରେ ଢେଙ୍କାନାଳରେ ଓଡ଼ିଆ ମହାଭାରତ, ଦାଣ୍ଡୀ ରାମାୟଣ ଓ ଭାଗବତର ଆଦର ବୃଦ୍ଧି ପାଇଲା । ଫଳରେ କରମୂଳ ରାଜ୍ୟର ଗ୍ରାମେ ଗ୍ରାମେ ଭାଗବତ ଟୁଙ୍ଗୀମାନେ ପ୍ରତିଷ୍ଠା ହେଲା । ମୋଟ ଉପରେ ଉଲ୍ଲେଖ କଲେ, ସୂର୍ଯ୍ୟବଂଶୀ ରାଜତ୍ୱରେ ଢେଙ୍କାନାଳରେ ଭାଗବତ ଧର୍ମ ଓ ବୈଷ୍ଣବ ସଂସ୍କୃତିର ବ୍ୟାପକ ପ୍ରସାର ଘଟିଥିଲା ।



# ଉଦୀୟମାନବୀର ହରିସିଂହ ବିଦ୍ୟାଧର

ଉତ୍ତର ଓ ପଶ୍ଚିମ ଭାରତ ମୁସଲମାନ ଅଧିକୃତ ହେବାପରେ ବହୁ ହିନ୍ଦୁ ରାଜା ଓ ରାଜବିରାଦର ଭାରତର ପୂର୍ବାଞ୍ଚଳକୁ ଚାଲି ଆସିଥିଲେ । ସେମାନଙ୍କ ମଧ୍ୟରୁ ରାଜସ୍ଥାନଗରୁ ବହୁ କ୍ଷତ୍ରିୟ ଓଡ଼ିଶାକୁ ଆସିଥିଲେ । କଥିତ ଅଛି, ପ୍ରତାପରୁଦ୍ରଦେବଙ୍କ ରାଜତ୍ୱରେ ରାଜସ୍ଥାନରୁ ତିନିଜଣ ଉଦୀୟମାନ କ୍ଷତ୍ରିୟ ନୀଳାଚଳ ଧାମକୁ ଆସି ଗଜପତିଙ୍କର ଆଶ୍ରୟ ପ୍ରାର୍ଥୀ ହେଇଥିଲେ । ଏହି ତିନିଜଣ କ୍ଷତ୍ରିୟଭ୍ରାତା ହେଉଛନ୍ତି ଗୋବିନ୍ଦ ସିଂହ, ଦନେଇ ସିଂହ ଓ ହରି ସିଂହ । ଗଜପତି ପ୍ରତାପରୁଦ୍ର ଦେବ ପ୍ରଥମେ ସେମାନଙ୍କୁ ଭୋଇ ଅର୍ଥାତ୍ ତହସିଲଦାର ପଦବୀରେ ମୁତୟନ କରିଥିଲେ । ପରବର୍ତ୍ତୀକାଳରେ ସେମାନେ ସ୍ୱକାର୍ଯ୍ୟରେ ଦକ୍ଷତା ପ୍ରଦର୍ଶନ ପୂର୍ବକ ଉଚ୍ଚପଦବୀକୁ ଉନ୍ନୀତ ହୋଇଥିଲେ । ଗଜପତି ମହାରାଜା ମଧ୍ୟ ଏମାନଙ୍କ କାର୍ଯ୍ୟରେ ସନ୍ତୋଷ ପ୍ରକାଶ କରି ସେମାନଙ୍କୁ ବିଦ୍ୟାଧର ମହାପାତ୍ର ପଦବୀ ପ୍ରଦାନ ପୂର୍ବକ ସେନାପତି ଏବଂ ଅନ୍ୟାନ୍ୟ ଉଚ୍ଚପଦବୀରେ ଅଧିଷ୍ଠିତ କରାଇଥିଲେ । ତଦନୁଯାୟୀ, ସେହି ରାଜପୁତ ଭ୍ରାତୃତ୍ରୟ, ଗୋବିନ୍ଦ ବିଦ୍ୟାଧର, ଦନାଇ ବିଦ୍ୟାଧର ଓ ହରି ବିଦ୍ୟାଧର ନାମରେ ଓଡ଼ିଶାରେ ସୁପରିଚିତ ହୋଇଥିଲେ । ଏମାନେ ପ୍ରଥମେ ଭୋଇ ପଦବୀରେ କାର୍ଯ୍ୟ କରୁଥିବାରୁ ସେମାନଙ୍କ ବଂଶ ପରବର୍ତ୍ତୀକାଳରେ ଭୋଇବଂଶ ନାମରେ ପରିଚିତ ହେଲା । ସୂଚନାଯୋଗ୍ୟ ଯେ, ସେହି ଭୋଇବଂଶର ଉତ୍ତରାଧିକାରୀ ଗଣ ପରମ୍ପରାକ୍ରମେ ଅଦ୍ୟାବଧି ଗଜପତି ଆସନ ଅଳଙ୍କୃତ କରି ଆସୁଅଛନ୍ତି ।

ସୂର୍ଯ୍ୟବଂଶୀ ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜଧାନୀ ଥିଲା କଟକ ନଗରୀ । ସେହି ସମୟରେ ପୁରୀ ବାଲି ସାହିରେ ମଧ୍ୟ ଗଜପତିଙ୍କର ଅନ୍ୟ ଏକ ପ୍ରାସାଦ ଥିଲା । ଗଜପତି ସେହି ପ୍ରାସାଦରେ ସାମୟିକ ନିବାସ କରୁଥିଲେ । ୧୫୧୭ ମସିହାରେ ପ୍ରତାପରୁଦ୍ର ଦେବଙ୍କ ଜ୍ୟେଷ୍ଠପୁତ୍ର ବୀରଭଦ୍ର କୋଣ୍ଡାବିଡୁ ଦୁର୍ଗରେ ଶତ୍ରୁ ଚକ୍ରାନ୍ତରେ ପ୍ରାଣତ୍ୟାଗ କଲେ । ଏହାପରେ ଗଜପତି ମର୍ମାହତ ହୋଇ ପୁରୀରେ ନିବାସ କଲେ ତଥା ଶ୍ରୀଚୈତନ୍ୟଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ସେହି ସମୟରେ ପ୍ରତାପରୁଦ୍ର ଦେବଙ୍କ ପ୍ରଧାନ ସଚିବ ଥିଲେ ପୂର୍ବୋକ୍ତ ଗୋବିନ୍ଦ

ବିଦ୍ୟାଧର ଏବଂ ଅର୍ଥ ସଚିବ ଥିଲେ ଦନେଇ ବିଦ୍ୟାଧର । ଉଲ୍ଲେଖଯୋଗ୍ୟ ଯେ ତୃତୀୟ ଭ୍ରାତା ହରିବିଦ୍ୟାଧର ଗଜପତିଙ୍କର ସମର ସଚିବ ପଦବୀରେ ଅଧିଷ୍ଠିତ ଥିଲେ । ପ୍ରତାପରୁଦ୍ର ଦେବଙ୍କ ପୁରୀ ନିବାସ କାଳରେ ହରି ବିଦ୍ୟାଧର ଦାକ୍ଷିଣାତ୍ୟ ଯୁଦ୍ଧରେ ମୁଖ୍ୟ ସେନାପତି କାର୍ଯ୍ୟ ନିର୍ବାହ କରିଥିଲେ । ସେ ଦାକ୍ଷିଣାତ୍ୟ ଯୁଦ୍ଧରୁ ଅଜସ୍ର ଧନସମ୍ପତ୍ତି ଆୟ ପୂର୍ବକ ଗଜପତିଙ୍କର ପ୍ରିୟ ପାତ୍ର ହୋଇଥିଲେ । ଗଜପତି ମଧ୍ୟ ହୃଦୟଙ୍ଗମ କରିଥିଲେ ଯେ ଗୋବିନ୍ଦ, ଦନାଇ ଓ ହରି ତିନିଜଣଯାକ ରାଜସ୍ଥାନ ନିବାସୀ ଚନ୍ଦ୍ରବଂଶୀ ସିଂହ ଉପାଧିଧାରୀ ଉଚ୍ଚବର୍ଣ୍ଣର କ୍ଷତ୍ରିୟ । ଚନ୍ଦ୍ର ବଂଶର ପ୍ରତିଷ୍ଠାତା ଯଯାତିଙ୍କ ଜ୍ୟେଷ୍ଠପୁତ୍ର ଯଯାତିଙ୍କ ଠାରୁ ଏହି ବଂଶର ଉତ୍ପତ୍ତି ହୋଇଥିବାରୁ ଏମାନଙ୍କୁ ଯଦୁ ବଂଶୀ କ୍ଷତ୍ରିୟ ମଧ୍ୟ କୁହାଯାଏ । ଗୌରବର କଥା, ଏହି ପ୍ରସିଦ୍ଧ ଚନ୍ଦ୍ରବଂଶରେ ଦ୍ୱାପର ଯୁଗରେ ଭଗବାନ୍ ଶ୍ରୀକୃଷ୍ଣ ଜନ୍ମଗ୍ରହଣ କରିଥିଲେ । ସେହି ଶ୍ରୀକୃଷ୍ଣଙ୍କ ପୁତ୍ରଙ୍କ ନାମ ପ୍ରଦ୍ୟୁମ୍ନ । ପଣ୍ଡିତ ରାମଚନ୍ଦ୍ର ନନ୍ଦ ସ୍ୱରଚିତ ଢେଙ୍କାନାଳ ଇତିହାସରେ ଉଲ୍ଲେଖ କରିଅଛନ୍ତି ଯେ ହରିବିଦ୍ୟାଧର ସେହି ପ୍ରଦ୍ୟୁମ୍ନଙ୍କ ବଂଶଧର । ପ୍ରଦ୍ୟୁମ୍ନଙ୍କ ଅନ୍ୟ ନାମ ମୀନକେତନ ବା ମତ୍ସ୍ୟଧ୍ୱଜ ଥିଲା । ସେହି ଦୃଷ୍ଟିକୋଣରେ ତାଙ୍କ ବଂଶର କ୍ଷତ୍ରିୟମାନଙ୍କର ସନ୍ତକ ଥିଲା ମୀନକେତନ । ରାଜସ୍ଥାନରେ ଏହି ମୀନକେତନ ସନ୍ତକଧାରୀ ଶ୍ରୀକୃଷ୍ଣ ବଂଶୋଦ୍ଭବ କ୍ଷତ୍ରିୟବୃନ୍ଦ ଭଟ୍ଟିବଂଶୀୟ କ୍ଷତ୍ରିୟ ନାମରେ ଖ୍ୟାତ । ଏମାନେ ରାଜପୁତନାର ଯଶଲ୍ମୀରରେ ରାଜତ୍ୱ କରୁଥିଲେ । ଏମାନଙ୍କର ଉପାଧି ସ୍ଥଳ ବିଶେଷରେ ସିଂହ ଓ ରାଓ ଥିଲା । ଗୋବିନ୍ଦ ସିଂହ, ଦବାଇ ସିଂହ ଓ ହରିସିଂହ ସେହି ବଂଶୀୟ କ୍ଷତ୍ରିୟ ଥିଲେ । ଭଗବାନ ଶ୍ରୀକୃଷ୍ଣ ହିଁ ଥିଲେ ସେମାନଙ୍କର ଇଷ୍ଟ । ଦାକ୍ଷିଣାତ୍ୟ ଯୁଦ୍ଧପରେ ହରିସିଂହ ବିଦ୍ୟାଧର ପୁରୀରେ ପ୍ରତାପରୁଦ୍ର ଦେବଙ୍କ ନିକଟରେ ନିବାସ ପୂର୍ବକ ପ୍ରତ୍ୟହ କୃଷ୍ଣରୂପୀ ଜଗନ୍ନାଥ ତଥା ଶ୍ରୀକୃଷ୍ଣ ଚୈତନ୍ୟଙ୍କର ଦର୍ଶନ ଓ ସାନ୍ନିଧ୍ୟରେ ପରମ ଆତ୍ମସନ୍ତୋଷ ଲାଭ କରୁଥିଲେ ।

ପୁରୀ ନିବାସ କାଳରେ ଗଜପତି ପ୍ରତାପରୁଦ୍ର ଦେବ କପିଳା ନାମକ କ୍ଷଣ୍ଡବଧ ପୂର୍ବକ ପାପ ବିଧ୍ୱଂସନ ନିମିତ୍ତ କପିଳାସ ଆସିଥିଲେ । କପିଳାସରେ ମହାରୁଦ୍ର ଯଜ୍ଞ ଓ ଓଡ଼ିଆ ମହାଭାରତ ପାରାୟଣ ପ୍ରଭୃତି ଧର୍ମାନୁଷ୍ଠାନ ନିମିତ୍ତ ଗଜପତିଙ୍କୁ ଦୀର୍ଘକାଳ ରହିବାକୁ ପଡ଼ିଲା । ତାଙ୍କ ସହିତ ତଦ୍ଦୀୟ ବିଶ୍ୱସ୍ତ ସମର ସଚିବ ହରିବିଦ୍ୟାଧର ମଧ୍ୟ କପିଳାସ ଆସିଥିଲେ । ସେହି ସମୟରେ

ଢେଙ୍କାନାଳର ରାଜନୈତିକ ସ୍ଥିତି ଦୁର୍ବଳ ଥିଲା । ଭୌମକର ଯୁଗରୁ ଏହି ଭୂଖଣ୍ଡ ଓଡ଼ିଶା ରାଜାଙ୍କ ଶାସନାଧୀନ ଥିଲେ ହେଁ ସୂର୍ଯ୍ୟବଂଶୀ ରାଜତ୍ୱର ଶେଷ ସମୟରୁ ଛୋଟ ଛୋଟ ଜନପଦରେ ବିଭକ୍ତ ହୋଇଯାଇଥିଲା । କେବଳ ବ୍ରାହ୍ମଣୀତଟସ୍ଥ କରମୂଳ ପାଟଣା ରାଜା ଓଡ଼ିଶା ରାଜାଙ୍କ ଅଧୀନସ୍ଥ ନୃପତି ରୂପେ ଗଣ୍ୟ ହେଉଥିଲେ । ପାର୍ଶ୍ୱବର୍ତ୍ତୀ ସାମନ୍ତ ଭୂମ୍ୟାଧିକାରୀଗଣ କରମୂଳ ପାଟଣା ରାଜାଙ୍କୁ ମାନୁ ନଥିଲେ । ଦୁର୍ଯୋଗରୁ, ଗଜପତିଙ୍କ କପିଳାସ ନିବାସ କାଳରେ ୧୫୩୦ ଖ୍ରୀଷ୍ଟାବ୍ଦରେ କରମୂଳ ପାଟଣାର ରାଜା ପରଲୋକ ଗମନ କଲେ । ତାଙ୍କର କୌଣସି ଉତ୍ତରାଧିକାରୀ ନଥିଲେ । ତେଣୁ ଗଜପତି ପ୍ରତାପରୁଦ୍ର ଦେବ ଆପଣାର ସମର ସଚିବ ଉଦୀୟମାନ ବୀର ହରିବିଦ୍ୟାଧରଙ୍କୁ ୧୫୩୧ ମସିହାରେ କରମୂଳ ପାଟଣା ରାଜ୍ୟର ରାଜା ପଦବୀରେ ଅଧିଷ୍ଠିତ କରାଇଲେ । ସେହି ସମୟରେ କରମୂଳ ରାଜ୍ୟର ଆୟତନ ସାତକୋଶ ଥିଲା । ବ୍ରାହ୍ମଣୀ କୂଳରେ ହଦଗଡ଼ ଠାରୁ ପୂର୍ବ ରେ ସାତକୋଶ ବ୍ୟାପୀର ଏହି ରାଜ୍ୟ ପରିବ୍ୟାପ୍ତ ଥିଲା ତଥା ଏହାର ରାଜଧାନୀ ଥିଲା କରମୂଳ ପାଟଣା । କେହି କେହି ଏହି ରାଜ୍ୟକୁ ହଦ କରମୂଳ ରାଜ୍ୟ ବୋଲି କହୁଥିଲେ । କରମୂଳଠାରେ ଗୋଟିଏ ଗିରିଦୁର୍ଗ ତଥା ରାଜପ୍ରସାଦ (ଉଆସ) ରହିଥିଲା । ଏତଦ୍‌ଭିନ୍ନ ହଦଗଡ଼ଠାରେ ଏକ ଜଳପୂର୍ଣ୍ଣ ପରିଖାବେଷ୍ଟିତ ଦୁର୍ଗ ରହିଥିଲା ।

୧୫୩୧ ଖ୍ରୀଷ୍ଟାବ୍ଦ ଶ୍ରୀପଞ୍ଚମୀ ତିଥିରେ କରମୂଳ ପାଟଣା ଉଆସରେ ରାଜା ହରିସିଂହ ବିଦ୍ୟାଧରଙ୍କର ଅଭିଷେକ ଅନୁଷ୍ଠିତ ହୋଇଥିଲା । ଏହି ଅଭିଷେକ ମହୋତ୍ସବ ପୁରୀ ଓ କପିଳାସର ସାଧୁ ସନ୍ଥ, ପ୍ରାଚୀନ ମାର୍ଥାପୁର ଶାସନର ବ୍ରାହ୍ମଣମଣ୍ଡଳୀ ତଥା ସ୍ୱୟଂ ଗଜପତି ପ୍ରତାପରୁଦ୍ର ଦେବ ଯୋଗ ଦେଇଥିଲେ । ଢେଙ୍କାନାଳ ସହରର ଉତ୍ତର ଦିଗରେ ପ୍ରାୟ ୩୨ କି.ମି. ଦୂରରେ ବ୍ରାହ୍ମଣୀ ନଦୀ କୂଳରେ ଅବସ୍ଥିତ ଏହି ପ୍ରାଚୀନ କରମୂଳ ନଗରୀରେ ପୂର୍ବରୁ ବହୁ ରାଜ ବଂଶ ରାଜୁତି କରୁଥିଲେ ହେଁ ହରି ବିଦ୍ୟାଧର ଅଭିଷେକ ସମୟକୁ ଏହି ରାଜଗାଦୀ ଶୂନ୍ୟ ହୋଇଯାଇଥିଲା । ଅଭିଷେକ ପରେ ହରିସିଂହ ବିଦ୍ୟାଧର ଅଶ୍ୱଖୋଲା ପର୍ବତସ୍ଥିତ ଗିରିଦୁର୍ଗ ସନ୍ନିକଟରେ ସିଦ୍ଧ ଗଣେଶ ଏବଂ ରାଜ ଉଆସର ପଶ୍ଚିମ ପାର୍ଶ୍ୱରେ ସିଦ୍ଧ ରାମଚଣ୍ଡୀଙ୍କ ମୂର୍ତ୍ତି ପ୍ରତିଷ୍ଠା କରାଇଥିଲେ । ପୂର୍ବରୁ ପ୍ରତାପରୁଦ୍ର ଦେବ ଏଠାରେ ଦଧିବାମନଙ୍କୁ ପ୍ରତିଷ୍ଠା କରାଇଥିଲେ । ପବିତ୍ର ଶିବରାତ୍ରିର ପୂଣ୍ୟ

ମୁହୂର୍ତ୍ତରେ ହରିସିଂହ ବିଦ୍ୟାଧର ରାଜ ଉଆସର ପୂର୍ବ ଦିଗରେ ବ୍ରାହ୍ମଣୀ ତଟରେ ସ୍ୱପ୍ନେଶ୍ୱର ଶିବଲିଙ୍ଗ ସ୍ଥାପନା ପୂର୍ବକ ଭବ୍ୟ ମନ୍ଦିର ନିର୍ମାଣ କରିଥିଲେ । ସଂପ୍ରତି ମନ୍ଦିର ଭାଙ୍ଗି ଯାଇଥିଲେ ହେଁ ବିଶାଳ ଶିବଲିଙ୍ଗ ଏଠାରେ ଆରାଧିତ । ସ୍ଥାନୀୟ ଲୋକେ ଏହି ପ୍ରାଚୀନ ଶିବଲିଙ୍ଗଙ୍କୁ ଦୌଡ଼େଶ୍ୱର ବୋଲି କହିଥାନ୍ତି । ହରିସିଂହ ପ୍ରାଚୀନ ଗିରିଦୁର୍ଗ ତଥା ପର୍ବତର ପାଦଦେଶରେ ଥିବା ରାଜ ଉଆସକୁ ପୁନଃନିର୍ମାଣ ପୂର୍ବକ ପରିଖା ବା ଜଳଖାଇ ନିର୍ମାଣ କରିଥିଲେ । ଏ ଅବଧି ପରୀଖାର କିୟଦଂଶ ଦୃଷ୍ଟିଗୋଚର ହୋଇଥାଏ । ସ୍ଥାନୀୟ ଅଧିବାସୀ ଦୀର୍ଘ ପାଞ୍ଚଶହ ବର୍ଷ ଧରି ଏହି ପରୀଖାକୁ ନାନାଦି ଆବର୍ଜନାରେ ପୂର୍ଣ୍ଣ କରୁଥିଲେ ହେଁ ଅଦ୍ୟାବଧି ସଂପୂର୍ଣ୍ଣ ପୋତି ପାରିନାହାନ୍ତି । ହରିସିଂହ ଯେଉଁ ସ୍ଥାନରେ ହସ୍ତୀଶାଳ ନିର୍ମାଣ କରିଥିଲେ ସେହି ସ୍ଥାନ ବର୍ତ୍ତମାନ ହାତୀବାରି ନାମରେ ପରିଚିତ । ଏତଦ୍‌ଭିନ୍ନ ପାଣପଦା, ପଠାଣପଦା ପ୍ରଭୃତି ଉଆସ ନିକଟବର୍ତ୍ତୀ ସ୍ଥାନ ପ୍ରାଚୀନ କରମୂଳ ନଗରୀର ବିଶାଳତାର ପରିଚୟ ପ୍ରଦାନ କରିଥାଏ । ବର୍ତ୍ତମାନ ଭିନ୍ନ ଭିନ୍ନ ରାଜସ୍ୱ ଗ୍ରାମ ରୂପେ ପରିଚିତ କରମୂଳ, ଆମ୍ୱପଡ଼ା, ମଝିପାଳ, ହାତୀବାରି, ଦୌଡ଼େଶ୍ୱର, ନଗୁଆଁ, ଦୃଣପୁର, ଗୋପାଳପୁର ପ୍ରଭୃତି ଗ୍ରାମ ପ୍ରାଚୀନ କରମୂଳ ନଗରୀର ଅନ୍ତର୍ଭୁକ୍ତ ଥିଲା । ଅଶ୍ୱଖୋଲା ପର୍ବତଶ୍ରେଣୀ ଓ ବ୍ରାହ୍ମଣୀ ନଦୀର ମଧ୍ୟ ଭାଗରେ ଅବସ୍ଥିତ ଏହି ବିସ୍ତୀର୍ଣ୍ଣ ଭୂଖଣ୍ଡରେ ହରି ସିଂହ ଆପଣାର ରାଜଧାନୀ ନିର୍ମାଣ କରିବା ସହିତ ଗିରିଦୁର୍ଗକୁ ମଧ୍ୟ ସୁଦୃଢ଼ କରିଥିଲେ । ପର୍ବତ ଓ ନଦୀ ଯୋଗୁଁ ନଗରୀ ମଧ୍ୟକୁ ବାହ୍ୟଶତ୍ରୁ ପ୍ରବେଶର ସୁଯୋଗ ନଥିଲା । ନଗରୀ ମଧ୍ୟରେ ଭିନ୍ନ ଭିନ୍ନ ଜାତି ବା ପାଟକଙ୍କ ସ୍ୱତନ୍ତ୍ର ବାସସ୍ଥଳୀ ରହିଥିଲା ଏବଂ କେନ୍ଦ୍ରସ୍ଥଳରେ ରାଜ ଉଆସ ଅବସ୍ଥିତ ଥିଲା । ନଗରୀର ପୂର୍ବ ଓ ପଶ୍ଚିମ ଦିଗରେ ସୁଗଭୀର ଜଳପୂର୍ଣ୍ଣ ପରୀଖା ଏବଂ ଉତ୍ତର ଦିଗରେ ବ୍ରାହ୍ମଣୀ ନଦୀ ତଥା ଦକ୍ଷିଣ ଦିଗରେ ଅଶ୍ୱଖୋଲା ପର୍ବତଶ୍ରେଣୀ ବିଦ୍ୟମାନ ଥିଲା । ଅଶ୍ୱଖୋଲା ପର୍ବତର ପାଦ ଦେଶରେ ହରିସିଂହ ବିଦ୍ୟାଧର ମନ୍ଦିର ନିର୍ମାଣ ପୂର୍ବକ ସୁଚିକ୍କଣ କୃଷ୍ଣଶିଳା ନିର୍ମିତ ସିଦ୍ଧଗଣେଶ ମୂର୍ତ୍ତି ପ୍ରତିଷ୍ଠା କରାଇଥିଲେ । ଗଣେଶଙ୍କର ପ୍ରାଚୀନ ମନ୍ଦିରର ନଷ୍ଟ ହୋଇଯାଇଛି ଏବଂ ସଂପ୍ରତି ବିଗ୍ରହ ଏକ ଖୋଲା ମଣ୍ଡପରେ ଆରାଧିତ । ସନ୍ନିକଟରେ ପ୍ରାଚୀନ ଗିରିଦୁର୍ଗର ଭଗ୍ନାବଶେଷ, ଧାନଘର, ହାତୀଶାଳ, ଅଶ୍ୱଶାଳ ଅଦ୍ୟାବଧି ବିଦ୍ୟମାନ । ଏହି ସ୍ଥାନରୁ କରମୂଳ ଠାରୁ ଏକ ଗିରିଖୋଲ ଦେଇ

ଯିବାକୁ ହୋଇଥାଏ । ପର୍ବତର ନିର୍ମଳ ନିର୍ଝରଣୀ ପ୍ରବାହିତ ହୋଇ ଖୋଲର ରାସ୍ତା ପାର୍ଶ୍ୱରେ ନଦୀ ପର୍ଯ୍ୟନ୍ତ ଧାବମାନ । ସେହି ଗିରିପଥରେ କିୟତ୍ ଦୂର ଗଲେ ଅନ୍ୟ ଏକ ଖୋଲ ରହିଅଛି । ଏହା ସିଂହରାୟ ଖୋଲ ବା ସିଂହାରୀ ଖୋଲ ନାମେ ସୁବିଦିତ । ସମଗ୍ର ପାର୍ବତ୍ୟଅଞ୍ଚଳରେ ଅଶୋକ ବୃକ୍ଷ ରହିଅଛି । ନିକଟସ୍ଥ ମଧୁବନ, ବଡ଼ ହୁଡ଼ି, ସାନ ହୁଡ଼ିର ଶୋଭା ମଧ୍ୟ ଆକର୍ଷଣୀୟ । ଗଣେଶ ଖୋଲା ଏକ ସୁରମ୍ୟ ପର୍ଯ୍ୟଟନ ସ୍ଥଳୀ ହେଲେ ହେଁ ଏପର୍ଯ୍ୟନ୍ତ ସେଠାକୁ ଯିବାକୁ ରାସ୍ତା ନାହିଁ । ଓଡ଼ିଶାର ଏହି ପ୍ରାକୃତିକ ପର୍ଯ୍ୟଟନ ସ୍ଥଳ ଓ ପ୍ରାଚୀନ ନଗରୀ ଲୋକଲୋଚନର ଅନ୍ତରାଳରେ ଅଛି । କଥିତ ଅଛି ଏଠାରେ ପୂଜିତ ଗଣେଶ ମୂର୍ତ୍ତି କାଞ୍ଚିରୁ ଆନୀତ । ହରିସିଂହ ବିଦ୍ୟାଧର ଏହି ବିଗ୍ରହଙ୍କର ସେବା ପୂଜା ନିମିତ୍ତ ନିକଟସ୍ଥ ମୁକୁନ୍ଦପୁର ଓ ଜଗାବେରଣା ଗ୍ରାମରେ ପ୍ରଚୁର ଭୂସମ୍ପତ୍ତି ଖଞ୍ଜା କରିଥିଲେ । ବର୍ତ୍ତମାନ ସମସ୍ତ ଭୂସମ୍ପତ୍ତି ଜବର ଦଖଲକାରୀଙ୍କ କବଳରେ ଏବଂ ଦେବୋତ୍ତର ବିଭାଗ ଦ୍ୱାରା ପ୍ରଦତ୍ତ ଯତ୍‌କିଞ୍ଚିତ ଭୋଗରେ ଗଣେଶଙ୍କ ସେବା ପୂଜା ଚାଲିଛି । ଜନୈକ ରାମାନନ୍ଦୀ ସଂପ୍ରଦାୟର ସାଧୁ ଏଠାରେ ମଠ ନିର୍ମାଣ ପୂର୍ବକ ଗଣେଶଙ୍କର ନିତ୍ୟ ନୈମିତ୍ତିକ ପୂଜା ସଂପନ୍ନ କରୁଅଛନ୍ତି ।

ହରିସିଂହ ବିଦ୍ୟାଧର କରମୂଳ ନଗରୀରେ ରାଜା ହେବାପରେ ତାଙ୍କ ଭାଇ ବିରାଦର ସାମନ୍ତମାନଙ୍କୁ ନିକଟସ୍ଥ ଦଲାର ଗ୍ରାମରେ ଅବସ୍ଥାପିତ କରାଇଲେ । ସେ ମଧ୍ୟ ପଶ୍ଚିମ ଦିଗସ୍ଥିତ ହଦଗଡ଼ ଦୁର୍ଗର ପୁନଃନିର୍ମାଣ ପୂର୍ବକ ସେଠାରେ ଆପଣାର ଆତ୍ମୀୟ ସ୍ୱଜନଙ୍କୁ ରଖାଇଲେ । ଦଲାର ଓ ହଦଗଡ଼ର ରାଜା ବିରାଦର ସାମନ୍ତ ନାମରେ ପରିଚିତ ହେଲେ । ଫଳରେ ପୂର୍ବରେ ଦଲାରଠାରୁ ପଶ୍ଚିମରେ ହଦଗଡ଼ ପର୍ଯ୍ୟଟନ ସୁବିସ୍ତୃତ ବ୍ରାହ୍ମଣୀ ଅବବାହିକାରେ ହରିସିଂହ ବିଦ୍ୟାଧରଙ୍କ ଶାସନ ବଳବତ୍ତର ରହିଲା । ସେ ବ୍ରାହ୍ମଣୀ ନଦୀର ଉତ୍ତର ପାର୍ଶ୍ୱରେ ମାର୍ଥାପୁର ଶାସନ ନିକଟରେ ଗଡ଼ଚଣ୍ଡୀ ମୂର୍ତ୍ତି, ପଶ୍ଚିମ ଦିଗରେ ହିଙ୍ଗୁଳା ଓ ପୂର୍ବଦିଗରେ ଗ୍ରାମଦେବତୀ ପ୍ରତିଷ୍ଠା ପୂର୍ବକ ଗଡ଼ର ସୀମା ନିର୍ଦ୍ଧାରଣ କରିଥିଲେ । ଆପଣାର ବାହୁବଳରେ ସେ ପ୍ରାଚୀନ କରମୂଳ ନଗରୀରୁ ପୁନଃନିର୍ମାଣ କରିବା ସହିତ ସାମରିକ ବାହିନୀରୁ ସୁଦୃଢ଼ କରିଥିଲେ । ତାଙ୍କର ସୁଶିକ୍ଷିତ ତଥା ରାଣକୌଶଳଜ୍ଞାତ ବିଶାଳ ପଦାତିକ ବାହିନୀ ତଥା ଯୁଦ୍ଧାଶ୍ୱ ଓ ଯୁଦ୍ଧ ହସ୍ତୀ ମହଯୁଦ ଥିଲା । ତାଙ୍କ ରାଜସଭାରେ ଜ୍ଞାନୀ ଗୁଣୀ ଜନଙ୍କର ଆଦର ରହିଥିଲା । ପ୍ରତ୍ୟହ

ରାଜସଭାରେ ସାଧୁ, ସନ୍ଥ, ବ୍ରାହ୍ମଣ ଓ ପଣ୍ଡିତବର୍ଗଙ୍କ ଦ୍ୱାରା ଶାସ୍ତ୍ରାଲୋଚନା ହେଉଥିଲା । ରାଜସ୍ୱ ପ୍ରଶାସନକୁ ସୁଶୃଙ୍ଖଳିତ କରିବା ନିମିତ୍ତ ହରିବିଦ୍ୟାଧର ତତ୍ପର ଥିଲେ । ରାଜସ୍ୱ ଆଦାୟ କରିବା ନିମିତ୍ତ ସେ ପ୍ରତ୍ୟେକ ଗ୍ରାମରେ ଜଣେ ଜଣେ ସର୍ବରାକାର ନିଯୁକ୍ତି ଦେଇଥିଲେ । ମୋଟ ଉପରେ କହିଲେ ୧୫୩୧ ଖ୍ରୀଷ୍ଟାବ୍ଦରୁ ହରିବିଦ୍ୟାଧର କରମୂଳ ରାଜ୍ୟରେ ସୁଶାସନ ପ୍ରତିଷ୍ଠା କରିଥିଲେ ।

ହରିସିଂହ ବିଦ୍ୟାଧର ପରମବୈଷ୍ଣବ ଥିଲେ । ପୁରୀରେ ନିବାସ କାଳରେ ସେ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କ ଦର୍ଶନ ଓ ସତ୍‌ସଙ୍ଗ ଲାଭ କରିଥିଲେ । ସେହି ସମୟରେ ଗଜପତି ପ୍ରତାପରୁଦ୍ର ଦେବଙ୍କ ସମେତ ବହୁ ରାଜ ବିରାଦର ଓ କର୍ମଚାରୀ ବୈଷ୍ଣବ ମତବାଦରେ ଉଦ୍‌ବୃଦ୍ଧ ହୋଇ ଦୀକ୍ଷା ଗ୍ରହଣ କରିଥିଲେ । ହରିବିଦ୍ୟାଧର ବୈଷ୍ଣବାଚାର୍ଯ୍ୟ ବକ୍ରେଶ୍ୱର ପଣ୍ଡିତଙ୍କ ଠାରୁ ବୈଷ୍ଣବ ଦୀକ୍ଷା ଗ୍ରହଣ କରିଥିଲେ । ସେ କରମୂଳ ଆସିବା ସମୟରେ ସ୍ୱୀୟଗୁରୁ ବକ୍ରେଶ୍ୱର ପଣ୍ଡିତଙ୍କୁ ସାଥୀରେ ଆଣିଥିଲେ । ପ୍ରାଥମିକ ଅବସ୍ଥାରେ ପଣ୍ଡିତ ମହୋଦୟ କରମୂଳ ସନ୍ନିକଟ ପ୍ରାଚୀନ ମାର୍ଥାପୁର ଶାସନରେ ନିବାସ କରିଥିଲେ ହେଁ ପରବର୍ତ୍ତୀ କାଳରେ ତଦୀୟ ଶିଷ୍ୟ କନ୍ତିଓଠାରେ ମଠ ସ୍ଥାପନା କରିଥିଲେ । ଏହି କାନ୍ତିଓ ମଠର ବୈଷ୍ଣବ ଗୋସ୍ୱାମୀ ବୃନ୍ଦ ପରମ୍ପରା କ୍ରମେ ହରିବିଦ୍ୟାଧରଙ୍କ ବଂଶଧରଙ୍କୁ ଦୀକ୍ଷା ପ୍ରଦାନ ପୂର୍ବକ ରାଜଗୁରୁ ଆସନ ଅଳଙ୍କୃତ କରିଥିଲେ । ସୂଚନାଯୋଗ୍ୟ ଯେ ସ୍ୱୀୟ ଗୁରୁ ବକ୍ରେଶ୍ୱର ପଣ୍ଡିତଙ୍କ ଉପଦେଶରେ ହରିବିଦ୍ୟାଧର ଶ୍ରୀ ବୃନ୍ଦାବନଚନ୍ଦ୍ରଙ୍କୁ ଆପଣାର ଇଷ୍ଟ ରୂପେ ଆରାଧନା କରିଥିଲେ । ଅଦ୍ୟାବଧି ବୃନ୍ଦାବନ ଚନ୍ଦ୍ର ମଧ ତାଙ୍କ ରାଜପରିବାରର ଇଷ୍ଟ । ହରିବିଦ୍ୟାଧର କରମୂଳରେ ଶ୍ରୀବୃନ୍ଦାବନ ଚନ୍ଦ୍ରଙ୍କର ଯେଉଁ ବିଗ୍ରହ ପୂଜା କରୁଥିଲେ, ସଂପ୍ରତି ସେହି ଠାକୁର ଢେଙ୍କାନାଳ ରାଜ ପ୍ରାସଦରେ ଏକ ସ୍ୱତନ୍ତ୍ର ମନ୍ଦିରରେ ଇଷ୍ଟ ରୂପେ ଆରାଧିତ ।

କରମୂଳରେ ପୂର୍ବରୁ ବହୁ ରାଜବଂଶ ଶାସନ କରିଥିଲେ ହେଁ ୧୫୩୧ରେ ହରିବିଦ୍ୟାଧର ରାଜତ୍ୱ କଳାପରେ ଏହି ପ୍ରାଚୀନ ନଗରୀ ତଥା ସମଗ୍ର ବ୍ରାହ୍ମଣୀ ଅବବାହିକାରେ ବୈଷ୍ଣବଧର୍ମର ଧାରା ପ୍ରବାହିତ ହୋଇଥିଲା । ଏହାର ପ୍ରଭାବରେ ଦଲାର, ଗୋରଡ଼ିଆ ପ୍ରଭୃତି ମୁଖ୍ୟ ଗ୍ରାମମାନଙ୍କରେ ଦଧିବାମନ ମୂର୍ତ୍ତି ପୂଜାପାଇଁ ଜଗନ୍ନାଥ ସଂସ୍କୃତିର ବ୍ୟାପକ ପ୍ରସାର ଘଟିଲା । ଗ୍ରାମେ ଗ୍ରାମେ ଦୋଳଯାତ୍ରା, ଶ୍ରୀହରି ଜନ୍ମାଷ୍ଟମୀ ପ୍ରଭୃତି ବୈଷ୍ଣବ ପର୍ବ ପାଳିତ ହେଲା । ପୂର୍ବରୁ ଏହି ଭୂଖଣ୍ଡରେ

ଶୈବ ଓ ଶାକ୍ତ ମତର ପ୍ରାବଲ୍ୟ ରହିଥିଲା । ହରିବିଦ୍ୟାଧରଙ୍କ ପ୍ରଚେଷ୍ଟାରେ ଶାକ୍ତ ଓ ଶୈବ ମତ ସହିତ ଜଗନ୍ନାଥ ମତର ମିଳନ ଘଟି ଏକ ସମନ୍ୱୟ ମତର ପ୍ରସାର ଘଟିଲା । ପୁରୀ, ବୃନ୍ଦାବନ, ଦ୍ୱାରକା, ନଦିଆ ନବ ଦ୍ୱୀପ ପ୍ରଭୃତି ଧାମରୁ ସାଧୁ ସନ୍ଥ ବୈଷ୍ଣବ କରମୂଳରେ ପଦାର୍ପଣ ପୂର୍ବକ ବୈଷ୍ଣବ ମତ ପ୍ରଚାର କଲେ । ଏତଦ୍‌ଭିନ୍ନ ହରିବିଦ୍ୟାଧର ମଧ୍ୟ ବୈଦିକ ଧର୍ମର ପୃଷ୍ଠପୋଷକ ଥିଲେ । ସେ ପୁରୀ ଓ ଯାଜପୁର ଅଞ୍ଚଳରୁ ବହୁ ବ୍ରାହ୍ମଣଙ୍କୁ କରମୂଳ ରାଜ୍ୟରେ ନିଷ୍କର ଜମି ପ୍ରଦାନ କରି ରଖାଇ ଥିଲେ । କରମୂଳ ନଗରୀର ଅପରପାର୍ଶ୍ୱରେ ଓ ମାର୍ଥାପୁର ଶାସନର ପୂର୍ବରେ ସେ ଆପଣାର ଜ୍ୟେଷ୍ଠଭ୍ରାତା ଗୋବିନ୍ଦ ବିଦ୍ୟାଧରଙ୍କ ନାମରେ ଏକ ବ୍ରାହ୍ମଣ ଶାସନ ବସାଇଥିଲେ । ନିଜ ନାମରେ ସେ କରମୂଳର ଦକ୍ଷିଣରେ ସିଂହ ଓ ରାୟ ନାମରେ ଦୁଇଟି ଗ୍ରାମ ବସାଇ ବୈଷ୍ଣବମାନଙ୍କୁ ଦାନ କରିଥିଲେ । ଏହି ଦୁଇ ଗ୍ରାମ ବର୍ତ୍ତମାନ ସିଂହା ଓ ରାୟତଳା ନାମରେ ସୁବିଦିତ । ସେ ପୁରୀରୁ ଲୋକନାଥଚଇନୀଙ୍କୁ ରାଜପୁରୋଧା ଭାବରେ କରମୂଳକୁ ଆଣିଥିଲେ ମଧ୍ୟ ଏହି ଭୂଖଣ୍ଡରେ ଥିବା ମାର୍ଥାପୁର, ଗୋବିନ୍ଦ ବିଦ୍ୟାଧରପୁର, ପୁରୁଷୋତ୍ତମ ପୁର ଓ ବିଷ୍ଣୁପୁର ଶାସନରୁ ଜଣେ ଲେଖାଏଁ ରାଜପୁରୋଧା ବରଣ କରିଥିଲେ । ଏରୂପ ତାଙ୍କର ପଞ୍ଚ ପୁରୋଧା ଧର୍ମ ଉପଦେଷ୍ଟା ରହିଥିଲେ । ରାଜା ପ୍ରତ୍ୟହ ଦେବ ଦର୍ଶନ ଓ ବ୍ରାହ୍ମଣ ଆଶୀର୍ବାଦ ପରେ ରାଜକାର୍ଯ୍ୟରେ ମନୋନିବେଶ କରୁଥିଲେ । ସମଗ୍ର କରମୂଳ ରାଜ୍ୟରେ ବୈଦିକ ଧର୍ମ ସହିତ ଶୈବ, ବୈଷ୍ଣବ ଓ ଶାକ୍ତମତର ମହାମିଳନ ଘଟିଥିଲା ।

ହରିସିଂହ ବିଦ୍ୟାଧର ଜଣେ ଅସାଧାରଣ ବୀର, ପରମ ବୈଷ୍ଣବ ଓ ସୁଶାସକ ଥିଲେ। ଆଦିକନ୍ଦ ଅବଧାନଙ୍କ ବିରଚିତ ''ଭଞ୍ଜବୋଲି''ରୁ ଜଣାଯାଏ ପୁରୀରୁ ଆସିଥିବା ଲୋକନାଥ ଚଇନୀ ଓ ମୁରାରୀ ପଟ୍ଟନାୟକ ହରିବିଦ୍ୟାଧରଙ୍କ ମନ୍ତ୍ରୀ ଥିଲେ ।

''ପଟ୍ଟନାୟକ ମୁରାରୀ, ଚଇନୀ ଲୋକନାଥ ଦ୍ୱିଜ ହରି
ମନ୍ତ୍ରୀ ପଦରେ ଆଣିଲେ ବରି ।''

କରମୂଳ ଅଞ୍ଚଳରେ ଗୋଟିଏ ପ୍ରାଚୀନ ବୋଲି ରହିଛି
ହରିଆ ଲୋକା ମୁରା, ପୃଥ୍ୱୀ କଲେ ତୋରା ।''

ଏଥିରୁ ପ୍ରମାଣିତ ହେଉଛି, ଦୀର୍ଘକାଳ ଅରାଜକ ରହିଥିବା କରମୂଳରେ ହରି ବିଦ୍ୟାଧର ଆପଣାର ମନ୍ତ୍ରୀ ଲୋକନାଥ ଓ ମୁରାରୀଙ୍କ ସହାୟତାରେ ସୁଶାସନ ପ୍ରତିଷ୍ଠା କରିଥିଲେ । ତାଙ୍କର ରାଜସନ୍ତକ ଥିଲା ମୀନ ଲାଞ୍ଛିତ କେତନ, ପଗଡ଼ି ଓ ବିଜୟ କର୍ଣ୍ଣକଟାରି । ଏହା ଗଜପତିଙ୍କ ପ୍ରଦତ୍ତ ଏ ଅବଧି ଢେଙ୍କାନାଳ ରାଜବଂଶର ଏହି ରାଜ ସନ୍ତକ ରହିଅଛି । ଗଜପତି ପ୍ରତାପରୁଦ୍ର ଦେବ ଆପଣାର ପ୍ରିୟ ସଖା ଯଶସ୍ୱୀ ବୀର ହରିସିଂହଙ୍କୁ ଯେତେବେଳେ ସାତକୋଶ ପରିମିତ କରମୂଳ ପାଟଣା ରାଜ୍ୟ ପ୍ରଦାନ କଲେ ସେତେବେଳେ କହିଥିଲେ ‘‘ତୁମ୍ଭର ଦକ୍ଷିଣାତ୍ୟ ବିଜୟ ତଥା ସେଠାରୁ ଅସରନ୍ତି ଧନ ରତ୍ନ ସହିତ ଆଣିଥିବା ମୀନ ଲାଞ୍ଛିତ କେତନ, ପଗଡ଼ି ଓ ବିଜୟ କର୍ଣ୍ଣକଟାରି ସହିତ ମୁଁ ତୁମ୍ଭଙ୍କୁ ଝାଡ଼ଖଣ୍ଡର କରମୂଳ ପାଟଣା ରାଜ୍ୟ ପ୍ରଦାନ କରୁଅଛି । ତୁମ୍ଭେ ସକଳ ବିଜୟଲବ୍ଧ ଧନ ସହ ସେଠାରେ ଯାଇ ରାଜା ହୁଅ ଏବଂ ଏହି ରାଜସନ୍ତକ ବହନ କରି ତଥା ପାର୍ଶ୍ୱବର୍ତ୍ତୀ ଖଣ୍ଡାଧିପଙ୍କୁ ସ୍ୱବଶରେ ଆଣି ବିଶାଳ ସାମ୍ରାଜ୍ୟର ଅଧୀଶ୍ୱର ହୁଅ ? ଯଶସ୍ୱୀବୀର ତଥା ପରମ ଭକ୍ତ ହରି ଏହାକୁ ଗଜପତିଙ୍କ ମାଧ୍ୟମରେ ଶ୍ରୀ ଜଗନ୍ନାଥଙ୍କର ଆଶୀର୍ବାଦ ବୋଲି ମଣିଥିଲେ । ଏ ସଂପର୍କରେ ପ୍ରାଚୀନ ଗ୍ରନ୍ଥ ‘‘ଭଞ୍ଜବୋଲି’’ରେ ଉଲ୍ଲେଖ ରହିଛି ।

‘‘ଧନ୍ୟ ତୁମ୍ଭର ସାହସ, ଶତୃ ରାଜାଙ୍କୁ ଯାକଲ ବିନାଶ
ତୁମ୍ଭ ଲାଗି ରହିଲା ମୋ ଯଶ ।
କରୁଛ ଏହି ସମ୍ମାନ, ରଖିଥିବ ସଦା ଏ ବନ୍ଧୁପଣ
ରାଜ ପଣକୁ ଏକା ଭାଜନ ।
ଝାଡ଼ଖଣ୍ଡ ମଧ୍ୟେ ଜଣା, କରମୂଳ ବୋଲି ଅଛି ପଟଣା
ପରିମାଣ ସାତକୋଶ ସିନା ।
କଲୁଁ ତୁମ୍ଭଙ୍କୁ ଏ ଦାନ, ତତ୍‌ପରେ ଗଡ଼ କର ସ୍ଥାପନ
ଏହା ତୁମ୍ଭର ସମ୍ମାନ ଚିହ୍ନ ।
ପରେ ଏ ଝାଡ଼ଖଣ୍ଡରେ, ଜୟ ଜୟ ଶବ୍ଦ ଶୁଣାଅ ବାରେ
କୀର୍ତ୍ତିରଖ ଏ ଓଡ଼ରାଷ୍ଟ୍ରରେ ।
ସଙ୍କେତ ନିଅ ତୁମ୍ଭରି ମୀନକେତନ ପଗଡ଼ି କଟାରି
ତୁମ୍ଭ ଅର୍ଜନ ହେଉ ତୁମ୍ଭରି ।’’

ଅନୁମିତ ହୁଏ, କପିଳାସ ଆଗମନ କାଳରେ କରମୂଳ ରାଜ୍ୟର ତଥା ଏହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ରାଜନୈତିକ ଅସ୍ଥିରତା ଲକ୍ଷ୍ୟ କରି ଗଜପତି ପ୍ରତାପରୁଦ୍ର ଦେବ ଆପଣାର ପ୍ରିୟ ସେନାପତି ହରି ବିଦ୍ୟାଧରଙ୍କୁ ଉପଯୁକ୍ତ ବିବେଚନା କରି ଓଡ଼ିଶାର ମଧ୍ୟାଞ୍ଚଳରେ ଅବସ୍ଥିତ ଏହି ରାଜ୍ୟ ପ୍ରଦାନ କରିଥିଲେ । ସେତେବେଳକୁ ପ୍ରତାପ ରୁଦ୍ରଦେବଙ୍କ ବୃଦ୍ଧାବସ୍ଥା ତଥା ଓଡ଼ିଶାରେ ରାଜନୈତିକ ଅସ୍ଥିରତାର ସୂତ୍ରପାତ ହେଲାଣି । ଗୋବିନ୍ଦ ବିଦ୍ୟାଧର ଓଡ଼ିଶାର ଉତ୍ତରରେ ମୁସଲମାନମାନଙ୍କ ସହିତ ସଂଘର୍ଷରେ ବ୍ୟାପୃତ ଏବଂ ତଦ୍ଧୀୟଭ୍ରାତ ଦନାଇ ବିଦ୍ୟାଧର ଓଡ଼ିଶାର ଦକ୍ଷିଣରେ ମୁସଲମାନମାନଙ୍କୁ ପ୍ରତିରୋଧ କରୁଛନ୍ତି । ଏପରି ଦୁଃସ୍ଥିତିରେ ଗଜପତି ସମୟୋଚିତ ପଦକ୍ଷେପ ନେଇ ହରିବିଦ୍ୟାଧରଙ୍କୁ କରମୂଳ ରାଜ୍ୟ ପ୍ରଦାନ କଲେ । ଶ୍ରୀଜଗନ୍ନାଥଙ୍କ କରୁଣାରୁ ସୌଭାଗ୍ୟବାନ ହରି ସ୍ୱଳ୍ପକାଳ ମଧ୍ୟରେ ଆପଣାର ସୁଦକ୍ଷ ମନ୍ତ୍ରୀ ଲୋକନାଥ ଓ ମୁରାରୀଙ୍କ ସାହାଯ୍ୟରେ କରମୂଳ ରାଜଗାଦୀକୁ ସୁଦୃଢ଼ କରିବା ସହିତ ପ୍ରାଚୀନ କରମୂଳ ମଣ୍ଡଳର ପୁନର୍ଗଠନ କରିଥିଲେ ।



# କରମୂଳ ରାଜ୍ୟ ବିସ୍ତାର

ଓଡ଼ିଶାର ମଣ୍ଡଳ ରାଜ୍ୟ ଭାବରେ ଝାଡ଼ଖଣ୍ଡ ମୁଳକ ସ୍ଥିତ କରମୂଳ ପାଟଣା ଥିଲା ଅନ୍ୟତମ । ଭୌମକର ରାଜତ୍ୱ ସମୟରୁ ଏହା ସମୃଦ୍ଧ ରାଜ୍ୟ ରୂପେ ପରିଗଣିତ ହେଲେ ହେଁ ସୋମ ଓ ଗଙ୍ଗ ବଂଶ ରାଜତ୍ୱରେ ସ୍ୱପ୍ରତିଷ୍ଠା ହରାଇ ଥିଲା । ସୂର୍ଯ୍ୟବଂଶ ରାଜତ୍ୱରେ ଗଜପତି ପ୍ରତାପରୁଦ୍ର ଦେବ ଏହି ପ୍ରାଚୀନ ଭୂଖଣ୍ଡର ଦୂରାବସ୍ଥା ଲକ୍ଷ୍ୟ କରି ଆପଣାର ପ୍ରିୟ ସେନାପତି ହରିସିଂହ ବିଦ୍ୟାଧରଙ୍କୁ ଏଠାରେ ରାଜା କରାଇଥିଲେ । ହରିସିଂହ ବିଦ୍ୟାଧର ସ୍ୱଳ୍ପ ସୈନ୍ୟ ଓ ଆପଣାର ପୁରୋଧା ଲୋକନାଥ ଚଇନୀ ତଥା ସୁଦକ୍ଷ ମନ୍ତ୍ରୀ ମୁରାରୀ ପଟ୍ଟନାୟକଙ୍କୁ ସାଥୀରେ ଧରି ୧୫୩୧ ଖ୍ରୀଷ୍ଟାବ୍ଦରେ କରମୂଳ ପାଟଣା ରାଜଗାଦିରେ ଅଭିଷିକ୍ତ ହେଲେ। ତାଙ୍କ ଅଭିଷେକର ଦୁଇବର୍ଷ ପରେ ଗଜପତି ପ୍ରତାପରୁଦ୍ର ଦେବଙ୍କ ବିୟୋଗ ଘଟିଲା । ତାଙ୍କ ପରେ ଓଡ଼ିଶା ରାଜଗାଦୀକୁ କେନ୍ଦ୍ରକରି ନାନାଦି ସଂଘର୍ଷର ସୂତ୍ରପାତ ହୋଇଥିଲା । ପରିଶେଷରେ ୧୫୩୪ ଖ୍ରୀଷ୍ଟାବ୍ଦରେ ପ୍ରତାପରୁଦ୍ର ଦେବଙ୍କ ମନ୍ତ୍ରୀ ଭୋଇ ବଂଶୀୟ ଗୋବିନ୍ଦ ବିଦ୍ୟାଧର ଓଡ଼ିଶାର ରାଜା ହେଲେ । ସେ ହରି ବିଦ୍ୟାଧରଙ୍କ ଜ୍ୟେଷ୍ଠଭ୍ରାତା ଥିଲେ ବୋଲି ପୂର୍ବରୁ ଆଲୋଚନା କରାଯାଇଛି । ଗୋବିନ୍ଦ ବିଦ୍ୟାଧର ଓଡ଼ିଶାର ରାଜା ହେବାପରେ ହରି ବିଦ୍ୟାଧରଙ୍କ କ୍ଷମତା ଓ ପ୍ରତିପତ୍ତି ବୃଦ୍ଧି ପାଇଲା । ଇତି ମଧ୍ୟରେ ସେ ନିଜର ସୈନ୍ୟବାହିନୀକୁ ବିଶାଳ ଓ ସୁଶିକ୍ଷିତ କରିପାରିଥିଲେ । ସେତେବେଳେ ଗୋବିନ୍ଦ ବିଦ୍ୟାଧରଙ୍କ ରାଜଧାନୀ ଥିଲା ବାରବାଟୀ କଟକ । ତେଣୁ ଆବଶ୍ୟକ ସ୍ଥଳେ ହରିବିଦ୍ୟାଧର ବଡ଼ଭାଇଙ୍କ ଠାରୁ ସକଳ ସାହାଯ୍ୟ ପାଇ ପାରୁଥିଲେ । ଫଳରେ ସେ କରମୂଳ ରାଜ୍ୟର ପୁନର୍ଗଠନ ଉଦ୍ୟମ ଆରମ୍ଭ କଲେ ।

ଗଙ୍ଗ ବଂଶ ରାଜତ୍ୱରୁ କରମୂଳ ରାଜଗାଦୀ ଦୁର୍ବଳ ହୋଇ ସମଗ୍ର ରାଜ୍ୟଟି ଖଣ୍ଡ ବିଖଣ୍ଡିତ ହୋଇଯାଇଥିଲା । ହରି ବିଦ୍ୟାଧରଙ୍କ ରାଜତ୍ୱ ସମୟକୁ କରମୂଳ ରାଜ୍ୟର ଉତ୍ତରାଞ୍ଚଳ ସୁକିନ୍ଦା ରାଜ୍ୟାଧୀନ, ଦକ୍ଷିଣାଞ୍ଚଳରେ ବଣିଆପଡ଼ା ନାମକ କ୍ଷୁଦ୍ର ରାଜ୍ୟ ପ୍ରତିଷ୍ଠା, ପୂର୍ବାଞ୍ଚଳରେ ନୂଆଗଡ଼ ନାମକ ରାଜ୍ୟ ସ୍ଥାପନ ଓ ପଶ୍ଚିମାଞ୍ଚଳରେ କେତେକ ଭୂମ୍ୟାଧିକାରୀ ଆପଣାକୁ ସ୍ୱାଧୀନ ଘୋଷଣା କରି

ସାରିଥିଲେ । ହରି ବିଦ୍ୟାଧର ପ୍ରଥମେ ସେହି କ୍ଷୁଦ୍ର କ୍ଷୁଦ୍ର ଭୂଖଣ୍ଡକୁ କରମୂଳ ରାଜ୍ୟ ଅନ୍ତର୍ଭୁକ୍ତ କରିବାକୁ ମନବଳାଇଲେ । ସେ ପ୍ରଥମେ ନୂଆଗଡ଼ ସାମନ୍ତଙ୍କୁ ଅଧୀନତା ସ୍ୱୀକାର କରିବା ନିମିତ୍ତ ବାର୍ତ୍ତା ପ୍ରେରଣ କଲେ । କିନ୍ତୁ ନୂଆଗଡ଼ ସାମନ୍ତ ଏଥିରେ ଅସମ୍ମତ ହେବାରୁ ଉଭୟଙ୍କ ମଧ୍ୟରେ ଯୁଦ୍ଧ ଅନୁଷ୍ଠିତ ହେଲା । ନୂଆଗଡ଼ ସାମନ୍ତ କରମୂଳ ନଗରୀର ଦକ୍ଷିଣପାର୍ଶ୍ୱରେ ଥିବା ମଧୁଦନ ପର୍ବତର ପୂର୍ବାଞ୍ଚଳ ଗ୍ରାମ ସମୂହକୁ ଏକତ୍ର କରି ତାହାର ଅଧିପତି ବୋଲାଇ ଥିଲେ । ହରି ବିଦ୍ୟାଧର ସସୈନ୍ୟ ପୂର୍ବାଞ୍ଚଳକୁ ଅଗ୍ରସର ହୋଇ ମନ୍ଦାର ଗ୍ରାମଠାରେ ନୂଆଗଡ଼ ସାମନ୍ତଙ୍କ ସୈନ୍ୟଙ୍କ ସମ୍ମୁଖୀନ ହେଲେ । ସେହି ସ୍ଥାନରେ ଉଭୟ ପକ୍ଷର ତିନିଦିନ କାଳ ଘୋର ଯୁଦ୍ଧ ହେଲା । ଯୁଦ୍ଧରେ ନୂଆଗଡ଼ ସାମନ୍ତ ପରାସ୍ତ ହୋଇ ହରିବିଦ୍ୟାଧରଙ୍କ ଅଧୀନତା ସ୍ୱୀକାର କଲେ । ବିଜୟର ସ୍ମାରକ ସ୍ୱରୂପ ହରିବିଦ୍ୟାଧର ଯୁଦ୍ଧ ସ୍ଥଳୀରେ ରାୟପୁର ନାମକ ବ୍ରାହ୍ମଣଶାସନ ବସାଇଥିଲେ । ନୂଆଗଡ଼ ସାମନ୍ତ ଅଧୀନତା ସ୍ୱୀକାର କରିବାକୁ ପ୍ରଥମେ ଅମଙ୍ଗ ହୋଇଥିବାରୁ ହରିବିଦ୍ୟାଧର ନୂଆଗଡ଼ ରାଜଧାନୀରେ ଗୋଟିଏ ନୂତନ ଦୁର୍ଗ ନିର୍ମାଣ ପୂର୍ବକ ସ୍ୱସୈନ୍ୟ ମୁତୟନ କରିଥିଲେ ଏବଂ ସେହି ଦୁର୍ଗର ନାମ "ଅମାଙ୍ଗ" ରଖିଥିଲେ । ସଂପ୍ରତି ତାହା ପୁରଣା ଅମାଙ୍ଗ ନାମରେ ପରିଚିତ । ଏତଦ୍‌ଭିନ୍ନ କରମୂଳ ଓ ନୂଆଗଡ଼ର ମଧ୍ୟସ୍ଥଳରେ ଦଲାର ଗ୍ରାମଠାରେ ହରିସିଂହ ବିଦ୍ୟାଧର ଆପଣା ଭାଇବିରାଦରଙ୍କ ସହିତ କେତେକ ସମରନିପୁଣ ଯୋଦ୍ଧାଙ୍କୁ ଅବସ୍ଥାନ କରାଇଲେ ।

ନୂଆଗଡ଼ ସାମନ୍ତଙ୍କ ସଦୃଶ କରମୂଳ ନଗରୀର ପଶ୍ଚିମ ଦିଗସ୍ଥ ସାମନ୍ତ ଯୋରନ୍ଦା ସନ୍ନିକଟ ଆତିଣ୍ଡା ଗ୍ରାମଠାରେ ଗୋଟିଏ ଚାଳଘର ଉଆସ ନିର୍ମାଣ ପୂର୍ବକ ପ୍ରାୟ ଚାଳିଶଗୋଟି ଗ୍ରାମର ଜମିଦାର ବୋଲାଉଥିଲେ । ହରିସିଂହ ବିଦ୍ୟାଧର ୧୫୩୭ ଖ୍ରୀଷ୍ଟାବ୍ଦରେ ଅବିଳମ୍ବେ ଆତିଣ୍ଡା ସାମନ୍ତଙ୍କ ଉଆସ ଅବରୋଧ କରି ତାଙ୍କୁ ବନ୍ଦୀ କଲେ । ଫଳରେ ଏହି ଭୂଖଣ୍ଡ କରମୂଳ ରାଜ୍ୟାଧୀନ ହେଲା । ଏହି ଭୂଖଣ୍ଡରୁ ତଣ୍ଡ (ରାଜସ୍ୱ) ଆୟ ହେଉଥିବାରୁ କରମୂଳ ଅଧିପତି ତାହାର ନାମ ଆୟତଣ୍ଡା ବା ଆତିଣ୍ଡା ରଖିଲେ । ବର୍ତ୍ତମାନ ମଧ୍ୟ ଆତିଣ୍ଡାଠାରେ ପୂର୍ବତନ ସାମନ୍ତଙ୍କ ଦୁର୍ଗର ଭଗ୍ନାବଶେଷ ଦୃଷ୍ଟିଗୋଚର ହୋଇଥାଏ । ପରିଣାମ ସ୍ୱରୂପ, ବ୍ରାହ୍ମଣୀ ଓ ଡଉଁରୀ ନଦୀର ଅବବାହିକା ସ୍ଥିତ ଏକ ବିସ୍ତୀର୍ଣ୍ଣ ଶସ୍ୟଶ୍ୟାମଳା କ୍ଷେତ୍ର କରମୂଳ ରାଜ୍ୟାନ୍ତର୍ଗତ ହୋଇପାରିଥିଲା । ସୂଚନାଯୋଗ୍ୟ ଯେ, ଏହି ଭୂଖଣ୍ଡ ପୂର୍ବରୁ କରମୂଳ ରାଜ୍ୟଭୁକ୍ତ ଥିଲା ଏବଂ କିଛିକାଳ ନିମିତ୍ତ ଆତିଣ୍ଡା ସାମନ୍ତ

ତହିଁରେ ଭୂମ୍ୟାଧିକାରୀ ବୋଲାଇଥିଲେ । ପରବର୍ତ୍ତୀ କାଳରେ ଏହି ଭୂଖଣ୍ଡରେ ମହିମା ଧର୍ମର ଆଦିପୀଠ ମହିମାଗାଦୀ ଯୋରନ୍ଦା ଗ୍ରାମଠାରେ ଗଢ଼ି ଉଠିଛି ।

ଆଡିଣ୍ଡାର ପଶ୍ଚିମ ପାର୍ଶ୍ୱସ୍ଥ ଭୂଖଣ୍ଡରେ ପ୍ରାଚୀନ ନାଗନା ନଗରୀ ଅବସ୍ଥିତ । ଏହା ନାଗ ବଂଶୀୟ ରାଜନ୍ୟବୃନ୍ଦଙ୍କ ରାଜଧାନୀ ଥିଲା । ଗଙ୍ଗ ବଂଶୀ ଅନଙ୍ଗଭୀମ ଦେବ ସ୍ୱରାଜତ୍ୱରେ ନାଗନାର ଶିବ ମନ୍ଦିର ନିର୍ମାଣ କରିବା ସହିତ ନିଜ ନାମରେ ଭୀମପୁର (ଭୂଇଁପୁର) ଗ୍ରାମ ବସାଇଥିଲେ । ତଦୀୟ ପୁତ୍ର ଲାଙ୍ଗୁଳା ନରସିଂହଦେବ କପିଳାସ ମନ୍ଦିର ନିର୍ମାଣ କରି ସେବାପୂଜା ନିମିତ୍ତ ନାଗନା ଓ ଭୀମପୁର ଜନପଦ ଦାନ କରିଥିଲେ । ସେହିଦିନ ଠାରୁ ଏହି ଅଞ୍ଚଳ ଗଜପତିଙ୍କ ପ୍ରତ୍ୟକ୍ଷ ଶାସନାଧୀନ ଥିଲା । କିନ୍ତୁ କରମୂଳ ରାଜଗାଦୀରେ ଅରାଜକତାର ସୁଯୋଗ ନେଇ ପ୍ରାଚୀନ ନାଗବଂଶର ଜନୈକ ରାଜା ନାଗନା ସନ୍ନିକଟ ରୂପାବଳିଆ ପର୍ବତରେ ଏକ ଗିରିଦୁର୍ଗ ନିର୍ମାଣ ପୂର୍ବକ ଏହି ଅଞ୍ଚଳରେ ଶାସନ କରୁଥିଲେ । କରମୂଳ ରାଜା ହରିସିଂହ ବିଦ୍ୟାଧର ରୂପାବଳିଆ ପାର୍ବତ୍ୟ ଦୁର୍ଗସ୍ଥିତ ନାଗରାଜାଙ୍କୁ ଅଧୀନତା ସ୍ୱୀକାର କରିବା ନିମିତ୍ତ ବାର୍ତ୍ତା ପ୍ରେରଣ କଲେ । ନାଗରାଜା ଏହାକୁ ଭ୍ରୂକ୍ଷେପ ନକରି ଉତ୍ତର ଦେଲେ "ହରିସିଂହ ବଣରେ ନୂଆ ରାଜା ହୋଇ ସିଂହ ପଣିଆ ଦେଖାଉଛନ୍ତି ।" ଏହାର ପ୍ରତ୍ୟୁତ୍ତରରେ ହରିସିଂହ ଅବିଳମ୍ବେ ରୂପାବଳିଆ ପର୍ବତ ଘେରାଉକଲେ । ୧୫୩୯ ଖ୍ରୀଷ୍ଟାବ୍ଦରେ ବଣସିଂହ ଗ୍ରାମ ନିକଟ ରଣ ପ୍ରାଙ୍ଗଣରେ ଦୀର୍ଘ ଛଅଦିନ କାଳ ଯୁଦ୍ଧ ଲାଗିଲା । ଏହି ଯୁଦ୍ଧରେ ରୂପାବଳିଆର ନାଗ ରାଜା ପରାସ୍ତ ଓ ନିହତ ହେଲେ । ଫଳରେ ପ୍ରାଚୀନ ନାଗନା ଅଞ୍ଚଳ କରମୂଳ ସାମ୍ରାଜ୍ୟ ଭୁକ୍ତ ହେଲା । ଏହି ପ୍ରାଚୀନ ଓ ସମୃଦ୍ଧ ଅଞ୍ଚଳ ରାଜ୍ୟର ଅପର ଅଙ୍ଗ ହୋଇଥିବାରୁ ହରି ବିଦ୍ୟାଧର ଏହି ଭୂଖଣ୍ଡଟିର ନାମ ଅପଙ୍ଗା ରଖିଲେ । ରୂପାବଳିଆ ନାଗରାଜା ହରିସିଂହଙ୍କୁ ବଣରେ ନୂଆ ରାଜା ହୋଇ ସିଂହ ପଣିଆ ଦେଖାଉଛନ୍ତି ବୋଲି କହିଥିବାରୁ କରମୂଳ ଅଧିପତି ଯୁଦ୍ଧ କ୍ଷେତ୍ରରେ ବଣସିଂହ ଓ ନୂଆପଡ଼ା ନାମରେ ଦୁଇଟି ନୂତନ ଗ୍ରାମ ବସାଇଲେ ।

କରମୂଳ ନଗରୀର ଦକ୍ଷିଣ ପାର୍ଶ୍ୱସ୍ଥିତ ଭୂଖଣ୍ଡ ପୂର୍ବେ କରମୂଳ ରାଜ୍ୟଭୁକ୍ତ ଥିଲେ ହେଁ ବଣିଆପଡ଼ାର ଧୀର ସାମନ୍ତମାନେ ଏହି ଭୂଖଣ୍ଡର ଭୂମ୍ୟାଧିକାରୀ ବୋଲାଇ ଆପଣାକୁ ସ୍ୱାଧୀନ ଘୋଷଣା କରିଥିଲେ । ପ୍ରାଚୀନ ଯୁଗରୁ ଡମରାଜା କଟକରେ ରାଜତ୍ୱ କରୁଥିବା ନାଗ ବଂଶୀୟ ରାଜାମାନଙ୍କୁ ପରାସ୍ତ କରି ଧୀର

ବଂଶୀୟ କ୍ଷତ୍ରିୟବୃନ୍ଦ ଏହି ରାଜ୍ୟ ଅଧିକାର କରିଥିଲେ ହେଁ କରମୂଳ ଅଧିପତିଙ୍କର ଜଣେ ସାମନ୍ତ ଭୂମ୍ୟାଧିକାରୀ ରୂପେ ପରିଗଣିତ ହେଉଥିଲେ । କରମୂଳ ରାଜାଙ୍କ ଦୁର୍ବଳତାର ସୁଯୋଗ ନେଇ ସେମାନେ ଆପଣାକୁ ସ୍ୱାଧୀନ ଘୋଷଣା କରିଥିଲେ । ଏହି ରାଜନ୍ୟବୃନ୍ଦ ଶୈବ ଧର୍ମାବଲମ୍ବୀ ଥିଲେ । ବଣିଆପଡ଼ାସ୍ଥିତ ସ୍ୱପ୍ନେଶ୍ୱର ମନ୍ଦିର ଏହି ବଂଶର କୀର୍ତ୍ତି । ସେହି ମନ୍ଦିର କେଉଁ ରାଜା ନିର୍ମାଣ କରିଥିଲେ ତାହା ସଠିକ୍ ନିର୍ଦ୍ଧାରଣ ହୋଇନଥିଲେ ହେଁ ମନ୍ଦିରରେ "ଗଙ୍ଗାଧର ଧୀର" ଉଲ୍ଲେଖ ଥିବାରୁ ଅନୁମିତ ହୁଏ ଧୀରବଂଶର ସେହି ନାମଧାରୀ କୌଣସି ରାଜା ପଞ୍ଚରଥ ଶୈଳୀରେ ଏହି ମନ୍ଦିର ନିର୍ମାଣ ପୂର୍ବକ ନୀତିନିଯୋଗ ଓ ଯାନିଯାତ୍ରା ନିମିତ୍ତ ଭୂସମ୍ପତ୍ତି ଖଞ୍ଜା କରିଥିଲେ । ଏତଦ୍‌ଭିନ୍ନ ବଣିଆପଡ଼ା ଅଞ୍ଚଳରେ ଧୀରବଂଶର ଅନ୍ୟ କୌଣସି କୀର୍ତ୍ତି ଆବିଷ୍କୃତ ହୋଇନାହିଁ । ସମ୍ଭବତଃ କରମୂଳ ରାଜ୍ୟର ପତନପରେ କିୟତ୍‌କାଳ ଧୀବଂଶୀୟ ସାମନ୍ତ ଡମରାଜା କଟକରେ ରାଜତ୍ୱ ପୂର୍ବକ ଏହି ଅଞ୍ଚଳ ଶାସନ କରିଥିଲେ । ହରିସିଂହ ବିଦ୍ୟାଧର ସେମାନଙ୍କୁ କର ଦେବାକୁ ସନ୍ଦେଶ ପଠାଇବାରୁ ଧୀର ସମାନ୍ତ କହିଲେ "ବିନା ଯୁଦ୍ଧରେ ଆମ୍ଭେ ଛଦାମ ଦେବୁ ନାହିଁ ।" ଏଥିରେ କ୍ରୁଦ୍ଧ ହୋଇ ହରିସିଂହ ବଣିଆପଡ଼ା ଧୀର ସାମନ୍ତଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଗଁନ୍ଦିଆ ସନ୍ନିକଟ ପ୍ରାଙ୍ଗଣରେ ଦୀର୍ଘ ଦଶଦିନ ଘମାଘୋଟ ଯୁଦ୍ଧ ଲାଗିଥିଲା । ଏହି ଯୁଦ୍ଧରେ ଧୀର ସାମନ୍ତ ପରାଜିତ ହୋଇ ପଳାୟନ କଲେ ଏବଂ ପରବର୍ତ୍ତୀ କାଳରେ ବ୍ରାହ୍ମଣୀ ଉତ୍ତର ତୀରସ୍ଥ ବଳରାମପୁରଠାରେ ଗଡ଼ ନିର୍ମାଣ ପୂର୍ବକ ଏକ କ୍ଷୁଦ୍ର ରାଜ୍ୟ ଗଠନ କଲେ । ଧୀର ସାମନ୍ତ ବିନାଯୁଦ୍ଧରେ ଛଦାମ ଦେବାକୁ ମନା କରିଥିବାରୁ ହରିବିଦ୍ୟାଧର ବିଜିତ ଅଞ୍ଚଳରେ ଛଅ ଗୋଟି 'ଦା' ଯୁକ୍ତ ଗ୍ରାମ ବସାଇଥିଲେ । ସେହି ଗ୍ରାମଗୁଡ଼ିକ ହେଲା ଏଣଦା, କୁଶିଦା, ବରଦା, ଝାରଦା, ଆଙ୍କୁର୍ଦା ଓ କୋକୀଦା । ସେହି ଗ୍ରାମଗୁଡ଼ିକ ଅଦ୍ୟାବଧି ବିଦ୍ୟମାନ । ଉଲ୍ଲେଖଯୋଗ୍ୟ ଯେ କପିଳାସ ଠାକୁରଙ୍କ କୃପାରୁ ଏହି ଅଞ୍ଚଳ ଜୟଲାଭ କରିଥିବାରୁ ହରି ବିଦ୍ୟାଧର ସେହି ଗ୍ରାମଗୁଡ଼ିକ ଶିଖରେଶ୍ୱରଙ୍କ ସେବା ପୂଜା ନିମିତ୍ତ ଦାନ କରିଥିଲେ । ବର୍ତ୍ତମାନ ମଧ୍ୟ ସେହି ଗ୍ରାମମାନଙ୍କରେ ପର୍ଯ୍ୟାପ୍ତ ପରିମାଣରେ ଦେବୋତ୍ତର ଜମି ରହିଅଛି । ହରି ବିଦ୍ୟାଧରଙ୍କ ବଣିଆ ପଡ଼ା ଅଞ୍ଚଳ ବିଜୟ ପରେ କରମୂଳ ନଗରୀ ଠାରୁ କପିଳାସ ପୀଠ ପର୍ଯ୍ୟନ୍ତ ସମଗ୍ର ଭୂଖଣ୍ଡ କରମୂଳ ରାଜ୍ୟାଧୀନ ହୋଇଥିଲା । ଏହାଦ୍ୱାରା କରମୂଳ ରାଜ୍ୟ ତାହାର ପୂର୍ବ ଗୌରବ ଫେରି ପାଇଥିଲା ।

ବଣିଆ ପଡ଼ା ଯୁଦ୍ଧ ୧୫୪୫ ମସିହାରେ ସଂଘଟିତ ହୋଇଥିଲା । ସୌଭାଗ୍ୟକ୍ରମେ ସେହି ବର୍ଷ କରମୂଳ ରାଜ ପ୍ରସାଦରେ ହରିସିଂହ ବିଦ୍ୟାଧରଙ୍କ ଜ୍ୟେଷ୍ଠପୁତ୍ର ଜନ୍ମଗ୍ରହଣ କରିଥିଲେ । କିମ୍ବଦନ୍ତୀ ଅନୁସାରେ ପୁରୀ ଲୋକନାଥଙ୍କ କୃପାରୁ ଏହି ରାଜକୁମାର ଜନ୍ମଗ୍ରହଣ କରିଥିବାରୁ ରାଜା ପୁତ୍ରର ନାମ ଲୋକନାଥ ରଖିଥିଲେ । ପରବର୍ତ୍ତୀ କାଳରେ ଜଗନ୍ନାଥ ନାମରେ ଅନ୍ୟ ଏକ ପୁତ୍ର ମଧ୍ୟ ଜନ୍ମ ହୋଇଥିଲେ ଏବଂ ଦଲାଗରେ ନିବାସ କରୁଥିବା ରାଜ ବିରାଦର ସେହି ଜଗନ୍ନାଥଙ୍କ ବଂଶଧର । ଲୋକ କଥାରୁ ଜଣାଯାଏ, ହରିସିଂହ ବିଦ୍ୟାଧର ଆପଣାର ଦୁଇଜଣ ରାଣୀଙ୍କ ନାମରେ ବ୍ରାହ୍ମଣୀ ନଦୀର ଦକ୍ଷିଣ ପାର୍ଶ୍ବରେ ଦୁଇଗୋଟି ବ୍ରାହ୍ମଣ ଶାସନ ବସାଇଥିଲେ । ସେହି ଦୁଇ ଗୋଟି ଶାସନର ନାମ ରାଧା ଦେଈପୁର ଓ ଲତା ଦେଈପୁର, ଯାହାକି ଟିକରପଡ଼ା ଓ ଅନ୍ନକୋଟୀ ନାମରେ ଖ୍ୟାତ । କେହି କେହି କହନ୍ତି, ହରିସିଂହ ବିଦ୍ୟାଧରଙ୍କ ଅନ୍ୟତମ ପୁତ୍ର ପୁରୁଷୋତ୍ତମ ସାମନ୍ତ ଅପ୍ରତିଦ୍ୱନ୍ଦୀ ଯୋଦ୍ଧା ଥିଲେ ଏବଂ ହଦଗଡ଼ ଦୁର୍ଗରେ ନିବାସ କରୁଥିଲେ । ମତାନ୍ତରରେ ପୁରୁଷୋତ୍ତମ ସାମନ୍ତ ତାଙ୍କ ଭାଇବିରାଦର ଥିଲେ ବୋଲି ଜଣାଯାଏ । ଢେଙ୍କାନାଳ ଇତିହାସ ଓ ଅନ୍ୟାନ୍ୟ ଅଭିଲେଖରୁ ଜଣାଯାଏ, ପୁରୁଷୋତ୍ତମ ସାମନ୍ତ ସ୍ୱାଧୀନ ଭାବରେ ହଦଗଡ଼ଠାରେ ରାଜତ୍ୱ କରୁଥିଲେ ଏବଂ ତାଙ୍କ ରାଜ୍ୟ ହଦଗଡଠାରୁ ପ୍ରାଚୀନ ଭୀମନଗରୀ ଦୁର୍ଗ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ସେ ଯାହାହେଉ, ପୁରୁଷୋତ୍ତମ ସାମନ୍ତ ଯେ ତାଙ୍କ ବଂଶଧର ଏଥିରେ ଦ୍ୱିଧା ନାହିଁ ।

୧୫୪୯ ଖ୍ରୀଷ୍ଟାବ୍ଦରେ ଗୋବିନ୍ଦ ବିଦ୍ୟାଧରଙ୍କ ପରଲୋକ ଘଟିଲା । ତାଙ୍କ ଅନ୍ତେ ତଦୀୟପୁତ୍ର ଚକ୍ରପ୍ରତାପ ୧୫୫୭ ପର୍ଯ୍ୟନ୍ତ ଓଡ଼ିଶାର ରାଜା ହୋଇ ଥିଲେ । ମାଦଳା ପାଞ୍ଜିରୁ ଜଣାଯାଏ ୧୫୫୭ରେ ଶ୍ରୀମନ୍ଦିର ପରିସରରେ ଚକ୍ରପ୍ରତାପଙ୍କର ସ୍ୱାଭାବିକ ମୃତ୍ୟୁ ହୋଇଥିଲା । କିନ୍ତୁ ଆବୁଲ୍‌ଫାଜଲଙ୍କ ଲିଖିତ ''ଆକବରୀନାମା''ରୁ ଜଣାଯାଏ ଯେ ତାଙ୍କ ପୁତ୍ର ନରସିଂହ ଜେନା ସ୍ୱ ପିତା ଚକ୍ରପ୍ରତାପଙ୍କୁ ହତ୍ୟାକରି ୧୫୫୭ ଠାରୁ ୧୫୫୯ ପର୍ଯ୍ୟନ୍ତ ଓଡ଼ିଶାର ରାଜସିଂହାସନ ଆରୋହଣ କରିଥିଲେ । କିନ୍ତୁ ପ୍ରକୃତରେ ୧୫୫୭ ଠାରୁ ୧୫୫୯ ପର୍ଯ୍ୟନ୍ତ ରାଜଗାଦୀ ନିମିତ୍ତ ଆଭ୍ୟନ୍ତରୀଣ ବିବାଦ ଲାଗି ରହିଥିଲା । ପରିଶେଷରେ ୧୫୫୯ରେ ନରସିଂହ ରାୟଜେନା ମାତ୍ର ଏକମାସ ଷୋହଳଦିନ ରାଜତ୍ୱ କରି ସେନାପତି ମୁକୁନ୍ଦ ହରିଚନ୍ଦନଙ୍କ ଦ୍ୱାରା ନିହତ ହୋଇଥିଲେ ।

୧୫୫୯ରେ ଚାଲୁକ୍ୟବଂଶୀୟ ମୁକୁନ୍ଦ ହରିଚନ୍ଦନ ଓଡ଼ିଶାର ରାଜା ହେବାପରେ ବିଦ୍ୟାଧର ବଂଶୀୟ ଭାଇ ସାମନ୍ତ ବୃନ୍ଦ ପ୍ରମାଦ ଗଣିଲେ ଏବଂ କରମୂଳ ନଗରୀକୁ ନିରାପଦ ଆଶ୍ରୟସ୍ଥଳ ମଣି ହରିବିଦ୍ୟାଧରଙ୍କ ଶରଣାପନ୍ନ ହେଲେ । ହରିବିଦ୍ୟାଧର ସେହି ଭାଇ ସାମନ୍ତମାନଙ୍କୁ ଦଲାର, ଗୋରଡ଼ିଆ, ହଦଗଡ଼ ଓ ଭୀମନଗରୀ ପ୍ରଭୃତି ସ୍ଥାନମାନଙ୍କରେ ରଖାଇଥିଲେ । ୧୫୬୮ରେ ଯାଜପୁର ସନ୍ନିକଟ ଗୋହିରରାଟିକିରୀ ଯୁଦ୍ଧରେ ମୁକୁନ୍ଦ ହରିଚନ୍ଦନ ନିହିତ ହେଲେ ଏବଂ ବାରବାଟୀ ଦୁର୍ଗ ଆଫଗାନଙ୍କ କରାୟତ ହେଲା । ଏପରି ସ୍ଥିତିରେ ଭୋଇବଂଶୀୟ ରାଜ ବିରାଦର କେହି କଟକରେ ରହିଲେ ନାହିଁ । ସେମାନଙ୍କ ମଧ୍ୟରୁ ଅନେକ ଆତ୍ମଗୋପନକଲେ ଏବଂ ଅନେକ କରମୂଳ ନଗରୀ ଓ ନୀଳାଚଳ ଧାମରେ ଆଶ୍ରୟ ଲୋଡ଼ିଲେ । କରମୂଳ ରାଜ୍ୟ ପ୍ରତି ଆଫଗାନଙ୍କର ଲୋଲୁପ ଦୃଷ୍ଟି ପଡ଼ିଥିଲେ ହେଁ ସେମାନେ କରମୂଳ ରାଜ୍ୟ ଆକ୍ରମଣ କରିନଥିଲେ । ସେହି ସମୟରେ ଏହି ରାଜ୍ୟ ପୂର୍ବରେ ନୂଆଗଡ଼ଠାରୁ ପଶ୍ଚିମରେ ଭୀମ ନଗରୀ ପର୍ଯ୍ୟନ୍ତ ସୁବିସ୍ତୃତ ବ୍ରାହ୍ମଣୀ ଅବବାହିକାରେ ଅବସ୍ଥିତ ଥିଲା । ଯାଜପୁର ଆଡୁ କରମୂଳ ରାଜ୍ୟକୁ ପ୍ରବେଶ କରିବାର ଏକ ମାତ୍ର ପଥ ଥିଲା ବ୍ରାହ୍ମଣୀ ନଦୀ । ସୁଚତୁର ହରିସିଂହ ବ୍ରାହ୍ମଣୀ ନଦୀ କୂଳରେ ଛୋଟ ବଡ଼ ଅନେକ ଦୁର୍ଗ ନିର୍ମାଣ ପୂର୍ବକ ସୁଶିକ୍ଷିତ ସମର ନିପୁଣ ସୈନ୍ୟଙ୍କୁ ମୁତୟନ କରିଥିଲେ । ଫଳରେ ଆଫଗାନମାନେ କରମୂଳ ରାଜ୍ୟକୁ ପ୍ରବେଶ କରି ପାରିନଥିଲେ ।

ହରିସିଂହ ବିଦ୍ୟାଧର ଶାସନର ସୁବିଧା ଦୃଷ୍ଟିରୁ ସମଗ୍ର କରମୂଳ ରାଜ୍ୟକୁ ନଅଗୋଟି ପ୍ରଗଣା ବା ବିଷରେ ବିଭକ୍ତ କରିଥିଲେ । ସେହି ପ୍ରଗଣାଗୁଡ଼ିକ ହେଉଛି ନୂଆଗଡ଼, କରମୂଳ, ବଣିଆପଡ଼ା, ଆଡିଣ୍ଡା, ଅପଙ୍ଗା, ଗୋରଡ଼ିଆ, ପାରିମାଳ, କୁଳକାଶିଆ ଓ ଉପରଦେଶ । ପ୍ରତି ଗ୍ରାମରେ ରାଜସ୍ୱ ଆଦାୟ ନିମିତ୍ତ ପ୍ରଧାନ ବା ସର୍ବରାକାର ତଥା ଶାନ୍ତିରକ୍ଷା ନିମିତ୍ତ ଚୌକୀଦାର ନିଯୁକ୍ତ ହୋଇଥିଲେ । ଏମାନଙ୍କ କାର୍ଯ୍ୟ ତଦାରଖ କରିବା ନିମିତ୍ତ ପ୍ରତି ପ୍ରଗଣା ବା ବିଷରେ ଜଣେ ଲେଖାଏଁ ବେହେରା ପଧାନ ରହିଥିଲେ । ରାଜ୍ୟରେ କୌଣସି ବନ୍ଦୋବସ୍ତ ହୋଇନଥିଲେ ହେଁ ପ୍ରଜାମାନଙ୍କଠାରୁ ହଳ ଅନୁସାରେ ଶସ୍ୟ ଆକାରରେ ରାଜସ୍ୱ ଆଦାୟ ହେଉଥିଲା । ଦେବତା ଓ ବ୍ରାହ୍ମଣମାନଙ୍କୁ ପ୍ରଦତ୍ତ ଭୂସମ୍ପତ୍ତିରୁ କୌଣସି ରାଜସ୍ୱ ଆଦାୟ ହେଉନଥିଲା । ଦେଶ ରକ୍ଷା ନିମତ୍ତ ଯୁଦ୍ଧ କରୁଥିବା ପାଇକମାନଙ୍କୁ ମଧ ନିଷ୍କର ଜାୟଗିରୀ ପ୍ରଦାନ କରାଯାଇଥିଲା ।

ପଣ୍ଡିତ ରାମଚନ୍ଦ୍ରନନ୍ଦଙ୍କ ରଚିତ ଢେଙ୍କାନାଳ ଇତିହାସରେ ଉଲ୍ଲେଖ ଅଛି ଯେ ହଦଗଡ଼ରେ ରାଜତ୍ୱ କରୁଥିବା ସାମନ୍ତ ସିଂହାର ବଂଶ ହରିବିଦ୍ୟାଧରଙ୍କ ମିତ୍ର ପକ୍ଷ ଥିଲେ ଅଥବା ହରି ସ୍ୱୟଂ ପୁରୁଷୋତ୍ତମ ସାମନ୍ତ ସିଂହାର ହୋଇ ପାରିଥାନ୍ତି । ହଦଗଡ଼ର ଅବସ୍ଥିତ କମଗରା ଗ୍ରାମ ନିକଟରେ ଏବଂ ଏହାର ପଚାଶ କିଲୋମିଟର ଦୂରରେ କରମୂଳର ପୂର୍ବରେ ପୁରୁଷୋତ୍ତମ ପୁର ଓ ସାମନ୍ତ ସିଂହାର ପୁର ଶାସନ ବିଦ୍ୟମାନ । ଏହି ଶାସନ ଦ୍ୱୟ ସାମନ୍ତ ସିଂହାର ବଂଶର କୀର୍ତ୍ତି । ଯଦି ସାମନ୍ତ ସିଂହାର ଓ ହରିବିଦ୍ୟାଧର ଏକ ବଂଶୀୟ ହୋଇନଥାନ୍ତେ ତେବେ କରମୂଳ ରାଜ୍ୟ ବିଶେଷତଃ ରାଜଧାନୀ ସନ୍ନିକଟରେ ସାମନ୍ତ ସିଂହାର ଶାସନ ବସାଇ ନଥାନ୍ତେ । ଅତଏବ, ବୁଝିବାକୁ ହେବ ଯେ ପୁରୁଷୋତ୍ତମ ସାମନ୍ତ ସିଂହାର କରମୂଳ ଅଧିପତି ହରିସିଂହ ବିଦ୍ୟାଧରଙ୍କ ଆତ୍ମୀୟ । ସେ ମୁକୁନ୍ଦ ହରିଚନ୍ଦନଙ୍କ ରାଜୁତି ପରେ ହରିବିଦ୍ୟାଧରଙ୍କ ଆଶ୍ରୟ ଲୋଡ଼ିଥିଲେ । ଶାସନଗତ ସୁବିଧା ଦୃଷ୍ଟିରୁ ହରି ତାଙ୍କୁ ହଦଗଡ଼ ସାମନ୍ତ ରୂପେ ଅଧିଷ୍ଠିତ କରାଇଥିଲେ । ହୃଦ୍‌ବୋଧ ହୁଏ, ଆଦିକନ୍ଦ ଅବଧାନଙ୍କ ଭଞ୍ଜ ବୋଲି ଓ ବାବାଜୀ ରାମଦାସଙ୍କ ବଳଭଦ୍ର ବୋଲିରେ ଉଲ୍ଲିଖିତ ଭିନ୍ନ ଭିନ୍ନ ଅବତାରଣା ସନ୍ଦେହ ସୃଷ୍ଟି କରୁଅଛି । ବିଚାରକଲେ ଜଣାଯାଏ, ପୁରୁଷୋତ୍ତମ ହରିସିଂହଙ୍କର ଏକାନ୍ତ ଅନୁଗତ ଓ ଅସାଧାରଣ ବୀର ଥିଲେ । ତେଣୁ ତାଙ୍କୁ ସ୍ୱତନ୍ତ୍ର ପଦବୀରେ ରାଜ୍ୟର ପଶ୍ଚିମାଞ୍ଚଳ ଦାୟିତ୍ୱରେ ରଖା ଯାଇଥିଲା । ସେହି ସମୟରେ ଓଡ଼ିଶାର ଭାଗ୍ୟାକାଶରେ ବିପର୍ଯ୍ୟୟ ଘଟିଥିଲା । ଭୋଇବଂଶକୁ ବିତାଡ଼ିତ କରି ମୁକୁନ୍ଦ ହରିଚନ୍ଦନ ଓଡ଼ିଶା ରାଜା ହେଲେ ଏବଂ ସେ ମଧ୍ୟ ଆଫଗାନମାନଙ୍କ ହାତରେ ନିହତ ହେଲେ । ଏପରି ଦୁଃସ୍ଥିତିରେ ସୁଚତୁର ହରିସିଂହ ବିଦ୍ୟାଧର ଆପଣାର ଆତ୍ମୀୟମାନଙ୍କୁ ଆଣି ଝାଡ଼ଖଣ୍ଡ ମୁଲକ କରମୂଳ ରାଜ୍ୟରେ ଆଶ୍ରୟ ଦେବା ସହିତ ଏକ ନୂତନ ରାଜ୍ୟର ପୁନର୍ଗଠନ କାମନା କରିଥିଲେ । ଦୁଃଖର ବିଷୟ ଓଡ଼ିଶାର ଘଡ଼ିସନ୍ଧି ମୁହୂର୍ତ୍ତର ଏହି ଅଜ୍ଞାତ ଅଧ୍ୟାୟ ଅଦ୍ୟାବଧି ଅନାଲୋଚିତ । ପ୍ରାଚୀନ ହଦଗଡ଼ ଓ କରମୂଳର ଭୂଖନନ ଓ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ହେଲେ ଅନେକ ତଥ୍ୟ ଲୋକଲୋଚନକୁ ଆସିପାରିବ । ସେ ଯାହାହେଉ, ହଦଗଡ଼ରେ ସ୍ୱାଧୀନ ଭାବରେ ରାଜତ୍ୱ କରୁଥିବା ପୁରୁଷୋତ୍ତମ ସାମନ୍ତ ହରିସିଂହ ବିଦ୍ୟାଧରଙ୍କ ସମସାମୟିକ ଓ ନିକଟତମ ଆତ୍ମୀୟ । କରମୂଳ ଓ ଢେଙ୍କାନାଳ ରାଜ୍ୟଗଠନରେ ଏହି ଦୁଇଜଣ ବୀରଙ୍କ ଭୂମିକା ଉଲ୍ଲେଖଯୋଗ୍ୟ । ସେମାନେ ପ୍ରଥମେ ତାଳଚେର ଉପକଣ୍ଠରୁ ଯାଜପୁର

ଉପକଣ୍ଠ ପର୍ଯ୍ୟନ୍ତ ସମଗ୍ର ବ୍ରାହ୍ମଣୀ ଉପତ୍ୟକାରେ କରମୂଳ ରାଜ୍ୟର ବିସ୍ତାର ପୂର୍ବକ ନିଜ ଆସନ ସୁଦୃଢ଼ କରିଥିଲେ । ପରେ ଢେଙ୍କାନାଳରେ ହରିସିଂହ ବିଦ୍ୟାଧର ରାଜଧାନୀ ସ୍ଥାପନ କରିଥିଲେ ହେଁ ସାମନ୍ତ ବଂଶ ପାଞ୍ଚ ପୁରୁଷ ଧରି ହଦଗଡ଼ରେ ରାଜତ୍ୱ କରୁଥିବାର ପ୍ରମାଣ ଭକ୍ତ କବି ଦୀନକୃଷ୍ଣଙ୍କ ରଚିତ ''ରସବିନୋଦ''ରୁ ଜଣାଯାଏ, ଭକ୍ତ କବି ଏହି ସାମନ୍ତ ବଂଶର ଆଶ୍ରିତ ଥିଲେ ବୋଲି ଜଣାଯାଏ । ଏପରି ସ୍ଥଳେ ସାମନ୍ତବଂଶ ଭୂମିକା ଯେ ମହତ୍ୱପୂର୍ଣ୍ଣ, ତାହା ଅନସ୍ୱୀକାର୍ଯ୍ୟ । ଭଞ୍ଜ ବୋଲିର ଲେଖକ ଓ ବଳଭଦ୍ର ବୋଲିର ଲେଖକ ଲୋକ ମୁଖରୁ ଶୁଣି ଉଲ୍ଲେଖ କରିଛନ୍ତି । ଅଥଚ ଭକ୍ତକବି ଦୀନକୃଷ୍ଣ ସ୍ୱକୀୟ ଅନୁଭୂତି ଉଲ୍ଲେଖ କରିଛନ୍ତି । ଅତଏବ, ସାମନ୍ତ ବଂଶ ହରିବିଦ୍ୟାଧରଙ୍କ ଆତ୍ମୀୟ ଏବଂ ଢେଙ୍କାନାଳ ରାଜବଂଶ ପ୍ରତିଷ୍ଠିତ ହେବାପରେ ମଧ୍ୟ ପାଞ୍ଚ ପୁରୁଷ ହଦଗଡ଼ରେ ରାଜତ୍ୱ କରିଥିଲେ । କେତେକଙ୍କର ମତ ଢେଙ୍କାନାଳ ରାଜ୍ୟ ଗଠନ ପରେ ହଦଗଡ଼ ସାମନ୍ତ ବୃନ୍ଦ ଦଲାର ଗ୍ରାମରେ ଯାଇ ନିବାସ କଲେ ।

ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ ଉଦୀୟମାନ ବୀର ହରିସିଂହ ବିଦ୍ୟାଧର ଆପଣାର ଜ୍ଞାତି ସାମନ୍ତମାନଙ୍କ ସହାୟତାରେ ପ୍ରାଚୀନ କରମୂଳ ରାଜ୍ୟର ପୁନର୍ଗଠନ କରି ଏହାକୁ ସାତ କୋଶରୁ ସତୁରୀ କୋଶରେ ପରିଣତ ପୂର୍ବକ ଝାଡ଼ଖଣ୍ଡର ଏକ ସମୃଦ୍ଧ ରାଜ୍ୟ ରୂପେ ଗଢ଼ିଥିଲେ ।



# ଢେଙ୍କାନାଳ ରାଜ୍ୟଗଠନ

ପୂଣ୍ୟତୋୟା ବ୍ରାହ୍ମଣୀ ନଦୀର ୨ କିଲୋମିଟର ଉତ୍ତରରେ ହଦଗଡ଼ ଅବସ୍ଥିତ । ଏହିଦୁର୍ଗର ବିପରୀତ ଅର୍ଥାତ୍ ଦକ୍ଷିଣ ଦିଗରେ ପନ୍ଦର କିଲୋମିଟର ଦୂରରେ ପ୍ରାକୃତିକ ରୂପ ଲାବଣ୍ୟଭରା ପାର୍ବତ୍ୟ ଉପତ୍ୟକାରେ ଢେଙ୍କାଗଡ଼ ଓ ବେଶାଳିଆ ଗଡ଼ର ଅବସ୍ଥିତ । ମେଘା, ରଞ୍ଜା, କୋରିଆ ଓ ପାଣି ଓହଳା ପର୍ବତ ପରିବେଷ୍ଟିତ ଏହି ନୈସିର୍ଗିକ ଶୋଭାମୟୀ ଉପତ୍ୟକାର ପାଣିଓହଳା ପାଦ ଦେଶରେ ଢେଙ୍କାଗଡ଼ ଏବଂ ଏହାର ତିନି କିଲୋମିଟର ପଶ୍ଚିମରେ ବେଶାଳିଆ ଗଡ଼ । ଉଭୟ ଗଡ଼ର ଅଧିପତି ରାଜା ଶ୍ରୀଧର ଭଞ୍ଜ । ଶ୍ରୀଧର ଭଞ୍ଜଙ୍କର ପୂର୍ବ ପୁରୁଷଙ୍କର ସବିଶେଷ ପରିଚୟ ମିଳି ନଥିଲେ ହେଁ ଢେଙ୍କାନାଳ ଇତିହାସରେ ଭଞ୍ଜ ରାଜାଙ୍କୁ ଓଡ଼ିଶାର ପ୍ରସିଦ୍ଧ ଭଞ୍ଜ ବଂଶର ଉତ୍ତରାଧିକାରୀ ରୂପେ ଚିତ୍ରଣ କରାଯାଇଛି । ଅଧିକନ୍ତୁ ତାଙ୍କୁ ବେଶାଳିଆ ବା ବିଶାଳଖଣ୍ଡର ଅଧିପତି ରୂପେ ଗଜପତିଙ୍କର ଜନୈକ କରଦ ରାଜା ବୋଲି କୁହାଯାଇଛି । ଏହି ବଂଶର ପ୍ରଥମ ରାଜୁତି ବେଶାଳିଆ ଗ୍ରାମ ନିକଟସ୍ଥ ଏକ ଗିରିଦୁର୍ଗରେ ଆରମ୍ଭ ହୋଇଥିଲା । ବର୍ତ୍ତମାନ ମଧ ଏହି ଦୁର୍ଗର ଭଗ୍ନାବଶେଷ ରହିଅଛି । ଢେଙ୍କାନାଳ ଇତିହାସରେ ଉଲ୍ଲେଖ ରହିଛି ଯେ ବେଶାଳିଆ ଭଞ୍ଜ ବଂଶର ଶ୍ରୀଧର ଭଞ୍ଜ ପ୍ରବଳ ପ୍ରତାପୀ ଢେଙ୍କା ଶବରକୁ କଳକୌଶଳେ ଛଦ୍ମବେଶରେ ଲୁଚି ରହି ବଧ କରିଥିଲେ । ଏହି ପ୍ରସଙ୍ଗ କୌତୂହଳଦ୍ଦୀପକ ଭାବରେ କିମ୍ବଦନ୍ତୀ ଆଧାରିତ ଆଖ୍ୟାନ ରୂପେ ପରିବେଷ୍ଟିତ । ଭଞ୍ଜରାଜା ଶ୍ରୀଧର କୌଣସି ଉପାୟରେ ଢେଙ୍କା ଶବରକୁ ପରାସ୍ତ ନକରି ପାରିବାରୁ ଗୋଟିଏ ଗଉଡୁଣୀକୁ ଦହି ବିକିବାକୁ ପଠାଇଲେ । ଗଉଡୁଣୀକୁ ନିର୍ଦ୍ଦେଶ ଥିଲା ଯେ ଢେଙ୍କା ପୀଢ଼ରେ ଥିଲେ ଦହି ଅଛି ତଥା ନଥିଲେ ଦହି ନାହିଁ ବୋଲି କହିବାକୁ । ସେତେବେଳେ ଢେଙ୍କା ନିରସ୍ତ୍ର ଅବସ୍ଥାରେ ପୀଢ଼ରେ ଥିଲା । ତେଣୁ ଗଉଡୁଣୀ ଦହି ଅଛି ବୋଲି ଡାକିଲା । ପୂର୍ବରୁ ପ୍ରସ୍ତୁତ ଶ୍ରୀଧର ଭଞ୍ଜ ନିରସ୍ତ୍ର ଅବସ୍ଥାରେ ଢେଙ୍କା ଶବରକୁ ବନ୍ଦୀ କରି ହତ୍ୟା କଲେ । ମୃତ୍ୟୁ ସମୟରେ ଢେଙ୍କା କହିଥିଲା ଯେ ତା' ମୁଣ୍ଡ ପୂଜା ନକଲେ ଏ ରାଜ୍ୟ ଭୋଗ କରିପାରିବ ନାହିଁ । ବର୍ଣ୍ଣିତ ପ୍ରସଙ୍ଗଟିର ସତ୍ୟତା ଅଦ୍ୟାବଧି ନିର୍ଣ୍ଣୟ କରାଯାଇ ନାହିଁ । ଗବେଷକ ଓ

ଐତିହାସିକମାନଙ୍କ ମତରେ କୋଦାଳକ ଶୁଲ୍କୀ ବଂଶର କାଞ୍ଚନ ସ୍ତମ୍ଭଙ୍କର ପୁତ୍ର ପ୍ରଥମ କୁଳସ୍ତମ୍ଭ ଢେଙ୍କା ନାମକ ଶବର ରାଜାଙ୍କୁ ପରାସ୍ତ କରି ଓ ହତ୍ୟା କରି ନିଜକୁ ବିକ୍ରମାଦିତ୍ୟ ପଦବୀରେ ଭୂଷିତ କରି ଗର୍ବ ଅନୁଭବ କରୁଥିଲେ । ପଣ୍ଡିତ ବିନାୟକ ମିଶ୍ର ସ୍ୱଚରିତ Dynasties of medival Orissa ପୁସ୍ତକରେ ମଧ ଏହି ତଥ୍ୟ ପ୍ରତିପାଦନ କରିଛନ୍ତି । ଏହି ତଥ୍ୟ ମଧ District gazzetteer, Dhenkanalରେ ଉଲ୍ଲିଖିତ । ଏଥିରୁ ପ୍ରମାଣିତ ହେଉଛି ଯେ ଢେଙ୍କା ଶବର ଅଷ୍ଟମ-ନବମ ଶତାବ୍ଦୀର ବ୍ୟକ୍ତି । କିନ୍ତୁ ଶ୍ରୀଧର ଭଞ୍ଜ ହରିବିଦ୍ୟାଧରଙ୍କ ସମସାମୟିକ ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର । ଅତଏବ, ଶ୍ରୀଧର ଭଞ୍ଜଙ୍କ ଦ୍ୱାରା ଢେଙ୍କାଶବର ପରାସ୍ତ ଓ ନିହତ ଇତିହାସ ସମ୍ମତ ନୁହେଁ ।

ଅନୁମତି ହୁଏ, ନବମ୍ ଶତାବ୍ଦୀର ପ୍ରାରମ୍ଭରେ ଢେଙ୍କା ଅତ୍ୟନ୍ତ ପ୍ରବଳ ପ୍ରତାପୀ ହୋଇ ସମଗ୍ର ପାର୍ବତ୍ୟ ଉପତ୍ୟକାରେ ଏକଛତ୍ର ଶାସନ କରୁଥିଲା । ଶୁଲ୍କୀ ସମ୍ରାଟ୍ କୁଳସ୍ତମ୍ଭ ଢେଙ୍କାଙ୍କୁ ପରାସ୍ତ ଓ ନିହତ କରିବା ପରେ ଏହି ଉପତ୍ୟକା ଶୁଲ୍କୀ ସାମ୍ରାଜ୍ୟଭୁକ୍ତ ହେଲା । କିନ୍ତୁ ପରବର୍ତ୍ତୀ କାଳରେ ଶୁଲ୍କୀମାନେ କୋଦାଳକରୁ ବିତାଡ଼ିତ ହେବାପରେ ପ୍ରସିଦ୍ଧ ଭଞ୍ଜ ବଂଶର କୌଣସି ରାଜା ସ୍ୱବାହୁବଳରେ ବେଶାଳିଆ ଓ ଢେଙ୍କାନାଳରେ ଗଡ଼ ନିର୍ମାଣ ପୂର୍ବକ ରାଜତ୍ୱ କରିଥିଲେ । ଏହି ଭଞ୍ଜବଂଶର ଶ୍ରୀଧର ଭଞ୍ଜ ପ୍ରବଳ ପ୍ରତାପୀ ଥିଲେ । ତାଙ୍କ ରାଜତ୍ୱର ସମୟ ଷୋଡଶ ଶତାବ୍ଦୀ । ଆଦିକନ୍ଦ ଅବଧାନ ଭଞ୍ଜ ବୋଲିରେ ଲେଖିଛନ୍ତି ।

ଭଞ୍ଜ ବଂଶେ ଶିରୀଧର
ସାମନ୍ତ ସିଂହାର ସେ ବଳୀୟାର ହେ,
ବଡ଼ ପ୍ରତାପୀ ଅଟଇ ବୀର ।

ସେ ଢେଙ୍କା ପୀଢ଼ ଅଧିକାର କରିବାପରେ ଗୋବିନ୍ଦପୁର ଗଡ଼ରେ ରାଜତ୍ୱ କରୁଥିବା ଗୋବିନ୍ଦ ତଅଁଳାକୁ ପରାସ୍ତ କରି ଢେଙ୍କା ପୀଢ଼ର ପୂର୍ବ ପାର୍ଶ୍ୱ ମଧ ଅଧିକାର କରିଥିଲେ । ଫଳରେ ତାଙ୍କ ରାଜ୍ୟର ପରିସୀମା ବୃଦ୍ଧି ହୋଇଥିଲା । ବାବାଜୀ ରାମଦାସଙ୍କ କୃତ ବଳଭଦ୍ର ବୋଲିରେ ଉଲ୍ଲେଖ ରହିଛି–

ଏମନ୍ତେ ତହିଁ କେତେ ହେଁ ସମୟରେ ଭଞ୍ଜ ସାମନ୍ତ ହୋଇଲେ,
ଢେଙ୍କାନାଳ ବେଶାଳିଆ ଦୁଇଠାରେ ଗଡ଼ ବସାଇ ରହିଲେ ।
ଢେଙ୍କାନାଳକୁ ବଡ଼ଗଡ଼ ବୋଲନ୍ତି ସାନଗଡ଼ ବେଶାଳିଆ,
ପୁରାତନ ଲୋକ କେହି ନ ରହିଲେ ସବୁଲୋକ ନୂଆ ନୂଆ ।

ଏଥିରୁ ପ୍ରତୀୟମାନ ହେଉଛି, ଭଞ୍ଜ ରାଜତ୍ୱରେ ହିଁ ଏହି ଶବର ଅଧ୍ୟୁଷିତ ପାର୍ବତ୍ୟ ଉପତ୍ୟକାରେ ଆର୍ଯ୍ୟ ସଭ୍ୟତାର ଉନ୍ମେଷ ଘଟିଥିଲା ଏବଂ ଶେଷ ଭଞ୍ଜରାଜା ଶ୍ରୀଧରଙ୍କ ରାଜତ୍ୱରେ ଷୋଡଶ ଶତାବ୍ଦୀରେ ପୂର୍ବରେ ଗୋବିନ୍ଦପୁର ଠାରୁ ପଶ୍ଚିମରେ ହିନ୍ଦୋଳ ପୂର୍ବ ସୀମା ପର୍ଯ୍ୟନ୍ତ ପରିବ୍ୟାପ୍ତ ଏହି ଭୂଖଣ୍ଡ ଗଜପତିଙ୍କର ଏକ କରଦ ରାଜ୍ୟ ରୂପେ ପରିଗଣିତ ହେଲା ।

୧୫୬୮ ମସିହାରେ ଆଫଗାନ୍‌ମାନେ ଓଡ଼ିଶା ଅଧିକାର କଲେ ଏବଂ କଳାପାହାଡ଼ ପୁରୀର ଜଗନ୍ନାଥ ମନ୍ଦିର ସମେତ ବହୁମନ୍ଦିର ଲୁଣ୍ଠନ କରିଥିଲେ । ସେହି ଭୟରେ ଭୀମନଗରୀ ଦୁର୍ଗରେ ଦ୍ୱିତୀୟ ଅନଙ୍ଗଭୀମ ଦେବଙ୍କ କର୍ତ୍ତୃକ ବଳଦେବଜୀଉ ମନ୍ଦିରର ପୂଜକ ବୃନ୍ଦ ଠାକୁରଙ୍କୁ ନେଇ ବେଶାଳିଆ ଗଡ଼ ପଶ୍ଚିମ ଦିଗସ୍ଥ କାଣ୍ଡିବିନ୍ଧା ଗ୍ରାମର ପୋଖରୀ ହୁଡ଼ାରେ ଟୋପ ଖୋଳାଇ ଲୁଚାଇ ରଖିଲେ । ଠାକୁର ପୋଖରୀ ହୁଡ଼ାରେ କିଛି ବର୍ଷ ରହିବା ପରେ ସେହି ସ୍ଥାନରେ ଲତା ଗୁଳ୍ମ ମାଡ଼ିଗଲା । ଏକଦା ଜନୈକ ଶବର ଟୁଙ୍ଗା ଖୋଳୁ ଖୋଳୁ ଖଣତି ବାଜି ବଳଦେବଜୀଉଙ୍କ ମସ୍ତକରୁ ରକ୍ତ ଝରିଲା । ଶବର ଭୟଭୀତ ହୋଇ ଚିତ୍କାର କଲା । ତତ୍‌କ୍ଷଣାତ୍ ଗ୍ରାମବାସୀ ରାଜା ଶ୍ରୀଧର ଭଞ୍ଜଙ୍କୁ ଜଣାଇଲେ । ଭଞ୍ଜ ରାଜା ଶ୍ରୀଧର ସେହି ସ୍ଥାନକୁ ଖୋଳି ଠାକୁରଙ୍କର ସ୍ନାନ ମାଜଣା ଓ ପୁନଃ ପ୍ରତିଷ୍ଠା ପରେ ବେଶାଳିଆ ଗଡ଼ରେ ଏକ ମଣ୍ଡପ ନିର୍ମାଣ କରି ବିଜେ କରାଇଲେ । ବାବାଜୀ ରାମ ଦାସ ବଳଦେବଙ୍କର ଏହା ସ୍ୱୟଂ ଲୀଳା ଭାବରେ ସ୍ୱରଚିତ 'ବଳଭଦ୍ର ବୋଲି'ରେ ଉଲ୍ଲେଖ କରିଛନ୍ତି ।

''ସେକାଳେ ପ୍ରଭୁଙ୍କ ଆଜ୍ଞା ହୋଇଥିଲା ସେବକମାନଙ୍କୁ ଦେଖି, ଆମ୍ଭଙ୍କୁ ଦେଉଳୁ ବାହାର କରିଣ ଆନଠାରେ ଯାଅ ରଖି । ସେବକମାନେ ଶୁଣି ଆଜ୍ଞା ପ୍ରମାଣେ ଦେଉଳୁ ବାହାର କଲେ, କାଣ୍ଡବିନ୍ଧାଠାରେ ଠାକୁର ପୋଖରୀ ଉତ୍ତର ହୁଡ଼ା ଖୋଳିଲେ ।''

ଟୋପଖୋଳାଇ ପଟା ବାଡ଼ ବନ୍ଧାଇ ପ୍ରଭୁଙ୍କୁ ତହିଁରେ ରଖି,
ଯବନ ଭୟରେ ଛାଡ଼ି ପଳାଇଲେ କେହି କାହାକୁ ନଦେଖି ।
ମୋଗଲାଣ ହୋଇ ଯିବାରୁ ପୃଥିବୀ କିଛି ହିଁ ଜଣା ନଗଲା,
ଯେଉଁ ଠାବରେ ପ୍ରଭୁଙ୍କୁ ରଖିଥିଲେ ଲତା ତୃଣ ମାଡ଼ିଗଲା ।

× × × ×

ବୋଇଲା ଶବର ପୋଖରୀ ହୁଡ଼ାରେ ଟୁଙ୍ଗା ଖୋଳୁଥିଲି ମୁହିଁ,
ଦେବତା ଗୋଟିଏ ପୋତା ହୋଇଅଛି ଦେଖି ଆଇଲି ପଳାଇ ।
ଭଞ୍ଜ ବୋଇଲେ ତେବେ ଭଲ ହେଲା ଆମ୍ଭର ଦେବତା ନାହିଁ,
ତୁନି କରି ତାଙ୍କୁ ଚୋରାଇ ଆଣିବା କେହିତ ଜାଣିବେ ନାହିଁ ।

ଶ୍ରୀଧର ଭଞ୍ଜ କାଣ୍ଡବିନ୍ଧା ଠାକୁର ପୋଖରୀ ହୁଡ଼ାରୁ ଠାକୁରଙ୍କୁ ଆଣି ପ୍ରଥମେ ବେଶାଳିଆରେ ବିଜେ କରାଇବା ପରେ ଢେଙ୍କା ପୀଢ଼ର ପଶ୍ଚିମରେ ଗୋଟିଏ ମଣ୍ଡପ ନିର୍ମାଣ କଲେ । ତତ୍‌ପରେ ପାଲଙ୍କି ପାଟଛତ୍ରୀ, ତ୍ରାସ ଚାମର, ଆଢ଼େଣୀ, ପତାକା ଓ ସଂକୀର୍ତ୍ତନ ଶୋଭଯାତ୍ରାରେ ଠାକୁରଙ୍କୁ ମହାସମାରୋହରେ ବେଶାଳିଆ ଗଡ଼ରୁ ଆଣି ଢେଙ୍କା ପୀଢ଼ ନିକଟ ନବନିର୍ମିତ ମଣ୍ଡପରେ ବିଜେ କରାଇଲେ । ପରବର୍ତ୍ତୀ କାଳରେ ସେହି ସ୍ଥାନରେ ହିଁ ସିଦ୍ଧ ବଳଦେବଙ୍କ ମନ୍ଦିର ନିର୍ମିତ ।

ଢେଙ୍କାନାଳଗଡ଼ ଦେଉଳ ଠାବରେ ମଣ୍ଡପ ତୋଳାଇ ରଖି,
ରାଜା କହିଲେ ବଳଭଦ୍ର ମୂରତି ମନେ ହେଲେ ମହାସୁଖୀ ।

ଏହାପରେ ଶ୍ରୀଧର ଭଞ୍ଜଙ୍କ ଖ୍ୟାତି ବଢ଼ିବାରୁ ଲାଗିଲା । ୧୫୮୦ ପର୍ଯ୍ୟନ୍ତ ସେ ସୁଶାସନ ପ୍ରତିଷ୍ଠା କରିଥିବାର ପ୍ରମାଣ ଭଞ୍ଜ ବୋଲି ଓ ବଳଭଦ୍ର ବୋଲି ପୁସ୍ତକରୁ ଉପଲବ୍‌ଧ ହୋଇଥାଏ । ଅବଶ୍ୟ ଭଞ୍ଜ ବୋଲି ଓ ବଳଭଦ୍ର ବୋଲିର ଲେଖକ ଲୋକ ମୁଖରୁ ଶୁଣି ଅନେକ କଥା ଲେଖିଛନ୍ତି, ଯାହା ଇତିହାସ ସମର୍ଥିତ ନୁହେଁ । ଏପରିକି ସେମାନେ ନୀଳକଣ୍ଠ ଓ ସଦାଶିବଙ୍କୁ ଭଞ୍ଜ ବଂଶର ବୋଲି ଉଲ୍ଲେଖ କରିଛନ୍ତି । କିନ୍ତୁ ସେମାନେ ସାମନ୍ତ ସିଂହାର ବଂଶଧର ଭାବରେ ସୁପରିଚିତ ।

ଶ୍ରୀଧର ଭଞ୍ଜଙ୍କ ରାଜ୍ୟଟି କରମୂଳ ରାଜ୍ୟର ପଶ୍ଚିମ ଦିଗସ୍ଥ ହଦଗଡ଼ ଦୁର୍ଗର ଦକ୍ଷିଣରେ ଅବସ୍ଥିତ ଥିଲା । ହରିସିଂହ ବିଦ୍ୟାଧର ହଦଗଡ଼ ସାମନ୍ତଙ୍କ ସହିତ ମିଶି ୧୫୮୧ ମସିହାରେ ବିଶାଳ ସେନାବାହିନୀ ସାହାଯ୍ୟରେ ବେଶାଳିଆ ରାଜ୍ୟ ଆକ୍ରମଣ କଲେ । ଦୀର୍ଘ ଦଶଦିନକାଳ ଗୁଣ୍ଡିଚାପଡ଼ା ପ୍ରାଙ୍ଗଣରେ ଉଭୟ ପକ୍ଷର ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ଭଞ୍ଜରାଜ ଶ୍ରୀଧର ପରାସ୍ତ ଓ ନିହତ ହେଲେ । ୧୫୮୧ ମସିହା ଶ୍ରୀ ଗୁଣ୍ଡିଚା ତିଥିରେ ହରିସିଂହ ଏହି ରାଜ୍ୟ ଜୟ କରିଥିବାରୁ ବିଜୟର ସ୍ମାରକୀ ସ୍ୱରୂପ ରଣ ଭୂମିରେ ଗୁଣ୍ଡିଚାପଡ଼ା ନାମକ ଗ୍ରାମ ବସାଇଥିଲେ । ବର୍ତ୍ତମାନ ସଦର ଥାନା ଏହି ଯୁଦ୍ଧ ପ୍ରାଙ୍ଗଣରେ ଅବସ୍ଥିତ ।

ଆଦିକନ୍ଦ ଅବଧାନ ସ୍ୱ ରଚିତ ଭଞ୍ଜ ବୋଲିରେ ଏହି ଯୁଦ୍ଧର ଭୟାଭୟତା ଉଲ୍ଲେଖ କରିଛନ୍ତି–

ତହୁଁ ହେଲା ଯୁଦ୍ଧ ଘୋର
ଭଞ୍ଜ ସିଂହବଂଶ ରାଜନଙ୍କର
ମଲେ ଭଞ୍ଜ ପରଜା ଅପାର ।

× × ×

ହେଲେ ପରଜା ଉଚ୍ଛନ୍ନ
ଗଡ଼ ପୁଣି ହେଲା ଛିନ୍ନ ଭିନ୍ନ
ଭଞ୍ଜ କୀର୍ତ୍ତି ଲୋପ ହେଲା ଯେନ ।

ମୃତ୍ୟୁ ସମୟରେ ଶ୍ରୀଧର ଭଞ୍ଜ ହରିବିଦ୍ୟାଧରଙ୍କୁ ଅନୁରୋଧ କରିଥିଲା ଯେ ଢେଙ୍କା ରାଜ୍ୟ ଭୋଗ କରିବାକୁ ହେଲେ ତା'ର ମୁଣ୍ଡ ପୂଜା କରିବାକୁ । ସେ ଏହା ନକରିବାରୁ ଏହି ଦଶା ଭୋଗିଲା ବୋଲି କହିଲା । ଅନୁରୋଧ କ୍ରମେ ହରିବିଦ୍ୟାଧର ଢେଙ୍କା ପୀଢ଼ରେ ପାଷଣର ଗୋଟିଏ ମୁଣ୍ଡ ପୂଜା କରାଇଲେ । ପ୍ରତିବର୍ଷ ଚୈତ୍ର ଶୁକ୍ଳ ଅଷ୍ଟମୀ ବା ଅଶୋକାଷ୍ଟମୀ ଦିନ ଏହି ଢେଙ୍କା ମୁଣ୍ଡର ବିଶେଷ ପୂଜାର୍ଚ୍ଚନା କରାଯାଏ । ପୂଜାର୍ଚ୍ଚନା ସଂପ୍ରତି ହେଉନଥିଲେ ହେଁ ସେହି ମସ୍ତକାକୃତି ପାଷାଣଟି ରାଜପ୍ରସାଦ ପଶ୍ଚିମ ଦିଗସ୍ଥ ବିଜ୍ଞାନ ଉପବନ ସନ୍ନିକଟରେ ଅବସ୍ଥାପିତ । ଢେଙ୍କାର ଆରାଧ୍ୟା ଦେବୀ ଜେନାଦେଇ ଏ ଅବଧି ଗୋଡ଼ି ପୋଖରୀ ହୁଡ଼ାରେ ପୂଜିତା । ଏହି ଗୋଡ଼ି ପୋଖରୀଟି ମଧ୍ୟ ଶବର ରାଜା ଢେଙ୍କାଙ୍କ ଦ୍ୱାରା ଖୋଦିତ । ଢେଙ୍କା ଶାସିତ ଢେଙ୍କାନାଳୀ ସଂପ୍ରତି ରାଜପ୍ରାସାଦ ଠାରୁ କଚେରୀ ପର୍ଯ୍ୟନ୍ତ ସହରର ମୁଖ୍ୟ ଅଞ୍ଚଳ ରୂପେ ପରିଚିହ୍ନିତ, ଗୁଡ଼ିଆନାଳୀ ଗୋଲ୍ଡେନ୍‌ଷ୍ଟ୍ରୀଟ୍ ଓ ମଧୁବନ ଭାବରେ, କଣ୍ଟାନାଳୀ ବନମାଳୀ ପ୍ରସାଦ, ଘୁମୁରାନାଳୀ କାଠଗଡ଼ା, ମଥୁରାନାଳୀ ବୋରାପଦା, ଦୁଧିଆନାଳୀ ଖମାର ସାହି ଓ ଚାରିନାଳୀ ଚାନ୍ଦମାରୀ ରୂପେ ଚିହ୍ନିତ । ପବିତ୍ର ଗୁଣ୍ଡିଚା ଦିବସରେ ହରିସିଂହ ବିଦ୍ୟାଧର ରାଜ୍ୟଜୟ କରି ଢେଙ୍କାଗଡ଼ର ମଣ୍ଡପରେ ପ୍ରଭୁ ସିଦ୍ଧ ବଳଦେବଙ୍କୁ ଦର୍ଶନ କରି ଆନନ୍ଦିତ ହେଲେ । ପରମ ବୈଷ୍ଣବ ହରି ପ୍ରଭୁଙ୍କୁ ସ୍ୱରାଜ୍ୟର ଈଷ୍ଟ ଭାବରେ ସ୍ୱୀକାର କରି ରାଜପୁରୋଧାଙ୍କ ଦ୍ୱାରା ତାଙ୍କର ବିଶେଷ ପୂଜାର୍ଚ୍ଚନା କରାଇ ନିଉଛାଳି ହେଲେ । କରମୂଳ, ହଦଗଡ଼, ଭୀମନଗରୀ, ବଣିଆପଡ଼ା, ନୂଆଗଡ଼, ବେଣାଳିଆ ଓ ଢେଙ୍କାଗଡ଼ ସମଗ୍ର ରାଜ୍ୟକୁ ଢେଙ୍କା ଶବର ନାମରେ ଢେଙ୍କାନାଳ ନାମ କରଣ

କରି ଶ୍ରୀ ବଳଦେବଜୀଉଙ୍କ ଶ୍ରୀଚରଣରେ ସମର୍ପଣ ପୂର୍ବକ ପ୍ରଣତି ଜଣାଇଲେ । ସିଦ୍ଧ ବଳଦେବଙ୍କ ଦର୍ଶନ ହରି ଅନୁଭବ କଲେ ଢେଙ୍କା ପୀଢ଼ ହିଁ ବଳଦେବଜୀଉଙ୍କ ଦିବ୍ୟ ଲୀଳାସ୍ଥଳୀ । ଶ୍ରୀବତ୍ସ ଖଣ୍ଡଶାଳ ରୀତିରେ ପ୍ରଭୁଙ୍କର ମନ୍ଦିର ନିର୍ମାଣର ସଙ୍କଳ୍ପ ନେଲେ ହରିସିଂହ ବିଦ୍ୟାଧର । ପରେ ପରେ ମନ୍ଦିର ନିର୍ମାଣ ଆରମ୍ଭ ହୋଇଥିଲେ ହେଁ ତାଙ୍କ ରାଜତ୍ୱକାଳରେ ଶେଷ ହୋଇପାରି ନଥିଲା ।

ଢେଙ୍କା ପୀଢ଼ ପରିଭ୍ରମଣ କରିବା ସମୟରେ ହରିସିଂହ ବିଦ୍ୟାଧର ଗୋଟିଏ ଆଶ୍ଚର୍ଯ୍ୟଜନକ ଦୃଶ୍ୟ ଦେଖିଲେ । ସେ ଦେଖିଲେ ଏକ ଛଞ୍ଚାଣ ଗୋଟିଏ କପୋତକୁ ମାରିବା ନିମିତ୍ତ ଆକ୍ରମଣ କରୁଛି । କପୋତଟି ଏକ ଗୁମ୍ଫା ନିକଟରେ ପହଞ୍ଚିବା ପରେ ହଠାତ୍ ଛଞ୍ଚାଣକୁ ଆକ୍ରମଣ କରି ମାରି ପକାଇଲା । ଏହି ଘଟଣାରୁ ସେ ବୁଝିଲେ ଯେ ସେହି ଗୁମ୍ଫା ସନ୍ନିକଟ ଭୂମି ହେଉଛି ବୀରଭୂମି । ତେଣୁ ହରିସିଂହ ବିଦ୍ୟାଧରର ସେହି ବୀରଭୂମିରେ ଆପଣାର ରାଜପ୍ରସାଦ ତୋଳି କରମୂଳ ନଗରୀରୁ ରାଜଧାନୀ ଢେଙ୍କାନାଳ ଗଡ଼କୁ ଉଠାଇ ଆଣିଲେ । ବର୍ତ୍ତମାନ ରାଜପ୍ରସାଦର ପୂର୍ବଦିଗରେ ହରିବିଦ୍ୟାଧର ଯେଉଁ ସ୍ଥାନରେ ପ୍ରଥମେ ରାଜପ୍ରସାଦ ନିର୍ମାଣ କରିଥିଲେ ତାହା ରଗଡ଼ିନଅର ନାମରେ ପରିଚିହ୍ନିତ । ସେ ୧୫୮୨ ଠାରୁ ୧୫୯୪ ପର୍ଯ୍ୟନ୍ତ ଶେଷ ବାରବର୍ଷ ଢେଙ୍କାନାଳ ଗଡ଼ରେ ରାଜତ୍ୱ କରିଥିଲେ । ତେଣୁ ବଳଭଦ୍ର ବୋଲିରେ ଉଲ୍ଲେଖ ରହିଛି–

ତାହାଙ୍କ ଉତ୍ତାରେ ହରିବିଦ୍ୟାଧର ଏ ରାଜ୍ୟେ ସାମନ୍ତ ଦମ୍ଭ,
ବାରବରଷ ସାମନ୍ତ ପଣକରି ଦେଉଳ କଲେ ଆରମ୍ଭ ।
ସେ ବଳଦେବଜୀଉଙ୍କ ମନ୍ଦିର ବୈକୁଣ୍ଠ ନିବାସ ସମ ଶ୍ରୀବତ୍ସ

ଖଣ୍ଡଶାଳ ରୀତିରେ ଆରମ୍ଭ କରିଥିଲେ ହେଁ ତାହା ତାଙ୍କର ରାଜତ୍ୱର ବହୁବର୍ଷ ପରେ ନୃସିଂହ ଭ୍ରମରବରଙ୍କ ରାଜତ୍ୱରେ ଶେଷ ହୋଇଥିଲା ।

ଢେଙ୍କାନାଳରେ ରାଜଧାନୀ ସ୍ଥାପନ କରିବାପରେ ହରିସିଂହ ବିଦ୍ୟାଧର ଶ୍ରୀଜଗନ୍ନାଥ ଦର୍ଶନକୁ ପୁରୀକୁ ଯାଇଥିଲେ । ୧୫୬୮ରେ ମୁକୁନ୍ଦ ହରିଚନ୍ଦଙ୍କ ନିଧନ ପରେ ଓଡ଼ିଶାରେ ପ୍ରତିଷ୍ଠିତ ଶାସନ ବୋଲି କିଛି ନଥିଲା । କଳାପାହାଡ଼ ଜଗନ୍ନାଥ ପ୍ରତିମାକୁ ପୋଡ଼ିଦେବାପରେ ଓଡ଼ିଶାରେ କେହି ରାଜା ନଥିବାରୁ ଠାକୁର ପୁନଃନିର୍ମାଣ ଓ ପ୍ରତିଷ୍ଠା ହୋଇପାରି ନଥିଲେ । ରାମଚନ୍ଦ୍ର ଦେବ ଖୋର୍ଦ୍ଧା ବରୁଣାଇ ଠାରେ ଗଡ଼ ତୋଳାଇ ଶ୍ରୀଜଗନ୍ନାଥଙ୍କର ନବକଳେବର କରାଇଲେ । ସେହି

ରାମଚନ୍ଦ୍ରଦେବଙ୍କ ୧୭ ଅଙ୍କ ଧନୁମାସ ଚତୁର୍ଥ ଦିବସରେ ହରିସିଂହ ମହାପାତ୍ର ଶ୍ରୀଜଗନ୍ନାଥ ଦର୍ଶନକୁ ଯାଇଥିବାର ପ୍ରମାଣ ମାଦଳା ପାଞ୍ଜିରୁ ଉପଲବ୍ଧ ହୋଇଥାଏ ।

''ଶ୍ରୀପୁରୁଷୋତ୍ତମ ବଡ଼ଦେଉଳ, ଶ୍ରୀରାମଚନ୍ଦ୍ର ଦେବଙ୍କ ୧୭ ଅଙ୍କ ଝାଡ଼ଖଣ୍ଡ ରାଜା ହରିବିଦ୍ୟାଧର ମହାପାତ୍ରଙ୍କ ଦରଶନ ଯୋଗେ ଶ୍ରୀରାମଚନ୍ଦ୍ର ଦେବ ମହାରାଜାଙ୍କ ୧୭ଅଙ୍କ ଧନୁ ଦି୪ନ ଶ୍ରୀଛାମୁ ଚିଟାଉ ପାଇ ଶ୍ରୀ ପୁରୁଷୋତ୍ତମ ଦେଉଳ ପରୀକ୍ଷାଙ୍କୁ ସମସ୍ତ କାର୍ଯ୍ୟମାନଙ୍କୁ ମଧ ଚିଟାଉ, ଝାଡ଼ଖଣ୍ଡ କରମୂଳ ପାଟଣାଗଡ଼ ରାଜା ହରିବିଦ୍ୟାଧର ମହାପାତ୍ର ଯେ ଦରଶନକୁ ଆସିଅଛନ୍ତି ସେ ଆମ୍ଭ ପିତା ଦନାଇ ବିଦ୍ୟାଧର ମହାପାତ୍ରଙ୍କର ପୂର୍ବ ମହାରାଜା ଗୋବିନ୍ଦ ବିଦ୍ୟାଧର ମହାପାତ୍ରଙ୍କ ମଧ ଭାଇ ହୁଅନ୍ତି । ଏ ତିନିଜଣ ଯଦୁବଂଶୀ ଛତ୍ରୀ । ଏହାଙ୍କର କୁଳପଦ୍ଧତି ସିଂହ ନାମ ବୋଲି ଥିଲା । ଏମାନେ ପଶ୍ଚିମରୁ ଓଡ଼ିଶାକୁ ଆସି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣ ତଳେ ଶରଣ ନେଲାକୁ ମହାପ୍ରଭୁଙ୍କ ଆଜ୍ଞା ପ୍ରମାଣେ ଆମ୍ଭ ପୂର୍ବ ମହାରାଜାଙ୍କୁ ଆଶ୍ରାକରି ପ୍ରଥମେ ତାଙ୍କ ଆଜ୍ଞା ପ୍ରମାଣେ ଭୋଇ ପଣରେ ରହି ପାତ୍ରଶାଢ଼ୀ ନେଇ ବିଦ୍ୟାଧର ମହାପାତ୍ର ପଦ ଏ ଉତ୍ତାରୁ ଶାଢ଼ୀ ପାଇଲେ ତାଙ୍କ ଉତ୍ତାରୁ ଗୋବିନ୍ଦ ବିଦ୍ୟାଧର ମହାପାତ୍ର ଓଡ଼ିଶାରେ ମହାରାଜା ହୋଇଲେ । ହରିବିଦ୍ୟାଧର ମହାପାତ୍ର, ପୂର୍ବବଂଶ ପ୍ରତାପ ରୁଦ୍ର ମହାରାଜାଙ୍କୁ ଦକ୍ଷିଣ କଟକାଇରେ ସାହାଯ୍ୟ କଲାରୁ ତାଙ୍କୁ ଅନୁଗ୍ରହ କରି ଝାଡ଼ଖଣ୍ଡ କରମୂଳ ପାଟଣା ସାତକୋଶ ଭୂମି ଦାନ କରି ସେହି ଝାଡ଼ଖଣ୍ଡରେ ରାଜା କରିଥିଲେ । ଏହି ହରି ବିଦ୍ୟାଧର ମହାପାତ୍ରଙ୍କୁ ମୀନକେତନ ଚିହ୍ନ, କଟାରି, ପଗଡ଼ି ମଧ ସନ୍ତକ ଦିଆ ଯାଇଥିଲା । ଏ ଯୋଗେ ଏ ରାଜା ବଶୀ ପାତ୍ର ମଧ ହୋଇଲାକୁ ଦସ୍ତୁର ସାବକ ମତେ ଶ୍ରୀନଅର 'ସଙ୍ଖୁଳା କରାଇବ । ଏହା କରି ଗନ୍ତାଘରୁ ଶାଢ଼ୀ ଚନ୍ଦନ ଦେବ । ଏ ପ୍ରମାଣ ଏଥିରେ ଶ୍ରୀ ହସ୍ତ ଅକ୍ଷର ଅଛନ୍ତି ।'' ମାଦଳାପାଞ୍ଜିର ଉପରୋକ୍ତ ବର୍ଣ୍ଣନାରୁ ହରିବିଦ୍ୟାଧରଙ୍କ ପରିଚୟ, ରାଜ୍ୟ ପ୍ରାପ୍ତି ଓ ରାଜ ସନ୍ତକ ସଂପର୍କରେ ତଥ୍ୟ ଉପଲବ୍ଧ ହୋଇଥାଏ । ଢେଙ୍କାନାଳ ରାଜବଂଶର ସେହି ସନ୍ତକ ରହିଅଛି । କେହି ମତ ଦେଇଥାନ୍ତି ରାମଚନ୍ଦ୍ର ଦେବଙ୍କ ୧୭ ଅଙ୍କ ୧୫୮୩ । ଅତଏବ, ୧୫୮୨ରେ କରମୂଳରୁ ଢେଙ୍କାନାଳରୁ ରାଜଗାଦୀ ଉଠାଇ ଆଣିବାପରେ ହରିବିଦ୍ୟାଧର ଶ୍ରୀଜଗନ୍ନାଥଙ୍କ ନବକଳେବର ତଥା ନିଜ ଜ୍ୟେଷ୍ଠ ଭ୍ରାତାଙ୍କ ନନ୍ଦନ 'ରାମଚନ୍ଦ୍ର ଦେବ ରାଜ ହେବା ଶୁଣି

୧୫୮୩ରେ ଜଗନ୍ନାଥ ଦର୍ଶନ ନିମିତ୍ତ ଯାଇଥିଲେ । ପ୍ରଥମ ଦର୍ଶନ ଅର୍ଥାତ୍ ଧନୁ ମାସ ଚତୁର୍ଥ ଦିନର ବିବରଣୀ ମାଦଳା ପାଞ୍ଜିରୁ ଉଦ୍ଧାର କରାଯାଇଛି । ତତ୍ପରେ ଧନୁ ମାସ ଷଷ୍ଠଦିନ ରାତ୍ରକାଳରେର ମଧ ହରି ବିଦ୍ୟାଧର ଦର୍ଶନକୁ ଯାଇଥିଲେ । ମାଦଳାପାଞ୍ଜି ବର୍ଣ୍ଣନାନୁଯାୟୀ—

''ଧନୁ ମାସ ଦି୬ନ ତଲପ- ''ଏଦିନ ପାଟଣାଗଡ଼ର ରାଜା ସିଂହ ବିଦ୍ୟାଧର ମହାପାତ୍ର ଦେଉଳ ବେଢ଼ା ଭିତରକୁ ରାତ୍ର ଦର୍ଶନକୁ ଯିବା ସମୟରେ ଏହାଙ୍କ ସଙ୍ଗେ ଦୋଶାଖା ମଶାଲ ଦୁଇଗୋଟା ଯିବ । ଏପରି ହୁକୁମ ଦେବାରେ ଏଦିନ ଦର୍ଶନକୁ ଆସିଲା ବେଳରେ ଉପର ଲିଖିତ ମଶାଲ ଦୁଇ ଗୋଟା ଦେଉଳ ଭିତରକୁ ଆସିଲା । ଏ ରାଜା ବେଢ଼ାବୁଲି ଗରୁଡ଼ ଖୁମ୍ବ ପାଶେ ଦର୍ଶନ କରି ଚନ୍ଦନ ଅର୍ଗଳି କାଠଠାରେ ସୁନାବେଣ୍ଟ ଚାମର ସେବା କଲେ ।''

ତତ୍‌ପରଦିନ ଅର୍ଥାତ୍ ଧନୁ ମାସ ଦି୭ନ ଗଜପତି ମହାରାଜା ଓ ଢେଙ୍କାନାଳଧୀଶ୍ୱର ହରିସିଂହ ବିଦ୍ୟାଧର ଉଭୟ ସାଥୀ ହୋଇ ଶ୍ରୀଜଗନ୍ନାଥଙ୍କ ଦର୍ଶନକୁ ଯାଇଥିଲେ । ଏ ସଂପର୍କରେ ମାଦଳାପାଞ୍ଜିରେ ଉଲ୍ଲେଖ ରହିଛି—

''ଧନୁ ମାସ ଦି୭ନ ତଲବ : ଏଦିନ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦୁଇ ପହର ଧୂପ ସରି ପାଣି ପଡ଼ିଥିଲା । ଏହି ସମୟରେ ଓଡ଼ିଶା ମହାରାଜା, ପାଟଣାଗଡ଼ ରାଜା ଉଭୟ ଦାଦୀ ପୁତୁରା ଥିବାରୁ ସଙ୍ଗ ହୋଇ ଦର୍ଶନକୁ ଆସିଲେ । ଓଡ଼ିଶା ମହାରାଜାଙ୍କ ଦସ୍ତୁର ସାଦିକମତେ ଶ୍ରୀପାଲିଙ୍କି ସିଂହଦ୍ୱାର ଚକଡ଼ା ଉପରେ ଅରୁଣ ସ୍ତମ୍ଭର ଆଗରେ ଉତ୍ତର ତରଫକୁ ରହିଲା । ପାଟଣା ରାଜାଙ୍କ ପାଲିଙ୍କି ସିଂହଦ୍ୱାର ଚକଡ଼ା ଉପରେ ଅରୁଣ ଖମ୍ବର ଦକ୍ଷିଣ ତରଫକୁ ରହିଲା । ଉଭୟ ଦେଉଳ ଭିତରକୁ ଆସିଲା ବେଳକୁ ଓଡ଼ିଶା ମହାରାଜାଙ୍କ ବାମ ପାର୍ଶ୍ୱରେ ପାଟଣାଗଡ଼ ରାଜା ଥାଇ ଜମାପାଜାମା ହୋଇ ମୁକ୍ତା ପେଣ୍ଠି ନଟକଣରେ ଶିରପେଚ ଥାଇ ଦୁଇଜଣ ଯାକ ପଣ୍ଡାଙ୍କ ବୈଠକ ପର୍ଯ୍ୟନ୍ତ ଆସିଲେ । ଏ ଉତ୍ତାରୁ ଓଡ଼ିଶା ମହାରାଜା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ନିମନ୍ତେ ଗରୁଡ଼ ଖମ୍ବ ବାଟେ ଶ୍ରୀ ମହାପ୍ରଭୁଙ୍କ ଛାମୁକୁ ବିଜେ କଲେ । ଏ ଉତ୍ତାରୁ ପଟଣାଗଡ଼ ରାଜା ଦେଉଳ ପ୍ରଦକ୍ଷିଣା କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ନିମନ୍ତେ ସାତ ପାବଚ୍ଛ ଦ୍ୱାର ବାଟେ ଶ୍ରୀ ମହାପ୍ରଭୁଙ୍କ ଛାମୁକୁ ଆସିଲେ । ଉଭୟ ଯୋଡ଼ହସ୍ତ ହୋଇ ମହାପ୍ରଭୁଙ୍କ ଦର୍ଶନ କରି ଉଭୟ ମିଳି ବେଢ଼ା ବୁଲି ଶ୍ରୀ ବିମଳା ଲକ୍ଷ୍ମୀ ସରସ୍ୱତୀଙ୍କୁ ଦର୍ଶନ କରି ସିଂହଦ୍ୱାରକୁ ବିଜେ କଲେ । ସେଠାରେ ଓଡ଼ିଶା ମହାରାଜା ପାଲିଙ୍କିରେ

ଶ୍ରୀନଅରକୁ ବିଜେ କଲେ । ପାଟଣା ଗଡ଼ ରାଜା ଆପଣା ବସାକୁ ଗଲେ । ଏପରି ଦର୍ଶନ ବିଧି କଲେ ।''

ମାଦାଳପାଞ୍ଜିରୁ ଉପରୋକ୍ତ ଉଦ୍ଧୃତିରୁ ରାଜଦର୍ଶନ ବିଧି ପରମ୍ପରା ସହିତ ଢେଙ୍କାନାଳ ରାଜାଙ୍କ ମର୍ଯ୍ୟାଦା ଉପଲବ୍ଧ ହୋଇଥାଏ । ଗଜପତି ରାମଚନ୍ଦ୍ରଦେବ ଥିଲେ ହରିବିଦ୍ୟାଧରଙ୍କ ଜ୍ୟେଷ୍ଠଭ୍ରାତା ଦନେଇ ବିଦ୍ୟାଧର ମହାପାତ୍ରଙ୍କ ପୁତ୍ର । ତେଣୁ ତାଙ୍କର ଢେଙ୍କାନାଳ ରାଜାଙ୍କ ପ୍ରତି ଯଥେଷ୍ଟ ସମ୍ମାନ ରହିଥିଲା । ସେହି ଅଧିକାରରେ ଢେଙ୍କାନାଳ ରାଜା ଶ୍ରୀମନ୍ଦିରରେ ସ୍ୱତନ୍ତ୍ର ଦର୍ଶନ ପରମ୍ପରାର ଅଧିକାରୀ ହୋଇଥିଲେ । ବର୍ତ୍ତମାନ ସୁଦ୍ଧା ସେହି ପରମ୍ପରା ବଜାୟ ରହିଛି । ଅନେକଙ୍କ ମନରେ ପ୍ରଶ୍ନ ଉଠିଥାଏ ''ମାଦଳାପାଞ୍ଜିରେ ପାଟଣାଗଡ଼ ରାଜା ଉଲ୍ଲେଖ ଅଛି ବୋଲି ? ପ୍ରକୃତରେ କରମୂଳ ପାଟଣାଗଡ଼ର ରାଜା ହିଁ ଢେଙ୍କାନାଳ ଅଧୀଶ୍ୱର । ଗଜପତି ସ୍ୱୟଂ କରମୂଳ ରାଜାଙ୍କୁ ଢେଙ୍କାନାଳ ରାଜା ଭାବରେ ସ୍ୱୀକୃତି ପ୍ରଦାନ କରି ''ଝାଡ଼ଖଣ୍ଡ ବାଦଶାହା'' ଉପାଧିରେ ଭୂଷିତ କରିଥିଲେ । ''ଶ୍ରୀ ପୁରୁଷୋତ୍ତମ ଦେଉଳ ପରିଚ୍ଛାଙ୍କୁ ଓ ସମସ୍ତ କାର୍ଯ୍ୟମାନଙ୍କୁ ମଧ୍ୟ ଚିଟାଉ । କରମୋଳ ପାଟଣା ଗଡ଼ ରାଜା ହରି ବିଦ୍ୟାଧର ମହାପାତ୍ର ଶ୍ରୀଛାମୁରେ ଦର୍ଶନ କରି ଗୋଚର କରନ୍ତି ଯେ ସେ ଝାଡ଼ଖଣ୍ଡ କରମୋଳ ପାଟଣାରେ ରାଜା ହୋଇ ଝାଡ଼ଖଣ୍ଡରେ ଆଉ ସାମନ୍ତ ଜେନାଙ୍କୁ ଜୟ କରି ଗଡ଼ ବିସ୍ତାର କଲେ । ଆପଣା ଗଡ଼ ନାମ କରମୋଳ ପାଟଣାଗଡ଼ ବଦଳରେ ଢେଙ୍କାନାଳ ବସାଇଲେ । ଏ ଯୋଗେ ଏ ରାଜା ଏ ଦିନରେ ଢେଙ୍କାନାଳର ବିଦ୍ୟାଧର ମହାପାତ୍ର ବୋଲାଇଲେ । ଏ ପଦ ଆମ୍ଭ ବଂଶ ଚିହ୍ନରେ ସଦା ଦିନକୁ ରହିଲା । ଏ ରାଜା ଆମ୍ଭ ଅନୁଗ୍ରହରେ ଝାଡ଼ଖଣ୍ଡ ପାଦସା ବୀର ହୋଇଲେ । ଏହାଙ୍କ ପୁତ୍ରଠାରୁ ରାଏସିଂହ ଭ୍ରମରବର ପଦସଲତନ ହେବ, ଆମ୍ଭରୁ ରାଜକୁଳ ବିଧିବିଧାନ ଆପଣା ରାଜ୍ୟରେ ସଲତନ କରିବେ । ଏ ପ୍ରମାଣ ।''

ପ୍ରମାଣିତ ହୁଏ, ଢେଙ୍କାନାଳ ରାଜା ହିଁ କରମୂଳ ରାଜା ତଥା ସେ ହେଉଛନ୍ତି ହରିସିଂହ ବିଦ୍ୟାଧର, ଯେକି ଢେଙ୍କାନାଳ ରାଜ୍ୟ ଓ ରାଜବଂଶର ପ୍ରତିଷ୍ଠାତା । ସେ ୧୫୮୨ରେ ଢେଙ୍କାନାଳକୁ ରାଜଧାନୀ ଉଠାଇ ଆଣିବାପରେ କରମୂଳ, ବ୍ରାହ୍ମଣୀ ତଟସ୍ଥ ଅନ୍ୟାନ୍ୟ ସ୍ଥାନରୁ ତଥା ମୋଗଲ ବନ୍ଦୀ ଅଞ୍ଚଳରୁ ଆର୍ଯ୍ୟ ଜନଜାତି ଢେଙ୍କାନାଳ ନଗରରେ ନିବାସ କଲେ । କରମୂଳ, ହଦଗଡ଼, ଭୀମନଗରୀ, ବେଣାଳିଆ ଓ ଢେଙ୍କାନାଳକୁ ନେଇ ସେ ଯେଉଁ ନୂତନ ରାଜ୍ୟ

ଗଢ଼ିଲେ ତାହାର ନାମ ଢେଙ୍କାନାଳ । କରମୂଳ ରାଜ୍ୟରେ ନଅଗୋଟି ପ୍ରଗଣା ଥିଲା । ସେଥିରେ ଢେଙ୍କନାଳ ଓ ବେଶାଳିଆ ରାଜ୍ୟର ତିନିଗୋଟି ପ୍ରଗଣା ଯଥା– ନିଜିଗଡ଼, ପୂର୍ବଖଣ୍ଡ ଆଢ଼େଣୀ ଓ ବଳରାମ ପୁର ମିଶି ମୋଟ ବାରଗୋଟି ପ୍ରଗଣା ବା ବିଷ ରହିଲା । କିନ୍ତୁ ତାଙ୍କ ଅଧୀନରେ ହଦଗଡ଼ ସାମନ୍ତ ସ୍ୱାଧୀନ କ୍ଷମତା ଉପଭୋଗ କରୁଥିଲେ । ରସବିନୋଦରୁ ଜଣାଯାଏ ଯେ ଏହି ସାମନ୍ତ ବଂଶ ପାଞ୍ଚ ପୁରୁଷ ଧରି ରାଜତ୍ୱକରି ଧର୍ମକୀର୍ତ୍ତିମାନ ନିର୍ମାଣ କରିଥିଲେ । ଢେଙ୍କାନାଳ ଠାରେ ରାଜତ୍ୱ ଆରମ୍ଭ କରିବାପରେ ହରିବିଦ୍ୟାଧର ଶେଷ ଜୀବନ ଇଷ୍ଟ ବଳଦେବଜୀଉଙ୍କ ସେବାରେ ମନ ବଳାଇଲେ । ଶୈଳ ଶୈବକ୍ଷେତ୍ର କପିଳାସକୁ ଏକ ଶ୍ରେଷ୍ଠ ତୀର୍ଥ ସ୍ଥଳୀରେ ପରିଣତ କରାଇବାର ଅଭିଳାଷ ତାଙ୍କର ରହିଥିଲା । ଏହି ଅପ୍ରତିଦ୍ୱନ୍ଦୀ ବୀର, ସୁଶାସକ, ପରମ ବୈଷ୍ଣବ ରାଜାଙ୍କର ୧୫୯୪ ମସିହାରେ ଢେଙ୍କାନାଳ ରାଜ ପ୍ରସାଦ ଠାରେ ପରଲୋକ ଘଟିଲା ।

ହରିସିଂହ ବିଦ୍ୟାଧର ହିଁ ଢେଙ୍କାନାଳ ରାଜ ବଂଶର ଆଦି ପୁରୁଷ । ସେ କରମୂଳ ଠାରେ ୧୫୩୧ ରୁ ୧୫୮୧ ଏବଂ ଢେଙ୍କାନାଳ ଠାରେ ୧୫୮୨ ଠାରୁ ୧୫୯୪ ପର୍ଯ୍ୟନ୍ତ ୬୨ ବର୍ଷ ରାଜତ୍ୱ କରିଥିଲେ । ଏହି ତଥ୍ୟ ପରବର୍ତ୍ତୀ କାଳରେ ରଚିତ Rulling princes and chiefs of India, memorandum on the position and status of the Dhenkanal state, Odisha 1928, feudary states of Odisha ଏବଂ final report on the settlement of Dhankanal fedutory state, Odisha Vol-I ରେ ବର୍ଣ୍ଣିତ ।



# ରାଜା ଲୋକକଥା ରାୟସିଂହ ଭ୍ରମରବର

ଢେଙ୍କାନାଳ ରାଜ୍ୟ ଓ ରାଜବଂଶର ପ୍ରତିଷ୍ଠାତା ହରିସିଂହ ବିଦ୍ୟାଧରଙ୍କ ମୃତ୍ୟୁପରେ ତଦ୍ଦୀୟ ପୁତ୍ର ଲୋକନାଥ ଗଜପତିଙ୍କ ପ୍ରଦତ୍ତ "ରାୟ ସିଂହ ଭ୍ରମରବର" ଉପାଧି ଗ୍ରହଣ କରି ୧୫୯୪ରେ ଢେଙ୍କାନାଳର ରାଜା ହେଲେ । ସେତେବେଳକୁ ସମ୍ରାଟ୍ ଆକବର ଓଡ଼ିଶା ଅଧିକାର କଲେଣି । ଆକ୍‌ବରଙ୍କ ପ୍ରତିନିଧି ମାନସିଂହ ରାମଚନ୍ଦ୍ର ଦେବଙ୍କୁ ଖୋର୍ଦ୍ଧା ରାଜା ଭାବରେ ସ୍ୱୀକୃତି ପ୍ରଦାନ କରି ପୁରୀ ଓ ଖୋର୍ଦ୍ଧା ସହିତ ୭୧ଟି ଗଡ଼ ତଥା କେତେ ମାହାଲ ନିଷ୍କର ଜମିଦାରୀ ସତ୍ୱ ହିସାବରେ ଦେଲେ । ସେ ସର୍ବମୋଟ ୧୨୬ କିଲାର କର ଆଦାୟ କରିବା ସହିତ ମହାରାଜା ପଦବୀ ଲାଭ କଲେ । ଅର୍ଥାତ୍ ୧୫୯୨ ମସିହାରୁ ଗଜପତି ରାମଚନ୍ଦ୍ର ଦେବ ସ୍ୱାଧିକାର ପ୍ରାପ୍ତ ହେଲେ । ତାଙ୍କ ଅଧୀନସ୍ଥ କିଲାଗୁଡ଼ିକ ମହାନଦୀର ଦକ୍ଷିଣ ଦିଗକୁ ରହିଥିଲେ ହେଁ ମହାନଦୀ ଉତ୍ତରରେ ଅବସ୍ଥିତ ଢେଙ୍କାନାଳ ତାଙ୍କ କକା ପୁଅ ଭାଇ ଲୋକନାଥଙ୍କ ରାଜ୍ୟ ଥିଲା । ତେଣୁ ଲୋକନାଥ ନିର୍ଭୟରେ ରାଜତ୍ୱ କରିଥିଲେ ।

ରାଜା ଭାବରେ ଅଭିଷେକ ହେବାପରେ ଲୋକନାଥ ଶ୍ରୀ ଜଗନ୍ନାଥ ଦର୍ଶନ କରିବାକୁ ଯାଇଥିଲେ । ଦର୍ଶନକୁ ଯାଇଥିବା ସମୟରେ ସେ ଗଜପତି ମହାରାଜାଙ୍କ ଦ୍ୱାରା କିପରି ସମ୍ବର୍ଦ୍ଧନା ପାଇଥିଲେ ତାହାର ସ୍ପଷ୍ଟ ଚିତ୍ର ମାଦଳାପାଞ୍ଜିରୁ ହୃଦ୍‌ବୋଧ ହୋଇଥାଏ ।

"ଶ୍ରୀ ଛାମୁ ଚିଟାଉ ପୈଠ ଶ୍ରୀପୁରୁଷୋତ୍ତମ ବଡ଼ ଦେଉଳ ପରୀକ୍ଷାଙ୍କୁ ସମସ୍ତ କାର୍ଯ୍ୟମାନଙ୍କୁ ମଧ ଚିଟାଉ । ଢେଙ୍କାନାଳ ଝାଡ଼ଖଣ୍ଡ ରାଜା ଲୋକନାଥ ରାୟସିଂହ ଭ୍ରମରବର ମହାପାତ୍ରେ ଯେ ଦର୍ଶନକୁ ଅଇଲେ ସେ ଆମ୍ଭର ଭାଇ ହୁଅନ୍ତି । ଏହାଙ୍କୁ ସଂଙ୍ଗୁଳାଇବ ଏ ରାଜା ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ କରିବାକୁ ଗଲା ସମୟରେ ଏହାଙ୍କୁ ପରମ୍ପରା ମାଫିକେ ଦର୍ଶନ କରାଇବ । ଏହାଙ୍କ ପାଲିଙ୍କି କଳାଛତି, ଧଳାଛତି, ତରାସ ଚଅଁର, ମୟୂରଝୁଲ ଖଣ୍ଡା ରୁପା କାହାଳୀ ମଧ ସିଂହଦ୍ୱାର ଚକଡ଼ା ଉପର ସରକି ଯିବ । ଏ ଛ ତି ମୁଦାହୋଇ ସିଂହଦ୍ୱାରେ ରହିବ । ଆଉ ସଳିତନମାନେ ଏହାଙ୍କ ସଙ୍ଗେ ଯିବ । ଦେଉଳ ଭିତରକୁ ଜଗମୋହନ ସରିକି ଏ ଜାମା ପାଜାମା ହୋଇ ପାଗବାନ୍ଧି ଜୟ ବିଜୟ

ଦ୍ୱାରେ ନିଉଛାଳି କରିବେ । ଏ ଉତ୍ତାରୁ ସିଂହାସନ ତଳକୁ ଯାଇ ଏହାଙ୍କ ପାତ୍ର ଏହାଙ୍କ ସଙ୍ଗେ ଥାଇ ମହାପ୍ରଭୁଙ୍କୁ ଦର୍ଶନ କରିବେ । ମହାପ୍ରଭୁଙ୍କୁ ଭେଟି ପିଣ୍ଡିକା ପାଞ୍ଚ ମହୁଡ଼ ପଚାଶ ଟଙ୍କା ଦେବେ । ନିଉଁଛାଳି ଲୁଗା ପାଞ୍ଚମୂର୍ତ୍ତି ଦେବେ । ଏ ଉତ୍ତାରୁ ଚନ୍ଦନ ଅର୍ଗଳୀ କାଠରେ ଭଣ୍ଡାରରୁ ସୁନାବେଣ୍ଟ ଚାମର ଦେଇ ସେବା କରାଇବ । ଏ ଉତ୍ତାରୁ ଦେବତାମାନଙ୍କୁ ଦସ୍ତୁର ସାବିକମତେ ଦର୍ଶନ କରି ଯାହା ଭେଟି ପିଣ୍ଡିକା ଦେବେ ତାହା ଭଣ୍ଡାରରେ ରଖାଇବ । ଏ ରାଜା ରାତ୍ରଦର୍ଶନକୁ ଆଇଲେ ଯୋଡ଼ା ମଶାଲ ଦୁଇଗୋଟା ଜଗମୋହନ ଜୟ ବିଜୟ ସରିକି ଯିବ । ଏହାଙ୍କ ଜନାନା ଦର୍ଶନକୁ ଅଇଲେ ଏହାଙ୍କ ସବାରି ଦକ୍ଷିଣ ସାତ ପାବଛ ଉପରେ ରହିବ । ଏ ଉତ୍ତାରୁ ଦେଉଳ ଭିତର ଅଧା ଶୋଧ ହୋଇ ସେବକମାନେ ଜଗମୋହନ ଭିତରେ ରହିବେ । ଏ ଉତ୍ତାରୁ ଏହାଙ୍କ ଜନାନା ଦର୍ଶନ କରି ଭେଟ ଦେଇ ସିଂହାସନ ତଳେ ନିଉଁଛାଳି ଦେଇ ବେଢ଼ାବୁଲି ପାର୍ଶ୍ୱ ଦେବତାମାନଙ୍କୁ ଭେଟ ଦେଇ ଦକ୍ଷିଣ ଦ୍ୱାର ବାଟେ ଗୁମୁଟଠାରେ ସବାରିରେ ବସି ଆପଣା ବସାକୁ ଯିବେ । ଏ ପ୍ରମାଣ ଏଥିରେ ଶ୍ରୀହସ୍ତ ଅକ୍ଷର ଅଛନ୍ତି । ମେଷ ଦି୧୨ନ ।''

ମାଦଳାପାଞ୍ଜିର ଉପରୋକ୍ତ ଉଦ୍ଧୃତିର ଜଣାଗଲା ଯେ ଢେଙ୍କାନାଳ ରାଜା ଲୋକନାଥ କେଉଁ ଭାବରେ ଓ ରାଣୀ କେଉଁ ଭାବରେ ଦର୍ଶନ କରିବେ ଗଜପତି ତାହା ଆଦେଶ କରିଥିଲେ । ସେ ସମୟରେ କ୍ୱଚିତ୍ ରାଜାଙ୍କୁ ଏହି ସ୍ୱତନ୍ତ୍ର ସୁବିଧା ମିଳୁଥିଲା । ଅଦ୍ୟାବଧି ଢେଙ୍କାନାଳ ରାଜ ପରିବାର ଶ୍ରୀମନ୍ଦିରରେ ସେହି ସୁବିଧା ସୁଯୋଗ ପାଇ ଆସୁଛନ୍ତି । ଅର୍ଥାତ୍ ଦୀର୍ଘ ପାଞ୍ଚଶହ ବର୍ଷ ଧରି ଏହି ପରମ୍ପରା ଚଳି ଆସୁଅଛି ।

ହରିବିଦ୍ୟାଧର ଢେଙ୍କାନାଳ ରାଜ୍ୟ ସ୍ଥାପନ କରିବା ପରେ ଚତୁଃପାର୍ଶ୍ୱ ରାଜା ଓ ଜମିଦାରବୃନ୍ଦ ପ୍ରମାଦ ଗଣୁଥିଲେ । ତାଙ୍କ ଅନ୍ତେ ତଦୀୟ ବୀରପୁତ୍ର ଚତୁଃପାର୍ଶ୍ୱ ରାଜ୍ୟ ଜୟକରି ରାଜ୍ୟର ସୀମା ବୃଦ୍ଧି କରିବାକୁ ମନବଳାଇଲେ । ସେ ସମୟରେ ଢେଙ୍କାନାଳ ରାଜ୍ୟର ପୂର୍ବରେ କଳକଳା ଓ ଡାଳି ଯୋଡ଼ା ନାମକ କ୍ଷୁଦ୍ର ରାଜ୍ୟରେ ଦୁଇଜଣ ଜମିଦାର ରାଜତ୍ୱ କରୁଥିଲେ । ତାଙ୍କ ପିତା ହରିବିଦ୍ୟାଧରଙ୍କ ଦ୍ୱାରା ବିତାଡ଼ିତ ହୋଇଥିବା ବଣିଆ ପଡ଼ାର ଧୀର ସାମନ୍ତ ଐଶାନ୍ୟକୋଣସ୍ଥିତ ମଧୁପୁର ଓ ବଳରାମପୁର ରାଜ୍ୟରେ ରାଜତ୍ୱ କରୁଥିଲେ । କରମୂଳରୁ ବିତାଡ଼ିତ ହୋଇଥିବା ନାଗବଂଶ ଉତ୍ତରଦିଗ ସୁକିନ୍ଦା ରାଜ୍ୟରେ ରାଜତ୍ୱ କରୁଥିଲେ । ହରିବିଦ୍ୟାଧରଙ୍କ ମୃତ୍ୟୁପରେ ଏହି ରାଜା ଓ ଜମିଦାରଙ୍କର ଲୋଲୁପ ଦୃଷ୍ଟି ଢେଙ୍କାନାଳ ଉପରେ

ପଡ଼ିଥିଲା । ରାଜା ଲୋକାନାଥ ଏହା ଶ୍ରବଣ ପୂର୍ବକ ସେମାନଙ୍କୁ ସମୁଚିତରେ ଶିକ୍ଷା ଦେବାକୁ ମନସ୍ଥ କରି ନିଜର ସୈନ୍ୟବାହିନୀରୁ ସୁଦୃଢ଼ କଲେ । ଏହି ସମୟରେ ଲୋକନାଥ ସମ୍ବାଦ ପାଇଲେ ଯେ ଡମରାଜ କଟକରେ ଡମଦଳପତି ନିଜକୁ ସ୍ୱାଧୀନ ଘୋଷଣା କରିଛନ୍ତି । ସୂଚନାଯୋଗ୍ୟ ଯେ ପୂର୍ବରୁ ଡମମାନେ ପରାସ୍ତ ହୋଇ ନିକଟବର୍ତ୍ତୀ ଗ୍ରାମମାନଙ୍କରେ ସାଧାରଣ ପ୍ରଜା ଭାବରେ ଜୀବନ ଯାପନ କରୁଥିଲେ । ପରେ ବଣିଆପଡ଼ାରେ ଧୀର ବଂଶୀୟ ସାମନ୍ତ ରାଜତ୍ୱ କରିବାରୁ ସେମାନେ ଦୌରାତ୍ମ୍ୟ ଦେଖାଇ ପାରୁ ନଥିଲେ । କିନ୍ତୁ ବଣିଆପଡ଼ା ଧୀର ସାମନ୍ତଙ୍କ ପତନ ଓ ପଳାୟନ ପରେ ସେମାନେ ସକ୍ରିୟ ହୋଇ ଉଠିଲେ । ଏତଦ୍‌ଭିନ୍ନ କଳକଳା ଓ ଡାଲିଯୋଡ଼ାର ଜମିଦାର ମଧ୍ୟ ସେମାନଙ୍କୁ ଉସୁକାଇଲେ । ଫଳରେ ସେମାନେ ସେମାନଙ୍କର ଦଳପତିଙ୍କୁ ପୁନର୍ବାର ଡମରାଜାକଟକରେ ରାଜା କରାଇ ସେହି ଅଞ୍ଚଳକୁ ସ୍ୱାଧୀନ ଭୂଖଣ୍ଡ ଘୋଷଣା କରିଥିଲେ । ହରି ବିଦ୍ୟାଧରଙ୍କ ବୀରପୁତ୍ର ଲୋକନାଥ ଖବର ପାଇ ଅବିଳମ୍ବେ ସସୈନ୍ୟ ଯୁଦ୍ଧ ଯାତ୍ରା କରିଥିଲେ ।

ହରିବିଦ୍ୟାଧର ଢେଙ୍କାନାଳରେ ଏକ ସୁଶିକ୍ଷିତ ସୈନ୍ୟବାହିନୀ ଗଢ଼ିଥିଲେ । ଢେଙ୍କାନାଳରେ ରାଜବଂଶ ଓ ରାଜପ୍ରସାଦ ପ୍ରତିଷ୍ଠିତ ହେବାପରେ ଖୋର୍ଦ୍ଧା, ଯାଜପୁର ଓ କେନ୍ଦ୍ରପଡ଼ା ଅଞ୍ଚଳରୁ ଉଚ୍ଚବଂଶଜ କ୍ଷତ୍ରିୟ ଓ ଖଣ୍ଡାୟତମାନେ ଆସି ଢେଙ୍କାନାଳରେ ବସବାସ କଲେ । ରାଜା ସେମାନଙ୍କୁ ଜାୟଗିରୀ ଦେଇ ରାଜ୍ୟର ସୁରକ୍ଷା ନିମିତ୍ତ ବିଭିନ୍ନ ସ୍ଥାନରେ ରଖାଇଥିଲେ । ପ୍ରାଚୀନ ଦୁର୍ଗ କରମୂଳ, ଅମାଙ୍ଗ, ହଦଗଡ଼, ଭୀମନଗରୀ, ବେଣାଳିଆ, ଢେଙ୍କାନାଳ, ଗୋବିନ୍ଦପୁର ପ୍ରଭୃତି ଦୁର୍ଗରେ ସୈନ୍ୟ ମୁତୟନ ଥିଲେ । ଯୁଦ୍ଧ ନିମିତ୍ତ ଗଡ଼ନାୟକ, ଦଳବେହେରା, ଦଳପତି, ଦଳେଇ ଓ ନଖଦଳ ନିଯୁକ୍ତି ହୋଇଥିଲେ । ରାଜା ଲୋକନାଥ ବିଶାଳ ସୈନ୍ୟବାହିନୀ ସହ ପୂର୍ବଦିଗରେ ଯୁଦ୍ଧ ଯାତ୍ରା କଲେ । ପ୍ରଥମେ କପିଳାସ ବିଜେ ଶିଖରେଶ୍ୱରଙ୍କୁ ଦର୍ଶନ କରି ଡମରାଜା କଟକ ଅଭିମୁଖେ ଯାତ୍ରା କଲେ । ୧୫୯୫ରେ ମୁଣ୍ଡମାରୀ ଗ୍ରାମଠାରେ ଢେଙ୍କାନାଳ ସୈନ୍ୟ ଓ ଡମ ସୈନ୍ୟଙ୍କର ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ଢେଙ୍କାନାଳ ରାଜାଙ୍କର ନାଗାସୈନ୍ୟମାନେ ଡମରାଜା କଟକ ଅବରୋଧ କରି ଡମରାଜାଙ୍କ ସମେତ ସକଳ ଡମ ସୈନ୍ୟଙ୍କ ମୁଣ୍ଡକାଟ କରିଥିଲେ । ସେହି ଯୁଦ୍ଧ ସ୍ଥାନରେ ଡମଙ୍କର ମୁଣ୍ଡକାଟ ହୋଇଥିବାରୁ ତାହା ମୁଣ୍ଡମାରୀ ନାମରେ ପରିଚିତ । ଗାଁଦିଆ ଠାରୁ ପାଞ୍ଚ କିଲୋମିଟର ପୂର୍ବରେ

ଏହି ସ୍ଥାନ ଅବସ୍ଥିତ । ଏହି ଯୁଦ୍ଧରେ ରାଜା ଲୋକନାଥ ଜୟଲାଭ କରି ଡମରାଜା କଟକକୁ ଢେଙ୍କାନାଳ ଅନ୍ତର୍ଭୁକ୍ତ କରାଇଲେ । ଏହି ଅଞ୍ଚଳ ଢେଙ୍କାନାଳ ରାଜ୍ୟର ବଣିଆପଡ଼ା ପ୍ରଗଣା ବା ବିଷ ଶାସନାଧୀନ ହେଲା । ସଂପ୍ରତି, ଡମରାଜାଙ୍କ ବଂଶଧରମାନେ ମୁଣ୍ଡମାରୀ ନିକଟବର୍ତ୍ତୀ ଗ୍ରାମମାନଙ୍କରେ "ଗୋଦରା" ସଂପ୍ରଦାୟ ରୂପେ ପରିଚିତ । ମୁଣ୍ଡମାରୀ ଯୁଦ୍ଧପରେ ଲୋକନାଥ ଡାଳିଯୋଡ଼ା ରାଜାଙ୍କର କପିଳାସ ପୀଠକୁ ଲାଗି ରହିଥିବା ଅଞ୍ଚଳ ଅଧିକାର କରିଥିଲେ । ଡାଳିଯୋଡ଼ା ରାଜା ଲୋକନାଥଙ୍କ ଭୟରେ କଳାକଳା ରାଜାଙ୍କ ସାହାଯ୍ୟ ଲୋଡ଼ିଲେ । କଳକଳା ଓ ଡାଳିଯୋଡ଼ା ଉଭୟ ରାଜା ଢେଙ୍କାନାଳ ରାଜା ଲୋକନାଥଙ୍କ ସଙ୍ଗେ ଯୁଦ୍ଧ କରି ଗୋଟିଏ ଦିନରେ ପରାସ୍ତ ହୋଇ ଜଙ୍ଗଲରେ ଲୁଚିଲେ । ଲୋକନାଥ କଳକଳାଗଡ଼ ଅବରୋଧ କରି ରହିଲେ । ବାଧ ହୋଇ କଳକଳା ସାମନ୍ତ ଲୋକମାନଙ୍କ କୃପା ପ୍ରାର୍ଥୀ ହୋଇ ନିଜ ରାଜ୍ୟର କିୟବଂଶ ପ୍ରଦାନ କଲେ । ଖଙ୍କିରାଗଡ଼ ଢେଙ୍କାନାଳର ପୂର୍ବ ସୀମା ରୂପେ ପରିଚିହ୍ନିତ ହେଲା । କଳାକଳା ରାଜା ରାଜ୍ୟ ଭିକ୍ଷା କରି ଖଙ୍କାରକୁ ହାତପତାଇ ଥିବାରୁ ଲୋକନାଥ ସୀମାନ୍ତ ଦୁର୍ଗର ନାମ ଖଙ୍କିରା ରଖିଲେ । କଳକଳା ରାଜ୍ୟରୁ ଅଧିକୃତ ଅଞ୍ଚଳ ଗୌଡ଼ଦେଶ ବିଷ ନାମରେ ଢେଙ୍କାନାଳ ସାମ୍ରାଜ୍ୟଭୁକ୍ତ ହେଲା ।

ତପ୍ପରେ ଲୋକନାଥ ସସୈନ୍ୟ ମଧୁପର ଗଡ଼ ଦିଗରେ ଅଗ୍ରସର ହେଲେ । ଢେଙ୍କାନାଳ ବାହିନୀ ମଧୁପୁର ସୀମାରେ ଉପଗତ ହୁଅନ୍ତେ ମଧୁପୁର ରାଜା ଭୟ କଲେ । ବିଶାଳ ଢେଙ୍କାନାଳ ବାହିନୀ ବିରୁଦ୍ଧରେ ସଂଗ୍ରାମ କରିବାକୁ ସେ ସକ୍ଷମ ନଥିଲେ । ତେଣୁ ସେ ତାଙ୍କର ଜଣେ ଚତୁର ରାଜଦୂତଙ୍କୁ ସନ୍ଧି କରିବା ନିମିତ୍ତ ଢେଙ୍କାନାଳ ରାଜାଙ୍କ ନିକଟକୁ ପଠାଇଲେ । ସୁଚତୁର ମଧୁପୁର ଦୂତ ରାଜା ଲୋକନାଥଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ଜଣାଇଲେ "ମହାରାଜ ଆପଣଙ୍କ ରାଜ୍ୟର ନାମ ଢେଙ୍କାନାଳ ଢ ଅକ୍ଷରରୁ ଆରମ୍ଭ ହୋଇଥିବାରୁ ଢ, ଢା, ଢୀ, ଢୁ । ଆମ ମଧୁପୁରର ଆଦ୍ୟ ଅକ୍ଷର ହେଉଛି ମ ଅର୍ଥାତ୍ ଆମେ ମଁ, ମା, ମି, ମୁ । ଏହାର ଭାବ ହେଲା ଆପଣ ସିଂହ ସଦୃଢ଼ ଢ, ଢା, ଢୀ ଢୁ କଲାବେଳକୁ ଆମେ ଛେଳି ସଦୃଶ ମଁ, ମା, ମୀ, ମୁଁ ହେବ । ଆପଣ ଛାର ମଧୁପୁର ପ୍ରତି କୃପା କରନ୍ତୁ । ଏତିକି ପ୍ରାର୍ଥନା ରାଜଦୂତର ଚାଟୁ ବାକ୍ୟରେ ପ୍ରୀତ ହୋଇ ଢେଙ୍କାନାଳଧୀଶ୍ୱର ଲୋକନାଥ କହିଲେ "ଆମ୍ଭେ ଏହି ସ୍ଥାନରୁ ଫେରି ଯାଉଛୁ । ନିକଟବର୍ତ୍ତୀ ପର୍ବତରୁ ଦେଖାଇ କହିଲେ ଏହି ପର୍ବତ ରାଜ୍ୟର ସୀମା ହେବ । ତୁମେ ଏହି

ପର୍ବତର ପୂର୍ବ ଦିଗରେ ନିଶ୍ଚିନ୍ତରେ ଶାସନ କର ।'' ସେହିଦିନ ଠାରୁ ଯେଉଁ ସ୍ଥାନରେ ସେନାଛାଉଣୀ ପଡ଼ିଥିଲା ତଥା ସେଠାରୁ ଲୋକନାଥ ଫେରି ଆସିଲେ ସେହି ସ୍ଥାନର ନାମ ଇଚ୍ଛାପୁର ଏବଂ ପର୍ବତରେ ନାମ ନିଶ୍ଚିନ୍ତା ପର୍ବତ ରହିଛି । ମଧୁପୁର ସନ୍ଧି ଫଳରେ ରାଜା ଲୋକନାଥ ଯେଉଁ ଭୂଖଣ୍ଡ ଲାଭ କଲେ ତାକୁ ''ରାୟ ସିଂହ ପ୍ରସାଦ'' ପ୍ରଗଣା ବା ବିଷ ନାମ ଦେଇ ଢେଙ୍କାନାଳ ରାଜ୍ୟଭୁକ୍ତ କଲେ । ଏହାପରେ ରାଜା ଲୋକନାଥ ବଳରାମପୁର ଗଡ଼ ଦିଗକୁ ଅଗ୍ରସର ହେଲେ । ବଳରାମପୁର ଧୀର ସାମନ୍ତ ବିନା ଯୁଦ୍ଧରେ ନିଜ ଜନପଦରେ କିୟତ୍ ଅଂଶ ପ୍ରଦାନ କରିବାକୁ ପ୍ରାର୍ଥନା କଲେ । ଲୋକନାଥ ତାଙ୍କ ପ୍ରାର୍ଥନା ମଞ୍ଜୁର କରି ସୀମାନ୍ତ ଗ୍ରାମର ନାମ ମଞ୍ଜୁରୀପଡ଼ା ରଖିଲେ ତଥା ଅଧିକୃତ ଅଞ୍ଚଳକୁ ପୂର୍ବ ଦିଗରେ ଥିବା ନୂଆଗଡ଼ ପ୍ରଗଣା ସାମିଲ କରି ଢେଙ୍କାନାଳ ରାଜ୍ୟଭୁକ୍ତ କଲେ ସେହି ଦିଗ୍‌ବିଜୟ କାଳରେ ରାଜା ଲୋକନାଥ କେତେକ ନାଗା ସନ୍ନ୍ୟାସୀଙ୍କୁ ନବାଧିକୃତ ଅଞ୍ଚଳରେ ଭୂସଂପତ୍ତି ପ୍ରଦାନ ପୂର୍ବକ ମଠ ତେନ୍ତୁଳିଆ, ଜକିଆ, ଧନୀବୋଲ କାଟେଣୀ ପ୍ରଭୃତି ମଠ ସ୍ଥାପନ କରିଥିଲେ । ସେ ମଧ ବଣିଆପଡ଼ାରେ ସ୍ୱପ୍ନେଶ୍ୱର ଓ ଖଙ୍କିରାର ରାମେଶ୍ୱର ମହାଦେବଙ୍କ ସେବା ପୂଜା ନିମିତ୍ତ ଜମିବାଡ଼ି ଖଞ୍ଜି ଥିଲେ ।

ପୂର୍ବ ଦିଗ ଅଭିଯାନ ସାରି ଲୋକନାଥ ୧୫୯୭ରେ ସ୍ୱରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ତତ୍‌ପରେ ତାଙ୍କର ଉତ୍ତରଦିଗ୍‌ବିଜୟ ଆରମ୍ଭ ହୋଇଥିଲା । କରମୂଳରେ ଅରାଜକତାର ସୁଯୋଗ ନେଇ କୋଦାଳକରୁ ବିତାଡ଼ିତ ଏବଂ କାଳିଆହୋତାରେ ନିବାସ କରୁଥିବା ସ୍ତମ୍ଭବଂଶର ଜଣେ ସାମନ୍ତ ରାମିଆଳ ନଦୀକୂଳ ଜଗନ୍ନାଥପୁର ଠାରେ ମାଣିତ୍ରୀ ଗଡ଼ ବସାଇ ଭୂମ୍ୟାଧିକାରୀ ବୋଲାଇଥିଲେ । ରାଜା ଲୋକନାଥ ସ୍ତମ୍ଭ ସାମନ୍ତଙ୍କୁ ବଶ୍ୟତା ସ୍ୱୀକାର ପୂର୍ବକ ରାଜସ୍ୱ ପ୍ରଦାନ କରିବାକୁ ବାର୍ତ୍ତା ପଠାଇଥିଲେ । ଜଗନ୍ନାଥପୁର ସ୍ତମ୍ଭ ସାମନ୍ତ ବଶ୍ୟତା ସ୍ୱୀକାର କରିବାକୁ ଅସ୍ୱୀକାର କରିବାରୁ ଲୋକନାଥ ତାଙ୍କ ଗଡ଼ ଆକ୍ରମଣ କରିବାକୁ ଅଗ୍ରସ ହେଲେ । ସେ ସସୈନ୍ୟ ରାମିଆଳ ପାର ହୋଇ ଜଗନ୍ନାଥପୁରର ପୂର୍ବଦିଗ ଏକ ଟାଙ୍ଗରା ଭୂମିରେ ସୈନ୍ୟ ଛାଉଣୀ ପକାଇଲେ । ପରେ ସେହି ସ୍ଥାନର ନାମ ଟାଙ୍ଗରପଡ଼ା ହେଲା । ଏହାପରେ ଲୋକନାଥ ଜଗନ୍ନାଥପୁର ଗଡ଼ ଅବରୋଧ କଲେ । ଗଡ଼ର ପଶ୍ଚିମ ପାର୍ଶ୍ୱରେ ଦୁଇଦିନ କାଳ ଘୋର ଯୁଦ୍ଧ ହେଲା । ଦୁର୍ଗରକ୍ଷୀ ବାହିନୀ ଢେଙ୍କାନାଳ ସୈନ୍ୟଙ୍କର ସମ୍ମୁଖୀନ ହୋଇ ନପାରି

ଛତ୍ରଭଙ୍ଗ ଦେଲେ । ସ୍ତମ୍ଭ ସାମନ୍ତ ଅନ୍ୟ ·ଉପାୟ ନ ଦେଖି ଗୁପ୍ତରେ ସଙ୍କୁଚୁପେ ଅରଣ୍ୟ ମଧ୍ୟରେ ଉତ୍ତରଗାମୀ ହୋଇ କାଳିଆହୋଡାକୁ ପଳାୟନ କଲେ । ଅଚିରେ ଜଗନ୍ନାଥପୁର ଗଡ଼ ଢେଙ୍କାନାଳ ସାମ୍ରାଜ୍ୟଭୁକ୍ତ ହେଲା । ରାମିଆଳ ନଦୀ (ଯୋଡ଼) ଟପି ଏହି ଭୂଖଣ୍ଡ ଲାଭ କରିଥିବାରୁ ଲୋକନାଥ ନବାଧିକୃତ ଅଞ୍ଚଳକୁ ଟିପି ଯୋଡ଼ି ବିଷର ମାନ୍ୟତା ଦେଇ ରାଜ୍ୟଶାସନ ଭୁକ୍ତ କଲେ । ଦୁର୍ଗର ପଶ୍ଚିମ ସୀମାରେ ଯେଉଁ ପ୍ରାନ୍ତରରେ ସୈନିକମାନଙ୍କର ମୃତ ଶରୀର ପଡ଼ିଥିଲା ସେହି ସ୍ଥାନକୁ ଲୋକନାଥ ମଲାଙ୍ଗଡିହ ନାମ ଦେଇ ଜଣେ ଉତ୍କଳୀୟ ବୈଷ୍ଣବଙ୍କୁ ଦାନ କରିଥିଲେ । ସେ ବାବାଜୀ ମଲାଙ୍ଗଡିହରେ ଦଧିବାମନ ମଠ ସ୍ଥାପନ କରିଥିଲେ । ସେହି ମଠ ଅଦ୍ୟାବଧି ବିଦ୍ୟମାନ । ମଲାଙ୍ଗଡିହ ମଠର ଉତ୍ତର ଦିଗରେ ରାମିଆଳ ନଦୀଧାର ମଧ୍ୟରେ ପ୍ରକାଣ୍ଡ ଶିବଲିଙ୍ଗ ଦର୍ଶନ କରି ଲୋକନାଥ ସେହି ସ୍ଥାନରେ ମନ୍ଦିର ତୋଳାଇ ସେବା ପୂଜା ନିମିତ୍ତ ଭୂସମ୍ପତ୍ତି ବ୍ୟବସ୍ଥା କରିଥିଲେ । ସେହି ମନ୍ଦିର ରାମିଆଳ ନଦୀ ଗର୍ଭରେ ଅଦ୍ୟାବଧି କପିଳେଶ୍ୱର ମନ୍ଦିର ନାମରେ ଖ୍ୟାତ । ରାଜା ଲୋକାନାଥ ମଧ୍ୟ ନିଜ ନାମରେ ଜଗନ୍ନାଥପୁର ଦୁର୍ଗର ଅନତି ଦୂରରେ ରାମିଆଳ ନଦୀର ଉତ୍ତରରେ ଲୋକନାଥପୁର ନାମକ ଶାସନ ବସାଇ ତତ୍ରସ୍ଥ ବ୍ରାହ୍ମଣମାନଙ୍କୁ ନିଷ୍କର ଜମି ପ୍ରଦାନ କରିଥିଲେ ।

ରାଜା ଲୋକନାଥଙ୍କ ଢେଙ୍କାନାଳ ରାଜ୍ୟ ଉତ୍ତରଦିଗରେ ରାମିଆଳ ନଦୀର ଅପରପାର୍ଶ୍ୱ ପର୍ଯ୍ୟନ୍ତ ବିସ୍ତାର ଲାଭ କଲା । ସେ ଉତ୍ତର ସୀମାରେ ଯେଉଁ ସ୍ଥାନରେ ସୀମା ସୁରକ୍ଷା ନିମିତ୍ତ ସୈନ୍ୟ ମୁତୟନ କରିଥିଲେ ତାହା ''ଲୋକାପଲ୍ଲୀ'' ନାମରେ ପରିଚିହ୍ନିତ ।। ଏତଦ୍‌ଭିନ୍ନ ସେ ମଧ୍ୟ କେତେକ ନାଗାସୈନ୍ୟଙ୍କୁ ଉତ୍ତର ଦିଗରେ ମୁତୟନ କରିଥିଲେ । ପରେ ନାଗା ସନ୍ନ୍ୟାସୀମାନେ ସେଠାରେ ଏକ ମଠସ୍ଥାପନ କରିଥିଲେ । ସେହି ସ୍ଥାନ ବର୍ତ୍ତମାନ ମଠ କରଗୋଳା ନାମରେ ଖ୍ୟାତ । ଯୁଦ୍ଧରୁ ଲାଭ କରିଥିବା ଟିପି ଯୋଡ଼ି ବିଷର ଯେଉଁ ଦୁଇଗୋଟି ଗ୍ରାମ କରମୂଳ ପ୍ରଗଣାର ସୀମାକୁ ଲାଗି ରହିଥିଲା ସେହି ଜିନେଇଲୋ ଓ ବେଢ଼ାପାଳ ଗ୍ରାମ ଦୁଇଟିକୁ ଲୋକନାଥ କପିଳାସ ଠାକୁରଙ୍କୁ ଦାନ ଦେଇଥିଲେ । ଏହାପରେ କରମୂଳ ଗଡ଼ରେ କିୟତ୍‌କାଳ ନିବାସ କରି ରାଜା ଲୋକନାଥ ଶିଖରେଶ୍ୱରଙ୍କ ଦର୍ଶନ ପୂର୍ବକ ଢେଙ୍କାନାଳ ପ୍ରତ୍ୟାବର୍ତ୍ତନ କରିଥିଲେ । ବହୁ ସମୟ ଯୁଦ୍ଧ ଓ ରାଜ୍ୟ ଜୟରେ ମନଯୋଗ ଦେଇ ସେ ପିତୃରାଜ୍ୟକୁ ଦୁଇଗୁଣ କରିବା ସହିତ ସିଂହ ବିଦ୍ୟାଧର ବଂଶର ଗୌରବ ବୃଦ୍ଧି କରିଥିଲେ । କିନ୍ତୁ, ଯୁଦ୍ଧ ବ୍ୟାପାରରେ ବ୍ୟସ୍ତ

ରହି ସେ ବଳରାମ ମନ୍ଦିର ନିର୍ମାଣରେ ବିଶେଷ ଅଗ୍ରଗତି ଆଣିପାରି ନଥିଲେ । ଅଥଚ ରାଜ୍ୟର ବିଭିନ୍ନ ସ୍ଥାନରେ ମଠ ପ୍ରତିଷ୍ଠା ପୂର୍ବକ ସେ ଢେଙ୍କାନାଳ ମାଟିରେ ବୈଷ୍ଣବ ସଂସ୍କୃତିର ବୀଜବପନ କରି ପାରିଥିଲେ । ସେ କେବଳ ବୈଷ୍ଣବ ସଂସ୍କୃତିର ପୃଷ୍ଠପୋଷକ ନଥିଲେ, ବଣିଆପଡ଼ା ସ୍ୱପ୍ନେଶ୍ୱର, ଖଙ୍କିରା ରାମେଶ୍ୱର, ଲୋକନାଥପୁର ଲୋକନାଥେଶ୍ୱର, ରାମିଆଳ ଗର୍ଭସ୍ଥିତ କପିଳେଶ୍ୱର ଓ ଗୋରଡ଼ିଆର ଉଗ୍ରେଶ୍ୱରଙ୍କ ସେବା ପୂଜା ନିମିତ୍ତ ତଥା କପିଳାସ ଶିଖରେଶ୍ୱରଙ୍କୁ ଗ୍ରାମ ଦାନ କରି ସେ ଶୈବ ସଂସ୍କୃତିର ପ୍ରସାର ଘଟାଇଥିଲେ । ଏତଦ୍‌ଭିନ୍ନ, ରାମାଉତ ନାଗା ସନ୍ନ୍ୟାସୀଙ୍କୁ ଭୂମିଦାନ ପୂର୍ବକ ସେ ଏହି ମାଟିରେ ରାମାୟଣର ପ୍ରସାର କାମନା କରିଥିଲେ ।

ଲୋକନାଥଙ୍କ ରାଜତ୍ୱ ସମୟକୁ ଲୋକନାଥ ଚଇନୀଙ୍କ ମୃତ୍ୟୁ ଘଟିଥିଲା । ତାଙ୍କ ପରେ ତଦ୍ଵୀୟ ପୁତ୍ର ଅଲେଖ ଚୈନ ବଡ଼ପଣ୍ଡା ରାଜପୁରୋଧା କାର୍ଯ୍ୟ କରୁଥିଲେ । ସେହି ସମୟରେ ରାଜପୁରୋଧା ହଦଗଡ଼ଠାରେ ରହୁଥିଲେ । ଲୋକନାଥ ରାଜପୁରୋଧାଙ୍କୁ ହଦଗଡ଼ ସନ୍ନିକଟ ଜାମୁଝରା ଓ କୋତରାପଲ୍ଲୀ ଗ୍ରାମ ଦୁଇଟି ଦାନ କରିଥିଲେ । ଏହାବ୍ୟତୀତ ସେ ଢେଙ୍କାନାଳ ରାଜ ପ୍ରସାଦରେ ନିତ୍ୟ ନୈମିତ୍ତିକ ବୈଦିକ କର୍ମ ନିମିତ୍ତ ପ୍ରାଚୀନ ମାର୍ଥାପୁର ଶାସନରୁ ଜନୈକ କୌଶିକ ଗୋତ୍ରୀୟ ବ୍ରାହ୍ମଣଙ୍କୁ ପ୍ରସାଦ ସନ୍ନିକଟ ସ୍ଥାନରେ ଆଣି ରଖାଇଥିଲେ । ସେହି ସ୍ଥାନ ନଅର ନିକଟରେ ସଂପ୍ରତି ବଡ଼ପଣ୍ଡା ସାହି ଭାବରେ ପରିଚିହ୍ନିତ । ରାଜା ଲୋକନାଥ ପରମଧାର୍ମିକ ଥିଲେ । ଦେବତା, ସାଧୁ ସନ୍ଥ ଓ ବ୍ରାହ୍ମଣମାନଙ୍କ ପ୍ରତି ତାଙ୍କର ଅଗାଧ ଭକ୍ତି ରହିଥିଲା । ବଳଦେବଜୀଉଙ୍କ ଦର୍ଶନ ପ୍ରତ୍ୟହ ନକଲେ ସେ ଅନ୍ନଜଳ ସ୍ପର୍ଶ କରୁନଥିଲେ । ଢେଙ୍କାନାଳ ସହରର ବୃଦ୍ଧି ନିମିତ୍ତ ସେ ଅନେକ ଉଚ୍ଚବଂଶଜ କ୍ଷତ୍ରିୟ, ଖଣ୍ଡାୟତ ଓ ଅନ୍ୟାନ୍ୟ ସଂପ୍ରଦାୟର ବ୍ୟକ୍ତିମାନଙ୍କୁ ଏଠାରେ ଆଣି ରଖାଇ ସ୍ଥାୟୀ ବସବାସର ସୁବିଧା କରିଥିଲେ । ରାଜ ପ୍ରସାଦ ସ୍ଥିତ ବୃନ୍ଦାବନଜୀଉ ଓ ଇଷ୍ଟ ବଳଦେବଜୀଉଙ୍କ ସେବା ପୂଜା ନିମିତ୍ତ ସେ ସେବାୟତମାନଙ୍କୁ ଜାୟଗିରୀ ପ୍ରଦାନ କରି ରଖାଇଥିଲେ ।

ଲୋକନାଥଙ୍କ ରାଜତ୍ୱରେର ଢେଙ୍କାନାଳରେ ଜମିଜମାର ବନ୍ଦୋବସ୍ତ ହୋଇନଥିଲା । କେବଳ କୃଷକମାନଙ୍କ ଠାରୁ ହଳ ଅନୁପାତରେ ନିର୍ଦ୍ଦିଷ୍ଟ ରାଜସ୍ୱ ସର୍ବରାକାର ବା ପ୍ରଧାନମାନ ଆଦାୟ କରି ରାଜକୋଷରେ ପଇଠ କରୁଥିଲେ । ରାଜା ମଧ୍ୟ ପ୍ରଜାମାନଙ୍କୁ ଅନାବାଦୀ ଜମି ଆବାଦଯୋଗ୍ୟ କରିବାକୁ ପ୍ରୋତ୍ସାହନ

ଦେଇଥିଲେ । ଦେବତା, ବ୍ରାହ୍ମଣ ଓ ସୈନ୍ୟବାହିନୀରେ କାର୍ଯ୍ୟ କରୁଥିବା ପାଇକ ଓ ନଖଦଳମାନେ ନିଷ୍କର ଭୂସମ୍ପତ୍ତି ଭୋଗ କରୁଥିଲେ । ବିଭିନ୍ନ ଦୁର୍ଗରେ ମୁତୟନ ସୈନ୍ୟମାନଙ୍କୁ ମଧ୍ୟ ନିଷ୍କର ଜାୟଗିରୀ ପ୍ରଦାନ କରାଯାଇଥିଲା । ସେହି ସମୟରେ ଢେଙ୍କାନାଳରେ ମୁଦ୍ରାର ପ୍ରଚଳନ ନଥିଲା । ମୁଦ୍ରା ବଦଳରେ କଉଡ଼ି ବ୍ୟବହାର ହେଉଥିଲା ।

ବଳଭଦ୍ର ବୋଲିରେ ଉଲ୍ଲେଖ ରହିଛି ଯେ ରାଜା ଲୋକାନାଥ ମାତ୍ର ଏଗାର ବର୍ଷ ରାଜତ୍ୱ କରିଥିଲେ ।

ତାହାଙ୍କ ଉତ୍ତାରୁ ଲୋକନାଥ ଭ୍ରମରବର ଏ ପୃଥ୍ୱୀକି ପାଳି, ଏଗାର ବରଷ ଭୋଗକରି ଗଲେ ପରଳା ଲୋକ ସମ୍ଭାଳି କିନ୍ତୁ ଅନ୍ୟାନ୍ୟ ଅଭିଲେଖ ଅଧ୍ୟୟନରୁ ହୃଦ୍‌ବୋଧ ହୁଏ ସେ ୧୫୯୪ ଠାରୁ ୧୬୧୫ ପର୍ଯ୍ୟନ୍ତ ଏକୋଇଶି ବର୍ଷ ରାଜତ୍ୱ କରିଥିଲେ । ସତୁରୀ ବର୍ଷ ବୟସରେ ୧୬୧୫ ମସିହାରେ ଢେଙ୍କାନାଳର ଦ୍ୱିତୀୟ ରାଜା ଲୋକାନାଥ ଭ୍ରମରବର ପରଲୋକ ଗମନ କଲେ ।



# ରାଜା ବଳଭଦ୍ର ଓ ରାଜା ନୀଳାମ୍ବର

ରାଜା ଲୋକନାଥ ପ୍ରଭୁ ବଳଦେବଙ୍କର ପରମ ଭକ୍ତ ଥିଲେ ଏବଂ ତାହାଙ୍କ କୃପାରୁ ଯେଉଁ ପୁତ୍ର ଲାଭ କରିଥିଲେ ତାହାର ନାମ ବଳଭଦ୍ର ରଖିଥିଲେ । ୧୬୧୫ରେ ଲୋକନାଥ ପରଲୋକ ଗମନ କରିବାପରେ ରାଜକୁମାର ବଳଭଦ୍ର ରାୟସିଂହ ଭ୍ରମରବର ଉପାଧିରେ ଭୂଷିତ ହୋଇ ଢେଙ୍କାନାଳ ରାଜ ସିଂହାସନ ଆରୋହଣ କଲେ । ସେହି ସମୟରେ ଦିଲ୍ଲୀରେ ସମ୍ରାଟ୍ ଜାହାଙ୍ଗୀରଙ୍କ ରାଜତ୍ୱ ଏବଂ ଖୋର୍ଦ୍ଧାର ଗଜପତି ଥିଲେ ପୁରୁଷୋତ୍ତମ ଦେବ । ତତ୍‌ପୂର୍ବରୁ ୧୬୦୭ ଖ୍ରୀଷ୍ଟାବ୍ଦରୁ ଓଡ଼ିଶା ମୋଗଲ ସାମ୍ରାଜ୍ୟରେ ଏକ ସୁବା ଭାବରେ ପରିଗଣିତ ହୋଇଥିଲା । ହାସିମ୍ ଖାଁ ଓଡ଼ିଶାର ପ୍ରଥମ ସୁବାଦାର ରୂପେ ନିଯୁକ୍ତ ହୋଇ ପ୍ରଜାମାନଙ୍କୁ ଉତ୍ପୀଡ଼ନ କରୁଥିଲେ । କେତେକ ଜାୟଗିରୀ ଦାର ମୋଗଲ ସମ୍ରାଟ୍‌ଙ୍କ ଠାରୁ କିଛି ଅଞ୍ଚଳ ଜାୟଗିରୀ ସ୍ୱରୂପ ପାଇଥିଲେ । ତଦନୁରୂପ କୋଶୋଦାସ ନାମକ ଜୈନିକ ରାଜପୁତ ଓଡ଼ିଶା ସୁବା ଜାୟଗିରୀ ସ୍ୱରୂପ ପାଇ ପ୍ରଥମେ ଶ୍ରୀମନ୍ଦିର ଲୁଣ୍ଠନ କରିଥିଲେ । ଗଜପତି ପୁରୁଷୋତ୍ତମ ଦେବ ବହୁସୈନ୍ୟ ସହ ପ୍ରତିରୋଧ କରିଥିଲେ ହେଁ ପରାଜୟ ବରଣ କରିଥିଲେ । ଫଳରେ କେଶୋଦାସ ଶ୍ରୀମନ୍ଦିରରୁ ପ୍ରଚୁର ଧନ ସମ୍ପତ୍ତି ଲୁଟି ନେଇଥିଲେ । ତତ୍‌ପରେ ତୋଡ଼ରମଲ୍ଲଙ୍କ ପୁତ୍ର କଲ୍ୟାଣ ସିଂହ ଓଡ଼ିଶାର ସୁବାଦାର ହୋଇ ଆସିଲେ । ସେ ମଧ୍ୟ ଅର୍ଥ ପିପାସୁ ହୋଇ ଲୁଣ୍ଠନ ପଥ ଅନୁସରଣ କଲେ । ଓଡ଼ିଶାର ଏହି ଦୁର୍ଦ୍ଦିନ୍‌ରେ ରାଜା ବଳଭଦ୍ର ରାୟ ସିଂହ ଭ୍ରମରବର ଢେଙ୍କାନାଳ ଅଧିପତି ହୋଇଥିଲେ ।

ରାଜା ବଳଭଦ୍ର ମୋଗଲ ଆକ୍ରମଣ ଆଶଙ୍କାରେ ପ୍ରଥମେ ଢେଙ୍କାନାଳ ରାଜ୍ୟର ସୀମା ସୁରକ୍ଷା ପ୍ରତି ଦୃଷ୍ଟି ଦେଇଥିଲେ । ପଶ୍ଚିମାଞ୍ଚଳରେ ଅବସ୍ଥିତ ତାଳଚେର ରାଜା ଢେଙ୍କାନାଳ ଅଞ୍ଚଳ ପ୍ରତି ଲୋଲୁପ ଦୃଷ୍ଟି ପକାଇବାରୁ ରାଜା ବଳଭଦ୍ରର ତାଙ୍କ ସହିତ ଯୁଦ୍ଧର ସମ୍ମୁଖୀନ ହୋଇଥିଲେ । ୧୬୧୭ରେ ଏହି ଯୁଦ୍ଧ ବ୍ରାହ୍ମଣୀ ନଦୀ ତଟରେ ସଂଘଟିତ ହୋଇଥିଲା । ଯୁଦ୍ଧରେ ତାଳଚେର ରାଜା ପରାସ୍ତ ହୋଇ ବ୍ରାହ୍ମଣୀ ନଦୀର ଉତ୍ତର ପାର୍ଶ୍ୱରେ ଢେଙ୍କାନାଳର ଯେଉଁ ଅଞ୍ଚଳ ଅଧିକାର କରିଥିଲେ ତାହା ଛାଡ଼ିଦେଲେ । ପର ବା ଶତ୍ରୁ ଜୟରୁ ଏହି ଅଞ୍ଚଳ

ଲାଭ ହୋଇଥିବାରୁ ରାଜା ବଳଭଦ୍ର ଏହାକୁ ପରଜଙ୍ଗ ବିଷ ବା ପ୍ରଗଣା ନାମ ଦେଇ ଢେଙ୍କାନାଳ ରାଜ୍ୟ ଭୁକ୍ତ କଲେ । ପରଜଙ୍ଗଠାରେ ଗୋଟିଏ ଗଡ଼ ନିର୍ମାଣ ପୂର୍ବକ ସେଠାରେ ସୁଶିକ୍ଷିତ ସୈନ୍ୟବୃନ୍ଦଙ୍କୁ ଭବିଷ୍ୟତ ରକ୍ଷା ଉଦ୍ଦେଶ୍ୟରେ ମୁତୟନ କଲେ । ଏତଦ୍‌ଭିନ୍ନ ସମର ନିପୁଣ ପାଇକ ସୈନ୍ୟଙ୍କୁ ଜାୟଗିରୀ ପ୍ରଦାନ ପୂର୍ବକ ବ୍ରାହ୍ମଣୀ କୂଳରେ ବିଭିନ୍ନ ଗ୍ରାମରେ ବସବାସ କରାଇଲେ । ବିଜୟର ସ୍ମାରକ ସ୍ୱରୂପ ରାଜ୍ୟର ସୀମାନ୍ତ ବା ମୁଣ୍ଡରେ ସ୍ୱନାମରେ "ମୁଣ୍ଡଇଲୋ ବଳଭଦ୍ରପୁର" ନାମକ ବ୍ରାହ୍ମଣ ଶାସନ ବସାଇ ରାଜା ବଳଭଦ୍ର ସ୍ୱରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ପରଜଙ୍ଗ ଯୁଦ୍ଧରୁ ପ୍ରତ୍ୟାବର୍ତ୍ତନ ପରେ ରାଜା ବଳଭଦ୍ର ହଦଗଡ଼ ଅଞ୍ଚଳରେ ନିବାସ କରୁଥିବା ରାଜପୁରୋଧାଙ୍କ ସମେତ ଅନ୍ୟାନ୍ୟ ବେଦଜ୍ଞ ବ୍ରାହ୍ମଣଙ୍କୁ ନିଷ୍କର ଲାଖ ରାଜ ପ୍ରଦାନ କରି ନିଜିଗଡ଼ର ପଶ୍ଚିମରେ "ବଳଭଦ୍ରପୁର" ନାମକ ଶାସନ ବସାଇଲେ । ଏହି ନୂତନ ପ୍ରତିଷ୍ଠିତ ଶାସନର ମୁଖ୍ୟ ହେଲେ ରାଜପୁରୋଧା ଅଲେଖ ଚଇନୀ ବଡ଼ପଣ୍ଡା । ଏହାବ୍ୟତୀତ ସେ ନିଜ ଗଡ଼ ଓ ହଦଗଡ଼ ନିକଟରେ ନିଜ ନାମରେ ଦୁଇଗୋଟି ଗ୍ରାମ ବସାଇଥିଲେ, ଯାହାକି ଅଦ୍ୟାବଧି ବିଦ୍ୟମାନ । ରାଜପ୍ରସାଦ ସନ୍ନିକଟରେ ଥିବା ଗୋଡ଼ି ପୋଖରୀରୁ ବହୁ ପୂର୍ବେ ଶବରମାନେ ଖୋଳି ଥିଲେ । ରାଜା ବଳଭଦ୍ର ଏହି ପୋଖରୀର ଜୀର୍ଣ୍ଣ ସଂସ୍କାର ଓ ଚତୁଃପାର୍ଶ୍ୱ ହୁଡ଼ାଦେଇ ଏହାର ନାମ ବଳଭଦ୍ର ସାଗର ରଖିଲେ । ପୋଖରୀଟି ଅଦ୍ୟାବଧି ଜିଲ୍ଲାପାଳଙ୍କ ବାସଭବନ ସମ୍ମୁଖରେ ବିଦ୍ୟମାନ । ବୈଷ୍ଣବ ଭାବାପନ୍ନ, ରାଜା ବଳଭଦ୍ରଙ୍କ ସମୟରୁ ଏହି ପୋଖରୀରେ ଚନ୍ଦନ ଯାତ୍ରା ଓ ଚାପଖେଳ ହୋଇ ଆସୁଥିଲା । କିନ୍ତୁ ପରବର୍ତ୍ତୀକାଳରେ ଭାଗୀରଥ ସାଗର ଖୋଳା ହେବାରୁ ସେଠାରେ ଅନୁଷ୍ଠିତ ହେଲା । ସେ ମଧ୍ୟ ଇଷ୍ଟ ବଳଦେବଜୀଉଙ୍କ ଯାନିଯାତ୍ରା ପ୍ରଚଳନ କରିଥିଲେ । ତାଙ୍କ ରାଜତ୍ୱରେ ମୋଗଲମାନଙ୍କ ଉତ୍ପୀଡ଼ନ ସମ୍ଭାଳି ନପାରି ଅନେକ ବ୍ରାହ୍ମଣ ବୈଷ୍ଣବ ଓ ଉଚ୍ଚବଂଶଜ ଖଣ୍ଡାୟତ ମୋଗଲବନ୍ଦୀ ଅଞ୍ଚଳରୁ ଆସି ଢେଙ୍କାନାଳରେ ବସବାସ କଲେ ।

ରାଜା ବଳଭଦ୍ର ଢେଙ୍କାନାଳରେ ରାଜତ୍ୱ କରୁଥିବା ସମୟରେ ୧୬୧୭ ମସିହାରେ ମକ୍‌ରାମ୍ ଖାଁ ଓଡ଼ିଶାର ସୁବାଦାରର ହେଲେ । ସେ ଖୋର୍ଦ୍ଧା ରାଜ୍ୟ ପୁନର୍ବାର ଆକ୍ରମଣ କରିବାରୁ ଗଜପତି ପୁରୁଷୋତ୍ତମ ଦେବ ରାଜମାହେନ୍ଦ୍ରୀ ପଳାଇଲେ । ତାଙ୍କ ପୁତ୍ର ନରସିଂହ ଦେବ ମୋଗଲ ଶାସକଙ୍କ ଠାରୁ ସାମାନ୍ୟ

ଜମିଦାରୀର ପାଇ ଖୋର୍ଦ୍ଧାର ରାଜା ରହିଲେ । ମକ୍‌ରାମ ଖାଁଙ୍କ ପରେ ଇଲାଏର ଖାଁ ଏବଂ ୧୬୨୮ରେ ମିର୍ଜା ଅହମଦ୍ ବେଗ୍ ସୁବେଦାର ହୋଇ ଓଡ଼ିଶା ଆସିଲେ । ସମଗ୍ର ଓଡ଼ିଶାରେ ମୋଗଲ ଓ ଆଫଗାନ୍‌ମାନେ ଅତ୍ୟାଚାର କରିଥିଲେ ହେଁ ଢେଙ୍କାନାଳ ଅଞ୍ଚଳକୁ ସେମାନଙ୍କର ଅନୁପ୍ରବେଶ ଘଟିନଥିଲା । ଅଧିକନ୍ତୁ ସେହି ସମୟରେ। ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରଚାର ଘଟିଥିଲା ଏବଂ ବହୁ ବୈଷ୍ଣବ ସନ୍ନ୍ୟାସୀ ଢେଙ୍କାନାଳ ରାଜାଙ୍କ ଆଶ୍ରୟରେ କପିଳାସ ଓ ସପ୍ତଶଯ୍ୟା ଗିରିକନ୍ଦରରେ ବସବାସ କରିଥିଲେ । ୧୬୨୮ରେ ଶାହାଜାହାନ ଦିଲ୍ଲୀର ସମ୍ରାଟ୍ ହେଲେ ଏବଂ ବାକ୍‌ର ଖାଁଙ୍କୁ ଓଡ଼ିଶା ସୁବାଦାର ପଦବୀରେ ନିଯୁକ୍ତ କଲେ । ପୂର୍ବରୁ ଓଡ଼ିଶାର ଗଜପତି ନରସିଂହଦେବଙ୍କ ସହିତ ଶାହାଜାହାନଙ୍କର ବନ୍ଧୁତ୍ୱ ଥିବାରୁ କିୟତ୍‌କାଳ ନିମିତ୍ତ ଓଡ଼ିଶା ମୁସଲମାନ ଆକ୍ରମଣରୁ ରକ୍ଷା ପାଇଲା । ଏହାର କିଛି ବର୍ଷ ପରେ ୧୬୪୧ ମସିହାରେ ଢେଙ୍କାନାଳର ରାଜା ବଳଭଦ୍ର ରାୟସିଂହ ଭ୍ରମରବର ପରଲୋକ ଗମନ କଲେ ।

ରାଜା ବଳଭଦ୍ରଙ୍କ ଅନ୍ତେ ତଦ୍ଦୀୟ ପୁତ୍ର ରାଜାନୀଳାମ୍ବର ରାୟସିଂହ ଭ୍ରମରବର ୧୬୪୧ ରୁ ୧୬୮୦ ପର୍ଯ୍ୟନ୍ତର ଢେଙ୍କାନାଳ ଅଧିପତି ହୋଇଥିଲେ । ତତ୍‌ପୂର୍ବରୁ ୧୬୩୩ ମସିହାରୁ ଇଂରେଜ ବଣିକମାନେ ଓଡ଼ିଶା ଉପକୂଳରେ ବାଣିଜ୍ୟ କରବାର ଅନୁମତି ମୋଗଲ ସମ୍ରାଟ୍ ସାହାଜାହାନ୍ ଏବଂ ଓଡ଼ିଶା ସୁବେଦାରଙ୍କ ଠାରୁ ପାଇଥିଲେ । ସେତେବେଳେ ଓଡ଼ିଶାର ଗଜପତି ଥିଲେ ବଳଭଦ୍ରଦେବ ଠିକ୍ ସେହି ସମୟରେ ୧୬୫୦ ଖ୍ରୀଷ୍ଟାବ୍ଦରେ ଆଉରଙ୍ଗଜେବ ବଳ ପୂର୍ବକ ଦିଲ୍ଲୀ ସିଂହାସନ ଅଧିକାର କରିନେଲେ । ଫଳରେ ଓଡ଼ିଶାରେ ପ୍ରାୟ ତିନିବର୍ଷ ପର୍ଯ୍ୟନ୍ତ କୌଣସି ଭୂମ୍ୟାଧିକାରୀ ମୋଗଲ ଶାସନକୁ ସ୍ୱୀକାର କରିନଥିଲେ । ଓଡ଼ିଶାର ଏହି ଦୁର୍ଦ୍ଦିନରେ ରାଜା ନୀଳାମ୍ବର ଢେଙ୍କାନାଳ ଅଧିପତି ଥିଲେ । ସେ ଢେଙ୍କାନାଳ ରାଜ୍ୟରେ ମୋଗଲ ବା ଇଂରେଜ କାହାକୁ ପ୍ରବେଶ କରାଇ ଦେଇ ନଥିଲେ । ଚତୁରତାର ସହିତ ସେ ଦୀର୍ଘ କାଳ ରାଜତ୍ୱ କରିଥିଲେ ହେଁ ରାଜ୍ୟରେ କୌଣସି ବିଶୃଙ୍ଖଳା ସୃଷ୍ଟି ହୋଇ ନଥିଲା । ଏହି ପରିପ୍ରେକ୍ଷୀରେ ସେ ଢେଙ୍କାନାଳର ପୂର୍ବାଞ୍ଚଳ ଓ ପଶ୍ଚିମାଞ୍ଚଳ ଉଭୟଦିଗସ୍ଥିତ ଦୁର୍ଗରେ ଆବଶ୍ୟକୀୟ ସୈନ୍ୟବାହିନୀ ସଜାଗ ରଖିଥିଲେ । ଏତଦ୍‌ଭିନ୍ନ ଜାୟଗିରୀ ପାଇକମାନେ ଯୁଦ୍ଧ ନିମିତ୍ତ ପ୍ରସ୍ତୁତ ଥିଲେ । ସୁଦକ୍ଷ ରାଜା ନୀଳାମ୍ବର ଯୁଦ୍ଧ ବିଗ୍ରହ ଦ୍ୱାରା ରାଜ୍ୟର ପରିସୀମା ବୃଦ୍ଧିରୁ କ୍ଷାନ୍ତ ହୋଇ ଆଭ୍ୟନ୍ତରୀଣ ଶୃଙ୍ଖଳା ଓ ସୀମା

ସୁରକ୍ଷା ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଇଥିଲେ । ତାଙ୍କ ରାଜତ୍ୱରେ ଢେଙ୍କାନାଳର ବିଶାଳ ସେନାବାହିନୀ ରହିଥିଲା । ସୈନ୍ୟମାନଙ୍କ ମଧ୍ୟରେ ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ ନାଗା ତଥା ତେଲଙ୍ଗା ସୈନ୍ୟ ସମର ନିପୁଣ ଥିଲେ । ସେମାନେ ଭୀମନଗରୀ, ହଦଗଡ଼, କରମୂଳ, ନୂଆଗଡ଼, ଡମରାଜା କଟକ, ଗୋବିନ୍ଦପୁର ପ୍ରଭୃତି ଦୁର୍ଗରେ ରହି ବାହ୍ୟ ଶତ୍ରୁ ଆକ୍ରମଣ ପ୍ରତିରୋଧ କରୁଥିଲେ ।

ପୁରୀ ଅଞ୍ଚଳରୁ କେତେକ ଶ୍ରୋତ୍ରିୟ ବ୍ରାହ୍ମଣ ମୁସଲମାନ ଅତ୍ୟାଚାରରେ ଅତିଷ୍ଠ ହୋଇ ରାଜା ନୀଳାମ୍ବରଙ୍କର ଆଶ୍ରୟ ପ୍ରାର୍ଥୀ ହୋଇଥିଲେ । ରାଜା ନୀଳାମ୍ବରା ସେମାନଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ ପୂର୍ବକ ସ୍ୱରାଜଧାନୀରେ ପଶ୍ଚିମରେ ପ୍ରାୟ ଦଶ କି.ମି. ଦୂରରେ ନୀଳାମ୍ବର ପୁର ନାମକ ଶାସନ ପ୍ରତିଷ୍ଠା କରି ନିଷ୍କର ଲାଖରାଜ ସନନ୍ଦ୍ ପ୍ରଦାନ କରିଥିଲେ । ରାଜା ନୀଳାମ୍ବର ଥିଲେ ନୃସିଂହଙ୍କର ପରମ ଭକ୍ତ । ସେ ସ୍ୱୀୟ ରାଜଗୁରୁଙ୍କ ନିର୍ଦ୍ଦେଶ କ୍ରମେ କନ୍ତିଓ ଢେଙ୍କାନାଳ ଠାରେ ଦୁଇଗୋଟି ଲକ୍ଷ୍ମୀ ନୃସିଂହ ମଠ ସ୍ଥାପନା ପୂର୍ବକ ଗୁରୁଙ୍କ ସମର୍ପଣ କରିଥିଲେ । ଏହ ଢେଙ୍କାନାଳର ରାଜଗୁରୁବାଦୀ ନାମେ ଅଭିହିତ ।

ସେହି ସମୟରେ ପ୍ରାଚୀନ ଭ୍ରମ୍ଭ ରାଜଧାନୀ ଓ ଅଷ୍ଟଶମ୍ଭୁର ପୀଠ କୁଆଁଲୋ ବା କୋଦଳକ ନଗରୀ ଢେଙ୍କାନାଳ ରାଜ୍ୟର ପରଜଙ୍ଗ ବିଷ ଅନ୍ତର୍ଭୁକ୍ତ ଥିଲା । ଅଷ୍ଟଶମ୍ଭୁ ମନ୍ଦିର ନିକଟରେ ଭ୍ରମ୍ଭ ବଂଶର ରାଜ ପ୍ରସାଦ ଏହି ସମୟରେ ପତନୋନ୍ମୁଖୀ ହୋଇଥିଲା ବୋଲି ଜଣାଯାଏ । ମନ୍ଦିର ସମୂହ ମଧ ଏହି ସମୟରୁ ଭାଙ୍ଗିବା ଆରମ୍ଭ ହେଲା ବୋଲି ଅନୁମିତ ହୁଏ । କିନ୍ତୁ ସେ ସଂପର୍କରେ କୌଣସି ନିର୍ଦ୍ଦିଷ୍ଟ ଅଭିଲେଖ ନାହିଁ । କେବଳ କପିଳାସ ପୀଠ ଢେଙ୍କାନାଳ ରାଜାଙ୍କ ଦ୍ୱାରା ପରିଚାଳିତ ହେଉଥିଲା ବୋଲି ଜଣାଯାଏ । ଏହା ସତ୍ୟ ଯେ, ସେହି ସମୟରେ ପ୍ରାଚୀନ ଶୈବପୀଠ କୁଆଁଲୋ ଓ ନାଗନା ଅବସ୍ଥିତ ଥିଲା । ହୃଦ୍‌ବୋଧ ହୁଏ, ନୀଳାମ୍ବର କପିଳାସ ପୀଠ ସହିତ ନାଗନା ଓ କୁଆଁଲୋ ପୀଠର ପରିଚାଳନାର ସୁବନ୍ଦୋବସ୍ତ କରିଥିଲେ । ଅର୍ଥାତ୍, ନୀଳାମ୍ବର ବୈଦିକ ଓ ବୈଷ୍ଣବ ଧର୍ମ ସହିତ ଶୈବ ଧର୍ମ ଅନୁରାଗୀ ମଧ ଥିଲେ । ତାଙ୍କ ଦ୍ୱାରା ଢେଙ୍କାନାଳ ଅଞ୍ଚଳରେ ବହୁ ଶିବଲିଙ୍ଗ ପ୍ରତିଷ୍ଠା ହୋଇଥିଲା ବୋଲି ଜନଶ୍ରୁତି ରହିଅଛି । ଏତଦ୍‌ଭିନ୍ନ ପୂର୍ବରୁ ପ୍ରତିଷ୍ଠିତ ବ୍ରାହ୍ମଣୀ ଅବବାହିକାରେ ଅନ୍ୟାନ୍ୟ ଶୈବପୀଠର ସେବା ପୂଜା ନିମିତ୍ତ ରାଜା ନୀଳାମ୍ବର ପ୍ରଯତ୍ନଶୀଳ ଥିଲେ । ପ୍ରମାଣିତ ହୁଏ, ରାଜା ନୀଳାମ୍ବରଙ୍କ

ରାଜତ୍ୱରେ ଢେଙ୍କାନାଳ ଭୂଖଣ୍ଡରେ ସମନ୍ୱୟାତ୍ମକ ସଂସ୍କୃତିର ଭୂୟୋବିକବା ଘଟିଥିଲା ।

ରାଜ ନୀଳାମ୍ବରଙ୍କ ରାଜତ୍ୱରେ ଓଡ଼ିଶାର ରାଜନୈତିକ ବାତାବରଣ ଅନିଶ୍ଚିତ ଥିଲା । ୧୬୫୭ରେ ଦିଲ୍ଲୀ ସମ୍ରାଟ୍ ଶାହାଜାହାନ୍‌ଙ୍କର ଅନ୍ୟତମ ପୁତ୍ର ବଙ୍ଗ, ବିହାର, ଓଡ଼ିଶାର ଶାସକ ହୋଇଥିଲେ ହେଁ ୧୬୫୮ରେ ଆଉରଙ୍ଗଜେବ ବଳ ପୂର୍ବକ ଦିଲ୍ଲୀ ସିଂହାସନ ଆରୋହଣ କରିଥିଲେ । ତେଣୁ ରାଜା ନୀଳାମ୍ବର ଖୁବ୍ ସତର୍କତାର ସହିତ ଶାସନ କାର୍ଯ୍ୟ ନିର୍ବାହ କରି ଧର୍ମ ଓ ସଂସ୍କୃତିର ସୁରକ୍ଷା ପ୍ରତି ବିଶେଷ ଦୃଷ୍ଟି ଦେଇଥିଲେ । ବିର୍ଧମୀବୃନ୍ଦ ଢେଙ୍କାନାଳକୁ ପ୍ରବେଶ କରାଇ ନଦେବା ଉଦ୍ଦେଶ୍ୟରେ ସେ ପ୍ରତିବେଶୀ ରାଜା ଓ ଜମିଦାରଙ୍କ ସହିତ ଶତ୍ରୁତା ନରଖି ବନ୍ଧୁତ୍ୱ ରଖିଥିଲେ । ରାଜ୍ୟ ମଧ୍ୟରେ ହଦଗଡ଼ରେ ପ୍ରତିଷ୍ଠିତ ସାମନ୍ତ ବଂଶର ବଳରାମ ସାମନ୍ତଙ୍କ ସହିତ ତାଙ୍କର ଆତ୍ମୀୟତା ଥିଲା । ତାଙ୍କରି ସାହାଯ୍ୟରେ ସେ ଢେଙ୍କାନାଳ ସେନାବାହିନୀକୁ ସୁଦୃଢ଼ କରିଥିଲେ । ୧୬୫୯ରେ ମୁକୁନ୍ଦଦେବ ଖୋର୍ଦ୍ଧାର ଗଜପତି ଆସନ ଅଳଙ୍କୃତ କରିବାପରେ ଢେଙ୍କାନାଳ ରାଜା ନୀଳାମ୍ବରଙ୍କ ସହିତ ମିତ୍ରତା ସ୍ଥାପନ କରିଥିଲେ । ସେହି ସମୟରେ ମୟୂରଭଞ୍ଜ ଓ କେନ୍ଦୁଝର ରାଜ୍ୟ ପ୍ରତି ମୋଗଲମାନଙ୍କର ଲୋଲୁପ ଦୃଷ୍ଟି ପଡ଼ିଥିବା ପ୍ରସଙ୍ଗ ଇତିହାସରେ ଉଲ୍ଲେଖ ଥିଲେ ହେଁ ଢେଙ୍କାନାଳ ସ୍ୱାଧୀନ ରହିଥିଲା । ପରିଶେଷରେ ୧୬୮୦ ମସିହାରେ ଢେଙ୍କାନାଳାଧୀଶ୍ୱର ରାଜା ନୀଳାମ୍ବର ସ୍ୱର୍ଗାରୋହଣ କରିଥିଲେ ।



# ରାଜା ନୃସିଂହ ଭ୍ରମରବର

ଢେଙ୍କାନାଳର ପଞ୍ଚମ ନରପତି ରାଜା ନୃସିଂହ ଭ୍ରମରବର ୧୬୮୦ ମସିହାରେ ସିଂହାସନ ଆରୋହଣ କଲେ । ସେ ଥିଲେ ପରମ ବୈଷ୍ଣବ ଓ ପ୍ରବଳ ପ୍ରତାପୀ । ସେହି ସମୟରେ ଖୋର୍ଦ୍ଧାର ଗଜପତି ଥିଲେ ମୁକୁନ୍ଦଦେବ ତଥା ଓଡ଼ିଶାର ମୋଗଲ ଓ ଆଫଗାନମାନଙ୍କ ସଂଘର୍ଷ ଅବ୍ୟାହତ ରହିଥିଲା । ତେଣୁ ରାଜ ନୃସିଂହ ପ୍ରଥମେ ନିଜର ସୈନ୍ୟବାହିନୀଙ୍କୁ ସୁଦୃଢ଼ କରିଥିଲେ । ସେ ଅନେକ ରାମାଉତ ନାଗାସୈନ୍ୟଙ୍କୁ ସୈନ୍ୟବାହିନୀରେ ନିଯୁକ୍ତି ଦେଲେ ।

ବଳଭଦ୍ର ବୋଲିରେ ରାଜା ନୃସିଂହ ଜଣେ ପରମଭକ୍ତ ତଥା ବଳରାମ ମନ୍ଦିରର ନିର୍ମାତା ଭାବରେ ଚିତ୍ରଣ କରାଯାଇଛି ।

''ନୃସିଂହ ଭ୍ରମରବର ରାୟ ଏଥି ଚବିଶ ବରଷ ହେଲେ,
ତାଙ୍କ ସମୟରେ ଶ୍ରୀ ବଳଭଦ୍ରଙ୍କ ଦେଉଳ ନିର୍ମାଣ କଲେ ।
ପ୍ରତିଷ୍ଠା କରାଇ ମହୋତ୍ସବ କଲେ ପ୍ରଭୁଙ୍କୁ କରାଇ ବିଜେ,
ରାତ୍ର ଦିବସେ କୃଷ୍ଣ ରସେ ଭାବନା ଆନ ନ ଜାଣନ୍ତି ସେ ଯେ ।''

ତାଙ୍କ ପୂର୍ବରୁ ଢେଙ୍କାନାଳର ପ୍ରଥମ ରାଜା ହରି ବିଦ୍ୟାଧରଙ୍କ ରାଜତ୍ୱରୁ ବଳରାମ ମନ୍ଦିର ନିର୍ମାଣ ଆରମ୍ଭ ହୋଇଥିଲେ ହେଁ ପରବର୍ତ୍ତୀ ରାଜନ୍ୟବୃନ୍ଦ ଯୁଦ୍ଧରେ ବ୍ୟାପୃତ ରହି ସଂପୂର୍ଣ୍ଣ କରିପାରି ନଥିଲେ । ବିଷ୍ଣୁ ଭକ୍ତ ରାଜା ନୃସିଂହ ଶ୍ରୀବତ୍ସ ଖଣ୍ଡାଶାଳ ରୀତିରେ ଏହି ମନ୍ଦିରର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ କଲେ । ୧୬୮୨ ଖ୍ରୀଷ୍ଟାବ୍ଦରେ ଏହି ମନ୍ଦିରର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହେଲା ତଥା ସେହି ବର୍ଷ ପବିତ୍ର ଅକ୍ଷୟ ତୃତୀୟା ତିଥିରେ ରାଜା ନୃସିଂହ ରାୟସିଂହ ଭ୍ରମରବର ମହୋତ୍ସବ କରି ବୈଦିକ ବିଧାନରେ ମନ୍ଦିର ପ୍ରତିଷ୍ଠା ପୂର୍ବକ ଠାକୁରଙ୍କୁ ମଣ୍ଡପରୁ ନେଇ ରତ୍ନ ସିଂହାସନରେ ବିଜେ କରାଇଲେ । ରାଜ ନୃସିଂହ ବଳଭଦ୍ରଙ୍କ ସେବା ପୂଜା ନିମିତ୍ତ ବଳରାମପୁର ବିଷର ବିଦାବନ୍ଧ ଓ କୁଳବାଣିଆ ବିଷର ରଣପଶି ନାମକ ଦୁଇଗୋଟି ରଜସ୍ୱ ଗ୍ରାମ ଦାନ କରିଥିଲେ ।

ଢେଙ୍କାନାଳ ନଗରରେ ବଳଭଦ୍ରଙ୍କ ମନ୍ଦିରର ପ୍ରତିଷ୍ଠା ହେବାପରେ ନଗରର ମହିମା ବୃଦ୍ଧି ପାଇଲା ତଥା ବିଭିନ୍ନ ସ୍ଥାନରୁ ସାଧୁସନ୍ଥ ବୈଷ୍ଣବ ଓ ଭକ୍ତ ଢେଙ୍କାନାଳ ଆଗମନ କଲେ । ସେହି ସମୟରେ ଢେଙ୍କାନାଳକୁ ଆସିଥିବା ପ୍ରମୁଖ

ଭକ୍ତଙ୍କ ମଧ୍ୟରେ ଭକ୍ତକବି ଦୀନକୃଷ୍ଣ ଦାସ ଅନ୍ୟତମ । ତାଙ୍କର ଜନ୍ମସ୍ଥାନ ସୁବର୍ଣ୍ଣରେଖା ନଦୀତଟର ଆଠଦେଣ୍ଡ ପାଟ ଏବଂ ତାଙ୍କ ପିତାଙ୍କ ନାମ ମଧୁସୂଦନ । ସେ ପ୍ରାଥମିକ ଅବସ୍ଥାରେ ପୁରୀରେ ନିବାସ କରିଥିଲେ ଏବଂ ପରବର୍ତ୍ତୀକାଳରେ ଢେଙ୍କାନାଳ ରାଜ୍ୟାନ୍ତର୍ଗତ ହଦଗଡ଼ ସାମନ୍ତଙ୍କ ଅଧୀନସ୍ଥ ଭୀମନଗରୀ ଦଣ୍ଡପାଟ ପୂର୍ବଦିଗରେ ଥିବା ଏକ ଘରିଆ ଗ୍ରାମରେ ୧୬୫୦ ମସିହାରେ ଆସି ନିବାସ କଲେ । ସେଠାରେ ସେ ରସବିନୋଦ ରଚନା କରିଥିଲେ । ଏହି ଗ୍ରନ୍ଥରେ ସେ ଢେଙ୍କାନାଳ ନିବାସ ତଥା ହଦଗଡ଼ ସାମନ୍ତଙ୍କ ବଦାନ୍ୟତା ଉଲ୍ଲେଖ କରିଛନ୍ତି ।

''ଏ ଗ୍ରନ୍ଥ ଯୋଡ଼ିବାର ବେଳେ, ଘର ବ୍ରାହ୍ମଣୀ ନଦୀ କୂଳେ ।
କନକେଶ୍ୱର ଲିଙ୍ଗ ପାଶ, ଏକ ଘରିଆ ନାମ ଦେଶ ।
ତହିଁ ମୋହର ନିଜ ସ୍ଥିତି, କରୁଣା କଲେ ଲକ୍ଷ୍ମୀର ପତି ।
ତେଣୁ ସେଯୋଡ଼ିଲେ ଏ ପଦ, ବିଷୟା ବିଷୟକୁ ଗଦ ।
× × ×
ସେ ରାଜା ପାଞ୍ଚଅଙ୍କ ଠାରେ, ଥିଲା ବ୍ରାହ୍ମଣୀ ନଦୀ ତୀରେ ।
ସେ ଭୀମନଗ୍ରୀ ଦଣ୍ଡ ପାଟ, ସେଠାରୁ ଚାରିକୋଶ ବାଟ ।
ସେ ହଦଗଡ଼ କରି ଘର, ପୁରୁଷୋତ୍ତମ ବିଦ୍ୟାଧର ।
ତାହାଙ୍କ ପୁତ୍ର ଅନୁପମ, ଯୁକତେ ନୀଳକଣ୍ଠ ନାମ ।
ଏ କିଛିଦିନ ରାଜ୍ୟ କଲେ, ବୈକୁଣ୍ଠ ଭୁବନକୁ ଗଲେ ।
ତାହାଙ୍କ ପୁତ୍ର ଅନୁପମ, ସାମନ୍ତ ସଦାଶିବ ନାମ ।
ଧର୍ମ କୀରତିମାନ କଲେ, ସରଗ ଭୁବନରୁ ଗଲେ ।
ତାହାଙ୍କ ପୁତ୍ର ଅନୁପମ, ଯୁକତେ ବଳରାମ ନାମ ।
ପଦ ଯେ ସାମନ୍ତ ସିଂହାର, ବାସନା ଅତି ଅଗୋଚର ।
ଯାହାଙ୍କୁ ମୋର ପ୍ରତି ଆଶା, ତେଣୁଟି କହିଲି ଏକ ଭାଷା ।
ଯାହା ଅନ୍ନ ବସ୍ତ୍ର ଖାଇ, ତାହାର ଗୁଣ ଗାଇଥାଇ ।''

ଉପରୋକ୍ତ ପଦରୁ ଉପଲବ୍ଧ ହେଉଛି ହଦଗଡ଼ର ଶେଷ ସାମନ୍ତ ବଳରାମଙ୍କ ଅନ୍ନବସ୍ତ୍ରରେ ପ୍ରତିପାଳିତ ହୋଇ କବି ଦୀନକୃଷ୍ଣ ଭୀମନଗରୀ ସନ୍ନିକଟ ଏକ ଘରିଆ ଗ୍ରାମରେ ନିବାସ କରିଥିଲେ । ଅନେକ ଗବେଷକ ଭ୍ରମବଶତଃ ଭୀମନଗରୀକୁ ଖୋର୍ଦ୍ଧା ସନ୍ନିକଟ ବୋଲି ବିଚାର କରିଛନ୍ତି । ପ୍ରକୃତ ପକ୍ଷେ ରସକଲ୍ଲୋଳ ଓ ରସବିନୋଦର ରଚୟିତା ଦୀନକୃଷ୍ଣ ଏକ ତଥା ଅଭିନ୍ନ

ଏବଂ ସେ କିଛିକାଳ ଏକ ଘରିଆରେ ନିବାସ ପୂର୍ବକ ରସବିନୋଦ ରଚନା କରିଥିଲେ । ହଦଗଡ଼ର ବଳରାମ ସାମନ୍ତ ମଧ୍ୟ ଜଣେ ବୈଷ୍ଣବ କବି ଥିଲେ । ସେ ମଧୁପ ଚଉତିଶା ଓ ଅନେକ ଭଜନ ଜଣାଣ ରଚନା କରିଛନ୍ତି । ତାଙ୍କ ପିତା ସଦାଶିବ ସାମନ୍ତ ବ୍ରାହ୍ମଣୀ ଦକ୍ଷିଣ ପାର୍ଶ୍ୱରେ ସଦାଶିବପୁର ନାମରେ ବ୍ରାହ୍ମଣ ଶାସନ ବସାଇ ଥିଲେ । ବଳରାମ ସାମନ୍ତ ସେହି ବଂଶର ଶେଷ ସାମନ୍ତ । ତାଙ୍କ ପରେ ହଦଗଡ଼ ରାଜ୍ୟ ଢେଙ୍କାନାଳ ରାଜ୍ୟ ଅନ୍ତର୍ଭୁକ୍ତ ହୋଇ ପାରିମାଳ ପ୍ରଗଣା ନାମରେ ନାମିତ ହେଲା । ଅନୁମିତ ହୁଏ, ବଳରାମ ସାମନ୍ତ ଢେଙ୍କାନାଳ ରାଜା ନୃସିଂହଙ୍କର ସମସାମୟିକ । ସେ ମଧ୍ୟ ଜଣେ ସୁକବି ଥିଲେ ତଥା 'ଦଶ ବୋଲି' ନାମକ ଏକ ବୈଷ୍ଣବ କାବ୍ୟ ରଚନା କରିଥିଲେ । ଏହା ଓଡ଼ିଶାର ପ୍ରଥମ ବୋଲି ସାହିତ୍ୟ ଏହା ଏକ କୃଷ୍ଣ ରସାତ୍ମକ କାବ୍ୟ ତଥା ଅଦ୍ୟାବଧି ଅପ୍ରକାଶିତ ।

''ସିଂହ ବିଦ୍ୟାଧର କୁଳ ସିନ୍ଧୁ ଚନ୍ଦ୍ର,
ଢେଙ୍କାନାଳ ନଗର ଅବନୀ ଇନ୍ଦ୍ର ।
ନରସିଂହ ଭ୍ରମରବର ମନ,
କୃଷ୍ଣ ବାହାରେ ଆଉ ନଜାଣେ ଆନ ।
କୃଷ୍ଣ ଚରଣେ ଯେଣୁ ରହିଲା ଚିତ୍ତ,
ସେହି ବିଷୟେ ଆରମ୍ଭ କଲି ଗୀତ ।
× × ×
ନନ୍ଦନନ୍ଦନ ଚରଣ ସରସିଜେ,
ନୃପ ନୃସିଂହ ଭ୍ରମରବର ବିଜେ ।''

ନୃସିଂହ ଭ୍ରମରବରଙ୍କ ରାଜତ୍ୱ ସମୟରେ ରାମିଆଳ ନଦୀ ଢେଙ୍କାନାଳ ରାଜ୍ୟର ଉତ୍ତର ସୀମା ରହିଥିଲା । ସୁକିନ୍ଦା ରାଜ୍ୟରେ କେତେକ ଖଣ୍ଡ ବ୍ରାହ୍ମଣ ରାମିଆଳ ନଦୀର ଉତ୍ତରପାର୍ଶ୍ୱରେ ଗୁପ୍ତରେ ନିବାସ ପୂର୍ବକ ଢେଙ୍କାନାଳ ପ୍ରଜାଙ୍କ ଧନ ସମ୍ପତ୍ତି ଚୋରି କରୁଥିଲେ । ଏହା ସୁକିନ୍ଦା ରାଜାଙ୍କ ଗୋଚରରେ ହେଉଥିବା ଜାଣି ରାଜା ନୃସିଂହ ପୁରୀ ଜଗନ୍ନାଥବଲ୍ଲଭ ମଠର ଯମୁନା ଦାସ ନାମକ ଜନୈକ ସନ୍ନ୍ୟାସୀଙ୍କୁ ଗୁପ୍ତଚର ଭାବରେ ସତ୍ୟାସତ୍ୟ ଅନୁସନ୍ଧାନ ନିମିତ୍ତ ପଠାଇଲେ । ଯମୁନା ଦାସ ଭିକ୍ଷା ଛଳରେ ଯାଇ ଖଣ୍ଡ ବ୍ରାହ୍ମଣମାନଙ୍କ ବାସସ୍ଥଳୀ ଠାବ କଲେ । ସେହି ସ୍ଥାନ ସଂପ୍ରତି ବ୍ରାହ୍ମଣ ଖଣ୍ଡ ଖୋଲ ନାମରେ ରାଜସ୍ୱ ରେକର୍ଡ଼ରେ ପରିଚିହ୍ନିତ । ତତ୍ପରେ ରାଜା ନୃସିଂହ ସୁକିନ୍ଦା ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା

କଲେ । ରାମିଆଳ ନଦୀର ଉତ୍ତର ପାର୍ଶ୍ୱରେ ୧୬୯୦ ମସିହାରେ ଏହି ଯୁଦ୍ଧ ସଂଘଟିତ ହୋଇଥିଲା । ଯୁଦ୍ଧରେ ସୁକିନ୍ଦା ସୈନ୍ୟ ପରାସ୍ତ ହୋଇ ପଳାୟନ କଲେ । ଢେଙ୍କାନାଳ ସୈନ୍ୟ ସେମାନଙ୍କର ପଶ୍ଚାଧାବନ କରି ଖଣ୍ଡ ବ୍ରାହ୍ମଣମାନଙ୍କ ନିବାସସ୍ଥଳୀ ପର୍ଯ୍ୟନ୍ତ ଅଗ୍ରସର ହେଲେ । ସେଠାରେ ସେ ଖଣ୍ଡ ବ୍ରାହ୍ମଣମାନଙ୍କୁ ବିନାଶ ପୂର୍ବକ ଏହି ସ୍ଥାନକୁ ମାର୍ଥାପୁର ଶାସନ ବ୍ରାହ୍ମଣଙ୍କୁ ନିଷ୍କର ଲାଖରାଜ ଭାବରେ ପ୍ରଦାନ କଲେ । ତାହା ନିକଟରେ ଥିବା ସୁକିନ୍ଦା ରାଜାଙ୍କ ଦୁର୍ଗକୁ ବିଧ୍ୱଂସ୍ତ କରି ନିଜର ସୁରକ୍ଷିତ ସୈନ୍ୟବାହିନୀକୁ ମୁତୟନ ପୂର୍ବକ ''ନୃସିଂହ ପ୍ରସାଦ'' ନାମରେ ଗଡ଼ ବସାଇଲେ । ଏହି ଅଧିକୃତ ଅଞ୍ଚଳ ''ନୃସିଂହ ପ୍ରସାଦ'' ପ୍ରଗଣା ନାମରେ ଢେଙ୍କାନାଳ ରାଜ୍ୟ ଅନ୍ତର୍ଭୁକ୍ତ ହେଲା । ରାଜା ସେହି ଅଞ୍ଚଳରେ ଓଡ଼ିଶା, ଧଳପଡ଼ା, ବାଲିଖିଟୀ ପ୍ରଭୃତି ଗ୍ରାମରେ ପାଇକମାନଙ୍କୁ ଜାୟଗିରୀ ପ୍ରଦାନ କରି ସ୍ଥାୟୀ ଭାବରେ ରଖାଇଲେ । ଯୁଦ୍ଧର ସ୍ମାରକୀ ସ୍ୱରୂପ ସେ ରାମିଆଳ ନଦୀର ଉତ୍ତର ପାର୍ଶ୍ୱରେର ନିଜନାମରେ ''ନୃସିଂହପୁର'' ବ୍ରାହ୍ମଣ ଶାସନ ବସାଇଲେ ତଥା ଜଗନ୍ନାଥବଲ୍ଲଭ ମଠାର ବାବାଜୀ ଯମୁନା ଦାସଙ୍କୁ ଯୁମୁନାକୋଟ ଗ୍ରାମ ପ୍ରଦାନ କଲେ । ବର୍ତ୍ତମାନ ମଧ ଏହି ଗ୍ରାମଟି ଜଗନ୍ନାଥବଲ୍ଲଭ ମଠାଧୀନ ରହିଛି । ଏହାପରେ ଢେଙ୍କାନାଳ ସୈନ୍ୟ ପୂର୍ବଦିଗରୁ ଅଗ୍ରସର ହୋଇ ଅନନ୍ତ ପୁର ପର୍ଯ୍ୟନ୍ତ ଅଧିକାରକଲେ ତଥା ଏହି ନବାଧିକୃତ ଅଞ୍ଚଳ ଗଁପୁର ବିଷ ନାମରେ ପରିଚିହ୍ନିତ ହେଲା । ସେଠାରେ ଗଁପୁର ନାମରେ ଏକ ଗଡ଼ ବସାଇ ସୀମା ସୁରକ୍ଷା ନିମିତ୍ତ ପାଇକ ଓ ଖଣ୍ଡାୟତମାନଙ୍କୁ ରଖାଇଲେ । ରାଜା ନୃସିଂହ ପ୍ରସାଦ ବିଷର ଖୋକସା ମଠ ଓ ଗଁପୁର ବିଷର ବାଲିବୋ ମଠାର ସେବା ପୂଜା ନିମିତ୍ତ ପ୍ରଚୁର ଭୂସମ୍ପତ୍ତି ଦାନ କରିଥିଲେ । ସଂପ୍ରତି ସେହି ମଠ ଦୁଇଗୋଟି ଦେବୋତ୍ତର ବିଭାଗ ଦ୍ୱାରା ପରିଚାଳିତ ।

ସୁକିନ୍ଦା ଯୁଦ୍ଧରେ ଜୟଲାଭ ତଥା ଦୁଇଗୋଟି ପ୍ରଗଣା ଅଧିକାର କରିବାପରେ ରାଜା ନୃସିଂହ ବ୍ରାହ୍ମଣୀ ତଟସ୍ଥ ହଦଗଡ଼ ଦୁର୍ଗରେ କିଛିକାଳ ଅବସ୍ଥାନ କରିଥିଲେ । ସେତେବେଳକୁ ବଳରାମ ସାମନ୍ତଙ୍କର ଦେହାନ୍ତ ହୋଇଯାଇଥିଲା । ସେ ନିଃସନ୍ତାନ ଥିବାରୁ ହଦଗଡ଼ ମଣ୍ଡଳ ଢେଙ୍କାନାଳ ରାଜ୍ୟଭୁକ୍ତ ହୋଇଥିଲା । ରାଜା ନୃସିଂହ ହଦଗଡ଼ ସନ୍ନିକଟରେ ନିଜ ନାମରେ ''ରାୟ ନୃସିଂହପୁର'' ଓ ରାଣୀଙ୍କ ନାମରେ ''ଇଚ୍ଛାବତୀପୁର'' ନାମକ ଦୁଇଗୋଟି ବ୍ରାହ୍ମଣ ଶାସନ ବସାଇଥିଲେ । ଏହି ସମୟରେ ନୃସିଂହ ସମ୍ବାଦ ପାଇଲେ ଯେ ଶିବୁଲାଗଡ଼ରେ

ରାଜତ୍ୱ କରୁଥିବା ଜେନା ରାଜା ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରୁଛନ୍ତି । ତେଣୁ ସେ ଅବିଳମ୍ବେ ଜେନା ସାମନ୍ତଙ୍କ ଶିବୁଳାଗଡ଼ ଅବରୋଧ କଲେ । ପ୍ରଥମରେ ଏହି ଶିବୁଳାଗଡ଼ ତାଳଚେର ରାଜ୍ୟ ଅଧୀନ ଥିଲା । ତେଣୁ ସମ୍ଭବତଃ ଜେନା ସାମନ୍ତ ସ୍ୱାଧୀନ ହେବା ଆଶା କରିଥିଲେ । ଦୁର୍ଗ ଅବରୋଧ ହେବାଦ୍ୱାରା ତାଙ୍କ ଆଶା ଧୂଳିସାତ୍ ହେଲା । ଯୁଦ୍ଧରେ ଜେନା ସାମନ୍ତ ନିହତ ହେଲେ ତଥା ଏହି ଅଞ୍ଚଳ ଢେଙ୍କାନାଳ ରାଜ୍ୟ ଅନ୍ତର୍ଭୁକ୍ତ ହୋଇ ''ଜେନା ଦେଶ ବିଷ'' ନାମରେ ପରିଚିହ୍ନିତ ହେଲା । ଜେନା ସମାନ୍ତଙ୍କ ବଂଶଧରମାନେ ବର୍ତ୍ତମାନ ଶିବୁଳାଗଡ଼ ନିକଟବର୍ତ୍ତୀ କୁଶିଆ ଓ ବାହାଡ଼ା ଗ୍ରାମରେ ବାସ କରୁଛନ୍ତି । ପୂର୍ବରୁ ଜେ଼ନା ସାମନ୍ତ ମଢ଼ି ଗ୍ରାମ (କାମାଖ୍ୟାନଗର) ଠାରେ ନିଜର ରାଣୀ ଝୁମ୍ପାବତୀ ଓ ଦୁଇଜଣ ଦାସୀଙ୍କ ନାମରେ ତିନିଗୋଟି ପୁଷ୍କରିଣୀ ଖୋଳାଇଥିଲେ । ଅଦ୍ୟାବଧି କାମକ୍ଷାନଗର ସହରାଞ୍ଚଳରେ ସେହି ପୋଖରୀ ତିନିଗୋଟି ଝୁମ୍ପାଣ, ବଡ଼ଦାସୀ ଓ ସାନ ଦାସୀ ନାମରେ ବିଦ୍ୟମାନ । ସେହି ଅଞ୍ଚଳ ଅଧିକାର କରିବାପରେ ରାଜା ନୃସିଂହ ମାଳପୁରା ଗ୍ରାମଟିକୁ ଇଷ୍ଟଦେବ ବଳଭଦ୍ରଙ୍କୁ ପ୍ରଦନା କରିବା ସହିତ ଜିରିଡ଼ାମାଳୀ ଗ୍ରାମଠାରେ ଜନୈକ ରାମାଉତ୍ ସନ୍ନ୍ୟାସୀଙ୍କୁ ରଖାଇ ରଘୁନାଥ ମଠ ପ୍ରତିଷ୍ଠା କରିଥିଲେ ।

୧୭୦୦ ଖ୍ରୀଷ୍ଟାବ୍ଦରେ ମଧୁପୁର ରାଜା ଢେଙ୍କାନାଳ ପୂର୍ବ ସୀମାନ୍ତରେ ଗଣ୍ଡଗୋଳ କରିବାରୁ ପ୍ରଜାବୃନ୍ଦ ରାଜା ନୃସିଂହଙ୍କୁ ଆପତ୍ତି କଲେ । ରାଜା ନୃସିଂହ ସୀମାବିବାଦକୁ କେନ୍ଦ୍ର କରି କଟକର ଶାସନକର୍ତ୍ତାଙ୍କୁ ଜଣାଇଲେ । କିନ୍ତୁ କୌଣସି ଉତ୍ତର ନଆସିବାରୁ ଆପଣାର ଛଅଶହ ରାମାଉତ ନାଗା ସୈନ୍ୟ ଓ ପାଞ୍ଚ ସହସ୍ର ଅଶ୍ୱାରୋହୀ ତଥା ପଦାତିକ ସୈନ୍ୟ ସହ ପୂର୍ବ ସୀମାନ୍ତକୁ ଯାତ୍ରା କଲେ । ଢେଙ୍କାନାଳ ସୈନ୍ୟ ଅସୀମ ସାହସର ସହିତ ମଧୁପୁର ରାଜ୍ୟର ଅରହୁଣୀ ଦୁର୍ଗ ଅବରୋଧ ପୂର୍ବକ ଅଧିକାର କଲେ । ଅଧିକାର ପରେ ରାଜା ନୃସିଂହ ଏହି ଦୁର୍ଗର ନାମ କହିଲେ ନିହଲ ପ୍ରସାଦ ରଖିଲେ । ମଧୁପୁର ରାଜା ଏ ସମ୍ବାଦ ଶ୍ରବଣ ପୂର୍ବକ ହତଜ୍ଞାନ ହୋଇଗଲେ । ନିହଲ ପ୍ରସାଦ ଅଧିକାର ପରେ ଢେଙ୍କାନାଳ ସୈନ୍ୟ ବେଗାଗଡ଼ ଅଧିକାର କରିନେଲେ । ବେଗା ଅଧିକାର ପରେ ଢେଙ୍କାନାଳ ବାହିନୀ ଅଞ୍ଜିରାଗଡ଼ ଅଭିମୁଖେ ଅଗ୍ରସର ହେଲେ । ଠିକ୍ ଏହି ସମୟରେ ନବାବଙ୍କ ଫୌଜଦାର କିଛି ସୈନ୍ୟ ନେଇ କୋରେଇ ଅଭିମୁଖେ ଯାଉଥିଲେ ତଥା ବ୍ରାହ୍ମଣୀ ନଦୀ କୂଳରେ ରାଜା ନୃସିଂହଙ୍କ ସହିତ ଫୌଜଦାରଙ୍କ ସାକ୍ଷାତ୍ ହେଲା ।

ଫୌଜଦାର ନୃସିଂହଙ୍କ ବୀରତ୍ୱକୁ ପ୍ରଶଂସା କରିବା ସହିତ ମଧୁପୁର ରାଜା ସଂପୂର୍ଣ୍ଣ ପ୍ରଦାନ କରିବାକୁ ଜଣାଇଲେ । ଐତିହାସିକ ମତରେ ସେହି ଫୌଜଦାର ହେଉଛନ୍ତି ବଙ୍ଗ ନବାବ ମୁର୍ସିଦ୍‌କୁଲିଖାଁଙ୍କ ଦ୍ୱାରା ନବନିଯୁକ୍ତ ଓଡ଼ିଶା ଶାସକ ସୁଜାଉଦ୍ଦିନ୍ । ସେ ରାଜା ନୃସିଂହଙ୍କୁ ପ୍ରଶଂସା କରି କୋରେଇ ଅଭିମୁଖେ ଗମନ କରିଥିଲେ । ଏହି ସମ୍ବାଦ ମଧ ଖୋର୍ଦ୍ଧା ଗଜପତି ଦିବ୍ୟସିଂହ ଦେବ ଶ୍ରବଣ କରି ଢେଙ୍କାନାଳ ରାଜାଙ୍କର ପ୍ରଶଂସା କରିଥିଲେ । ପରିଶେଷରେ ମଧୁପୁର ରାଜା ଲଜ୍ଜାରେ ମ୍ରିୟମାଣ ହୋଇ ରାଜା ନୃସିଂହଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ । ଉଦାରମତି ରାଜା ନୃସିଂହ ମଧୁପୁର ରାଜ୍ୟର ନିହଲ ପ୍ରସାଦ, ବେଗା ଓ ଅଞ୍ଜିରା ଦୁର୍ଗକୁ ନିଜ ରାଜ୍ୟଭୁକ୍ତ କରି ଅବଶିଷ୍ଟ ରାଜ୍ୟ ମଧୁପୁର ରାଜ୍ୟକୁ ଫେରାଇ ଦେଇ କ୍ଷମା ପ୍ରଦାନ କରିଥିଲେ । ଯେଉଁ ପର୍ବତର ପାଦଦେଶରେ ମଧୁପୁର ରାଜା ଆତ୍ମ ସମର୍ପଣ କରିଥିଲେ ସେହି ପର୍ବତର ନାମ ନିଷିନ୍ତା । ଅର୍ଥାତ୍ ତାହା ଢେଙ୍କାନାଳ ଓ ମଧୁପୁର ସୀମା ଭାବରେ ନିର୍ଦ୍ଧାରଣ କରାଗଲା । ତାପରେ ଚଉଷଠିପଡ଼ା ଜମିଦାରଙ୍କ ସହିତ ଢେଙ୍କାନାଳ ସୈନ୍ୟ ଗୋଳମାଳ କରି ଦୁଇଗୋଟି ଗ୍ରାମ ଅଧିକାର କରିନେଲେ । ସେହି ଗ୍ରାମ ଦୁଇଟି ହେଉଛି ଗୋଳିଆମୁହଁ ପାଟଣା ଓ କବାଟ ବନ୍ଧ । ବଳରାମପୁର ଗଡ଼ର ରାଜା ଢେଙ୍କାନାଳ ରାଜାଙ୍କୁ ଏହି ଯୁଦ୍ଧରେ ସାହାଯ୍ୟ କରିଥିବାରୁ ସେ ଅଞ୍ଜିରାଗଡ଼ ପୁରସ୍କାର ସ୍ୱରୂପ ପାଇଲେ । ତତ୍‌କାଳୀନ ଓଡ଼ିଶା ଇତିହାସରେ ମଧୁପୁର ଯୁଦ୍ଧ ଏକ ପ୍ରସିଦ୍ଧ ଘଟଣା । ଢେଙ୍କାନାଳର କବି ଗୋକୁଳ ପଟ୍ଟନାୟକ ଏହି ମଧୁପୁର ଯୁଦ୍ଧର ସୁବିସ୍ତୃତ ବିବରଣୀ ସମ୍ବଳିତ ଯେଉଁ ସମରକବିତା ଲେଖିଥିଲେ ତାହା ''ମଧୁପୁର କୋଇଲି'' ନାମରେ ଖ୍ୟାତ ।

ଖଣ୍ଡ ଖଣ୍ଡାଇତଙ୍କୁ ଚିଟାଉ, ଖରବ ଦେଲା କହୁ କହୁ ।
ଖବର ଯେଉଁଠାରେ ହେଲା, ଖଣ୍ଡିସା ଘୋଡ଼ା ବେଗେ ଚଳିଗଲା ଲୋ ।
ଖବର ଦେଲାରୁ ରାଉଳ, କ୍ଷଣେ କ୍ଷଣେ ଚଳ ଚଳେ ତତ୍‌ପରଲୋ ।

× × ×

ଚାରିଦିଗେ ଗଲେ ଖଣ୍ଡାଇତେ, ଚାରିଘେନି ଭେଟିଲେ ତୁରିତେ ।
ଚରଣେ ନିଉଛାଳି କଲେ, ଚୁନିର ଶାଢ଼ୀ ଦଳବଳ ପାଇଲେଲୋ ।
ଚରଚା ଉତ୍ତମ ହେଇଲେ, ଚୁଡ଼ା ଗୁଡ଼ ଆଦି ପଡ଼ି ପାଇଲେ ଲୋ ।
ଛଅଶ ଭରଣ ପଡ଼ି, ଛଟକରେ ଗଲା ଉଡ଼ି ।
ଛଟକେ ନିତି ଏତକଲାଗି, ଛଅଶ ଥିଲେ ଦିଲ୍ଲୀ ବଇରାଗୀ ଲୋ ।

ପଞ୍ଚ ସହସ୍ର ଅଶ୍ୱ ଥିଲେ, ପଉରୁଶ ଗଉରବ ପାଇଲେ ଲୋ ।

× × ×

ଗର୍ଜନ ଶୁଭେ ଚାରି ଯୋଜନ, ଗୁଳା ବାଜିଲେ ପଡ଼େ ନିଶାଣ ଲୋ ।

× × ×

ଘେନି ଚତୁରଙ୍ଗ ବଳ, ଘଡ଼ିକରେ ବିଜେ କଲେ କରମୋଳ ।
ଘେରି ପଡ଼ିଲେ ସେ ତୋଟା ମାଳ ଥିଲୋ....
ନିଶି ଆରଦିନ ପାହୁଁ, ନହବତ ବାଜେ ଦାଉଁ ଦାଉଁ
ନବ ଘଡ଼ିରେ ପିଙ୍ଗୁଆ ହେଲେ........
ଜ୍ୟୋତିଷ ଯୋଗ ସାଧିଲେ, ଯିବା ଅରହୁଣୀ ଆଜି ଭଲେ ।
ଯେ ଯାହା ହାବୁଡ଼େ ପଡ଼ି, ଯେହୁ ମାରିବ ସେ ବାନ୍ଧିବ ଶାଢ଼ୀ ଲୋ ।
ଝଟକ ବିଜୁଳି ସତେ, ଝାଟି ପଶିଲେଟି ସୈନ୍ୟ କେତେ ।
ଝିମଟକେ ଗଡ଼ ଫତେ କଲେ, ଝୀନଶାଢ଼ୀ ଦଳବଳ ଧାଇଲେ ଲୋ ।
ଝୁରିଣ ନରେନ୍ଦ୍ର ବସିଲେ, ଝୋଲା ମାରିଗଲା ତଳେ ପଡ଼ିଲେ ଲୋ ।
ନାନାଦି ବାଦ୍ୟ ବାଜିଲେ, ନସକର ଆନନ୍ଦ ହେଲେ ।
ନାମ ନିହଲ ପ୍ରସାଦ ଦେଇ, ନୃପତି ହାତ ନିଶରେ ପକାଇ ଲୋ ।
ନାନାଦି ଲୋକଙ୍କୁ ରଖିଲେ, ନେଉଟି ଆସି ପେଙ୍ଗୁଆ ରହିଲେ ଲୋ ।

× × ×

ଠାକୁରଙ୍କୁ ଆଜ୍ଞା ମାଗି, ଠାବ ଠାବକେ ଆରଦିନ ଜଗି ।
ଠୁଳ ନିହଲ ପ୍ରସାଦେ ହେଲେ, ଠାଟ ଦେଖିଣ ଗଡ଼ ଛାଡ଼ିଗଲେ ଲୋ ।
ଠେଲିଣ ଦଳବଳ ପଶିଲେ, ଠେଲା ଠେଲିରେ ଦୁଇ ଚାରି ମଲେ ଲୋ ।
ଡାକି କହନ୍ତି ସୈନ୍ୟଙ୍କୁ, ଡେଇଁ ପଡ଼ରେ ବେଗା ଗଡ଼କୁ ।
ଡରିବ ନାହିଁ କାହାକୁ, ଡରେ ନରେନ୍ଦ୍ର ଭେଟନ୍ତୁ ଆମ୍ଭଙ୍କୁ ଲୋ ।
ଡାଳରେ କୁରାଢ଼ି ଲଗାଇ, ଡାଳି ଯୋଡ଼ିଆଙ୍କ ପରାୟ ହୋଇଲୋ ।
ଢଙ୍କୁଣରେ ବାଜା ବାନ୍ଧି, ଢ଼ଳି ପଡ଼ିଲେ ନରେନ୍ଦ୍ର କାନ୍ଦି ।
ଅନେକ ଲୋକ ତହିଁରେ ମଲେ, ଅଞ୍ଜିରାକୁ ଉଦ୍‌ଯୋଗ ରଖିଲେ ।
ତହିଁ ଆରଦିନ ପୁଣ, ତତ୍‌ପରେ ଆନନ୍ଦ ହୋଇଣ ।
ତେର ଘଡ଼ିଠାରେ ଯାଇଁ ହେଲେ, ତେର ଟୀକାରେ ଗଡେପଶିଲେ ଲୋ ।
ତରସ୍ତ ଖଣ୍ଡାଇଲେ ଶୁଣି, ତଣ୍ଟିରେ ତାଙ୍କର ନଗଲେ ପାଣି ଲୋ ।

ଦେଉଳି ଗଡ଼ରେ ନେଇ, ଦେହ ପୋତି ରଖିଲେ ଲୁଚାଇ ।
ଦାରୁ ଗୁଳା ଲୁଚାଇ ରଖିଲେ, ଦୁଃଖ କରିଣ ନରେନ୍ଦ୍ର ବସିଲେ ଲୋ ।
ଦଇବ ବଡ଼ ଦୁଃଖିତ ହେଲା, ଦେଖୁ ଦେଖୁ ଗଡ଼ ଚାରିଟା ଗଲା ଲୋ ।

× × ×

ଧାର୍ମିକ ସେ ଯେ ଭ୍ରମରବର, ଧର୍ମରେ ଜିଣିଲେ ଏ ମଧୁପର ଲୋ ।

× × ×

ନବାବଙ୍କ ଫଉଜଦାର, ନଉଘୋଡ଼ା ଥିଲେ ସଙ୍ଗତର ।
ନଦୀ କୂଳରେ ଭେଟ ହୋଇଲେ, ନାହିଁ ଏତେବୀର ଦେଖ ବୋଇଲେ ଲୋ ।
ନୋହିଲେ ନିନ୍ଦି ଭ୍ରମରବର, ନିଅ ଲେଖିଦେଲୁ ଏ ମଧୁପୁର ଲୋ ।
ପଠାଣ ବିଦା ହୋଇଲେ, ପରବେଶ କୋରେଇରେ ହେଲେ ।

× × ×

ବାରତା ପାଇ ଠାକୁରେ, ବରଗିଲେ ଦୂତ ତତ୍‌ପରେ ।
ବଡ଼ ବିଶ୍ୱାସ କର 'ଗୁରୁ', ବରଗି ଦେଲେ ସେ ଖୋରଧାଠାରୁ ଲୋ ।
ବୋଲନ୍ତି ଶ୍ରୀ ଭ୍ରମରବରଙ୍କୁ, ବଡ଼ ଶରଧା ଲାଗିଲା ଆମ୍ଭଙ୍କୁ ଲୋ ।
ଭେଟିଲେ ବାଟେ କରଗୁରୁ, ଭଲ ଯୋଗରେ ଆସି ଥିବାରୁ ।
ଭଲ କାର୍ଯ୍ୟ ମଣିମାକଲ, ଭୀମନଗ୍ରୀ ଖଣ୍ଡା ଟାଣ ରଖିଲେ ଯେ ।
ଭଗାରି ପାଦ ତଳେ ଖଟିଲେ, ଭଲେ ଭ୍ରମରବର ରାୟ ହୋଇଲେ ଲୋ ।

× × ×

କବି ଗୋକୁଳ ପଟ୍ଟନାୟକଙ୍କ କୃତ, ମଧୁପୁର କୋଇଲି ସଂପୂର୍ଣ୍ଣ ପ୍ରାପ୍ତ ନହେଲେ ମଧ୍ୟ ଯେତିକି ପ୍ରାପ୍ତ ହୋଇଅଛି ତହିଁରୁ ତତ୍‌କାଳୀନ ସମର ସାହିତ୍ୟ ଉପଲବ୍ଧି ହୋଇଥାଏ ।

ହିନ୍ଦୋଳ ରାଜା ନରହରି ସିଂହ ପଶ୍ଚିମ ସୀମାନ୍ତରେ ଗଣ୍ଡଗୋଳ କରିବାରୁ ଏବଂ ଡାଳିଯୋଡ଼ା ସାମନ୍ତ ପୂର୍ବ ସୀମାନ୍ତରେ ବିଦ୍ରୋହ କରିବାରୁ ରାଜା ନୃସିଂହ ମଧ୍ୟ ସେମାନଙ୍କୁ ଦମନ କରିଥିଲେ ତଥା ସେମାନଙ୍କ ରାଜ୍ୟର କିୟଦଂଶ ନିଜ ରାଜ୍ୟ ଅନ୍ତର୍ଭୁକ୍ତ କରିଥିଲେ । ମୋଟ ଉପରେ ଉଲ୍ଲେଖ କଲେ ରାଜା ନୃସିଂହ ଭ୍ରମରବରଙ୍କ ରାଜତ୍ୱରେ ଢେଙ୍କାନାଳ ରାଜ୍ୟ ସୁବିସ୍ତୃତ ହୋଇଥିଲା । ସେ ସୀମାନ୍ତରେ ସୁଶିକ୍ଷିତ ସୈନ୍ୟଙ୍କୁ ଜାୟଗିରୀ ପ୍ରଦାନ ପୂର୍ବକ ମୁତୟନ କରିଥିଲେ ।

ରାମାରତ ନାଗା ସୈନ୍ୟଙ୍କୁ ଖୁଣ୍ଟୁଝୁରୀ ରିଆ, ଜକିଆ ଓ ମଠ ତେନ୍ତୁଳିଆ ଠାରେ ମଠ ପ୍ରତିଷ୍ଠା କରି ରଖାଇଥିଲେ ।

ଯୁଦ୍ଧରୁ ପ୍ରତ୍ୟାବର୍ତ୍ତନ କରିବା ପରେ ରାଜା ନୃସିଂହ ଢେଙ୍କାନାଳ ସହର ପଶ୍ଚିମ ପାର୍ଶ୍ୱରେ ଏକ ବୃହତ୍ ପୁଷ୍କରିଣୀ ଖୋଳାଇ ଥିଲେ । ତାହା ନୃସିଂହ ସାଗର ବା ଯାଉଁଳୀ ପୋଖରୀ ନାମରେ ପରିଚିହ୍ନିତ । ଏତଦ୍‌ଭିନ୍ନ ସେ ଲତାଦେଇପୁରର ଅନ୍ନକୋଟୀଶ୍ୱର ମନ୍ଦିର, ତେନ୍ତୁଳି ସିଂହାର ରାମେଶ୍ୱର ମନ୍ଦିର ନିର୍ମାଣ କରିବା ସହିତ ନୃସିଂହ ପୁରଶାସନରେ ବେଲେଶ୍ୱର ମହାଦେବଙ୍କ ଶିବଲିଙ୍ଗ ସ୍ଥାପନ କରି ସେବାପୂଜା ନିମିତ୍ତ ଭୂସମ୍ପତ୍ତି ଖଞ୍ଜା କରିଥିଲେ । ତାଙ୍କ ରାଜତ୍ୱରେ ଢେଙ୍କାନାଳରେ ସୁଶାସନ ପ୍ରତିଷ୍ଠା ହୋଇଥିଲା । ୧୬୮୦ରୁ ଦୀର୍ଘ ୨୮ ବର୍ଷ କାଳ ଶାସନ କରି ଏହି ଯଶସ୍ୱୀ ବୀର ୧୭୦୮ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କଲେ ।



# ରାଜା କୁଞ୍ଜବିହାରୀ ଭ୍ରମରବର ରାୟ

ରାଜା ନୃସିଂହ ଭ୍ରମରବର ରାୟ ପରଲୋକ ଗମନ କରିବାପରେ ତଦ୍ଧୀୟ ପୁତ୍ର କୁଞ୍ଜବିହାରୀ ''ରାୟସିଂହ ଭ୍ରମରବର'' ଉପାଧିରେ ଭୂଷିତ ହୋଇ ୧୭୦୮ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳ ସିଂହାସନ ଆରୋହଣ କଲେ । ସେହି ସମୟରେ ଦିବ୍ୟ ସିଂହଦେବ ଖୋର୍ଦ୍ଧାର ଗଜପତି ଥିଲେ । ଏହି ରାଜା ଜଣେ ପରମ ବିଷ୍ଣୁ ଭକ୍ତ ଥିଲେ । ସେହି ସମୟରେ ଢେଙ୍କାନାଳ ରାଜ୍ୟ ୧୮ ଗୋଟି ପ୍ରଗଣା ବା ବିଷରେ ବିଭକ୍ତ ଥାଇ ଏକ ସୁବିସ୍ତୃତ ରାଜ୍ୟ ଭାବରେ ଓଡ଼ିଶାର ମଧ୍ୟାଞ୍ଚଳରେ ରହିଥିଲା । ଚତୁଃପାର୍ଶ୍ୱବର୍ତ୍ତୀ ରାଜା ଓ ସାମନ୍ତ ବୃନ୍ଦ ଢେଙ୍କାନାଳ ରାଜ୍ୟ ପ୍ରତି ଅସହିଷ୍ଣୁ ଥିଲେ । ବିଶେଷତଃ ଯେଉଁ ରାଜନ୍ୟବୃନ୍ଦ ରାଜା ନୃସିଂହଙ୍କ ରାଜତ୍ୱରେ ଦଣ୍ଡିତ ହୋଇଥିଲେ ସେମାନେ ପ୍ରତିହିଂସା ପରାୟଣ ହୋଇ ଉଠିଥିଲେ । ସେମାନେ ଢେଙ୍କାନାଳର ସୁଦୃଢ଼ ସୈନ୍ୟ ବାହିନୀକୁ ଭୟ କରି ଯୁଦ୍ଧ କରିନଥିଲେ ହେଁ ଢେଙ୍କାନାଳ ବିରୁଦ୍ଧରେ ଗଜପତି ଦିବ୍ୟସିଂହ ଦେବଙ୍କୁ ଉତ୍ତେଜିତ କରିଥିଲେ । ଖୋର୍ଦ୍ଧା ଗଜପତି ସେହି ସମୟରେ କେତେକ ସ୍ୱଳ୍ପ ମାହାଲର ଜମିଦାର ଥିଲେ । ତେଣୁ ସେ ଏହି ରାଜାମାନଙ୍କ ସାହାଯ୍ୟରେ ଢେଙ୍କାନାଳ ଜୟ କରିବାକୁ ମନବଳାଇଲେ । କିମ୍ବଦନ୍ତୀ ଅନୁଯାୟୀ ଗଜପତି ଦିବ୍ୟସିଂହ ଦେବ ଢେଙ୍କାନାଳ ରାଜ୍ୟ ଜୟ କାମନାରେ ଗୋଟିଏ ତରବାରୀ ଶ୍ରୀଜଗନ୍ନାଥଙ୍କ ସିଂହାସନରେ ରଖି ପୂଜା କରିଥିଲେ । ସେହିଦିନ ରତ୍ରିରେ ପ୍ରଭୁ ଦଳୀୟାରଭୂଜ ସ୍ୱପ୍ନାଦେଶ ଦେଲେ ଯେ ''ମୋର ଜ୍ୟେଷ୍ଠ ଭ୍ରାତା ବଳଭଦ୍ର ଢେଙ୍କାନାଳର ପ୍ରଭୁ । ତେଣୁ ତୁ ଢେଙ୍କାନାଳ ଆକ୍ରମଣ କଲେ ତୋର ଯଶ ହେବନାହିଁ ।'' ଗଜପତି ସ୍ୱପ୍ନାଦେଶ ପରେ ଢେଙ୍କାନାଳ ଅଭିଯାନରୁ ବିରତ ରହିଲେ । ଫଳରେ ପାର୍ଶ୍ୱବର୍ତ୍ତୀ ରାଜା ଓ ସାମନ୍ତଙ୍କ କୂଟଚକ୍ରାନ୍ତ କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

ରାଜା କୁଞ୍ଜବିହାରୀ ବଳଭଦ୍ରଙ୍କର ପରମ ଭକ୍ତ ଥିଲେ । ସେ ବଳରାମ ମନ୍ଦିରର ମୁଖଶାଳା ନିର୍ମାଣ କରିଥିଲେ । ରାଜା ପ୍ରସାଦସ୍ଥିତ ଶ୍ରୀ ବୃନ୍ଦାବନ ଚନ୍ଦ୍ରଙ୍କ ମନ୍ଦିର ଓ ମାଣ୍ଡାପା ସାହିର ଶମ୍ଭୁଗୋପାଳ ମନ୍ଦିର ମଧ ତାଙ୍କରି କୀର୍ତ୍ତି । ସେ ପ୍ରତ୍ୟହ ବଳଦେବ ଓ ଶମ୍ଭୁଗୋପାଳଙ୍କୁ ଦର୍ଶନ ନକଲେ ଅନ୍ନଜଳ ଗ୍ରହଣ କରୁନଥିଲେ । ଦେବାର୍ଚ୍ଚନ, ସତ୍‌ସଙ୍ଗ, ପୁରାଣ, ପାଠ, ବୈଷ୍ଣବ ସେବା ଓ

ଦୀନଦୁଃଖୀଙ୍କୁ ଅନ୍ନବସ୍ତ୍ର ଦାନରେ ସେ ପରମ ସନ୍ତୋଷ ଲାଭ କରୁଥିଲେ । ତାଙ୍କ ରାଜସଭାରେ ପ୍ରତିଦିନ ପଣ୍ଡିତ, ଜ୍ଞାନୀ ଓ ସାଧୁସନ୍ଥ ବୃନ୍ଦ ବୈଷ୍ଣବ ଶାସ୍ତ୍ର ଆଲୋଚନା କରୁଥିଲେ । ଦେବତା ଓ ବ୍ରାହ୍ମଣମାନଙ୍କୁ ଦାନ ଖଇରାତ କରିବାରେ ସେ କାର୍ପଣ୍ୟ ନଥିଲେ । ଆପଣାର ରାଜ ପୁରୋଧା ପଣ୍ଡିତ ଆନନ୍ଦ ଦୀକ୍ଷିତ ବଡ଼ପଣ୍ଡାଙ୍କୁ ସେ ୧୭୧୧ ମସିହାରେ ନିଜିଗଡ଼ ବିଷ ବଳଭଦ୍ରପୁର ଶାସନରେ ଜମି ଓ ଘରବାଡ଼ି ଦାନ କରିଥିଲେ । ଅନ୍ୟତମ ରାଜପଣ୍ଡିତ ନାରାୟଣ ବଡ଼ପଣ୍ଡାଙ୍କୁ ସେ ରାୟ ନୃସିଂହ ପୁର ଗ୍ରାମରେ ଜମିଦାନ କରିଥିଲେ । ତାଙ୍କ ରାଜତ୍ୱରେ ଢେଙ୍କାନାଳ ନଗରରେ ମୁକ୍ତା ଦେଇ ପୁର ଶାସନ ପ୍ରତିଷ୍ଠିତ ହୋଇଥିଲା । ଏତଦ୍‌ଭିନ୍ନ ସେ ବହୁ ସାଧୁସନ୍ଥ ବୈଷ୍ଣବଙ୍କୁ ସ୍ୱରାଜ୍ୟରେ ଭୂସମ୍ପତ୍ତି ପ୍ରଦାନ ପୂର୍ବକ ବସବାସ କରାଇଥିଲେ । ତାଙ୍କ ରାଜତ୍ୱରେ କବି ବ୍ରଜନାଥ ବଡ଼ଜେନାଙ୍କ ବାପା ବାଲୁଙ୍କେଶ୍ୱର ଓ ବଡ଼ବାପା ସାରଙ୍ଗଧର ଅରକ୍ଷିତ ସଂଙ୍ଖାରୁ ପଟ୍ଟନାୟକ ପଦବୀ ପ୍ରାପ୍ତ ହୋଇ ଢେଙ୍କାନାଳରେ ନିବାସ କଲେ । ଉଲ୍ଲେଖଯୋଗ୍ୟ ଯେ ଏମାନେ ଦାର୍ଢ୍ୟତ୍ୟାଭକ୍ତି ବର୍ଣ୍ଣିତ ରଘୁ ଅରକ୍ଷିତଙ୍କ ବଂଶଧର ତଥା ସୁପ୍ରସିଦ୍ଧ ପୋଥି ଲେଖକ ଭାବରେ ଖ୍ୟାତି ଲାଭ କରିଥିଲେ । ରାଜା କୁଞ୍ଜବିହାରୀ ସେହି ଦୁଇ ଭାଇଙ୍କୁ ପଟ୍ଟନାୟକ ପଦବୀ ଦେଇ ମୁକ୍ତାଦେଇପୁର ଶାସନ ନିକଟରେ ରଖାଇଥିଲେ । ରାଜା କୁଞ୍ଜବିହାରୀ ମଧ ଜଣେ ସୁକବି ଥିଲେ । ତାଙ୍କ ରଚିତ ପ୍ରେମଶୀଳା କାବ୍ୟ ଅଦ୍ୟାବଧି ଅପ୍ରକାଶିତ ।

କୁଞ୍ଜବିହାରୀ ନରପତିବର ପଦବୀରେ ରାୟ ଭ୍ରମରବର
ବ୍ରଜବିହାରୀ ରାଜ ସିଂହଯାର ଆତ୍ମଜ ଆତ୍ମବତ୍ ପ୍ରିୟତର
ଯେ ଗ୍ରନ୍ଥ ରଚନା
କଲେ ହୋଇଣ ସେ କୃଷ୍ଣୈକାମନା ।

ରାଜ କୁଞ୍ଜବିହାରୀ ସ୍ୱପିତାଙ୍କ ସଦୃଶ ଭକ୍ତ, ଧାର୍ମିକ, ବିବେକବନ୍ତ ଥିଲେ ବୋଲି ତଥା ତାଙ୍କୁ ଶ୍ରୀଜଗନ୍ନାଥ ସହାୟ ଥିବାର ପ୍ରାଚୀନ ଶାସ୍ତ୍ର "ବଳଭଦ୍ର ବୋଲି"ରୁ ସୂଚନା ମିଳେ ।

"କୁଞ୍ଜବିହାରୀ ଭ୍ରମରବର ପୁଣି ଏହାଙ୍କ ଅନ୍ତର ହୋଇ,
ଧାର୍ମିକ ବିବେକ ପଣ୍ଡିତ ପଣକୁ ସମସରି କେହି ନାହିଁ ।
ଦେଉଳ ମୁଖଶାଳା ସେ ଗଢ଼ାଇଲେ ବୈଷ୍ଣବ ଗୁଣ ତାଙ୍କର,
ଉପାସନା ଭାବେ ପ୍ରଭୁଙ୍କୁ ଭାବନ୍ତି ଦାସ ଭାବରେ କିଙ୍କର ।

ପ୍ରତ୍ୟହ ଦର୍ଶନ ଶ୍ରୀନନ୍ଦନନ୍ଦନ ଶମ୍ଭୁ ଗୋପାଳଙ୍କୁ କରି,
ସଦାଦିନେ ତାଙ୍କ ପ୍ରସନ୍ନ ବଦନ ଶତ୍ରୁ ଦେଖିଯାଏ ମରି ।
ସେ କାଳେ ଦିବ୍ୟସିଂହ ଦେବ ରାଜନ ଓଡ଼ିଶା ନୃପତି ସେହି,
ଜଗନ୍ନାଥଙ୍କ ସିଂହାସନ ଉପରେ କଟାରୀ ରଖିଲା ନେଇ ।
ବୋଇଲେ ମୁହିଁ ଢେଙ୍କାନାଳ ମାରିବି ଅନୁଗ୍ରହ ମୋତେ ହେବ,
ଏହି କଟାରୀ ପ୍ରସାଦ ଆଜ୍ଞା ହେଲେ ନାଶ କରି ଚଳିଯିବ ।
ରାଜାର କଟାଳ ଜାଣି ଜଗନ୍ନାଥ ରାତ୍ରରେ ସ୍ୱପନେ କହି,
ବୋଇଲେ ରାଜନର ଢେଙ୍କାନାଳ ଗଲେ ଯଶ ତୋର ହେବନାହିଁ ।''

କୁଞ୍ଜବିହାରୀ ଶାନ୍ତିମୟ ଜୀବନଯାପନ କରିଥିଲେ ମଧ୍ୟ ତାଙ୍କ ରାଜତ୍ୱରେ କେତେଗୋଟି ଯୁଦ୍ଧ ସଂଘଟିତ ହୋଇଥିଲା । ପ୍ରଥମେ ସେ ଢେଙ୍କାନାଳ ରାଜ୍ୟର ଦକ୍ଷିଣରେ ଅବସ୍ଥିତ ତିଗିରିଆ ରାଜ୍ୟର ବିଦ୍ରୋହ ସହିତ ସଂଯୁକ୍ତ ହୋଇଗଲେ । ସେହି ସମୟରେ ତିଗିରିଆର ରାଜା ଥିଲେ ଶଙ୍କର୍ଷଣ ମାନ୍ଧତା । ସେ ଜଣେ ସୁଶାସକ ଥିଲେ ହେଁ ତାଙ୍କ ପୁତ୍ର ରାମଚନ୍ଦ୍ର ସିଂହ ଅତ୍ୟନ୍ତ ଅତ୍ୟାଚାରୀ ଥିଲେ । ସେ ସ୍ୱପିତାଙ୍କ ଅନିଚ୍ଛା ସତ୍ତ୍ୱେ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରୁଥିଲେ । ତେଣୁ ତିଗିରିଆରେ ବ୍ୟାପକ ପ୍ରଜା ବିଦ୍ରୋହ ସଂଘଟିତ ହୋଇଥିଲା । ରାଜା ପ୍ରଜାଙ୍କ ସପକ୍ଷରେ ଥିଲେ ମଧ୍ୟ ଉଦ୍ଧତ ଯୁବରାଜଙ୍କୁ କରାୟତ କରି ପାରିଲେ ନାହିଁ । ଯୁବରାଜ ରାମଚନ୍ଦ୍ରଙ୍କ ଅତ୍ୟାଚାରର ମାତ୍ରା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଲା । ଶେଷରେ ସେ ସ୍ୱପିତା ଶଙ୍କର୍ଷଣ ମାନ୍ଧାତାଙ୍କ ଚକ୍ଷୁଦ୍ୱୟ ଉତ୍ପାଟନ କରି ତାଙ୍କୁ ବନ୍ଦୀଶାଳାରେ ରଖିଲେ । ଫଳରେ ପ୍ରଜାବୃନ୍ଦ ଯୁବରାଜଙ୍କୁ ଜୀବନରେ ମାରିଦେବାକୁ ଷଡ଼ଯନ୍ତ୍ର କଲେ । ଯୁବରାଜ ଏହା ଜାଣିପାରି ଢେଙ୍କାନାଳନ୍ତର୍ଗତ ସାରିଆଁ ଗ୍ରାମକୁ ପଳାଇ ଆସି ରାଜା କୁଞ୍ଜବିହାରୀଙ୍କ ଶରଣାପନ୍ନ ହେଲେ । କିନ୍ତୁ କୁଞ୍ଜବିହାରୀ ତାହାଙ୍କୁ ସାହାଯ୍ୟ ନକରିବାରୁ ସେ ଢେଙ୍କାନାଳ ଅଞ୍ଚଳରୁ ସ୍ୱଚେଷ୍ଟାରେ କିଛି ସୈନ୍ୟ ସଂଗ୍ରହ କରି ପୁନର୍ବାର ତିଗିରିଆ ଆକ୍ରମଣ କଲେ । ତିଗିରିଆର ତତ୍‌କାଳୀନ ଚତୁର ମନ୍ତ୍ରୀ ମୁକୁନ୍ଦ ବ୍ୟବହର୍ତ୍ତା ପଟ୍ଟନାୟକ ଯୁବରାଜ ରାମଚନ୍ଦ୍ରଙ୍କୁ କୌଶଳକ୍ରମେ ହତ୍ୟା କଲେ । ପରିଣାମ ସ୍ୱରୂପ ତିଗିରିଆର ବିଦ୍ରୋହ ପ୍ରଶମିତ ହେଲା ଏବଂ ରାଜା ଶଙ୍କର୍ଷଣ ମାନ୍ଧାତା କାରାମୁକ୍ତ ହୋଇ ଢେଙ୍କାନାଳ ରାଜାଙ୍କ ସହାୟତାରେ ଶାସନ କଲେ ।

କୁଞ୍ଜବିହାରୀଙ୍କ ଶିଥିଳତାର ସୁଯୋଗ ନେଇ ଅନୁଗୁଳ ରାଜା ପଶ୍ଚିମ ସୀମନ୍ତରେ ଗଣ୍ଡଗୋଳ ଆରମ୍ଭ କରିଥିଲେ । ସମ୍ବାଦ ପାଇ ଢେଙ୍କାନାଳଧୀଶ୍ୱର ଅନୁଗୁଳ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ବଳରାମ ପ୍ରସାଦଠାରେ ଉଭୟ ପକ୍ଷର ଯୁଦ୍ଧ ୧୭୧୨ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ହୋଇଥିଲା । ଅନୁଗୁଳର ତତ୍‌କାଳୀନ ରାଜା ଶିବଦାସ ଜଗଦ୍ଦେବ ବଳରାମ ପ୍ରସାଦ ଦୁର୍ଗରେ ଅବସ୍ଥାନ ପୂର୍ବକ ଯୁଦ୍ଧ ଚଳାଇ ଥିଲେ । ସେ ପୂର୍ବରୁ ଏହି ଦୁର୍ଗର ଚତୁଃପାର୍ଶ୍ୱରେ ସୁଗଭୀର ଗଡ଼ଖାଇ ନିର୍ମାଣ କରିଥିଲେ । ଫଳରେ ଢେଙ୍କାନାଳ ସୈନ୍ୟବାହିନୀ ଦୁର୍ଗ ମଧ୍ୟକୁ ସହଜରେ ପ୍ରବେଶ କରି ପାରିଲେ ନାହିଁ ତଥା ସେହି ବଳରାମ ପ୍ରସାଦଠାରୁ ଫେରି ଆସିଲେ । ଏଥିରେ ନିରୁତ୍ସାହ ନହୋଇ ରାଜା କୁଞ୍ଜବିହାରୀ ଭୀମନଗରୀ ଦୁର୍ଗର ଅଧିଷ୍ଠାତ୍ରୀ ରାମଚଣ୍ଡୀଙ୍କ ସିଂହାସନ ତଳେ ଗୋଟିଏ ଖଣ୍ଡା ରଖି ବିଧିମତେ ପୂଜା କଲେ । ସେହି ପୂଜିତ ଖଣ୍ଡା ଧରି ସେ ଦ୍ୱିତୀୟଥର ଅନୁଗୋଳ ଯାତ୍ରା କଲେ । ଏହି ଦ୍ୱିତୀୟ ଥର ଯୁଦ୍ଧରେ ରାମଚଣ୍ଡୀଙ୍କ ଖଡ୍ଗ ପ୍ରସାଦରୁ ସେ ଅନୁଗୋଳ ରାଜାଙ୍କୁ ପରାସ୍ତ କରି ତାଙ୍କ ରାଜ୍ୟରେ ନୂଆହତା ପ୍ରଗଣାର କେତେକ ଅଞ୍ଚଳ ସ୍ୱରାଜ୍ୟଭୁକ୍ତ କରିଥିଲେ । ଜଗଜ୍ଜନନୀଙ୍କ ଖଡ୍ଗ ପ୍ରସାଦରୁ ସେ ଯୁଦ୍ଧରେ ଜୟଲାଭ କରିଥିବାରୁ ସୀମାନ୍ତରେ ଗୋଟିଏ ଦୁର୍ଗ ସ୍ଥାପନା ପୂର୍ବକ ତାହାର ନାମ ଖଡ୍ଗ ପ୍ରସାଦ ରଖିଲେ । ରାଜା କୁଞ୍ଜବିହାରୀ ଏହି ଦୁର୍ଗରେ ଧଳ ବଂଶୀୟ ଦୁଇ ଜଣ ପରାକ୍ରମୀ ଯୋଦ୍ଧାଙ୍କୁ ଗଡ଼ନାୟକ ଓ ଦଳବେହେରା ପଦରେ ନିଯୁକ୍ତ କରି ସେମାନଙ୍କ ଅଧୀନରେ କେତେକ ସୁଶିକ୍ଷିତ ସୈନ୍ୟଙ୍କୁ ସୀମାରକ୍ଷକ ରୂପରେ ମୁତୟନ କଲେ । ବିଜୟର ସ୍ମାରକ ସଦୃଶ ସେ ଭୀମନଗରୀ ଦୁର୍ଗରେ ପଶ୍ଚିମରେ ନିଜ ନାମରେ "କୁଞ୍ଜବିହାରୀପୁର" ନାମକ ବ୍ରାହ୍ମଣ ଶାସନ ପ୍ରତିଷ୍ଠା ପୂର୍ବକ ରାମଚଣ୍ଡୀ ପୀଠରେ ଖଣ୍ଡା ପୂଜା ଓ ବିଶେଷ ଆରାଧନା କରିଥିବା ବ୍ରାହ୍ମଣମାନଙ୍କୁ ଦାନ କରିଥିଲେ । କେହି କେହି ମତ ଦିଅନ୍ତି ଯେ ଅନୁଗୋଳ ରାଜା ପୁନର୍ବାର ଢେଙ୍କାନାଳ ଆକ୍ରମଣ କରିଥିଲେ ଏବଂ ସେହି ଯୁଦ୍ଧରେ ଢେଙ୍କାନାଳ ରାଜା ପରାସ୍ତ ହୋଇଥିଲେ । କିନ୍ତୁ ଏହାର କୌଣସି ଐତିହାସିକ ତଥ୍ୟ ଅଦ୍ୟାବଧି ଅନୁପଲବ୍ଧ । ଢେଙ୍କାନାଳ ଇତିହାସର ପ୍ରଣେତା ପଣ୍ଡିତ ରାମଚନ୍ଦ୍ର ନନ୍ଦ ଉଲ୍ଲେଖ କରିଛନ୍ତି ଯେ ନୂଆହତା ପ୍ରଗଣାର କିୟଦଂଶ ଢେଙ୍କାନାଳ ରାଜ୍ୟଭୁକ୍ତ ହେବାରୁ ଅନୁଗୋଳ ରାଜା ପ୍ରତିହିଂସା ପରାୟଣ ହୋଇ ପୁନର୍ବାର ଯୁଦ୍ଧ କରିଥିଲେ ଏବଂ ସେହି ଯୁଦ୍ଧରେ ଢେଙ୍କାନାଳ ରାଜା ପରାଜୟ ବରଣ କରି ଲବ୍ଧ ଅଞ୍ଚଳରୁ କିଛି ଛାଡ଼ିବାକୁ ବାଧ

ହୋଇଥିଲେ । ଏହି କାରଣରୁ ସେ ଦୁଶ୍ଚିନ୍ତାରେ ମଗ୍ନ ହୋଇ ପରଲୋକ ଗମନ କରିଥିଲେ । District gazzetteer, Dhenkanalରେ ଉଲ୍ଲେଖ ରହିଛି ଢେଙ୍କାନାଳ ରାଜା ଅନୁଗୋଳ ରାଜା ଧନୁର୍ଜୟ ଜଗଦେବଙ୍କ ପୂର୍ବବର୍ତ୍ତୀ ଶାସକଙ୍କୁ ପରାସ୍ତ କରି ଖଡ୍ଗ ପ୍ରସାଦ, ମଙ୍ଗଳପୁର ଓ କମଳାଙ୍ଗ ପ୍ରଭୃତ ସୀମାନ୍ତବର୍ତ୍ତୀ ଅଞ୍ଚଳ ଦଖଲ କରିଥିଲେ ଏବଂ ଧନୁର୍ଜୟ ଏହି ଅଞ୍ଚଳ ପୁନରୁଦ୍ଧାର କରିଥିଲେ । ଏଥିରୁ ପ୍ରମାଣିତ ହେଉଛି ଧନୁର୍ଜୟଙ୍କ ପୂର୍ବବର୍ତ୍ତୀ ରାଜା ଶିବଦାସ ଜଗଦେବଙ୍କୁ ପରାସ୍ତ କରି ଏହି ଅଞ୍ଚଳ ଦଖଲ କରିଥିଲେ । ଧନୁର୍ଜୟ ରାଜତ୍ୱ କରିବା ସମୟକୁ ଢେଙ୍କାନାଳ ରାଜା କୁଞ୍ଜବିହାରୀ ପରଲୋକ ଗମନ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ ଐତିହାସିକ ବୃନ୍ଦ କେବଳ ଲୋକକଥା ଉପରେ ନିର୍ଭର କରି ଅନୁଗୋଳ ଓ ଢେଙ୍କାନାଳର ଇତିହାସ ଲେଖିଛନ୍ତି । ଏହାର କୌଣସି ଆଭିଲେଖିକ ପ୍ରମାଣ ଏ ପର୍ଯ୍ୟନ୍ତ ହସ୍ତଗତ ହୋଇନାହିଁ ତଥା ଏହି ଅଞ୍ଚଳ ସ୍ୱାଧୀନତା ପୂର୍ବ ଓ ପରେ ଢେଙ୍କାନାଳର ଥିଲା । ଉପଲବ୍ଧ ହୁଏ, କୁଞ୍ଜବିହାରୀଙ୍କ ରାଜତ୍ୱର ଶେଷ ସମୟରେ ଅନୁଗୋଳ ରାଜା ପୁନର୍ବାର ଯୁଦ୍ଧ କରି ଏହି ଅଞ୍ଚଳ ପୁର୍ନଦଖଲ କରିନେଇଥିଲେ । ଏପରିକି ଅନୁଗୋଳ ରାଜା ଢେଙ୍କାନାଳ ସୈନ୍ୟଙ୍କୁ ବ୍ରାହ୍ମଣୀ ତଟ ବଉଳପୁର ପର୍ଯ୍ୟନ୍ତ ଘଉଡାଇ ଦେଇ ସେହି ତୋଟାରେ ଏକ ବିଜୟ ସ୍ତମ୍ଭ ନିର୍ମାଣ କରିଥିଲେ । ସେହି ବିଜୟ ସ୍ତମ୍ଭକୁ ଲୋକମାନେ "ଧନୁ ସିଂ ଠେଙ୍ଗା" ବୋଲି କହୁଥିଲେ । ରାଜା କୁଞ୍ଜବିହାରୀ ଜୀବନର ଶେଷକାଳରେ ପରାଜୟ ବରଣ କରି ଦୁଃଖ ଓ ଅନୁମୋଚନାରେ କାଳାତିପାତ କଲେ । ଏହା ସିଂହ ବିଦ୍ୟାଧର ବଂଶରେ କଳଙ୍କ ଲାଗିଲା ବୋଲି ସେ ହୃଦୟଙ୍ଗମ କଲେ ତଥା ଏହି କାରଣରୁ ସେ ପରଲୋକ ଗମନ କରିଥିଲେ ।

କୁଞ୍ଜବିହାରୀଙ୍କ ରାଜତ୍ୱରେ ଢେଙ୍କାନାଳ ରାଜ୍ୟରେ ବୈଷ୍ଣବ ସଂସ୍କୃତିର ଦ୍ରୁତ ପ୍ରସାର ଘଟିଥିଲା । ତାଙ୍କ ରାଜତ୍ୱ ପୂର୍ବରୁ ବିଭିନ୍ନ ସ୍ଥାନରେ ମଠ ପ୍ରତିଷ୍ଠା ହୋଇଥିଲା ଏବଂ ଭକ୍ତ କବି ଦୀନକୃଷ୍ଣଙ୍କ ଆନୁକୁଲ୍ୟରେ ବୈଷ୍ଣବ ଧର୍ମର ପ୍ରଚାର ହୋଇଥିଲା । ପରିଣାମ ସ୍ୱରୂପ ପ୍ରତ୍ୟେକ ବଡ଼ ଗ୍ରାମରେ ଭାବଗତ ଟୁଙ୍ଗୀ ସଂସ୍ଥାପିତ ହୋଇ ସମଗ୍ର ରାଜ୍ୟରେ ଭାଗବତ ଧର୍ମର ବ୍ୟାପକ ପ୍ରସାର ଘଟିଲା । ରାଜା କୁଞ୍ଜବିହାରୀର ମଧ୍ୟ ଖୁଣ୍ଟୁଝରୀ, ଜିରିଡ଼ାମାଳୀ, ଅଘିରାଗୋଡ଼ା, ଖୋକସା, ବାଲିବୋ, ଜକିଆ, ରିଆ ଓ ମଠ ତେନ୍ତୁଳିଆ ମଠ ସମୂହରେ ପ୍ରତ୍ୟହ ଓଡ଼ିଆ ଭାଗବତ ପାଠର ବିଧି ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ଏତଦ୍‌ଭିନ୍ନ ସେ

ରାଜଗୁରୁଙ୍କ ନିମିତ୍ତ କନ୍ତିଓଠାରେ ମଠ, ମନ୍ଦିର ଓ ପୁଷ୍କରିଣୀ କରାଇ ଗୁରୁଗାଦୀରେ ରାଧାକୃଷ୍ଣଙ୍କ ନିତ୍ୟସେବା ଓ ଯାନିଯାତ୍ରାରେ ସୁବନ୍ଦୋବସ୍ତ କରାଇଥିଲେ । ସ୍ୱୀୟ ରାଜଗୁରୁ ଶ୍ରୀସିଦ୍ଧାନନ୍ଦ ସିଦ୍ଧ ବ୍ରହ୍ମଚାରୀଙ୍କୁ ସେ କନ୍ତିଓ, ଧୋବାବାହାଳୀ, କମଗରା, କୋଟଗରା ପ୍ରଭୃତି ଗ୍ରାମମାନଙ୍କର ବହୁ ପରିମାଣରେ ଭୂସମ୍ପତ୍ତି ଦାନ କରିଥିଲେ ତଥା ଢେଙ୍କାନାଳ ନଗରରେ ନୃସିଂହ ସାଗର ପୁଷ୍କରିଣୀର ପୂର୍ବ ହୁଡ଼ାରେ ରାଜଗୁରୁଙ୍କର ନିବାସ "କୈବଲ୍ୟ କୁଟୀର" ନିର୍ମାଣ କରାଇଥିଲେ । ରାଜଗୁରୁଙ୍କର ଅନ୍ୟତମ ଶିଷ୍ୟ ବାଳକ ଦାସଙ୍କୁ ଢେଙ୍କାନାଳ ଶମ୍ଭୁଗୋପାଳ ମଠର ମହନ୍ତ ପଦରେ ଅଧିଷ୍ଠିତ କରାଇ ରାଜା କୁଞ୍ଜ ବିହାରୀ ସେବା ପୂଜା ନିମିତ୍ତ ଷାଠିଏ ବାଟିଆ ଗ୍ରାମରେ ପ୍ରଚୁର ଭୂସମ୍ପତ୍ତି ଦାନ କରିଥିଲେ । ମହନ୍ତ ବାଳକ ଦାସ ମଧ୍ୟ ଜନୈକ ସିଦ୍ଧ ସାଧକ ଥିଲେ । ଶମ୍ଭୁଗୋପାଳ ମଠର ପ୍ରାଚୀନ ବାମ୍ପୀ ଏହି ମହନ୍ତଙ୍କର କୀର୍ତ୍ତି । ଏହି ବାମ୍ପୀର ଜଳସେବନ କରି ଅଗଣିତ ରୋଗୀ ରୋଗମୁକ୍ତ ହେଉଥିଲେ । ମହନ୍ତ ବାଳକ ଦାସଙ୍କର ଅଲୌକିକ ସିଦ୍ଧି ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ ରହିଅଛି । ଏତଦ୍‌ଭିନ୍ନ ସେ କୁଞ୍ଜବିହାରୀପୁର ଶାସନର ମକଦମ ଶ୍ରୀନିବାସ ନନ୍ଦଙ୍କୁ ରାମଚଣ୍ଡୀ ମନ୍ଦିରରେ ତତ୍ତ୍ୱାବଧାରକ ତଥା ମାର୍ଥାପୁର ଶାସନର ପଦ୍ମନାଭ ମିଶ୍ରଙ୍କୁ କପିଳାସ ମନ୍ଦିରର ତତ୍ତ୍ୱାବଧାରକ ପଦରେ ନିଯୁକ୍ତ କରିଥିଲେ । ତାଙ୍କ ରାଜ ସଭାରେ ଜ୍ଞାନୀ ଗୁଣୀ ପଣ୍ଡିତ ବ୍ୟକ୍ତିଙ୍କର ଆଦର ରହିଥିଲା । ପରିଶେଷରେ ଏହି ଦେବୋପମ ରାଜା ଦୀର୍ଘ ୨୦ବର୍ଷ ରାଜତ୍ୱ କରି ୧୭୨୮ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କଲେ ।



# ରାଜା ବ୍ରଜବିହାରୀ ଭ୍ରମରବର ରାୟ

ଢେଙ୍କାନାଳ ରାଜା କୁଞ୍ଜବିହାରୀଙ୍କ ପରେ ତଦୀୟ ଜ୍ୟେଷ୍ଠପୁତ୍ର ବ୍ରଜବିହାରୀ ରାୟସିଂହ ଭ୍ରମରବର ଉପାଧି ଧାରଣ କରି ୧୭୨୮ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କଲେ । ରାଜା କୁଞ୍ଜବିହାରୀଙ୍କର ତିନିଜଣ ପୁତ୍ର ଥିଲେ । ତନ୍ମଧ୍ୟରୁ ଯୁବରାଜ ବ୍ରଜବିହାରୀ ଥିଲେ ଜ୍ୟେଷ୍ଠ, ଦ୍ୱିତୀୟ ପୁତ୍ର ବେଣୁଧର ସଂସାର ତ୍ୟାଗ ପୂର୍ବକ ସନ୍ନ୍ୟାସ ଧର୍ମ ଗ୍ରହଣ କରି ହିମାଳୟ ଚାଲିଗଲେ ଏବଂ ତୃତୀୟ ପୁତ୍ର ଘନଶ୍ୟାମ ପଶ୍ଚିମ ସୀମାନ୍ତ ସୁରକ୍ଷା ନିମିତ୍ତ ଭୀମନଗରୀ ଦୁର୍ଗରେ ନିବାସ କଲେ ।

୧୭୨୮ରେ ରାଜା ବ୍ରଜବିହାରୀ ସିଂହାସନାରୁଢ଼ ହେବା ସମୟକୁ ଓଡ଼ିଶାର ଗଜପତି ଥିଲେ ଦ୍ୱିତୀୟ ରାମଚନ୍ଦ୍ରଦେବ । ସେତେବେଳେ ସମଗ୍ର ଓଡ଼ିଶାରେ ମୁସଲମାନ ଓ ମରହଟ୍ଟାମାନଙ୍କ ଅତ୍ୟାଚାର ବୃଦ୍ଧି ପାଇଥିଲା । ଗଜପତି ଗୋପୀନାଥ ଦେବଙ୍କ ପରେ ତାଙ୍କ ଭାଇ ୨ୟ ରାମଚନ୍ଦ୍ର ଦେବ ୧୭୨୭ରେ ଖୋର୍ଦ୍ଧାର ଗଜପତି ହୋଇଥିଲେ । ମୁସଲମାନମାନେ ବାରମ୍ବାର ତାଙ୍କ ରାଜ୍ୟ ଆକ୍ରମଣ କରି ପ୍ରଥମେ ତାଙ୍କୁ ରଥିପୁର ଦୁର୍ଗରେ ଓ ପରେ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖିଥିଲେ । ବାରବାଟୀ ଦୁର୍ଗରେ ବନ୍ଦୀ ଥିବା ସମୟରେ ଜବରଦସ୍ତ ଭାବରେ ତାଙ୍କ ସହିତ ଜନୈକା ମୁସଲମାନ ରମଣୀଙ୍କ ବିବାହ କରାଯାଇ ତାଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ କରାଗଲା । ଏହି ସମୟରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ନୀଳାଚଳ ଧାମରୁ ବାଣପୁର ଓ ପରେ ଆଠଗଡ଼ର ମରଡ଼ା ଗ୍ରାମକୁ ନିଆଯାଇ କିଛିକାଳ ରଖାଯାଇଥିଲା । ୧୭୩୪ ଖ୍ରୀଷ୍ଟାବ୍ଦରେ ତକିଖାଁଙ୍କର ମୃତ୍ୟୁ ହେଲା ଏବଂ ମୁର୍ସିଦ୍ କୁଲିଖାଁଙ୍କ ଓଡ଼ିଶାର ନାଏବ ନାଜିମ୍ ପଦରେ ନିଯୁକ୍ତି ହେଲେ । ସେ ତକିଖାଁଙ୍କ ସଦୃଶ ଧର୍ମାନ୍ଧ ନଥିଲେ । ତେଣୁ ଚତୁର୍ଦ୍ଧାମୂର୍ତ୍ତି ପୁନର୍ବାର ନୀଳାଚଳକୁ ପ୍ରତ୍ୟାବର୍ତ୍ତନ କଲେ ଓ ଗଜପତି ରାମଚନ୍ଦ୍ରଦେବ ବନ୍ଦୀରୁ ମୁକ୍ତ ହେଲେ । କିନ୍ତୁ ହିନ୍ଦୁସମାଜ ତାଙ୍କୁ ଗ୍ରହଣ ନକରିବାରୁ ସେ ନରସିଂହପୁର ରାଜ୍ୟାନ୍ତର୍ଗତ ନୁଖାପଡ଼ାରେ ଶେଷ ଜୀବନ କଟାଇଲେ । ୧୭୩୬ ଖ୍ରୀଷ୍ଟାବ୍ଦରେ ରାମଚନ୍ଦ୍ରଦେବଙ୍କ ମୃତ୍ୟୁପରେ ତଦୀୟ ପୁତ୍ର ବୀରକିଶୋର ଦେବ ଖୋର୍ଦ୍ଧାର ଗଜପତି ହେଲେ । ଓଡ଼ିଶାର ଏହି ଦୁର୍ଦ୍ଦିନରେ ବ୍ରଜବିହାରୀ ରାୟସିଂହ ଭ୍ରମରବର ଢେଙ୍କାନାଳର ରାଜା । ତେଣୁ ବ୍ରଜବିହାରୀଙ୍କ ରାଜତ୍ୱକାଳ ସୁଖରେ କଟିନଥିଲା ।

ରାଜା ବ୍ରଜ ବିହାରୀ ସ୍ୱପିତୃଦେବ କୁଞ୍ଜବିହାରୀଙ୍କ ପଶ୍ଚାତାପ ଓ ଅନୁଶୋଚନା ତଥା ତହିଁରୁ ଅକାଳମୃତ୍ୟୁ ଘଟିଥିବାରୁ ପ୍ରତିଶୋଧ ନେବା କାମନାରେ ଅନୁଗୋଳ ବିରୁଦ୍ଧରେ ଯୁଦ୍ଧ ଯାତ୍ରା କରିଥିଲେ । ସେ ସୈନ୍ୟବାହିନୀ ସହ ବଳରାମ ପ୍ରସାଦ ଓ ଖଡ୍ଗ ପ୍ରସାଦ ବାଟେ ଅନୁଗୋଳ ରାଜ୍ୟରେ ପ୍ରବେଶ କରି ବୁଢ଼ାପଙ୍କଗଡ଼ ଅବରୋଧ କଲେ । ଏହି ସମ୍ବାଦ ଅନୁଗୋଳ ରାଜା ଗୁପ୍ତଚରଠାରୁ ପାଇ ପ୍ରସ୍ତୁତ ହୋଇ ରହିଥିଲେ । ଉଭୟ ପକ୍ଷର ଯୁଦ୍ଧ ହେଲା ଏବଂ ଢେଙ୍କାନାଳ ରାଜା ପରାଜୟ ବରଣ କରି ପଶ୍ଚାତ୍ ଧାବନ କଲେ । ଏହି ଘଟଣାରେ ରାଜା ବ୍ରଜବିହାରୀ ଲଜ୍ଜିତ ହୋଇ ରାମଚଣ୍ଡୀଙ୍କର ଶରଣାପନ୍ନ ହେଲେ । ରାମଚଣ୍ଡୀଙ୍କର ବିଶେଷ ପୂଜାର୍ଚ୍ଚନା ପରେ ଢେଙ୍କାନାଳ ସୈନ୍ୟ ପୁନର୍ବାର ଅନୁଗୋଳ ଆଡ଼କୁ ଅଗ୍ରସର ହୋଇ ନୂଆହତାଗଡ଼ ଅବରୋଧ କରିଥିଲେ । ଉଭୟ ପକ୍ଷର ଘୋର ଯୁଦ୍ଧ ହେଲା ଏବଂ ଶେଷରେ ଅନୁଗୋଳ ସୈନ୍ୟ ପରାଜୟବରଣ କରି ପଛଘୁଞ୍ଚା ହେଲେ । ଏହି ଯୁଦ୍ଧର ଢେଙ୍କାନାଳ ରାଜ୍ୟ ବଳରାମ ପ୍ରସାଦ ଗଡ଼ର ସର୍ଦ୍ଦାର ବା ଗଡ଼ନାୟକ କେତେଗୋଟି କାଳିଆ କୁକୁରଙ୍କ ବେକରେ ଘଣ୍ଟି ଘାଗୁଡ଼ି ବାନ୍ଧି ଘୋର ନିଶାର୍ଦ୍ଧରେ ଅନୁଗୋଳ ରାଜ୍ୟ ଗୋତମରା ଦୁର୍ଗ ପାଚେରୀ ଡିଆଁଇ ଗଡ଼ ଭିତରେ ପୁରାଇ ଦେଲେ । କୁକୁରମାନେ ରାତ୍ରକାଳରେ ଦୁର୍ଗ ଭିତରେ ଇତସ୍ତତ ଧାଁ ଧଉଡ଼ କରିବାରୁ ଘଣ୍ଟିଘାଗୁଡ଼ି ଶବ୍ଦ ଶୁଣି ଦୁର୍ଗସ୍ଥିତ ସୈନ୍ୟଗଣ ଭାବିଲେ ଯେ ଗଡ଼ ଭିତରେ ଢେଙ୍କାନାଳ ସୈନ୍ୟ ପ୍ରବେଶ କରିଛନ୍ତି । ତେଣୁ ଅନୁଗୋଳ ସୈନ୍ୟ ହଠାତ୍ ଆକ୍ରମଣାତ୍ମକ ଭାବରେ ତର୍ଜନ ଗର୍ଜନ କରିବାକୁ ଆରମ୍ଭ କଲେ । ସେମାନଙ୍କର ଗର୍ଜନ ଶୁଣି କୁକୁରମାନେ ବିକ୍ଷିପ୍ତ ଭାବରେ ଦୌଡ଼ାଦୌଡ଼ି ଆରମ୍ଭ କରିବାରୁ ଘଣ୍ଟି ଘାଗୁଡ଼ି ଅଧିକ ଜୋର୍‌ରେ ବାଜିଲା । ଅନୁଗୋଳ ସୈନ୍ୟ ଅନ୍ଧାର ଭିତରେ କିଛି ଜାଣି ନପାରି ଆକ୍ରମଣ ଆରମ୍ଭ କରିଦେଲେ । ପରିଣାମରେ ସେମାନେ ପରସ୍ପର ମଧ୍ୟରେ ହିଁ ହଣାହଣି ହେଲେ। ଦ୍ୱାପର ଯୁଗରେ ଯଦୁବଂଶୀମାନେ ଯେପରି ନିଜ ନିଜ ଭିତରେ ଯୁଦ୍ଧ କରି ବଂଶ ନିପାତ କରିଥିଲେ ସେହିପରି ଅନୁଗୋଳ ସୈନ୍ୟ ନିଜ ନିଜ ଭିତରେ ଯୁଦ୍ଧ କରି ନିପାତ ହୋଇଗଲେ ଏବଂ ଦୁର୍ଗ ଅନାୟାସରେ ଢେଙ୍କାନାଳ ସୈନ୍ୟ ଅଧିକାର କରିନେଲେ । ସେହି ଦୁର୍ଗ ଗୋତ୍ରମରା ବା ଅପଭ୍ରଂଶରେ ଗୋତମରା ନାମରେ ପରିଚିହ୍ନିତ ହେଲା । ଅନୁଗୁଳ ରାଜ୍ୟର ଯେଉଁ ଅଂଶ (ମଙ୍ଗଳପୁର, ମାନପୁର, ବୁଢ଼ାପଙ୍କ, କମଳାଙ୍ଗ ପ୍ରଭୃତି) ଢେଙ୍କାନାଳ ରାଜ୍ୟଭୁକ୍ତ ହେଲା ତାହା ଗୋତମରା ବିଷ ନାମରେ

ଢେଙ୍କାନାଳର ଏକ ପ୍ରଗଣାର ମାନ୍ୟତା ପାଇଲା । ରାଜା ବ୍ରଜବିହାରୀ ସର୍ବ ମଙ୍ଗଳା ରାମଚଣ୍ଡୀଙ୍କ କୃପାରୁ ଏହି ଯୁଦ୍ଧରେ ଜୟ ଲାଭ କରିବା ପରେ ରାଜ୍ୟାଂଶ ଲାଭ କରିଥିବାରୁ ବିଜୟର ସ୍ମାରକୀ ସଦୃଶ ମଙ୍ଗଳପୁର ନାମରେ ତଥା ସିଂହ ବିଦ୍ୟାଧର ବଂଶରମାନ ରହିଥିବାରୁ ମାନପୁର ନାମରେ ଦୁଇଗୋଟି ଗ୍ରାମ ବସାଇଲେ । ଏହି ଗ୍ରାମଦ୍ୱୟ ରାଜ୍ୟର ପଶ୍ଚିମ ସୀମାରେ ଅବସ୍ଥିତ ଥିବାରୁ ସେଠାରେ କାଠ ରାଉତ ବଂଶୋଦ୍ଭବ ଦୁଇଜଣ କ୍ଷତ୍ରିୟ ବୀରଙ୍କୁ ଦଳ ବେହେରା ଓ ଗଡ଼ନାୟକ ପଦବୀରେ ନିଯୁକ୍ତି କଲେ । ବର୍ତ୍ତମାନ ମଧ୍ୟ ସେମାନଙ୍କର ବଂଶଧର ବୃନ୍ଦ ଏଠାରେ ନିବାସ କରୁଛନ୍ତି । ସେମାନଙ୍କ ଅଧୀନରେ ଅନେକ ସୁଦକ୍ଷ ପାଇକଙ୍କୁ ମହାନାୟକ ପଦବୀ ପ୍ରଦାନ ପୂର୍ବକ ସୀମା ସୁରକ୍ଷା ଦାୟିତ୍ୱରେ ରଖାଇଲେ। ଯେଉଁ ବ୍ରାହ୍ମଣ ବୃନ୍ଦ ବ୍ରଜବିହାରୀଙ୍କ ମନସ୍କାମନା ପୂରଣ ନିମିତ୍ତ ରାମଚଣ୍ଡୀଙ୍କର ବିଶେଷ ପୂଜାର୍ଚ୍ଚନା କରିଥିଲେ ସେମାନଙ୍କୁ ସ୍ୱପିତୃ ପ୍ରତିଷ୍ଠିତ କୁଞ୍ଜବିହାରୀପୁର ଶାସନର ପୃଷ୍ଠ ଭାଗରେ ବ୍ରଜବିହାରୀପୁର ନାମକ ଗୋଟିଏ ଶାସନ ନିଜ ନାମରେ ବସାଇ ନିଷ୍କର ଲାଖରାଜ ଭୂସମ୍ପତ୍ତି ପ୍ରଦାନ କଲେ । ପୂର୍ବରୁ ସେହି ସ୍ଥାନ ଚାନ୍ଦପୁର ଧଳ ସାମନ୍ତ ବୃନ୍ଦଙ୍କ ଅଧିକାରରେ ଥିଲା । ତେଣୁ ସ୍ଥାନୀୟ ଲୋକେ କୁଞ୍ଜବିହାରୀପୁର ଶାସନକୁ ବଡ଼ଧଳପୁର ଓ ବ୍ରଜବିହାରୀପୁର ଶାସନକୁ ସାନଧଳପୁର କହିଲେ । ବର୍ତ୍ତମାନ ମଧ୍ୟ ଏହି ଗ୍ରାମକୁ ଧଳପୁର କୁହାଯାଇଛି । କିନ୍ତୁ ରାଜସ୍ୱ ଅଭିଲେଖରେ ଶାସନ ଦ୍ୱୟ କୁଞ୍ଜବିହାରୀ ପୁର ଓ ବ୍ରଜବିହାରୀପୁର ଉଲ୍ଲେଖ ରହିଅଛି । ୧୭୩୦ ଖ୍ରୀଷ୍ଟାବ୍ଦରେ ଏହି ଯୁଦ୍ଧ ତଥା ଶାସନ ଓ ଗ୍ରାମ ପ୍ରତିଷ୍ଠା ହୋଇଥିବା ହୃଦ୍‌ବୋଧ ହୁଏ । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ଗୋତମରା ବିଷ ଢେଙ୍କାନାଳ ରାଜ୍ୟରେ ଅଧୀନ ହୋଇ ସଂପ୍ରତି ମୋଟଙ୍ଗା ଥାନାନ୍ତର୍ଗତ ହୋଇଅଛି । ଢେଙ୍କାନାଳ ରାଜାଙ୍କ ବୁଢ଼ାପଙ୍କ ଅଧିକାର ଆଜି ମଧ୍ୟ ଲୋକ ମୁଖରେ ''ଜୋର ଯାର, ବୁଢ଼ାପଙ୍କତାର'' ବୋଲି ପ୍ରଚାରିତ ।

ରାଜା ବ୍ରଜବିହାରୀ ଭକ୍ତ ଓ ଶାନ୍ତିପ୍ରିୟ ଥିଲେ ମଧ୍ୟ କେବେ ହେଁ ଶାନ୍ତିରେ ନିଃଶ୍ୱାସ ମାରିପାରୁ ନଥିଲେ । ରାଜତ୍ୱ ଆରମ୍ଭରୁ ଅନୁଗୋଳ ସହିତ ଦୁଇବର୍ଷ ଯୁଦ୍ଧରେ ବ୍ୟାପୃତ ରହି ପିତୃ ଅଧିକୃତ ରାଜ୍ୟ ପୁନର୍ଦଖଲ କରିପାରିଥିଲେ । ତା'ପରେ ମଧ୍ୟ ଅନ୍ୟ ଯୁଦ୍ଧ ସଂଘଟିତ ହୋଇଥିଲା । ସେହି ସମୟରେ ବର୍ଗୀମାନେ ଓଡ଼ିଶାରେ ଅତ୍ୟାଚାର ଆରମ୍ଭ କରିଦେଇଥିଲେ । ତେଣୁ ବ୍ରଜବିହାରୀ ସେମାନଙ୍କ

ପ୍ରତି ସର୍ବଦା ସଜାଗ ରହିଥିଲେ । ଏହାକୁ ଦୃଷ୍ଟିରେ ରଖି ବାବାଜୀ ରାମଦାସ ସ୍ୱରଚିତ ''ବଳଭଦ୍ର ବୋଲି''ରେ ଉଲ୍ଲେଖ କରିଛନ୍ତି–

''ବ୍ରଜବିହାରୀ ରାୟ ସିଂହ ଭ୍ରମର ବର ଏହାଙ୍କ ନନ୍ଦନ,
ସିଂହ ବିଦ୍ୟାଧର ସମାନ ନହେବେ ଏହାଙ୍କ ସୁନ୍ଦର୍ଗ ପଣ ।
ସାତ୍ତ୍ୱିକ ଭାବରେ ରାଧାକୃଷ୍ଣଠାରେ ପ୍ରେମ ରସେ ଗଦ ଗଦ,
ନାମ ଭଜନ ନିରନ୍ତର କରନ୍ତି କ୍ଷଣେ ନଛାଡ଼ନ୍ତି ପଦ ।
ତାହାଙ୍କ କାଳେ ଉଜାଡ଼ ହେଲା ପୃଥ୍ୱୀ ବରଗୀ ଅଇଲେ ମାଡ଼ି,
କାହାରି ସୁଖ କିଛି ହିଁ ନ ରହିଲା ଦୁଷ୍ଟ ଲୋକ ଗଲେ ବଢ଼ି ।
ଧର୍ମ ଧାରଣା କେହି ରଖି ନପାରି ବିଷୟ ବୁଦ୍ଧିରେ ହୀନ,
କୁଟକପଟ ଅସତ୍ୟ ବିଦ୍ୟା କରି ଥୋକାଏ ବଞ୍ଚିଲେ ବନ ।''

ଅନୁଗୁଳ ଯୁଦ୍ଧରେ ଜୟଲାଭ କରି ଫେରିବା ପରେ ରାଜ ବ୍ରଜବିହାରୀଙ୍କ ନିମିତ୍ତ ତିଗିରିଆ ରାଜା ପ୍ରସାଦରୁ ବିବାହ ପ୍ରସ୍ତାବ ପହଞ୍ଚିଲା । ତିଗିରିଆର ତତ୍‌କାଳନୀ ରାଜା ଗୋପୀନାଥ ଚମ୍ପୁପତି ସିଂହ କୃତ୍ରିମ ଉପାୟରେ ବୀରାଧିବର ଢେଙ୍କାନାଳ ଅଧିପତିଙ୍କୁ ପରାସ୍ତ କରିବା ନିମିତ୍ତ ଏହି କପଟ ବିବାହ ପ୍ରସ୍ତାବ ପଠାଇଥିଲେ । ଶାନ୍ତ ସରଳ ବ୍ରଜ ବିହାରୀ ତିଗିରିଆ ରାଜାଙ୍କର ଏହି କପଟତା ବୁଝିପାରି ନଥିଲେ । ତେଣୁ ଏହି କପଟ ବିବାହ ସ୍ଥିରୀକୃତ ହୋଇଥିଲା । ନିର୍ଦ୍ଦିଷ୍ଟ ଦିବସରେ ବର ଓ ବରଯାତ୍ରୀ ତିଗିରିଆ ଗଡ଼ରେ ବିବାହ ନିମିତ୍ତ ଉପସ୍ଥିତ ହୁଅନ୍ତେ ହଠାତ୍ ଲୁଚି ରହିଥିବା ସୈନ୍ୟମାନେ ବ୍ରଜବିହାରୀ ଓ ବରଯାତ୍ରୀଙ୍କ ଉପରେ ଆକ୍ରମଣ କଲେ । ଏହି ସମୟରେ ରାଜା ବ୍ରଜବିହାରୀ ଆପଣାର ଭାଇ ଘନଶ୍ୟାମ ଯେ କି ରାଜ୍ୟର ସେନାଧକ୍ଷ ରହି ମତ୍ତଗଜସିଂହ ନାମରେ ଖ୍ୟାତି ଅର୍ଜନ କରିଥିଲେ ତାଙ୍କ ସହିତ ଅଚଳକୋଟକୁ ପଳାୟନ କଲେ । ପରେ ରାଜଧାନୀକୁ ଫେରିଆସି ସୈନ୍ୟମଣ୍ଡଳୀ ସହ ତିଗିରିଆ ବିରୁଦ୍ଧରେ ଯୁଦ୍ଧ ଯାତ୍ରା କରିଥିଲେ । ଏହି ଯୁଦ୍ଧରେ ତିଗିରିଆ ରାଜ୍ୟର ଉତ୍ତରାଂଶ ଢେଙ୍କାନାଳ ରାଜ୍ୟଭୁକ୍ତ ହୋଇ ଛଦେଶ ବିଷ ନାମରେ ପରିଚିହ୍ନିତ ହେଲା ।

ରାଜା ବ୍ରଜବିହାରୀ ଧର୍ମ ପରାୟଣ ଓ ଦାନଶୀଳ ଥିଲେ । ସେ ବଳଭଦ୍ର ମନ୍ଦିରର ଜଗମୋହନ ନିର୍ମାଣ କରିଥିଲେ । ସେ ଅପାଣାର ରାଜପୁରୋଧା ନାରାୟଣ ଦୀକ୍ଷିତ ବଡ଼ପଣ୍ଡାଙ୍କୁ ୧୭୩୯ ଖ୍ରୀଷ୍ଟାବ୍ଦରେ ଅପଙ୍ଗା ବିଷ ଚାଉଳିଆ ଗ୍ରାମ ଦାନ କରିଥିଲେ । ମୁକ୍ତାଦେଇ ପୁର ଶାସନରେ ବିଭିନ୍ନ ଶାସନରୁ

ବ୍ରାହ୍ମଣମାନଙ୍କୁ ଆଣି ସେ ରଖାଇ ଥିଲେ । ରାଜବୈଦ୍ୟ ଫକୀର ବଡ଼ପଣ୍ଡାଙ୍କୁ ସେ ମାର୍ଥାପୁର ଶାସନରେ ରଖାଇ ବ୍ରାହ୍ମଣ ଖଣ୍ଡଖୋଳ ଓ ଘିଅଖୋଲି ନାମରେ ଦୁଇଟି ଗ୍ରାମଦାନ କରିଥିଲେ ତଥା ନୃସିଂହପୁର ଶାସନରେ ଭୂସମ୍ପତ୍ତି ପ୍ରଦାନ କରିଥିଲେ । ନିଜିଗଡ଼ ସ୍ଥିତ ବଡ଼ପଣ୍ଡାଙ୍କୁ ସେ ଭାଟକାଟେଣୀ ଓ ଅଳସୁଆ ଗ୍ରାମରେ ଜମି ଦାନ କରିଥିଲେ । ବ୍ରଜବିହାରୀଙ୍କ ମହତଗୁଣ ହେଉଛି ସେ ପ୍ରତ୍ୟହ ଦୀନଦୁଃଖୀ ଅରକ୍ଷିତ ଖଞ୍ଜ ଅନ୍ଧ ଓ ଅନାଥଙ୍କ ପାଞ୍ଚ କାହାଣୀ କଉଡ଼ି ଦାନ କରୁଥିଲେ । ଏହି ଦାନକାର୍ଯ୍ୟ ନିମିତ୍ତ ସେ ଯେଉଁ ରଜାକର୍ମଚାରୀଙ୍କୁ ନିଯୁକ୍ତି ଦେଇଥିଲେ ତାଙ୍କୁ ନିଜିଗଡ଼ ବିଷ ପାଞ୍ଚ ବାହାଣିଆ ଗ୍ରାମ ଜାୟଗିରୀ ସ୍ୱରୂପ ପ୍ରଦାନ କରିଥିଲେ । ଏତଦ୍‌ଭିନ୍ନ ସେ ସାଧୁସନ୍ଥ ବୈଷ୍ଣବବୃନ୍ଦଙ୍କୁ ସର୍ବଦା ଦାନ କରିବାରେ ସନ୍ତୋଷ ଲାଭ କରୁଥିଲେ । ତାଙ୍କ ରାଜତ୍ୱରେ ବହୁ ବୈଷ୍ଣବ ଢେଙ୍କାନାଳରେ ବାସ କରିଥିଲେ ।

ରାଜା ବ୍ରଜବିହାରୀ ଜଣେ ବୈଷ୍ଣବ କବି ଥିଲେ । ନାନାଦି ଦୁଃଖ ଅଶାନ୍ତି ଓ ଯୁଦ୍ଧ ବାତାବରଣରେ ଦିନ କଟାଇଥିଲେ ମଧ୍ୟ ପିତାଙ୍କ ସଦୃଶ ସେ କୃଷ୍ଣ ଭକ୍ତ ଥିଲେ । ସେ କେତେଗୁଡ଼ିଏ କ୍ଷୁଦ୍ର ଜଣାଣ, ଭଜନ ଓ ବୈଷ୍ଣବ ଗୀତିକା ରଚନା କରିଥିଲେ, ଯାହାକି ପରବର୍ତ୍ତୀ କାଳରେ ''ପଦ୍ୟାବଳୀ'' ନାମକ କ୍ଷୁଦ୍ର ପୁସ୍ତିକାରେ ସଂକଳିତ ହୋଇଥିଲା ।

ନିରାଶେଗମନ କଲେ ନିର୍ବେଦ ଯହିଁ ହୋଇଲେ
କେ ଦେବ ଶିବ ସେ ଆଉ ଲୋଡ଼ିଲେ
ବିଧାତା କଲେ,
ପାଇବି ମୋ ଭାଗ୍ୟ ଥିଲେ ଆରେ ସଙ୍ଗିନୀ ।
କେଦେବ ନାୟକ ଗୋରୀ ଚିତ୍ତ ଦୁଃଖେ ପରିହରି
ଭଜେ ରାଜ ସିଂହ ବ୍ରଜବିହାରୀ
ଆରେ ଚତୁରୀ
ହେବି ତାଙ୍କ ପରିଚାରୀ ଆରେ ସଜନୀ ।

ଏତଦ୍‌ଭିନ୍ନ ସେ ''ଶ୍ରୀକୃଷ୍ଣ ଶ୍ରୀରାଧା'' ବିରହର ଲୀଳାକୁ ଅତି ମାର୍ମିକ ଢଙ୍ଗରେ ପ୍ରକାଶ କରି ଅଛନ୍ତି ।

ଆହା ସେ କାହା କୁମାରୀ ଯମୁନଦ ଜିତ ଗୋରୀ
ମୋ ହୃଦେ ନେତ୍ର କଟାରୀ, ଗଳାରେ ମାରି ।୧।
କି ବୁଦ୍ଧି ଏବେ କରିବି କେମନ୍ତେ ଏଥୁ ତରିବି
ନରହି ଛୁରୀ ମାରିବି, ପ୍ରାଣ ହାରିବି ।୨।

ସଖୀ ମୋତେ ମୋହରାଣ ଏକଥା ଅଟେ ପ୍ରମାଣ
ନୋହିବ ଶୁଣ ଦାରୁଣ, ସେତ ସୁଜାଣ ।୩।
ଭଣିଲେ ବ୍ରଜବିହାରୀ ରାଜସିଂହ କରଧରି
ଆସ ତୁ ମଠ ନକରି, ରେ ସହଚରୀ ।୪।

ରାଜା ବ୍ରଜବିହାରୀଙ୍କ ବ୍ୟତୀତ ତତ୍‌କାଳୀନ ଢେଙ୍କାନାଳର ପଣ୍ଡିତ ଶ୍ରୀପତି ପଟ୍ଟଯୋଶୀ ବଡ଼ ପଣ୍ଡା, ପଣ୍ଡିତ ଗୋବିନ୍ଦ ଦୀକ୍ଷିତ, ବଡ଼ପଣ୍ଡା, ବାଲୁଙ୍କେଶ୍ୱର ପଟ୍ଟନାୟକ, ସାରଙ୍ଗଧର ପଟ୍ଟନାୟକ ପ୍ରଭୃତି କବି କୋବିଦବୃନ୍ଦ ଅନେକ ଜଣାଣ, ଭଜନ ଓ ଗୀତିକା ରଚନା କରିଥିଲେ । ସେହି ସମୟରେ ମାର୍ଥାପୁର ଶାସନ ଓ ମୁକ୍ତାଦେଇପୁର ଶାସନରେ ଦୁଇଗୋଟି ଚତୁଷ୍ପାଠୀ ଥିଲା ଏବଂ ଏଠାରେ ଛାତ୍ରଗଣ ବିଜ୍ଞ ପଣ୍ଡିତଙ୍କ ନିକଟରେ ଓଡ଼ିଆ ଓ ସଂସ୍କୃତ ଉଭୟ ଶାସ୍ତ୍ର ଅଧ୍ୟୟନ କରୁଥିଲେ । ମୁକ୍ତାଦେଇପୁର ଶାସନର ଅଧ୍ୟକ୍ଷ ଥିଲେ ପଣ୍ଡିତ ଗୋବିନ୍ଦ ଦୀକ୍ଷିତ ଏବଂ ମାର୍ଥାପୁର ଶାସନର ଅଧ୍ୟକ୍ଷ ଥିଲେ ପଣ୍ଡିତ ବୈରାଗୀ ସାମନ୍ତ ରାୟ । ଏତଦ୍‌ଭିନ୍ନ, ମାଟିବଂଶ ଅବଧାନମାନେ ଗ୍ରାମେ ଗ୍ରାମେ ଚାଟଶାଳୀ କରି ପିଲାମାନଙ୍କୁ ପଢ଼ାଇଥିଲେ ।

ରାଜା ବ୍ରଜବିହାରୀ ୧୭୪୧ ଖ୍ରୀଷ୍ଟାବ୍ଦରେ ହଠାତ୍ ପରଲୋକ ଗମନ କଲେ । ରାଜାଙ୍କର ଏହି ଅକାଳ ବିୟୋଗ ରାଜ୍ୟବାସୀଙ୍କୁ ଦାରୁଣ ଦୁଃଖ ଦେଇଥିଲା । କାରଣ ସେତେବେଳକୁ ମରହଟ୍ଟା ବର୍ଗୀ ଓ ମୁସଲମାନମାନେ ଢେଙ୍କାନାଳ ରାଜ୍ୟରେ ଅତ୍ୟାଚାର ଆରମ୍ଭ କରି ଦେଇଥିଲେ ଏବଂ ଯୁବରାଜ ଦାମୋଦର ଥିଲେ ଚିର ରୁଗ୍‌ଣ ତଥା ବିଂଶତି ବର୍ଷର ଯୁବକ ।



# ରାଜା ଦାମୋଦର ଓ ବର୍ଗୀ ଅତ୍ୟାଚାର

ରାଜା ବଜ୍ରବିହାରୀ ୧୭୪୧ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କରିବାପରେ ଯୁବରାଜ ଦାମୋଦର "ଭ୍ରମରବରରାୟ" ଉପାଧି ଧାରଣ ପୂର୍ବକ ଢେଙ୍କାନାଳ ରାଜଗାଦୀ ଆରୋହଣ କଲେ । ସେହି ସମୟରେ ଗଡ଼ଜାତମାନଙ୍କ ମଧ୍ୟରେ ଢେଙ୍କାନାଳ ଏକ ସମୃଦ୍ଧ ଗଡ଼ଜାତ ରୂପେ ପ୍ରସିଦ୍ଧ ଲାଭ କରିଥିଲା । ବିଶେଷତଃ, ଢେଙ୍କାନାଳର ବିଭିନ୍ନ ସ୍ଥାନ ତଥା ରାଜଧାନୀରେ ବୈଷ୍ଣବ ସଂପ୍ରଦାୟର ମଠ, ଇଷ୍ଟ ଶ୍ରୀବଳଦେବଜୀଉଙ୍କ ମନ୍ଦିର ଓ ଶମ୍ଭୁଗୋପାଳ ମଠ ପ୍ରଭୃତି ପ୍ରତିଷ୍ଠିତ ହୋଇ ଏହା ବୈଷ୍ଣବ ସଂସ୍କୃତିର ଏକ ପ୍ରଧାନ ପୀଠରେ ପରିଗଣିତ ହେଉଥିଲା । ସର୍ବୋପରି ରାଜପ୍ରସାଦରେ ଶ୍ରୀବୃନ୍ଦାବନ ଚନ୍ଦ୍ର ଓ ଶ୍ରୀ ରଘୁନାଥଙ୍କ ମନ୍ଦିର ନିର୍ମିତ ହୋଇ ରାଜସଭାରେ ପ୍ରତ୍ୟହ ବୈଷ୍ଣବଶାସ୍ତ୍ର ଆଲୋଚନାର ଧାରା ପ୍ରବର୍ତ୍ତିତ ହୋଇଥିଲା । ଦାମୋଦରଙ୍କ ପିତା ବ୍ରଜବିହାରୀ, ପିତାମହ କୁଞ୍ଜବିହାରୀ ଓ ପ୍ରପିତାମହ ନୃସିଂହ ସୁଶାସକ ଥାଇ ବୈଷ୍ଣବକବି ସ୍ୱରୂପରେ ପ୍ରତିଷ୍ଠା ଲାଭ କରିଥିଲେ । ପୁରୀ, ନଦୀୟା, କାଶୀ, ପ୍ରୟାଗ, ହରିଦ୍ୱାର ଓ ବୃନ୍ଦାବନ ପ୍ରଭୃତି ତୀର୍ଥ ସ୍ଥାନମାନଙ୍କରୁ ସାଧୁ ସନ୍ଥ ମହାତ୍ମା ବୃନ୍ଦ ଢେଙ୍କାନାଳ ମାଟିରେ ପଦାର୍ପଣ କରି ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ । ଫଳରେ ଢେଙ୍କାନାଳର ଖ୍ୟାତି ସର୍ବତ୍ର ବ୍ୟାପିବାକୁ ଲାଗିଲା, ଅଥଚ, ପାର୍ଶ୍ୱବର୍ତ୍ତୀ ରାଜା ଓ ସାମନ୍ତବୃନ୍ଦ ଏହା ସହ୍ୟ କରିପାରିଲେ ନାହିଁ । ସେମାନେ, ମରହଟ୍ଟାଙ୍କୁ ଢେଙ୍କାନାଳ ଆକ୍ରମଣ କରିବା ନିମିତ୍ତ ପ୍ରବର୍ତ୍ତାଇ ଥିଲେ ।

୧୭୪୧ରେ ଓଡ଼ିଶାର ସ୍ଥିତି ଭଲ ନଥିଲା । ଆଫଗାନ୍ ଓ ମରହଟ୍ଟାମାନେ ଓଡ଼ିଶାରେ ପ୍ରଭୁତ୍ୱ ଜାହାରି କରିବାକୁ ଆପଣା ଆପଣା ଭିତରେ ଦ୍ୱନ୍ଦ୍ୱରେ ବ୍ୟସ୍ତ ଥିଲେ । ବର୍ଗୀମାନେ ସମଗ୍ର ଓଡ଼ିଶାରେ ଅତ୍ୟାଚାର ଆରମ୍ଭ କରିଦେଇଥିଲେ । ୧୭୪୦ ଠାରୁ ୧୭୫୧ ପର୍ଯ୍ୟନ୍ତ ଓଡ଼ିଶା ମାଟିରେ ମୁସଲମାନ ଓ ମରହଟ୍ଟାମାନଙ୍କର ଯୁଦ୍ଧ ଲାଗି ରହିଥିଲା । ଶେଷରେ ୧୭୫୧ରେ ମରହଟ୍ଟାମାନେ ଓଡ଼ିଶା ଅଧିକାର କଲେ । ତେଣୁ ୧୭୪୦ ଠାରୁ ୧୭୫୧ ପର୍ଯ୍ୟନ୍ତ ଓଡ଼ିଶାର ସ୍ଥିତି ସଂଘର୍ଷମୟ ଥିଲା । ସେତେବେଳେ ଖୋର୍ଦ୍ଧାରେ ଗଜପତି ବୀରକେଶରୀ ଦେବ କେତେଗୋଟି ମାହାଲର ଜାଗିରୀଦାର ଭାବରେ ଆସନ

ଅଳଙ୍କୃତ କରିଥିଲେ । ଓଡ଼ିଶାର ଏହି ଦୁର୍ଦ୍ଦିନରେ ମାତ୍ର କୋଡ଼ିଏ ବର୍ଷ ବୟସରେ ଯୁବରାଜ ଦାମୋଦର ଢେଙ୍କାନାଳ ସିଂହାସନ ଆରୋହଣ କଲେ । ତତ୍‌କାଳୀନ ଢେଙ୍କାନାଳ ବିଂଶ ପ୍ରଗଣା ବିଶିଷ୍ଟ ବିଶାଳ ଭୂଖଣ୍ଡ ଥିଲା । ଢେଙ୍କାନାଳ ରାଜ୍ୟର ଚତୁଃପାର୍ଶ୍ୱରେ ପାଇକାନ୍ ଦୁର୍ଗମାନ ପ୍ରତିଷ୍ଠିତ ହୋଇ ରାଜ୍ୟଟି ସୁରକ୍ଷିତ ଥିଲା । ବିଶେଷତଃ ପଶ୍ଚିମପାର୍ଶ୍ୱ ସୀମାନ୍ତ ଦୁର୍ଗ ଭୀମନଗରୀରେ ରାଜା ଦାମୋଦରଙ୍କ କକା ଘନଶ୍ୟାମ ମତ୍ତଗଜସିଂହ ସେନାଧ୍ୟକ୍ଷ ଥାଇ ପଶ୍ଚିମ ପାର୍ଶ୍ୱରୁ ମରହଟ୍ଟାଙ୍କ ଆକ୍ରମଣକୁ ପ୍ରତିହତ କରୁଥିଲେ । କିନ୍ତୁ ଯେଉଁ ମରହଟ୍ଟା ସୈନ୍ୟମାନ ମେଦିନୀପୁର, ବାଲେଶ୍ୱର, ଯାଜପୁର ଦେଇ କଟକ ପର୍ଯ୍ୟନ୍ତ ଆସୁଥିଲେ ସେମାନଙ୍କୁ ଢେଙ୍କାନାଳଠାରୁ ପୂର୍ବରୁ ପରାସ୍ତ ହୋଇଥିବା ରାଜା ଓ ସାମନ୍ତବୃନ୍ଦ ଢେଙ୍କାନାଳ ଆକ୍ରମଣ ନିମିତ୍ତ ଉସୁକାଇଲେ । ସେମାନେ ମରହଟ୍ଟା ସୈନ୍ୟଙ୍କୁ କହିଲେ ଯେ ଓଡ଼ିଶାର ସମସ୍ତ ରାଜ୍ୟର ଧନ ଢେଙ୍କାନାଳ ରାଜବାଟୀରେ ଗଚ୍ଛିତ ରହିଛି । ଧନଲୋଲୁପୀ ଓ ଅତ୍ୟାଚାରୀ ମରହଟ୍ଟାମାନଙ୍କର କୁଦୃଷ୍ଟି ଢେଙ୍କାନାଳ ଉପରେ ପଡ଼ିଲା । ଏହି ବିଶ୍ୱାସଘାତକତାର ମୁଖ୍ୟ ସୂତ୍ରଧର ଥିଲେ ଢେଙ୍କାନାଳର ପୂର୍ବ ପାର୍ଶ୍ୱରେ ଅବସ୍ଥିତ କଳକଳା ଜମିଦାରୀଙ୍କ ଜମିଦାର ସାମନ୍ତ ।

ଢେଙ୍କାନାଳର ଯୁବକ ରାଜା ଦାମୋଦର ଓ କଳକଳା ସାମନ୍ତଙ୍କର ବିବାଦ ରହିଥିଲା । ୧୭୧୪ରେ ଦାମୋଦର ରାଜଗାଦୀ ଆରୋହଣ କରିଥିଲେ ହେଁ ଅବିବାହିତ ଥିଲେ । କଳକଳା ସାମନ୍ତ ତାଙ୍କ ସହିତ ସ୍ୱ କନ୍ୟାର ବିବାହ ପ୍ରସ୍ତାବ ପଠାଇ ଥିଲେ । କିନ୍ତୁ ଯୁବ ରାଜା ଦାମୋଦର ଏହି ପ୍ରସ୍ତାବରେ ଅସମ୍ମତି, ପ୍ରକାଶ କଲେ । ଏଥିରେ କ୍ରୁଦ୍ଧ ହୋଇ କଳକଳା ସାମନ୍ତ ରାଜ୍ୟର ପୂର୍ବାଂଶରେ ବିଦ୍ରୋହ ଆରମ୍ଭ କଲେ । ତତ୍‌କ୍ଷଣାତ୍ ରାଜା ଦାମୋଦର ସସୈନ୍ୟ ଅଗ୍ରସର ହୋଇ କଳାକଳା ସାମନ୍ତଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କର ବହୁ ଧନସମ୍ପତ୍ତି ଆଣିଲେ । ଏହାର ପ୍ରତିଶୋଧ ନେବା ନିମିତ୍ତ କଳକଳା ସାମନ୍ତ ମରହଟ୍ଟାମାନଙ୍କ ସାହାଯ୍ୟ ଲୋଡ଼ିଲେ । ସେହି ସମୟରେ ମରହଟ୍ଟା ସୈନ୍ୟମାନେ ବାଲେଶ୍ୱରରୁ କଟକ ଅଭିମୁଖେ ଯାଉଥିଲେ । କଳକଳା ଅଧିପତି ସେମାନଙ୍କୁ କହିଲେ ଯେ "ଢେଙ୍କାନାଳ ରାଜକୋଷରେ ପ୍ରଚୁର ପରିମାଣରେ ସୁନା, ରୁପା, ହୀରା, ମଣିମାଣିକ୍ୟ ଗଚ୍ଛିତ ରହିଛି ।" ମରହଟ୍ଟା ସୈନ୍ୟ ଧନଲୋଭରେ ଢେଙ୍କାନାଳ ଆକ୍ରମଣ କରିବାକୁ ମନସ୍ଥ କଲେ । କିନ୍ତୁ ବନପର୍ବତ ପରିବେଷ୍ଟିତ ଢେଙ୍କାନାଳ ରାଜ୍ୟ ମଧ୍ୟକୁ ପ୍ରବେଶ କରିବା ସହଜ ନଥିଲା । ବଣ ଜଙ୍ଗଲ ରାସ୍ତାରେ

ଢେଙ୍କାନାଳ ରାଜ୍ୟକୁ ପ୍ରବେଶ ସୁବିଧା ନପାଇବାରୁ ମରହଟ୍ଟା ସୈନ୍ୟମାନେ କଳକଳା ସାମନ୍ତଙ୍କ ପରାମର୍ଶରେ ପୁନର୍ବାର ଉତ୍ତର ଦିଗକୁ ଯାତ୍ରା କରି ମଧୁପୁର ଗଡ଼ରେ ପହଞ୍ଚିଲେ । ମଧୁପୁର ରାଜାଙ୍କର ମଧ ଢେଙ୍କାନାଳ ପ୍ରତି ପୂର୍ବରୁ ଶତ୍ରୁତା ଥିଲା । ତେଣୁ ସେ ବ୍ରାହ୍ମଣୀ ନଦୀ ପଥରେ ଢେଙ୍କାନାଳ ରାଜ୍ୟରେ ପ୍ରବେଶ କରିବାର ବାଟ ମରହଟ୍ଟା ସୈନ୍ୟଙ୍କୁ ଦେଖାଇ ଦେଲେ । ମରହଟ୍ଟା ସୈନ୍ୟମାନେ ବ୍ରାହ୍ମଣ ନଦୀ ବାଟେ ଆସି ପ୍ରଥମେ ଢେଙ୍କାନାଳରର ପିଙ୍ଗୁଆ ଗ୍ରାମରେ ପହଞ୍ଚିଲେ । ସେହି ଗ୍ରାମଟି ଏକ ବ୍ୟବସାୟୀ ଗ୍ରାମ ତଥା ଅନେକ ଧନୀ ବ୍ୟକ୍ତିଙ୍କ ନିବାସସ୍ଥଳୀ । ଏହି ସୂଚନା ମଧୁପୁର ରାଜା ମରହଟ୍ଟା ସୈନ୍ୟଙ୍କୁ ପ୍ରଦାନ କରିଥିଲେ । ମରହଟ୍ଟା ସୈନ୍ୟ ପିଙ୍ଗୁଆ ଗ୍ରାମବାସୀଙ୍କୁ ଆକ୍ରମଣ କରି ଅଜସ୍ର ଧନ ସମ୍ପତ୍ତି ଲୁଟି ନେଲେ । ପିଙ୍ଗୁଆ ଗ୍ରାମ ଲୁଟି ସାରିବାପରେ ମରହଟ୍ଟା ସୈନ୍ୟମାନେ ଦୁଇଦଳରେ ବିଭକ୍ତ ହୋଇଗଲେ । ଗୋଟିଏ ଦଳ ବ୍ରାହ୍ମଣୀ ନଦୀର ଉତ୍ତର ପାର୍ଶ୍ୱସ୍ଥ ଗ୍ରାମ ଯଥା– ଭୁବନ, ଆଦିପୁରା, ଦୀଘୀ, ଯମୁନାକୋଟ, ସୁଆଁଳ, ମାଳପୁରା ମହୁଲପାଳ, ଭୈରପୁର, ବୁଢ଼ୀବିଲି ପ୍ରଭୃତି ଗ୍ରାମମାନଙ୍କର ଲୁଟତରାଜ ଆରମ୍ଭ କଲେ ଏବଂ ଅନ୍ୟ ଗୋଟିଏ ଦଳ ବ୍ରାହ୍ମଣ ନଦୀର ଦକ୍ଷିଣପାର୍ଶ୍ୱସ୍ଥ ଗ୍ରାମ ଯଥା– କରମୂଳ, କାଲୁରିଆ, ଯୋରନ୍ଦା, ବଣସିଂହ, ନାଗନା, ଗେଙ୍ଗୁଟିଆ ପ୍ରଭୃତି ଗ୍ରାମମାନଙ୍କରେ ଅତ୍ୟାଚାର ଆରମ୍ଭ କଲେ । ମହରଟ୍ଟା ସୈନ୍ୟଙ୍କ ଆକ୍ରମଣ ଓ ଲୁଟତରାଜ ରୋମହର୍ଷଣକାରୀ ଥିଲା । ଲୋକମାନେ ଏହି ଲୁଣ୍ଠନକାରୀ ମରହଟ୍ଟାମାନଙ୍କୁ "ବର୍ଗୀ" ବୋଲି କହୁଥିଲେ । ସେମାନେ ବର୍ଗ ବା ଦଳବଦ୍ଧ ହୋଇ ଆକ୍ରମଣ କରୁଥିବାରୁ ସେମାନଙ୍କୁ ବର୍ଗୀ କୁହାଯାଉଥିଲା । ବର୍ଗୀମାନେ କ୍ଷିପ୍ରଗାମୀ ଅଶ୍ୱ ପୃଷ୍ଠରେ ଢାଲ, ତରବାରୀ, କଟାରୀ, ବର୍ଚ୍ଛା ଓ ବନ୍ଧୁକ ପ୍ରଭୃତି ମାରଣାସ୍ତ୍ର ଧରି ଦଳବଳ ସହ ଗ୍ରାମମାନଙ୍କରେ ପ୍ରବେଶ କରୁଥିଲେ । ଗ୍ରାମର ସର୍ବସ୍ୱ ସମ୍ପତ୍ତି ଲୁଣ୍ଠନ କରିବା ସହିତ ସ୍ଥଳ ବିଶେଷରେ ସେମାନେ ଘର ମଧ ପୋଡ଼ି ଦେଉଥିଲେ । ବର୍ଗୀମାନଙ୍କ ଭୟରେ ଗ୍ରାମବାସୀମାନେ ଆତଙ୍କିତ ଅବସ୍ଥାରେ ରହୁଥିଲେ । ସ୍ଥାନେ ସ୍ଥାନେ ଉଚ୍ଚ ମଞ୍ଚା ପ୍ରସ୍ତୁତ ପୂର୍ବକ ସେଠାରେ କେତେକ ଗ୍ରାମବାସୀ ପହରା ଦେଉଥିଲେ । ଦୂରରୁ ବର୍ଗୀମାନଙ୍କ ଆଗମନର ସୂଚନା ପାଇ ପହରାଦାରମାନେ ଗ୍ରାମବାସୀଙ୍କୁ ଜଣାଇ ଦେଉଥିଲେ ଏବଂ ଗ୍ରାମବାସୀମାନେ ଧନସମ୍ପତ୍ତି ନେଇ ନିରୁପଦ୍ରବ ସ୍ଥାନକୁ ଚାଲି ଯାଉଥିଲେ । ଏତେ ସତର୍କତା ସତ୍ତ୍ୱେ ମଧ ବର୍ଗୀମାନେ ଢେଙ୍କାନାଳର ବହୁଗ୍ରାମ ଲୁଟତରାଜ କରିବା

ସହିତ ଅନେକ ଗ୍ରାମ ପୋଡ଼ି ଦେଇଥିଲେ । କେତେକ କ୍ଷେତ୍ରରେ ସ୍ଥାନୀୟ ପାଇକମାନେ ବର୍ଗୀ ଆକ୍ରମଣର ପ୍ରତିରୋଧ କରିଥିଲେ ହେଁ ବନ୍ଧୁକ ବ୍ୟବହାର ଜାଣି ନଥିବାରୁ ପରାସ୍ତ ହୋଇଥିଲେ ।

ବ୍ରାହ୍ମଣୀତଟସ୍ଥ ଗ୍ରାମମାନଙ୍କରେ ଦିନକୁ ଦିନ ବର୍ଗୀଙ୍କ ଅତ୍ୟାଚାର ଓ ଲୁଣ୍ଠନ ବୃଦ୍ଧି ପାଇଲା । ଏହି ସମ୍ବାଦ ତତ୍‌କ୍ଷଣାତ୍ ରାଜଧାନୀର ଢେଙ୍କାନାଳରେ ପହଞ୍ଚି ରାଜା ଦମୋଦରଙ୍କ କର୍ଣ୍ଣଗୋଚର ହେଲା । ରାଜ୍ୟ ମଧ୍ୟରେ ବର୍ଗୀମାନଙ୍କ ମର୍ମବିଦାରକ ଲୁଣ୍ଠନ ଓ ଅତ୍ୟାଚାର ଖବର ଶୁଣି ରାଜା ମର୍ମାହତ ହେଲେ । ଲୁଣ୍ଠନ ଓ ଅତ୍ୟାଚାର ନିରାକରଣ କରିବାରେ ପ୍ରତିବିଧାନ କରିବା ପୂର୍ବରୁ ବର୍ଗୀମାନେ ଢେଙ୍କାନାଳ ଗଡ଼ରେ ଆସି ଉପସ୍ଥିତ ହୋଇଗଲେ । ଯୁବକରାଜା ଏହି ଘଟଣାରେ କିଂକର୍ତ୍ତବ୍ୟ ମୁଢ଼ ହୋଇଗଲେ । ଦୁର୍ଯୋଗକୁ ମିଆଁ ମର୍ଜାନ ନାମକ ଜନୈକ ମୁସଲମାନ ବର୍ଗୀମାନଙ୍କ ସହିତ ମିଶି ଢେଙ୍କାନାଳ ରାଜକୋଷ ଲୁଣ୍ଠନ ନିମିତ୍ତ ଉଦ୍ୟତ ହେଲା । ଏଥିରେ ଅନ୍ୟୋନ୍ୟପାୟ ହୋଇ ରାଜା ଦାମୋଦର ସ୍ୱଳ୍ପ କେତେକ ସୈନ୍ୟଙ୍କ ସହିତ ବର୍ଗୀ ବାହିନୀର ପ୍ରତିରୋଧ କଲେ । କାରଣ ସେତେବେଳକୁ ବହୁ ସୈନ୍ୟ ପ୍ରଜାମାନଙ୍କ ଧନ ଜୀବନ ସୁରକ୍ଷା ନିମିତ୍ତ ମଫସଲ ଗ୍ରାମାଭିମୁଖେ ଚାଲି ଯାଇଥିଲେ । ଢେଙ୍କାନାଳ ରାଜାଙ୍କ ସ୍ୱଳ୍ପ ସୈନ୍ୟ ଓ ମରହଟ୍ଟା ବର୍ଗୀଙ୍କର ଭୀଷଣ ଯୁଦ୍ଧ ହେଲା । ରାଜା ମଧ୍ୟ ନିଜେ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ଏହା ୧୭୪୩ ଖ୍ରୀଷ୍ଟାବ୍ଦର ଘଟଣା । ଯୁବକରାଜା ଦାମୋଦରଙ୍କ ରଣ କୌଶଳ ଓ ବନ୍ଧୁକ ଚାଳନା ଉଚ୍ଚକୋଟୀର ଥିଲା । ସେ ନିଜେ ପ୍ରାୟ ୨୫ଜଣ ମରହଟ୍ଟା ସୈନ୍ୟଙ୍କୁ ନିହିତ କରିଥିଲେ । ଶେଷରେ ଧନଲିପ୍ସୁ ମରହଟ୍ଟାଙ୍କର ଜୟ ହେଲା ଏବଂ ରାଜା ଦାମୋଦର ମିଆଁ ମର୍ଜାନ ହାତରେ ନିହିତ ହେଲେ । ଏ ସଂପର୍କରେ ଢେଙ୍କାନାଳର ମାଦଳାପାଞ୍ଜି ସଦୃଶ ବଳଭଦ୍ର ବୋଲିରେ ଉଲ୍ଲେଖ ଅଛି–

''ତାଙ୍କ ନନ୍ଦନ ରାଜତ୍ୱ ତହୁଁ କଲେ ସୁନ୍ଦର ମଧୁର ମୂର୍ତ୍ତି,
ନାମ ଦାମୋଦର ଭ୍ରମରବର ସେ ପ୍ରସନ୍ନ ବି ଦିନ ଅତି ।
ବରଷେ ଆଠ ମାସ ଭୋଗ ତାଙ୍କର ଦୁର୍ଯୋଗ ବହୁତ ପଡ଼ି,
ସହସ୍ର ବାଜିଲା ମେଳି ଉପୁଜିଲା ଲୋକେ ହେଲେ ତଡ଼ାତଡ଼ି ।
କଲକଲା ମାରି କଳଙ୍କ ଲାଗିଲା କେହି ନପାରିଲେ ଜାଗି
ରାଜା କୁଟକରି କୋଟ ନ ଛାଡ଼ିଲେ ପ୍ରାଣେ ହେଲେ ଯତିତ୍ୟାଗୀ ।''

ଯୁବକ ରାଜା ଦାମୋଦରଙ୍କ ଅକାଳ ବିୟୋଗରେ ଚତୁର୍ଦ୍ଦିଗରେ ହାହାକାର ବ୍ୟାପିଗଲା । ରାଜା ଅବିବାହିତ ଥିଲେ । ଢେଙ୍କାନାଳ ରାଜ ପରିବାରର ପ୍ରଥା ଓ ପରମ୍ପରା ଅନୁଯାୟୀ ରାଜମାତା ବିଧବା ଥିବାରୁ ରାଜପ୍ରସାଦରେ ନରହି ଭୀମନଗରୀ ଦୁର୍ଗରେ ରହୁଥିଲେ । କେବଳ ଦାସ ଦାସୀ ନଅରରେ ଥିଲେ । ଅନାୟାସରେ ମିଆଁ ମର୍ଜାନ ସହ ମରହଟ୍ଟା ସୈନ୍ୟ ଢେଙ୍କାନାଳ ରାଜକୋଷ ଲୁଟି ନେଲେ । ଲୋକକଥା ଅନୁସାରେ ସେମାନେ ରାଜକୋଷରୁ ଏକ ମହଣ ସୁନା, ୧୪୨ଟି ହୀରା, ୨୧ଟି ଲୀଳା ଖଚିତ ମଣିମାଳ, ୨ଟି ବୈଢୂର୍ଯ୍ୟ ଖଚିତ ମଣିମାଳ ତଥା ୫୦ ହଜାର କାହାଣ କଉଡ଼ି ଲୁଟି ନେଇଥିଲେ । ରାଜାଙ୍କର ମୃତ୍ୟୁ ଖବର ବିଦ୍ୟୁତ୍ ବେଗରେ ବ୍ୟାପିଗଲା । ସଙ୍ଗେ ସଙ୍ଗେ ଗଡ଼ରକ୍ଷା ନିମିତ୍ତ ଭୀମନଗରୀ ଦୁର୍ଗରୁ ରାଜାଙ୍କର ଭାଇବିରାଦର ଅର୍ଥାତ୍ ରାଜା ଦାମୋଦରଙ୍କ କକା ସନ୍ନ୍ୟାସୀ ହୋଇଥିବା ବେଣୁଧରଙ୍କ ବଂଶଧର ତଥା ଅନ୍ୟତମ କକା ଘନଶ୍ୟାମଙ୍କ ବଂଶଧର ସୈନ୍ୟସାମନ୍ତ ସହ ଆସି ଢେଙ୍କାନାଳରେ ଉପଗତ ହେଲେ । ଏତଦ୍‌ଭିନ୍ନ ପରଜଙ୍ଗ, ଗଡ଼ନୃସିଂହ ପ୍ରସାଦ, ଖଡ୍ଗ ପ୍ରସାଦ ପ୍ରଭୃତି ଦୁର୍ଗରୁ ଅସଂଖ୍ୟ ସୈନ୍ୟ ଢେଙ୍କାନାଳରେ ଆସି ପହଞ୍ଚିଗଲେ । ଏହି ବିଶାଳ ସୈନ୍ୟ ସମାବେଶ ଦେଖି ମିଆଁମର୍ଜାନ୍ ସହିତ ମରହଟ୍ଟା ବର୍ଗୀମାନେ ତିଗିରିଆ ରାଜ୍ୟ ଦେଇ ଲୁଟିଥିବା ଧନ ସମ୍ପତ୍ତି ସହ କଟକ ପଳାଇଗଲେ । ୧୭୪୧ରୁ ମାତ୍ର ଏକବର୍ଷ ଛଅମାସ ରାଜତ୍ୱ କରିଥିବା ରାଜା ଦାମୋଦରଙ୍କ ମିଆଁ ମର୍ଜାନ ହାତରେ ୧୭୮୩ରେ ମୃତ୍ୟୁ ତଥା ରାଜଉଆସ ଲୁଟି ହେବାର ବିବରଣୀ ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ''ଭଗୀରଥ କୀର୍ତ୍ତିକଳାପ'' ଗ୍ରନ୍ଥରେ ଉଲ୍ଲିଖିତ ।

କରନ୍ତେ ରାଜ୍ୟ ବର୍ଷେ ଛ ମାସ
ମିଆଁ ମର୍ଜାନ କଲା ବିନାଶ
ଲୁଟି ନେଲା ସେ ତାଙ୍କ ଉଆସ
ବଡ଼ ପାମର ସେ......

ରାଜା ଦାମୋଦରଙ୍କ ମୃତ୍ୟୁପରେ ରାଜପଣ୍ଡିତ, ପାରିଷଦ ଓ ସାମନ୍ତ ଅମାତ୍ୟବର୍ଗଙ୍କ ପରାମର୍ଶକ୍ରମେ ତାଙ୍କ ସନ୍ନ୍ୟାସୀ ହୋଇଥିବା ମଝିଆ କକା ବେଣୁଧର ହରିଚନ୍ଦନଙ୍କ ପୁତ୍ର କୁମାର ସାହେବ ଜଗନ୍ନାଥ ଭ୍ରମରବର ଉପାଧିରେ ଭୂଷିତ ହୋଇ ରାଜଗାଦୀରେ ବସିଲେ । ତତ୍‌ପରେ ରାଜବଂଶ ପ୍ରଥାନୁସାରେ ମୃତ ରାଜାଙ୍କ ଶବ ମଡ଼ା ଦେଉଳ ଶ୍ମଶାନରେ ଦାହ କରାଯାଇ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନ

ହେଲା । ଏହି ମଡ଼ା ଦେଉଳ ଶ୍ମଶାନଟି ଅଦ୍ୟାବଧି ଗୋପବନ୍ଧୁ ଟାଉନ୍‌ହଲର ପଶ୍ଚିମ ଦିଗରେ ଅବସ୍ଥିତ । ଏଠାରେ ଢେଙ୍କାନାଳ ରାଜବଂଶର ପ୍ରତ୍ୟେକ ରାଜାଙ୍କର ସମାଧି ବିଦ୍ୟମାନ । ୧୭୪୩ରେ ଜଗନ୍ନାଥ ଭ୍ରମରବର ଢେଙ୍କାନାଳର ରାଜା ହେଲେ । ରାଜା ସେ ସମୟରେ ନାବାଳକ ଥିବାରୁ ଦାମୋଦରଙ୍କ ସାନକକା ବୃଦ୍ଧ ଘନଶ୍ୟାମ ମତ୍ତଗଜସିଂହ ମାରଫତ୍‌ଦାର ହେଲେ । ଦୁର୍ଯୋଗକୁ ଅଳ୍ପଦିନ ପରେ ତାଙ୍କର ମଧ ମୃତ୍ୟୁ ହୋଇଗଲା । ସାରା ଢେଙ୍କାନାଳ ରାଜ୍ୟରେ ଅରାଜକତା ବ୍ୟାପିଗଲା । ନାବାଳକ ଜଗନ୍ନାଥ ଭ୍ରମରକର ରାଜଗାଦୀ ସମ୍ଭାଳି ପାରିଲେ ନାହିଁ । ମରହଟ୍ଟା ବର୍ଗୀମାନେ ପୁନର୍ବାର ରାଜ୍ୟ ମଧରେ ଲୁଟି ଓ ଅତ୍ୟାଚାର ଆରମ୍ଭ କରିଦେଲେ । ଚତୁର୍ଦ୍ଦିଗରେ ଅଶାନ୍ତି ବୃଦ୍ଧି ହେବାକୁ ଲାଗିଲା । ଏ ସଂପର୍କରେ ''ବଳଭଦ୍ର ବୋଲି''ରେ ଉଲ୍ଲେଖ ଅଛି–

ତାଙ୍କ ନିୟତ ଲୋକର ଅପବାଦ କହିଲେ ସରିବ ନାହିଁ,
ଯେଉଁମାନେ ତାହା ଭୋଗ କରିଛନ୍ତି ତାଙ୍କ ମନେଥିବ ରହି ।
ଏଥି ଉତ୍ତାରେ ଅନାଥ ହେଲା ମହୀ ଅନାଥ ଦିଶିଲା ଭଲେ,
କରୁଣା ନିଧାନ ସିଦ୍ଧ ବଳରାମ ପୁଣି ସଞ୍ଚ ରଖିଥିଲେ ।

ହୃଦ୍‌ବୋଧ ହୁଏ, ୧୭୪୩ରେ ଜଗନ୍ନାଥ ଭ୍ରମରବରଙ୍କ ରାଜତ୍ୱରେ ସମଗ୍ର ଢେଙ୍କାନାଳରେ ମରହଟ୍ଟା ବର୍ଗୀଙ୍କ ଅତ୍ୟାଚାର ଓ ଉତ୍ପୀଡ଼ନ ତଥା ଲୁଟତରାଜ ବୃଦ୍ଧି ପାଇଥିଲା ।

ସେହି ସମୟରେ ଢେଙ୍କାନାଳ କାହିଁକି ସମଗ୍ର ଓଡ଼ିଶାରେ ବର୍ଗୀ ଅତ୍ୟାଚାର ଆରମ୍ଭ ହୋଇ ଲୋକଙ୍କ ଧନ ଜୀବନ ବିପନ୍ନ ହୋଇଥିଲା । ଏପରିକି ବର୍ଗୀ ନାଁ ଶୁଣିଲେ ଲୋକେ ଆତଙ୍କିତ ହୋଇଯାଉଥିଲେ । ପ୍ରଜାଙ୍କୁ ରକ୍ଷା କରିବାକୁ ତତ୍‌କାଳୀନ ଓଡ଼ିଶା ଶାସକ ଅସମର୍ଥ ଥିଲେ । ସେତେବେଳେ ବଙ୍ଗ ନବାବ ଥିଲେ ଆଲିବର୍ଦ୍ଦିଖାଁ ଏବଂ ତାଙ୍କ ଅଧୀନରେ ଜଣେ ନାଏବ ନାଜିମ୍ କଟକରେ ରହି ଓଡ଼ିଶା ଶାସନ କରୁଥିଲେ । ମହରଟ୍ଟାମାନଙ୍କ ସର୍ଦ୍ଦାର ଥିଲେ ଭାସ୍କର ପଣ୍ଡିତ । ଆଲିବର୍ଦ୍ଦୀଖାଁଙ୍କ ସହିତ ମରହଟ୍ଟାମାନଙ୍କର ଓଡ଼ିଶା ମାଟିରେ ଅନେକ ଥର ସଂଗ୍ରାମ ଘଟିଛି । ପ୍ରଥମରେ ମରହଟ୍ଟାମାନେ ପରାଜୟ ବରଣ କରି ଓଡ଼ିଶାରୁ ଚାଲିଯାଇଥିଲେ ହେଁ କଳକଳା ସାମନ୍ତଙ୍କ ସଦୃଶ ଦେଶଦ୍ରୋହୀଙ୍କ ଯୋଗୁଁ ପୁନର୍ବାର ଓଡ଼ିଶାରେ ପ୍ରବେଶ କରିଥିଲେ । ୧୭୪୩ରେ ନିଜେ ରଘୁଜୀ ଭୋଁସଲା ବଙ୍ଗ ଓ ଓଡ଼ିଶାରୁ ''ଚୌଥ'' ଓ ''ସରଦେଶମୁଖୀ'' ଆଦାୟ କରିବା ନିମିତ୍ତ ସସୈନ୍ୟ

ମୁର୍ଶିଦାବାଦରେ ପହଞ୍ଚିଲେ । ଏହି ସୁଯୋଗରେ ଅନେକ ମରହଟ୍ଟା ବର୍ଗୀ ମୟୂରଭଞ୍ଜ ଓ କେନ୍ଦୁଝର ବାଟରେଇ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅତ୍ୟାଚାର ଓ ଲୁଟତରାଜ ଆରମ୍ଭ କରିଥିଲେ । ସେହିମାନଙ୍କୁ ହିଁ କଳକଳା ସାମନ୍ତ ଶିଖାଇ ଢେଙ୍କାନାଳ ରାଜକୋଷ ଲୁଣ୍ଠନ ନିମିତ୍ତ ପ୍ରବର୍ତ୍ତାଇ ଥିଲେ । ରାଜାଙ୍କୁ ମାରି ରାଜକୋଷ ଲୁଣ୍ଠନ କରିବାପରେ ସେମାନଙ୍କର ଆସ୍ପର୍ଦ୍ଧା ବଢ଼ି ଯାଇଥିଲା । ତାପରେ ଜଣେ ନାବାଳକ ରାଜା ଗାଦୀରେ ବସିବା ଦେଖି ସେମାନଙ୍କ ଅତ୍ୟାଚାର ଆଶାତୀତ ଭାବରେ ବୃଦ୍ଧି ପାଇଲା । ଢେଙ୍କାନାଳର ଏହି ଦୁର୍ଦ୍ଦିନରେ କୌଣସି ପ୍ରତିବେଶୀ ରାଜ୍ୟ ବା ଓଡ଼ିଶା ଶାସକ ସାହାଯ୍ୟ କରିପାରିଲେ ନାହିଁ । ଇତିହାସ ବର୍ଣ୍ଣନା ଅନୁସାରେ ପ୍ରାୟ ପନ୍ଦର ହଜାର ମରହଟ୍ଟା ସୈନ୍ୟ ଓଡ଼ିଶାରେ ପ୍ରବେଶ ପୂର୍ବକ ଲୁଣ୍ଠନ ଓ ଅତ୍ୟାଚାର ଚଳାଇଥିଲେ । ତନ୍ମଧ୍ୟରୁ କେବଳ ତିନି ହଜାର ମରହଟ୍ଟା ଅଶ୍ୱାରୋହୀ ବର୍ଗୀ ଢେଙ୍କାନାଳ ରାଜ୍ୟରେ ଅତ୍ୟାଚାର ଓ ଲୁଣ୍ଠନ ଚଳାଇ ସମଗ୍ର ରାଜ୍ୟକୁ ଆତଙ୍କିତ କରି ଦେଇଥିଲେ ।

ଷୋଡଶ ଶତାବ୍ଦୀର ଶେଷ ଭାଗରେ ଉଦୀୟମାନ ବୀର ହରିସିଂହ ବିଦ୍ୟାଧର ଅଭିନବ ଢେଙ୍କାନାଳ ରାଜ୍ୟ ପ୍ରତିଷ୍ଠା କରିଥିଲେ । ତାଙ୍କର ଉତ୍ତରାଧିକାରୀବୃନ୍ଦ ସୁଯୋଗ ଦାୟାଦ ଭାବରେ ଏହି ରାଜ୍ୟର ଉତ୍ତରୋତ୍ତର ଅଭିବୃଦ୍ଧି ଘଟାଇ ଅଷ୍ଟାଦଶ ଶତାବ୍ଦୀର ବେଳକୁ ଏହାକୁ ଓଡ଼ିଶାର ଏକ ସମୃଦ୍ଧ ଓ ସଂସ୍କୃତି ସଂପନ୍ନ ରାଜ୍ୟରେ ପରିଣତ କରିଥିଲେ । ରାଜବଂଶର ସପ୍ତମ ପୁରୁଷ ବ୍ରଜବିହାରୀଙ୍କ ପରେ ଢେଙ୍କାନାଳ ଆକାଶରେ କଳାବାଦଲ ଘୋଟିଗଲା । ସେତେବେଳକୁ ସମଗ୍ର ଢେଙ୍କାନାଳ କୋଡ଼ିଏ ଗୋଟି ବିଷରେ ବିଭକ୍ତ ବୃହତ୍ ରାଜ୍ୟ ଥିଲା । ପାଣି ଓହଳା ପର୍ବତର ପାଦ ଦେଶରେ ବଂଶବନ ମଧ୍ୟରେ ରାଜ ପ୍ରସାଦ ଏବଂ ,ଏହାର ପଶ୍ଚିମରେ ବଳଦେବଜୀଉଙ୍କ ମନ୍ଦିର ତଥା ସେହିଠାରୁ ମୁକ୍ତାଦେଇପୁର ଶାସନ ପର୍ଯ୍ୟନ୍ତ ସୁବିସ୍ତୃତ ଥିଲା ଢେଙ୍କାନାଳ ନଗର । ନଗରରେ ବଳରାମଙ୍କ ମନ୍ଦିର ସହିତ ଦଧିବାମନ ମଠ, ହନୁମାନ ସାହିର ହନୁମାନ, ମୁକ୍ତାଦେଇପୁର ଶାସନର ସୋମନାଥେଶ୍ୱର ଓ ଗୋପୀନାଥ, ମାଣ୍ଡବା ସାହିର ଶମ୍ଭୁଗୋପାଳ ପ୍ରଭୃତି ମଠ ଓ ମନ୍ଦିର ସେହି ସମୟରୁ ପ୍ରତିଷ୍ଠା ହୋଇ ସାରିଥିଲା । ଏତଦ୍‌ଭିନ୍ନ ଖୁଣ୍ଟୁଝରୀଠାରେ ରାଧାକୃଷ୍ଣ ମଠ, ଡେଙ୍ଗବୋରେଇରେ ରଘୁନାଥ ଜୀଉ, ଭାପୁରର ଗୋପୀନାଥଜୀଉ, ଜୀରାଡ଼ାମାଳୀରେ ରଘୁନାଥ ମଠ, ଖୋକସାରେ ଗୋପୀନାଥଜୀଉ ମଠ ପ୍ରଭୃତି ପ୍ରତିଷ୍ଠିତ ହୋଇ ସମଗ୍ର ରାଜ୍ୟରେ

ବୈଷ୍ଣବ ସଂସ୍କୃତିର ଉତ୍ତରୋତ୍ତର ବିଚାଶ ଘଟି ସାରିଥିଲା । ଗ୍ରାମେ ଗ୍ରାମେ ଭାଗବତ ଟୁଙ୍ଗୀ ବସି ଭାଗବତ ଧର୍ମର ପ୍ରସାର ଘଟିଥିଲା । ଠିକ୍ ଏତିକିବେଳେ ତିନିଶହ ବର୍ଷର ସାଂସ୍କୃତିକ ପୀଠ ଢେଙ୍କାନାଳ ଓ ହରିବିଦ୍ୟାଧରଙ୍କ ବଂଶରେ କଳଙ୍କ ଲାଗିବାର ସୂଚନା ଉପଲବ୍ଧି ହେଲା । ମରହଟ୍ଟାବର୍ଗୀଙ୍କ ଆକ୍ରମଣ ଏବଂ ମିଆଁମର୍ଜାନ ଦ୍ୱାରା ରାଜାଙ୍କ ହତ୍ୟା ପ୍ରଜାକୁଳକୁ ଆତଙ୍କିତ କରି ପକାଇଲା । ଗ୍ରାମର ସର୍ବରାକାର ଓ ବିଷର ବେହେରା ପଧାନମାନେ ପ୍ରଜାଙ୍କ ଧନଜନ ସୁରକ୍ଷା ନିମିତ୍ତ ତତ୍ପର ହୋଇ ଉଠିଲେ । ଗଁପୁର, ଗଡ଼ନୃସିଂହ ପ୍ରସାଦ, ହଦଗଡ଼, ଶିବୁଲାଗଡ଼, ମାଣିତ୍ରୀଗଡ଼, ଗଡ଼ପର୍ଜଙ୍ଗ, ଭୀମନଗରୀ, ଗୋବିନ୍ଦପୁର, ଖଡ୍ଗ ପ୍ରସାଦ ପ୍ରଭୃତି ଦୁର୍ଗରେ ଥିବା ଯୋଦ୍ଧା ବୃନ୍ଦ ସଜାଗ ହୋଇପଡ଼ିଲେ । ଜାଗିରୀଦାର ପାଇକମାନେ ରାଜ୍ୟ ରକ୍ଷା ଲାଗି ଅଣ୍ଟା ଭିଡ଼ିଲେ । ଗ୍ରାମ ସର୍ବରାକାରଙ୍କ ନିର୍ଦ୍ଦେଶରେ ପାଇକମାନେ ପାଳିକରି ଦିବରାତ୍ର ଉଜାଗର ରହି ଗ୍ରାମ ଜଗିଲେ । ଦୈବାତ୍ ମରହଟ୍ଟାବର୍ଗୀ ଆକ୍ରମଣ କଲେ ମିଳିତ ଭାବରେ ତାଙ୍କୁ ଆକ୍ରମଣ କରାହେଉଥିଲା । ସେମାନେ କେବଳ ବନ୍ଧୁକ ଦ୍ୱାରା ଜୟ ଲାଭ କରୁଥିଲେ । କୌଣସି ଗୋଟିଏ ସ୍ଥାନରେ ବର୍ଗୀ ଆକ୍ରମଣ କଲେ ତାକୁଆମାନେ ଚତୁଃପାର୍ଶ୍ୱ ଗ୍ରାମକୁ ସମ୍ବାଦ ଦେଉଥିଲେ । ଫଳତଃ ଚତୁଃପାର୍ଶ୍ୱ ଗ୍ରାମବାସୀବୃନ୍ଦ ସତର୍କ ହୋଇଯାଉଥିଲେ । ଗ୍ରାମମାନଙ୍କ ସଦୃଶ ଢେଙ୍କାନାଳ ନଗରରେ ମଧ୍ୟ କଡ଼ା ସୁରକ୍ଷା କରାଯାଇଥିଲା । ନଅର ଚାରିପଟରେ ବନ୍ଧୁକଧାରୀ ପ୍ରହରୀ ଏବଂ ଚତୁଃର୍ଦ୍ଦିଗରେ ଥିବା ବାଉଁଶ ବଣରେ ନିଭୃତରେ ତୋପ ରଖାଯାଇଥିଲା । ହନୁମାନ ସାହି, ମହ୍ଲାସାହି, ମାଳି ସାହି, ସାଆନ୍ତ ସାହି, ଘୋଡ଼ାଡ଼ିଆଁ ପଟଣା (ମୀନାବଜାର), କଞ୍ଚନ ସାହି ଏବଂ ଶାସନରେ ପାଇକ ସୈନ୍ୟ ମୁତୟନ ହୋଇଥିଲେ । ନାବାଳକ ରାଜା ଜଗନ୍ନାଥ ଭ୍ରମରବରଙ୍କ ପାଖରେ ସାମନ୍ତ, ମନ୍ତ୍ରୀ, ପାରିଷଦମାନେ ରହି ମାରଫତ୍ଦାର ଭାବରେ ରାଜ୍ୟ ରକ୍ଷାର ଦାୟିତ୍ୱ ତୁଲାଉଥିଲେ । ରାଜା ଜଗନ୍ନାଥ ଭ୍ରମରବର ନାବାଳକ ଥିଲେ ୧୭୪୩ ମସିହା ପୂର୍ବରୁ ବିବାହ କରିଥିଲେ । ଲୋକକଥାନୁଯାୟୀ ରାଜା ହେବା ବେଳକୁ ଅର୍ଥାତ୍ ୧୭୪୩ ମସିହାକୁ ତାଙ୍କୁ ଷୋହଳ ବର୍ଷ ହୋଇଥିଲାଏବଂ ସେ ନାବାଳକ ଥାଇ ମଧ୍ୟ ଦୁଇଟି ପୁତ୍ର ସନ୍ତାନର ଜନକ ହୋଇ ସାରିଥିଲେ । ପ୍ରଥମଟିର ନାମ ଭୁଜବଳ ସାମନ୍ତ, ସେ ଶାରିରୀକ ଦୁର୍ବଳ ଓ ଅକ୍ଷମ ଥିଲେ । ଦ୍ୱିତୀୟ ପୁତ୍ରଟିର ନାମ ମାନସିଂହ । କେତେକଙ୍କ ମତରେ ରାଜା ହେବା ବେଳକୁ ଜଗନ୍ନାଥ

ଭ୍ରମରବର ସାବାଳକ ଥିଲେ । କିନ୍ତୁ ରାଜନୀତି ଓ ସମରନୀତି ପ୍ରବୀଣ ନଥିବାରୁ ରାଜ୍ୟରେ ଦୁର୍ଦ୍ଦିନରେ ମନ୍ତ୍ରୀ ପରିଷଦ ତଥା ସେନାପତି ବର୍ଗଙ୍କର ପରାମର୍ଶ ଲୋଡୁଥିଲେ । କାରଣ, ରାଜ୍ୟର ସୁଦକ୍ଷ ସେନାବାହିନୀର ଉପଯୋଗ ପୂର୍ବକ ମରହଟ୍ଟାବର୍ଗୀଙ୍କୁ ପ୍ରତିହତ କରିବାର ସମାର୍ଥ୍ୟ ତାଙ୍କର ନଥିଲା । କେବଳ, ରାଜାଙ୍କ ଅକାଳ ମୃତ୍ୟୁପରେ ଦ୍ୱିତୀୟ ଭାଇର ଜ୍ୟେଷ୍ଠପୁତ୍ର ଭାବରେ ସିଂହାସନର ଅଧିକାର ପାଇଥିଲେ । ଐତିହାସିକଙ୍କ ମତରେ ଜଗନ୍ନାଥ ଭ୍ରମରବର ୧୭୪୩ ରୁ ୧୭୪୪ ମାତ୍ର ବର୍ଷଟିଏ ଶାସନ କରିଥିଲେ । ରାଜବଂଶରେ ଶ୍ୟାମ ସୁନ୍ଦର ମହାନ୍ତ୍ର ବାହାଦୂର ଓ ରାଣୀ ରତ୍ନପ୍ରଭା ଦେବୀଙ୍କ ଉଲ୍ଲେଖ ଅନୁଯାୟୀ ରାଜା ଦାମୋଦରଙ୍କ ପରେ ତାଙ୍କ କକା ବେଣୁଧରଙ୍କ ପୁତ୍ର ଜଗନ୍ନାଥ ଭ୍ରମରବର ମାତ୍ର ବର୍ଷଟିଏ ଲାଗି ରାଜା ହୋଇଥିଲେ । ଅଧିକନ୍ତୁ ଶ୍ୟାମସୁନ୍ଦର ମହାନ୍ତ ବାହାଦୂର ଦାମୋଦରଙ୍କ ରାଜତ୍ୱ ଅସ୍ୱୀକାର ପୂର୍ବକ ଉଲ୍ଲେଖ କରିଛନ୍ତି ଯେ ବ୍ରଜବିହାରୀଙ୍କ ପରେ ତାଙ୍କ ଦ୍ୱିତୀୟ ଭ୍ରାତ ବେଣୁଧର ହରିଚନ୍ଦନଙ୍କ ପୁତ୍ର ଜଗନ୍ନାଥ ଭ୍ରମରବର ୧୭୪୧ରେ ରାଜା ହୋଇ ୧୭୪୩ରେ ପରଲୋକ ଗମନ କଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ବ୍ରଜବିହାରୀଙ୍କର ୧୭୪୧ରେ ମୃତ୍ୟୁ ହେବାପରେ ଦାମୋଦର ଓ ଜଗନ୍ନାଥଙ୍କ ମଧ୍ୟରେ ରାଜଗାଦୀ ନିମିତ୍ତ ବିବାଦ ରହିଥିଲା ଏବଂ ଏହାର ସୁଯୋଗ ନେଇ ମରହଟ୍ଟାବର୍ଗୀମାନେ ଅନାୟାସରେ ଦାମୋଦରଙ୍କୁ ମିଆଁ ମର୍ଦ୍ଦାନ ହାତରେ ମରାଇ ଢେଙ୍କାନାଳ ରାଜକୋଷ ଲୁଟିନେଲେ । ସେ ଯାହାହେଉ, ଦାମୋଦର ଓ ଜଗନ୍ନାଥଙ୍କର ଅପାରଗତା ଯୋଗୁଁ ଐତିହ୍ୟ ଓ ସଂସ୍କୃତି ବିମଣ୍ଡିତ ରାଜ୍ୟ ଢେଙ୍କାନାଳ ଛାରଖାର ହେବାକୁ ବସିଲା । ସେହି ସମୟରେ ଢେଙ୍କାନାଳରେ ସୁଶିକ୍ଷିତ ବିଶାଳ ଚତୁରଙ୍ଗ (ଗଜାରୋହୀ, ଅଶ୍ୱାରୋହୀ, ପଦାତିକ ଓ ବନ୍ଧୁକଧାରୀ) ଥିଲେ ହେଁ ନେତୃତ୍ୱ ଅଭାବରୁ ତାହାର ଉପଯୋଗ ହୋଇ ରାଜ୍ୟ ରକ୍ଷା ହୋଇପାରିଲା ନାହିଁ । ମୋଟ ଉପରେ କହିଲେ, ଦାମୋଦର ଓ ଜଗନ୍ନାଥଙ୍କ ରାଜତ୍ୱକାଳ ଅର୍ଥାତ୍ ୧୭୪୧ ରୁ ୧୭୪୫ ଢେଙ୍କାନାଳ ଇତିହାସରେ ଏକ କଳଙ୍କିତ ଓ ଦୁଃଖଦ ଅଧ୍ୟାୟ ।



# ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର

ଢେଙ୍କାନାଳର ଏହି ଦୁର୍ଦ୍ଦିନରେ ହରିବିଦ୍ୟାଧର ବଂଶର ଗୌରବ ରବି ଅସ୍ତମିତ ହୋଇଯାଇଥିବା କାଳରେ ରାଜ୍ୟର ମନ୍ତ୍ରୀ, ସାମନ୍ତ, ବକ୍ସି, ରାଜପଣ୍ଡିତ ଓ ବଡ଼ପଣ୍ଡା (ରାଜ ଉପଦେଷ୍ଟା)ମାନେ ଏକ ଜରୁରୀ ଅଧିବେଶନରେ ସମ୍ମିଳିତ ହୋଇ ନିଷ୍ପତ୍ତି ନେଲେ ଯେ ରାଜା ବ୍ରଜବିହାରୀଙ୍କ କନିଷ୍ଠ ଭ୍ରାତା ଘନଶ୍ୟାମ ମତ୍ତଗଜ ସିଂହଙ୍କ ପୁତ୍ର ତ୍ରିଲୋଚନ ସିଂହଙ୍କୁ ରାଜଗାଦିରେ ବସାଯିବ । ପୂର୍ବରୁ ସୂଚନା ପ୍ରଦତ୍ତ ହୋଇଛି ଯେ ରାଜା କୁଞ୍ଜବିହାରୀଙ୍କ ତିନି ପୁତ୍ର ମଧ୍ୟରୁ ଜ୍ୟେଷ୍ଠ ବ୍ରଜବିହାରୀ ରାଜା ହୋଇଥିଲେ, ମଧ୍ୟମ ବେଣୁଧର ସନ୍ନ୍ୟାସୀ ହୋଇ ହିମାଳୟ ଗଲେ ଏବଂ କନିଷ୍ଠ ଘନଶ୍ୟାମ ମତ୍ତଗଜସିଂହ ରାଜ୍ୟର ସର୍ବୋଚ୍ଚ ସେନାଧ୍ୟକ୍ଷ ଭାବରେ ପଶ୍ଚିମ ପାର୍ଶ୍ୱ ଦୁର୍ଗ ଭୀମନଗରୀରେ ଅବସ୍ଥାନ କରୁଥିଲେ । ତ୍ରିଲୋଚନ ହେଉଛନ୍ତି ସେହି ଘନଶ୍ୟାମଙ୍କର ସୁପୁତ୍ର ଏବଂ ସେ ଆପଣାର ବୀରତ୍ୱ ଯୋଗୁଁ ଭୀମନଗରୀ ସିଂହ ନାମରେ ପରିଚିତ ଥିଲେ ପାତ୍ର ମନ୍ତ୍ରୀ ପାରିଷଦ ବୀର । ତ୍ରିଲୋଚନଙ୍କୁ ଗଜପତି ବୀରକିଶୋର ଦେବ ୧୦ଅଙ୍କ ଅର୍ଥାତ୍ ୧୭୪୩ରେ ଢେଙ୍କାନାଳ ରାଜଗାଦୀରେ ବସାଇଲେ ବୋଲି ପଣ୍ଡିତ ରାମଚନ୍ଦ୍ର ନନ୍ଦ ସ୍ୱରଚିତ ''ଢେଙ୍କାନାଳ ଇତିହାସ'ରେ ଉଲ୍ଲେଖ କରିଛନ୍ତି । ଏ ସଂପର୍କରେ ବଳଭଦ୍ର ବୋଲିରେ ଉଲ୍ଲେଖ ଅଛି–

''ରୂପ ନଦେଖୁଁ ପ୍ରକାଶ ହେଲା ନାମ ତ୍ରିଲୋଚନ ସିଂହ ବୋଲି,
ଲୋକର ଭରସା ଅତି ପ୍ରୀତି ଆଶା ସିଂହକି ପଶିଲା ପେଲି ।
ସିଂହର କପାଳ କେହି ନଜାଣନ୍ତି ଏକା ଜାଣନ୍ତି ଗୋସାଇଁ,
ପାତ୍ରମନ୍ତ୍ରୀ ସବୁ ବିଚାର ହୋଇଲେ ସିଂହକୁ ଥାପିବାପାଇଁ ।
ସେ ସିଂହ କର୍ମରେ ଏ ଭୀମନଗ୍ରରେ ଲୋକ ସୁସ୍ଥରେ ରହିଲେ,
ସିଂହ ବିଦ୍ୟାଧର କୁଳ ସୁଧାକର କିଏ ଉଦୟ ହୋଇଲେ ।''

ରାଣୀ ରତ୍ନପ୍ରଭାଦେବୀ ଉଲ୍ଲେଖ କରିଛନ୍ତି ତ୍ରିଲୋଚନ ୧୭୪୫-୪୬ରେ ରାଜଗାଦୀ ଆରୋହଣ କରିଥିଲେ । ଗବେଷକ ଓ ଐତିହାସିକ Prof. G.S Dasଙ୍କ ମତରେ ରାଜା ତ୍ରିଲୋଚନଙ୍କ ରାଜତ୍ୱ ୧୭୭୦ ଠାରୁ ୧୭୯୫

"At this time appeaced in the horizon of Dhenkanal of mighty and powerful morach. Raja Tirilochan mohindra Bahadur. He ascended throne of Dhenkanal in 1770 and ruled up to 1795." ଏ ସଂପର୍କରେ ଅନ୍ୟ ଏକ ତଥ୍ୟ ଡକ୍ଟର ହରେକୃଷ୍ଣ ମହାତାବଙ୍କ ଓଡ଼ିଶା ଇତିହାସରୁ ଉପଲବ୍ଧ ହୋଇଥାଏ । ସେ ଲେଖିଛନ୍ତି ୧୭୬୯ ଜୁନ୍ ମାସରେ ଢେଙ୍କାନାଳର ରାଜା ଜୟ ନାରାୟଣ ମୁର୍ଶିଦାବାଦ୍‌ର ନାଏବ ନାଜିମ୍ ମହମ୍ମଦ ରେଜାଙ୍କୁ ସ୍ୱଭ୍ରାତାଙ୍କ ହାତରେ ପତ୍ର ଲେଖି ମରହଟ୍ଟାଙ୍କ ଦୌରାତ୍ମ୍ୟରୁ ଢେଙ୍କାନାଳ ରାଜ୍ୟ ରକ୍ଷା କରିବାକୁ ନିବେଦନ କରିଥିଲେ । ଏଥିରୁ ଜଣାଯାଏ ୧୭୬୯ ପର୍ଯ୍ୟନ୍ତ ତ୍ରିଲୋଚନ ରାଜା ହୋଇନଥିଲେ ଏବଂ ଜୟନାରାୟଣ ନାମକ ଜଣେ ରାଜା ଥିଲେ । ଏହି ଉକ୍ତିଟି ଢେଙ୍କାନାଳ ଇତିହାସ ଏବଂ ତତ୍‌କାଳୀନ ସାହିତ୍ୟରେ ନାହିଁ । ଜୟନାରାୟଣଙ୍କ ରାଜତ୍ୱ ଉପରେ ଢେଙ୍କାନାଳ ଇତିହାସ ନୀରବ ହେଲେ ହେଁ Calender of persian correspandence Vol II ମଧ୍ୟ ଉଲ୍ଲେଖ ରହିଛି ଯେ ଜୟନାରାୟଣଙ୍କ ଠାରୁ ମହମ୍ମଦ ରିଜାଖାଁ ୧୭୬୯ରେ ଅପିଲ ପାଇଥିଲେ ।

ତ୍ରିଲୋଚନଙ୍କ ରାଜତ୍ୱ ସଂପର୍କରେ L.E.B. COBDEN RAMASAYଙ୍କ ରଚିତ Feudatory States of Orissa ଗ୍ରନ୍ଥରେ ଉଲ୍ଲେଖ ରହିଛି ଯେ "The largest acquisetions were made during the time of Trilochan Mahindra Bahadur. from 1755 to 1796 A.D. He was a powerful chief." ତଦନୁରୂପ Ruling price and chiefs of India ପୁସ୍ତକରେ ଉଲ୍ଲେଖ ଅଛି "A very important period was during the rule of Raja Trilochan Mahindra Bahadur (1746-1780 A.D.) He was a valiant warrior cheif." ସର୍ବୋପରି ପ୍ରାମାଣିକ ଦଲିଲ Settemour Record 1924ରେ ଉଲ୍ଲେଖ ରହିଛି "At this time one youngman named Trilochan Singh who was a distant member is Raja family was elected as Raja and placed on gadi in 1743 A.D. He ruled up to 1785. This Raja was a talented, enter prizer man, a skilful general and good ruler." ଅନ୍ୟ ଗୋଟିଏ ପ୍ରାମାଣିକ ଉପାଦାନ ହେଉଛି ରାଜା ତ୍ରିଲୋଚନ ୧୭୫୫ ଖ୍ରୀଷ୍ଟାବ୍ଦରେ ରାଜପୁରୋଧା ରାମଚନ୍ଦ୍ର ସାମନ୍ତରାୟ ଦୀକ୍ଷିତ ମହାପାତ୍ରଙ୍କୁ କୁଶପଦା ରାଜସ୍ୱ ଗ୍ରାମ ଦାନ ପୂର୍ବକ ତମ୍ବାପଟ୍ଟା ସନନ୍ଦ ପ୍ରଦାନ କରିଥିଲେ । ଏ ସଂପର୍କରେ ରାଜପଣ୍ଡିତ ଗଙ୍ଗାଧର ମିଶ୍ର I.P.S. (ରାଷ୍ଟ୍ରପତି ପୁରସ୍କୃତ) ସ୍ୱରଚିତ "ଆମ ଘରର ଇତିହାସ" ପୁସ୍ତକରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ।

ଉପରୋକ୍ତ ସମସ୍ତ ତଥ୍ୟକୁ ବିଚାର କଲେ, ବନ୍ଦୋବସ୍ତ ରେକର୍ଡ଼ ଓ ତମ୍ବାପଟ୍ଟା ହିଁ ସର୍ବାଧିକ ବିଶ୍ୱସନୀୟ ପ୍ରମାଣ । ତଦନୁଯାୟୀ ୧୭୪୫ରୁ ତ୍ରିଲୋଚନଙ୍କ ରାଜତ୍ୱ ଆରମ୍ଭ ହୋଇଥିଲା । ଜୟନାରାୟଣଙ୍କ ପତ୍ର ରିଜା ଖାଁ ପାଇ ଇଂରେଜ ଶାସକଙ୍କ ନିକଟକୁ ପ୍ରେରଣ କରିଥିଲେ ହେଁ ତାହା ଏକ ଜାଲ ପତ୍ର ବୋଲି ଅନୁମିତ ହୁଏ । କୌଣସି ସମୟରେ ସେ ଢେଙ୍କାନାଳ ଶାସନ କରିନଥିଲେ ବୋଲି ଇତିହାସ, ସାହିତ୍ୟ ଓ କିମ୍ବଦନ୍ତୀରୁ ପ୍ରମାଣ ମିଳେ । ପ୍ରମାଣିତ ହୁଏ କେହି ଜଣେ ଦୁରଭିସନ୍ଧି ରଖି ଏତାଦୃଶ ପତ୍ର ରିଜାଖାଁଙ୍କ ନିକଟକୁ ପଠାଇଥିଲେ । ପ୍ରକୃତପକ୍ଷେ ୧୭୬୯ ପୂର୍ବରୁ ୧୭୫୧ରେ ମରହଟ୍ଟାମାନେ ଓଡ଼ିଶା ଅଧିକାର କରି ସାରିଥିଲେ । ଅତଏବ ଏହି ପତ୍ର ବିଭ୍ରାନ୍ତି ସୃଷ୍ଟି କରିବା ନିମିତ୍ତ କେହି ପଠାଇଥିଲା ଅଥଚ ଏହା ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ହୋଇନାହିଁ । ସ୍ପଷ୍ଟ ପ୍ରମାଣିତ ହୁଏ, ରାଜପରିଷଦ ଦ୍ୱାରା ମନୋନୀତ ହୋଇ ବୀର ତ୍ରିଲୋଚନ ସିଂହ ୧୭୪୫ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳ ସିଂହାସନ ଆରୋହଣ କରିଥିଲେ । ତତ୍‌କାଳୀନ ଓଡ଼ିଶା ଓ ବଙ୍ଗ ପ୍ରଦେଶର ମରହଟ୍ଟା ଆଫଗାନ୍ ସଂଘର୍ଷକୁ କେନ୍ଦ୍ର କରି ଗୋଳମାଳିଆ ପରିସ୍ଥିତିର ଅଭିଲେଖ ଉପରେ ନିର୍ଭର କରି ଭିନ୍ନ ଭିନ୍ନ ଐତିହାସିକ ବିଭିନ୍ନ ତଥ୍ୟ ପରିବେଷଣ କରିଥିଲେ ହେଁ ପ୍ରକୃତପକ୍ଷେ ତ୍ରିଲୋଚନ ୧୭୪୫ରେ ଢେଙ୍କାନାଳ ରାଜଗାଦୀରେ ଆସୀନ ହୋଇଥିଲେ । ଏଥିରେ ଅସନ୍ତୁଷ୍ଟ ହୋଇ କୌଣସି ରାଜ୍ୟ ଲିପ୍ସୁ ବ୍ୟକ୍ତି ଏତାଦୃଶ ଜାଲ ଚିଠି ପ୍ରେରଣ ପୂର୍ବକ ବିଭ୍ରାନ୍ତି ସୃଷ୍ଟି କରିଥିବାର ହୃଦ୍‌ବୋଧ ହୁଏ ।

୧୭୪୫ରେ ତ୍ରିଲୋଚନ ଢେଙ୍କାନାଳ ରାଜା ହେବାପରେ ପ୍ରଥମେ ସୈନ୍ୟବାହିନୀକୁ ସୁଦୃଢ଼ କଲେ । ତାଙ୍କ ସେନାବାହିନୀ ବାର ହଜାର, ପଦାତିକ, ପାଞ୍ଚହଜାର ଅଶ୍ୱାରୋହୀ, ଏକ ହଜାର ଗଜାରୋହୀ ତଥା ଏକ ହଜାର ବନ୍ଧୁକ ଧାରୀ ଥିଲେ । ଏତଦ୍‌ଭିନ୍ନ ୫୦୦ ତେଲଙ୍ଗା ଓ ୫୦୦ ନାଗା ସୈନ୍ୟ ମଧ୍ୟ ଥିଲେ ତଥା ସେମାନେ ତଙ୍କୁଣ ନାମକ ଏକ ତୀକ୍ଷ୍ଣ ଅସ୍ତ୍ର ଚାଳନାରେ ଧୁରନ୍ଧର ଥିଲେ । ରାଜା ତ୍ରିଲୋଚନ ମଧ୍ୟ ସୈନ୍ୟମାନଙ୍କୁ ଗରିଲା ଯୁଦ୍ଧ ତାଲିମ୍ ଦେଇଥିଲେ । କୁଶଳୀବୀର ତ୍ରିଲୋଚନ ଆପଣାର ରାଜା ପ୍ରସାଦକୁ ସାମରିକ ଶୈଳୀରେ ପୁନଃନିର୍ମାଣ କରିଥିଲେ । ପାଣିଓହଳା ପର୍ବତର ପାଦଦେଶରେ ଅବସ୍ଥିତ ଏହି ପ୍ରାସାଦକୁ ସେ ତ୍ରିତଳ କରିବା ସହିତ ଉପର ମହଲାରେ ରହି

ଆଗନ୍ତୁକ ଶତ୍ରୁମାନଙ୍କ ଗତିବିଧି ନିରୀକ୍ଷଣର ସୁବନ୍ଦୋବସ୍ତ କରିଥିଲେ । ଏହି ରାଜପ୍ରସାଦ ବା ଦୁର୍ଗର ମୁଖ୍ୟ ଦ୍ୱାର ଥିଲା ଜୟମଙ୍ଗଳ ଦ୍ୱାର ଏବଂ ଦ୍ୱାର ଦେଶରେ ଚଣ୍ଡୀ ପ୍ରସାଦ, କାଳୀ ପ୍ରସାଦ ଓ ମୁଲକ ମଇଦାଳ ନାମଧାରୀ ବିଶାଳ ତୋପ ଖଞ୍ଜା ଯାଇଥିଲା । ଶତ୍ରୁ କୌଣସି ସମୟରେ ଗଡ଼ ମଧ୍ୟରେ ପ୍ରବେଶ କଲେ ଏହି ଉଚ୍ଚ ଶକ୍ତି ସଂପନ୍ନ ତୋପ ଦ୍ୱାରା ସେମାନଙ୍କୁ ନିମିଷକେ ବିନାଶ କରିବା ନିମିତ୍ତ ବିଧି ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ଗଡ଼ର ଚତୁଃପାର୍ଶ୍ୱ ସୁଗଭୀର ଜଳପୂର୍ଣ୍ଣ ପରିଖାବେଷ୍ଟିତ ଥିଲା ଏବଂ ସୁଉଚ୍ଚ ପ୍ରାଚୀର ଦ୍ୱାର ଗଡ଼ ଚତୁଃପାର୍ଶ୍ୱ ସୁରକ୍ଷିତ ଥିଲା । ଏହି ପ୍ରାଚୀରରେ ପ୍ରତି ଶହେ ହାତରେ ଜଣେ ଲେଖାଏଁ ବନ୍ଧୁକ ଧାରୀ ସୈନ୍ୟ ସୁରକ୍ଷା ନିମିତ୍ତ ମୁତୟନ ଥିଲେ । ଏହି ସୁଉଚ୍ଚ ପ୍ରାଚୀରର ଅନ୍ତରାଳରେ ମଧ୍ୟ ବହୁସୈନ୍ୟ ମୁତୟନ ହୋଇଥିଲେ । ଏହି ସୁଉଚ୍ଚ ପ୍ରାଚୀର ଚତୁଃପାର୍ଶ୍ୱରେ ଅନ୍ୟ ଗୋଟିଏ ସୁଦୃଢ଼ ପ୍ରାଚୀର ମଧ୍ୟ ନିର୍ମିତ ହୋଇଥିଲା । ତତ୍‌ପରେ ଜଳପୂର୍ଣ୍ଣ ପରୀକ୍ଷା ଏବଂ ପରିକ୍ଷାକୁ ବେଢ଼ି ରହିଥିଲା । ଘନ ବାଉଁଶ ବଣ । ସୂଚନାଯୋଗ୍ୟ ଯେ ଏହି ବାଉଁଶ ବଣ ମଧ୍ୟରେ ବହୁସଂଖ୍ୟକ ମୁରୁଚା (ଭାଡ଼ି) ନିର୍ମିତ ହୋଇ ତୋପଦାରମାନେ ମୁତୟନ ହୋଇଥିଲେ । ସେହି ଜଳପୂର୍ଣ୍ଣ ପରିଖା ଉପରେ ଗଡ଼ର ଉତ୍ତର ପଶ୍ଚିମ କୋଣରେ ଅର୍ଥାତ୍ ନୃସିଂହ ସାଗର ପୋଖରୀ ନିକଟରେ ଏକ ଭାସମାନ କାଷ୍ଠସେତୁ ରହିଥିଲା । ବାଉଁଶ ବଣ ମଧ୍ୟରେ ଗୁପ୍ତରେ ନିର୍ମିତ ଏହି କାଷ୍ଠ ସେତୁ ହିଁ ଥିଲା ମୁଖ୍ୟ ପ୍ରବେଶ ଦ୍ୱାର । ଏହାକୁ ବାଉଁଶଦ୍ୱାର କୁହାଯାଉଥିଲା । ବହିରାଗତ ଶତ୍ରୁ ଏହି ମୂଖ୍ୟ ପ୍ରବେଶ ଦ୍ୱାର ବା ବାଉଁଶଦ୍ୱାରର ସନ୍ଧାନ ପାଇବା ସହଜ ନଥିଲା । ଯଦି କୌଣସି ମତେ ସେହି ଦ୍ୱାରକୁ ଅତିକ୍ରମ ପୂର୍ବକୁ ଶତ୍ରୁ ଦୁର୍ଗଅଭିମୁଖୀ ହୁଅନ୍ତି, ତେବେ ମୁରୁଚା ବା ଭାଡ଼ି ଉପରେ ମୁତୟନ ଥିବା ତୋପଦାରମାନେ ତାଙ୍କର ପ୍ରତିରୋଧ କରିବେ । ସେମାନଙ୍କୁ ଅତିକ୍ରମ ପୂର୍ବକ ଜୟମଙ୍ଗଳ ଦ୍ୱାରରେ ଶତ୍ରୁଉଗବତ ହେଲେ ପ୍ରାଚୀର ଉପରେ ମୁତୟନ ଥିବା ବନ୍ଧୁକଧାରୀଗଣ ସେମାନଙ୍କର ପ୍ରତିରୋଧ କରିବାକୁ ପ୍ରସ୍ତୁତ ଥିଲେ । ସେମାନଙ୍କୁ ପ୍ରତିହତ କରି ଶତ୍ରୁ ଆଗେଇଲେ ପ୍ରାଚୀରର ଅନ୍ତରାଳରେ ମୁତୟନ ସୈନ୍ୟ ମଣ୍ଡଳୀଙ୍କ ସମ୍ମୁଖୀନ ହେବାକୁ ପଡ଼ିବ । ତଥାପି ଶତ୍ରୁମାନଙ୍କର ପ୍ରତିରୋଧ ହୋଇ ନପାରିଲେ ଦ୍ୱାରଦେଶରେ ଥିବା ଶକ୍ତିଶାଳୀ ତୋପଗୁଡ଼ିକ ବ୍ୟବହାର କରାଯାଇ ଶତ୍ରୁ ବିନାଶର କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । ରାଜା ଓ ସେନାପତି

ବୃନ୍ଦ ତ୍ରିତଳ ପ୍ରାସାଦର ଚନ୍ଦ୍ରଶାଳାପୁରରେ ସଜାଗ ରହି ଶତ୍ରୁମାନଙ୍କ ଗତିବିଧି ନୀରୀକ୍ଷଣ କରିବାର ବିଧିବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ମୋଟ ଉପରେ ଉଲ୍ଲେଖକଲେ ସମର ବିଶାରଦ ତ୍ରିଲୋଚନ ମରହଟ୍ଟା ଓ ଆଫଗାନ୍‌ମାନଙ୍କୁ ମୁକାବିଲା କରିବା ନିମିତ୍ତ ବ୍ୟାପକ ସମରସଜ୍ଜା ଓ ଦୁର୍ଗସୁରକ୍ଷା ନୀତି ଅବଲମ୍ବନ କରିଥିଲେ। ତତ୍‌କାଳୀନ ପ୍ରସିଦ୍ଧ କବି ବ୍ରଜନାଥ ବଡ଼ଜେନା ସ୍ୱରଚିତ । ''ସମରତରଙ୍ଗ'' କାବ୍ୟରେ ଏ ସଂପର୍କରେ ସୂଚନା ପ୍ରଦାନ କରି ଉଲ୍ଲେଖ କରିଛନ୍ତି ।

''ଏକ୍ଷେତ୍ରର ଉତ୍ତର ଦିଗରେ  ଢେଙ୍କାନାଳ ନାମେ ନଗରେ
ଧାତା କାଳା ତା ଯତନେ ନିର୍ମାଣ  ରସାରସାକିନୀ ଶିରଭୂଷଣ ଯେ
କି କହିବା ତାର ଟେକ ଯେ,
ସୁଖ ବିନା ଦୁଃଖ କି ରୂପେ ହୁଅଇ ନଜାଣନ୍ତି ତହିଁ ଲୋକ ଯେ ।
ଏଥି ଉତ୍ତାରୁ ନୃପ ହୋଇଛନ୍ତି  ତାଙ୍କ ଯଶ ଗୁଣ ଶୁଣ ହେ
ସୋମବଂଶ ଯଥା ପରୀକ୍ଷିତ  ପାଣ୍ଡବେ ଯୁଧିଷ୍ଠିର ଯେଉଁ ମତ
ସିଂହ ବିଦ୍ୟାଧର କୁଳେ ତେମନ୍ତ  ଉଦୟେ ମହାଦୀପ୍ତି ଶୂରବନ୍ତ ସେ
ତ୍ରିଲୋଚନ ନାମେ ଖ୍ୟାତ ଯେ
ରାଜା ମହୀନ୍ଦ୍ର ବାହାଦୂର ପଦଯା ସଂସାର ମଧ୍ୟେ ବିଖ୍ୟାତଯେ ।

ମରହଟ୍ଟା ଆକ୍ରମଣ ପ୍ରତିହତ କରିବା ନିମିତ୍ତ ରାଜା ତ୍ରିଲୋଚନ ଯେଉଁ ବିଧି ବ୍ୟବସ୍ଥା ଗ୍ରହଣ କରିଥିଲେ ଯେ ସଂପର୍କରେ ବଡ଼ଜେନା ଲେଖିଛନ୍ତି–

''ରାଜନମଣି ପୂର୍ବରୁ ଜାଣି  ଅଗାଧ ପାଣି ଜଳୀ ନିର୍ମାଣି
ପାଷାଣ କାନ୍ଥି ସଜାଡ଼ି ପୁଣି ମୁରୁଚା କରି ଯେ,
ଉଣ୍ଡିବାଜିବା ଥାନକୁ ହେଜି  ଭଣ୍ଡି କାଙ୍ଗୋଲା ଅଛନ୍ତି ସାଜି
ଚଣ୍ଡୀ ପ୍ରସାଦ ଗୁଣ୍ଡକୁ ଖଞ୍ଜିଛନ୍ତି ବିଚାରି ଯେ
କାହିଁ ମୁଲକ ମଏଦାନ ତୋପକୁ ଯେ
ରୂପି ରଖିଅଛନ୍ତି କୋଣେ ଧାପକୁ ଯେ
ଅଳପ ପାରିକଉଁ ଗୁଣ୍ଡକୁ  ରୂପି ଅଛନ୍ତି ଖାଲି ମୁଣ୍ଡକୁ
ମଉଡ଼ା ଟେକିଛନ୍ତି କାହାର ଉଚ୍ଚ ମାପକୁ ଯେ ।
କଉଁ ମୁରୁଚା ଭିତରେ ଭାଡ଼ି  ସଜାଡ଼ିନଳୀ ଧାଡ଼ିକି ଧାଡ଼ି
ରୂପି ଅଛନ୍ତି ଲାଛିଲେ ଉଡ଼ିଯିବ କଉଡ଼ି ଯେ

କାହିଁରେ ସିପା ଲଗାଇ ଭିଡ଼ି ଛନ୍ତି ଜଜାଲ ଯୋଡ଼ିକି ଯୋଡ଼ି
ଅଧକୋଣରେ ବାଜିଲେ ଝଡ଼ି ପଡ଼ିବ ଘୋଡ଼ି ଯେ
ରୂପା କାହିଁରେ ପେଟକଟା କମାଣ ଯେ
ତାର ଫିଟିଲେ ଅଛି ଏହି ପ୍ରମାଣ ଯେ
କୋଣେ ସରିକି କି ତରୁଦାରୁ କିବା ପଥର କି ଅବା ମେରୁ
କି କରୀ ନର ବାଜୀ ନିକର ପୁରାଏ ମାଣ ଯେ ।
କାହିଁରେ ଧାଉଡ଼ିଆ ପହଣ୍ଡ ଜଳା ଭିତରେ ଗଳାଇ କାଣ୍ଡ
ବିନ୍ଧିବା ପାଇଁ ହୋଇଛି ମୁଣ୍ଡ-ଲୁଆଣ ଭଣ୍ଡି ଯେ
କାହିଁ ଢଙ୍କୁଣ ମାପକୁ ଆସି କେତେବେଳରେ ଯିବେ ବା ପଶି
ବୋଲି ଢଙ୍କୁଣ ଅଛନ୍ତି କଷି ଗୁନ୍ଥିବେ ଗଣ୍ଡି ଯେ
ଆଣ୍ଟ କଣ୍ଟାରେ ମାରି ବହଳ ପଟା ଯେ
ଦିଗବାରଣ ଭାଡ଼ି ଗୋଟାକୁ ଗୋଟା ଯେ
କେହି ବନିଲା ଗଡ଼ଦୁଆର ଶଙ୍କା ନୋହିବ୍ ଅବା କାହାର
ଲଙ୍କାରେ ମାତ୍ର ଥିଲା ସଜାଡ଼ି ଦଶ ମୁକୁଟା ଯେ ।

ରାଜା ତ୍ରିଲୋଚନ କେବଳ ଯେ ସୁରକ୍ଷା ନିମିତ୍ତ ସଜାଗ ହୋଇଥିଲେ ତାହା ନୁହେଁ, ସମଗ୍ର ରାଜ୍ୟର ସୁରକ୍ଷା ନିମିତ୍ତ ମଧ ବ୍ୟାପକ ବ୍ୟବସ୍ଥା ଗ୍ରହଣ କରିଥିଲେ । ମରହଟ୍ଟାମାନେ କିପରି ରାଜ୍ୟ ମଧକୁ ପ୍ରବେଶ କରିନପାରିବେ ସେଥିନିମିତ୍ତ ରାଜ୍ୟର ସୀମାରେ ଥିବା ଅରହୁଣୀ (ନିହଲପ୍ରସାଦ), ଗଁପୁର, ନୃସିଂହ ପ୍ରସାଦ, ପରଜଙ୍ଗ, ଭୀମନଗରୀ, ମୋଟରି ଓ ଗୋବିନ୍ଦପୁର ପ୍ରଭୃତି ଦୁର୍ଗମାନଙ୍କରେ ବ୍ୟାପକ ସୈନ୍ୟ ମୁତୟନ କରିଥିଲେ । ଏତଦ୍‌ଭିନ୍ନ ସୀମାନ୍ତ ଗ୍ରାମ ମାନଙ୍କରେ ଦୂତ ନିଯୁକ୍ତି ପୂର୍ବକ ମରହଟ୍ଟାମାନଙ୍କ ଗତିବିଧି ଉପରେ ତୀକ୍ଷ୍ଣ ନଜର ରଖିଥିଲେ । ରାଜ୍ୟର କୌଣସି ସ୍ଥାନରେ ମରହଟ୍ଟା ବର୍ଗୀମାନେ ପ୍ରବେଶ କଲେ ସର୍ବରାକାର ଓ ବେହେରା ପ୍ରଧାନମାନେ ତୁରନ୍ତ ନିକଟବର୍ତ୍ତୀ ଦୁର୍ଗ ଏବଂ ରାଜଦରବାରକୁ ସମ୍ବାଦ ପ୍ରେରଣ କରିବାକୁ ତାଗିଦ୍ କରିଥିଲେ । କେତେକ ସ୍ଥଳରେ ସୁଶିକ୍ଷିତ ସୈନ୍ୟମାନେ ସ୍ଥାନୀୟ ଯୁବକମାନଙ୍କୁ ବର୍ଗୀ ଆକ୍ରମଣର ମୁକାବିଲା କରିବା ନିମିତ୍ତ କୌଶଳମାନ ଶିଖାଇଥିଲେ । ଏପରିକି ରାତ୍ରିକାଳରେ ଗ୍ରାମବାସୀମାନେ ପାଳିକରି ଉଜାଗର ରହି ରାତ୍ରି ଆକ୍ରମଣର ମୁକାବିଲା ନିମିତ୍ତ

ସଜାଗ ରହିଥିଲେ । ସ୍ୱୟଂ ରାଜା ତ୍ରିଲୋଚନ ଭୀମନଗରୀ, ହଦଗଡ, ପରଜଙ୍ଗ, ନୃସିଂହପ୍ରସାଦ, ନିହଲପ୍ରସାଦ ପ୍ରଭୃତି ଦୁର୍ଗମାନଙ୍କରେ କିଛି କାଳ ଲେଖାଏଁ ଅବସ୍ଥାନ କରି ସେହି ଅଞ୍ଚଳରେ ପ୍ରଜାମାନଙ୍କୁ ବର୍ଗୀ ପ୍ରତିରୋଧ ନିମିତ୍ତ ଉତ୍ସାହିତ କରୁଥିଲେ । ବର୍ଗୀ ଆକ୍ରମଣ ପ୍ରତିରୋଧ ନିମିତ୍ତ ବ୍ୟାପକ ବ୍ୟବସ୍ଥା ଗ୍ରହଣ କରାଯିବା ଫଳରେ ପ୍ରଜାମାନେ ଆଶ୍ୱସ୍ତ ହେଲେ । ମରହଟ୍ଟା ଅତ୍ୟାଚାରୀ ବୃନ୍ଦ ମଧ୍ୟ ଢେଙ୍କାନାଳ ରାଜ୍ୟ ମଧ୍ୟରୁ ପ୍ରବେଶ କରିବାରେ ସୁଯୋଗ ପାଇପାରିଲେ ନାହିଁ । ସେମାନେ କିନ୍ତୁ ବୈରଭାବ ରଖି ସର୍ବଦା ସୁଯୋଗ ଅପେକ୍ଷାରେ ଥିଲେ । ମୋଟ ଉପରେ ଉଲ୍ଲେଖ କଲେ ୧୭୪୬-୪୭ ରୁ ରାଜ୍ୟରେ ଶାନ୍ତି ବିରାଜମାନ କରି ପ୍ରଜାମାନଙ୍କ ଧନଜୀବନ ସୁରକ୍ଷିତ ରହିଲା । କିନ୍ତୁ, ରାଜକୋଷ ଲୁଣ୍ଠନ ଓ ପରବର୍ତ୍ତୀ ସାମରିକ ଖର୍ଚ୍ଚରେ ରାଜକୋଷ ଶୂନ୍ୟ ହୋଇ ଯାଇଥିଲା ।

ସେହି ସମୟରେ ଢେଙ୍କାନାଳ ରାଜ୍ୟରେ ବହୁ ଜ୍ଞାନୀ ଗୁଣୀ ବ୍ୟକ୍ତି ନିବାସ କରୁଥିଲେ । ତତ୍‌କାଳୀନ ଜ୍ଞାନୀମାନଙ୍କ ମଧ୍ୟରେ ପଣ୍ଡିତ ଗୋବିନ୍ଦଦୀକ୍ଷୀତ, ପଣ୍ଡିତ ରାମଚନ୍ଦ୍ର ସାମନ୍ତରାୟ ଦୀକ୍ଷୀତ ମହାପାତ୍ର, କବି ବାଲୁଙ୍କେଶ୍ୱର ପଟ୍ଟନାୟକ ତଦୀୟ ପୁତ୍ର ଗୋପୀନାଥ, ଜଗନ୍ନାଥ, ବ୍ରଜନାଥ ଓ ଲୋକନାଥ ତଥା କବିଚଡ଼କ ପ୍ରଭୃତି ଢେଙ୍କାନାଳ ଗଡ଼ରେ, ପଣ୍ଡିତ ଧରାନ୍ଧର ମିଶ୍ର, ପଣ୍ଡିତ ନାରାୟଣ ମିଶ୍ର ଓ ପଣ୍ଡିତ ବିଦ୍ୟାଭୂଷଣ ମିଶ୍ର ପ୍ରଭୃତି ମାର୍ଥାପୁର ଶାସନରେ, ପଣ୍ଡିତ ଆନନ୍ଦଚନ୍ଦ୍ର ଚନ୍ଦ ଓ ପଣ୍ଡିତ ଦେବାନନ୍ଦ ବିଦ୍ୟାବାଗୀଶ ପ୍ରଭୃତି ମୁଣ୍ଡଇଲୋ ବଳଭଦ୍ରପୁର ଶାସନରେ ଏବଂ ପଣ୍ଡିତ ଲୋକନାଥ ଦୀକ୍ଷୀତ ପ୍ରଭୃତି ସଦାଶିବପୁର ଶାସନରେ ଏବଂ ପଣ୍ଡିତ ଲୋକନାଥ ଦୀକ୍ଷୀତ ପ୍ରଭୃତି ସଦାଶିବ ପୁର ଶାସନରେ ନିବାସ କରୁଥିଲେ । ଏମାନଙ୍କ ମଧ୍ୟରୁ ଅନେକ ପଣ୍ଡିତ ରାଜାତ୍ରିଲୋଚନଙ୍କ ରାଜସଭା ମଣ୍ଡନ କରୁଥିଲେ । ରାଜସଭାରେ ପ୍ରତ୍ୟହ ସଂସ୍କୃତ ଓ ଓଡ଼ିଆ ଉଭୟ ସାହିତ୍ୟ ଆଲୋଚନା ହେଉଥିଲା । ରାଜା ମଧ୍ୟ ନିଜେ ଜଣେ ଗୁଣୀଜ୍ଞାନୀ ବ୍ୟକ୍ତିଥିଲେ । ରାଜ ଦରବାରରୁ ଅନେକ କବି ଓ ପଣ୍ଡିତ ସମ୍ମାନ, ପୁରସ୍କାର, ସନନ୍ଦ ଓ ପଦପଦବୀ ଲାଭ କରିଥିଲେ । ସେହି ସମୟରେ ଯେଉଁ ପ୍ରମୁଖ ବ୍ୟକ୍ତି ସମୂହ ଉପାଧି ପାଇଥିଲେ ସେମାନେ ହେଲେ କବି ଜଗନ୍ନାଥ ପଟ୍ଟନାୟକ କବିଭୂଷଣ କବି ବ୍ରଜନାଥ ପଟ୍ଟନାୟକ ବଡ଼ଜେନା, କବି ଲୋକନାଥ ପଟ୍ଟନାୟକ ରାଉତରାୟ, ପଣ୍ଡିତ ଗୋବିନ୍ଦ ଦୀକ୍ଷୀତ ବିଦ୍ୟାଭୂଷଣ, ପଣ୍ଡିତଧରାନ୍ଧର ମିଶ୍ର

ବାଗ୍ମୀଶ୍ରୀ ପ୍ରଭୃତି । କବି ବ୍ରଜନାଥ ବଡ଼ଜେନା ବିଚକ୍ଷଣା ଶ୍ୟାମ ରାସୋତ୍ସବ, ବିଦେଶାନୁଚିନ୍ତା ଅମ୍ବିକାବିଳାସ, ସମରତରଙ୍ଗ, ରାଜସଭା, ରାଜନଙ୍କୁ ଛଳ ଭକ୍ତି, ଗୋପୀବିଳାସ ପ୍ରଭୃତି ବହୁ କାବ୍ୟକବତା ରଚନା ପୂର୍ବକ ସମଗ୍ର ଓଡ଼ିଶାରେ ସୁଖ୍ୟାତି ଅର୍ଜନ କରିଥିଲେ । ଏତଦ୍‌ଭିନ୍ନ ତାଙ୍କର ସଂସ୍କୃତ, ହିନ୍ଦୀ, ବଙ୍ଗଳା ଓ ତେଲୁଗୁ ଓ ପ୍ରାକୃତ ଭାଷା ସାହିତ୍ୟରେ ମଧ୍ୟ ଦକ୍ଷତା ଥିଲା । କବି ବ୍ରଜନାଥ ତତ୍‌କାଳୀନ ରାଜସଭାର ଏକ ଚିତ୍ରଅଙ୍କନ ପୂର୍ବକ ଉଲ୍ଲେଖ କରିଛନ୍ତି–

ନୃପ ଦକ୍ଷ ପାଶେ ଦିବ୍ୟ     ଆସନ ପରେ ଭୂଦେବ
ବସିବାରୁ ଅତି ଶୋଭା ଦିଶିଲା ସଭା,
ଭାଇପୁଅ ରାଜ୍ୟ ପାତ୍ର     ଶ୍ରେଷ୍ଠଜନ ମନ୍ତ୍ରୀପାତ୍ର
ଭେଟିକେ ବସନ୍ତି ଅବା ହୁଅନ୍ତି ଉଭା ।
ଯେ ଯେମନ୍ତ ସେ ସ୍ଥାନେ ରହି
ତିଳେ ବଳିବାକୁ ତାହା କର୍ତ୍ତବ୍ୟ ନାହିଁ ।
ନରେନ୍ଦ୍ର ସାହେ ବଆସି     ଭେଟ ହେଲେ ପୂର୍ଣ୍ଣଶଶୀ
ଆଗେ ବୁଧ ଗ୍ରହ ଯଉଁ ରୂପ ସୁନ୍ଦର
ନରପତିଙ୍କ ମାନସ     ଦେଖି ହେଲେ ମହାତୋଷ
ନବୀନ ଚାରୁ ବୟସ ବିବେକୀ ଧୀର ।
କାଶୀ ହରିଚନ୍ଦନ ସିଂହେ,
ଏହି ତୋରାରେ ଭେଟିଲେ ରାଜାଙ୍କ ଆଗେ ।
ପାଟଯୋଶୀ ପହରାଜେ     ମୁଲକ ନାନାଦି କାର୍ଯ୍ୟେ
କହୁଛନ୍ତି ନରପତି ମାନସ ଜାଣି,
ପାଟଯୋଶୀଙ୍କ ଉପରେ     ହାସ ଦୃଷ୍ଟି ଥରେ ଥରେ
ପଡ଼ି ଭଙ୍ଗି କଉତୁକ ଲାଗିଛି ପୁଣି ।
ଥରେ ଥରେ ଆଞ୍ଛି ଖଡ଼ଗ
ବାମକର ଅଙ୍ଗୁଳି ନିର୍ଶରେ ସଂଯୋଗ ।
ପାଟ ଜଉତିଶ ଆସି     ମଣିମା ମଣିମା ଭାଷି
ବାରତିଥି ତାରା ଶଶୀ କରଣ ଭଣି,

ଭୂତ ଭବି ବର୍ତ୍ତମାନ କାଳ ଶୁଭାଶୁଭ ମାନ
ରାଜ ଯୁବରାଜ ରାଣୀ କହନ୍ତି ଗଣି ।
ଖୁରିପାଳ ଖୁରି ସଜାଡ଼ି
ଦଣ୍ଡଲିତା ଝାଂତା କରେ ଘଡ଼ିକି ଘଡ଼ି ।
ରାଜାଙ୍କ ମେହେର ପାଇ ନାନା ବିଦେଶୀ ସିପାହୀ
ରାଜପୁତ ବଘେଲ ଚୁହାନ ପଠାଣ,
ମୁଗେଲ ଚନ୍ଦେଲ ଜାଠ ରାଠୋର ତେଲଗା ଭଟ୍ଟ
କନାଉଜୀ ମହାରାଷ୍ଟ୍ରୀ ସିପାହୀଗଣ
କଜୁରା ସେ କରନ୍ତେ ଏଣେ,
ଲକିବ ଜଣାଇ ଦିଏ ଜଣକୁ ଜଣେ ।

ଉପରୋକ୍ତ ପଙ୍କ୍ତିରୁ ହୃଦ୍‌ବୋଧ ହୁଏ, ରାଜା ତିଲୋଚନ ଦେଶର ବିଭିନ୍ନ ଅଞ୍ଚଳର ସୈନ୍ୟମାନଙ୍କୁ ସୈନ୍ୟବାହିନୀରେ ମୁତୟନକରି ଢେଙ୍କାନାଳ ସୈନ୍ୟବାହିନୀକୁ ସୁଦୃଢ଼ କରିଥିଲେ । କବି ବ୍ରଜନାଥଙ୍କ ଏତାଦୃଶ ରାଜସଭା ବର୍ଣ୍ଣନାକୁ ଲକ୍ଷ୍ୟକରି କେହି କେହି ତାଙ୍କୁ ଦରବାରୀକବି ବୋଲି ବିବେଚନା କରିଥାନ୍ତି । କିନ୍ତୁ ତାଙ୍କର ଅନ୍ୟାନ୍ୟ କୃତୀ ପାଠକଲେ ହୃଦ୍‌ବୋଧ ହୁଏ ସେ ଜଣେ ଉଚ୍ଚକୋଟୀର ରୀତି ଯୁଗୀୟ କବି ଥିଲେ ତଥା ରୀତି ଯୁଗୀୟ ପରଂପରାର ପରିଧି ଭିତରେ ପରିବର୍ତ୍ତନର ଆତ୍ମିକ ସନନ୍ଦ ସ୍ୱରୂପରେ ପ୍ରତିଭାତ ହୋଇଥିଲେ । ତାଙ୍କ ବାପା ବାଲୁଙ୍କେଶ୍ୱର ଓ ବଡ଼ବାପା ସାରଙ୍ଗଧର ମଧ୍ୟ କବି ଥିଲେ । ବ୍ରଜନାଥ ପିଲାଦିନୁ ବାପାବଡ଼ ବାପାଙ୍କ ସାଥୀରେ ପ୍ରତ୍ୟହ ରାଜସଭାକୁ ଯାଇ ସାହିତ୍ୟ ଆଲୋଚନା ଶୁଣୁଥିଲେ । ଏହାର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । ଅଧିକନ୍ତୁ ସେ ଆପଣାର ଅନ୍ୟ ତିନିଭାଇଙ୍କ ସହିତ ଗୋବିନ୍ଦ ଦୀକ୍ଷୀତଙ୍କ ନିକଟରେ ଶାସ୍ତ୍ର ଅଧ୍ୟୟନ କରିଥିଲେ । ମୁକ୍ତାଦେଈ ପୁର ଶାସନ ସନ୍ନିକଟରେ ତାଙ୍କର ଜନ୍ମ ହୋଇଥିଲା । ସେ ନିଜେ ଲେଖିଛନ୍ତି :

ମୋର ଘର ଢେଙ୍କାନାଳ ନଗରେ
ମୁକ୍ତାଦେଈଙ୍କ ଶାସନ ଆଗରେ

ପୁନଶ୍ଚ :

ଶିଷ୍ଟକରଣ କୁଳରେ ଜନମ ଢେଙ୍କାନାଳରେ
ବାସ କିଛିକାଳୁଁ ହେଲା ବିଷୟାବଶେ

ଶ୍ରୀନିଳାଦ୍ରି ଥିଲା ବାସ ରଘୁ ଅରକ୍ଷିତ ବଂଶ

ମୁହିଁ ରତ୍ନାକରୁବିଷ ଜନ୍ମିଲା ଆସେ ।

କବି ବ୍ରଜନାଥ ଭକ୍ତ ରଘୁଅରକ୍ଷିତଙ୍କ ବଂଶଧର ଏବଂ ତାଙ୍କ ବଂଶ କିପରି ପୁରୀରୁ ଆସି ଢେଙ୍କାନାଳରେ ନିବାସ କଲେ ତାହା ପୂର୍ବ ଅଧ୍ୟାୟରେ ଆଲୋଚନା ହୋଇଛି । ତାଙ୍କ ରଚନାରୁ ହୃଦ୍‌ବୋଧ ହୁଏ ସେ ଢେଙ୍କାନାଳ ସହରରେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ କେତେକ ଭ୍ରମାତ୍ମକ ତଥ୍ୟ ପରିବେଷଣ ପୂର୍ବକ ସେ କାବେରା ଗ୍ରାମରେ ଜନ୍ମ ହୋଇଥିଲେ ବୋଲି ଉଲ୍ଲେଖ କରିଛନ୍ତି । ତାଙ୍କ କବିତ୍ୱ, ପାଣ୍ଡିତ୍ୟ, ଦୂରଦର୍ଶିତା, ଗଦ୍ୟ ରଚନା ତଥା ଅନ୍ୟାନ୍ୟ ଭାଷାର ସୃଷ୍ଟି ସମୀକ୍ଷା ଏକ ସ୍ୱତନ୍ତ୍ର ଆଲୋଚନା ପ୍ରତୀକ୍ଷା କରିଥାଏ ।

ପୂଣ୍ୟବନ୍ତ ରାଜା ତ୍ରିଲୋଚନ ବହୁ ବ୍ରାହ୍ମଣ, ପଣ୍ଡିତ ଓ ଜ୍ଞାନୀ ବ୍ୟକ୍ତିଙ୍କୁ ଜମିଜମା ଓ ଉପଢୌକନ ଦାନ କରିଥିଲେ । ୧୭୫୫ ଖ୍ରୀଷ୍ଟାବ୍ଦରେ ସେ ରାଜ ପୁରୋଧା ପଣ୍ଡିତ ରାମଚନ୍ଦ୍ର ସାମନ୍ତରାୟ ଦୀକ୍ଷୀତ ମହାପାତ୍ରଙ୍କ ନିଜିଗଡ଼ ବିଷ କୁଶପଦା ଗ୍ରାମ ଦାନ ଦେଇଥିଲେ । ସେହି ବର୍ଷ ବଡ଼ପଣ୍ଡା ଶ୍ରୀପତି ପଟ୍ଟଯୋଶୀଙ୍କୁ ଭାଟକାଟେଣୀ ଗ୍ରାମ ଦାନ ଦେଇଥିଲେ । ଏତଦ୍‌ଭିନ୍ନ କବି ବ୍ରଜନାଥଙ୍କୁ ନୂଆଗାଁ ଗ୍ରାମ, ଲୋକନାଥଙ୍କୁ କମଗରା ଗ୍ରାମ ଓ ଜଗନ୍ନାଥଙ୍କୁ ମହୁଲପାଳ ଗ୍ରାମ ଦାନ କରିଥିଲେ । ପ୍ରତ୍ୟହ ରାଜ ଦରବାରରେ ଦୁଃଖୀ, ଦୀନ, ଅକିଞ୍ଚନଙ୍କୁ ଦାନ କରାଯାଉଥିଲା । ସେନାଙ୍କୁ ପ୍ରୋତ୍ସାହନ ପ୍ରଦାନ ଉଦ୍ଦେଶ୍ୟରେ ରାଜା ତ୍ରିଲୋଚନ ପାଇକମାନଙ୍କୁ ପାଇକାଳୀ ଜାଗ୍ରୀ ପ୍ରଦାନ କରିଥିଲେ । ପଣ୍ଡିତ ଓ ଜ୍ଞାନୀମାନଙ୍କୁ ସାରସ୍ୱତ ଉପାଧି ପ୍ରଦନା କରିବା ସହିତ ରାଜକର୍ମଚାରୀ, ସେନାଧକ୍ଷ, ସୈନ୍ୟ ଓ ଅନ୍ୟାନ୍ୟ କୃତୀସନ୍ତାନଙ୍କୁ ସେ ରାୟ, ନରେନ୍ଦ୍ର, ବକ୍‌ସୀ, ବେବର୍ତ୍ତା, ଛାମୁକରଣ, ମହାପାତ୍ର, ଶ୍ରୀଚନ୍ଦନ, ଶ୍ରୀଚନ୍ଦନରାୟ, ହରିଚନ୍ଦନ, ହରିଚନ୍ଦନରାୟ, ରାଜେନ୍ଦ୍ର ସିଂହ, ସୁରେନ୍ଦ୍ର ସିଂହ, ସାମନ୍ତ ସିଂହରାୟ, ମତ୍ତଗଜ ସିଂହ, ଗଜରାଜସିଂହ, ସର୍ଦ୍ଦାର ସିଂହ, ପ୍ରତାପ ସିଂହ, ବଳୀୟାର ସିଂହ, ମାନସିଂହ, ମହାମାନସିଂହ, କେଶରୀ ସିଂହ, ପାହାଡ଼ ସିଂହ, ଝପଟ ସିଂହ ରାୟଗୁରୁ, ପରମଗୁରୁ , ପାଟଯୋଶୀ, ବାହିନୀପତି, ଚମୂପତି, ଚମୁପତି ସିଂହ, ଚମୁପତିରାୟ, ସାମନ୍ତ ରାୟ, ନରେନ୍ଦ୍ର ରାୟ, ପାଇକ ରାୟ, ଖଣ୍ଡାଇତ ରାୟ, ବଳବନ୍ତ ରାୟ, ସୁନ୍ଦର ରାୟ, ମଙ୍ଗରାଜ,

ପ୍ରହରାଜ ବଡ଼ପଣ୍ଡା ପ୍ରଭୃତି ଉପାଧିରେ ଭୂଷିତ କରିବା ସହିତ ପାଟକୁଣ୍ଡଳ ତାମ୍ରପତ୍ରସନନ୍ଦ ତଥା ଉପଢ଼ୌକନ ପ୍ରଦାନ କରିଥିଲେ ।

ରାଜା ତ୍ରିଲୋଚନଙ୍କ ରାଜତ୍ୱରେ ଢେଙ୍କାନାଳରେ ଶିକ୍ଷାର ଆଦର ବଢ଼ିଥିଲା । ମୁଖ୍ୟଗ୍ରାମ ଓ ମୁଖ୍ୟସ୍ଥାନ ମାନଙ୍କରେ ମାଟିବଂଶ ଅବଧାନ, ବ୍ରାହ୍ମଣ, ଜ୍ୟୋତିଷ ଜାତିର ବ୍ୟକ୍ତି ଚାଟଶାଳୀ ମାନ ଗଢ଼ି ଛାତ୍ରମାନଙ୍କୁ ଶିକ୍ଷା ଦେଉଥିଲେ । ତତ୍‌କାଳୀନ ଚାଟଶାଳୀରେ ଅକ୍ଷର ଶିକ୍ଷା ଠାରୁ କାବ୍ୟକବିତା, ଅଙ୍କ ଜମିମାପ ପ୍ରଭୃତି ଶିକ୍ଷା ଦିଆଯାଉଥିଲା । ଏତଦ୍‌ଭିନ୍ନ ମୁକ୍ତାଦେଇ ପୁର ଶାସନରେ ପଣ୍ଡିତ ଗୋବିନ୍ଦ ଦୀକ୍ଷୀତ, ମାର୍ଥାପୁର ଶାସନରେ ପଣ୍ଡିତ ଧରାନ୍ଧର ମିଶ୍ର ଓ ମୁଣ୍ଡଇଲୋ ଶାସନରେ ପଣ୍ଡିତ କବିରାଜ ବିଦ୍ୟାବାଗୀଶ ଆଗ୍ରହୀ ଛାତ୍ରମାନଙ୍କୁ ଉଚ୍ଚତର ଓଡ଼ିଆ ଓ ସଂସ୍କୃତ ସାହିତ୍ୟ ସହିତ ନ୍ୟାୟ, ଦର୍ଶନ, ସାଂଖ୍ୟ, ବେଦାନ୍ତ ତଥା ଜ୍ୟୋତିଷ ଶିକ୍ଷା ପ୍ରଦାନ କରୁଥିଲେ । ସେହି ସମୟରେ ଢେଙ୍କାନାଳର ଅନେକ ବ୍ରାହ୍ମଣ-ଛାତ୍ରପୁରୀ, କାଶୀ ଓ ନବଦ୍ୱୀପ ଯାତ୍ରାକରି ଉଚ୍ଚଶିକ୍ଷା ଲାଭ ପୂର୍ବକ ବହୁଉପାଧିରେ ଭୂଷିତ ହୋଇଥିଲେ ।

ରାଜା ତ୍ରିଲୋଚନଙ୍କ ରାଜସ୍ୱ ପ୍ରଶାସନ ଉଚ୍ଚକୋଟୀର ଥିଲା । ସେ ସମୟରେ ସାଧାରଣରେ ମୁଦ୍ରା ରୂପେ କଉଡ଼ିକୁ ବ୍ୟବହାର କରାଯାଉଥିଲା । ତଥାପି ରାଜଦରବାରରେ ଟଙ୍କାର ପ୍ରଚଳନ ଥିବାବ୍ରଜନାଥଙ୍କ ''ସମରତରଙ୍ଗ'' କାବ୍ୟରୁ ଉପଲବ୍ଧ ହୁଏ ।

ଦୁଇଶ ଟଙ୍କା ପାଟବସ୍ତ୍ର ସହିତ
ଚାଙ୍ଗଡ଼ାଘରୁ ହେଲା ସେ କ୍ଷଣି ଦତ୍ତ ଯେ ।

ରୂପାଟଙ୍କା ବ୍ୟତୀତ ରାଜ ପ୍ରାସାଦରେ ମୋହର ବା ସୁନାଟଙ୍କାର ମଧ ବ୍ୟବହାର ଥିଲା । ସୁନାଟଙ୍କା ଓ ରୂପାଟଙ୍କାର ବ୍ୟବହାର ରାଜ ଦରବାର, ସାମନ୍ତ ଓ ଧନୀ ବ୍ୟକ୍ତିମାନେ କରୁଥିଲେ । ସାଧାରଣ ପ୍ରଜା କଉଡ଼ିକୁ ମୁଦ୍ରା ରୂପେ ମାନୁଥିଲେ । ହଳ ସଂଖ୍ୟା ଅନୁଯାୟୀ ରାଜସ୍ୱ ଆଦାୟ ହେଉଥିଲା । ବର୍ଗୀ ଆକ୍ରମଣରେ କ୍ଷତିଗ୍ରସ୍ତ ପ୍ରଜାଙ୍କୁ ରାଜସ୍ୱ ଛାଡ଼ ହେଉଥିଲା । ସର୍ବରାକାରମାନେ ପ୍ରଜାଙ୍କଠାରୁ ରାଜସ୍ୱ ଆଦାୟ କରି ରାଜକୋଷରେ ପଇଠ କରୁଥିଲେ । ସେମାନଙ୍କର କାର୍ଯ୍ୟ ପ୍ରତି ବିଷରେ ଥିବା ବେହେରା ପଧାନ ତଦାରଖ କରୁଥିଲେ । ଗ୍ରାମମାନଙ୍କରେ ଘଟୁଥିବା ଛୋଟ ଛୋଟ ମୋକଦମାର ବିଚାର

ସର୍ବରାକାର ଓ ବେହେରା ପ୍ରଧାନ କରୁଥିଲେ । ଗ୍ରାମର ଶାନ୍ତିରକ୍ଷା ନିମିତ୍ତ ପ୍ରତି ଗ୍ରାମରେ ଚୌକୀଦାର ନିଯୁକ୍ତି ପାଉଥିଲେ। ସେମାନେ ଜାଗିରୀଜମି ଭୋଗ କରୁଥିଲେ। ବ୍ରାହ୍ମଣ ଓ ପାଇକମାନଙ୍କୁ ପ୍ରଦତ୍ତ ଜମିରୁ ରାଜସ୍ୱ ଆଦାୟ ହେଉନଥିଲା । ବିଭିନ୍ନ ମଠ ଓ ମନ୍ଦିରକୁ ପ୍ରଦତ୍ତ ଜମି ନିଷ୍କର ଲାଖରାଜ ଦେବୋତ୍ତର ଜମି ରୂପେ ବିବେଚିତ ହେଉଥିଲା । ପ୍ରତ୍ୟହ ରାଜଦରବାରରେ ରାଜା ପାତ୍ରମନ୍ତ୍ରୀମାନଙ୍କ ସହିତ ବସି ପ୍ରଜାମାନଙ୍କ ଆପତ୍ତି ଶୁଣୁଥିଲେ ତଥା ମୋକଦମା ବିଚାର ପୂର୍ବକ ଦୋଷୀଙ୍କୁ ଦଣ୍ଡ ଦେଉଥିଲେ ।

ମୋଟ ଉପରେ ଉଲ୍ଲେଖକଲେ, ତ୍ରିଲୋଚନଙ୍କ ରାଜତ୍ୱରେ ଢେଙ୍କାନାଳରେ ଶାନ୍ତି ବିରାଜମାନ କରୁଥିଲା । ରାଜା ତ୍ରିଲୋଚନ ପ୍ରଜାମାନଙ୍କୁ ବର୍ଗୀମାନଙ୍କର ଅସହ୍ୟ ଅତ୍ୟାଚାର ଓ ଉତ୍ପୀଡ଼ନରୁ ରକ୍ଷା କରି ସୁଶାସନ ପ୍ରତିଷ୍ଠା କରିଥିଲେ । ଏତଦ୍‌ଭିନ୍ନ ଢେଙ୍କାନାଳର ଶିକ୍ଷା, ସଂସ୍କୃତି ଓ ସଭ୍ୟତାର ସମୃଦ୍ଧି ନିମିତ୍ତ ସେ ତତ୍ପର ଥିଲେ । ତାଙ୍କ ରାଜତ୍ୱରେ ଢେଙ୍କାନାଳର ଅପହୃତ ରାଜକୋଷ ପୁନର୍ବାର ପରିପୂର୍ଣ୍ଣ ହୋଇଗଲା କିନ୍ତୁ ମରହଟ୍ଟାମାନେ ଢେଙ୍କାନାଳ ଆକ୍ରମଣ ଓ ଅଧିକାର କରିବାର ଲୋଭ ସମ୍ବରଣ କରି ପାରିନଥିଲେ । ସେମାନେ ରାଜନୈତିକ ଅସ୍ଥିରତାର ସୁଯୋଗ ନେଇ ଢେଙ୍କାନାଳ ଆକ୍ରମଣ ପ୍ରତୀକ୍ଷାରେ ରହିଥିଲେ ।



# ଢେଙ୍କାନାଳ-ମରହଟ୍ଟା ମହାସମର

ରାଜା ତ୍ରିଲୋଚନ ଢେଙ୍କାନାଳରେ ରାଜତ୍ୱ କରୁଥିବା ସମୟରେ ଓଡ଼ିଶାରେ ଅସ୍ଥିରତା ବୃଦ୍ଧି ପାଇଥିଲା । ବଙ୍ଗନବାବ ସୁଜାଉଦ୍ଦିନଙ୍କ ମୃତ୍ୟୁ ହେବାର ସରପରାଜ ଖାଁ ନୂତନ ଶାସନ କର୍ତ୍ତା ହୋଇଥିଲେ । ପ୍ରାୟ ବର୍ଷେ ପରେ ଆଲିବର୍ଦ୍ଦୀଖାଁ ତାଙ୍କୁ ପରାସ୍ତକରି ନିଜେ ନବାବ ହେଲେ ଏବଂ ମୁର୍ଶଦ୍‌କୁଲିଖାଁଙ୍କୁ କଟକର ଶାସନକର୍ତ୍ତା ପଦରୁ ହଟାଇବାକୁ ଆଦେଶ ଦେଲେ। ଫଳରେ ବାଲେଶ୍ୱର ଠାରେ ଆଲିବର୍ଦ୍ଦୀ ଖାଁ ଓ ମୁର୍ଶିଜ୍‌କୁଲିଖାଁଙ୍କ ମଧ୍ୟରେ ଯୁଦ୍ଧ ହେଲା । ଏହି ଯୁଦ୍ଧରେ ଆଲିବର୍ଦୀ ଖାଁ ଜୟଲାଭ କରି ସଏଦ ଅହମଦକୁ ଓଡ଼ିଶାର ଶାସନକର୍ତ୍ତା ଭାବରେ କଟକରେ ମୁତୟନ କଲେ, କିନ୍ତୁ ମରହଟ୍ଟା ମାନେ ସଏଦ୍ ଅହମଦଙ୍କୁ ହତ୍ୟାକରି ବଙ୍ଗଦେଶ ଆକ୍ରମଣକଲେ । ଆଲିବର୍ଦ୍ଦୀ ଖାଁଙ୍କ ସହିତ ମରହଟ୍ଟାମାନଙ୍କର ବହୁ ସ୍ଥାନରେ ଯୁଦ୍ଧ ହେଲା । ମରହଟ୍ଟାମାନେ ପ୍ରଥମେ ପରାସ୍ତ ହୋଇଥିଲେ ହେଁ ପରେ ପରେ ନାଗପୁରର ମରହଟ୍ଟା ଦଳପତି ରଘୁଜୀ ଭୋଁସଲା ଆସି ବଳପୂର୍ବକ ଓଡ଼ିଶା ଅଧିକାର କଲେ । ରଘୁଜୀ ନିଜେ ଓଡ଼ିଶାରେ ନରହି ମୀରହବିବ୍ ନାମକ ଜନୈକ ମୁସଲମାନ ସେନାଧ୍ୟକ୍ଷ ହସ୍ତରେ ଓଡ଼ିଶାର ଶାସନ ଭାର ଅର୍ପଣ କରି ନାଗପୁର ପ୍ରତ୍ୟାବର୍ତ୍ତନ କଲେ । ସେହି ସମୟରେ ଦିଲ୍ଲୀର ମୋଗଲ ବାଦ୍‌ଶାହା ଥିଲେ ଅହମ୍ମଦ ଶାହା । ଆଲିର୍ବଦୀ ଖାଁ ତାଙ୍କ ଅଧୀନରେ ନାଜିମ୍ ଓ ମୀର୍‌ହବିବ୍ ଓଡ଼ିଶାର ନାଏବ୍ ନାଜିମ୍ । ପ୍ରକୃତ ପକ୍ଷେ ଦିଲ୍ଲୀ, ବଙ୍ଗ ଓ ଓଡ଼ିଶା ଶାସନରେ ସେତେବେଳକୁ ବ୍ୟାପକ ଅସ୍ଥିରତା ସୃଷ୍ଟି ହୋଇଥିଲା । ଇତି ମଧ୍ୟରେ ଆଲୀବର୍ଦ୍ଦି ଖାଁ ମରହଟ୍ଟା ଆକ୍ରମଣ ଛଳରେ ଦିଲ୍ଲୀ ବାଦ୍‌ଶାହାଙ୍କ କର ନଦେଇ ନିଜେ ନିଜେ ନାଜିମ୍ ପରିବର୍ତ୍ତେ ବଙ୍ଗଳାର ନବାବ ବୋଲାଇଲେ । ଏହି ସୁଯୋଗରେ ମରହଟ୍ଟାମାନେ ୧୭୫୧ରୁ ଓଡ଼ିଶା ଅଧିକାର କରି ଏଠାରେ ଦ୍ୱୈତଶାସନ ଚଳାଇଲେ । ଓଡ଼ିଶାରେ ଆଲିବର୍ଦ୍ଦୀଖାଁ ଦ୍ୱାରା ନିଯୁକ୍ତ ନାଏବ ନଜିମ୍ ପ୍ରକୃତରେ ମରହଟ୍ଟାମାନଙ୍କ ପ୍ରତିନିଧି ଥିଲେ ।

ଓଡ଼ିଶାରେ ଅବସ୍ଥିତ ନାଏବ ନଜିମ୍ ମୀରହବିବ୍ କୁଚକ୍ରୀ ଥିଲେ । ସୂଚନା ଯୋଗ୍ୟଯେ, ଖୋର୍ଦ୍ଧାର ରାଜା ରାମଚନ୍ଦ୍ର ଦେବ ୨ୟ ଯେକି ମୁସଲମାନ ହୋଇ ଯାଇଥିଲେ ତାଙ୍କର ମୃତ୍ୟୁପରେ ମୀରହବିବ୍ ପଟିଆ ରାଜା ପଦ୍ମନାଭଦେବଙ୍କୁ

ଖୋର୍ଦ୍ଧା ରାଜସିଂହାସନରେ ବସାଇଥିଲେ । କିନ୍ତୁ ଖୋର୍ଦ୍ଧା ରାଜବଂଶର ସମର୍ଥକ ବୃନ୍ଦ ପଦ୍ମନାଭ ଦେବଙ୍କୁ ହତ୍ୟା କଲେ । ଶେଷରେ ରାମଚନ୍ଦ୍ର ଦେବଙ୍କ ନୀତି ବୀରକିଶୋରଦେବ ୧ମ ଖୋର୍ଦ୍ଧାରାଜଗାଦୀର ଆରୋହଣ କଲେ । ସେହି ମୀରହବିବ୍ ପୁନର୍ବାର ଓଡ଼ିଶାରେ ମରହଟ୍ଟା ସେନାଧକ୍ଷ ଭାବରେ ନିଯୁକ୍ତ ପାଇଲେ । ଇତି ମଧରେ ଆଲିବର୍ଦ୍ଦିଖାଁ ମୀରହବିବ୍‌ଙ୍କ ବିରୋଧରେ ପ୍ରତିହିଂସା ପରାୟଣ ହୋଇଥାଆନ୍ତି। ନାଗପୁରପତି ରଘୁଜୀ ଭୋଁସଲା ନିଜର ଉଦ୍ଧତପୁତ୍ର ଜାନୁଜୀଙ୍କୁ କିଛିଦିନ ପରେ ଓଡ଼ିଶାରେ ପ୍ରତିନିଧି କରି ପଠାଇଲେ। ଜାନୁଜୀ ଓ ମୀରହବିବ ଉଭୟ ସମପ୍ରକୃତିର ଥିବାରୁ ଓଡ଼ିଶାରେ କ୍ଷମତା ଓ ଆଧିପତ୍ୟ ବିସ୍ତାର କରିବାକୁ ପାଗଳ ପ୍ରାୟ ହୋଇଉଠିଲ । ଉଭୟଙ୍କ ମଧ୍ୟରେ ବନ୍ଧୁତା ବୃଦ୍ଧି ହେବାର ଦେଖି ଆଲିବର୍ଦ୍ଦୀଖାଁ ମୀରହବିବ୍‌ଙ୍କ ନାମରେ ଏକ ଜାଲ ଚିଠି ଜାନୁଜୀଙ୍କ ନିକଟକୁ ପଠାଇଲେ । ଏଥିରେ କ୍ରୋଧାନ୍ୱିତ ହୋଇ ଜାନୁଜୀ ମୀରହବିବ୍‌ଙ୍କୁ ହତ୍ୟାକରିବାକୁ ଆଦେଶ ଦେଲେ । ଆଲିବର୍ଦ୍ଦୀ ଖାଁ କୌଶଳରେ ଜୟୀ ହୋଇ ମୀରହବିବ୍‌ଙ୍କ ହଟାଇ ଦେଲେ । ଏହାପରେ ଆଲିବର୍ଦ୍ଦୀଖାଁ ରଘୁଜୀ ଭୋଁସଲା ଉଭୟଙ୍କ ଦ୍ୱାର ନିଯୁକ୍ତ ହୋଇ ମିର୍ଜାମସ୍‌ଲିଉଦ୍ଦିନ୍ ଓଡ଼ିଶାର ନାଏବ୍ ନାଜିମ୍ ହେଲେ । ନିଯୁକ୍ତି ପୂର୍ବରୁ ମିର୍ଜା ମସ୍‌ଲି-ଉଦ୍ଦନ ରଘୁଜୀ ଭୋଁସଲାକୁ ଅଧିକ ଚାରିଲକ୍ଷ ଟଙ୍କା ଚୌଥ ଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ଫଳରେ ଓଡ଼ିଶାର ରାଜା, ଜମିଦାର ଓ ପ୍ରଜା ଅଧିକ କରଦେବାକୁ ବାଧ ହେଲେ । ଅଶାନ୍ତି ବୃଦ୍ଧି ହେଲେ ହେଁ ଦୁର୍ଦ୍ଧର୍ଷ ମୁସଲମାନ ଓ ନିର୍ଦ୍ଦୟ ମରହଟ୍ଟାଙ୍କ ଭୟରେ କେହି ସ୍ୱର ଉତ୍ତୋଳନ କରିପାରୁନ ଥିଲେ । ବଙ୍ଗ ନବାବ ଆଲିବର୍ଦ୍ଦୀଖାଁ ମଧ ଦୁର୍ବଳ ହୋଇ ଯାଇଥିଲେ। ଓଡ଼ିଶାର ନାଏବ ନାଜିମ୍ କର ଆଦାୟ ବା ଶାସନ ଉଭୟକାର୍ଯ୍ୟ ସୁଚାରରୂପେ ଚଳାଇ ପାରିଲେ ନାହିଁ । ଫଳରେ ଦୀର୍ଘ ବାର ବର୍ଷ କାଳ ମୋଗଲ ମରହଟ୍ଟା ସଂଘର୍ଷରେ ଓଡ଼ିଶା ଧ୍ୱଂସ ବିଧ୍ୱଂସ୍ତ ହେବାକୁ ଲାଗିଲା । ମରହଟ୍ଟା ଓ ମୋଗଲଙ୍କର ଯେଉଁ ସନ୍ଧି ହୋଇଥିଲା ସେଥିରେ ଚୁକ୍ତି ଥିଲା ଯେ ମରହଟ୍ଟାମାନେ ବଙ୍ଗଳା ରାଜସ୍ୱର ଚୌଥ ସ୍ୱରୂପ ବାର ଲକ୍ଷ ଟଙ୍କା ପାଇବେ ଏବଂ ତନ୍ମଧ୍ୟରୁ ଚାରିଲକ୍ଷ ଓଡ଼ିଶା ରାଜସ୍ୱରୁ ପ୍ରଦତ୍ତ ହେବ । କିନ୍ତୁ ମରହଟ୍ଟାମାନେ ସୁବର୍ଣ୍ଣରେଖା ନଦୀ ପାର ହୋଇ ବଙ୍ଗଳାରେ ପ୍ରବେଶ କରିପାରିବେ ନାହିଁ । ଏହି ସନ୍ଧି ଅନୁଯାୟୀ ଓଡ଼ିଶା ରାଜସ୍ୱ ପ୍ରଦାନ କରି ମଧ ମରହଟ୍ଟାଙ୍କ ଉତ୍ପୀଡ଼ନରୁ ରକ୍ଷା ପାଇ ପାରିଲା ନାହିଁ । ମରହଟ୍ଟାମାନେ ଓଡ଼ିଶାରେ ଯଥେଚ୍ଛାଚାର ଶାସନ ଆରମ୍ଭ କଲେ । ୧୭୫୧ରେ

ଓଡ଼ିଶା ଅଧିକାର କରିଥିଲେ ହେଁ ୧୭୫୫ରୁ ମରହଟ୍ଟାମାନେ ସଂପୂର୍ଣ୍ଣ ଶାସକ ହେଲେ, ଆଲୀବର୍ଦ୍ଦୀ ଖାଁର କୌଣସି କ୍ଷମତା ରହିଲା ନାହିଁ । ଖୋର୍ଦ୍ଧା ଗଜପତି ବୀରକିଶୋର ଦେବ ପୂର୍ବରୁ ଯେପରି ମୋଗଲମାନଙ୍କ ସହାୟତାରେ ଗାଦୀରେ ବସିଥିଲେ, ପରେ ସେହିପରି ମରହଟ୍ଟାଙ୍କର ଆଶ୍ରୟ ଲୋଡ଼ିଲେ । ଦୁର୍ଯୋଗକୁ ଖେମୁଣ୍ଡିର ରାଜା ନାରାୟଣ ଦେବ ଆପଣାକୁ ଖୋର୍ଦ୍ଧାଗଜପତିଙ୍କର ଉପଯୁକ୍ତ ଦାୟାଦ ବୋଲି ଦାବୀ କଲେ । ଗଜପତି ବୀର କିଶୋର ମରହଟ୍ଟାଙ୍କ ସାହାଯ୍ୟ ପ୍ରାର୍ଥୀହୋଇ ନିଷ୍କଣ୍ଟକ ରାଜଗାଦୀ ଭୋଗକଲେ । ଏଥିନିମିତ୍ତ ସେ ମରହଟ୍ଟାମାନଙ୍କୁ ଏକଲକ୍ଷ ମୁଦ୍ରାଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ତାହା ପ୍ରଦାନ କରି ନପାରିବାରୁ ସେ ଲେମ୍ବାଇ, ରାହାଙ୍ଗ, ପୁରୁଷୋତ୍ତମ ଏବଂ ଚଉଦ ଗଡ଼ଜାତର ସତ୍ତ୍ୱ ମରହଟ୍ଟାଙ୍କୁ ପ୍ରଦାନ କଲେ । ଏହି ସୂତ୍ରରେ ମରହଟ୍ଟାମାନଙ୍କର ଗଡ଼ଜାତ ଉପରେ ଆଧିପତ୍ୟ ସୃଷ୍ଟି ହେଲା । ଏହି ରାଜାମାନେ ଖୋର୍ଦ୍ଧା ଗଜପତିଙ୍କୁ ଯେଉଁ କର ପ୍ରଦାନ କରୁଥିଲେ ତାହା ମରହଟ୍ଟାଙ୍କୁ ଦେବାକୁ ବାଧ୍ୟ ହେଲେ ।

ନାଗପୁରପତି ରଘୁଜୀଭୋଁସଲାଙ୍କ ମୃତ୍ୟୁପରେ ଓଡ଼ିଶାର ଶାସନଭାର ଚଳାଇ ନପାରି ମିର୍ଜାମସ୍‌ଲିଉଦ୍ଦିନ୍ ନାଏବ୍‌ନାଜିମ୍ ପଦରୁ ଇସ୍ତଫା ଦେଲେ । ତାଙ୍କ ପରେ ୧୭୫୬ରେ ଶିବରାମ ସାଠେ (ଭଟ୍ଟ) ଓଡ଼ିଶାର ନାଏବନଜିମ୍ ରୂପେ ରଘୁଜୀଙ୍କ ପୁତ୍ର ଜାନୁଜୀଙ୍କ ଦ୍ୱାରା ନିଯୁକ୍ତ ହେଲେ । ସେତେବେଳକୁ ବଙ୍ଗନବାବ ଆଲିବର୍ଦ୍ଦୀଖାଁଙ୍କ ମୃତ୍ୟୁପରେ ତାଙ୍କ ନାତି ସିରାଜଉଦ୍ଦୌଲା ନବାବ ହୋଇଥାନ୍ତି । ୧୭୫୭ରେ ସଂଘଟିତ ପଲାସୀ ଯୁଦ୍ଧରେ ସିରାଜ ଉଦ୍ଦୌଲା ହାରଯାଇ ପଳାତକ ଅବସ୍ଥାରେ ନିହତ ହେଲେ । ଫଳରେ ବଙ୍ଗରେ ଇଂରେଜ ମାନଙ୍କ ଆଧିପତ୍ୟ ବୃଦ୍ଧିପାଇଲା ମରହଟ୍ଟା ନାଏବ ନାଜିମ୍ ଶିବରାମ ଭଟ୍ଟଙ୍କ ସହିତ ଇଂରେଜମାନଙ୍କ ବିବାଦ ଦିନକୁ ଦିନ ବୃଦ୍ଧି ହେବାକୁ ଲାଗିଲା । ଶିବରାମ ଇଂରେଜମାନଙ୍କଠାରୁ ଓ ବଙ୍ଗନବାବଙ୍କଠାରୁ ଚୌଥ ଦବୀ କଲେ । ଇଂରେଜମାନଙ୍କ ସହିତ ବିବାଦ ଯୋଗୁଁ ପ୍ରଥମେ ଶିବରାମ ଭଟ୍ଟ ଓଡ଼ିଶାବାସୀଙ୍କୁ ସନ୍ତୁଷ୍ଟ କରିବା କାମନାରେ ଗଜପତିଙ୍କ ଠାରୁ ଲାଭ କରିଥିବା ପ୍ରଗଣା ଓ ଗଡ଼ଜାତର କେତେକ ଅଂଶ ଶ୍ରୀ ଜଗନ୍ନାଥଙ୍କ ସେବା ପୂଜା ନିମିତ୍ତ ଖଞ୍ଜିଥିଲେ । ଶିବରାମ ଜଣେ ସୁଦକ୍ଷ ଶାସକ ଥିଲେହେଁ ଇଂରେଜମାନଙ୍କ ଚକ୍ରାନ୍ତରେ ଜାନୁଜୀଙ୍କ ଦ୍ୱାରା ୧୭୬୪ ଖ୍ରୀଷ୍ଟାବ୍ଦରେ ପଦବୀରୁ ବରଖାସ୍ତ ହେଲେ । ତତ୍‌ପରେ ବନ୍ଦୀରୁ ମୁକ୍ତ ହୋଇ ଦୁଇବର୍ଷକାଳ ମରହଟ୍ଟା ଓ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ଶେଷରେ ୧୭୬୬ରେସେ

ମରହଟ୍ଟା ଓ ଇଂରେଜଙ୍କ ମିଳିତବାହିନୀ ଦ୍ୱାରା ପରାସ୍ତ ହେଲେ । ଶିବରାମଙ୍କ ପରେ ୧୭୬୪ ରେ ଚିମନାଜୀ ସାହୁ ସୁବାଦାର ଓ ଭବାନୀ କାଳିଆ ପଣ୍ଡିତ ଦେବାନରୂପେ ନିଯୁକ୍ତ ହୋଇ ଓଡ଼ିଶା ଆସିଲେ । ଓଡ଼ିଶାରେ ମରହଟ୍ଟା ଶାସନ କର୍ତ୍ତାମାନେ ନାଗପୁରରୁ ନିଯୁକ୍ତ ହୋଇଆସୁଥିଲେ । ନିଯୁକ୍ତିର କୌଣସି ନିୟମ ନଥିଲା । ଜଣେ ନିଯୁକ୍ତି ହୋଇ ଆସି କାର୍ଯ୍ୟରେ ଯୋଗ ନଦେଉଣୁ ଅନ୍ୟଜଣେ ନିଯୁକ୍ତି ପାଉଥିଲା। ହଠାତ୍ ଭବାନୀକାଳିଆ ପଣ୍ଡିତଙ୍କୁ ନାଗପୁର ଫେରାଇ ନିଆଗଲା ଏବଂ ଶମ୍ଭାଜୀଗଣେଶଙ୍କୁ ଓଡ଼ିଶାର ଶାସନକର୍ତ୍ତା ରୂପେ ନିଯୁକ୍ତି ଦିଆଗଲା । ସେ ଜଣେ ପ୍ରଜାପୀଡ଼କ ବ୍ୟକ୍ତି ଥିଲେ । ସମଗ୍ର ଓଡ଼ିଶାରେ ତାଙ୍କ ଦୌରାତ୍ମ୍ୟ ବୃଦ୍ଧି ପାଇଲା । ସେତେବେଳକୁ ଖୋର୍ଦ୍ଧା ଗଜପତି ବୀରକିଶୋର ଦେବ ଅସହାୟ । ଏହି ସମୟରେ ୧୧୭୫ ସାଲ ବା ୧୭୬୮ ଖ୍ରୀଷ୍ଟାବ୍ଦରେ ଯୋଡ଼ାଆଷାଢ଼ ପଡ଼ିବାରୁ ଶ୍ରୀଜଗନ୍ନାଥଙ୍କ ନବକଳେବର ଯୋଗ ପଡ଼ିଲା । ଗଜପତି ଆର୍ଥିକ ଦୃଷ୍ଟିରୁ ନବକଳେବର ଭାର ବହନ କରିବାକୁ ଅସମର୍ଥ । ମରହଟ୍ଟା ମାନଙ୍କଠାରୁ ବା ଅନ୍ୟ ରାଜାଜମିଦାରଙ୍କ ଠାରୁ ସାହାଯ୍ୟ ମିଳିବାର ଆଶା କ୍ଷୀଣ । ଜଗତ୍‌ଜନନୀ ମଙ୍ଗଳାଙ୍କ ନିର୍ଦ୍ଦେଶକ୍ରମେ ଦେବୀନଦୀକୂଳରୁ ଓ ଢେଙ୍କାନାଳରୁ ଦାରୁ ପ୍ରାପ୍ତ ହେଲେ । ଦଇତାମାନେ ଢେଙ୍କାନାଳରେ ଦାରୁ ନିରୁପଣ କରିବା ପରେ ସମଗ୍ର ଢେଙ୍କାନାଳ ସହରରେ ଆନନ୍ଦରେ ଲହରୀ ଖେଳିଗଲା । ରାଜା ତ୍ରିଲୋଚନ ତତ୍‌କ୍ଷଣାତ୍ ପୂଜାବିଧି ଓ ଯଜ୍ଞାନୁଷ୍ଠାନର ବିଧିବ୍ୟବସ୍ଥା କରାଇଲେ । ବର୍ତ୍ତମାନର ବସଷ୍ଟାଣ୍ଡ ପଶ୍ଚିମରେ ଉପଜିଲାପାଳଙ୍କ ସରକାରୀ ବାସଭବନ ଯେଉଁଠାରେ ଅବସ୍ଥିତ ସେହି ସ୍ଥାନରୁ ୧୭୬୮ ମସିହାରେ ଦଇତାଗଣ ମହାଦାରୁ ସଂଦର୍ଶନ କରିଥିଲେ । ସଂପ୍ରତି ସେହି ସ୍ଥାନରେ ଦୁଇଗୋଟି ମହାନିମ୍ବ ବୃକ୍ଷ ବିରାଜିତ । ରାଜା ତ୍ରିଲୋଚନ ସେହି ବର୍ଷ ନବକଳେବର ନିମିତ୍ତ ଏକଶହ ମାଢ଼ ସୁନା ଓ ଆବଶ୍ୟକୀୟ ଉପକରଣ ପଠାଇଥିଲେ । ମରହଟ୍ଟା ସୁବାଦାର ଶମ୍ଭୁଜୀଗଣେଶ ଅନୁମାନ କଲେ ଯେ, ଢେଙ୍କାନାଳ ରାଜାହିଁ ଓଡ଼ିଶାର ସର୍ବୋଚ୍ଚ ଧନୀରାଜା ଯିଏ ନବକଳେବରର ସକଳ ଖର୍ଚ୍ଚ ବହନ କଲେ । ତେଣୁ ଢେଙ୍କାନାଳ ପ୍ରତି ତାଙ୍କର ଲୋଲୁପ ଦୃଷ୍ଟି ପଡ଼ିଲା । ଶମ୍ଭୁଜୀଙ୍କ ଅତ୍ୟାଚାର ଓ ବର୍ବରତା ସାଙ୍ଗକୁ ୧୭୭୦-୭୧ ରେ ଓଡ଼ିଶାର ଅଚାନକ ଦୁର୍ଭିକ୍ଷ ପଡ଼ିଲା । ଏଥିରେ ହଜାର ହଜାର ଲୋକ ମରିବା ସହିତ ଅନେକ ଗ୍ରାମ ଜନଶୂନ୍ୟ ହୋଇଗଲା । ତଥାପି ମରହଟ୍ଟାଶାସକ ଶମ୍ଭୁଜୀଙ୍କ ଅତ୍ୟାଚାର କମିନଥିଲା । ତାଙ୍କ

ଅତ୍ୟାଚାରରୁ ରକ୍ଷାପାଇବା ନିମିତ୍ତ ଢେଙ୍କାନାଳ ରାଜା ଜୟନାରାୟଣ ରିଜାଖାଁଙ୍କୁ ଚିଠି ଲେଖିଥିବା ପ୍ରସଙ୍ଗ ପୂର୍ବରୁ ଆଲୋଚନା କରାଯାଇଛି ଏବଂ ତତ୍‌କାଳୀନ ଓଡ଼ିଶାର ସ୍ଥିତିକୁ ବିଚାର ପୂର୍ବକ ଏହ ଚିଠିକୁ ଜାଲ ଚିଠି ବୋଲି ସିଦ୍ଧାନ୍ତ ନିଆଯାଇଛି । କାରଣ ରାଜାତ୍ରିଲୋଚନ ୧୭୫୫ରେ ତାମ୍ରପତ୍ର ପ୍ରଦାନ କରିଛନ୍ତି ଓ ୧୭୬୮ରେ ନବକଳେବର ନିମିତ୍ତ ସଂପୂର୍ଣ୍ଣ ସାହାଯ୍ୟ କରିଛନ୍ତି । ଏପରି ସ୍ଥଳେ ୧୭୬୯ ଜୁନ୍ ମାସରେ ଢେଙ୍କାନାଳ ରାଜା ଜୟନାରାୟଣ ଚିଠି ଲେଖିବା ସଂପୂର୍ଣ୍ଣ ଭ୍ରମାତ୍ମକ ତଥ୍ୟ । ମର୍ହଟ୍ଟାମାନଙ୍କର ଢେଙ୍କାନାଳ ଉପରେ ଲୋଲୁପ ଦୃଷ୍ଟି ପଡ଼ିଥିଲା । ମୁର୍ଷିଦାବାଦର ନବାବ ରିଜାଖାଁଙ୍କର ଢେଙ୍କାନାଳ ଉପରେ କୌଣସି କର୍ତ୍ତୃତ୍ୱ ନଥିଲା ।  ସେ ପର୍ଯ୍ୟନ୍ତ ଢେଙ୍କାନାଳ ଆଫଗାନ ବା ମୋଗଲମାନଙ୍କ ଦ୍ୱାରା ଅଧିକୃତ ହୋଇନଥିଲା । ତେଣୁ ଢେଙ୍କାନାଳ ରାଜା ମୁର୍ଶିଦାବାଦ ଚିଠି ଲେଖିବା ପ୍ରଶ୍ନ ଉଠୁନାହିଁ। କୁହାଯାଇଛି ଯେ ରିଜା ଖାଁ ଚିଠିଟିକୁ ଇଂରେଜ ଅଧକ୍ଷଙ୍କ ନିକଟକୁ ପଠାଇଦେଲେ । ଏଥିରୁ ପ୍ରମାଣିତ ହେଉଛି, ମରହଟ୍ଟାମାନଙ୍କ ବିରୋଧୀ ବଙ୍ଗନବାବ ଓ ଇଂରେଜମାନଙ୍କର ଢେଙ୍କାନାଳ ରାଜାଙ୍କର ସହିତ ସଂପର୍କ ରହିଛି ବୋଲି ପ୍ରମାଣ କରି ଢେଙ୍କାନାଳ ବିରୁଦ୍ଧରେ ମରହଟ୍ଟାଶକ୍ତିକୁ ଉତ୍ତେଜିତ କରିବା ନିମିତ୍ତ ଏହି ଜାଲ ଚିଠିଟିର ସୃଷ୍ଟି । ଫଳରେ ଢେଙ୍କାନାଳ ପ୍ରତି ମରହଟ୍ଟାଙ୍କର ବିଦ୍ୱେଷ ବୃଦ୍ଧି ପାଇଲା ।

୧୯୭୯ ପରେ ଢେଙ୍କାନାଳ ଉପରେ ମରହଟ୍ଟାଙ୍କ ଅତ୍ୟାଚାର ବୃଦ୍ଧି ପାଇଲା। ଶମ୍ଭୁଜୀ ଗଣେଶ ସମଗ୍ର ଓଡ଼ିଶାର ଭୂବନ୍ଦୋବସ୍ତ କରାଇ ଚାଷୀମାନଙ୍କ ଉପରେ ନାନାଦିକର ବସାଇଲେ । କିନ୍ତୁ ଢେଙ୍କାନାଳ ରାଜା ମରହଟ୍ଟାଙ୍କୁ ସ୍ୱରାଜ୍ୟରେ ପୁରାଇଦେଲେ ନାହିଁ । ଏ ସଂପର୍କରେ ଶମ୍ଭୁଜୀ ଯେତେ ପତ୍ର ଓ ଧମକ ଦେଲେ ସୁଦ୍ଧାରାଜା ତ୍ରିଲୋଚନ ସିଂହ ସେ ସବୁକୁ ଖାତିର କଲେ ନାହିଁ । ଇତି ମଧରେ ଶମ୍ଭୁଜୀଙ୍କ ବିରୁଦ୍ଧରେ ବହୁଅଭିଯୋଗ ହେବାରୁ ୧୭୭୦ ସେପ୍ଟେମ୍ବର ମାସରେ ସେ କାର୍ଯ୍ୟରୁ ଅନ୍ତର ହେଲେ। ତାଙ୍କ ପରେ ରାଜାରାମ ପଣ୍ଡିତ ଓ ବାବୁଜୀ ନାୟକ ସୁବାଦାର ହେଲେ । ବାବୁଜୀ ନାୟକଙ୍କ ସମୟରେ ମରହଟ୍ଟା ସୈନ୍ୟମାନେ ବିଦ୍ରୋହକଲେ ଏବଂ ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିଲା । ଏହାପରେ ୧୭୭୮ ରେ ରାଜାରାମ ପଣ୍ଡିତ ଓଡ଼ିଶାର ସୁବାଦାର ହେଲେ। ୧୭୭୯ରେ ମରହଟ୍ଟାମାନେ ବଙ୍ଗ ଆକ୍ରମଣ ନିମିତ୍ତ ଚିମ୍‌ନାଜୀଙ୍କ ନେତୃତ୍ୱରେ ତିରିଶ ହଜାର ସୈନ୍ୟ କଟକ ବାଟରେ ବଙ୍ଗଦେଶକୁ ଯାତ୍ରା କଲେ । ୧୭୭୯

ମସିହାରେ ରାଜାରାମ ପଣ୍ଡିତ ଢେଙ୍କାନାଳ ରାଜା ତ୍ରିଲୋଚନଙ୍କୁ ଚୌଥ ଦେବାକୁ ବାଧ୍ୟ କଲେ । କିନ୍ତୁ ରାଜା ତ୍ରିଲୋଚନ ଚୌଥ ଦେବାକୁ ଓ ମରହଟ୍ଟାମାନଙ୍କ ଅଧୀନତା ସ୍ୱୀକାର କରିବାକୁ ଠୋକ୍‌ଠୋକ୍ ମନାକରିଦେଲେ । ପୁନର୍ବାର ରାଜାରାମ ବାର୍ଷିକ ୬୦୦୦୦ କାହାଣ କଉଡ଼ି ଦେବାକୁ ପତ୍ର ଲେଖିଲେ । ଢେଙ୍କାନାଳ ରାଜା ଏଥିରେ ଅସମ୍ମତ ହେବାରୁ ରାଜାରାମ ତାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣାକଲେ । ପ୍ରଥମେ ରାଜାରାମ ଭୁଲେଖାଁ ନାମକ ଜନୈକ ଦୁର୍ଦ୍ଦାନ୍ତ ମୁସଲମାନ ସେନାପତିଙ୍କୁ ଢେଙ୍କାନାଳ ପ୍ରେରଣ କଲେ । ଏହି ଭୁଲେଖାଁ ଶିବରାମ ଭଟ୍ଟଙ୍କ ଧରମପୁଅ ତଥା ମରହଟ୍ଟାଙ୍କ ବିଶ୍ୱସ୍ତ ସେନାପତି ଥିଲା ।

ଭୁଲେଖାଁ ଜେନାପୁର ବାଟେ ବ୍ରାହ୍ମଣୀନଦୀ କୂଳେ କୂଳେ ପିଙ୍ଗୁଆ, କରମୂଳ ଓ ବଣସିଂହ ବାଟରେ ଢେଙ୍କାନାଳକୁ ଆସିଥିଲା ତଥା ପଥମଧ୍ୟରେ ନାନାସ୍ଥାନରେ ଲୁଣ୍ଠନ ପୂର୍ବକ ଢେଙ୍କାନାଳଗଡ଼ରେ ଉପଗତ ହେଲା । ସେ ମଧ୍ୟ ଢେଙ୍କାନାଳ ନଗରରେ ଲୁଣ୍ଠନ, ଗୃହଦାହ ଓ ଉତ୍ପାତ ଆରମ୍ଭ କଲା । ରାଜା ତ୍ରିଲୋଚନ ତାଙ୍କୁ ରାଜ ପ୍ରାସାଦକୁ ନଡ଼ାକି ଶମ୍ଭୁଗୋପାଳମଠଠାରେ ସାକ୍ଷାତ୍ ପୂର୍ବକ ପେସ୍‌କସ୍ ଦେବାକୁ ଅଙ୍ଗୀକାର କଲେ ଏବଂ ନୃଶଂସ ଅତ୍ୟାଚାରରୁ ନିବୃତ୍ତ ରହିବାକୁ ଅନୁରୋଧ କଲେ । କିନ୍ତୁ ସେ ଦୁର୍ବୃତ୍ତ ଏହାକୁ କର୍ଣ୍ଣପାତ ନକରି ରାଜାଙ୍କୁ ଏକାକୀ ଦେଖି ବନ୍ଦୀକରି କଟକ ଅଭିମୁଖେ ଅଗ୍ରସର ହେଲା । ରାଜା ତ୍ରିଲୋଚନଙ୍କ ସମର ସଚିବ କାଶୀନାଥ ହରିଚନ୍ଦନ କେତେକ ପଦାତିକଙ୍କୁ ସାଥୀରେ ନେଇ ପିଙ୍ଗୁଆ ଗ୍ରାମଠାରେ ତାହାଙ୍କୁ ଭେଟିଲା ଏବଂ ଯଥେଷ୍ଟ ମୁଦ୍ରା ପ୍ରଦାନ ଦ୍ୱାରା ରାଜାଙ୍କୁ ମୁକ୍ତ କରାଇଲେ । ପ୍ରଚୁର ଅର୍ଥ ଲାଭ ପରେ ଧନଲୋଲୁପୀ ମରହଟ୍ଟା ସୈନିକ ବୃନ୍ଦ ଉତ୍‌ଫୁଲିତ ହୋଇ ଆମୋଦ ପ୍ରମୋଦରେ ପ୍ରବୃତ୍ତ ହେଲେ । ଏହି ଅବସରରେ ରାଜାଙ୍କ ସଙ୍କେତ ପାଇ ଜଣେ ପଦାତିକ ମରହଟ୍ଟା ସେନାପତିଙ୍କୁ ପ୍ରଣାମ କରିବା ଛଳରେ ନିକଟକୁ ଯାଇ ତୀକ୍ଷ୍ଣ କରବାଳ ଦ୍ୱାରା ଭୁଲେଖାଁଙ୍କ ଶିରଚ୍ଛେଦନ କଲେ । ମରହଟ୍ଟା ସୈନ୍ୟମାନେ ଏହା ଦେଖି ଇତସ୍ତତଃ ପଳାୟନ କରିବାକୁ ଲାଗିଲେ । ରାଜାରାମ କଟକଠାରେ ଏହି ଦୁଃସମ୍ବାଦ ଶ୍ରବଣ ପୂର୍ବକ ଅତିଶୟ କ୍ରୋଧାନ୍ୱିତ ହୋଇ ପ୍ରତିଶୋଧ ନେବା ନିମିତ୍ତ ସଙ୍କଳ୍ପ କଲେ । ଢେଙ୍କାନାଳ ରାଜାଙ୍କୁ ଉପଯୁକ୍ତ ଶାସ୍ତି ଦେବାନିମିତ୍ତ ସେ ରାଜସ୍ୱକର୍ମଚାରୀ ମଞ୍ଜୁଚୌଧୁରୀଙ୍କ ସହିତ ଅତିଶୀଘ୍ର ଢେଙ୍କାନାଳ ବିରୁଦ୍ଧରେ ଅଭିଯାନ ଚଳାଇଲେ । ରାଜାରାମଙ୍କ ନେତୃତ୍ୱରେ ମରହଟ୍ଟା ବାହିନୀ ଢେଙ୍କାନାଳଗଡ଼ର ଦକ୍ଷିଣ ଦିଗସ୍ଥ ୧୫କି.ମି ଦୂର

ମୋଟରୀ ଗ୍ରାମଠାରେ ଶିବିର ପକାଇଲେ । ଏହା ୧୭୭୯ ମେ ମାସର ଘଟଣା । ଢେଙ୍କାନାଳରାଜା ତ୍ରିଲୋଚନ ଦୂତ ହସ୍ତରେ ସମ୍ବାଦ ଦେଲେ ଯେ ମରହଟ୍ଟାମାନେ ଅର୍ଥ ନେଇ ଫେରିଯାଆନ୍ତୁ । କିନ୍ତୁ ରାଜାରାମ ତାହା କର୍ଣ୍ଣପାତ ନକରି ଆକ୍ରମଣ ନିମିତ୍ତ ଦୁର୍ଗମ ଅରଣ୍ୟ ମଧ୍ୟରେ ଅଗ୍ରସର ହେଲେ । ରାଜା ତ୍ରିଲୋଚନ ତାଙ୍କର ଦୂରଭିସନ୍ଧି ଜାଣି ଆପଣା ସୈନ୍ୟମାନଙ୍କ ବ୍ୟଙ୍ଗୋକ୍ତିରେ କହିଲେ "ରାଜାରାମ ଆମ୍ଭର ହାକିମ ତୁମ୍ଭେମାନେ ତୀରଗୁଳିରେ ତାଙ୍କୁ ଉତ୍ତମ ରୂପେ ସଂଙ୍ଖୋଳି ଆସ ।" ଏ ସଂପର୍କରେ କବି ବ୍ରଜନାଥ ବଡ଼ଜେନା ଲେଖିଛନ୍ତି –

"ବରଗୀ ଓଡ଼ିଶା କଲେ ଅମଳ ସରବରା ହେଉଥିଲେ ଭୂପାଳ
ବିହିଯୋଗେ ହେଲା ଅନବନାଉ ରାଜାରାମ ଘୋଷାବହିଲେ ତହୁଁ ସେ
ଫଉଜ କଷିଲେ କୋପେ ଯେ,
ମଞ୍ଜୁଚଉଧୁରୀ ସଙ୍ଗତେ ବିଚାରି ବାହାର ହୋଇଲେ ଆପେ ଯେ ।
ମୋଟରି ନିକଟେ ପଡ଼ିଲେ ବଳ ଓକିଲ ପେଷିଲେ ଅବନୀ ପାଳ
କାହିଁ ପାଇଁ ପୃଥ୍ୱୀ ନାଶିବ ମୋର ପଇସାନେଇ ଫେରାଅ ନସ୍କରସେ
ନତୋନି ତା ରାଜା ରାମେ ଯେ
ଦଗା ଦେବା ମନେ ଗୁପତେ ଅରଣ୍ୟେ ବାହାରିଲେ ଅତି ତମେ ଯେ ।
ନୃପତି ଜାଣି ସେ କୁଟ ବିଚାର ଆଜ୍ଞାଦେଲେ ଦେଖି ଯାଅ ଆମ୍ଭର
ରାଜାରାମ ପଣ୍ଡିତଙ୍କୁ ବାଟରେ ସଙ୍ଖୋଳି ଆସ ମର୍ଯ୍ୟାଦା ବେଭାରେ ସେ
ହାକିମ ଅଟନ୍ତି ସେହୁ ଯେ
ତୀର ଗୁଳି ଦେଇ ଭେଟିବ ତାହାଙ୍କୁ ପାଶୋରିବ ନାହିଁ ଆଉ ଯେ ।
ଆଜ୍ଞା ପାଇ କିଛି ଫଉଜଗଲେ ରାଜାରାମଙ୍କୁ ଦରଶନ କଲେ
ଦଇବେ ସେତ ପଣ୍ଡିତ ଗୋସାଇଁ ବହୁତ ମତେ ସେବାକଲେ ଯାଇ
କୋଶେ ଅନୁସରି ଗଲେ ଯେ
କେତେ ଜମାଦାର ସେବାରେ ତାଙ୍କର ଠାବେ ଠାବେ ବସାକଲେ ଯେ ।
ଅତିଦୟାଳୁ ପଣ୍ଡିତ ସାହେବେ ଚଉଧୁରୀ ବଡ଼ଲୋକ ଦଇବେ
ରାଜାଙ୍କ ଏ ଅନୁସରଣ ଘେନି ଅତି ପରସନ ହୋଇଲେ ବେନି ସେ
ଇନାମ ଦେଲେ ବହୁତ ଯେ
ଗାଡ଼ି ଘୋଡ଼ା ଓଟ ପାଲିଙ୍କି କନାଟ ତମ୍ବୁଶାଳ ବନାଉତ ଯେ ।

ଖରଡ଼ ସତରଞ୍ଜ ଛିଟ ତୁଳି ରେଜାଇ ଗାଲିଚା ଶେଯ ମୁଚୁଳି
ଗଡ୍ଡୁଆ ଗଗରା ବାସନମାନ କେତେଯାଚି ଦେଲେ ହୋଇ ପ୍ରସନ୍ନ ଯେ
ଗ୍ରାହକ ଅଟନ୍ତି ସେତ ଯେ
ଗୁଣ ଚିହ୍ନି ଅତି ତରଳିଯାଇ ସେ ବୋଇଲେ ନିଅ ସମସ୍ତ ଯେ ।
ମାତଙ୍ଗଧଣ୍ଡା କମାଣ ନିଶାଣ ଢାଲତରୁଆର କଟାରୀ ପୁଣ
ସବୁଦେଇ ତେବେ ସନ୍ତୋଷ ନୋହି ଜୀବନ ଯାଚି ଦେଲେ କେହି କେହି ସେ
ତହିଁ କଉଁ କଉଁ ଜନ ଯେ
ଆନନ୍ଦେ ଦିଗାମ୍ବର ବେଶେ ଚଳିଲେ ପିନ୍ଧବାସ କରି ଦାନ ଯେ
ପଣ୍ଡିତ ସାହେବ ହିଁ ସବୁ ଦେଇ କହିଲେ ଅନୁରୂପ ହେଲା ନାହିଁ
ପ୍ରାଣ ହିଁ ଦେଉଥିଲେ ପ୍ରୀତି ବଶେ ରାଜାଙ୍କ ଲୋକେକହିଲେ ସନ୍ତୋଷେ ରେ
ଏଥିର ବିଜୟେ କର ଯେ
ଆଉ ଥରେ ଯେବେ ଦହିମାଛ ହେବ ଏହା ଘେନିବୁ ନିକର ଯେ ।
ଚଉଧୁରୀ ବାବା ସନ୍ତୋଷ ହୋଇ ଏହି ରୂପରେ ସବୁଗଲେ ଦେଇ
ଯହୁଁ ମୂଳକ ହୋଇଗଲେ ପାରି ସଂସାର ଯାକରେ ପଡ଼ିଲା ହୁରି ଯେ
ଢେଙ୍କାନାଳ ନରପତି ଯେ
ଯାଉଁ ଯାଉଁ ବାଟେ ଲୁଟିଲେ କପଟେ କଟକ ସାରା ସଂପତ୍ତି ଯେ ।''

ଢେଙ୍କାନାଳ ରାଜା ତ୍ରିଲୋଚନଙ୍କ ଆଦେଶ ପାଇ ସୈନ୍ୟମାନେ ମୋଟରି ଅଭିମୁଖେ ଯାତ୍ରାକଲେ । ସେଠାରେ ଉଭୟ ପକ୍ଷ ମଧ୍ୟରେ ଖଣ୍ଡଯୁଦ୍ଧ ହେଲା । ଢେଙ୍କାନାଳ ଅନେକ ମରହଟ୍ଟା ସୈନ୍ୟଙ୍କୁ ନିପାତ କରିବାରୁ ମରହଟ୍ଟାବାହିନୀ ପଛଘୁଞ୍ଚା ଦେଲେ। ପ୍ରାୟ ଦୁଇ କିଲୋମିଟର ପର୍ଯ୍ୟନ୍ତ ଢେଙ୍କାନାଳ ବାହିନୀ ମରହଟ୍ଟାଙ୍କ ପଶ୍ଚାତ୍‌ଧାବନ କରି ନାନାଦି ଦ୍ରବ୍ୟ ଓ ଯୁଦ୍ଧ ସାମଗ୍ରୀ ଲୁଣ୍ଠନ କରି ଆଣିଲେ । ରାଜାରାମ ପଣ୍ଡିତଙ୍କ ସହିତ ମଞ୍ଜୁଚୌଧୁରୀ ଜୀବନ ବଞ୍ଚାଇ କଟକ ପଳାଇଲେ । ସର୍ବତ୍ର ପ୍ରଚାରିତ ହେଲା ଯେ ଢେଙ୍କାନାଳ ନରପତି ପଥମଧ୍ୟରେ ରାଜାରାମଙ୍କ ସକଳ ସଂପତ୍ତି କପଟରେ ଲୁଟି ନେଇଛନ୍ତି । ଏ ସମ୍ବାଦ ଶ୍ରବଣ ପୂର୍ବକ ରାଜା ତ୍ରିଲୋଚନ ସକଳ ବିଜୟଲବ୍‌ଧ ଧନ ତାଙ୍କ ନିକଟକୁ ଫେରାଇ ଦେଇଥିଲେ । କିନ୍ତୁ ରାଜାରାମ ସେଥିରେ ସନ୍ତୁଷ୍ଟ ନହୋଇ ଢେଙ୍କାନାଳ ନରପତିଙ୍କୁ ସଂପୂର୍ଣ୍ଣ ଦମନ କରିବା ନିମିତ୍ତ ନାଗପୁରପତି ଶିବାଜୀ (୨ୟ)

ଭୋଁସଲାଙ୍କ ନିକଟରେ ଫେରାଦ ହେଲେ ତଥା ଢେଙ୍କାନାଳ ରାଜାଙ୍କୁ ଦମନ ନକଲେ ଓଡ଼ିଶାକୁ ଶାସନ କରିବା ଅସମ୍ଭବ ବୋଲି ଜଣାଇଲେ ।

ରାଜାରାମଙ୍କ ଦ୍ୱାରା ପ୍ରଭାବିତ ହେଠାଇ ନାଗପୁରପତି ଢେଙ୍କାନାଳ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ୧୭୭୯ ଅକ୍ଟୋବର ମାସରେ ଚିମ୍‌ନାଦୀଙ୍କ ନେତୃତ୍ୱରେ ଯେଉଁ ମରହଟ୍ଟାବାହିନୀ ବଙ୍ଗ ଆକ୍ରମଣ ନିମିତ୍ତ ଆସିଥିଲା ସେହି ବାହିନୀ ୧୭୮୦ ମେ ମାସରେ କଟକରେ ଆସି ପହଞ୍ଚିଲା । ଚିମ୍‌ନାଜୀ ସେହି ମରହଟ୍ଟାବାହିନୀକୁ ଧରି ଢେଙ୍କାନାଳ ଯାତ୍ରା କଲେ । ଇତି ମଧ୍ୟରେ ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀର ଗଭର୍ଣ୍ଣର ଓ୍ୱାରେନ୍ ହେଷ୍ଟିଙ୍ଗସ୍ ଏଣ୍ଡରସନ୍ ନାମକ ଜନୈକ ଦୂତଙ୍କୁ ଚିମ୍‌ନାଜୀଙ୍କ ସହିତ କଥାବାର୍ତ୍ତା କରିବା ନିମିତ୍ତ କଟକ ପଠାଇଲେ । ୧୭୮୧ ଜାନୁଆରୀ ମାସରେ ଶେଷ ଭାଗରେ ଏଣ୍ଡରସନ୍ କଟକ ଆସିଥିଲେ ହେଁ ବାଲେଶ୍ୱର ଠାରେ ପହଞ୍ଚି ଶୁଣିଲେ ଯେ ଚିମ୍‌ନାଜୀ, ରାଜାରାମ ଓ ମଞ୍ଜୁଚୌଧୁରୀ ସର୍ଭିଏ ସୈନ୍ୟ ସହ ଢେଙ୍କାନାଳ ଯାତ୍ରା କରିଛନ୍ତି । କେତେକ ମତଦିଅନ୍ତି ଚିମ୍‌ନାଜୀ ଇଂରେଜମାନଙ୍କ ସହିତ ଯୁଦ୍ଧ କରିବାକୁ ବଙ୍ଗଯାତ୍ରା କରୁଥିବା ସମୟରେ ରାଜାରାମ ଓ ମଞ୍ଜୁଚୌଧୁରୀ ତାଙ୍କୁ ବାଟରେ ଭେଟି ଢେଙ୍କାନାଳ ସହିତ ଯୁଦ୍ଧ କରିବାକୁ ପ୍ରବର୍ତ୍ତାଇ କଟକ ଆଣିଥିଲେ । ପଥ ମଧ୍ୟରେ ଖାଦ୍ୟ ଓ ଜଳାଭାବ ତଥା ମହାମାରୀ ଯୋଗୁଁ ବହୁ ମରହଟ୍ଟା ସୈନ୍ୟ ମରିଗଲେ । କଟକରେ କିଛିକାଳ ବିଶ୍ରାମପରେ ୧୭୮୧ ଅକ୍ଟୋବର ମାସରେ ତିରିଶି ହଜାର ସୈନ୍ୟସହ ଚିମ୍‌ନାଜୀ ଢେଙ୍କାନାଳ ଯୁଦ୍ଧ ଯାତ୍ରା କରିଥିଲେ । କବି ବଜ୍ରନାଥ ଥିଲେ ଏହି ଯୁଦ୍ଧର ପ୍ରତ୍ୟକ୍ଷଦର୍ଶୀ । ତାଙ୍କ ମତରେ ମରହଟ୍ଟା ସୈନ୍ୟଙ୍କ ସଂଖ୍ୟା ଥିଲା ଚାଳିଶ ହଜାର । ମରହଟ୍ଟା ବାହିନୀ ସମୁଦ୍ର ଲହରୀ ସଦୃଶ ମାଡ଼ିଆସି ଢେଙ୍କାନାଳ ଗଡ଼ର ପଶ୍ଚିମ ପାର୍ଶ୍ୱସ୍ଥ ଷାଠିଏ ବାଟିଆ ନାମକ ପ୍ରାନ୍ତରରେ ଛାଉଣୀ ପକାଇଲେ । ବର୍ତ୍ତମାନର ଗୋପବନ୍ଧୁ ଟାଉନ୍ ହଲ୍ ପଛପାଖ ମଡ଼ାଦେଉଳ ବା ରାଜଶ୍ମଶାନ ନିକଟରୁ ଅଳସୁଆ ହାଟ ପର୍ଯ୍ୟନ୍ତ ସୁବିସ୍ତୃତ ଅଞ୍ଚଳ ହିଁ ଷାଠିଏ ବାଟିଆ । ମରହଟ୍ଟାମାନେ ଘଞ୍ଚବାଉଁଶବଣ ମଧ୍ୟରେ ଢେଙ୍କାନାଳଗଡ଼କୁ ପ୍ରବେଶ କରିବାକୁ ବାଟ ପାଇଲେ ନାହିଁ । ଗଡ଼ଉପରେ ଚନ୍ଦ୍ରଶାଳା ପୁରରୁ ବୀର ତ୍ରିଲୋଚନ ଏହି ଅକଳିତ ମରହଟ୍ଟା ସୈନ୍ୟ ଦେଖି ପ୍ରସ୍ତୁତ ହେବା ସହିତ ସ୍ୱସୈନ୍ୟଙ୍କୁ ପ୍ରୋତ୍ସାହିତ କରିବାକୁ ଲାଗିଲେ । ମରହଟ୍ଟା ସୈନ୍ୟମାନେ ଯେତେ ଚେଷ୍ଟାକଲେ ସୁଦ୍ଧା ଦୁର୍ଗ ପ୍ରବେଶ ନିମିତ୍ତ ପଥ

ପାଇଲେ ନାହିଁ । ଦୁଃଖର କଥା ଚୈତନ ଦାସ ନାମକ ଜଣେ ପଣ୍ଡିମାମଲ୍ଲ ବିଶ୍ୱାସଘାତକ ସାଜି ଅର୍ଥଲୋଭରେ ମରହଟ୍ଟା ଦଳରେ ମିଶିଗଲା । ସେ ମରହଟ୍ଟାଦଳର କୃଷ୍ଣରାଜଙ୍କୁ ବାଉଁଶ କଟାଇ ଦୁର୍ଗମ ଅରା (ବାଉଁଶବଣ) ଭିତରେ ବାଟ ଦେଖାଇ ଦେଲା । ମରହଟ୍ଟା ଅଶ୍ୱାରୋହୀ ସୈନ୍ୟମାନେ ସେହି ପଥରେ ପ୍ରବେଶ କଲେ । ନିଜେ ଚିମ୍ନାଜୀ ମଡ଼ାଦେଉଳଠାରେ ଅସଂଖ୍ୟ ସୈନ୍ୟଙ୍କୁ ଧରି ଯୁଦ୍ଧ ଆରମ୍ଭ କଲେ । ରଣବାଦ୍ୟ ଓ କମାଣନାଦରେ ଷାଠିଏ ବାଟିଆ ଯୁଦ୍ଧ ଭୂମି ପ୍ରକମ୍ପିତ ହେଲା । କବି ବ୍ରଜନାଥ ଭାଷାରେ –

''ଘେନି କିଷ୍ଟମ ରାଜକୁ ସଙ୍ଗରେ, ଚଇତନ ଦାସ ଚଳେ ଅରାରେ ।
ଅରାକଟାଇ ସେ ବାଟ ଛଡ଼ାଇ, ତେଲେଙ୍ଗାକୁ ଘେନି ଗଲାକଢ଼ାଇ ।
ଏଣେ ସାରା ଲସକର ତିଆର, ଆପେ ଚେମଣା ବାବୁ ଏ ବାହାର ।
ମଡ଼ା ଦେଉଳ ଆଡ଼ରେ ଚଢ଼ାଉ, ଶୁଭେ ନାଗରା ଧି ଧି ଧାଉ ଧାଉ ।''

ମରହଟ୍ଟା ସୈନ୍ୟ ମାଡ଼ିଆସିବାର ଦେଖି ରାଜା ତ୍ରିଲୋଚନ ସ୍ୱସୈନ୍ୟ ସହ ରଣଭୂମିରେ ଅବତୀର୍ଣ୍ଣ ହେଲେ। ବୀର ତ୍ରିଲୋଚନଙ୍କ ବୀରତ୍ୱ ଓ ଉତ୍ସାହ ବାଣୀରେ ଦ୍ୱିଗୁଣ ଉତ୍ସାହିତ ହୋଇ ଢେଙ୍କାନାଳ ସୈନ୍ୟ କ୍ଷଣକ ମଧ୍ୟରେ ମରହଟ୍ଟା ସୈନ୍ୟଙ୍କୁ ପଛକୁ ହଟାଇଦେଲେ । ଢେଙ୍କାନାଳ ସୈନ୍ୟ ଅନେକ ମରହଟ୍ଟା ସୈନ୍ୟଙ୍କୁ ନିହତ ଓ ପରାସ୍ତ କଲେ । କେତେକ ମରହଟ୍ଟା ସୈନ୍ୟ ଆହତ ହୋଇ ଭୂମିରେ ଲୋଟି ରାଜାରାମ, ମଞ୍ଜୁ ଓ ଭବାନୀ ପଣ୍ଡିତଙ୍କୁ ନିନ୍ଦା କରୁଥାନ୍ତି । ଦ୍ୱିତୀୟ ଦିନ ଯୁଦ୍ଧରେ ରାଜାତ୍ରିଲୋଚନ ତୋପ ଲଗାଇ ଥରକେ ୨୦/୩୦ ସୈନିକ, ଘୋଡ଼ାଓ ହାତୀ ଧ୍ୱଂସ କରିପକାଇଲେ । ଏପରି ହେବା ଫଳରେ ଦୁର୍ଗ ସମ୍ମୁଖକୁ ଆସିଥିବା ମରହଟ୍ଟା ସୈନ୍ୟମାନେ ପଛଘୁଞ୍ଚା ଦେଲେ । ଅବଶ୍ୟ ମରହଟ୍ଟାଙ୍କ କମାଣଗୋଳା ଦ୍ୱାରା ଦୁର୍ଗ ପ୍ରାଚୀରର କିଛି ଅଂଶ ଓ ଦ୍ୱାର କବାଟ କ୍ଷତିଗ୍ରସ୍ତ ହୋଇଥିଲା । ତୃତୀୟଦିନ ପ୍ରହରେକାଳ ଘୋର ଯୁଦ୍ଧରେ ମରହଟ୍ଟାମାନେ ପରାଭବ ମାନିଲେ । ସେନାପତି ଚିମନାଜୀ ବହୁ ସୈନ୍ୟ ହରାଇ ସମସ୍ତ ଆଶା ବିସର୍ଜନ କରି ଚିନ୍ତିତ ହୋଇପଡ଼ିଲେ । ତତ୍‌ପରଦିନ ଲଜ୍ଜାରେ ମ୍ରିୟମାଣ ହୋଇ ସର୍ଦ୍ଦାର ଗଣଙ୍କୁ ଯେନତେନ ପ୍ରକାରେ ଦୁର୍ଗ ଦଖଲ ନିମିତ୍ତ ନିର୍ଦ୍ଦେଶ ଦେଲେ । ଫଳ କିଛି ହେଲା ନାହିଁ । ଏହିପରି ଭାବରେ ଅଠରଦିନ କାଳ ଘୋର ଯୁଦ୍ଧ ଲାଗିଲେ ହେଁ ମରହଟ୍ଟାମାନେ ବିଜୟ ଲାଭ କରିପାରିଲେ ନାହିଁ । ଢେଙ୍କାନାଳ ସୈନ୍ୟଙ୍କ

ସମରସଜ୍ଜା, ଯୁଦ୍ଧକୌଶଳ, ଲକ୍ଷ୍ୟଦେବୀ କମାଣ ପ୍ରୟୋଗ ନିକଟରେ ମରହଟ୍ଟାଙ୍କ ଯୁଦ୍ଧକୌଶଳ ପଣ୍ଡ ହୋଇଗଲା । ଚିମନାଜୀଙ୍କ ପ୍ରଧାନ ମନ୍ତ୍ରଣାଦାତା ଭବାନୀକାଳିଆ ପଣ୍ଡିତ ଯୁଦ୍ଧରେ ଜୟଲାଭର ଆଶାନଦେଖି ସନ୍ଧି ପ୍ରସ୍ତାବ ଆଗତ କଲେ । ତଦନୁଯାୟୀ ଚିମ୍‌ନାଜୀ ଢେଙ୍କାନାଳ ରାଜାଙ୍କ ନିକଟକୁ ଦୂତହସ୍ତରେ ସନ୍ଧି ପ୍ରସ୍ତାବ ପଠାଇଲେ । ରାଜା ତ୍ରିଲୋଚନ ଦୂତମୁଖରୁ ଏପ୍ରସ୍ତାବ ଶୁଣି ପ୍ରଥମେ ଅସମ୍ମତ ହେଲେ । ଶେଷରେ ନରେନ୍ଦ୍ର ସାହେବ (ଜ୍ୟେଷ୍ଠ ରାଜକୁମାର) ସ୍ୱପିତାଙ୍କୁ ବୁଝାସୁଝା କରିବା ପରେ ରାଜା ସନ୍ଧି ନିମିତ୍ତ ରାଜି ହେଲେ । ଉଭୟ ପକ୍ଷ ମଧ୍ୟରେ ସନ୍ଧିହୋଇ ଚୁକ୍ତି ରହିଲାଯେ ଢେଙ୍କାନାଳ ରାଜା ବାର୍ଷିକ ୩୦ ହଜାର କାହାଣ କଉଡ଼ି ପେସକସ୍ ଦେବେ । ବୀର ତ୍ରିଲୋଚନଙ୍କ ବୀରତ୍ୱରେ ମୁଗ୍ଧହୋଇ ମରହଟ୍ଟା ସେନାପତି ଚିମ୍‌ନାଜୀ ତାଙ୍କୁ ‘‘ମହୀନ୍ଦ୍ରବାହାଦୂର’’ ଉପାଧି ପ୍ରଦାନ କଲେ । ଖୋର୍ଦ୍ଧାରାଜା ଗଜପତି ବୀରକିଶୋରଦେବ ମଧ୍ୟ ସେହି ଉପାଧିକୁ ଅନୁମୋଦନ ପୂର୍ବକ ସନନ୍ଦ ପ୍ରଦାନ କଲେ ।

‘‘ଭାଇ ରାୟସିଂହ ଭ୍ରମରବର ରାୟ ଶ୍ରୀହସ୍ତ ନବରବକାର ମହାଶିରମ୍ ଅସ୍ତସ୍ୟାହି ନମୁଦନ୍ । ଇବେନ୍ ପିଂର ଖିତାବ ରାଜା ମହେନ୍ଦ୍ର ବାହାଦୂର ଅଓରକେଲା ଦହଲା ଦୋଛତ୍ରୀ ଲରାମୟ ଅମ୍ବାରି ହୁକୁମ ଜାଜାମୁଦ ଅଓର ଫିସର ଦୟାନିଧି ସିଂହରାୟ ଭ୍ରମରବର ରାୟଖେତାବ ଦପାମୁଦ । ଲାଜିମକଇଁ ସଲତନତ ଦରପେକ୍ଷ ମହୁଦା ମୁତାବକ୍ ମୁଆବଳ ବକାର ମୁସ୍ତଫିଜ୍ ବାସନ ଦରିମବାବ୍ ତାକିଦ ଦାନଦା ତହାଗିର ବତାରିଖ ୧ମାହେ ଅଘନ ୫୮ ଅଙ୍କ’’ ‘‘ସନନ୍ଦର ଓଡ଼ିଆ ଅନୁବାଦ’’ ଭାଇ ରାୟସିଂହ ଭ୍ରମରବରରାୟଙ୍କୁ ଶ୍ରୀହସ୍ତ ପତ୍ର । ତୁମ୍ଭେ ମହାଶ୍ରମ କାର୍ଯ୍ୟରେ ସରେବ ହେଲା । ସକାଶେ ମହାରାଜା ମହୀନ୍ଦ୍ର ବାହାଦୂର ପଦ ଓ କଳାଧଳା ଦୁଇଛତ୍ରି ହାତୀ ଉପରେ ଅମାରି ଆଜ୍ଞା ହୋଇଲା । ତୁମ୍ଭପୁତ୍ର ଦୟାନିଧି ସିଂହଙ୍କୁ ରାୟସିଂହ ଭ୍ରମରବର ରାୟପଦ ଆଜ୍ଞା ହୋଇଲା । ଏଦିନ ଆଦ୍ୟରୁ ଏ ପଦ ସାଲତନ କରିବ । ତୁମ ପରେ ପୁରାସୁଲତାନ ତୁମ୍ଭ ପୁଅ କରିବେ । ମାହେ ବିଛା ୧ ଦିନ ୫୮ଅଙ୍କ ଶ୍ରୀହସ୍ତ ସାକ୍ଷର ।

ମରହଟ୍ଟାମାନେ ଢେଙ୍କାନାଳ ପରିତ୍ୟାଗ କରି ଯିବାପରେ ଯେଉଁ ଭୂମ୍ୟାଧିକାରୀବୃନ୍ଦ ରାଜା ତ୍ରିଲୋଚନଙ୍କ ବିରୁଦ୍ଧାଚରଣ କରୁଥିଲେ ସେମାନେ ବୀରତ୍ୱର ପ୍ରଶଂସା କରି ଉପଢ଼ୌକନ ମାନ ପଠାଇଲେ । କିନ୍ତୁ କେନ୍ଦୁଝର ରାଜା

ରଙ୍ଗାଗଡ଼ ପର୍ବତ ସନ୍ନିକଟ କେତେକ ଗ୍ରାମ ଲୁଣ୍ଠନ କରିବା ନିମିତ୍ତ ସୈନ୍ୟପ୍ରେରଣ କରିଥିଲେ । ସମ୍ବାଦ ଶ୍ରବଣ କରି ରାଜା ତ୍ରିଲୋଚନ ଆପଣା ବେବର୍ତ୍ତାଙ୍କ ଅଧୀନରେ କେତେକ ଅଶ୍ୱାରୋହୀ ଓ ପଦାତିଙ୍କୁ ପଠାଇଲେ । ଗଡ଼ପଳାଶୁଣୀ ନିକଟବର୍ତ୍ତୀ ଟମ୍ପୋଇନାମକ ସ୍ଥାନରେ ଉଭୟପକ୍ଷ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ କେନ୍ଦୁଝରର ବହୁସୈନ୍ୟ ନିହତ ଓ ଯୁଦ୍ଧୋପକରଣ ଲୁଣ୍ଠନ ହେବା ଶୁଣି କେନ୍ଦୁଝର ଅଧିପତି ନିଜେ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ହଠାତ୍ ଢେଙ୍କାନାଳର ବେବର୍ତ୍ତା ପଟ୍ଟନାୟକ ବିପକ୍ଷ ଦଳରେ ପଶି ଜଣେ ପ୍ରଧାନ ସର୍ଦ୍ଦାରଙ୍କୁ ନିହତ କଲେ । ଏହା ଦେଖି କେନ୍ଦୁଝର ପାଇକମାନେ ଇତସ୍ତତ ପଳାୟନ କଲେ । ଢେଙ୍କାନାଳ ସୈନ୍ୟଗଣ ଧଉରା, ଅସନା ଓ କରଡ଼ ପ୍ରଭୃତି ଗଛର ଫୋପଡ଼ରେ ଦୂରରୁ ଆକ୍ରମଣ କଲେ । ଏପରି ଭାବରେ ଜୟରଡ଼ି କରି ଢେଙ୍କାନାଳ ସୈନ୍ୟ ଯେଉଁସ୍ଥାନ ପର୍ଯ୍ୟନ୍ତ କେନ୍ଦୁଝର ସୈନ୍ୟଙ୍କ ପଶ୍ଚାତ୍‌ଧାବନ କରି ଫୋପଡ଼ ମାରିଥିଲେ ସେହି ସ୍ଥାନ ଜୟରଡ଼ ବା ଜରଡ଼ା ନାମରେ ପରିଚିହ୍ନିତ । ଯେଉଁ ସ୍ଥାନରୁ ଫୋପଡ଼ ସଂଗ୍ରହ କରାଯାଇଥିଲା ସେହି ସ୍ଥାନ ଧଉରାବଣି, କରଡ଼ାଖମଣ ଏବଂ ଅସନବାହାଲୀ ନାମରେ ଅଭିହିତ । ଏହି ଯୁଦ୍ଧରେ କେନ୍ଦୁଝର ରାଜା ସ୍ୱରାଜ୍ୟର କେତେକ ଅଂଶ ହରାଇଲେ । ସେହି ଅଂଶ ପୂର୍ବଦିଗରେ ସୌରିକବିଷ ଓ ପଶ୍ଚିମରେ ପଳାଶୁଣୀ ବିଷ ନାମରେ ଢେଙ୍କାନାଳ ରାଜ୍ୟ ଭୁକ୍ତ ହେଲା ।

କେନ୍ଦୁଝର ଯୁଦ୍ଧ ପରେ ଆଠଗଡ଼ ସହିତ ଢେଙ୍କାନାଳର ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧ ଲବ୍ଧ ଭୂଖଣ୍ଡ ଲକ୍ଷ୍ମୀପ୍ରସାଦ ବିଷ ନାମରେ ଢେଙ୍କାନାଳ ରାଜ୍ୟ ଭୁକ୍ତ ହେଲା । ସେହି ଭୂଖଣ୍ଡରେ ଥିବା ତାଳବରକୋଟ ଦୁର୍ଗ ଓ ଦେଓ ପଡ଼ାର କୁମ୍ଭେଶ୍ୱର ମହାଦେବ ମନ୍ଦିର ଢେଙ୍କାନାଳ ଅନ୍ତର୍ଭୁକ୍ତ ହେଲା । ତଦନୁରୂପ ତିଗିରିଆରାଜା ଗୋପୀନାଥ ଚମୂପତିସିଂହ ଢେଙ୍କାନାଳ ସହିତ ଯୁଦ୍ଧ କରିଥିଲେ । ପ୍ରଥମରେ ଢେଙ୍କାନାଳସୈନ୍ୟ ପଛଘୁଞ୍ଚା ଦେଇ ଦ୍ୱିତୀୟଥର ଜୟଲାଭ ପୂର୍ବକ ତିଗିରିଆରେ କେତେକ ଅଂଶ ଦଖଲ କରିନେଲେ । ସେହି ବିଜିତ ଭୂଖଣ୍ଡ ଢେଙ୍କାନାଳ ଛଦେଶବିଷ ଅନ୍ତର୍ଭୁକ୍ତ ହେଲା। ରାଜା ତ୍ରିଲୋଚନ ସେଠାରେ "ଚନ୍ଦ୍ରଶେଖର ପ୍ରସାଦ" ନାମକ ଦୁର୍ଗ ବସାଇ ରାଜ୍ୟ ସୁରକ୍ଷା ନିମିତ୍ତ ସୁଶିକ୍ଷିତ ସୈନ୍ୟ ମୁତୟନ କଲେ । ସେହିପରି ପାଲଲହଡ଼ା ରାଜା ଢେଙ୍କାନାଳର ବିରୋଧ

କରିବାରୁ ଢେଙ୍କାନାଳ ସୈନ୍ୟ ଯୁଦ୍ଧ ନିମିତ୍ତ ଅଗ୍ରସର ହେଲେ । ପଳାଶୁଣି ବିଷର ଯେଉଁ ସ୍ଥାନରୁ ବିନାଯୁଦ୍ଧରେ ଯଶସ୍ୱୀ ହୋଇ ଢେଙ୍କାନାଳ ସେନା ପ୍ରତ୍ୟାବୃତ୍ତ ହେଲେ ତାହା ଯଶୀପୁର ନାମରେ ଖ୍ୟାତ ।

ଯୁଦ୍ଧପରେ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ହଦଗଡ଼ ଦୁର୍ଗରେ ନିବାସ କରୁଥିଲେ । ଏହି ସମୟରେ କବି ବ୍ରଜନାଥ ବଡ଼ଜେନା ଯୁଦ୍ଧର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଆଧାରିତ କାବ୍ୟ ତାଙ୍କୁ ଉପହାର ଦେଲେ । ବୀର ଓଡ଼ିଆ ଜାତିର ଏକ ଐତିହାସିକ ସମର କାବ୍ୟଟିରେ ତରଙ୍ଗାୟିତ ହୋଇଥିବାରୁ ସେ ଏହାର ନାମ ''ସମରତରଙ୍ଗ'' ରଖିଥିଲେ । ରାଜାତ୍ରିଲୋଚନ ପ୍ରୀତ ହୋଇ କବିଙ୍କୁ ନୂଆଗାଁ ନାମକ ଗ୍ରାମ ପ୍ରଦାନ କରିଥିଲେ ।

ଏ ଅନ୍ତେ ହେ ସୁଜନେ ନୃପତି ଚନ୍ଦ୍ର
ତକ୍ଷଣେ କୃପାକଲେ ହୋଇ ପ୍ରମୋଦ ଯେ,
ଅପଙ୍ଗା ବିଷେ ବ୍ରାହ୍ମୀ ନଦୀ ତଟରେ
ଗ୍ରାମ ଗୋଟିଏ ନୂଆ ଗାଆଁ ନାମରେ ଯେ ।
ପାନପିକରେ ଏହି ଗ୍ରାମକୁ ଦେଇ
ପାଞ୍ଚଶ କାହାଣ ନଗଦ ଖଞ୍ଜାଇ ଯେ,
ହୁକୁମ ଦେଲେ ବଡ଼ଜେନାଏ ଶୁଣ
ଉଚ୍ଛିଷ୍ଟ ପଦାର୍ଥତ ନୋହେ ଗ୍ରହଣ ଯେ ।
ବଂଶାନୁକ୍ରମେ ଗ୍ରାମ ଭୋଗ କରିବ
ତୁମ୍ଭ ଥିବା ଯାକ ଏ ବର୍ତ୍ତନ ନେବ ଯେ
ଏଥିରେ ଯେବେ କାର୍ଯ୍ୟ ହେବ ଅଚଳ
ଜଣାଣ କରେ ଦଣ୍ଡ ହେବ ତତ୍‌କାଳ ଯେ ।

''ସମର ତରଙ୍ଗ'' ବ୍ରଜାନାଥଙ୍କର ଏକ ଅନବଦ୍ୟ କୃତୀ । ଏଥିରେ ତତ୍‌କାଳୀନ ଉତ୍କଳୀୟ ସାମରିକ ସଂସ୍କୃତିର ସ୍ୱଷ୍ଟ ଚିତ୍ର ଅଙ୍କିତ । ସେହି ସମୟରେ ବ୍ୟବହୃତ ଯୁଦ୍ଧାସ୍ତ୍ର, ଯୁଦ୍ଧକୌଶଳ ଓ ଯୁଦ୍ଧ ସଜ୍ଜା ଏଥିରେ ଉଲ୍ଲିଖିତ । ବ୍ରଜନାଥଙ୍କ ବ୍ୟତୀତ ''କବିଚଡ଼କ'' ଉପାଧିଧାରୀ ଅନ୍ୟ ଜଣେ କବି ତ୍ରିଲୋଚନଙ୍କ ବୀରତ୍ୱ ଆଧାରିତ ଚୁହା ରଚନା କରିଥିଲେ ।

''ଧନ୍ୟମହାରାଜା, ଓଡ଼ିଶା ମଧ୍ୟେ ଯା, ଢେଙ୍କାନାଳ ମହୀପତ୍ତି,
ପ୍ରଥମ କଟକେ, ଫଉଜ ଲୁଟିଲେ, ରାଜାରାମଙ୍କ ସଂପତ୍ତି ।
ଦ୍ୱିତୀୟେ ଚେମଣା, ସୈନ୍ୟଗଲେ ହଣା, ଅଠରଦିନ ଲଢ଼ାଇ,
କ୍ଷିତିପତିମାନେ, ଯେତେ ହାରିଗଲେଏ ଚାରିଯୁଗେ ନାମ ରହି ।
ତୃତୀୟରେ ଜାଣ, କନ୍ତୋଲରେ ହାଣ, ଆଠଗଡ଼ କରିଲୁଟି,
ତାଳବର କୋଟ, ମାରିଣ ଗରିଷ୍ଟ, କୁମ୍ଭେଶ୍ୱର ପୂଜା ଅତି ।
ଚତୁର୍ଥେ ସଂଗ୍ରାମ, ରଞ୍ଜାଗଡ଼ ଗ୍ରାମ, କେନ୍ଦୁଝର ସୈନ୍ୟମାରି,
ନିଟାଣ ଯେଟାଣ, ଲୁଟିଲେ ପଠାଣ, ଭଞ୍ଜରାଜା ଗଲେ ହାରି ।
ପଞ୍ଚମରେ ଦାଢ଼, ତିଗିଲିଆଗଡ଼, ଅଚଳକୋଟ ବିନାଶ,
ଚମ୍ପତିସିଂହଙ୍କୁ, ବାନ୍ଧି ଘେନିଗଲେଏ ବାଟେ ତାଙ୍କୁ କଲେ ନାଶ ।
ଷଷ୍ଠରେ ଯେ ଜାଣ, ଲହଡ଼ାର ଗୁଣ, ଶରଣ ପଶିଲେ ଆସି,
ବିଭୀଷଣ ଯଥା, ପାୟେ ପଡ଼ିଥିଲା, ସୁଖେ ଭୋଗ କରୁଅଛି ।

ମହାରାଜ ତ୍ରିଲୋଚନ ମହୀନ୍ଦ୍ର ବାହାହଦୂର ଓଡ଼ିଶାର ଟେକ ରଖିଥିଲେ । ଜୀବନର ଶେଷାବସ୍ଥାରେ ସେ ଆପଣାର ଜ୍ୟେଷ୍ଠ ପୁତ୍ର ଦୟାନିଧିଙ୍କୁ ରାଜ୍ୟଭାର ସମର୍ପଣ କରି ହଦଗଡ଼ ଦୁର୍ଗରେ ନିବାସ କରିଥିଲେ । ତାଙ୍କ ମୃତ୍ୟୁ ୧୭୯୦ରେ ହୋଇଥିବା ବିଶ୍ୱାସ କରଯାଏ । ଅନେକ ୧୭୮୫ ଉଲ୍ଲେଖ କରିଥିବାର ଭ୍ରମାତ୍ମକ ତଥ୍ୟ ଉପଲବ୍ଧି ହୁଏ । ଏ ସଂପର୍କରେ ସୂଚନା ପ୍ରଦାନ କରାଯାଇପାରେ ଯେ ୧୭୮୨ରେ କବି ବ୍ରଜନାଥ ବଡ଼ଜେନା ''ସମରତରଙ୍ଗ'' ରାଜାଙ୍କୁ ଉପହାର ଦେଇଥିଲେ। ଏହାର ସାତବର୍ଷ ପରେ ଅର୍ଥାତ୍ ୧୭୮୯ରେ ବ୍ରଜନାଥ ''ରାଜନଙ୍କ ଛଳଭକ୍ତି'' ରେ ଉଲ୍ଲେଖ କରିଛନ୍ତି–

''ସାତବରଷ ହୋଇଲା ସାତପଣ ଶ୍ରୀଛାମୁରୁ ନପାଇଲି,
ନିମକ ହାରମ ହୋଇ କଉଁ କାମ କୋଠର ବା ହାନି କଲି ।

× × ×

ଷାଠିଏ ବରଷ କାଳରେ ମୋହର ଉଠିବାକୁ ନାହିଁବଳ,
ପିଠି ଅଣ୍ଟା ବେକ ଲାଗିଗଲାଣି ମୋ ପୋଥିଲେଖାରୁ କେବଳ ।''

ଉକ୍ତ ଲେଖାରୁ ଉପଲବ୍ଧି ହୁଏ ବ୍ରଜନାଥଙ୍କୁ ୬୦ ବର୍ଷ ଅର୍ଥାତ୍ ୧୭୯୦ରେ ସେ ରାଜନଙ୍କୁ ଛଳଭକ୍ତି ଲେଖଥିଲେ ଏବଂ ସାତବର୍ଷ ହେବ

ଶ୍ରୀଛାମୁରୁ କିଛି ପାଇନାହାନ୍ତି ବୋଲି ଜଣାଯାଇଥିଲେ। ଅତଏବ ୧୭୯୦ ପର୍ଯ୍ୟନ୍ତ ମହାରାଜା ତ୍ରିଲୋଚନ ଜୀବିତ ଥିଲେ । ଅବଶ୍ୟ ଦୟାନିଧିଙ୍କ ରାଜତ୍ୱ ୧୭୮୫ରୁ ଆରମ୍ଭ ବୋଲି କେତେକ ଐତିହାସିକ ଓ ଗବେଷକ ବ୍ୟକ୍ତ କରିଛନ୍ତି । କିନ୍ତୁ ତାହା ଭ୍ରମାତ୍ମକ । ହୁଏତ୍, ରାଜା ୧୭୮୫ରେ ପୁତ୍ରକୁ ରାଜ୍ୟଭାର ସମର୍ପି ହଦଗଡ଼ରେ ନିବାସ କରୁଥିଲେ। ସେ ଯାହାହେଉ ମହାରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ୧୭୪୫ଠାରୁ ୧୭୯୦ ପର୍ଯ୍ୟନ୍ତ ଢେଙ୍କାନାଳରେ ରାଜତ୍ୱକରି ବୀର ଓଡ଼ିଆ ଜାତିର ଗୌରବ ·ବାନା ଉଡ଼ାଇଛନ୍ତି । ଦୀର୍ଘ ଅଠରଦିନ କାଳ ଷାଠିଏ ବାଟିଆ ରଣାଙ୍ଗନରେ ଦୁର୍ଦ୍ଧର୍ଷ ମରହଟ୍ଟାବାହିନୀର ଚାଳିଶ ହଜାର ପରାକ୍ରମୀ ଯୋଦ୍ଧାଙ୍କ ସହିତ ସ୍ୱଳ୍ପସୈନ୍ୟଙ୍କୁ ସାଥୀରେ ଧରି ଯେଉଁ ଅପୂର୍ବ ବୀରତ୍ୱ ପ୍ରଦର୍ଶନ କରିଛନ୍ତି ତାର ପଟ୍ଟାନ୍ତର ନାହିଁ । ଓଡ଼ିଶାର ଗୌରବୋଜ୍ଜଳ ଇତିହାସରେ ମହାରାଜ ତ୍ରିଲୋଚନ ମହୀନ୍ଦ୍ରବାହାଦୂରଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ।



# ରାଜା ଦୟାନିଧି ମହୀନ୍ଦ୍ର ବାହାଦୂର

ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କର ଦୁଇପୁତ୍ର ଥିଲେ । ସେମାନଙ୍କ ମଧ୍ୟରୁ ଜ୍ୟେଷ୍ଠପୁତ୍ର ଦୟାନିଧି (ନରେନ୍ଦ୍ର ସାହେବ) ଓ କନିଷ୍ଠ ପୁତ୍ର ରାମଚନ୍ଦ୍ର (ରାୟସାହେବ)। ତ୍ରିଲୋଚନ ୧୭୮୫ ମସିହାରେ ଜ୍ୟେଷ୍ଠପୁତ୍ର ଦୟାନିଧିଙ୍କୁ ରାଜ୍ୟ ଭାର ସମର୍ପଣ କରି ହଦଗଡ଼ ଦୁର୍ଗରେ ନିବାସ କରିଥିଲେ । କନିଷ୍ଠପୁତ୍ର ରାମଚନ୍ଦ୍ର ପଶ୍ଚିମାଞ୍ଚଳ ଦୁର୍ଗ ଭୀମନଗରୀରେ ରହୁଥିଲେ । ରାଜା ତ୍ରିଲୋଚନ ୧୭୮୫ରେ ଦୟାନିଧିଙ୍କୁ ରାଜଗାଦୀରେ ବସାଇ ହଦଗଡ଼ରେ ସାହିତ୍ୟଚର୍ଚ୍ଚା ଓ ଦେବାରଧନାରେ ମନୋନିବେଶ କରିଥିଲେ । ସେହି ସମୟରେ ପ୍ରସିଦ୍ଧ କବି ବ୍ରଜନାଥ ବଡ଼ଜେନା କମଗରାରେ ରହି ସିଦ୍ଧେଶ୍ୱରୀଙ୍କ କୃପାରୁ ବହୁଶାସ୍ତ୍ର ରଚନା କରି ରାଜାଙ୍କୁ ଶୁଣାଇଥିଲେ । ଏହାକୁ ଅନେକ ଐତିହାସିକ ଗୁରୁତ୍ୱ ନଦେଇ ୧୭୮୫ରେ ତ୍ରିଲୋଚନଙ୍କର ମୃତ୍ୟୁ ହୋଇଥିବା ଉଲ୍ଲେଖ କରିଛନ୍ତି । ପ୍ରକୃତରେ ୧୭୯୦ରେ ହଦଗଡ଼ ଠାରେ ତ୍ରିଲୋଚନ ପରଲୋକଗମନ କରିଥିଲେ । ଏହାପରେ ନରେନ୍ଦ୍ର ସାହେବ ଦୟାନିଧି ମହୀନ୍ଦ୍ର ବାହାଦୂର ଉପାଧି ଧାରଣ ପୂର୍ବକ ସିଂହାସନ ଆରୋହଣ କଲେ । ସେ ଜଣେ ଶାନ୍ତିପ୍ରିୟ ରାଜା ଥିଲେ । ପଡ଼ୋଶୀ ରାଜନ୍ୟ ମଣ୍ଡଳୀ ଓ ମରହଟ୍ଟା ଶାସକଙ୍କ ସହିତ ତାଙ୍କର ସୁସଂପର୍କ ରହିଥିଲା । ତାଙ୍କ ସମୟରେ ରାଜରାମ ପଣ୍ଡିତ ଓ ସଦାଶିବ ରାଜାରାମ କଟକରେ ମରହଟ୍ଟା ସୁବାଦାର ପଦରେ ଅବସ୍ଥାପିତ ଥିଲେ । ସୂଚନାଯୋଗ୍ୟଯେ ୧୭୮୫ରେ ଓ୍ୟାରେନ୍ ହେଷ୍ଟିଙ୍ଗ୍ସ ଏବଂ ପରେ ପରେ ଲର୍ଡ଼ କର୍ଣ୍ଣଓ୍ୱାଲିସ୍ ଗଭର୍ଣ୍ଣର ଜେନରାଲ ହୋଇଥିଲେ ତଥା ଇଂରେଜ ପ୍ରଶାସକଙ୍କ ପ୍ରଭାବରେ ଓଡ଼ିଶାରେ ରାଜନୈତିକ ଅସ୍ଥିରତା ସୃଷ୍ଟିହୋଇଥିଲା । କଳେ ବଳେ କୌଶଳେ ମରହଟ୍ଟାମାନଙ୍କଠାରୁ ଓଡ଼ିଶା ଅଧିକାର କରିବା ଥିଲା ଇଂରେଜ ଶାସକଙ୍କର ଲକ୍ଷ୍ୟ । କିନ୍ତୁ ଢେଙ୍କାନାଳ ରାଜା ଦୟାନିଧି ଶାନ୍ତିରେ ବସବାସ କରିବାକୁ ଭଲ ପାଉଥିଲେ ଓ ମର୍ହଟ୍ଟାମାନଙ୍କ ବାର୍ଷିକ ପେସ୍‌କସ୍ ପୂର୍ବ ସନ୍ଧି ଅନୁଯାୟୀ ନିୟମିତ ପାଇଠ କରୁଥିଲେ ।

ଖୋର୍ଦ୍ଧାର ଗଜପତି ଦିବ୍ୟସିଂହ ଦେବ ୨ୟଙ୍କ ସହିତ ଢେଙ୍କାନାଳାଧିଶୀଶ୍ୱର ଦୟାନିଧିଙ୍କର ସୁସଂପର୍କ ରହିଥିଲା । ଓଡ଼ିଶା ଇତିହାସରୁ ଜଣାଯାଏ ଖୋର୍ଦ୍ଧାରାଜା ବୀରକେଶରୀ ଦେବଙ୍କ ପରେ ତାଙ୍କ ନାତି ଦିବ୍ୟସିଂହ ଦେବ ୨ୟ ୧୭୯୩ରେ

ଗଜପତି ଆସନ ଅଳଙ୍କୃତ କଲେ। ତାଙ୍କ ରାଜତ୍ୱର ପଞ୍ଚମ ଅଙ୍କରେ ରାଜା ଦୟାନିଧି ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ନିମିତ୍ତ ପୁରୀ ଯାଇଥିବାର ପ୍ରମାଣ ମାଦଳାପାଞ୍ଜିରୁ ଉପଲବ୍ଧ ହୁଏ । ଗଜପତିଙ୍କ ପୂର୍ବ ସନନ୍ଦ ଅନୁଯାୟୀ ପାରଂପାରୀକ ରୀତିରେ ରାଜା ଦୟାନିଧି ଦର୍ଶନ କରିବା ପରେ ଗଜପତି ଦିବ୍ୟସିଂହଦେବ ତାଙ୍କୁ ଏକ ସ୍ୱତନ୍ତ୍ର ସନନ୍ଦ ପ୍ରଦାନ କରିଥିଲେ । ଏହା ନିମ୍ନରେ ପ୍ରଦତ୍ତ ହେଲା ।

"ଭାଇ ରାୟସିଂହ ଭ୍ରମରବର ରାୟ ଶ୍ରୀହସ୍ତ ନବର ବଜାର ମହାରାଜ ରଣଅସ୍ତ୍ର ସାହନ୍‌ମୁଦିନ୍ ଇ ପିତର ଖିତାବ ରାଜା ମହୀନ୍ଦ୍ର ବାହାଦୂର ଓଅର କଳାଧଳା ଦୋଛତ୍ରୀ ପିଲମଲ... ଅମ୍ଭାରି ହୁକୁମ ଦଦାସୁକ ଓପେସର ଦୟାନିଧି ରାୟସିଂହ ଭ୍ରମରବର ରାୟଖେତାବ ଦଦାସକ । ଇଦିମକି ଇଁ ସଇତନତ୍ ତାକିଦ୍ ପର୍ଦ୍ଧାନକ, ତହାବୀର ତାରିଖ ୧୦ ମାହେ ଅଘନ ୫ ଅଙ୍କ ।"

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ସ୍ୱପିତା ତ୍ରିଲୋଚନଙ୍କ ସଦୃଶ ଦୟାନିଧି ସମଗ୍ର ଓଡ଼ିଶାରେ ଲୋକପ୍ରିୟତା ଅର୍ଜନକରି ଗଜପତିଙ୍କର ପ୍ରୀତିଭାଜନ ହୋଇପାରିଥିଲେ ।

ଦୟାନିଧିଙ୍କ ରାଜତ୍ୱରେ ଢେଙ୍କାନାଳର ସାଂସ୍କୃତିକ ସ୍ଥିତି ଉନ୍ନତ ଥିଲା । ଶାସନ ଓ ମୁଖ୍ୟ ଗ୍ରାମମାନଙ୍କରେ ଓଡ଼ିଆ ଭାଗବତ ସହିତ ବିଭିନ୍ନ ଛାନ୍ଦ ଓ ପୁରାଣର ଚର୍ଚ୍ଚା ଅବ୍ୟାହତ ରହିଥିଲା । ସେହି ସମୟରେ ମୁଦ୍ରାଯନ୍ତ୍ର ଆବିଷ୍କାର ହୋଇନଥିଲେ ହେଁ ଢେଙ୍କାନାଳର ବ୍ରାହ୍ମଣ, କରଣ, ବୈଷ୍ଣବ ଓ ଜ୍ୟୋତିଷ ସଂପ୍ରଦାୟର ବ୍ୟକ୍ତିବିଶେଷଣ ତାଳପତ୍ରରେ ବିଭିନ୍ନ ଶାସ୍ତ୍ର ନକଲ କରି ସ୍ୱଚ୍ଛ ଦରରେ ବିକ୍ରୀ କରୁଥିଲେ। ଗ୍ରାମେ ଗ୍ରାମେ ଭାଗବତଟୁଙ୍ଗୀ ସ୍ଥାପନ ହୋଇ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର ଅବ୍ୟାହତ ଥିଲା । ଭାଗବତ ଟୁଙ୍ଗୀ ମାନଙ୍କରେ ମଧ୍ୟ ବିଦ୍ୱାନ୍, ପଣ୍ଡିତ ଓ ବୈଷ୍ଣବବୃନ୍ଦ ଅନ୍ୟାନ୍ୟ ଶାସ୍ତ୍ର ଆଲୋଚନା କରୁଥିଲେ । ରାଜ୍ୟର ସତାଇଶଗୋଟି ବ୍ରାହ୍ମଣ ଶାସନରେ ସଂସ୍କୃତ ସାହିତ୍ୟ, ବେଦବେଦାନ୍ତ, ନ୍ୟାୟ, ତର୍କ ଓ ଦର୍ଶନ ଶାସ୍ତ୍ର ଆଲୋଚନା ହେଉଥିଲା । ଏତଦ୍‌ଭିନ୍ନ ଢେଙ୍କାନାଳ ସହରର ଦଧିବାମନ ମଠ, ବାଲିବୋ ରଘୁନାଥ ମଠ, ଢୀରଡ଼ାମାଳୀର ରଘୁନାଥ ମଠ ପ୍ରଭୃତିକୁ ବୃନ୍ଦାବନ, ପ୍ରୟାଗ, କାଶୀ, ନବଦ୍ୱୀପ ଓ ଅଯୋଧ୍ୟାରୁ ସାଧୁସନ୍ଥବୈଷ୍ଣବ ବୃନ୍ଦ ଆସି ବିଭିନ୍ନ ଶାସ୍ତ୍ରର ପ୍ରଚାର ଓ ପ୍ରସାର କରୁଥିଲେ । ରାଜପ୍ରାସାଦରେ ପ୍ରତ୍ୟହ ଶାସ୍ତ୍ରାଲୋଚନା ହେଉଥିଲା । ବିଭିନ୍ନ ମଠ ଓ ମନ୍ଦିରରେ ପ୍ରତ୍ୟହ ଭାଗବତ

ଓ ରାମାୟଣ ପାଠର ବିଧିବ୍ୟବସ୍ଥା ପ୍ରଚଳିତ ଥିଲା। ଶାସନ ଓ ମୁଖ୍ୟ ଗ୍ରାମମାନଙ୍କରେ ଚାଟଶାଳୀ ଶିକ୍ଷା ଅବ୍ୟାହତ ଥିଲା। ମାର୍ଥାପୁର, ଧଳପୁର, ମୁକ୍ତାଦେଇ ପୁର ଓ ମୁଣ୍ଡଇଲୋ ଶାସନମାନଙ୍କରେ ପଣ୍ଡିତମାନେ ଆଗ୍ରହୀ ଛାତ୍ରଙ୍କୁ ନିଃଶୁଳ୍କ ବିଦ୍ୟାଦାନ କରାଉଥିଲେ। ସେହି ଛାତ୍ରମାନଙ୍କ ମଧ୍ୟରୁ ଅନେକ ପୁରୀ, ନବଦ୍ୱୀପ ଓ କାଶୀରେ ଯାଇ ଉଚ୍ଚଶିକ୍ଷା ଲାଭ କରୁଥିଲେ । ସେହି କୃତୀଛାତ୍ରମାନଙ୍କ ମଧ୍ୟରୁ ଢେଙ୍କାନାଳର ଶ୍ରୀପତି ପଟ୍ଟଯୋଶୀ, ରାମଚନ୍ଦ୍ର ଦୀକ୍ଷୀତ ମହାପାତ, ମାର୍ଥାପୁର ଶାସନର ବୈରାଗୀ ମିଶ୍ର ପ୍ରଭୃତି ସର୍ବ ଭାରତୀୟ ସ୍ତରରେ କୃତୀତ୍ୱ ଅର୍ଜନ କରିଥିଲେ । ରାଜା ମଧ୍ୟ ଆଗ୍ରହୀ ଛାତ୍ରମାନଙ୍କ ଉଚ୍ଚଶିକ୍ଷାର ସୁବନ୍ଦୋବସ୍ତ କରିଥିଲେ ।

ଦୟାନିଧିଙ୍କ ରାଜତ୍ୱ ପୂର୍ବରୁ ଯୁଦ୍ଧଯୋଗୁଁ ରାଜ୍ୟର ଆର୍ଥିକସ୍ଥିତି ସ୍ୱଚ୍ଛଳ ନଥିଲା । ବର୍ଗୀମାନେ ରାଜକୋଷ ଲୁଣ୍ଠନ କରି ନେଇଯାଇଥିଲେ । ଏହି ଦୃଷ୍ଟିକୋଣରୁ ରାଜକୋଷ ବୃଦ୍ଧି ଉଦ୍ଦେଶ୍ୟରେ ଭୂ-ରାଜସ୍ୱ ବୃଦ୍ଧି ପ୍ରସ୍ତାବ ଆଗତ ହୋଇଥିଲେ ହେଁ ରାଜା ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ । ସେତେବେଳେ ଢେଙ୍କାନାଳ ରାଜ୍ୟଟି ଚବିଶଗୋଟି ପ୍ରଗଣା ବା ବିଷରେ ବିଭକ୍ତ ଥିଲା ଏବଂ ରାଜ୍ୟର ମୋଟ ରାଜସ୍ୱ ଗ୍ରାମର ସଂଖ୍ୟା ଥିଲା ୯୬୦ । ଅତଏବ ପ୍ରାୟ ୪୦ ଗୋଟି ଗ୍ରାମକୁ ନେଇ ଗୋଟିଏ ଲେଖାଏଁ ପ୍ରଗଣା ବା ବିଷ ଗଠନ କରାଯାଇଥିଲା। ସେଗୁଡ଼ିକ ହେଲା ଗଁପୁର, କରମୂଳ, ନୃସିଂହପ୍ରସାଦ, ଗୋରଡ଼ିଆ, ଟିପିଯୋଡ଼ି, ପାରିମାର୍ଲ, ଜେନାଦେଶ, ସୌରିକ, ପଳାଶୁଣୀ, ପରଜଙ୍ଗ, ଉପରଦେଶ, ଗୋତମରା, କୁଳକାଶିଆ, ବଳରାମପୁର, ଛଦେଶ, ନିଜିଗଡ଼, ଅପଙ୍ଗା, ଆଡିଣ୍ଡା, ପୂର୍ବଖଣ୍ଡ, ଲକ୍ଷ୍ମୀପ୍ରସାଦ, ବଣିଆପଡ଼ା, ଗୌଡ଼ଦେଶ, ରାୟସିଂହପ୍ରସାଦ ଓ ନୂଆଗଡ଼ । ରାଜା ଏହି ଚବିଶଗୋଟି ବିଷର ବେହେରା ପଧାନମାନଙ୍କୁ ଅଧିକ କର ଆଦାୟ ନକରିବାକୁ ଆଦେଶ ଦେଇଥିଲେ । ସର୍ବରାକାରମାନେ ପ୍ରଜାମାନଙ୍କ ଉପରେ ଜୁଲମ୍ ନକରିବାକୁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଥିଲା । ଉଲ୍ଲେଖଯୋଗ୍ୟ ଯେ ରାଜା ଦୟାନିଧି ଅନେକ ଦେବୋତ୍ତର ଓ ବ୍ରହ୍ମୋତ୍ତର ଗ୍ରାମମାନଙ୍କରୁ ସଂପୂର୍ଣ୍ଣ ଭୂ-ରାଜସ୍ୱ ଉଠାଇ ଦେଇଥିଲେ । ଯେଉଁ ଦେବୋତ୍ତର ଗ୍ରାମମାନଙ୍କରେ ଖଜଣା ଛାଡ଼ କରାଯାଇଥିଲା ସେଗୁଡ଼ିକ ହେଉଛି ଖୁଣ୍ଟୁଝରୀ, ରଣପଶି, ଦେଓଗାଁ, ମହୁଲଖଳି, ଚନ୍ଦ୍ରଶେଖର ପୁର, ଦୁର୍ଗାପ୍ରସାଦ ବା ବନ୍ଧ ନୂଆଗାଁ, ସାଦାପଶି, ଯାଦାପଶି, ଆଙ୍କୁର୍ଦା, ମଠତେନ୍ତଳିଆ, ରିଆ, ଜକିଆ,

ବାଲିବୋ, ମଠଖୋକସା, ମଠନୂଆଗାଁ, ମାଳପୁରା, ଜିନେଇଲୋ, ମଲାଙ୍ଗଡିହ, କନ୍ତିଓ ଓ ଅଘିରାଗୋଡ଼ା ପ୍ରଭୃତି । ଏହା ବ୍ୟତୀତ ପ୍ରତ୍ୟେକ ଗ୍ରାମରେ ଥିବା ଦେବଦେବୀଙ୍କ ଭୂସଂପତ୍ତିକୁ ଖଜଣାଛାଡ଼ କରାଯାଇଥିଲା । ଯେଉଁ ବ୍ରାହ୍ମଣଶାସନ ସମୂହରେ ଖଜଣାଛାଡ଼, କରାଯାଇଥିଲା ସେଗୁଡ଼ିକ ହେଉଛି– ପୁରୁଷୋତ୍ତମ ପୁର, ପ୍ରହରାଜପୁର, ମାର୍ଥାପୁର, ନୃସିଂହପୁର, ଲୋକନାଥ ପୁର, ଇଚ୍ଛାବତୀ ପୁର, ବଳଭଦ୍ରପୁର, ବ୍ରଜବିହାରୀ ପୁର, କୁଞ୍ଜ ବିହାରୀ ପୁର, ନୀଳାମ୍ବର ପୁର, ରାୟ ନୃସିଂହପୁର, ଜାମୁଝରା, କୋତରାପଲ୍ଲୀ, କୁଶପଦା, ବିଷ୍ଣୁପୁର, ବୃନ୍ଦାବନପୁର, ନୀଳକଣ୍ଠପୁର, ଲତାଦେଇପୁର ଓ ରାଧାଦେଇପୁର ପ୍ରଭୃତି । ଏତଦ୍‌ଭିନ୍ନ ଅନ୍ୟ ଗ୍ରାମମାନଙ୍କରେ ଥିବା ବ୍ରହ୍ମୋତ୍ତର ଜମିରୁ ମଧ୍ୟ ଖଜଣାଛାଡ଼ କରାଯାଇଥିଲା । ସଂକ୍ଷେପରେ ଉଲ୍ଲେଖକଲେ, ଦୟାନିଧିଙ୍କ ରାଜତ୍ୱରେ ଢେଙ୍କାନାଳରେ ପ୍ରାୟ ଚତୁଃର୍ଥାଂଶ ଚାଷ ଜମିରୁ ଖଜଣା ଛାଡ଼ କରାଯାଇଥିଲା । ପ୍ରଜା ଅନାବାଦୀ ଜମିକୁ ଆବାଦୀ ବା ଚାଷ ଉପଯୋଗୀ କରିବାର ବିଧିବ୍ୟବସ୍ଥା ରହିଥିଲା । ରାଜକୋଷ ପୂର୍ଣ୍ଣ କରିବା ନିମିତ୍ତ ରାଜା ପ୍ରଜାଙ୍କ ଉପରେ ଚାପ ପକାଇନଥିଲେ । ମୋଟ ଉପରେ ଉଲ୍ଲେଖ କଲେ, ରାଜା ଦୟାନିଧି ପ୍ରଜାପୀଡ଼କ ନଥିଲେ ତଥା ରାଜା ଲୋକକଲ୍ୟାଣକାରୀ ପ୍ରଶାସନ ପ୍ରଚଳନ କରିଥିଲେ । ସେହି ସମୟରେ ଢେଙ୍କାନାଳରେ ସୁନାଟଙ୍କା, ରୂପାଟଙ୍କା ଓ କଉଡ଼ି ମୁଦ୍ରା ରୂପେ ପ୍ରଚଳନ ଥିଲା । ପ୍ରଜାମାନେ ମୁଦ୍ରା ବା ଶସ୍ୟ ଆକାରରେ ରାଜସ୍ୱ ଦାଖଲ କରି ପାରୁଥିଲେ । ୧୭୯୨-୯୩ରେ ଓଡ଼ିଶାରେ ଦୁର୍ଭିକ୍ଷ ପଡ଼ିଥିଲେ ହେଁ ଢେଙ୍କାନାଳରେ ତାର ପ୍ରଭାବ ନଥିଲା । ତଥାପି ସତର୍କତା ସ୍ୱରୂପ ରାଜା ନୟାନିଧି ରାଜ୍ୟର ଭୁବନ; ଆଦିପୁରା, ମାଳପୁରା, କନ୍ତିଓ, ବାଙ୍ଗୁରସିଂହ, ଭାପୁର ପ୍ରଭୃତି ସ୍ଥାନମାନଙ୍କରେ ଶସ୍ୟଭଣ୍ଡାର ସ୍ଥାପନା କରିଥିଲେ ।

ଦୟାନିଧିଙ୍କ ରାଜତ୍ୱରେ ଢେଙ୍କାନାଳର ଦେବଦେବୀମନ୍ଦିର ସମୂହର ପରିଚାଳନା ଉଚ୍ଚକୋଟୀର ଥିଲା । କପିଳାସ ମନ୍ଦିରର ସୁପରିଚାଳନା ନିମିତ୍ତ ସେ କପିଳାସ ପୀଠରେ ଜଣେ ଖରସୋଧା ଓ ଦେଓଗାଁଠାରେ ଜଣେ ଜିମାଦାର ନିଯୁକ୍ତି କରିଥିଲେ । ନିଜିଗଡ଼ ବଳଦେବଜୀଉଙ୍କ ମନ୍ଦିର ରାଜପ୍ରାସାଦର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହିଥିଲା । ମଠମନ୍ଦିର ସୁପରିଚାଳନା ନିମିତ୍ତ ଦରବାରରେ ଜଣେ ଦେବୋତ୍ତର ମୋହରିର ନିଯୁକ୍ତି ପାଇଥିଲେ । ଅନ୍ୟାନ୍ୟ ମଠମନ୍ଦିର ନିମିତ୍ତ ଜିମାଦାର ଓ ଠାକୁରଙ୍କ ଚାଷ ଜମି ତଦାରଖ ନିମିତ୍ତ ଖମାରୀ ନିଯୁକ୍ତ

ହୋଇଥିଲେ । ସାଧୁ, ସନ୍ଥ, ସନ୍ନ୍ୟାସୀ, ଦେବତା ଓ ବ୍ରାହ୍ମଣଙ୍କ ପ୍ରତି ରାଜଭକ୍ତି ରହିଥିଲା । ରାଜପୁରୋଧା ପଣ୍ଡିତ ରାମଚନ୍ଦ୍ର ସାମନ୍ତରାୟ ଦୀକ୍ଷିତ ମହାପାତ୍ରଙ୍କ ଅଧକ୍ଷତାରେ ପଞ୍ଚପୁରୋଧା ଧର୍ମାଧିକାରୀ ଭାବରେ ରାଜ୍ୟରେ ସକଳ ପ୍ରକାର ଧର୍ମକାର୍ଯ୍ୟ ପରିଚାଳନା କରୁଥିଲେ । କପିଳାସ ମୁକ୍ତିମଣ୍ଡପର ତତ୍‌କାଳୀନ ଅଧକ୍ଷ ଥିଲେ ମାର୍ଥାପୁରଶାସନର ପଣ୍ଡିତ ବୈରାଗୀ ମିଶ୍ର । ଏତଦ୍‌ଭିନ୍ନ କପିଳାସ ପୀଠ ବ୍ରହ୍ମଚାରୀ ମଠର ଅଧକ୍ଷ ଥିଲେ ପରମ ବେଦାଚାର୍ଯ୍ୟ ଭାରତୀସ୍ୱାମୀ । କପିଳାସ ପୀଠରେ ଅନେକ ସାଧୁସନ୍ଥ ମଧ୍ୟ ସେ ସମୟରେ ସାଧନାରତ ଥିଲେ ।

ବୃନ୍ଦାବନଧାମର ରାଧାରମଣ ମଠାଧୀଶ ହିଁ ଢେଙ୍କାନାଳ ରାଜବଂଶର ବୈଷ୍ଣବଗୁରୁ । ତାଙ୍କରି ପ୍ରଭାବରୁ ଢେଙ୍କାନାଳରେ ଗୌଡ଼ୀୟ ବୈଷ୍ଣବ ଧାରା ପ୍ରବାହିତ ହୋଇଥିଲା । ରାଜବଂଶର ଇଷ୍ଟ ହେଉଛନ୍ତି ଶ୍ରୀ ବୃନ୍ଦାବନଚନ୍ଦ୍ର । ପୂର୍ବରୁ ଢେଙ୍କାନାଳ ମାଟିରେ ଉତ୍କଳୀୟ ବୈଷ୍ଣବଧାରା ପ୍ରବାହିତ ହୋଇ ଖୁଣ୍ଟୁଝରୀ, ଖୋକସା ପ୍ରଭୃତି ମଠ ପ୍ରତିଷ୍ଠିତ ହୋଇଥିଲା । ଦୟାନିଧିଙ୍କ ରାଜତ୍ୱରେ ଗୌଡ଼ୀୟ ଭାବଧାରାର ସମ୍ମିଶ୍ରଣରେ ଏକ ସମନ୍ୱୟାତ୍ମକ ବୈଷ୍ଣବୀୟ ଭାବଧାରା ଏହି ମାଟିରେ ପ୍ରବାହିତ ହୋଇଥିଲା । ପରିଣାମ ସ୍ୱରୂପ ରାଜ୍ୟର ବିଭିନ୍ନ ମଠ, ମନ୍ଦିର ଓ ମୁଖ୍ୟଗ୍ରାମମାନଙ୍କରେ ସଂକୀର୍ତ୍ତନ, ଭଜନ ଅଷ୍ଟପ୍ରହରୀ, ଚବିଶ ପ୍ରହରୀ, ହରିହାଟ ଓ ରାସଲୀଳାର ବ୍ୟାପକ ପ୍ରସାର ଘଟିଥିଲା । ଏହି ଅବସରରେ ଶ୍ରୀ ବଳଦେବଜୀଉଙ୍କ ମନ୍ଦିର ସମ୍ମୁଖରେ ରାସଲୀଳାରେ ପରଂପରା ଆରମ୍ଭ ହୋଇଥିଲା । ଏହି ମହୋତ୍ସବରେ ରାଜପ୍ରାସାଦର ରାଧା ଓ ବଳଦେବଜୀଉ ମନ୍ଦିରର ମଦନ ମୋହନଙ୍କର ରାସୋତ୍ସବ ସଂଘଟିତ ହୋଇଥାଏ । ଭୁବନ ସନ୍ନିକଟ ବେଣ୍ଟଶାଳିଆର ପରମବୈଷ୍ଣବ ବୃନ୍ଦ ରାସଲୀଳା ପରିବେଷଣ କରିଥାନ୍ତି । ଦୁଃଖର ବିଷୟ, ଅଳ୍ପ କେତେ ବର୍ଷହେବ ଏହା ବନ୍ଦ ହୋଇଯାଇଛି । ରାଜା ଦୟାନିଧି ମଧ୍ୟ ସ୍ୱପିତୃ ପ୍ରତିଷ୍ଠିତ ଜୟଗୋପାଳମନ୍ଦିର ଓ ପୂର୍ବରୁ ପ୍ରତିଷ୍ଠିତ ଶମ୍ଭୁଗୋପଳ ମନ୍ଦିରରେ ଅଷ୍ଟପ୍ରହରୀ ଆରମ୍ଭ କରିଥିଲେ ।

ଶାନ୍ତିପ୍ରିୟ ତଥା ବୈଷ୍ଣବ ଭାବାପନ୍ନ ରାଜା ଦୟାନିଧିଙ୍କୁ ଢେଙ୍କାନାଳ ଇତିହାସରେ ଇନ୍ଦ୍ରଦ୍ୟୁମ୍ନ ବୋଲି ବର୍ଣ୍ଣନା କରାଯାଇଛି । ଯଥାର୍ଥରେ ସେ ଜଣେ ଧର୍ମପ୍ରାଣ, ପ୍ରଜାହିତୈଷୀ, ଚରିତ୍ରବନ୍ତ ରାଜା ଥିଲେ। ତାଙ୍କୁ ପ୍ରଶଂସା କରି ବଳଭଦ୍ରବୋଲିରେ ଉଲ୍ଲେଖ କରାଯାଇଛି–

"ତାଙ୍କ ନନ୍ଦନ ରାଜୁତପଣ କଲେ ପିତା ଅନୁରୂପ ଗୁଣ,
ମହୀନ୍ଦ୍ର ନନ୍ଦନ ଯେଣୁଶ୍ରୀ ମହୀନ୍ଦ୍ର ବାହାଦୂର ପଦ ଗୁଣ ।
ହଂସ ବିହାର କରିବାକୁ ନିର୍ମଳ ଜ୍ଞାନ ତହିଁ ପ୍ରକାଶିଲା,
ନିଆହାର ମୀନ ପରାହୋଇ ବୃଥା ଚରିତ୍ରରେ ଦିନଗଲା ।"

ଉପରୋକ୍ତ ଉକ୍ତିରୁ ହୃଦ୍‌ବୋଧ ହୁଏ ରାଜା ଦୟାନିଧି ଜଣେ ଚରିତ୍ରବନ୍ତ ଶାସକ ଥବଲେ। ସେ ୧୭୮୫ ରୁ ୧୭୯୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ବୋଲି ଢେଙ୍କାନାଳ ଇତିହାସରେ ଉଲ୍ଲେଖ ଅଛି । କିନ୍ତୁ ମାଦଳାପାଞ୍ଜି ବର୍ଣ୍ଣନାସାରେ ସେ ଦିବ୍ୟସିଂହ ଦେବଙ୍କ ପଞ୍ଚମ ଅଙ୍କରେ ଶ୍ରୀ ଜଗନ୍ନାଥ ଦର୍ଶନକୁ ଯାଇ ପୁରୀରେ କିଛିକାଳ ନିବାସ କରିଥିଲେ । ଗଜପତି ଦିବ୍ୟସିଂହଦେବଙ୍କ ପଞ୍ଚମ ଅଙ୍କ ହେଉଛି ୧୭୯୬ । ଅତଏବ ରାଜା ଦୟାନିଧି ୧୭୯୬ ପର୍ଯ୍ୟନ୍ତ ରାଜତ୍ୱ କରିଥିବାର ପ୍ରମାଣ ଉପଲବ୍‌ଧ ।

ରାଜା ଦୟାନିଧି ନିଃସନ୍ତାନ ଥିଲେ । ୧୭୯୬ରେ ତାଙ୍କ ମୃତ୍ୟୁପରେ ବିଧବାରାଣୀ ରାଜ ପରିବାରର ଜଗନ୍ନାଥ ମାନସିଂହଙ୍କୁ ପୋଷ୍ୟପୁତ୍ର ଭବରେ ଗ୍ରହଣ କରି ଗାଦିନାସୀନ କରାଇଥିଲେ । ତା ୧୭/୧୦/୧୮୦୭ ଇଖରେ ଇଂରେଜ ଇଷ୍ଟଇଣ୍ଡିଆ କମ୍ପାନୀର ଏକ ରେକର୍ଡ଼ରୁ ଜଣାଯାଏ ରାଜା ଦୟାନିଧିଙ୍କ ଅନ୍ତେ ମାନସିଂହ ଢେଙ୍କାନାଳର ରାଜା ହୋଇ ମରହଟ୍ଟା ଅଧିପତି ରଘୁଜୀ ଭୋନସଲାଙ୍କ ଦ୍ୱାରା ସନନ୍ଦ ପାଇଥିଲେ। ସେହି ରିପୋର୍ଟରୁ ମଧ୍ୟ ପ୍ରମାଣିତ ହୁଏ ସେ ଶ୍ୟାମସୁନ୍ଦରଙ୍କୁ ପୋଷପୁତ୍ର ଭାବରେ ଗ୍ରହଣ କରିଥିଲେ ।"Manasingh, who according to family custom eutitled to succeed, became Raja and was confirmed in his title and estate by sanaudas of Maharaja Rugoojee Bhonsla, the Raja of Berar in the year 1205 Amis, Mahasing died 1206 Amli, × × × He adopted his nephew shyam sundar, before his death. ଗଣନାନୁସାରେ ୧୨୦୫ ଇମିଲି ହେଉଛି ୧୭୯୬ ଓ ୧୨୦୬ ଇମିଲି ହେଉଛି ୧୭୯୭ । ଅର୍ଥାତ୍ ରାଜା ଜଗନ୍ନାଥ ମାନସିଂହ ୧୭୯୬ରେ ରାଜା ହେଲେ ଏବଂ ୧୭୯୭ରେ ଶ୍ୟାମ୍ ସୁନ୍ଦରଙ୍କୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରିଥିଲେ ତଥା ୧୭୯୭ରେ ହିଁ ମାନସିଂହଙ୍କର ମୃତ୍ୟୁ ହୋଇଥିଲା । ବଳଭଦ୍ରବୋଲିରେ ଉଲ୍ଲେଖ ଅଛି ସେ ମାତ୍ର ୧୩ ଦିନ ରାଜା ହୋଇଥିଲେ ।

"କିଛିଦିନ ଅନ୍ତେ ପରଲୋକ ଯାନ୍ତେ ସନ୍ତତି ଯେଣୁ ନଥିଲେ,
ମାନସିଂହବୋଲି ରାଜକୁଳେଥିଲେ ରାଣୀ ପାଟ ଦେଇଗଲେ।
ତେର ଦିନ ରାଜ ପଣ ଭୋଗକରି ଯୋଗ୍ୟାଗାଦିକି ନୋହିଲେ,
ଭୋଗ କରିବାକୁ ଭୀମନଗ୍ରୀ ସିଂହ ଗୁପତରେ ତହିଁ ଥିଲେ।"

ଏଥିରୁ ଜଣାଯାଉଛି ରାଜା ଦୟାନିଧିଙ୍କ ଅନ୍ତେ ମାନସିଂହ ମାତ୍ର ୧୩ଦିନ ରାଜାହୋଇଥିଲେ ଏବଂ ରାମଚନ୍ଦ୍ର ଭୀମନଗରୀରୁ ଆସି ପରବର୍ତ୍ତୀ ରାଜା ହେଲେ । ଏଠାରେ ସ୍ପଷ୍ଟ କରିଦିଆଯାଇ ପାରେ ଯେ ରାଜ ପରିବାରର ଯେଉଁ ବେଣୁଧର ହରିଚନ୍ଦନ ସନ୍ନ୍ୟାସୀ ହୋଇଥିଲେ ତାଙ୍କ ପୁତ୍ର ଜଗନ୍ନାଥ ଭ୍ରମରବରଙ୍କର ଦୁଇପୁତ୍ର ଥିଲେ । ତନ୍ମଧ୍ୟରୁ ଜ୍ୟେଷ୍ଠପୁତ୍ର ଭୂଜବଳ ସାମନ୍ତ ଓ କନିଷ୍ଠ ପୁତ୍ର ମାନସିଂହ । ଶ୍ୟାମସୁନ୍ଦର ହେଉଛନ୍ତି ଭୂଜବଳ ସାମନ୍ତଙ୍କର ପୁତ୍ର, ଯାହାଙ୍କୁ ମାନସିଂହ ପୋଷ୍ୟ ପୁତ୍ର କରିଥିଲେ । ସେହି ଶ୍ୟାମସୁନ୍ଦର ପରବର୍ତ୍ତୀ କାଳରେ ରାଜା ହୋଇଥିଲେ, ଯାହାକି ପରବର୍ତ୍ତୀ ଅଧ୍ୟାୟରେ ଆଲୋଚନା କରାଯିବ ।

ଉପରୋକ୍ତ ପ୍ରମାଣାନୁସାରେ ରାଜା ଦୟାନିଧି ୧୭୮୫ ଠାରୁ ୧୭୯୬ ପର୍ଯ୍ୟନ୍ତ ରାଜତ୍ୱ କରିଥିବାରୁ ହୃଦ୍‌ବୋଧ ହୁଏ । ତାଙ୍କ ପରେ ବିଧବାରାଣୀ ଜଗନ୍ନାଥ ଭ୍ରମରବରଙ୍କ ପୁତ୍ର ମାନସିଂହଙ୍କୁ ରାଜଗାଦୀରେ ବସାଇଥିଲେ ହେଁ ସେ ଅଯୋଗ୍ୟ ଥିବାରୁ ଦୟାନିଧିଙ୍କ କନିଷ୍ଠ ଭ୍ରାତା ରାମଚନ୍ଦ୍ର ସିଂହ (ରାୟସାହେବ) ୧୭୯୭ ଠାରୁ ରାଜୁତି କଲେ । ରାଜପୁରୋଧା ପଣ୍ଡିତ ଗଙ୍ଗାଧର ମିଶ୍ର ମାନସିଂହଙ୍କ ରାଜତ୍ୱକୁ ସ୍ୱୀକାର କରିନାହାନ୍ତି ଏବଂ ଦୟାନିଧି ୧୭୯୭ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଉଲ୍ଲେଖ କରିଛନ୍ତି । ଅନୁମିତ ହୁଏ ପୁରୀରୁ ପ୍ରତ୍ୟାବର୍ତ୍ତନ ପରେ ୧୭୯୭ରେ ହଠାତ୍ ଦୟାନିଧିଙ୍କର ପରଲୋକ ଘଟିଲା । ସେ ନିଃସନ୍ତାନ ଥିବାରୁ ବିଧବାରାଣୀ ମାନସିଂହଙ୍କୁ ମାତ୍ର ୧୩ଦିନ ପର୍ଯ୍ୟନ୍ତ ଗାଦୀରେ ବସାଇଥିଲେ ଏବଂ ଭୀମନଗରୀରୁ ରାମଚନ୍ଦ୍ର ସିଂହ ଆସି ୧୭୯୭ରେ ରାଜା ହେଲେ । ମାନସିଂହ ମାତ୍ର ୧୩ ଦିନ ରାଜା ହୋଇଥିବାରୁ ଐତିହାସିକ ଓ ଗବେଷକ ବୃନ୍ଦ ତାଙ୍କ ରାଜତ୍ୱ ଉପରେ ଗୁରୁତ୍ୱ ଦେଇନାହାନ୍ତି ।

ରାଜା ଦୟାନିଧି ମାତ୍ର ବାର ବର୍ଷ ରାଜତ୍ୱ କରିଥିଲେ ହେଁ ଜଣେ ଚରିତ୍ରବନ୍ତ ସୁଶାସକ ରୂପେ ଇତିହାସରେ ଆସନ ଅଳଙ୍କୃତ କରିଛନ୍ତି ।



# ରାଜା ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର

୧୭୯୭ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳ ରାଜା ଦୟାନିଧି ମହୀନ୍ଦ୍ର ବାହାଦୂର ପରଲୋକ ଗମନ କରିବାରୁ ବିଧବାରାଣୀ ଜଗନ୍ନାଥ ଭ୍ରମରବରଙ୍କ ପୁତ୍ର ମାନସିଂହଙ୍କୁ ରାଜଗାଦୀରେ ବସାଇଲେ । କିନ୍ତୁ ମାନସିଂହଙ୍କ ରାଜ୍ୟାଭିଷେକ ପାତ୍ରମନ୍ତ୍ରୀ ସାମନ୍ତ ଓ ଦରବାରୀଙ୍କର ସ୍ୱୀକୃତି ଲାଭ କରିନଥିଲା । ତତ୍‌କ୍ଷଣାତ୍ ଏହି ସମ୍ବାଦ ଭୀମନଗରୀ ଦୁର୍ଗରେ ବାସ କରୁଥିବା ଦୟାନିଧିଙ୍କ କନିଷ୍ଠଭ୍ରାତା ରାମଚନ୍ଦ୍ରଙ୍କ କର୍ଣ୍ଣ ଗୋଚର ହେଲା । ସେ ଦଳବଳ ସହିତ ରାଜଧାନୀରେ ଉପସ୍ଥିତ ହେଲେ । ବିନା ଯୁଦ୍ଧରେ ମାନସିଂହ ତାଙ୍କୁ ସିଂହାସନ ଛାଡ଼ି ଦେଲେ ତଥା ୧୭୯୭ରେ ରାମଚନ୍ଦ୍ର ଢେଙ୍କାନାଳ ରାଜା ଭାବରେ ଗାଦୀ ଆରୋହଣ ପୂର୍ବକ ମହୀନ୍ଦ୍ର ବାହାଦୂର ଉପାଧିରେ ଭୂଷିତ ହେଲେ । ଏ ସମ୍ପର୍କରେ ''ବଳଭଦ୍ର ବୋଲି''ରେ ଉଲ୍ଲେଖ ଅଛି –

ଜଗନ୍ନାଥଙ୍କର ଆଜ୍ଞା ଯେଣୁ ଥିଲା<br>
ତେଣୁ ଭୟ ଦୂର କଲେ,<br>
ଅସୀକି କଷି ବଳରାମ ଉଦେଶି<br>
ପାରିଷଦ ଲୋକ ତୁଲେ ।<br>
କଲେ ରାଜୁତି ପରମ ତୋଷ ମନେ<br>
ମୂଲକକୁ ରକ୍ଷା କଲେ ।<br>
ଶ୍ରୀରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର<br>
ନବାବ ଶିରୋପା ଦେଲେ ।

ରାଜା ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର ରାଜା ହେବା ପରେ ମାନସିଂହଙ୍କ ପୋଷ୍ୟପୁତ୍ର ଶ୍ୟାମସୁନ୍ଦର ଏହାର ପ୍ରତିବାଦ କଲେ । ସେହି ସମୟରେ ମରହଟ୍ଟାମାନେ ଓଡ଼ିଶା ଶାସନ କରୁଥିଲେ । ତେଣୁ ଶ୍ୟାମସୁନ୍ଦର ମରହଟ୍ଟା ଅଧିପତି ରଘୁଜୀ ଭୋନ୍‌ସଲାଙ୍କ ନିକଟରେ ଦରଖାସ୍ତ କଲେ । ରଘୁଜୀ ଭୋନ୍‌ସଲା ଏ ସମ୍ପର୍କରେ ତଦନ୍ତ ପୂର୍ବକ ସବିଶେଷ ରିପୋର୍ଟ ଦାଖଲ କରିବାକୁ ଓଡ଼ିଶାରେ ଅବସ୍ଥାପିତ ମରହଟ୍ଟା ସୁବେଦାର ସଦାଶିବ ରାଓଙ୍କୁ ନିର୍ଦ୍ଦେଶ

ଦେଇଥିଲେ । ରେକର୍ଡ଼ ପତ୍ରରୁ ହୃଦ୍‌ବୋଧ ହୁଏ ସଦାଶିବ ରାଓ ତଦନ୍ତ ରିପୋର୍ଟ ଦାଖଲ କରିବା ପୂର୍ବରୁ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ଏଥିରୁ ଅନୁମତି ହୁଏ, ମରହଟ୍ଟା ଶାସକଙ୍କ ଦ୍ୱାରା ବିବାଦ ମୀମାଂସା ହୋଇପାରିନଥିଲା ।

ଢେଙ୍କାନାଳରେ ୧୭୯୭ରେ ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର ରାଜା ହେବା ସମୟରେ ଓଡ଼ିଶାରେ ମରହଟ୍ଟାମାନଙ୍କ ଶାସନ ଦୁର୍ବଳ ହୋଇଆସୁଥିଲା । ଇଂରେଜ କମ୍ପାନୀର ଲୋଲୁପ ଦୃଷ୍ଟି ଓଡ଼ିଶା ଉପରେ ପଡ଼ିସାରିଥିଲା ତଥା ସେମାନେ ମରହଟ୍ଟାଙ୍କୁ ଓଡ଼ିଶାରେ ଶାନ୍ତିରେ ଶାସନ କରିବାକୁ ଦେଉନଥିଲେ । ସେହି ବର୍ଷ ଇଂରେଜ ସୈନ୍ୟ ଓଡ଼ିଶା ବାଟରେ ଯିବା ନିମିତ୍ତ ଇଂରେଜ ଦୂତ କୋଲ୍‌ବ୍ରୁକ୍ ନାଗପୁର ଯାଇ ରଘୁଜୀ (୨ୟ)ଙ୍କ ଅନୁମତି ଲାଭ କରିଥିଲେ । ସୂଚନାଯୋଗ୍ୟ ତତ୍‌ପୂର୍ବରୁ ରଘୁଜୀ ୧ମଙ୍କ ରାଜତ୍ୱରେ ଇଂରେଜମାନଙ୍କ ସହିତ ମରହଟ୍ଟାମାନଙ୍କର ପ୍ରତିବାଦ ବୃଦ୍ଧି ପାଇଥିଲା । ଦୁର୍ଭାଗ୍ୟର ବିଷୟ, ୧୮୦୦ରେ ନାନା ଫର୍ଣ୍ଣାଡିସ୍‌ଙ୍କ ମୃତ୍ୟୁପରେ ସିନ୍ଧିଆ, ହୋଲ୍‌କାର, ଭୋସଲା ଓ ପେଶୱା ପୁନର୍ବାର ଚାରି ଭାଗ ହୋଇ ମରହଟ୍ଟା ଶକ୍ତି ଦୁର୍ବଳ ହୋଇପଡ଼ିଲା ଇଂରେଜମାନେ ଏହାର ସୁଯୋଗ ନେଇ ଜଣକ ପରେ ଜଣକୁ ପ୍ରତିହତ କଲେ । ଅବଶ୍ୟ ଓଡ଼ିଶା ଶାସକ ରଘୁଜୀ ଭୋଁସଲା ୨ୟଙ୍କର ବିଶାଳ ସେନାବାହିନୀ ଥିଲା । ସେ ଯେତେବେଳେ ଦୌଲତ ରାଓ ସିନ୍ଧିଆଙ୍କ ସହିତ ମିଶି ଇଂରେଜମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥିଲେ ଠିକ୍ ସେହି ସମୟରେ ଇଂରେଜମାନେ ଓଡ଼ିଶା ଅଧିକାରର ଯୋଜନା କରିଥିଲେ । ଇଂରେଜମାନେ ଓଡ଼ିଶାକୁ ତିନି ଆଡୁ ଆକ୍ରମଣ କରିଥିଲେ । ଦକ୍ଷିଣ ଦିଗରୁ ୫୦୦୦ ମାନ୍ଦ୍ରାଜ ସୈନ୍ୟଙ୍କୁ ଧରି କର୍ଣ୍ଣେଲ ହରକୋଟ ସମୁଦ୍ର କୂଳେ କୂଳେ ଚିଲିକାଠାରେ ପହଞ୍ଚିଲେ । ଫୌଜଦାର ଫତେ ଅହମଦ୍ ବିଶ୍ୱାସ ଘାତକତା କରି ଇଂରେଜ ସୈନ୍ୟଙ୍କୁ ବାଟ ଦେଖାଇଦେଲେ । ଇଂରେଜ ସୈନ୍ୟ ଅନାୟାସରେ ପୁରୀ ଦାଖଲ କରି ଗଜପତି ୨ୟ ମୁକୁନ୍ଦ ଦେବଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ । ତତ୍‌ପରେ ଇଂରେଜ ସୈନ୍ୟ ପୁରୀଠାରୁ କଟକ ଆଗମନ କାଳରେ ପିପିଲି ସନ୍ନିକଟ ମୁକୁନ୍ଦପୁରଠାରେ ମରହଟ୍ଟା ସୈନ୍ୟଙ୍କ ସହ ସଂଘର୍ଷ କରିଥିଲେ । ମରହଟ୍ଟା ସୈନ୍ୟ ପରାସ୍ତ ହୋଇ ପଳାୟନ କଲେ । ୧୮୦୩ ଅକ୍ଟୋବର ୮ ତାରିଖରେ ଇଂରେଜ ବାହିନୀ କଟକରେ ପହଞ୍ଚିଲେ । ଇଂରେଜ ସୈନ୍ୟଙ୍କ ଭୟରେ ଅଗଣିତ କଟକବାସୀ ଟାଙ୍ଗୀ, ଚୌଦ୍ୱାର ପ୍ରଭୃତି ସ୍ଥାନକୁ ସପରିବାର ପଳାଇଥିଲେ । ଅକ୍ଟୋବର ୧୪ରେ ଇଂରେଜମାନେ

ବାରବାଟୀ ଦୁର୍ଗ ଦଖଲ କଲେ । ଉତ୍ତର ପଟୁ ଆସିଥିବା ଇଂରେଜବାହିନୀ ବାଲେଶ୍ୱର, ସୋରୋ, ଭଦ୍ରକ ଓ ଯାଜପୁର ପ୍ରଭୃତି ଅଞ୍ଚଳ ଦଖଲ କରିଥିଲେ । କର୍ଣ୍ଣେଲ ଫର୍ଗୁସନଙ୍କ ନେତୃତ୍ୱରେ ଇଂରେଜ ବାହିନୀ କୁଜଙ୍ଗ, ହରିଶ୍ପୁର, କନିକା ପ୍ରଭୃତି ଉପକୂଳ ଅଞ୍ଚଳ ଦଖଲ କଲେ । ମୋଟ ଉପରେ ଉଲ୍ଲେଖ କଲେ ଇଂରେଜମାନେ ଅନାୟାସରେ ୧୮୦୩ ମସିହାରେ ଓଡ଼ିଶାକୁ ଚତୁର୍ଦ୍ଦିଗରୁ ଅଧିକାର କରିଗଲେ । ଠିକ୍ ସେତିକିବେଳେ ରଘୁଜୀ ଭୋଁସଲା ଯୁଦ୍ଧରେ ହାରିଯାଇ ଦେଓଗାଁଠାରେ ସନ୍ଧିଚୁକ୍ତି ସଂପାଦନ ପୂର୍ବକ ଇଂରେଜମାନଙ୍କୁ ଓଡ଼ିଶା ପ୍ରଦେଶ କଟକ ସହିତ ବାଲେଶ୍ୱର ବନ୍ଦର ଛାଡ଼ିଦେଲେ । ତତ୍‌ପରେ ଧୀରେ ଧୀରେ ସମ୍ବଲପୁର ସହିତ ଅନ୍ୟାନ୍ୟ ଗଡ଼ଜାତ ମଧ୍ୟ ଇଂରେଜ ଶାସନାଧୀନ ହେଲା ।

ଓଡ଼ିଶାର ଏହି ଦୁର୍ଦ୍ଦିନରେ ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର ଢେଙ୍କାନାଳ ରାଜଗାଦୀ ଆରୋହଣ କଲେ । ପ୍ରାଥମିକ ପର୍ଯ୍ୟାୟରେ ତାଙ୍କୁ ଶ୍ୟାମସୁନ୍ଦରଙ୍କ ସହିତ ସଂଘର୍ଷ କରିବାକୁ ପଡ଼ିଲା । ରାଜା ହେବା ପୂର୍ବରୁ ପ୍ରବଳ ପ୍ରତାପୀ ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ୨ୟ ପୁତ୍ର ରାୟ ସାହେବ ଭାବରେ ତାଙ୍କର ସୁଖ୍ୟାତି ରହିଥିଲା ଏବଂ ଆପଣାର ପ୍ରତିଭା ବଳରେ ସେ ଜ୍ୟେଷ୍ଠଭ୍ରାତ ଦୟାନିଧିଙ୍କ ରାଜତ୍ୱରେ ରାଜ୍ୟର ସେନାଧକ୍ଷ ପଦବୀରେ ଅଧିଷ୍ଠିତ ଥିଲେ । ଶ୍ୟାମ ସୁନ୍ଦର ଦୟାନିଧିଙ୍କ ପୋଷ୍ୟପୁତ୍ର ମାନସିଂହଙ୍କ ପୋଷ୍ୟପୁତ୍ର ହେଲେ ହେଁ ରାଜପରିଷଦ, ପାତ୍ର, ମନ୍ତ୍ରୀ, ଅମାତ୍ୟ, ରାଜପଣ୍ଡିତ ସଭିଁଏ ରାମଚନ୍ଦ୍ରଙ୍କ ସପକ୍ଷରେ ଥିଲେ । ତେଣୁ ଶ୍ୟାମସୁନ୍ଦର ନାଗପୁରର ରଘୁଜୀ ଭୋଁସଲାଙ୍କ ନିକଟରେ ନ୍ୟାୟ ପ୍ରାର୍ଥନା କରିଥିଲେ । ଇଂରେଜମାନଙ୍କ ଓଡ଼ିଶା ଅଧିକାର ଫଳରେ ସେ ଅନ୍ୟୋନ୍ୟପାୟ ହୋଇ ହିନ୍ଦୋଳ ରାଜାନୁଗ୍ରହ ଲାଭ ପୂର୍ବକ ହିନ୍ଦୋଳରେ ନିବାସ କଲେ । ତଥାପି ରାଜା ରାମଚନ୍ଦ୍ର ନିଷ୍କଣ୍ଟକ ରାଜ୍ୟ ଭୋଗ କରି ପାରିଲେ ନାହିଁ । ଇଂରେଜମାନଙ୍କର ଲୋଲୁପ ଦୃଷ୍ଟି ଢେଙ୍କାନାଳ ଉପରେ ପଡ଼ିଲା । କାରଣ ସେହି ସମୟରେ ଢେଙ୍କାନାଳରୁ ଝୁଣା, ଲାଖ, ମହୁ, ମହଣ ପ୍ରଭୃତି ପ୍ରଚୁର ଜଙ୍ଗଲଜାତ ଦ୍ରବ୍ୟ ବ୍ରାହ୍ମଣୀ ନଦୀ ପଥରେ ଚାନ୍ଦବାଲି ବନ୍ଦରକୁ ଯିବାର ସୁବିଧା ଥିଲା । ବଣିକ ଇଂରେଜ ଜାତି ଠିକ୍ ଏହି କାରଣରୁ ଢେଙ୍କାନାଳକୁ ଶାସନଭୁକ୍ତ କରିବାର ମସୁଧା ଚଳାଇଲେ । ଇଂରେଜମାନେ ବାରବାଟୀ ଦୁର୍ଗ ଅଧିକାର କରିବା ପରେ ସମସ୍ତ ଜମିଦାର ଓ କାନୁନ୍‌ଗୋମାନଙ୍କୁ ଖଜଣା ଅସୁଲ ପୂର୍ବକ୍ ଦାଖଲ କରିବାକୁ ନିର୍ଦ୍ଦେଶ

ପ୍ରଦାନ କରିଥିଲେ । ଜମିଦାରଙ୍କ ସହିତ ଗଡ଼ଜାତ ରାଜାମାନଙ୍କୁ ମଧ୍ୟ ଡକାଇ ସର୍ତ୍ତାବଳୀ ଦସ୍ତଖତ କରାଇବା ଓ ନିର୍ଦ୍ଦିଷ୍ଟ ପରିମାଣର ରାଜସ୍ୱ ଦାଖଲ କରିବାକୁ ଅଙ୍ଗୀକାରବଦ୍ଧ କରାଇଥିଲେ । ଉଲ୍ଲେଖଯୋଗ୍ୟ ଯେ ସମସ୍ତ ଗଡ଼ଜାତ ରାଜାମାନଙ୍କ ଚୁକ୍ତିପତ୍ର ସମାନ ନଥିଲା । ଏହି ଚୁକ୍ତିପତ୍ର ଗୁଡ଼ିକରେ ସଂପୃକ୍ତ ରାଜ୍ୟର ରାଜା ଓ ଇଷ୍ଟଇଣ୍ଡିଆ କମ୍ପାନୀ ତରଫରୁ କର୍ଣ୍ଣେଲ ହାରକୋଟ ଏବଂ ମେଲ୍‌ଭିଲ୍ ସ୍ୱାକ୍ଷର କରିଥିଲେ । ତଦନୁସାରେ ଢେଙ୍କାନାଳ ରାଜା ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂରଙ୍କୁ ମଧ୍ୟ ତଲବ କରାଯାଇଥିଲା । ସୈନ୍ୟ ସାମନ୍ତ ସହ ଢେଙ୍କାନାଳାଧୀଶୂର କଟକରେ ପହଞ୍ଚିବାରୁ ପ୍ରଥମେ କର୍ଣ୍ଣେଲ ହାରକୋର୍ଟ ଭୀତତ୍ରସ୍ତ ହୋଇଥିଲେ । କିନ୍ତୁ ରାଜାଙ୍କ ସେପରି ଦୁରଭିସନ୍ଧି ନାହିଁ ବୋଲି ଜାଣିବାରୁ ସସମ୍ମାନେ ତାଙ୍କୁ ପାଛୋଟି ନେଲେ । ୧୮୦୩ ମସିହା ନଭେମ୍ବର ୨୪ ତାରିଖରେ ଢେଙ୍କାନାଳ ରାଜା ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର ଓ ଇଷ୍ଟଇଣ୍ଡିଆ କମ୍ପାନୀର ଓଡ଼ିଶା ପ୍ରଦେଶ କମିଶନର ହାର୍‌କୋର୍ଟ ଓ ମେଲ୍‌ଭିଲ୍‌ଙ୍କ ମଧ୍ୟରେ "The Treaty Engagement" ନାମରେ ଏକ ଚୁକ୍ତି କଟକଠାରେ ସଂପାଦିତ ହୋଇଥିଲା । ସେହି ଚୁକ୍ତିର କ୍ରିୟଦଂଶ ନିମ୍ନରେ ପ୍ରଦତ୍ତ ହେଲା ।

Treaty Engagement executed by the Raja of Kila Dhenkanal. Tributary Mahal sub-ordinate to Cuttack to the Honourabe East India companys sepcial commssioner for the soobha of orissa, messrs. Har Court and Melville - 1803.

"I Rama Chandra Mahindra Bahadur, Raja of Killa Dhenkanal of Orissa engage faithfully and correctly to abide by the engagement enter into the following caluses." ଏହି ସନ୍ଧିପତ୍ରରେ ସମୁଦାୟ ଛଅ ଗୋଟି ଧାରା ଥିଲା । ଏଥିରୁ ଦ୍ୱିତୀୟଧାରା ଅନୁଯାୟୀ ଢେଙ୍କାନାଳ ରାଜା ବାର୍ଷିକ ୨୩,୧୨୫ କାହାଣ କଉଡ଼ି ଇଷ୍ଟଇଣ୍ଡିଆ କମ୍ପାନୀକୁ ପ୍ରତିବର୍ଷ ତିନିଗୋଟି କିସ୍ତିରେ ପଇଠ କରିବାକୁ ଉଲ୍ଲେଖ ରହିଥିଲା । ଏହା ଇଷ୍ଟଇଣ୍ଡିଆ କମ୍ପାନୀର ପ୍ରଥମ ସନନ୍ଦ । ଏହି ସନନ୍ଦରେ କଉଡ଼ି ଉଲ୍ଲେଖ ଥିବାରୁ ପ୍ରମାଣିତ ହୁଏ, ୧୮୦୩ ପର୍ଯ୍ୟନ୍ତ ଢେଙ୍କାନାଳରେ ମୁଦ୍ରାର ବ୍ୟବହାର ହୋଇନଥିଲା । କିନ୍ତୁ ତତ୍‌ପୂର୍ବରୁ କବି ବ୍ରଜନାଥ ବଡ଼ଜେନାଙ୍କ ରଚନାରୁ ହୃଦ୍‌ବୋଧ ହୁଏ ରାଜ୍ୟରେ ଟଙ୍କାର ପ୍ରଚଳନ ଥିଲା । ଅତଏବ, ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ, ରାଜା, ସାମନ୍ତ ଓ ଧନୀ ପରିବାରରେ ଟଙ୍କାର କାରବାର ଥିଲେ ହେଁ

ସର୍ବସାଧାରଣରେ କଉଡ଼ିକୁ ମୁଦ୍ରା ରୂପେ ବ୍ୟବହାର କରାଯାଉଥିଲା । ଇଂରେଜ ରାଜତ୍ୱ ପରେ କଉଡ଼ିର ବ୍ୟବହାର କମି ଟଙ୍କା ପଇସାର ଆଦର ବଢ଼ିଥିଲା । ରାଜା ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର ସନ୍ଧି ସ୍ୱାକ୍ଷର କରିବା ପରେ ଢେଙ୍କାନାଳ ରାଜ୍ୟ ବ୍ରିଟିଶ୍ ଶାସନଭୁକ୍ତ ହେଲା । ପରବର୍ତ୍ତୀ କାଳରେ ୧୯୨୩-୨୪ ମସିହାରେ ପ୍ରକାଶିତ ରିଭିଜନ୍ ବନ୍ଦୋବସ୍ତର Final reportରେ ଉଲ୍ଲେଖ ଅଛି :

Raja Ramachandra Mahindra Bahadur, younger brother of Raja Dayanidhi took gadi from Manassingh in 1796. A.D. and ruled the state upto 1807. He made agreement in 1804 with the first British commissoner of Odisha under East India Comapany received sananda from them. (Final Reports Settlement, Dhenkanal 1924)

ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ୧୮୦୪ ମସିହାରୁ ଢେଙ୍କାନାଳ ରାଜ୍ୟ ଇଂରେଜଶାସନାଧୀନ ହେଲା । ବାବାଜୀ ରାମଦାସଙ୍କ ରଚିତ ''ବଳଭଦ୍ର ବୋଲି''ରେ ଉଲ୍ଲେଖ ରହିଛି ।

''ତାଙ୍କ ରାଜତ୍ୱରେ ସାହେବ ଆସିଣ କଟକକୁ ଭୋଗ କରି,
ଓଡ଼ିଶା ରାଜାଙ୍କ ସଙ୍ଗେ ଯୁଦ୍ଧ କରି ବିବାଦରେ ନେଲା ଧରି ।
ରାଜା ମହୀନ୍ଦ୍ର ବାହାଦୂର ବିଚାର କଲେ ଆପଣା ମନର,
ମୂଳକ ରଖିବା ଭୋଗ ତ କରିବା ଗରିମା ରହିବ ମୋର ।
ସୈନ୍ୟଦଳ ଘେନି ସଙ୍ଗରେ ରାଜନ କଟକକୁ ବିଜେ କଲେ,
ସାହେବ ମନରେ ଯେତେ ଶଙ୍କା ଥିଲା ପାଛୋଟି ଘେନିଣ ଗଲେ ।''

ଉପରୋକ୍ତ ଉକ୍ତିରୁ ହୃଦ୍‌ବୋଧ ହୁଏ, ଇଂରେଜ କର୍ଣ୍ଣେଲ ହାରକୋଟ ଢେଙ୍କାନାଳର ବୀରତ୍ୱ ସମ୍ପର୍କରେ ଅବଗତ ଥିଲେ ଏବଂ ମାତ୍ର କୋଡ଼ିଏ ବର୍ଷ ପୂର୍ବରୁ ଢେଙ୍କାନାଳ ବାହିନୀଦ୍ୱାରା ବିଶାଳ ମରହଟ୍ଟା ବାହିନୀ ପରାସ୍ତ ପ୍ରସଙ୍ଗ ଶୁଣିଥିଲେ । ତେଣୁ ସେ ଚାହୁଁଥିଲେ ଢେଙ୍କାନାଳ ରାଜ୍ୟକୁ ତୁରନ୍ତ ଇଂରେଜ ଶାସନାଧୀନ କରିବା ପାଇଁ । ଓଡ଼ିଶାର ଅନ୍ୟାନ୍ୟ ଗଡ଼ଜାତ ରାଜାଙ୍କ ବଶ୍ୟତା ସ୍ୱୀକାର କରିବା ଦେଖି ଢେଙ୍କାନାଳ ରାଜା ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର ରାଜକୀୟ ମର୍ଯ୍ୟାଦାରେ ସନ୍ଧି ଚୁକ୍ତି ସଂପାଦନ ନିମିତ୍ତ ଯାଇଥିଲେ । ଦୂରରୁ ତାଙ୍କର ସୈନ୍ୟ ସାମନ୍ତ ଦେଖି କର୍ଣ୍ଣେଲ ହାର୍‌କୋଟ ଶଙ୍କା କରିଥିଲେ ହେଁ, ରାଜକୀୟ ମର୍ଯ୍ୟାଦାରେ ତାଙ୍କୁ ପାଛୋଟି ନେଇଥିଲେ । ପୂର୍ବରୁ ପରାଧୀନ ହୋଇନଥିବା

ଢେଙ୍କାନାଳ ୧୮୦୪ ମସିହାରେ ଇଂରେଜ ଶାସନାଧୀନ ହେଲା । ରାଜା ରାମଚନ୍ଦ୍ର ଇଂରେଜଙ୍କ ଅଧୀନରେ ଜଣେ ପ୍ରଥମ ଶ୍ରେଣୀୟ କରଦ ରାଜା ଭାବରେ ୧୮୦୪ ମସିହାରୁ ରାଜ୍ୟ ଶାସନ କଲେ ।

୧୮୦୪ରେ ଇଂରେଜମାନେ ଢେଙ୍କାନାଳ ଅଧିକାର କରିବା ସମୟରେ ସମଗ୍ର ଢେଙ୍କାନାଳ ରାଜ୍ୟର କ୍ଷେତ୍ରଫଳ ୧୪୩୭ ବର୍ଗ ମାଇଲ ଥିଲା । ରାଜ୍ୟର ଗ୍ରାମସଂଖ୍ୟା ଥିଲା ୯୮୩ । ସମଗ୍ର ଢେଙ୍କାନାଳ ରାଜ୍ୟ ୨୪ ଗୋଟି ପ୍ରଗଣା ବା ବିଷୟରେ ବିଭକ୍ତ ଥିଲା । ୯୮୩ ଗୋଟି ଗ୍ରାମ ମଧ୍ୟରୁ ୧୪୨ଟି ଗ୍ରାମ ଦେବତା, ବ୍ରାହ୍ମଣ ଓ ସାଧୁସନ୍ଥଙ୍କୁ ଦାନ କରାଯାଇଥିବାରୁ ଏଗୁଡ଼ିକ ନିଷ୍କର ଗ୍ରାମ ଥିଲା । ପାତ୍ର, ମନ୍ତ୍ରୀ, ସାମନ୍ତ ଓ ଅନ୍ୟାନ୍ୟ ସାମରିକ ପଦବୀ ଧାରୀ ନିଷ୍କର ଜମି ଭୋଗ କରୁଥିଲେ । ଜଙ୍ଗଲ, ପର୍ବତ, ନଦୀ, ଜଳାଶୟ, ରାସ୍ତା, ଗୋଚର, ଶ୍ମଶାନ, ମଠ, ମନ୍ଦିର ପ୍ରଭୃତି ସାର୍ବଜନୀନ ଭୂମି ଉପରେ କର ଲାଗୁନଥିଲା । ଅନ୍ୟାନ୍ୟ ଚାଷ ଜମିରୁ ସର୍ବମୋଟ ୯୦ ହଜାର କାହାଣ କଉଡ଼ି ରାଜସ୍ୱ ଆକାରରେ ଆଦାୟ ଦେଉଥିଲା । ତନ୍ମଧ୍ୟରୁ ରାଜାଙ୍କୁ ପେସ୍‌କସ୍ ଭାବରେ ଇଷ୍ଟଇଣ୍ଡିଆ କମ୍ପାନୀଙ୍କୁ ୨୩,୧୭୫ କାହାଣ କଉଡ଼ି ୩ କିସ୍ତିରେ ଦେବାକୁ ପଡୁଥିଲା । ପ୍ରଜାମାନଙ୍କଠାରୁ କର ଆଦାୟ କରିବା ନିମିତ୍ତ ସର୍ବରାକାର ବା ପଧାନ ରହିଥିଲେ । ସେମାନଙ୍କ କାର୍ଯ୍ୟ ତଦାରଖ ନିମିତ୍ତ ପ୍ରତି ବିଷରେ ଜଣେ ଲେଖାଏଁ ବେହେରା ପଧାନ ରହିଥିଲେ । ଚୌକୀଦାରମାନେ ଗ୍ରାମର ଶାନ୍ତି ରକ୍ଷା ଦାୟିତ୍ୱରେ ଥିଲେ । ପ୍ରଜାମାନଙ୍କଠାରୁ ଦୁଇ କିସ୍ତିରେ କଉଡ଼ି ବା ଶସ୍ୟାକାରରେ ରାଜସ୍ୱ ଆଦାୟ ହେଉଥିଲା । କୌଣସି ବନ୍ଦୋବସ୍ତ ହୋଇନଥିବାରୁ ପ୍ରଜାମାନେ ହଳ ସଂଖ୍ୟା ଅନୁସାରେ ରାଜସ୍ୱ ଦେଉଥିଲେ । ରାଜସ୍ୱ ଆଦାୟ ପରେ ରାଜାଙ୍କ ଦ୍ୱାରା କଟକ କମିଶନରଙ୍କ ନିକଟକୁ କମ୍ପାନୀର ପେସ୍‌କସ୍ ପଠାଯାଉଥିଲା । ରାଜ୍ୟର ଆଭ୍ୟନ୍ତରୀଣ ଅଞ୍ଚଳରେ ଇଂରେଜ ରାଜତ୍ୱର ପ୍ରଭାବ ପଡ଼ିନଥିଲା ।

ରାମଚନ୍ଦ୍ରଙ୍କ ରାଜତ୍ୱ ପୂର୍ବରୁ କବି ବ୍ରଜନାଥ ବଡ଼ଜେନାଙ୍କ ଦ୍ୱାରା ରଚିତ ଶ୍ୟାମାରାସୋତ୍ସବ, ଗୋପୀ ବିଳାପ ପ୍ରଭୃତି ବୈଷ୍ଣବ କାବ୍ୟ ତଥା ଭକ୍ତକବି ଦୀନକୃଷ୍ଣଙ୍କ ରଚିତ ବୈଷ୍ଣବ କାବ୍ୟ ସମୂହର ପ୍ରଭାବରେ ଢେଙ୍କାନାଳରେ ବୈଷ୍ଣବଧର୍ମର ପ୍ରାବଲ୍ୟ ବୃଦ୍ଧି ହୋଇଥିଲା । ରାଜା ରାମଚନ୍ଦ୍ର ଶ୍ରୀ ବୃନ୍ଦାବନ ଚନ୍ଦ୍ର ଓ ଶ୍ରୀ ବଳଦେବ ଜୀଉଙ୍କର ଭକ୍ତ ଥିଲେ । ସେ ବଳଦେବ ଜୀଉ ମନ୍ଦିରର ଚତୁଃପାର୍ଶ୍ୱ ବେଢ଼ ଭିତର ମଣ୍ଡପ, ଗୁମୁଟଘର ନିର୍ମାଣ କରିଥିଲେ । ବଳଦେବ

ଜୀଉ ମନ୍ଦିରସ୍ଥ ଶ୍ରୀ ମଦନ ମୋହନଙ୍କର ଦୋଳଯାତ୍ରାକୁ ସେ ମହାସମାରୋହରେ ପାଳନ କରିଥିଲେ । ତାଙ୍କ ରାଜତ୍ୱରେ ମାଣ୍ଡପା ସାହିରେ ଦୋଳଯାତ୍ରା ପଡ଼ିଆରେ ଦୋଳମଣ୍ଡପ ନିର୍ମିତ । ରାଜା ରାମଚନ୍ଦ୍ର ବଳଦେବଜୀଉ ମନ୍ଦିରର ଚୂର୍ଣ୍ଣଲେପନ କରାଇଥିଲେ । ସେ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇବା ସହିତ ରାଜପ୍ରାସାଦସ୍ଥ ଶ୍ରୀ ରଘୁନାଥ ମନ୍ଦିରରେ ଲକ୍ଷ୍ମଣ ମୂର୍ତ୍ତି ଅଧିଷ୍ଠିତ କରାଇଥିଲେ । ଶ୍ରୀ ଶମ୍ଭୁଗୋପାଳ ମନ୍ଦରିରେ ସେ ନୀଳଚକ୍ର ବସାଇଥିଲେ ଓ ରାଜପ୍ରାସାଦ ସମ୍ମୁଖସ୍ଥ ପ୍ରକାଣ୍ଡକାୟ ସିଂହ ଦୁଇଟି ତାଙ୍କରି କୀର୍ତ୍ତି । ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ର ସ୍ୱରଚିତ ''ଭଗୀରଥ କୀର୍ତ୍ତିକଳାପ''ରେ ରାଜା ରାମଚନ୍ଦ୍ରଙ୍କ ବିଷୟରେ ଲେଖିଛନ୍ତି –

ଚୂର୍ଣ୍ଣ ଲଗାଇ ଦେବାଳୟରେ,
ବେଢ଼ାଏ ତହିଁ କରିଣ ଗଲେ ।
ଜଗନ୍ନାଥ ମଣ୍ଡପ ପଥରରେ କଲେ ନିର୍ମାଣ ଯେ
ଲକ୍ଷ୍ମଣ ଠାକୁରଙ୍କୁ ଗଢ଼ାଇ, ଶମ୍ଭୁଗୋପାଳେ ଚକ୍ର ବସାଇ
ଦୋଳମଣ୍ଡପ ସ୍ଥିତ କରାଇଥିଲେ ସେ ଜାଣ ସେ
ନଅର ଦ୍ୱାରରେ ସିଂହ ବସାଇଲେ ସେ
ବର୍ଷ ଦଶ ଛ ମାସ କାୟା ଛାଡ଼ିଲେ ସେ

ରାଜା ରାମଚନ୍ଦ୍ରଙ୍କ ସମ୍ପର୍କରେ ''ବଳଭଦ୍ର ବୋଲି''ରେ ଉଲ୍ଲେଖ କରାଯାଇଛି :

''ତାଙ୍କ ରାଜତ୍ୱରେ ଶ୍ରୀବଳଦେବଙ୍କ ମନ୍ଦିରରେ ଚୂନ ଦେଇ,
ଭକ୍ତି ରସରେ ନାନା କଥା କୁହନ୍ତି ବିଷ୍ଣୁ ପାଦପଦ୍ମେ ଧ୍ୟାଇ ।''

ଦୀର୍ଘ ଦଶବର୍ଷରୁ ଉର୍ଦ୍ଧ୍ୱକାଳ ଶାସନ କରିବା ପରେ ଶେଷ ଜୀବନ ରାଜା ରାମଚନ୍ଦ୍ର ଧର୍ମକାର୍ଯ୍ୟରେ ମନ ଦେଇଥିଲେ । ବିଭିନ୍ନ ମଠ ମନ୍ଦିର ନିର୍ମାଣ ଓ ମରାମତି କରିବା ସହିତ ସେ ରାଜପୁରୋଧା ବିଶେଶ୍ୱର ବଡ଼ପଣ୍ଡା, ମାର୍ଥାପୁର ଶାସନସ୍ଥ ରାଜପଣ୍ଡିତ ଜଗନ୍ନାଥ ବ୍ରହ୍ମା, ମୁଣ୍ଡଇଲୋ ବଳଭଦ୍ରପୁର ଶାସନର ପଣ୍ଡିତ ଗଦାଧର ବାହିନୀପତିଙ୍କୁ ଭୂସମ୍ପତ୍ତି ଦାନ କରିଥିଲେ । କେତେକ ଶ୍ରୋତ୍ରିୟ ବ୍ରାହ୍ମଣଙ୍କୁ ରାଜସ୍ୱ ଗ୍ରାମ ପ୍ରଦାନ କରି ସେ ନିଜ ନାମରେ ରାମଚନ୍ଦ୍ର ପୁର ନାମକ ଶାସନ ଗଁଦିଆ ଗ୍ରାମର ଉତ୍ତର ଦିଗରେ ବସାଇଥିଲେ । ଏତଦ୍‌ବିଭିନ୍ନ ସେ ଜକିଆ, ଧନାବୋଲକାଟେଣୀରେ ବୈଷ୍ଣବଙ୍କୁ ଜମିଦାନ ପୂର୍ବକ ମଠ ବସାଇଥିଲେ ।

ରାଜ ରାମଚନ୍ଦ୍ରଙ୍କ ଶେଷ ଜୀବନ କିନ୍ତୁ ଦୁଃଖରେ କଟିଥିଲା । ତାଙ୍କ ଔରସରୁ ପାଟରାଣୀଙ୍କର କୌଣସି ସନ୍ତାନ ନଥିଲେ ହେଁ ଉପପତ୍ନୀଙ୍କର କୃଷ୍ଣଚନ୍ଦ୍ର ନାମରେ ପୁତ୍ରଟିଏ ଥିଲା । ସେ ଉଦ୍ଧତ ଓ ଦୁଷ୍ଟ ପ୍ରକୃତିର ଥିବାରୁ ରାଜାଙ୍କର ପ୍ରୀତିଭାଜନ ହୋଇପାରି ନଥିଲା । ଏଥି ନିମିତ୍ତ ରାଜାଙ୍କ ମନରେ ସର୍ବଦା ବିଷାଦ ଭରି ରହିଥିଲେ । ହଠାତ୍ ୧୮୦୭ ମସିହାରେ ରାଜା ଅସୁସ୍ଥ ହୋଇପଡ଼ିଲେ । ଉପପତ୍ନୀପୁତ୍ର କୃଷ୍ଣଚନ୍ଦ୍ର ତାଙ୍କର ବିଶ୍ୱାସଭାଜନ ନ ହେବାରୁ ସେ ପୂର୍ବତନ ରାଜା ମାନସିଂହଙ୍କ ପୋଷ୍ୟପୁତ୍ର ଶ୍ୟାମସୁନ୍ଦରଙ୍କ ନିକଟକୁ ଦୂତ ଓ ସନ୍ଦେଶ ପଠାଇଲେ । ସେହି ସମୟରେ ଶ୍ୟାମସୁନ୍ଦର ହିନ୍ଦୋଳ ରାଜ୍ୟରେ ଆଶ୍ରୟ ନେଇଥିଲେ । ଦୂତ ହିନ୍ଦୋଳରେ ପହଞ୍ଚିବା ପୂର୍ବରୁ ଶ୍ୟାମସୁନ୍ଦର ତିଗିରିଆ ଚାଲି ଯାଇଥିଲେ । ଦୂତ ଫେରି ଆସିବା ପରେ ରାଜା ରାମଚନ୍ଦ୍ର ଭବିଷ୍ୟତ ଦ୍ୱନ୍ଦ୍ୱ ଆଶଙ୍କାରେ ପାତ୍ର ମନ୍ତ୍ରୀ, ସାମନ୍ତ, ବକ୍ସି ଓ ରାଜପଣ୍ଡିତଙ୍କୁ ଡକାଇ ନିଷ୍ପତ୍ତି ନେଲେ ଯେ, ତାଙ୍କ ପରେ ଶ୍ୟାମ ସୁନ୍ଦର ଢେଙ୍କାନାଳ ରାଜା ହେବେ । ରାଜାଙ୍କ ଆଦେଶରେ ମନ୍ତ୍ରୀ ପାଟସୁବୁଦ୍ଧି ଓ ବକ୍ସି ରତ୍ନାକର ଶ୍ରୀଚନ୍ଦନ ସସମ୍ମାନେ ଶ୍ୟାମସୁନ୍ଦରଙ୍କୁ ରାଜ୍ୟକୁ ପାଛୋଟି ଆଣିବାକୁ ପାଟହାତୀ ଓ ଶିରୋପା ନେଇ ତିଗିରିଆ ଗଲେ । ସେମାନଙ୍କ ପ୍ରତ୍ୟାବର୍ତ୍ତନ ପୂର୍ବରୁ ୧୮୦୭ ମସିହାରେ ରାଜା ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର ପରଲୋକ ଗମନ କଲେ ।

ରାଜା ରାମଚନ୍ଦ୍ର ଜଣେ ସାହସୀ, ବୁଦ୍ଧିମାନ୍, ବୀର, ପ୍ରତାପୀ ଓ ଧର୍ମପରାୟଣ ପ୍ରଜାବତ୍ସଳ ରାଜା ଥିଲେ । ସେ ୧୭୯୬ଠାରୁ ୧୮୦୭ ପର୍ଯ୍ୟନ୍ତ ପ୍ରାୟ ୧୧ ବର୍ଷ ରାଜତ୍ୱ କରିଥିଲେ । ତାଙ୍କ ରାଜତ୍ୱରେ ୧୮୦୪ ମସିହାରେ ଢେଙ୍କାନାଳ ଇଂରେଜ ଶାସନାଧୀନ ହେଲା । ଶାସନର ଅସ୍ଥିରତା ସତ୍ତ୍ୱେ ରାମଚନ୍ଦ୍ର ଜନୈକ ସୁଶାସକ ଭାବରେ ଖ୍ୟାତି ଅର୍ଜନ କରିବା ସହିତ ଅନେକ କୀର୍ତ୍ତି ରଖିଯାଇଛନ୍ତି ।



# ରାଜା କୃଷ୍ଣଚନ୍ଦ୍ର ମହୀନ୍ଦ୍ର ବାହାଦୂର

ପାତ୍ରମନ୍ତୀ ଶ୍ୟାମସୁନ୍ଦରଙ୍କୁ ସମ୍ମାନର ସହ ରାଜ୍ୟକୁ ଫେରାଇ ଆଣିବାକୁ ଯାଇଥିବା ସମୟରେ ୧୮୦୭ ମସିହାରେ ରାଜା ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂର ଅକାଳରେ ପରଲୋକ ଗମନ କଲେ । ରାଜାଙ୍କର ଏହି ଆକସ୍ମିକ ବିୟୋଗ ତଥା ମନ୍ତ୍ରୀ ଓ ବକ୍‌ସିଙ୍କ ଅନୁପସ୍ଥିତିର ସୁଯୋଗ ନେଇରାମଚନ୍ଦ୍ରଙ୍କ ଉପପତ୍ନୀ ପୁତ୍ର କୃଷ୍ଣଚନ୍ଦ୍ର ସିଂହ ଢେଙ୍କାନାଳ ରାଜସିଂହାସନ ଅଧିକାର କଲେ । କୃଷ୍ଣଚନ୍ଦ୍ରଙ୍କୁ ରାଜା କରିବା ପରଲୋକଗତ ରାଜାଙ୍କର ଇଚ୍ଛା ନଥିଲା । ତେଣୁ କୃଷ୍ଣଚନ୍ଦ୍ରଙ୍କ ସିଂହାସନ ଅଧିକାର ସାମନ୍ତ ଓ ଅମାତ୍ୟବର୍ଗ ସହ୍ୟ କରିପାରିଲେ ନାହିଁ । ରାଜପୁରୋଧା ପଣ୍ଡିତ ବିଶେଶ୍ୱର ବଡ଼ପଣ୍ଡା ତଥା ରାଜପଣ୍ଡିତ ପିଣ୍ଡିକି ରାୟଗୁରୁ କୃଷ୍ଣଚନ୍ଦ୍ରଙ୍କୁ ରାଜା ଭାବେ ସ୍ୱୀକାର କଲେ ନାହିଁ । ଫଳରେ ରାଜ୍ୟରେ ବିଶୃଙ୍ଖଳା ସୃଷ୍ଟି ହେଲା । କୃଷ୍ଣଚନ୍ଦ୍ର ଦୃଢ଼ ହସ୍ତରେ ବିଦ୍ରୋହ ଦମନ କଲେ । ତାଙ୍କ ଆଦେଶରେ ଶ୍ୟାମସୁନ୍ଦରଙ୍କୁ ନିମନ୍ତ୍ରଣ କରିବାକୁ ଯାଇଥିବା ମନ୍ତ୍ରୀ ପାଟ ସୁବୁଦ୍ଧି ଓ ବକ୍‌ସି ରତ୍ନାକର ଶ୍ରୀଚନ୍ଦନଙ୍କୁ ତିଗିରିଆ ପହଞ୍ଚିବା ପୂର୍ବରୁ ବାଟରେ ବନ୍ଦୀ କରାଯାଇ ଢେଙ୍କାନାଳ ଅଣାଗଲା । ଅନ୍ୟାନ୍ୟ ବିଦ୍ରୋହୀମାନଙ୍କୁ ମଧ୍ୟ ବନ୍ଦୀ କରାଗଲା । କୃଷ୍ଣଚନ୍ଦ୍ର ଏକରକମ ରାଜ୍ୟରେ ଆତଙ୍କ ସୃଷ୍ଟି କଲେ । କିନ୍ତୁ ସେ ରାଜପୁରୋଧା ଓ ରାଜପଣ୍ଡିତଙ୍କ ବିପକ୍ଷରେ ନଯାଇ ରାଜ୍ୟରକ୍ଷା ନିମିତ୍ତ ତାଙ୍କୁ ରାଜା ଭାବେ ସ୍ୱୀକୃତ ଓ ଅଭିଷେକ କରାଇବାକୁ ପ୍ରାର୍ଥନା କରିଥିଲେ । ପ୍ରଜାମାନଙ୍କୁ ସେ ଭୟଭୀତ ନକରି ରାଜକର୍ମଚାରୀ ମାନଙ୍କୁ ବଶ୍ୟତା ସ୍ୱୀକାର କରିବାକୁ ବାଧ୍ୟ କରିଥିଲେ । ଯେଉଁ କର୍ମଚାରୀ ଏଥିରେ ରାଜି ନ ହେଲେ ସେମାନଙ୍କୁ ବନ୍ଦୀ କରାଗଲା । ମନ୍ତ୍ରୀ ପାଟସୁବୁଦ୍ଧି ଓ ବକ୍‌ସି ରତ୍ନାକର ଶ୍ରୀଚନ୍ଦନ କୃଷ୍ଣଚନ୍ଦ୍ରଙ୍କ ପକ୍ଷ ସମର୍ଥନ କରିବାକୁ ଅସ୍ୱୀକାର କରିବାରୁ ତାଙ୍କ ନିର୍ମମ ଭାବରେ ହତ୍ୟା କରାଗଲା । ଫଳରେ ଅନ୍ୟାନ୍ୟ ରାଜକର୍ମଚାରୀ ଭୟଭୀତ ହୋଇ କୃଷ୍ଣଚନ୍ଦ୍ରଙ୍କ ପକ୍ଷ ସମର୍ଥନ କଲେ ।

ଢେଙ୍କାନାଳ ରାଜ୍ୟର ଗୋଳମାଳିଆ ପରିସ୍ଥିତି, ରାଜାଙ୍କ ମୃତ୍ୟୁ ସମ୍ବାଦ ଓ ମୃତ୍ୟୁ ପୂର୍ବର ସନ୍ଦେଶ ଶ୍ୟାମସୁନ୍ଦର ମାଣିଆବନ୍ଧଠାରେ ଜନୈକ ବିଶ୍ୱସ୍ତ ରାଜସାମନ୍ତଙ୍କଠାରୁ ଶୁଣିବାକୁ ପାଇଲେ । ସେ କେନ୍ଦ୍ରାପଡ଼ା ନରେନ୍ଦ୍ରଙ୍କ ସହାୟତାରେ କଟକରେ ଅବସ୍ଥାପିତ କମ୍ପାନୀ କଲେକ୍ଟରଙ୍କ ନିକଟରେ

ଢେଙ୍କାନାଳ ରାଜ୍ୟ ଦାବୀ ପୂର୍ବକ ଦରଖାସ୍ତ କଲେ । କିନ୍ତୁ ବିଚକ୍ଷଣ କୃଷ୍ଣଚନ୍ଦ୍ର କମ୍ପାନୀ ରେକର୍ଡ଼ରେ ତାଙ୍କ ନାମ ଢେଙ୍କାନାଳର ରାଜା ଭାବରେ ଦରଜ କରାଇ ଦେଇଥିଲେ । କଲେକ୍ଟରଙ୍କ ପେସ୍କାର କାଶୀନାଥ ମଲ୍ଲିକ ଜନୈକ କଲିକତା ନିବାସୀ ବଙ୍ଗୀୟ ବ୍ୟକ୍ତି ଥିଲେ । କୃଷ୍ଣଚନ୍ଦ୍ର ତାଙ୍କୁ ହାତ କରି ନିଜ ନାମ ଢେଙ୍କାନାଳ ରାଜା ଭାବରେ କଲେକ୍ଟରଙ୍କ ସହିମୋହର ଆଦେଶ କରାଇ ଦେଇଥିଲେ । ସେହି ପେସ୍କାର ମଧ୍ୟ ଶ୍ୟାମସୁନ୍ଦରଙ୍କୁ କଲେକ୍ଟରଙ୍କ ସହିତ ଦେଖା କରାଇ ନଦେଇ ଅଟକ ରଖିଲେ । ଫଳରେ କୃଷ୍ଣଚନ୍ଦ୍ର ଆଦେଶ ପାଇଗଲେ । ତେଣୁ ନିର୍ବିଘ୍ନରେ ସେ ମହୀନ୍ଦ୍ର ବାହାଦୂର ଉପାଧି ଧାରଣ ପୂର୍ବକ ସିଂହାସନରେ ଉପବିଷ୍ଟ ହେଲେ । କିଛିଦିନ ପରେ କେନ୍ଦ୍ରାପଡ଼ା ନରେନ୍ଦ୍ରଙ୍କ ସହିତ ଶ୍ୟାମସୁନ୍ଦର କଟକ କଲେକ୍ଟରଙ୍କୁ ସାକ୍ଷାତ୍ କରି ଆପଣାର ଦାବୀ ଦରଖାସ୍ତ ଉପସ୍ଥାପନା କଲେ । ଅନୁରୂପ ଅନ୍ୟ ଏକ ଦରଖାସ୍ତ ମଧ୍ୟ ଗଡ଼ଜାତ ମାହାଲ କମିଶନଙ୍କ ନିକଟରେ ଦାଖଲ କଲେ । ଉଭୟ ଦରଖାସ୍ତର ତଦନ୍ତ ହୋଇଥିଲା । ଏହି ତଦନ୍ତର ଫଳାଫଳ ସମ୍ପର୍କରେ ଉତ୍କଳ ବିଶ୍ୱବିଦ୍ୟାଳୟର ଇତିହାସ ପ୍ରଫେସର ଡକ୍ଟର କେ.ଏମ୍. ପାତ୍ର ସ୍ୱରଚିତ "Odisha under East India Company" ପୁସ୍ତକରେ ଉଲ୍ଲେଖ କରିଛନ୍ତି :

"There was also some dispute in Dhenkanal over the question of succession and the Government intervened to settle the matter in 1814. Subsequently in that very year, the Government received information regarding atrocious crimes committed by the chief of Dhenkanal and Mayurabhanja. The magistrate of Cuttack was directed to take cognizance of those cases. But due to the lack of evidence the chiefs were acquitted though the government suspected that they had been party to the alleged crimes. The Raja of Dhenkanal was afterwards sined for inficting injuries on some of his subjects (B.R.P. No. 43 of October 1814 Government to Richadson, October 18, 1814)

ଏଥିରୁ ହୃଦ୍‌ବୋଧ ହୁଏ, ଢେଙ୍କାନାଳ ରାଜାଙ୍କ ବିରୁଦ୍ଧରେ ଆଗତ ଅଭିଯୋଗ ଉପରେ ମାଜିଷ୍ଟ୍ରେଟ୍‌ସ୍ତରୀୟ ତଦନ୍ତ ହୋଇଥିଲା ଏବଂ ଏହି ତଦନ୍ତରେ ଉପଯୁକ୍ତ ସାକ୍ଷୀ ପ୍ରମାଣ ନ ମିଳିବାରୁ ତାଙ୍କ ଉପରେ ଦୋଷ ସାବ୍ୟସ୍ତ ହୋଇପାରିଲା ନାହିଁ । ପରେ ଘଟଣା ସତ୍ୟ ବୋଲି ଜଣା ପଡ଼ିଥିଲା । ଇଷ୍ଟଇଣ୍ଡିଆ କମ୍ପାନୀ ରେକର୍ଡ଼ରୁ ଜଣାଯାଏ ୧୮୧୪ ମସିହାରେ ଓଡ଼ିଶାର କଲେକ୍ଟରଙ୍କୁ

ଟ୍ରିବ୍ୟୁଟେରୀ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ରୂପେ ନିଯୁକ୍ତ କରାଗଲା ପରେ ଢେଙ୍କାନାଳ ଓ ମୟୂରଭଞ୍ଜ ରାଜାଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗର ତଦନ୍ତ କରାଯାଇଥିଲା । ସେହିବର୍ଷ ଓଡ଼ିଶାରେ ନୂତନ ବନ୍ଦୋବସ୍ତ ହୋଇ ରାଜା ଓ ଜମିଦାରମାନଙ୍କୁ ନୂତନ ସନନ୍ଦ ପ୍ରଦାନ କରାଯାଇଥିଲା । ଢେଙ୍କାନାଳ ରାଜା ଅମଲାମାନଙ୍କୁ ହାତ କରି ଆପଣାକୁ ରାଜା ଭାବରେ ରେକର୍ଡ଼ କରାଇ ପେସ୍‌କସ୍ ଦେବାକୁ ସ୍ୱୀକାର କରିଥିଲେ । ଏହି ଘଟଣା ପରେ ତାଙ୍କ ବିରୁଦ୍ଧରେ ତଦନ୍ତ ହୋଇଥିଲା ଏବଂ ସେ ନିର୍ଦ୍ଦୋଷ ପ୍ରମାଣିତ ହୋଇଥିଲେ । ଏ ସମ୍ପର୍କରେ ଲୋକ ମୁଖରୁ ଶୁଣାଯାଏ କୃଷ୍ଣଚନ୍ଦ୍ର କ୍ଷମତା ଓ ଧନ ବଳରେ ସାକ୍ଷୀମାନଙ୍କୁ ସପକ୍ଷରେ କହିବାକୁ ବାଧ୍ୟ କରିଥିଲେ । ଇଂରେଜ ସରକାରଙ୍କ ପେସ୍‌କସ୍ ସେ କଟକ କଲେକ୍ଟରଙ୍କ କାର୍ଯ୍ୟାଳୟରେ ନିୟମିତ ଦାଖଲ କରି ଇଷ୍ଟଇଣ୍ଡିଆ କମ୍ପାନୀର ପ୍ରୀତିଭାଜନ ହୋଇଥିଲେ । ଏହିପରି ଅବସ୍ଥାରେ ଶ୍ୟାମସୁନ୍ଦର କେନ୍ଦ୍ରାପଡ଼ା, ତିଗିରିଆ ଓ ହିନ୍ଦୋଳରେ କାଳାତିପାତ କରି କମ୍ପାନୀ ସରକାରଙ୍କ ନିଷ୍ପତ୍ତିକୁ ଅପେକ୍ଷା କରିଥିଲେ । ସ୍ୱଜନ୍ମଭୂମି ଢେଙ୍କାନାଳକୁ ସେ ଆସି ପାରୁ ନଥିଲେ ହେଁ ରାଜ୍ୟର ଟିକିନିଖି ଖବର ରଖୁଥିଲେ ତଥା ବିଶ୍ୱାସୀ ବ୍ୟକ୍ତିମାନଙ୍କ ସହିତ ସମ୍ପର୍କ ରଖିଥିଲେ । ଅପରପକ୍ଷେ ରାଜଗାଦୀ ଲାଭ କରିବା ନିମିତ୍ତ ସେ କଟକ ସଦର ଦେଓ୍ୱାନୀ ଅଦାଲତରେ ୧୮୧୬ ଅନୁଯାୟୀ ଏକ ମୋକଦ୍ଦମା ଦାୟର କରିଥିଲେ । ପ୍ରତିପକ୍ଷ କୃଷ୍ଣଚନ୍ଦ୍ର ମଧ୍ୟ କଳେବଳେ କୌଶଳେ ବିଜୟୀ ହେବାକୁ ଚେଷ୍ଟା କରୁଥିଲେ । ରାଜ୍ୟର ବିଶିଷ୍ଟ ପ୍ରଜାଗଣ ଓ କେତେକ ସାମନ୍ତ ଶ୍ୟାମସୁନ୍ଦରଙ୍କୁ ବିଜୟୀ ହେବା ନିମିତ୍ତ ଗୁପ୍ତରେ ସାହାଯ୍ୟ କରୁଥିଲେ ।

ରାଜା କୃଷ୍ଣଚନ୍ଦ୍ର ବୀର ତଥା ଚତୁରକୂଟନୀତିଜ୍ଞ ଥିଲେ । ସେ କଳେବଳେ କୌଶଳେ ରାଜଗାଦୀ ଅଧିକାର କରିଥିଲେ ହେଁ ଦେବତା ଓ ବ୍ରାହ୍ମଣ ଭକ୍ତ ଥିଲେ । ସ୍ୱଭାବତଃ ସେ ବୈଷ୍ଣବ ଥିଲେ । ପ୍ରତ୍ୟହ ଇଷ୍ଟ ବୃନ୍ଦାବନଚନ୍ଦ୍ର ଓ ବଳଦେବଜୀଉଙ୍କୁ ସେ ଦର୍ଶନ କରୁଥିଲେ । ବ୍ରାହ୍ମଣ, ପଣ୍ଡିତ, ସାଧୁ, ସନ୍ଥ ଓ କବିଙ୍କର ତାଙ୍କ ରାଜସଭାରେ ଆଦର ରହିଥିଲା । ରାଜ ପୁରୋଧା ପଣ୍ଡିତ ବିଶେଶ୍ୱର ବଡ଼ପଣ୍ଡା, ମାର୍ଥାପୁର ଶାସନର ପଣ୍ଡିତ ଗଦାଧର ବାହିନୀପତି ଓ ସଦାନନ୍ଦ ବ୍ରହ୍ମା ଓ ବାଲିବୋ ମଠର ମହନ୍ତ ଶାଳଗ୍ରାମ ଦାସଙ୍କୁ ସେ ସ୍ୱତନ୍ତ୍ର ଭାବରେ ରାଜ ଦରବାରରେ ସମ୍ମାନିତ କରିଥିଲେ । ତାଙ୍କ ରାଜତ୍ୱରେ ୧୮୧୨ ଖ୍ରୀଷ୍ଟାବ୍ଦରେ ବୃନ୍ଦାବନ ଧାମର ଶ୍ରୀ ରାଧାରମଣ ମଠଧୀଶ ବୈଷ୍ଣବଗୁରୁ ରାଜ ପ୍ରାସାଦରେ ସଂସ୍କୃତ ଭାଗବତ ଓ ଚୈତନ୍ୟ ଚରିତାମୃତ ପାରାୟଣ କରାଇଥିଲେ ।

ତାଙ୍କ ରାଜତ୍ୱରେ ରାଜପୃଷ୍ଠପୋଷକତରେ ମହାସମାରୋହରେ ରଥଯାତ୍ରା, ରାସୋତ୍ସବ, ଦୋଳ ଓ ଚନ୍ଦନଯାତ୍ରା ଅନୁଷ୍ଠିତ ହେଉଥିଲା । ଏତଦ୍‌ଭିନ୍ କାନ୍ତିଓଠାରେ ଚନ୍ଦନଯାତ୍ରା, ମାର୍ଥାପୁରରେ ଦୋଳୋତ୍ସବ, ଭୁବନରେ ଦଶହରା ଓ ଭାପୁରରେ ରାମଲୀଳା ସମାରୋହରେ ଅନୁଷ୍ଠିତ ହେଉଥିଲା । କପିଳାସର ଜାଗରଯାତ୍ରା, ନାଧରାର ମକରଯାତ୍ରା, ଭୁବନରର ବଳଦଯାତ୍ରା ଓ ପଣ୍ଡିମେଶ୍ୱର କାର୍ତ୍ତିକ ପୁନେଇ ଯାତ୍ରା ଢେଙ୍କାନାଳର ଜାତୀୟ ଉତ୍ସବ ରୂପେ ମାନ୍ୟତା ଲାଭ କରିଥିଲା । ସେହି ସମୟରେ ସମଗ୍ର ଢେଙ୍କାନାଳ ରାଜ୍ୟରେ ବୈଷ୍ଣବ ଭାବଧାରାର ପ୍ରାବଲ୍ୟ ବୃଦ୍ଧି ହୋଇଥିଲା । ପୁରପଲ୍ଲୀରେ ଭାଗବତ ଧର୍ମର ପ୍ରସାର ଘଟିଥିଲା । ରାଜା ମଧ୍ୟ ବୈଷ୍ଣବଧର୍ମକୁ ପ୍ରୋତ୍ସାହନ ଦେଉଥିଲେ ।

ପୂର୍ବରୁ କୁହାଯାଇଛି ଯେ, ବଳଭଦ୍ରଙ୍କ ଭକ୍ତ ବାବାଜୀ ରାମଦାସଙ୍କ ବିରଚିତ ‘‘ବଳଭଦ୍ରବୋଲି’’ ଢେଙ୍କାନାଳର ମାଦଳାପାଞ୍ଜି ସଦୃଶ । ବାବାଜୀ ରାମଦାସ ବଳଦେବ ଜୀଉଙ୍କ ମନ୍ଦିରରେ ରହୁଥିଲେ ଏବଂ ସେ ଢେଙ୍କାନାଳ ରାଜବଂଶର ବଂଶାବଳୀ ସହିତ ପ୍ରଭୁ ବଳଦେବଙ୍କ ମହିମା ଏଥିରେ ପଦ୍ୟାକାରରେ ଉଲ୍ଲେଖ କରିଛନ୍ତି । ଏହା ଇତିହାସର ଏକ ପ୍ରାମାଣିକ ଉପାଦାନ । ଅଦ୍ୟାବଧି ମଧ୍ୟ ବଳଭଦ୍ରବୋଲିର ପୋଥି ଢେଙ୍କାନାଳରେ ମିଳୁଅଛି । ନିକଟରେ ଢେଙ୍କାନାଳ ମହୋତ୍ସବର ସ୍ମରଣିକାରେ ବଳଭଦ୍ରବୋଲି ସଂପାଦନା ପୂର୍ବକ ପ୍ରକାଶ କରାଯାଇଛି । କିନ୍ତୁ ଏଥିରେ ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂରଙ୍କ ରାଜତ୍ୱ ଅର୍ଥାତ୍ ୧୮୦୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଇତିହାସ ଲିପିବଦ୍ଧ । ଅନୁମିତ ହୁଏ, ବାବାଜୀ ରାମ ଦାସ ୧୮୦୭ ପରେ ପରଲୋକ ଗମନ କରିଥିଲେ ଅଥବା ଅନ୍ୟ ସ୍ଥାନକୁ ଗମନ କରିଥିଲେ । ତେଣୁ ୧୮୦୭ ପରବର୍ତ୍ତୀ ଘଟଣା ଅର୍ଥାତ୍ କୃଷ୍ଣଚନ୍ଦ୍ର ମହୀନ୍ଦ୍ର ବାହାଦୂରଙ୍କ ରାଜତ୍ୱଠାରୁ ଇତିହାସ ବଳଭଦ୍ର ବୋଲିରୁ ମିଳେ ନାହିଁ । ପରବର୍ତ୍ତୀ କାଳରେ ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ର ‘‘ଭାଗୀରଥ କୀର୍ତ୍ତିକଳାପ’’ରେ କୃଷ୍ଣଚନ୍ଦ୍ରଙ୍କ ସମ୍ପର୍କରେ ଉଲ୍ଲେଖ କରିଛନ୍ତି

ତଦନ୍ତେ କୃଷ୍ଣଚନ୍ଦ୍ର ନାମରେ ମହୀନ୍ଦ୍ର ବାହାଦୂର ପଦରେ
ଆରୁଢ଼ ହେଲେ ସିଂହାସନରେ
କୀର୍ତ୍ତି ବିହିଲେ ଯେ ।
ସିଂହଦୁଆର ଦୋପୁରୀ କରି ଖୋଳି ମହିଷାକଡ଼ା ପୋଖରୀ
ଲଛିପୁରାରେ ଟୋଟା ଯେ କରି
ସମୃଦ୍ଧିଶାଳୀ ଯେ ।

ନୃସିଂହ ସାଗରରୁ କଢ଼ାଇ ଅଧେ ମୃତ୍ତିକା ତୀର୍ଥକୁ ନେଇ
ଛତୀକା ହାଲୀ ଯେ
ଟେକାଇ ଯାଜପୁରଠାରେ ଦର୍ଶନ ଯେ
କଲେ ବରାହ ବିରଜାଙ୍କୁ ବହନ ଯେ
ମେଦିନୀପୁର ଠାରେ ଶ୍ରୀଅଙ୍ଗ ଦୁଃଖ ହୁଅନ୍ତେ ପ୍ରସ୍ଥାନ ଭଙ୍ଗ
ବାହୁଡ଼ୁଁ ତ୍ୟଜିମାନବ ସଙ୍ଗ
ସ୍ୱର୍ଗେ ଗମନ ଯେ
ଦଶବରଷ ଚାରି ମାସରେ ରାମଚନ୍ଦ୍ରଙ୍କ ସାତ ଅଙ୍କରେ
ମୀନଛବିଶ ଦୋଳ ଦିନରେ
ରାତି ଅର୍ଦ୍ଧରେ ଯେ ।

ହୃଦ୍‌ବୋଧ ହୁଏ, କୃଷ୍ଣଚନ୍ଦ୍ର ଜଣେ କୀର୍ତ୍ତିଚନ୍ଦ୍ର ରାଜା ଥିଲେ । ସେ ପ୍ରଥମେ ରାଜପ୍ରାସାଦର ସିଂହଦ୍ୱାର ଦୋମହଲା କରି ଉପରେ ଗମ୍ଭୁଜ ବସାଇଥିଲେ । ଜନକଲ୍ୟାଣ ଉଦ୍ଦେଶ୍ୟରେ ସେ ରାଜ୍ୟର ବିଭିନ୍ନ ସ୍ଥାନରେ ଜଳାଶୟ ଖୋଳାଇ ଥିଲେ । ତନ୍ମଧ୍ୟରେ ଗାଁଦିଆ ପୂର୍ବଦିଗସ୍ଥ ମହିଷିଆ କଡ଼ାଠାରେ ଏକ ବୃହତ୍ ଜଳାଶୟ ଖନନ କରାଯାଇଥିଲା । ଅନେକ ସ୍ଥାନରେ ସେ ବୃକ୍ଷରୋପଣ କରିଥିଲେ । ଲଛିପୁରା ଗ୍ରାମର ସୁବୃହତ୍ ଆମ୍ରୋଦ୍ୟାନ ତାଙ୍କରି କୀର୍ତ୍ତି । ଢେଙ୍କାନାଳଗଡ଼ ମଧ୍ୟସ୍ଥ ନୃସିଂହସାଗର (ଯାଉଁଳୀ ପୋଖରୀ)ରୁ ପଙ୍କୋଦ୍ଧାର କରି ସେ ଅର୍ଦ୍ଧେକ ମୃତ୍ତିକା ତୀର୍ଥରେ ବିସର୍ଜନ କରିଥିଲେ । ସେ ନିଜ ନାମରେ ନୃସିଂପ୍ରସାଦ ବିଷରେ ଏକ ଗ୍ରାମ· ବସାଇ ତାହାର ନାମ କୃଷ୍ଣପୁର ରଖିଥିଲେ । ପାଟରାଣୀ ଲକ୍ଷ୍ମୀ ମହାଦେଈଙ୍କ ନାମରେ ଲକ୍ଷ୍ମୀପୁର ଗ୍ରାମ ପ୍ରତିଷ୍ଠିତ ଯାହା ବର୍ତ୍ତମାନ ଲଛିପୁର ନାମରେ ବିଦ୍ୟମାନ ।

କୃଷ୍ଣଚନ୍ଦ୍ରଙ୍କ ରାଜତ୍ୱର ପ୍ରାଥମିକ ପର୍ଯ୍ୟାୟ ଅଶାନ୍ତି ହୋଇଥିଲେ ହେଁ ପରବର୍ତ୍ତୀ କାଳରେ ରାଜ୍ୟରେ ସୁଶାସନ ପ୍ରତିଷ୍ଠିତ ହୋଇଥିଲା । ମାତ୍ର ଦଶବର୍ଷ ରାଜତ୍ୱରେ ସେ ପ୍ରଜାଙ୍କର ପ୍ରିୟପାତ୍ର ହୋଇପଡ଼ିଥିଲେ । ପ୍ରଜା ଓ ରାଜ୍ୟକୁ ସୁରକ୍ଷା ଦେବାରେ ସେ ତତ୍ପର ଥିଲେ । ତାଙ୍କ ରାଜତ୍ୱରେ ସୀମା ନିର୍ଦ୍ଧାରଣ ପୂର୍ବକ ରାଜସ୍ୱ ଆଦାୟ ନିମିତ୍ତ କମ୍ପାନୀ ସରକାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ । ଢେଙ୍କାନାଳ ରାଜ୍ୟ ଚତୁଃପାର୍ଶ୍ୱସ୍ଥ କେନ୍ଦୁଝର, ସୁକିନ୍ଦା, ମଧୁପୁର, କଳକଳା, ଆଠଗଡ଼, ତିଗିରିଆ, ହିନ୍ଦୋଳ, ଅନୁଗୁଳ, ତାଳଚେର ଓ ପାଲଲହଡ଼ା ପ୍ରଭୃତି ରାଜ୍ୟର ସୀମା

ଢେଙ୍କାନାଳକୁ ସ୍ପର୍ଶ କରିଥିବାରୁ ସର୍ବେ ସମୟରେ ରାଜା କୃଷ୍ଣଚନ୍ଦ୍ର ସୀମାରେ ପାଇକମାନଙ୍କୁ ମୁତୟନ କରିବା ସହିତ କଡ଼ା ନଜର ରଖିଥିଲେ । ପ୍ରତ୍ୟେକ ଚତୁଃପାର୍ଶ୍ୱ ରାଜା ଓ ଜମିଦାରଙ୍କ ଅଞ୍ଚଳ ମାପ କରାଯାଉଥିବା ସମୟରେ ଢେଙ୍କାନାଳର କୌଣସି ଅଞ୍ଚଳ ସେମାନେ ଯେପରି ଦାବୀ ନକରନ୍ତି ତହିଁର ସତର୍କତା ଅବଲମ୍ବନ କରାଯାଇ ରାଜ୍ୟର ସୀମା ଚିହ୍ନଟ କରାଯାଇଥିଲା । ସେହି ସମୟରେ ଢେଙ୍କାନାଳର କ୍ଷେତ୍ରଫଳ ଥିଲା ୧୪୪୦ ବର୍ଗ ମାଇଲ । ରାଜ୍ୟର ଦେବୋତ୍ତର, ବ୍ରହ୍ମୋତ୍ତର, ପାଇକାଳି ପ୍ରଭୃତି ଚାଷ ଜମି ବାଦ୍‌ଯାଇ ମୋଟ ଭୂରାଜସ୍ୱ ୯୬୦୦୦ ବାହାଣ କଉଡ଼ି ଆଦାୟ କରାଯାଉଥିଲା । ରାଜା ପ୍ରଜାମାନଙ୍କଠାରୁ ଆଠପଣୀ ଓ ଷୋଳପଣୀ ଏହିପରି ଦୁଇକିସ୍ତିରେ ରାଜସ୍ୱ ଆଦାୟ କରୁଥିଲେ । ପୂର୍ବପରି ସର୍ବରାକାରମାନେ ରାଜସ୍ୱ ଆଦାୟ କରି ପଇଠ କରୁଥିଲେ । ପ୍ରଜାଙ୍କ ସୁଖ ଓ ସୁବିଧା ପ୍ରତି ରାଜା କୃଷ୍ଣଚନ୍ଦ୍ର ସଜାଗ ଥିଲେ ।

୧୮୦୭ ଠାରୁ ୧୮୨୧ ପର୍ଯ୍ୟନ୍ତ ସୁଖରେ ଶାସନ କରିବା ପରେ ୧୮୨୧ରେ ରାଜା କୃଷ୍ଣଚନ୍ଦ୍ର ତ୍ରିବେଣୀ ଓ ଗଙ୍ଗାସାଗରରେ ସ୍ନାନାନ୍ତେ ଶ୍ରୀଚୈତନ୍ୟଙ୍କ ଜନ୍ମସ୍ଥଳୀ ନଦୀୟା ନବଦୀପ ଦର୍ଶନ କରିବାକୁ ମନ ବଳାଇଲେ । ୧୮୨୧ ମସିହା ମାର୍ଗଶୀର ମାସରେ ରାଜା କୃଷ୍ଣଚନ୍ଦ୍ର ତୀର୍ଥାଟନରେ ବାହାରିଲେ । ପ୍ରଥମେ ସେ ଯାଜପୁରରେ ପହଞ୍ଚି ଜଗଜ୍ଜନନୀ ବିରଜା, ଯଜ୍ଞବରାହଙ୍କ ଦର୍ଶନ ପୂର୍ବକ ନାଭିଗୟା ଓ ଦଶାଶ୍ୱବୋଧ ଘାଟରେ ପିତୃପୁରୁଷଙ୍କୁ ପିଣ୍ଡ ଦାନ କରିଥିଲେ । ତତ୍‌ପରେ ରେମୁଣାଠାରେ କ୍ଷୀରଚୋରା ଗୋପୀନାଥଙ୍କୁ ଦର୍ଶନ କରି କଲିକତା ଅଭିମୁଖେ ଯାତ୍ରା କଲେ ହେଁ ପଥ ମଧ୍ୟରେ ମେଦିନୀପୁରଠାରେ ଗୁରୁତର ଅସୁସ୍ଥ ହୋଇ ପଡ଼ିଲେ । ଫଳରେ ଅନୁଚରଗଣ ରାଜାଙ୍କୁ ସାଥୀରେ ଧରି ଢେଙ୍କାନାଳ ପ୍ରତ୍ୟାବର୍ତ୍ତନ କଲେ । ଦୁର୍ଭାଗ୍ୟର ବିଷୟ, ଅସୁସ୍ଥ ରାଜା ଜୀବିତାବସ୍ଥାରେ ସ୍ୱରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରିପାରିଲେ ନାହିଁ । ପଥରେ ନିଜ ରାଜ୍ୟରେ ସଡ଼ଙ୍ଗୀ ସନ୍ନିକଟ ଝାରଦା ଗ୍ରାମଠାରେ ବିଶ୍ରାମ କରୁଥିବା ସମୟରେ ୧୮୨୨ ଖ୍ରୀଷ୍ଟାବ୍ଦ ମୀନ ୨୬ ଦିନ ଦୋଳ ପୂର୍ଣ୍ଣିମା ନିଶାର୍ଦ୍ଧରେ ରାଜା କୃଷ୍ଣଚନ୍ଦ୍ର ପରଲୋକ୍ ଗମନ କଲେ । ରାଜକୀୟ ମର୍ଯ୍ୟାଦାରେ ରାଜାଙ୍କ ମରଶରୀର ରାଜଧାନୀକୁ ଅଣାଯାଇ ପାରମ୍ପରିକ ରୀତିରେ ରାଜଶ୍ମଶାନ ବା ମଡ଼ାଦେଉଳଠାରେ ତାଙ୍କର ଶେଷକୃତ୍ୟ ସଂପାଦନ କରାଗଲା ।



# ରାଜା ଶ୍ୟାମସୁନ୍ଦର ମହୀନ୍ଦ୍ର ବାହାଦୂର

ରାଜା କୃଷ୍ଣଚନ୍ଦ୍ରଙ୍କ ମୃତ୍ୟୁ ପରେ ରାଜ୍ୟର ମନ୍ତ୍ରୀ, ବକ୍‌ସି, ରାଜପଣ୍ଡିତ, ବଡ଼ପଣ୍ଡା ଓ ସାମନ୍ତ ପାରିଷଦ ୧୮୨୨ ଖ୍ରୀଷ୍ଟାବ୍ଦରେ ଶ୍ୟାମସୁନ୍ଦରଙ୍କୁ ରାଜଗାଦୀରେ ବସାଇଲେ । ସ୍ୱର୍ଗୀୟ ରାଜା ରାମଚନ୍ଦ୍ର ମହୀନ୍ଦ୍ର ବାହାଦୂରଙ୍କ ଶେଷ ଇଚ୍ଛା ଥିଲା ତାଙ୍କ ପରେ ଶ୍ୟାମସୁନ୍ଦର ରାଜଗାଦୀରେ ବସିବେ । ତଦନୁଯାୟୀ ସେ ପାତ୍ରମନ୍ତ୍ରୀଙ୍କୁ ପଠାଇଥିଲେ । କିନ୍ତୁ ହଠାତ୍ ରାମଚନ୍ଦ୍ରଙ୍କ ମୃତ୍ୟୁ ହେବାରୁ ଉପପତ୍ନୀଙ୍କ ପୁତ୍ର କୃଷ୍ଣଚନ୍ଦ୍ର ରାଜଗାଦୀ ଅଧିକାର କରିଦେଲେ । ସେ ରାଜଗାଦୀର ନ୍ୟାର୍ଯ୍ୟ ଅଧିକାର ନଥିଲେ ହେଁ ଇଂରେଜକମ୍ପାନୀ ପଦାଧିକାରୀଙ୍କୁ କରାୟତ୍ତ କରି ରାଜାର ସମ୍ମାନ ପାଇଲେ । ମହନୀୟତା ହେଉଛି, ସକଳ ପ୍ରତିକୂଳତା ସତ୍ତ୍ୱେ ସିଂହବିଦ୍ୟାଧର ବଂଶୀୟ ମର୍ଯ୍ୟାଦାରେ ସେ ପ୍ରଜାନୁରଞ୍ଜକ ଧାର୍ମିକ ନରପତିର ପରିଚୟ ଦେଇ ୧୮୨୨ରେ ପରଲୋକ ଗମନ କଲେ । ତାଙ୍କର ଏକ କନ୍ୟା ଥିଲେ ହେଁ ପୁତ୍ର ନଥିଲେ । ପାତ୍ରମନ୍ତ୍ରୀ ସାମନ୍ତ ଓ ପ୍ରଜାମାନେ ଚାହୁଁଥିଲେ ଯେ ଶ୍ୟାମସୁନ୍ଦର ସିଂହ ବିଦ୍ୟାଧର ବଂଶର ପ୍ରକୃତ ଉତ୍ତରାଧିକାରୀ ତଥା ରାଜଗାଦୀର ଅଧିକାରୀ । ସେଇଆ ହିଁ ହେଲା । କୃଷ୍ଣଚନ୍ଦ୍ରଙ୍କ ମୃତ୍ୟୁ ପରେ ସମାରୋହରେ ୧୮୨୨ରେ ଶ୍ୟାମସୁନ୍ଦରଙ୍କ ରାଜ୍ୟାଭିଷେକ ହେଲା । ସେ ମହୀନ୍ଦ୍ର ବାହାଦୂର ଉପାଧି ଧାରଣ ପୂର୍ବକ ଢେଙ୍କାନାଳ ସିଂହାସନ ଆରୋହଣ କଲେ ।

ଶ୍ୟାମ ସୁନ୍ଦର ହେଉଛନ୍ତି ଢେଙ୍କାନାଳର ପୂର୍ବତନ ରାଜା ଜଗନ୍ନାଥ ଭ୍ରମରବରଙ୍କ ଜ୍ୟେଷ୍ଠପୁତ୍ର ଭୁଜବଳ ସାମନ୍ତଙ୍କ ପୁତ୍ର ତଥା ଦୟାନିଧିଙ୍କ ପରବର୍ତ୍ତୀ ରାଜା ମାନସିଂହ ତାଙ୍କୁ ୧୭୯୫-୯୬ରେ ପୋଷ୍ୟପୁତ୍ର ଭାବେ ଗ୍ରହଣ କରିଥିଲେ । ତେଣୁ ସେ ହିଁ ଢେଙ୍କାନାଳ ରାଜଗାଦୀର ଅଧିକାରୀ । ସେହି ଅଧିକାରକୁ ସାବ୍ୟସ୍ତ କରିବା ନିମିତ୍ତ ସେ ସଦର ଦେୱାନୀ ଅଦାଲତରେ Act 11ରୁ ୧୮୧୬ ଅନୁଯାୟୀ ଏକ ମୋକଦ୍ଦମା ରୁଜୁ କରିଥିଲେ । ଏହି ମୋକଦ୍ଦମା ବିଚାରାଧୀନ ଥିବା ବେଳେ ସେ ୧୮୨୨ରେ ସସମ୍ମାନେ ରାଜଗାଦୀ ଆରୋହଣ କଲେ । ଅବଶ୍ୟ ୧୮୨୫ରେ ମୋକଦ୍ଦମାରେ ଶୁଣାଣି ଶେଷ ହୋଇ ଶ୍ୟାମସୁନ୍ଦର ଢେଙ୍କାନାଳ ରାଜଗାଦୀର ପ୍ରକୃତ ଉତ୍ତରାଧିକାରୀର ସ୍ୱୀକୃତି ଲାଭ ପୂର୍ବକ ଚୁକ୍ତିବଦ୍ଧ ହେଲେ । ତାଙ୍କ ରାଜତ୍ୱରେ ଢେଙ୍କାନାଳରେ ଶାନ୍ତି ଓ ଶୃଙ୍ଖଳା ବିରାଜମାନ

ଥିଲା । ରାଜ୍ୟରେ ବିଭିନ୍ନ ପ୍ରକାର ଉନ୍ନୟନମୂଳକ ଯୋଜନାମାନ କାର୍ଯ୍ୟକାରୀ ହୋଇଥିଲା । ରାଜା ଶ୍ୟାମସୁନ୍ଦର ଘୋଷଣା କରିଥିଲେ ଯେ, ପ୍ରଜାମାନେ ତଇଲା ଜମିକୁ ଆବାଦ କରି ଚାଷ ଜମିରେ ପରିଣତ କରିପାରିବେ । ସ୍ଥଳବିଶେଷରେ ସର୍ବରାକାର ଓ ବେହେରା ପଧାନଙ୍କ ଅନୁମତି କ୍ରମେ ପ୍ରଜାମାନେ ଅଦରକାରୀ ଜଙ୍ଗଲ କାଟି ଚାଷ ଜମି କରିପାରୁଥିଲେ । ସେହି ସମୟରେ ଇଂରେଜ ଶାସକଙ୍କ ଦ୍ୱାରା କଉଡ଼ି ପରିବର୍ତ୍ତେ ମୁଦ୍ରାର ପ୍ରଚଳନ କରାଯାଇଥିଲା । କଉଡ଼ିର ମୂଲ୍ୟ ଟଙ୍କାକୁ ୫୧୨୦ ସ୍ଥିରୀକୃତ ହୋଇଥିଲେ ହେଁ ବାସ୍ତବରେ ୭୬୮୦ଟି କଉଡ଼ି ବଦଳରେ ଟଙ୍କାଟିଏ ମିଳୁଥିଲା । ଏହା ଦ୍ୱାରା ପ୍ରଜାମାନେ କ୍ଷତି ସହୁଥିଲେ । ଯେଉଁ ଚାଷୀମାନେ କଉଡ଼ି ବଦଳରେ ରାଜସ୍ୱ ଟଙ୍କାର ଆକାରରେ ଦାଖଲ କରୁଥିଲେ ସେମାନଙ୍କୁ ଏକ ଟଙ୍କା ପରିବର୍ତ୍ତେ ଦେଢ଼ ଟଙ୍କା ଦେବାକୁ ପଡୁଥିଲା । ତତ୍‌ପୂର୍ବରୁ ରିଚାର୍ଡ଼ସନ ଯେଉଁ ବନ୍ଦୋବସ୍ତ କରାଇଥିଲେ ସେଥିରେ ମୋଗଲବନ୍ଦୀ ଅଞ୍ଚଳର ପ୍ରଜା ହତାଶ ହୋଇଥିଲେ । ଏହି କାରଣରୁ ରାଜା ଶ୍ୟାମସୁନ୍ଦର ଢେଙ୍କାନାଳ ରାଜ୍ୟର ବନ୍ଦୋବସ୍ତ କରାଇ ପୂର୍ବ ପରି ହଳ ଅନୁସାରେ କଉଡ଼ି ରାଜସ୍ୱ ଆଦାୟ କଲେ ତଥା କଉଡ଼ି ବଦଳାଇ ଟଙ୍କା ଆକାରରେ ପେସ୍‌କସ୍ ଦାଖଲ କଲେ । ଏଥିରେ ମଧ୍ୟ ରାଜକୋଷରୁ ଦେଢ଼ଗୁଣା ଖର୍ଚ୍ଚ କରିବାକୁ ପଡ଼ିଲା । ତଥାପି ରାଜା ପ୍ରଜାଙ୍କ ଉପରେ ଅଧିକ ରାଜସ୍ୱ ଦାବୀ କରି ନଥିଲେ ।

ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ର ସ୍ୱରଚିତ ''ଭଗୀରଥ କୀର୍ତ୍ତୀକଳାପ''ରେ ରାଜା ଶ୍ୟାମସୁନ୍ଦରଙ୍କ ସମ୍ପର୍କରେ ଉଲ୍ଲେଖ କରିଛନ୍ତି –

ଶ୍ୟାମ ସୁନ୍ଦର ମହୀନ୍ଦ୍ର ବାହାଦୂର ନାମର
ନୃପତି ହୋଇଲେ ଅତି ସୁନ୍ଦର
ବିଧି କୁମର ଯେ ।
ବରଷ ସପ୍ତ ନଅ ମାସ ରାଜତ୍ୱ ଯେ
ବଡ଼ ପ୍ରତାପୀ ସେ ଲଭିରେ ପଞ୍ଚତ୍ୱ ଯେ ।
ଏହି ନୃପତି କୀରତି ରାଜି ଶୁଣ ସୁଜନେ କହୁଛି ସାଜି
ସିଂହ ଦ୍ୱାର ତଳେ ବିରାଜି
ଅଛି ମହତ ଯେ ।
ପୋଖରୀ ବଳଭଦ୍ର ସାଗର ନୂଆ ପୋଖରୀ ଖ୍ୟାତ ଲୋକର
ବଳଭଦ୍ରଙ୍କ ଭକତବର

ଏହି ରାଜନ ଯେ।
ଅନୁଗୁଳରେ କଲେ ଲଢ଼ାଇ ତାଳଚେରକୁ ଦେଲେ ଲୁଟାଇ
ନିଜ ସଦନ ପକ୍କା କରାଇ
ଚୁର୍ଣ୍ଣ ଲେପନ ଯେ ।
ବାଉଁଶ ପାଟଣାରେ ତୋଟାମାନ ଯେ
ଏହି ପ୍ରାୟ କୀର୍ତ୍ତୀ କଲେ ଆନ ଆନ ଯେ
ଭଗୀରଥ ଯେ ତାଙ୍କ କୁମର
ପୋଷ୍ୟପୁତ୍ର ଏ ହୋଇ ସତ୍ୱର
ନୋହୁଁ ସନ୍ତାନ ଯେ ।

ଉପରୋକ୍ତ ଉକ୍ତିରେ ହୃଦ୍‌ବୋଧ ହୁଏ ଶ୍ୟାମସୁନ୍ଦର ଜଣେ ପ୍ରତାପଶାଳୀ ଓ କୀର୍ତ୍ତୀମାନ ରାଜା ଥାଇ ମାତ୍ର ସାତ ବର୍ଷ ନଅ ମାସ ରାଜତ୍ୱ କରିଥିଲେ । ସ୍ୱବଂଶର ଟେକ ରଖିବାକୁ ସେ ପଶ୍ଚାତ୍‌ପଦ ହେଉନଥିଲେ । ସୂଚନା ଯୋଗ୍ୟ ଯେ, ଏହି ବଂଶର ପ୍ରତିଷ୍ଠାତା ହରି ସିଂହ ବିଦ୍ୟାଧର ପ୍ରଥମେ ଝାଡ଼ଖଣ୍ଡ ମୁଲକର କ୍ଷୁଦ୍ର କ୍ଷୁଦ୍ର ଭୂମ୍ୟାଧିକାରୀଙ୍କୁ ଜୟ କରି ଢେଙ୍କାନାଳ ରାଜ୍ୟ ଗଠନ କରିଥିଲେ । ତାଙ୍କ ପରେ ଲୋକନାଥ, ନୃସିଂହ, କୁଞ୍ଜବିହାରୀ, ବ୍ରଜବିହାରୀ ଓ ତ୍ରିଲୋଚନ ପ୍ରଭୃତି ବୀର ପୁରୁଷଗଣ ରାଜତ୍ୱ କରି ରାଜ୍ୟର ପରିସୀମା ବୃଦ୍ଧି କରିଥିଲେ । ତେଣୁ ଏହି ରାଜ୍ୟର ସୀମା ସୁରକ୍ଷା ଦିଗରେ ଶ୍ୟାମସୁନ୍ଦର ସଜାଗ ଥିଲେ । କାରଣ ସେହି ସମୟରେ କମ୍ପାନୀ କର୍ତ୍ତୃପକ୍ଷ ପ୍ରତ୍ୟେକ ରାଜ୍ୟର ସୀମା ନିର୍ଦ୍ଧାରଣ କରୁଥିଲେ । ଏହି ସୀମାବିବାଦକୁ କେନ୍ଦ୍ର କରି ତାଳଚେର ଓ ଅନୁଗୁଳ ସହିତ ଢେଙ୍କାନାଳର ବିବାଦ ହୋଇଥିଲା । ତାଳଚେର ରାଜା ଢେଙ୍କାନାଳର ପଶ୍ଚିମାଞ୍ଚଳରେ ଅବସ୍ଥିତ କମଳାଙ୍ଗ ପ୍ରଭୃତି କେତୋଟି ଗ୍ରାମ ଦାବୀ କରିବାରୁ ଏଥିରେ ଉତ୍‌କ୍ଷିପ୍ତ ହୋଇ ଢେଙ୍କାନାଳ ସୈନ୍ୟ ୧୮୨୫ ମସିହାରେ ତାଳଚେର ଦୁର୍ଗ ଅବରୋଧ କରିଥିଲେ । ଲୋକ ମୁଖରୁ ଶୁଣାଯାଏ ଢେଙ୍କାନାଳ ସୈନ୍ୟ ତାଳଚେର ଦୁର୍ଗ ଲୁଟି ଆଣିଥିଲେ । କିନ୍ତୁ ଏ ସମ୍ପର୍କରେ କୌଣସି ଲିଖିତ ଅଭିଲେଖ ଅଦ୍ୟାବଧି ମିଳି ନାହିଁ । ତାଳଚେର ରାଜା ନିଜର ଭୁଲ୍ ସ୍ୱୀକାର କରିବାରୁ ଢେଙ୍କାନାଳ ସୈନ୍ୟ ପ୍ରତ୍ୟାବର୍ତ୍ତନ କରିଥିଲେ । ଏହା ପରେ ବୁଢ଼ାପଙ୍କ ଦୁର୍ଗକୁ କେନ୍ଦ୍ର କରି ଅନୁଗୁଳ ସହିତ ଢେଙ୍କାନାଳର ଯୁଦ୍ଧ ହୋଇଥିଲା । ପୂର୍ବରୁ କୁଞ୍ଜବିହାରୀଙ୍କ ରାଜତ୍ୱରେ ଢେଙ୍କାନାଳ ସୈନ୍ୟ ବୁଢ଼ାପଙ୍କ ଅଧିକାର କରିଥିଲେ ।

ତେଣୁ ରାଜା ଶ୍ୟାମସୁନ୍ଦର ବୁଢ଼ାପଙ୍କ ଦୁର୍ଗକୁ ଢେଙ୍କାନାଳ ରାଜ୍ୟର ବୋଲି ଦାବୀ କଲେ, ପରିଣାମରେ ଅନୁଗୁଳ ଓ ଢେଙ୍କାନାଳ ମଧ୍ୟରେ ୧୮୨୫ରେ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ଢେଙ୍କାନାଳର ବକ୍ସି ଦିଗାମ୍ବର ପଟ୍ଟନାୟକ ଢେଙ୍କାନାଳ ସୈନ୍ୟ ପରିଚାଳନା କରିଥିଲେ ଏବଂ ଅନୁଗୁଳ ରାଜା ସୋମନାଥ ସିଂହ ଜଗଦ୍ଦେବ ନିଜେ ଅନୁଗୁଳ ସୈନ୍ୟ ପରିଚାଳନା କରିଥିଲେ । ଯୁଦ୍ଧର ବିଷଦ ବିବରଣୀ କବିଚନ୍ଦ୍ର ନୃସିଂହ ରାୟଗୁରୁଙ୍କ ବିରଚିତ ସମରକାବ୍ୟ ''ବୁଢ଼ାପଙ୍କ ପୋଥି''ରୁ ଉପଲବ୍ଧି ହୋଇଥାଏ । କାବ୍ୟଟିର ଚତୁର୍ଥ ଓ ପଞ୍ଚମ ଛାନ୍ଦର ଯୁଦ୍ଧର ଭୟାବହତା ଅନୁଭୂତ ହୁଏ ।

''ଘୋର ପ୍ରବଳ, ସଂଗ୍ରାମ ଗୋଳ, ଅନ୍ଧାର ଦିଶେ ଶୂନ୍ୟମଣ୍ଡଳ,
କାହାର କେତେ ଶିରକମଳ, ଯାଉଛି ଉଡ଼ି ଯେ ।
କାହାର ଛୁଟି, ତୁଟି ଛିଡ଼ଇ, କେ କଟିଯାଇ ତଳେ ପଡ଼ଇ,
କେ ଲଟି ଧରି ଲୋଟଇ ମହୀ, ଦନ୍ତକୁ ଭିଡ଼ି ଯେ ।
ତୋପ ଗର୍ଜନ, ପ୍ରଳୟ ଶୂନ୍ୟ, ଶୁଣିଲେ ଅନୁଗୋଳ ରାଜନ ।''

ଏହି ଭୟାବହ ଯୁଦ୍ଧ ଯେ, ବୁଢ଼ାପଙ୍କଗଡ଼ ନିମିତ୍ତ ହୋଇଥିଲା ତାହା ପ୍ରଥମ ଛାନ୍ଦରେ ସୁସ୍ପଷ୍ଟ :

ଢେଙ୍କାନାଳ ଅନୁଗୋଳ ମୋକ୍ଷ ମୁଲକ,
ଦୁହେଁ ଦୁହେଁ ମହାମେରୁ ଏକୁ ଆରେକ ।
ଦୁଇରାଜାଙ୍କ ମଧ୍ୟରେ ଲାଗିଲା ଦ୍ୱନ୍ଦ୍ୱ,
ବୁଢ଼ାପଙ୍କ ଗଡ଼ ପାଇଁ କଲେ ବିବାଦ ।

ଦ୍ୱିତୀୟ ଛାନ୍ଦରେ ଯୁଦ୍ଧ ଆରମ୍ଭ କଥା ବର୍ଣ୍ଣନା କରାଯାଇଛି :

ଏହି ସମୟରେ ଶୁଣ ହେ ରସ,
ମଙ୍ଗଳ ପୁରରେ ରାଜା ପ୍ରବେଶ ।
ଅନୁଗୁଳ ଗଡ଼େ କହିଲା ଚାର
ହେ ଦେବ ସୋମନାଥ ବୀରବର
ଢେଙ୍କାନାଳ ସୈନ୍ୟ
ଆସିଲେଣି ମାଡ଼ି କରିବେ ରଣ ।

ଢେଙ୍କାନାଳ ରାଜା ଶ୍ୟାମସୁନ୍ଦର ମହୀନ୍ଦ୍ର ବାହାଦୂର ଚାରି ହଜାର ପଦାତିକ, ଚାରିଶହ ଅଶ୍ୱାରୋହୀ ଏବଂ ଏକ ଶହ ଗଜାରୋହୀ ସୈନ୍ୟ ନେଇ

ଅନୁଗୁଳ ଆକ୍ରମଣ କରିଥିଲେ । ଅନୁଗୁଳ ରାଜାଙ୍କ ସୈନ୍ୟ ସଂଖ୍ୟା କୌଣସିଠାରେ ଉଲ୍ଲେଖ ନାହିଁ । ତତ୍‌କାଳୀନ କମ୍ପାନୀ ସରକାରଙ୍କ ଅଭିଲେଖରୁ ମଧ୍ୟ ଏହି ଯୁଦ୍ଧ ସମ୍ପର୍କରେ କୌଣସି ତଥ୍ୟ ମିଳେ ନାହିଁ । ଢେଙ୍କାନାଳର କେତେକ ସାହିତ୍ୟ ଓ ଇତିହାସରୁ ଉପଲବ୍ଧ ହୁଏ ଢେଙ୍କାନାଳ ସୈନ୍ୟ ବୁଢ଼ାପଙ୍କ ଅଧିକାର କରିଥିଲେ । କବିଚନ୍ଦ୍ର ନୃସିଂହ ରାୟଗୁରୁଙ୍କ ବୁଢ଼ାପଙ୍କ ପୋଥିରୁ ଜଣାଯାଏ ୧୮୨୫ରେ ଅନୁଷ୍ଠିତ ଯୁଦ୍ଧର ପାଞ୍ଚବର୍ଷ ପରେ ଶ୍ୟାମସୁନ୍ଦରଙ୍କ ଦେହାନ୍ତ ହେଲା ଏବଂ ସେ ପର୍ଯ୍ୟନ୍ତ ଢେଙ୍କାନାଳ ରାଜା ଓ ସୈନ୍ୟଙ୍କ ପ୍ରତି ଅନୁଗୁଳର ଭୟ ରହିଥିଲା ।

ତଦନ୍ତରେ ଢେଙ୍କାନାଳ ରଚିତ
ହରଷେ ଶୁଣହେ ସୁଜ୍ଞାନୀଚିତ୍ତ
ଦିନୁଦିନ ହେଲା କାଳ ବିଶେଷ
ଏ ରୂପେ ଗଲା ପାଞ୍ଚ ବରଷ ।
କାଳେ ଭ୍ରମରବର ନାଶ ଗଲେ,
ଅନୁଗୋଳର ଭୟ ଛଡ଼ାଇଲେ ।

ଏଥିରୁ ହୃଦ୍‌ବୋଧ ହୁଏ ଶ୍ୟାମ ସୁନ୍ଦର ଭ୍ରମରବର ମହୀନ୍ଦ୍ର ବାହାଦୂରଙ୍କ ପ୍ରତି ଅନୁଗୋଳର ଭୟ ରହିଥିଲା ।

ଢେଙ୍କାନାଳ ରାଜ୍ୟର ଦକ୍ଷିଣ ପଶ୍ଚିମ ଦିଗରେ ବଡ଼ମ୍ବା ରାଜ୍ୟ ଅବସ୍ଥିତ। ତତ୍‌କାଳୀନ ବଡ଼ମ୍ବା ରାଜା ପଦ୍ମନାଭ ମଙ୍ଗରାଜ ମହାପାତ୍ର ଢେଙ୍କାନାଳର କିଛି ଅଞ୍ଚଳକୁ ଦାବୀ କରିବାରୁ ରାଜା ଶ୍ୟାମସୁନ୍ଦର ସେହି ୧୮୨୫ ମସିହା ଶେଷ କାଳରେ ବଡ଼ମ୍ବା ଆକ୍ରମଣ କରି ଝୁମ୍ପୁଡ଼ିଆ ଓ କାଳିକା ପ୍ରସାଦ ଗ୍ରାମ ଦୁଇଟି ଦଖଲ କରିଥିଲେ । ଅଦ୍ୟାବଧି ସେହି ଗ୍ରାମ ଦୁଇଟି ଢେଙ୍କାନାଳର ରାଜସ୍ୱ ଗ୍ରାମ ରୂପେ ପରିଚିହ୍ନିତ । ସେହି ସମୟରେ ଅନ୍ୟ କୌଣସିଠାରେ ସୀମା ବିବାଦ ଉପୁଜିଥିବାର ପ୍ରମାଣ ଏପର୍ଯ୍ୟନ୍ତ ହସ୍ତଗତ ହୋଇନାହିଁ । ୧୮୨୫ରେ ଢେଙ୍କାନାଳ ସୈନ୍ୟବାହିନୀ ଶେଷଥର ନିମିତ୍ ଅନୁଗୋଳ ଯୁଦ୍ଧ କରିଥିଲେ । ଏହା ପରେ ଢେଙ୍କାନାଳରେ ଅନ୍ୟ କୌଣସି ଯୁଦ୍ଧ ସଂଘଟିତ ହୋଇନାହିଁ । ଏଣୁ ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ, ରାଜା ଶ୍ୟାମସୁନ୍ଦର ହିଁ ଢେଙ୍କାନାଳର ଶେଷ ଯୁଦ୍ଧଖୋର ରାଜା । ଓଡ଼ିଶାର ତତ୍କାଳୀନ ପରିସ୍ଥିତି ତାଙ୍କୁ ଯୁଦ୍ଧଖୋର କରିବାକୁ ବାଧ୍ୟ କରିଥିଲା । ୧୮୦୩ରେ ଇଷ୍ଟଇଣ୍ଡିଆ କମ୍ପାନୀ ଓଡ଼ିଶା ଅଧିକାର କରିବା ପରେ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାକୁ ପ୍ରତ୍ୟକ୍ଷ ଶାସନାଧୀନ କରି

ରାଜା ଓ ଜମିଦାରମାନଙ୍କୁ କରଦରାଜ୍ୟରେ ପରିଗଣିତ କଲେ । ଏହି କରଦ ରାଜ୍ୟ ପରିଚାଳନା ନିମିତ୍ତ କଟକଠାରେ କମ୍ପାନୀ ସରକାରଙ୍କ ପକ୍ଷରୁ ଟ୍ରିବୁଟାରୀ ମାହାଲ ସ୍ଥାପନା କରାଗଲା । ଟ୍ରିବୁଟାରୀ ମାହାଲ ବିଭିନ୍ନ ରାଜ୍ୟ ଓ ଜମିଦାରୀର ପରିସୀମା ଚିହ୍ନଟ କରି କମ୍ପାନୀ ସରକାରଙ୍କ ବାର୍ଷିକ ଦେୟ (ପେସ୍‌କସ୍) ନିର୍ଦ୍ଧାରଣ କରୁଥିଲେ । ତେଣୁ ଆପଣା ରାଜ୍ୟର ସୀମା ବୃଦ୍ଧି ନିମିତ୍ତ ସଭିଏଁ ଲାଳାୟିତ ଥିଲେ । ଢେଙ୍କାନାଳ ଚତୁଃପାର୍ଶ୍ୱରେ କେନ୍ଦୁଝର, ପାଲଲହଡ଼ା, ତାଳଚେର, ଅନୁଗୋଳ, ହିନ୍ଦୋଳ, ବଡ଼ମ୍ବା, ତିଗିରିଆ, ଆଠଗଡ଼ ପ୍ରଭୃତି ରାଜ୍ୟ ଏବଂ ଦର୍ପଣୀ, କଳକନା, ମଧୁପୁର, ସୁକିନ୍ଦା ପ୍ରଭୃତି ଜମିଦାରୀ ଅବସ୍ଥିତ ଥିଲା । ଶ୍ୟାମସୁନ୍ଦର ଥିଲେ ସିଂହ ବିଦ୍ୟାଧର ବଂଶର ଯଥାର୍ଥ ଉତ୍ତରାଧିକାରୀ । ଆପଣାର ପିତୃ ପ୍ରତିଷ୍ଠିତ ରାଜ୍ୟର ସୁରକ୍ଷା ନିମିତ୍ତ ବୃଦ୍ଧ ବୟସରେ ମଧ ତାଙ୍କୁ ତରବାରୀ ଧରିବାକୁ ପଡ଼ିଥିଲା । ବାଲ୍ୟକାଳରୁ ସେ ରାଜପ୍ରାସାଦରେ ରହି ଉତ୍ତମ ଯୁଦ୍ଧ ବିଦ୍ୟା ଶିକ୍ଷା କରିଥିଲେ । ତାଙ୍କ ପ୍ରପିତାମହ ରାଜକୁମାର ବେଣୁଧର ଶ୍ରୀଚନ୍ଦନ ସନ୍ନ୍ୟାସ ଗ୍ରହଣ କରି ହିମାଳୟ ଚାଲି ଯାଇଥିଲେ । ପିତାମହ ଭୂଜବନ ସାମନ୍ତ ଶାରୀରିକ ଅକର୍ମଣ୍ୟ ଥାଇ ମୃତ୍ୟୁବରଣ କରିଥିଲେ । ପିତା ଜଗନ୍ନାଥ ଭ୍ରମରବର ମାତ୍ର ୧୩ ଦିନ ରାଜା ହୋଇ ମଲେ । ଶ୍ୟାମ ସୁନ୍ଦର ସେହି ଦିନଠାରୁ ଅଲିଅଳରେ ରାଜପ୍ରାସାଦ ମଧ୍ୟରେ ବଢ଼ିଥିଲେ । ସକଳ ବିଦ୍ୟା ଶିକ୍ଷା କରିବା ସହିତ ସେ ନିଜକୁ ଜଣେ ସମର ବିଶାରଦ ଭାବରେ ପରିଣତ ଜୀବନରେ ପ୍ରମାଣ କରି ପାରିଥିଲେ । ଭାଗ୍ୟଦୋଷରୁ ରାଜଗାଦୀ ନିମିତ୍ତ ଦୀର୍ଘକାଳ ହିନ୍ଦୋଳ, ତିଗିରିଆ ଓ କେନ୍ଦ୍ରାପଡ଼ାରେ ରହି ସଂଗ୍ରାମ କରିଥିବା ପରେ ଶେଷରେ ସେ ଯେତେବେଳେ ରାଜା ହୋଇଛନ୍ତି । ସେତେବେଳେ ଗୌରବ ମଣ୍ଡିତ ଢେଙ୍କାନାଳର ଟେକ ରଖିବାରୁ ସେ ଦୃଢ଼ ପ୍ରତିଜ୍ଞା କରିଛନ୍ତି । ମାତ୍ର ଆଠବର୍ଷ ରାଜତ୍ୱରେ ସେ ଯେଉଁ ସୁଦକ୍ଷରାଜାଙ୍କ ଭୂମିକା ନିର୍ବାହ କରିଛନ୍ତି ତା'ର ପଟାନ୍ତର ନାହିଁ । ୧୮୨୨ରେ ରାଜଗାଦୀ ଆରୋହଣ କରିବା ବେଳକୁ ସେ ରାଜଗାଦୀ ନିମିତ୍ତ କରିଥିବା ମୋକଦ୍ଦମାରେ ଜୟ ଲାଭ କରିନଥିଲେ । ସେତେବେଳେ ନଅରରେ କୃଷ୍ଣଚନ୍ଦ୍ରଙ୍କ ବିଧବାରାଣୀ ପୀତାବାସ ପ୍ରିୟା ନିଜର ଶିଶୁକନ୍ୟା ସହିତ ରହୁଥିଲେ । ତେଣୁ ସେ କେତେକ ଦାସଦାସୀ ଓ ଅନୁଚରଙ୍କୁ ନେଇ ଶ୍ୟାମସୁନ୍ଦରଙ୍କୁ ପ୍ରଥମେ ରାଜା ଭାବରେ ସ୍ୱୀକାର କଲେ ନାହିଁ । ଫଳରେ ନଅରରେ ସବୁବେଳେ ହିଂସା, ପ୍ରତିହିଂସା ଓ ଈର୍ଷା ଲାଗି ରହୁଥିଲା । ତଥାପି ଷାଠିଏ ବର୍ଷରୁ ଉର୍ଦ୍ଧ୍ୱ ବୟସରେ

ଶ୍ୟାମସୁନ୍ଦର ସକଳ ପ୍ରତିକୂଳତାକୁ ପଛରେ ପକାଇ ସୈନ୍ୟବାହିନୀ ସଦୃଢ଼ କରିବା ସହିତ ସୁଶାସନ ପ୍ରତିଷ୍ଠା କରି ପାରିଥିଲେ । ରାଜା ରାମଚନ୍ଦ୍ରଙ୍କହ ମୃତ୍ୟୁ ଅର୍ଥାତ୍ ୧୮୦୭ ମସିହାରୁ ଢେଙ୍କାନାଳ ରାଜଗାଦୀକୁ ନେଇ କନ୍ଦଳ ସୃଷ୍ଟି ହୋଇଥିଲା । ତଥା ମନ୍ତ୍ରୀ ଓ ବକ୍‌ସିକ ସମେତ ଅନ୍ୟାନ୍ୟଙ୍କୁ ହତ୍ୟା କରାଯାଇଥିଲା । ତେଣୁ ପଡ଼ୋଶୀ ରାଜା ଢେଙ୍କାନାଳର ଦୁର୍ବଳତାର ସୁଯୋଗ ନେଇ କିଛି କିଛି ଅଞ୍ଚଳକୁ ନିଜର ଦାବୀ କଲେ । ରାଜା ଶ୍ୟାମସୁନ୍ଦର ଏହି ଅବସରରେ ଯଥାର୍ଥ ମୁକାବିଲା ନ କରିଥିଲେ ଅନେକ ଅଞ୍ଚଳ ପଡ଼ୋଶୀ ରାଜ୍ୟଭୁକ୍ତ ହୋଇଯାଇଥାନ୍ତା ।

ରାଜା ଶ୍ୟାମସୁନ୍ଦର ଜଣେ ଧର୍ମପରାୟଣ ରାଜା ଥିଲେ । ସେ ବଳଭଦ୍ର ସାଗର (ଗୋଡ଼ି ପୋଖରୀ)ର ପୁନରୁଦ୍ଧାର କରିଥିଲେ । ଏତଦ୍‌ଭିନ୍ନ ରାଜପ୍ରାସାଦର ଗୃହଗୁଡ଼ିକ ପକ୍‌କା କରି ଚୂର୍ଣ୍ଣଲେପନ ତାଙ୍କର ଅନ୍ୟତମକୀର୍ତ୍ତୀ । ଦକ୍ଷିଣକାଳୀ ସନ୍ନିକଟ ବାଉଁଶ ପାଟଣାର ଆମ୍ରୋଦ୍ୟାନ ସେ ସ୍ୱହସ୍ତରେ ରୋପଣ କରିଥିଲେ । ଅବଶ୍ୟ ତାହା ବର୍ତ୍ତମାନ ନାହିଁ, କିନ୍ତୁ ବାଉଁଶ ପୋଖରୀ ଅଦ୍ୟାବଧି ବିଦ୍ୟମାନ । ଢେଙ୍କାନାଳ ନଗରୀଟି ଏକ ପାର୍ବତ୍ୟ ଉପତ୍ୟକାରେ ଅବସ୍ଥିତ । ଏହାକୁ ଦୃଷ୍ଟିରେ ରଖି ଢେଙ୍କାନାଳର ରାଜନ୍ୟବୃନ୍ଦ ଏହି ଉପତ୍ୟକାରେ ୨୫ ଗୋଟି ପୋଖରୀ ଖୋଳାଇଥିଲେ । ପ୍ରଥମ ପୋଖରୀ, ଯାହାକି ରାଜପ୍ରାସଦ ସମ୍ମୁଖରେ ଅବସ୍ଥିତ । ତାହାର ମୂଳ ନାମ ଗୋଡ଼ି ପୋଖରୀ । ଏହି ପୋଖରୀଟି ଶବରବୀର ଢେଙ୍କାର କୀର୍ତ୍ତୀ । ପରେ ରାଜା ବଳଭଦ୍ର ଏହାର ପୁନରୁଦ୍ଧାର କରି ନାମ ବଳଭଦ୍ର ସାଗର ରଖିଥିଲେ । ଏହି ପୋଖରୀ ପୁନର୍ବାର ଶ୍ୟାମସୁନ୍ଦରଙ୍କ ରାଜତ୍ୱରେ ୧୮୨୭ ମସିହାରେ ପୁନରୁଦ୍ଧାର କରାଯାଇଥିଲା । ରାଜା ଶ୍ୟାମ ସୁନ୍ଦର ଦେବତା, ବ୍ରାହ୍ମଣ ଓ ବୈଷ୍ଣବଙ୍କୁ ଭକ୍ତି କରୁଥିଲେ । ତଦୀୟ ମହାରାଣୀ କୁନ୍ଦନଦେବୀ କେତେକ ବ୍ରାହ୍ମଣଙ୍କୁ ଭୂମିଦାନ ପୂର୍ବକ ପୂଣ୍ୟତୋୟା ବ୍ରାହ୍ମଣୀ କୂଳରେ କୁନ୍ଦଳ ଦେଇପୁର ଶାସନ ବସାଇଥିଲେ ।

ଶ୍ୟାମ ସୁନ୍ଦରଙ୍କ ଶେଷ ଜୀବନ ଦୁଃଖରେ କଟିଥିଲା । ପାର୍ଶ୍ୱବର୍ତ୍ତୀ ରାଜାମାନେ ତାଙ୍କ ବିରୁଦ୍ଧରେ ଅନେକ ଅଭିଯୋଗ ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟଙ୍କ ନିକଟରେ ଆଗତ କରିଥିଲେ । ତାହା ବିଚାରାଧୀନ ଥିବା ସମୟରେ ରାଜା ଓ ଜମିଦାରବୃନ୍ଦ ଇର୍ଷାନ୍ୱିତ ହୋଇ ଜନୈକ ମୁସଲମାନ ବଣିକକୁ କପଟତା କରି ପଠାଇଥିଲେ । ସେ ଜିନିଷ ବିକ୍ରୟ କରୁ କରୁ ରାଜାଙ୍କୁ ଏକାକୀ ଦେଖି ଛୁରୀରେ ମାରିଦେବାକୁ ଉଦ୍ୟତ ହେବା ସମୟରେ ରାଜା ଗୋଟିଏ ଘରେ

ପଶିଯାଇ କବାଟ କିଳିଦେଲେ । ଦେହରକ୍ଷୀମାନେ ତତ୍କ୍ଷଣାତ୍ ସେଠାରେ ପହଞ୍ଚି ବର୍ଚ୍ଛାରେ ଆତତାୟୀକୁ ଆକ୍ରମଣ କଲେ । ଏହି ଆକ୍ରମଣରେ ସେହି ମୁସଲମାନର ମୃତ୍ୟୁ ଘଟିଲା । ତା'ର ଆତ୍ମୀୟସ୍ୱଜନମାଣେ କମିଶନରଙ୍କ ନିକଟରେ ଫେରାଦୀ ହେଲେ । ପାର୍ଶ୍ୱବର୍ତ୍ତୀ ରାଜାଙ୍କର ଏତାଦୃଶ କାର୍ଯ୍ୟରେ ଶ୍ୟାମସୁନ୍ଦର ହତୋତ୍ସାହ ହୋଇ ପଡ଼ିଲେ । ସେ ମଧ ଅପୁତ୍ରିକ ଥିଲେ । ତେଣୁ ଢେଙ୍କାନାଳ ରାଜବଂଶର ଭାଇ ପୁଅ ସାମନ୍ତ ନିତ୍ୟାନନ୍ଦଙ୍କ ପୁତ୍ର ଭଗୀରଥଙ୍କୁ ସେ ପୋଷ୍ୟ ପୁତ୍ର ଭାବରେ ୧୮୨୪ରୁ ଗ୍ରହଣ କରି କମ୍ପାନୀ ସରକାରଙ୍କୁ ପୋଷ୍ୟପୁତ୍ର ମଞ୍ଜୁର ନିମିତ୍ତ ଆବେଦନ କରିଥିଲେ । ରାଜାଙ୍କ ବିରୁଦ୍ଧରେ ଅନେକ ଅଭିଯୋଗ ଥିବାରୁ ଏହା ବିଚାରାଧୀନ ରହିଥିଲା । ଦୁଃଖର ବିଷୟ, ୧୮୩୦ ମସିହାରେ ରାଜା ଶ୍ୟାମସୁନ୍ଦର ପ୍ରାତଃ ଭ୍ରମଣ କରୁଥିବା ସମୟରେ ହଠାତ୍ ଏକ ପାଗଳା କୁକୁର ତାଙ୍କୁ କାମୁଡ଼ିଦେଲା ଏବଂ ଜଳାତଙ୍କ ରୋଗରେ ଅଳ୍ପଦିନ ଭିତରେ ରାଜାଙ୍କ ମୃତ୍ୟୁ ହେଲା ।

୧୮୨୨ଠାରୁ ୧୮୩୦ ମାତ୍ର ଆଠବର୍ଷ ରାଜତ୍ୱ କରିଥିଲେ ହେଁ ପରିଣତ ବୟସରେ ଆପଣାର ପରାକାଷ୍ଠା ପ୍ରଦର୍ଶନ ପୂର୍ବକ ରାଜା ଶ୍ୟାମସୁନ୍ଦର ମହୀନ୍ଦ୍ର ବାହାଦୂର ଇତିହାସରେ ଏକ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଯାଇଛନ୍ତି । ସେ ଥିଲେ ସିଂହ ବିଦ୍ୟାଧର ବଂଶର ସୁଯୋଗ୍ୟ ପାୟାଦ । ତାଙ୍କ ରାଜତ୍ୱରେ ଚବିଶ ପ୍ରଗଣା ବିଶିଷ୍ଟ ଢେଙ୍କାନାଳ ରାଜ୍ୟର ପରିସୀମା ଥିଲା ୧୫୦୦ ବର୍ଗମାଇଲ । ଏହି କୀର୍ତ୍ତିମାନ୍ ରାଜାଙ୍କର ଶେଷକୃତ୍ୟ ୧୮୩୦ ମସିହା କାର୍ତ୍ତିକ ଶୁକ୍ଳ ଏକାଦଶୀ ତଥିରେ ମଡ଼ାଦେଉଳଠାରେ ସମ୍ପନ୍ନ କରାଯାଇଥିଲା ।



# ମହାରାଜା ଭଗୀରଥ

ରାଜା ଶ୍ୟାମସୁନ୍ଦର ମହୀନ୍ଦ୍ର ବାହାଦୂର ଅପୁତ୍ରିକ ଥିଲେ । ତେଣୁ ୧୮୨୪ ମସିହାରେ ସେ ପାଟରାଣୀ କୁନ୍ଦନ ଦେବୀଙ୍କ ଅନୁମୋଦନ କ୍ରମେ ଭଗୀରଥଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ, ଢେଙ୍କାନାଳ ରାଜବଂଶର ସାମନ୍ତବୃନ୍ଦ ପୂର୍ବ ରାଜଧାନୀ କରମୂଳ ପଟଣାର ପର୍ବଦିଗସ୍ଥ ଦଲାର ଗ୍ରାମରେ ନିବାସ କରୁଥିଲେ । ସେହି ସାମନ୍ତ ବଂଶର ପର୍ଶୁରାମ ଶ୍ରୀଚନ୍ଦନଙ୍କ ପୁତ୍ର ନିତ୍ୟାନନ୍ଦ ଶ୍ରୀଚନ୍ଦନଙ୍କ ସୁପୁତ୍ର ହେଉଛନ୍ତି ଭଗୀରଥ । ଏହାଙ୍କ ଜନ୍ମ ୧୮୧୮ ମସିହାରେ ଦଲାର ଗ୍ରାମରେ ହୋଇଥିଲା । ଛଅବର୍ଷ ଛଅମାସ ବୟସରେ ସେ ଢେଙ୍କାନାଳ ରାଜା ଶ୍ୟାମସୁନ୍ଦରଙ୍କ ପୋଷ୍ୟପୁତ୍ର ହୋଇ ଢେଙ୍କାନାଳ ରାଜା ପ୍ରାସାଦକୁ ଆସିଲେ । ଏ ସମ୍ପର୍କରେ ଭଗୀରଥ କୀର୍ତ୍ତି କଳାପରେ ଉଲ୍ଲେଖ ଅଛି :

ଗମପୁର ବିଷସାର, ତହିଁରେ ଗ୍ରାମ ଦଲାର
ପୂର୍ବୁ ଭାଇ ପୁଅ ତହିଁ, ଥିଲେ ଯେ ରହି ।
ଢେଙ୍କାନାଳ ଏହି ସ୍ଥାନ, ତୁଳନା ନାହିଁ ସେ ଆନ ।
ବ୍ରାହ୍ମଣୀ ତୀରରେ ସ୍ଥିତ, ଗିରିବେଷ୍ଟିତ ସେ ।
ପର୍ଶୁରାମ ଶ୍ରୀଚନ୍ଦନ, ରାୟ ପଦରେ ଲେଖନ ।
ନିତ୍ୟାନନ୍ଦ ଶ୍ରୀଚନ୍ଦନ, ତାଙ୍କ ନନ୍ଦନ ଯେ ।
ତାହାଙ୍କ ତନୁରୁ ଜାତ, ଭଗୀରଥ ନାମେ ଖ୍ୟାତ ।
ସାଗରୁ ଉତ୍ପତ୍ତି ଯାଥା, ସୁଧାଂଶୁ ତଥା ସେ ।
ଚୈତ୍ରକୃଷ୍ଣ ସ୍ୱାତୀ ତୁଳ, ପଞ୍ଚମୀ ତିଥିରେ ଠୁଳ ।
ଚର୍ତୁବିଂଶ ଅଠରଶ, ଖ୍ରୀଷ୍ଟ ବରଷ ଯେ ।
ସାତ ମାସ ଛ ବରଷ, ତାଙ୍କର ଜାଣ ବୟସ ।
ଆଗମନ ଢେଙ୍କାନାଳ, ଦୁର୍ଗ ସେ କାଳ ଯେ ।

ଏଥିରୁ ପ୍ରମାଣିତ ହେଉଛି, ଭଗୀରଥଙ୍କୁ ଯେତେବେଳେ ଛବର୍ଷ ସାତମାସ ଅର୍ଥାତ୍ ୧୮୨୪ ମସିହା ଚୈତ୍ରକୃଷ୍ଣ ପଞ୍ଚମୀ ସ୍ୱାତୀ ନକ୍ଷତ୍ର ତୁଳ ଚନ୍ଦ୍ରରେ ସେ ଶାସ୍ତ୍ରୀୟ ବିଧିରେ ପୁତ୍ରେଷ୍ଟି ଯଜ୍ଞ ସମାପନାନ୍ତେ ଦଲାରରୁ ଢେଙ୍କାନାଳକୁ ଆଗମନ

କରିଥିଲେ । ରାଜା ଶ୍ୟାମ ସୁନ୍ଦରଙ୍କ ଅନ୍ତେ ୧୮୩୦ ମସିହାରେ ନାବାଳକ ଭଗୀରଥଙ୍କୁ ଢେଙ୍କାନାଳ ରାଜଗାଦୀରେ ଅଭିଷେକ କରାଗଲା । ସେତେବେଳକୁ ତାଙ୍କର ବୟସ ମାତ୍ର ବ୧୨ର୍ଷ ୮ ମାସ ।

ନାବାଳକ ରାଜା ଭଗୀରଥ ପୂର୍ବତନ ରାଜା ଶ୍ୟାମସୁନ୍ଦରଙ୍କ ଦ୍ୱାରା ଶାସ୍ତ୍ରୀୟ ବିଧିରେ ପୋଷ୍ୟପୁତ୍ର ରୂପେ ଗୃହୀତ ହୋଇଥିଲେ ହେଁ ତତ୍‌କାଳୀନ ଆଇନ ଅନୁସାରେ ଇଂରେଜ ସରକାରଙ୍କଠାରୁ ଅନୁମତି ହୋଇନଥିଲା । ଭଗୀରଥଙ୍କ ରାଜଗାଦୀ ଆରୋହଣ ପରେ ଏ ପ୍ରସଙ୍ଗରୁ କେନ୍ଦ୍ର କରି ଭୀଷଣ ଦ୍ୱନ୍ଦ୍ୱ ଉପଗତ ହେଲା । ସେହି ସମୟରେ ପରଲୋକ ଗତ ରାଜା କୃଷ୍ଣଚନ୍ଦ୍ରଙ୍କ ପାଟରାଣୀ ପୀତବାସ ପ୍ରିୟା ଏବଂ ଶ୍ୟାମସୁନ୍ଦରଙ୍କ ପାଟରାଣୀ କୁନ୍ଦନ ଦେବୀ ଉଭୟ ଜୀବିତ ଥିଲେ । ଦୁହିଁଙ୍କ ମଧ୍ୟରୁ କିଏ ନାବାଳକ ରାଜାଙ୍କୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରିବ ସେଥି ନିମିତ୍ତ ଅନ୍ତର୍ଦ୍ୱନ୍ଦ୍ୱ ଉପୁଜିଲା । ପାତ୍ର, ମନ୍ତ୍ରୀ, ବକ୍‌ସି, ସାମନ୍ତ ଓ ସଭାସଦଙ୍କ ମଧ୍ୟରେ କେତେକ ପୀତବାସ ପ୍ରିୟାଙ୍କୁ ଓ ଅନ୍ୟାନ୍ୟ କେତେକ କୁନ୍ଦନ ଦେବୀଙ୍କୁ ସମର୍ଥନ କରିବାରୁ ଅନ୍ତର୍ଦ୍ୱନ୍ଦ୍ୱ ଭୀଷଣାକାର ଧାରଣ କଲା । ତେଣୁ ରାଜପ୍ରାସାଦ ମଧ୍ୟରେ ସର୍ବଦା ସନ୍ଦେହ, ହିଂସା ଓ ଷଡ଼ଯନ୍ତ୍ର ଲାଗି ରହିଲା । ଶିଶୁ ରାଜା ଭଗୀରଥଙ୍କ ଉପରେ ଏହାର ପ୍ରଭାବ ମଧ୍ୟ ପଡ଼ିଥିଲା । ରାଜ୍ୟର ମୁଖ୍ୟ ପ୍ରଜାବୃନ୍ଦ ଓ ବେହେରା ପଧାନବୃନ୍ଦ ଏହି ଘଟଣାକୁ ନେଇ ବିଚଳିତ ହୋଇପଡ଼ିଲେ । ଇଷ୍ଟଇଣ୍ଡିଆ କମ୍ପାନୀ ତରଫରୁ ନିଯୁକ୍ତ ପଦାଧିକାରୀ ଏହା ଜାଣିଥିଲେ ହେଁ ନୀରବତା ଅବଲମ୍ବନ କରିଥିଲେ । ସେମାନଙ୍କର ଢେଙ୍କାନାଳ ପ୍ରତି ବହୁଦିନରୁ ଲୋଲୁପ ଦୃଷ୍ଟି ପଡ଼ିଥିଲା । ଏପରିକି ଇଂରେଜ ଶାସକମାନେ ଚାହୁଁଥିଲେ ରାଜଗାଦୀରୁ କେନ୍ଦ୍ର କରି ଗଣ୍ଡଗୋଳ ଉପୁଜିବାର ଦ୍ୱାହିରେ ଢେଙ୍କାନାଳକୁ ଖାସ୍ (ପ୍ରତ୍ୟକ୍ଷ ଶାସନାଧିନ) କରି ହେବ । ସେହି ସମୟରେ କଟକଠାରେ ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ଭାବରେ ଷ୍ଟକୱେଲ ସାହେବ ଅବସ୍ଥାପିତ ଥାଆନ୍ତି । ଦୁର୍ଭାଗ୍ୟରୁ ଢେଙ୍କାନାଳର ଉତ୍ତରରେ ଅବସ୍ଥିତ କେନ୍ଦୁଝର ଓ ପାଲଲହଡ଼ାର ରାଜଗାଦୀକୁ କେନ୍ଦ୍ର କରି ଦ୍ୱନ୍ଦ୍ୱ ଉପୁଜିଥିଲା ତଥା ପଶ୍ଚିମରେ ଅବସ୍ଥିତ ଅନୁଗୋଳ ରାଜା ସୋମନାଥ ସିଂହକୁ ଗାଦିଚ୍ୟୁତ କରିବା ନିମିତ୍ତ ଇଂରେଜ ଶାସକ କର୍ତ୍ତୃପକ୍ଷ ମସୁଧା ଚଳାଇଥିଲେ ।

ରାଜ୍ୟର ଗୋଳମାଳିଆ ପରିସ୍ଥିତି ତଥା ରାଜପ୍ରାସାଦରେ ସଂଘଟିତ ଗଣ୍ଡଗୋଳକୁ ନେଇ ବ୍ୟଥିତ ଥିବା ସର୍ବରାକାର ଓ ବେହେରା ପଧାନଙ୍କ ମଧ୍ୟରୁ କେତେକ କମିଶନର ଷ୍ଟକ୍‌ୱେଲ୍‌ଙ୍କ ଅଦାଲତରେ ଦରଖାସ୍ତ ପେସ୍ କଲେ ।

[Dhenkanal was under minor Raja. The people want to exteud of petitioning to Govt. for intenveution (No. 5 of 16.10.1831, govt. to stock well)]

ଫଳରେ ଷ୍ଟକଓ୍ୱେଲ ସାହେବ ୧୮୩୧ ମସିହାରେ ଢେଙ୍କାନାଳର ଶାସନଭାର ନିଜ ହାତକୁ ନେଲେ । ଐତିହାସିକ ଡକ୍ଟର କେ.ଏମ୍.ପାତ୍ର ସ୍ୱରଚିତ ପୁସ୍ତକ "Orissa under East India Company" ର ୨୯୬ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ।

"In 1831, the administration of Dhenkanal was taken over. That state presented a dismal picture of anarcting and confusion, after the death of the old Raja. The movable property left by the deceased Raja was plundered and the amount extored from the Rayats as Revenue was squandered and misapropriated by the servants of the Raja. Also no provision was made for the payment of the "Tribute" to the government. Stock well could not remain a calm spectrator to the misfortune of a minor Raja in order to safe guard his interests as well as the welface of his people. Stockwell took over the administration of Dhenkanal which was managed in the name of the minor Raja.

ଏହି ସମୟରେ ଢେଙ୍କାନାଳ ରାଜପ୍ରାସାଦରେ ନାନାଦି ବିଶୃଙ୍ଖଳା ସୃଷ୍ଟି ହେଲା । କୃଷ୍ଣଚନ୍ଦ୍ରଙ୍କ ବିଧବା ରାଣୀ ପୀତବାସ ପ୍ରିୟା ପାଞ୍ଚଶହ ପାଇକ ଓ କେତେକ ପ୍ରଜାଙ୍କୁ ଧରି କୁନ୍ଦନଦେବୀଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ସୃଷ୍ଟି କଲେ । ସେହିପରି ଅନେକ ପାଇକ ଓ ପ୍ରଜା କୁନ୍ଦନଦେବୀଙ୍କୁ ସମର୍ଥନ କଲେ । ଫଳରେ ରାଜବାଟୀ ମଧ୍ୟରେ କଳିକଜିଆ ଓ ହଣାକଟା ଲାଗି ରହିଲା । ରାଜପ୍ରାସାଦ ସନ୍ନିକଟରେ ବାସ କରୁଥିବା ବଡ଼ପଣ୍ଡା ପିଣ୍ଡିକି ରାୟଗୁରୁ ବିଧବାରାଣୀ କୁନ୍ଦନ ଦେବୀଙ୍କୁ ସମର୍ଥନ କରୁଥିଲେ । ତେଣୁ ପୀତବାସ ପ୍ରିୟା ସ୍ୱଅଧୀନରେ ଥିବା ପାଇକମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ, ବଡ଼ପଣ୍ଡାଙ୍କୁ ଜୀବନରେ ମାରିଦିଅ । ପୀତବାସ ପ୍ରିୟାଙ୍କ ନିର୍ଦ୍ଦେଶମତେ ପାଇକମାନେ ବଡ଼ପଣ୍ଡା ପିଣ୍ଡିକି ରାୟଗୁରୁଙ୍କୁ ରଜସଂକ୍ରାନ୍ତି ଦିନ ଏକମୁନାରେ ଭୁଷି ହତ୍ୟା କଲେ । ଏହି ଘଟଣା ଇଂରେଜ ସରକାରଙ୍କ ଗୋଚର ହେଲା ଏବଂ ଷ୍ଟକ୍‌ଓ୍ୱେଲ୍ ସାହେବ ସରଜମିନ୍ ତଦନ୍ତ ନିମିତ୍ତ ଢେଙ୍କାନାଳ ଆସିଲେ । ଇତି ମଧ୍ୟରେ ଅନ୍ୟ ଦୁଇଜଣ ସମର୍ଥକଙ୍କୁ ମଧ୍ୟ ହତ୍ୟା କରାଗଲା । ଏ ସମ୍ପର୍କରେ ସୂଚନା ଦେବାକୁ ଯାଇ ଡକ୍ଟର କେ.ଏମ୍. ପାତ୍ର ଲେଖିଛନ୍ତି –

"Troubles is Dhenkanal. In June 1831 distrubances broke out at that place in which three persons were killed, two were wounded and their property was plundered. (Ref to BJ) (Cr) P.No 27 of November 18, 1833 R. Hunter commissioner of Cuttack 12.10.1833)

ଷ୍ଟକ୍ ୱେଲ୍ ସାହେବ ସରଜମିନ୍ ତଦନ୍ତ ଓ ସାକ୍ଷ୍ୟ ପ୍ରମାଣ ନେବା ପରେ ରାଣୀ ପୀତବାସ ପ୍ରିୟା ଓ ତାଙ୍କ ସମର୍ଥକଙ୍କୁ ଦୋଷୀ ସାବ୍ୟସ୍ତ କରିଥିଲେ । ଏଥିରେ ଅସନ୍ତୁଷ୍ଟ ହୋଇ ରାଣୀ ଉକ୍ତ ମୋକଦ୍ଦମାର ପୁନର୍ବିଚାର ନିମିତ୍ତ ପୁରୀ ଜିଲ୍ଲାର କଲେକ୍ଟରଙ୍କୁ ଆବେଦନ କରିଥିଲେ । ପୁରୀ କଲେକ୍ଟର ପୀତବାସ ପ୍ରିୟାଙ୍କୁ ନୋଟିସ୍ କରିଥିଲେ ହେଁ ସେ ହାଜର ହେଲେ ନାହିଁ । ଏଥିରେ ରାଗାନ୍ୱିତ ହୋଇ ସୁପରିଣ୍ଟେଣ୍ଡେଣ୍ଟ ମହୋଦୟ ସସୈନ୍ୟେ ଢେଙ୍କାନାଳ ଆଗମନ କଲେ ଏବଂ ତଦନ୍ତ ତଥା ପୁନର୍ବାର ସାକ୍ଷ୍ୟ ପ୍ରମାଣ ନେବା ପରେ ରାଣୀ ପିତବାସ ପ୍ରିୟାଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଆଦେଶ କରିଥିଲେ ।

ତତ୍କାଳୀନ ରେକର୍ଡ଼ରୁ ଜଣାଯାଏ "It was found out that Rani Pitabas Devi was involved in the crime and was assisted by Nityananda Sri Chandra and Narayan Singh. At the end of the enquiry the Rani and Nityananda Sri chandra were banished from Dhenkanal and were imprison as state prisoners at Midanapur. And they were to be provided with monthly allowances from Dhenkanal. Narayan Singh was imprisoned for 14 years in the Cuttack Jail (No. 30 of Nov 18, 1833 govt. to Hunter Nov. 18, 1833) ଗବେଷିକା ସତ୍ୟଭାମା ପତି ସକଳ ଅଭିଲେଖ ଅନୁଧ୍ୟାନ ପୂର୍ବକ ସ୍ୱରଚିତ ନିବନ୍ଧ "How gadjats were ruled ? A case study (Rani Pitabasa Devi of Dhenkanal ରେ ଉଲ୍ଲେଖ କରିଛନ୍ତି । "The deceased Raja had adopted a son to succed him. He was Bhaganrathi Mohindra Bahadur son of one Nityananda Sri Chandan Mohapatra. As the boy was minor to rule the estate, the head servants of the killa incited the two invidow queens namely Kundan Devi and Pitabasa Devi as to who should be his guadian and manager. The two ranis even went to cuttack to seek the help of the supdt of Tributary Mahali in deciding the matter × × × As the successor to the Gadi was a minor one and the two contestant Ranis were equally incapable of managing the estate, the British authorities took the Killa under temporary attachment. × × × As a result of the Primary

investigation Rani Pitabas Devi and two of her adhereuts namely Nityanandsa Srichandan and Dasarathi Pattanaik were sentenced to be banished and imprisoned on the charge of murder × × × Consequently these three convicted person were sent to Cuttack in April 1833 : (Orissa Review, July, Aug 1982) ଏତାଦୃଶ ପରିସ୍ଥିତିରେ ଢେଙ୍କାନାଳ ରାଜ୍ୟ ଇଷ୍ଟଇଣ୍ଡିଆ କମ୍ପାନୀଙ୍କ ପ୍ରତ୍ୟକ୍ଷ ଶାସନରେ ରହିଲା । ଶେଷରେ ତା୧।୧୨।୧୮୩୬ର ଇଂରେଜ କର୍ତ୍ତୃପକ୍ଷ ସ୍ୱର୍ଗୀୟ ରାଜା ଶ୍ୟାମସୁନ୍ଦର ମହୀନ୍ଦ୍ର ବାହାଦୂରଙ୍କ ବିଧବା ରାଣୀ କୁନ୍ଦନଦେବୀଙ୍କୁ ନାବାଳକ ରାଜା ଭଗୀରଥୀଙ୍କ ମୁରବୀ ଘୋଷଣା କରି ରାଜ୍ୟ ଭାର ଅର୍ପଣ କଲେ । ତତ୍‌କାଳୀନ ରେକର୍ଡ଼ରୁ ଜଣାଯାଏ । "It has been already noted that Dhenkanal was under the direct management of the superitendent out of Tributary Mahal from 1831. On December 1, 1836, Rani Kundan Devi was placed in possession of the Mahal (No 25 of Dec. 13, 1836 Ricket to govt, December 1, 1836) ଦୋଷୀ ସାବ୍ୟସ୍ତ ହୋଇ ରାଣୀ କୃଷଚନ୍ଦ୍ର ପ୍ରିୟା କଟକ ତୁଳସୀପୁରଠାରେ ଆଜୀବନ ବନ୍ଦୀ ଜୀବନ ଭୋଗ କଲେ । ତାଙ୍କୁ ଢେଙ୍କାନାଳ ରାଜକୋଷରୁ ମାସିକ ଟ୧୦୬।୧୮ ଏକଶତ ଛଅ ଟଙ୍କା ଦଶ ଅଣା ଆଠ ପାହୁଲା ଭତ୍ତା ପ୍ରଦାନ କରାଗଲା । ତାଙ୍କର ଏକ କନ୍ୟା ଥିଲା, ସେହି କନ୍ୟାର ବିଭାଘର ନିମିତ୍ତ ୧୮୩୪ ମସିହାରେ ଇଂରେଜ କର୍ତ୍ତୃପକ୍ଷଙ୍କ ହୁକୁମ ଅନୁଯାୟୀ ଢେଙ୍କାନାଳ ରାଜକୋଷରୁ ୪୫୦୦ ଟଙ୍କା ପ୍ରଦାନ କରାଯାଇଥିଲା । ଦୁଃଖର ବିଷୟ, ଏହି ପୀତବାସ ପ୍ରିୟା ୧୮୪୬ ନଭେମ୍ବର ୧୧ ତାରିଖରେ ତାଙ୍କର ଜନୈକା ଦାସୀଙ୍କୁ ହତ୍ୟା କଲେ । ଫଳରେ ତାଙ୍କ ପ୍ରତି କଠୋର ମନୋଭାବ ପୋଷଣ କରାଯାଇ ମାସିକ ଭତ୍ତାର ପରିମାଣ ୩୦ଟଙ୍କାକୁ କମାଇ ଦିଆଗଲା । କଟକ ତୁଳସୀପୁରରେ ଗୋଟିଏ ମାଟି ଘରେ ସେ ଆଜୀବନ ବନ୍ଦୀ ଜୀବନ ବିତାଇ ସେଠାରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କ ସହଯୋଗୀମାନେ କଟକ ଜେଲ୍‌ରେ ବନ୍ଦୀ ଜୀବନ କଟାଇଲେ ।

ଇଂରେଜ ଶାସକ ରାଣୀ କୁନ୍ଦନଦେବୀଙ୍କୁ ନାବାଳକ ରାଜା ଭଗୀରଥଙ୍କ ତତ୍ତ୍ୱାବଧାରକ ନିଯୁକ୍ତି କରିବା ସହିତ ନାବାଳକ ରାଜାଙ୍କ ଶିକ୍ଷାଦୀକ୍ଷାର ସୁବନ୍ଦୋବସ୍ତ କରିଥିଲେ । ମାତ୍ର ଛଅବର୍ଷ ଛଅମାସ ବୟସରେ ଭଗୀରଥ ଢେଙ୍କାନାଳ ଆସିଥିଲେ ଏବଂ ତତ୍‌ପରେ ରାଜପ୍ରାସାଦରେ ଘଟିଥିବା ଷଡ଼ଯନ୍ତ୍ର, ଗଣ୍ଡଗୋଳ ଓ ହତ୍ୟା ତାଙ୍କ ଉପରେ ପ୍ରଭାବ ପକାଇଥିଲା । ଦୁର୍ଭାଗ୍ୟରୁ ସେ

ଗଣ୍ଡଗୋଳିଆ ପରିସ୍ଥିତି ହେତୁ ଯଥୋଚିତ ଶିକ୍ଷାର ସୁବିଧା ପାଇନଥିଲେ । ଏହି ପରିପ୍ରେକ୍ଷୀରେ ତାଙ୍କୁ ସୁଶିକ୍ଷା ପ୍ରଦାନ କରିବାର ଆବଶ୍ୟକତା ଥିଲା । ତେଣୁ କମିଶନରଙ୍କ ଦ୍ୱାରା ନିଯୁକ୍ତି ଜନୈକ ପଦାଧିକାରୀଙ୍କ ଦ୍ୱାରା ନାବାଳକ ରାଜା ଭଗୀରଥଙ୍କ ଶିକ୍ଷାର ସ୍ୱତନ୍ତ୍ର ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ବିଶେଷତଃ ପାରମ୍ପରିକ ଭାଷା ସାହିତ୍ୟ ଶିକ୍ଷା ସହିତ ଶାରୀରିକ ଶିକ୍ଷା, ଶସ୍ତ୍ର ଚାଳନା ତଥା ରାଜନୀତି ଶିକ୍ଷା ହିଁ ତାଙ୍କୁ ପ୍ରଦାନ କରାଯାଇଥିଲା । ରାଜପଣ୍ଡିତ ଓ ବଡ଼ପଣ୍ଡା ତାଙ୍କୁ ପ୍ରତ୍ୟହ ଶାସ୍ତ୍ର ଶିକ୍ଷା ଦେଉଥିଲେ । ତାଙ୍କ ଶାରୀରିକ ଶିକ୍ଷକ ଥିଲେ ସାଧୁ ଇନ୍ଦ୍ରଜିତ୍ ସିଂହ ଏବଂ କେଶରୀ ସିଂହ । ସାଧୁ ଇନ୍ଦ୍ରଜିତ୍ ଖଡ୍ଗ ପ୍ରସାଦ ଦୁର୍ଗର ଗଡ଼ନାୟକ ଓ କେଶରୀସିଂହ ବଳରାମପୁର ଦୁର୍ଗର ମୂଖ୍ୟ ସେନାଧ୍ୟକ୍ଷ ଥିଲେ । ଏତଦ୍‌ଭିନ୍ନ କଟକ ସନ୍ନିକଟ ଡିହସାହିର ସନ୍‌ମୁଖ ସିଂହ ତାଙ୍କ ବ୍ୟାୟାମ ଓ ଅସ୍ତ୍ର ଶିକ୍ଷାର ଗୁରୁ ଥିଲେ । ଏହି ଗୁରୁବୃନ୍ଦ ନାବାଳକ ରାଜା ଭଗୀରଥଙ୍କୁ ବିଭିନ୍ନ ବ୍ୟାୟାମ, କୁସ୍ତି ଶିକ୍ଷା ଦେବା ସହିତ ନାନାଦି ଅସ୍ତ୍ରଚାଳନାରେ ସୁଶିକ୍ଷିତ କରାଇଥିଲେ । ବନ୍ଧୁକ ଓ ବାଟୁଳି ମାରିବାରେ ଭଗୀରଥ ଧୁରନ୍ଧର ଥିଲେ । ସେ ମଧ୍ୟ ଜଣେ ସୁଦକ୍ଷ ଶିକାରୀ ଭାବରେ ହରିଣ ଓ ବାଘ ଶିକାର କରିଥିଲେ । ସେ ତିନିଗତ ପଚାଶ ଗୋଟି ମହାବଳ ବ୍ୟାଘ୍ର ମାରିଥିବାର ଜନଶ୍ରୁତି ରହିଛି । ଏତଦ୍‌ଭିନ୍ନ, ଅଶ୍ୱାରୋହଣ, ରତ୍ନ ପରିଚୟ, ତନ୍ତ୍ର, ଗୁଣୀ ଗାରେଡ଼ି, ଚିତ୍ରାଙ୍କନ, ଗାନ୍ଧର୍ବବିଦ୍ୟା, ଶିଳ୍ପ ବିଦ୍ୟା, ରାସାୟନିକ ବିଦ୍ୟା ଓ ଇନ୍ଦ୍ରଜାଲ ପ୍ରତ୍ୟେକ ବିଦ୍ୟା ସେ ଶିକ୍ଷା କରିଥିଲେ । ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ବଡ଼ପଣ୍ଡାଙ୍କଠାରୁ ସେ ସଂସ୍କୃତ ଶାସ୍ତ୍ର, ପୁରାଣ, ସଂହିତା ଓ ଧର୍ମଶାସ୍ତ୍ର ଶିକ୍ଷା କରିଥିଲେ । ଭଞ୍ଜ ସାହିତ୍ୟ, ଦୀନକୃଷ୍ଣ ସାହିତ୍ୟ ତଥା ଅନ୍ୟାନ୍ୟ ଓଡ଼ିଆ କାବ୍ୟକବିତାମାନ ସେ ପଣ୍ଡିତ ବଳଭଦ୍ର ମିଶ୍ର, ବୈଦ୍ୟନାଥ ମହାପାତ୍ର, ହରି ସାମନ୍ତରାୟ ଓ ଦାଶରଥି ସୁବୁଦ୍ଧିଙ୍କ ଠାରୁ ଶିକ୍ଷା କରିଥିଲେ । ବଙ୍ଗଳା ସାହିତ୍ୟରେ ମଧ୍ୟ ତାଙ୍କର ଅସାଧାରଣ ଜ୍ଞାନ ଥିଲା । କେବଳ ହିନ୍ଦୁ ଧର୍ମଶାସ୍ତ୍ର ନୁହେଁ, ବାଇବେଲ ଓ କୋରାନ୍‌ରେ ମଧ୍ୟ ତାଙ୍କର ପ୍ରବେଶ ଥିଲା । ପ୍ରତ୍ୟହ ସନ୍ଧ୍ୟାରେ ସେ ରାଜପ୍ରାସାଦରେ ଶାସ୍ତ୍ରାଲୋଚନା କରୁଥିଲେ । ଅନେକ ବିଦେଶାଗତ ପଣ୍ଡିତ ଶାସ୍ତ୍ରଚର୍ଚ୍ଚାରେ ତାଙ୍କ ନିକଟରୁ ପରାସ୍ତ ହୋଇଥିଲେ । ଅଧ୍ୟୟନ ଓ ଅଧ୍ୟାପନା ଦ୍ୱାରା ତାଙ୍କ ଶାସ୍ତ୍ରଜ୍ଞାନ ବିଶେଷ ବୃଦ୍ଧି ହୋଇଥିଲା । ତାଙ୍କ ଶିକ୍ଷା ଦୀକ୍ଷା ସମ୍ବନ୍ଧରେ ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ର ସ୍ୱରଚିତ । ''ଭଗୀରଥ କୀର୍ତ୍ତୀ କଳାପ''ରେ ଉଲ୍ଲେଖ କରିଛନ୍ତି –

ଅଗ୍ନି କ୍ରୀଡ଼ା କଉତୁକ, କରଣେ ଅତି ଉସ୍ଥୁକ,
ଶତବିଧ ବାଜୀବାଣ, ବିହନ୍ତି ଜାଣ ଯେ ।
ନାମ ତାର ଅଛି ଯେତେ, କହିବା ପ୍ରଶଂସି କେତେ,
ବାଣ ବିଦ୍ୟାରେ ପଣ୍ଡିତ, ସେହି ବିଦିତ ଯେ ।
ହାବେଲୀ କାଷ୍ଠରେ ଗଢ଼ି କି କହିବା ତାର ରଡ଼ି
ବଜ୍ର ଗରଜନ କରେ, ଉଠେ ଅମ୍ବରେ ଯେ ।
କହ୍ନି ନାନାବିଧ ବାଜୀ, କରୁଥାନ୍ତି କାଲି ଆଜି,
ସନ୍ତରଣ କଉଶଳ, ଅଛି ଯେତେ ଭୂମିତଳ
ପାରଙ୍ଗମ ନୃପବର, ବିଧି କ୍ରମରେ ଯେ ।
ଯୁବାକାଳେ ଘୋଟକରେ, ବସି ଧରୁ ବାଗ କରେ
କ୍ଷଣକେ ଦିନକ ପନ୍ଥା, ଯାଆନ୍ତି ଏକା ଯେ ।
ଅଶ୍ୱ ଚିହ୍ନିବାରେ କ୍ଷମ, ଶାସ୍ତ୍ର ଲେଖା ଅନୁକ୍ରମ,
ବର୍ଣ୍ଣ ଗୁଣ ଜାତି ଚାରି, ପ୍ରଭେଦ କରି ଯେ ।
ହୀରା ନୀଳା ମୋତି ଜାତି, ମାଣିକ୍ୟ ବୈଡୁର୍ଯ୍ୟ ଖ୍ୟାତି
ପୁଷ୍ପରାଗ ଆଦି କରି, ତାମ୍ରାଷ୍ଟ ଧରି ଯେ ।
ଗାରେଡ଼ି ବିଦ୍ୟାରେ ଅତି, ପାରଦର୍ଶୀ ନରପତି
ବହୁକାଳ ସେହିଥିରେ, ପ୍ରବୃତ୍ତ ଥିଲେ ଯେ ।
ପାଣିବାଦ୍ୟ ମୌରଜିକ, ବୀଣାବାଦ୍ୟ ବୈଣବିକ,
ବିଦ୍ୟାରେ ଯାର ବିବେକ, ଅଛି ଅନେକ ଯେ ।
ଗାୟକଙ୍କ ତାନ ଲୟ, ନଟଙ୍କର ଅବଲୟ,
ଗନ୍ଧର୍ବରେ ଏହି ମାଳ, ଯାର ବିଜ୍ଞାନ ଯେ ।
ସ୍ୱର୍ଣ୍ଣକାର ତନ୍ତୁବାୟ, କୁମ୍ଭକାର ତୁନ୍ନବାୟ
ସ୍ଥପତି ବର୍ଦ୍ଧକୀ ଆଦି, ବିଦ୍ୟା ସଂପାଦି ଯେ ।

× × × ×

ରସ ହାସ ପ୍ରୀତି ନୀତି ବିନୋଦ ପୂରିତ,
ଚତୁର ବିନୋଦ ନୃପ ମାନସେ ରାଜିତ ।
ହିତ ଉପଦେଶ ଯେ ବତ୍ରିଶ ସିଂହାସନ
ବେତାଳ ପଞ୍ଚଶ ମୁଦ୍ରା ରାକ୍ଷସ କଥନ ।

କାଦମ୍ବରୀ ଆଉ ଦଶକୁମାର ଚରିତ
ଇତ୍ୟାଦି ସମୂହ କଥା ସଦା ଉପସ୍ଥିତ ।
କି ଉତ୍କଳ କି ବଙ୍ଗୀୟ ପ୍ରାଚୀନ କାବ୍ୟରେ
ବିଶାରଦ ନୃପବର ସେମାନ ତୁଣ୍ଡରେ ।
ଚିତ୍ରଲେଖା, ରସଲେଖା କି ହେମ ମଞ୍ଜରୀ
କାମକଳା, ମନୋରମା, ପ୍ରେମଲତା ଧରି ।
ଭାବବତୀ, ମୁକ୍ତାବତୀ, ବ୍ରଜଲୀଳା ଆଦି
ଷଡ୍‌ଋତୁ ବର୍ଣ୍ଣନା ଛାନ୍ଦ ଭୂଷଣ ସଂପାଦି ।
କଳାକଉତୁକ ସୁଭଦ୍ରାଙ୍କ ପରିଣୟ,
ବୈଦେହୀଶ ବିଳାସ ଯେ କାବ୍ୟକର ଥୟ ।
ରାମଲୀଳାମୃତ ପ୍ରେମ ସୁଧାନିଧି ଗୀତ,
ରସିକଙ୍କ ହାରାବଳୀ ଶାମ୍ବଙ୍କ ଚରିତ ।
ରସ କଲ୍ଲୋଳ ରସ ପଞ୍ଚକ ଏହି ପରି
ଲାବଣ୍ୟବତୀକି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।
ଚିତ୍ରକାବ୍ୟ କି ବିଦଗ୍‌ଧ ଚିନ୍ତାମଣି ପ୍ରୀତେ,
ପ୍ରାୟ ସବୁ ଛନ୍ଦ ସଦା ଉପସ୍ଥିତ ଚିତ୍ତେ ।
ଆଉ ଯେତେ ଛାନ୍ଦ ଅଛି ଭାଷାର ପ୍ରବନ୍ଧେ
ସମସ୍ତ ସମ୍ପାଦିଥାନ୍ତି ହୃଦୟର ମଧ୍ୟେ ।
ଅନ୍ନଦା ମଙ୍ଗଳ ବିଦ୍ୟାସୁନ୍ଦର ଏମାନ
ମେଘନାଦ ବଧ ପଦ୍ମିନୀର ଉପାଖ୍ୟାନ ।
ପ୍ରାଚୀନ ନବୀନ ବହୁ ବଙ୍ଗଳା କାବ୍ୟକୁ
ପଢ଼ି ପ୍ରଶଂସନ୍ତି ସେହି କବିଙ୍କ ଗୁଣକୁ ।
ବଙ୍କିମ ଚନ୍ଦ୍ରଙ୍କ ଯେତେ ଆଖ୍ୟାନ ରାଜିତ,
ଆବର ଉତ୍ତମ ଯେତେ ନାଟକ ପଠିତ ।
ତ୍ରିଂଶତ୍‌କି ଚତ୍ୱାରିଂଶ ସମ୍ବାଦ ପତ୍ରକୁ
ଅଣାଇ ଦେଖନ୍ତି ବାଛି ସନ୍ତୋଷ ଚିତ୍ତକୁ ।
ବଙ୍ଗ ଦରଶନ ଆର୍ଯ୍ୟ ଦରଶନ ନିତ୍ୟ
ପଢ଼ିବାର ସୁଖ ଆଉ ନୂତନ ସାହିତ୍ୟ ।

ବାହ୍ୟବସ୍ତୁମାନଙ୍କ ପ୍ରକୃତି ସମ୍ବନ୍ଧେ,
ଧର୍ମନୀତ ଉପାସକ ସଂପ୍ରଦାୟ ଗ୍ରନ୍ଥ ।
× × × ×
ଖ୍ରୀଷ୍ଟୀୟ କି ମହମ୍ମଦ ବୈଷ୍ଣବ ଚରିତ,
ଭାଷୁଥିଲେ ନ ସରିବ ଜନରେ ବିଦିତ ।
× × × ×
ଦର୍ଶନ ଶାସ୍ତ୍ରରେ ଏବେ ଶୁଣ ହେ ପାଣ୍ଡିତ୍ୟ
ପୃଥ୍ୱୀଖ୍ୟାତ ମାଧବାଚାର୍ଯ୍ୟଙ୍କ ବିରଚିତ ।
ସର୍ବ ଦରଶନଙ୍କର ସଂଗ୍ରହ କଠିଣ,
ନୃପବର ତହିଁରେ ଯେ ଅତ୍ୟନ୍ତ ପ୍ରବୀଣ ।
ବିଶେଷେ ବେଦାନ୍ତନ୍ୟାୟ ଦର୍ଶନ ଦ୍ୱୟରେ
ବହୁଗ୍ରନ୍ଥ ପାଠକଲେ ବୟସ କାଳରେ ।
ମୁକ୍ତାବଳୀ ଦୀନକରୀ, ନ୍ୟାୟ ପୂର୍ବୋତ୍ତର
ଶ୍ରୀହର୍ଷ ଖଣ୍ଡନେ ବିଶାରଦ ନୃପବର ।
ବେଦାନ୍ତର ପରିଭାଷା ଧର୍ମରାଜ କୃତ
ନିତ୍ୟ ଶୁଣିବାରେ ସେ ଯେ ତୁଣ୍ଡରେ ଉଦ୍ଧୃତ ।
ଶାଙ୍କର ଦର୍ଶନ ପଞ୍ଚଦଶୀ ଆଦି କରି,
ଅପର ବେଦାନ୍ତଗ୍ରନ୍ଥ ତୁଣ୍ଡରେ ଆହରି ।

ସକଳ ବିଦ୍ୟାରେ ପଣ୍ଡିତ ହେବା ପରେ ୧୮୪୧ ମସିହାରେ ବୌଦରାଜା ଶ୍ରୀ ଚନ୍ଦ୍ରଶେଖର ଦେବଙ୍କ କନ୍ୟା ଶ୍ରୀମତୀ ହୀରାମଣି ଦେବୀଙ୍କ ସହିତ ରାଜା ଭଗୀରଥଙ୍କର ଶୁଭ ବିବାହ ଅନୁଷ୍ଠିତ ହେଲା । ମହାରାଣୀ ହୀରାମଣି ଦେବୀ ରୂପବତୀ, ବୁଦ୍ଧିମତି ଓ ପତି ପରାୟଣା ଥିଲେ । ରାଜାଙ୍କ ମଣୋହି ପରେ ସେ ଖାଦ୍ୟ ଗ୍ରହଣ କରୁଥିଲେ । ପତିସେବା, ଦେବ ସେବା, ଅତିଥି ପରିଚର୍ଯ୍ୟା ଓ ପ୍ରଜାବତ୍ସଳତା ତାଙ୍କର ବ୍ରତ ଥିଲା । ମହାରାଣୀ ପିତୃଗୃହରୁ ଆଣିଥିବା ଧନରେ ତିନିଗୋଟି ପୋଖରୀ ଖୋଳାଇଥିଲେ । ସେଗୁଡ଼ିକ ହେଉଛି – ଟୁଭିନାଳୀ ପୋଖରୀ, ନଡ଼ିଆଳୀ ପୋଖର ଓ ଢେଙ୍କାନାଳ ସହର ଚାଜିଚୌବସ୍ଥିତ ହୀରା ସାଗର । ମହାରାଣୀ ହୀରାମଣୀଙ୍କର ପୁତ୍ର ବା ପୁତ୍ରୀ ନ ହେବାରୁ ତାଙ୍କରି ପ୍ରରୋଚନାରେ ରାଜା ଭଗୀରଥ ବଡ଼ମ୍ବାରାଜାଙ୍କ ଭାତୃଷ୍ପୁତ୍ରୀଙ୍କୁ ଦ୍ୱିତୀୟ ବିବାହ କରିଥିଲେ । ଉଭୟ ରାଜ ମହିଷୀଙ୍କର ସୁନିର୍ମଳ ସୌହାର୍ଦ୍ଦ୍ୟ ରହିଥିଲା ।

୧୮୪୨ରେ ରାଜା ଭଗୀରଥ ସାବାଳକ ହୋଇ ସମ୍ପୂର୍ଣ୍ଣ ରାଜ୍ୟଭାର ଗ୍ରହଣ କଲେ ଓ ରାଜମାତା କୁନ୍ଦନ ଦେବୀ ଶାସନ ଦାୟିତ୍ୱରୁ ଅବ୍ୟାହତି ନେଲେ । ସେହି ବର୍ଷ ଇଷ୍ଟଇଣ୍ଡିଆ କମ୍ପାନୀ ଗଡ଼ଜାତ ରାଜାମାନଙ୍କ ସହିତ ନୂତନ ଚୁକ୍ତିରେ ଆବଦ୍ଧ ହେଲେ । ଭଗୀରଥ ମଧ୍ୟ ନୂତନ ଚୁକ୍ତି ସଂପାଦନ ପୂର୍ବକ ସନନ୍ଦ ଗ୍ରହଣ କରିଥିଲେ । ସେହି ୧୮୪୨ରେ ରାଜା ଭଗୀରଥ ଉଭୟ ପଟ୍ଟମହାଷୀ ଓ ପରିବାରବର୍ଗଙ୍କୁ ନେଇ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ନିମିତ୍ତ ପୁରୀ ଯାତ୍ରା କରିଥିଲେ । ନୀଳାଚଳରେ ବଳୀୟାର ଭୂଜ ଏବଂ ଏକାମ୍ରକ୍ଷେତ୍ରରେ ଲିଙ୍ଗରାଜଙ୍କ ଦର୍ଶନ ପରେ ସେ ରାଜପରିବାର ସହିତ ଯାଜପୁର ଅଧିଷ୍ଠାତ୍ରୀ ବିରଜାଙ୍କ ଦର୍ଶନ ନିମିତ୍ତ ଯାତ୍ରା କରିଥିଲେ । ଯାଜପୁରରେ ବିରଜା, ଶ୍ରୀଯଜ୍ଞ ବରାହ, ଶ୍ରୀଜଗନ୍ନାଥ ଓ ସପ୍ତମାତୃକାଙ୍କୁ ଦର୍ଶନାର୍ଥେ ସେ ନାଭିଗୟା ତଥା ଦଶାଶ୍ୱମେଧ ପାଟରେ ପିଣ୍ଡଦାନ କରିଥିଲେ । ପୁରୀରୁ ଯେଉଁ ପଣ୍ଡିତ ତାଙ୍କ ସାଥୀରେ ଭୁବନେଶ୍ୱର ଓ ଯାଜପୁର ଯାଇଥିଲେ, ତାଙ୍କ ନାମ ଥିଲା ପଣ୍ଡିତ ଚିନ୍ତାମଣି ମିଶ୍ର ବେଦବାଗୀଶ । ସେ ଯାଜପୁର କାଳିମେଘା ନିବାସୀ ଥିଲେ ହେଁ ନବଦୀପ ଓ କାଶୀରେ ଅଧ୍ୟୟନ ପୂର୍ବକ ବେଦବାଗୀଶ ଉପାଧି ଲାଭ କରିଥିଲେ । ପଣ୍ଡିତ ପ୍ରିୟ ରାଜା ଭଗୀରଥ ଏହି ଜ୍ଞାନୀ ପଣ୍ଡିତଙ୍କୁ ଢେଙ୍କାନାଳରେ ନିବାସ କରିବାକୁ ଅନୁରୋଧ କରିଥିଲେ ହେଁ ସେ ଢେଙ୍କାନାଳାନ୍ତର୍ଗତ, ମାର୍ଥପୁର ଶାସନରେ ନିବାସ କରିବାକୁ ସମ୍ମତି ପ୍ରଦାନ କଲେ । ତେଣୁ ରାଜା ୧୮୪୩ ମସିହା ଜାନୁୟାରୀ ୧୪ ତାରିଖ ପବିତ୍ର ମକର ସଂକ୍ରାନ୍ତିରେ ଯଜୁର୍ବେଦ କାଣ୍ୱ ଶାଖା ବାର୍ଷଗଣ ଗୋତ୍ରୀୟ ବ୍ରାହ୍ମଣ ଚିନ୍ତାମଣି ମିଶ୍ରଙ୍କୁ ମାର୍ଥାପୁର ଶାସନ ସନ୍ନିକଟ ଗୋରଡ଼ିଆ ବିଷର ଅଁଳାପାଳ ଗ୍ରାମଟିକୁ ଦାନ ପୂର୍ବକ ରାଜପଣ୍ଡିତ ହାତରେ ନିଯୁକ୍ତ ଦେଇଥିଲେ । ସେହି ଅବସରରେ ମଧ୍ୟ ରାଜା ଭଗୀରଥ ରାଜପୁରୋଧା ପଣ୍ଡିତ ରାୟଗୁରୁଙ୍କୁ ରାୟସିଂହ ପ୍ରସାଦ ବିଷ ଜେଲ ସରକୁଣ୍ଡା ଗ୍ରାମଟି ଦାନ କରିଥିଲେ । ଉଭୟ ଦାନ କପିଳାସ ପୀଠରେ ସମାହିତ ହୋଇଥିଲା । ଏତଦ୍‌ଭିନ୍ନ ରାଜା ଭଗୀରଥ ଓ ତଦୀୟ ମହରାଣୀ ଦ୍ୱୟ ପ୍ରତ୍ୟହ ସାଧୁସନ୍ଥ ବ୍ରାହ୍ମଣଙ୍କୁ ପ୍ରଚୁର ଅନ୍ନ ବସ୍ତ୍ର ଓ ଉପଢ଼ୌକନ ଦାନ କରୁଥିଲେ । ମହାରାଣୀ ରାଜପୁରୋଧା ନରସିଂହ ମିଶ୍ରଙ୍କ ଦ୍ୱାରା ପ୍ରତିଦିନ ରୁଦ୍ରାଭିଷେକ କରାଉଥିଲେ । ମହନୀୟତା ହେଉଛି, ରାଜା ଭଗୀରଥ ଅକ୍ଷରେ ଅକ୍ଷରେ ଗୀତା, ଭାଗବତ, ରାମାୟଣ ଓ ଅନ୍ୟାନ୍ୟ ଧର୍ମଶାସ୍ତ୍ର ଉଲ୍ଲିଖିତ ନୀତିନିୟମ ମାନୁଥିଲେ ତଥାର ଦେବ ବ୍ରାହ୍ମଣଙ୍କଠାରେ ତାଙ୍କର ଅତୁଟ ଭକ୍ତି ରହିଥିଲା ।



# ସୁଶାସକ ଭଗୀରଥ

ମହାରାଜା ଭଗୀରଥଙ୍କ ଶାସନ ଉତ୍ତମ ଓ ଆଦର୍ଶ ଥିଲା । ତତ୍‌କାଳୀନ ରାଜମନ୍ତ୍ରୀ ଥିଲେ ଉତ୍ସବାନନ୍ଦ ହରିଚନ୍ଦନ ସିଂହ ଏବଂ ରାଜସ୍ୱମନ୍ତ୍ରୀ ଥିଲେ ନୃସିଂହ ଚରଣ ଦାସ (ଡେପୁଟି କଲେକ୍ଟର) । ଏହି ଦୁଇଜଣଙ୍କ ପରାମର୍ଶରେ ଭଗୀରଥି ଶାସନକାର୍ଯ୍ୟ ସୂଚାରୁରୂପେ ନିର୍ବାହ କରୁଥିଲେ । ପ୍ରତ୍ୟେକ ରାଜକାର୍ଯ୍ୟରେ ସେ ରାଜଧର୍ମ ତଥା ପଞ୍ଚଯଜ୍ଞ ଉପରେ ଗୁରୁତ୍ୱ ଦେଉଥିଲେ । ତାଙ୍କର ମତ ଥିଲା ଯେ, ପ୍ରଜାନୁରଞ୍ଜନ ହିଁ ରାଜାର ପରମ ଧର୍ମ । ସେ ସର୍ବଦା ଗୋଟିଏ ଶ୍ଲୋକ ଆବୃତ୍ତ କରିଥିଲେ ।

ନୃପସ୍ୟ ପରମୋଧର୍ମ୍ମଃ ପ୍ରଜାନାଂ ପରିପାଳନଂ
ଦୁଷ୍ଟନିଗ୍ରହଣଂ ନିତ୍ୟଂ ନନୀଯୁତେ ବିନାହ୍ୟୁଭେ ।
ଦୁଷ୍ଟସ୍ୟ ଦଣ୍ଡଃ ସ୍ୱଜନସ୍ୟ ପୂଜା ନ୍ୟାୟେନ କୋଷସ୍ୟଚ ସଂ ପ୍ରବୃଦ୍ଧିଃ,
ଅପକ୍ଷପାତୋଽର୍ଥଃ ରାଷ୍ଟ୍ରରକ୍ଷାଃ ପଞ୍ଚୈବ ଯଜ୍ଞାଃ କଥିତା ନୃପାଣାଂ ।

ରାଜାମାନେ ସୌର, ଐନ୍ଦ୍ର, ଯାମ୍ୟ, ମାରୁତ, ବାରୁଣ, ଚାନ୍ଦ୍ର ଓ ପାର୍ଥିବ ପ୍ରଭୃତି ସାତଗୋଟି ମହାବ୍ରତ ପ୍ରତିପାଳନ ଉପରେ ସେ ଗୁରୁତ୍ୱ ଦେଉଥିଲେ । ଏହାର ଅର୍ଥ ହେଉଛି ସୂର୍ଯ୍ୟ ଯେପରି ଜୀବଜଗତ୍ ଓ ଜଡ଼ଜଗତ୍ କାହାର କ୍ଷତି ନକରି ରସାସ୍ୱଦାନ କରିଥାନ୍ତି ରାଜା ସେହିପରି କାହାର କ୍ଷତି ନକରି କର ଆଦାୟ କରିବେ । ଇନ୍ଦ୍ର ଯେପରି ପୃଥିବୀକୁ ଜଳପୂର୍ଣ୍ଣ କରିଥାନ୍ତି ରାଜା ସେହିପରି ରାଜକୋଷକୁ ପରିପୂର୍ଣ୍ଣ କରିବେ, ଯାହାକି ପ୍ରଜାଙ୍କ ମଙ୍ଗଳରେ ଲାଗିବ । ଯମ ଯେପରି ପ୍ରିୟ ଅପ୍ରିୟ ବିଚାର ନକରି ପ୍ରାଣହରଣ କରେ, ରାଜା ସେହିପରି ପ୍ରିୟାପ୍ରୀତି ତୋଷଣ ନୀତି ଅବଲମ୍ବନ କରି ସୁବିଚାର ପୂର୍ବକ ଦଣ୍ଡ ଦେବେ । ବାୟୁ ଯେପରି ସର୍ବଭୂତର ବାହ୍ୟାଭ୍ୟନ୍ତରରେ ପ୍ରବେଶ କରେ, ରାଜା ସେହିପରି ଚର ବା ଭୂତମାନଙ୍କ ମାଧମରେ ସକଳ ପ୍ରଜାଙ୍କ ଅନ୍ତର୍ବେଦନା ଅନୁଭବ କରିବେ । ବରୁଣ ଯେପରି ପାଶରେ ଆବଦ୍ଧ ରଖନ୍ତି, ରାଜା ସେହିପରି ଚୋର ଦସ୍ୟୁ ପ୍ରଭୃତିଙ୍କୁ ସର୍ବଦା ବନ୍ଦୀ କରି ରଖିବେ । ଚନ୍ଦ୍ର ଯେପରି ଷୋଳକଳାରେ ପରିପୂର୍ଣ୍ଣ ରାଜା ସେହିପରି ସର୍ବଗୁଣ ସମ୍ପନ୍ନ ହେବେ । ପୃଥିବୀ ଯେପରି ସମସ୍ତଙ୍କୁ

ସମଭାବରେ ଧାରଣ କରି ସହିଷ୍ଣୁତା ଅବଲମ୍ବନ କରିଥାଏ ରାଜା ସେହିପରି ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖି ସକଳ ପ୍ରଜାଙ୍କ ପ୍ରତି ସହିଷ୍ଣୁ ହେବେ । ରାଜା କିପରି ପ୍ରଜାପୀଡ଼କ, ଇନ୍ଦ୍ରିୟାସକ୍ତ, ଧର୍ମାନ୍ଧ, ଅବିବେକୀ ନ ହେବେ ସେ ସମ୍ପର୍କରେ ଭଗୀରଥ ସଚେତନ ଥିଲେ । ସେ ଅଭିମାନଶୂନ୍ୟ, କର୍ତ୍ତବ୍ୟ ପରାୟଣ ଓ ପ୍ରଜାବତ୍ସଳ ଥିଲେ । ତାଙ୍କ ଦୃଷ୍ଟିରେ ଦୀନହୀନ ପ୍ରଜାଙ୍କଠାରୁ ଉଚ୍ଚପଦାଧିକାରୀ ସଭିଁଏ ସମାନ ଥିଲେ ।

ରାଜା ଭଗୀରଥ ପ୍ରାତଃକାଳରୁ ରାତ୍ରି ୧୧ଟା ପର୍ଯ୍ୟନ୍ତ ସର୍ବଦା ପ୍ରଜାମାନଙ୍କ ଆପତ୍ତି ଅଭିଯୋଗ ଶୁଣି ପ୍ରତିକାର ବ୍ୟବସ୍ଥା ଗ୍ରହଣ କରୁଥିଲେ । ପ୍ରଜାମାନଙ୍କ ସୁବିଧା ନିମିତ୍ତ ସେ ଆପଣା ରାଜକାର୍ଯ୍ୟାଳୟକୁ କେତେଗୋଟି ବିଭାଗରେ ବିଭକ୍ତ କରିଥିଲେ । ସେହି ବିଭାଗଗୁଡ଼ିକ ହେଉଚି ରାଜସ୍ୱ, ଦେବୋତ୍ତର, ଜଙ୍ଗଲ, ଶାସନ ଓ ନିର୍ମାଣ ବିଭାଗ । ପ୍ରଜାମାନଙ୍କର ଆପତ୍ତି ଅଭିଯୋଗ ପ୍ରକାଶ୍ୟ ରାଜସଭାରେ ପରିଷଦବର୍ଗଙ୍କ ସହିତ ଶୁଣି ପ୍ରମାଣ ଓ ସାକ୍ଷ୍ୟ ଗ୍ରହଣ କଲା ପରେ ରାଜା ଭଗୀରଥ ରାୟ ପ୍ରଦାନ କରୁଥିଲେ । କୌଣସି ପକ୍ଷପ୍ରତି ସେ ପକ୍ଷପାତିତା ଅବଲମ୍ବନ କରୁନଥିଲେ । ରାଜ୍ୟଶାସନରୁ ସୁଶୃଙ୍ଖଳିତ କରିବା ନିମିତ୍ତ ସେ କଟକ କମିଶନରଙ୍କ କାର୍ଯ୍ୟାଳୟରେ ପ୍ରଧାନ ସହକାରୀ ଭାବରେ କାର୍ଯ୍ୟ କରୁଥିବା ବନମାଳୀ ସିଂହଙ୍କୁ ଦେୱାନ୍ ପଦରେ ନିଯୁକ୍ତି କରିଥିଲେ । ବନମାଳୀ ସିଂହ ହେଉଛନ୍ତି ରାଜମନ୍ତ୍ରୀ ଉତ୍ସବାନନ୍ଦ ହରିଚନ୍ଦନ ସିଂହଙ୍କ ପୁତ୍ର ଏବଂ ଓଡ଼ିଶାର ପ୍ରଥମ ମାଟ୍ରିକ୍ୟୁଲେଟ୍ । ବନାମାଳୀଙ୍କ ବ୍ୟତୀତ ସେ ମଧ୍ୟ ଅନ୍ୟାନ୍ୟ ଉଚ୍ଚଶିକ୍ଷିତ ବ୍ୟକ୍ତି ବିଶେଷଙ୍କୁ ନିଜ ରାଜଦରବାରରେ ବିଭିନ୍ନ ପଦବୀରେ ନିଯୁକ୍ତି ଦେଇଥିଲେ । ରାଜ୍ୟର ସମସ୍ତ ମନ୍ଦିର ଓ ମଠର ସୁପରିଚାଳନା ନିମିତ୍ତ ସେ ଜଣେ ଦେବୋତ୍ତର ତତ୍ତ୍ୱାବଧାରକ ନିଯୁକ୍ତି କରିଥିଲେ ଏବଂ ରାଜ୍ୟରେ କୀର୍ତ୍ତନର ପ୍ରଚାର ଓ ପ୍ରସାର ନିମିତ୍ତ ଜଣେ ସଂକୀର୍ତ୍ତନ ପ୍ରଶିକ୍ଷକ ମଧ୍ୟ ନିଯୁକ୍ତି କରିଥିଲେ । ନିଯୁକ୍ତ ପ୍ରତ୍ୟେକ କର୍ମଚାରୀଙ୍କ କାର୍ଯ୍ୟାବଳୀ ମଧ୍ୟ ରାଜା ନିୟମିତ ତଦାରଖ କରୁଥିଲେ । ରାଜପ୍ରାସାଦ ପ୍ରବେଶ ପଥରେ ସେ କଚେରୀ ଗୃହ, ସରଘର ଓ ଖଜଣାଖାନା ନିର୍ମାଣ କରିଥିଲେ । ରାଜକର୍ମଚାରୀଙ୍କ ନିମିତ୍ତ କେତେଗୁଡ଼ିଏ ବାସଗୃହ ମଧ୍ୟ ତାଙ୍କ ସମୟରେ ନିର୍ମିତ ହୋଇଥିଲା । ଏତଦ୍‌ଭିନ୍ନ ପୂର୍ବରୁ ଦୋଷୀମାନଙ୍କୁ ଦିଆଯାଉଥିବା କଠିନ ଦଣ୍ଡକୁ ସେ ପରିବର୍ତ୍ତନ କରିଥିଲେ ।

ରାଜା ଭଗୀରଥ ଜଣେ ବିଚାରବନ୍ତ, କ୍ଷମାଶୀଳ ଓ ସହିଷ୍ଣୁ ନରପତି ଥିଲେ । ତାଙ୍କ ଉଦାରଚେତନା ଓ ସହିଷ୍ଣୁତାର ଅନେକ ଉଦାହରଣ ରହିଛି । ଏକଦା ଯୋରନ୍ଦା ସନ୍ନିକଟ କେନ୍ଦୁପଡ଼ାର ଗ୍ରାମର ଦାଶରଥି ରାଉତରାୟଙ୍କ ମୋକଦ୍ଦମା ବିଚାର ପୂର୍ବକ ସେ ତାହାର ବିପକ୍ଷରେ ରାୟ ପ୍ରଦାନ କରିଥିଲେ । ଏଥିରେ ଦାଶରଥି କ୍ରୋଧାନ୍ଧ ହୋଇ ରାଜାଙ୍କୁ ନାନାଦି ଭର୍ତ୍ସନା କରିବା ସହିତ ଭାଇ ପୁଅ ବୋଲି କହିଥିଲା । ରାଜା ଏକଥା ଶ୍ରବଣ କରି ଉତ୍ତର ଦେଲେ ଯେ, ଆମେ ତ ପ୍ରକୃତରେ ଭାଇପୁଅ । ପରେ ସେହି ବ୍ୟକ୍ତିଙ୍କୁ ଡାକି ତୃଟି ବୁଝାଇଦେବାରୁ ସେ ଯଥାର୍ଥତା ହୃଦୟଙ୍ଗମ କରି କ୍ଷମା ମାଗିଥିଲା । ଅନ୍ୟ ଏକ ଘଟଣାରେ ମୁକ୍ତା ଦେଇପୁର ଶାସନ ନିବାସୀ ପାତୁ ମିଶ୍ରଙ୍କ ମୋକଦ୍ଦମାର ରାଜା ଡିସ୍‌ମିସ୍ କରି ଦେଇଥିଲେ । ଏଥିରେ କ୍ରୋଧାନ୍ୱିତ ହୋଇ ପାତୁ ମିଶ୍ର ମଧ୍ୟାହ୍ନରେ ଆପଣା ଗାମୁଛାରେ ନିଆଁହୁଳା କରି "ଆଜିଠାରୁ ଦିବସ ଅନ୍ଧାର ହୋଇଗଲା" କହି ରାଜଦାଣ୍ଡରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ରାଜା ଏହା ଶୁଣି କ୍ରୋଧାନ୍ୱିତ ନ ହୋଇ ପାତୁ ମିଶ୍ରଙ୍କୁ ଡକାଇ ସମସ୍ତ ଘଟଣା ବୁଝାଇଦେଲେ ତଥା ତାଙ୍କ ପୁତ୍ରକୁ ମାସିକ ୮ଟଙ୍କା ଦରମାରେ କାରଗାର ରକ୍ଷକ ଭାବରେ ନିଯୁକ୍ତି ଦେଲେ । ଏଥିରେ ପାତୁମିଶ୍ର ଲଜ୍ଜିତ ହୋଇ ରାଜାଙ୍କଠାରୁ କ୍ଷମା ପ୍ରାର୍ଥନା କରିଥିଲେ ।

ଢେଙ୍କାନାଳ ରାଜ୍ୟ ପୂର୍ବରୁ ବନ୍ଦୋବସ୍ତ ହୋଇନଥିଲା । ପ୍ରଜାମାନେ ହଳ ଅନୁସାରେ ସର୍ବରାକାରମାନଙ୍କୁ ଭୂ-ରାଜସ୍ୱ ବା ଖଜଣା ଦୁଇକିସ୍ତିରେ ଦାଖଲ କରୁଥିଲେ । ସର୍ବରାକାରମାନଙ୍କ କାର୍ଯ୍ୟ ବେହେରା ପଧାନମାନେ ତଦାରଖ କରୁଥିଲେ । ରାଜା ଭଗୀରଥ ସମଗ୍ର ରାଜ୍ୟଟିର ଭୂ-ବନ୍ଦୋବସ୍ତ କରି ପ୍ରଜାଓ୍ୱାରୀ ଜମିରେ ଖଜଣା ଧାର୍ଯ୍ୟ କରିବାକୁ ଚାହିଁଲେ । ଏହାଦ୍ୱାରା ଜମିରେ ପ୍ରଜାମାନଙ୍କର ସତ୍ତ୍ୱସାବ୍ୟସ୍ତ ହୋଇପାରିବ ତଥା ନିର୍ଦ୍ଧାରିତ ଖଜଣା ସର୍ବରାକାରମାନେ ଆଦାୟ କରିବା ଦ୍ୱାରା ପ୍ରଜାବୃନ୍ଦ ଶୋଷଣର ଶିକାର ହେବେ ନାହିଁ । ରାଜା ଭଗୀରଥ ସୁଚାରୁରୂପେ ଭୂ-ବନ୍ଦୋବସ୍ତ କାର୍ଯ୍ୟ ନିର୍ବାହ କରିବା ନିମିତ୍ତ ନୃସିଂହଚରଣ ଦାସଙ୍କୁ ମୁତୟନ କଲେ । ଗୁରୁତ୍ୱପୂର୍ଣ୍ଣ ହେଉଛି, ବନ୍ଦୋବସ୍ତ ପୂର୍ବରୁ ସେ ରାଜ୍ୟର ସକଳ ଶ୍ରେଣୀର ପ୍ରଜା, ସର୍ବରାକାର, ବେହେରା ପଧାନ ଓ ରାଜକର୍ମଚାରୀଙ୍କ ମଧ୍ୟରୁ ୨୨୫ଜଣ ପ୍ରଧାନ ବ୍ୟକ୍ତିଙ୍କୁ ନେଇ ଗଣତାନ୍ତ୍ରିକ ପଦ୍ଧତିରେ ଗୋଟିଏ କମିଟି ଗଠନ କଲେ । ଏହି କମିଟିର ପରାମର୍ଶ କ୍ରମେ ରାଜ୍ୟର ବନ୍ଦୋବସ୍ତ ନିମିତ୍ତ

ଇଂରେଜ ସରକାରଙ୍କ ଅନୁମତି ଲୋଡ଼ା ହେଲା । ଅନୁମତି ମିଳିବା ପରେ ୧୮୪୬ ଖ୍ରୀଷ୍ଟାବ୍ଦ ଅର୍ଥାତ୍ ୧୨୫୩ ସାଲରେ ଭୂ-ବନ୍ଦୋବସ୍ତ କାର୍ଯ୍ୟ ସମ୍ପନ୍ନ ହୋଇଥିଲା । ଏହାକୁ ଢେଙ୍କାନାଳରେ ନୃସିଂହବାବୁଙ୍କ ପ୍ରଥମ ବନ୍ଦୋବସ୍ତ କୁହାଯାଏ । ଏହି ବନ୍ଦୋବସ୍ତ ରାଜ୍ୟର ସମସ୍ତ ଜମି ଚବିଶଦସ୍ତୀ ପଦିକା (ଯାହାର ଲମ୍ବ ୧୦ ଫୁଟ ଓ ୬ ଇଞ୍ଚ)ରେ ମପା ଯାଇଥିଲା । ଜଙ୍ଗଲ, ଜଳାଶୟ, ରାସ୍ତା, ସାର୍ବଜନୀନ ସ୍ଥାନକୁ ଛାଡ଼ି ପ୍ରଜାମାନେ ଦଖଲ କରୁଥିବା ଜମିର ଆୟତନ ମପାଯାଇ ପ୍ରଜାୱାରୀ ଭଉଁରିଆ ପ୍ରସ୍ତୁତ କରାଯାଇଥିଲା । ସମଗ୍ର ମୌଜାର ଚୌଦହୀ ସ୍ଥିର ପୂର୍ବକ ପ୍ରଜାୱାରୀ ଭଉଁରିଆ ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ପ୍ରକାଶ କରାଯାଇଥିଲା ଏବଂ ଏହି ମାପ ଉପରେ ଦାବୀ ଆପତ୍ତି କରିବାକୁ ପ୍ରଜାଙ୍କୁ ତିରିଶଦିନ ସମୟ ପ୍ରଦାନ କରାଯାଇଥିଲା । ପ୍ରଜା ନିଜେ ବା ସେହି ଗ୍ରାମର ବନ୍ଦୋବସ୍ତ କମିଟି ସଭ୍ୟଙ୍କ ସାଥୀରେ ଯାଇ ବନ୍ଦୋବସ୍ତ ଅଧିକାରୀଙ୍କ ନିକଟରେ ଆପତ୍ତି କରୁଥିଲେ । ବନ୍ଦୋବସ୍ତ ଅଧିକାରୀ ସାକ୍ଷୀ ପ୍ରମାଣ ଓ ସରଜମିନ୍ ତଦନ୍ତ ପରେ ଆପତ୍ତିର ବିଚାର ପୂର୍ବକ ଆଦେଶ ଦେଉଥିଲେ । ସେହି ଆଦେଶ ମଧ୍ୟ ପ୍ରସ୍ତୁତ ଭଉଁରିଆର ମନ୍ତବ୍ୟ କଲମରେ ଲିପିବଦ୍ଧ ହେଉଥିଲା । ଅମୀନମାନେ ମାପ କରୁଥିଲେ ଏବଂ କାନୁନ୍‌ଗୋମାନେ ସେମାନଙ୍କ ମାପ ତଦାରଖ କରିଥିଲେ । ମୁନ୍‌ସରିମ୍ ଓ ପେସ୍କାରମାନେ ବନ୍ଦୋବସ୍ତ ଅଧିକାରୀଙ୍କ ଆଦେଶ ଅନୁଯାୟୀ ଖସଡ଼ା ପ୍ରସ୍ତୁତ କରିଥିଲେ । ଚୂଡ଼ାନ୍ତ ଭଉଁରିଆ ଓ ଖସଡ଼ା ପ୍ରସ୍ତୁତ ପରେ ପ୍ରଜାମାନଙ୍କ ରେକର୍ଡ଼ ଅନୁସାରେ ଜମିର କିସମ୍‌କୁ ଭିତ୍ତିକରି ଖଜଣା ଧାର୍ଯ୍ୟ କରାଯାଉଥିଲା । ତାହା ପରେ ପ୍ରଜାମାନଙ୍କୁ ଜମିର ପଟ୍ଟା ପ୍ରଦାନ କରାଯାଉଥିଲା । ପ୍ରଜାମାନେ ମଧ୍ୟ ଇଚ୍ଛା କଲେ ବନ୍ଦୋବସ୍ତ ଅଧିକାରୀଙ୍କ ଆଦେଶ ଉପରେ ରାଜାଙ୍କ ନିକଟରେ ଅପିଲ କରିପାରୁଥିଲେ । ଏହି ବନ୍ଦୋବସ୍ତରେ ସାର୍ବଜନୀନ ଜମି, ଶ୍ମଶାନ, ଗୋଚର, ଜଳାଶୟ ପ୍ରଭୃତିରେ ଖଜଣା ଧାର୍ଯ୍ୟ ହୋଇନଥିଲା ଏବଂ ଏହି ଜମି ପ୍ରଜାଙ୍କ ନାମରେ ରେକର୍ଡ଼ କରାଯାଇନଥିଲା । ଜାଗିରୀ, ଖଞ୍ଜା ଓ ଲାଖରାଜ ଜମିରେ ଖଜଣା ଧାର୍ଯ୍ୟ ହୋଇନଥିଲା । ବ୍ରାହ୍ମଣମାନଙ୍କୁ ପ୍ରଦତ୍ତ ଜମି ବ୍ରହ୍ମୋତ୍ତର ଲାଖରାଜ, ଦେବତାମାନଙ୍କୁ ଉତ୍ସର୍ଗିତ ଜମି ଦେବୋତ୍ତର ଲାଖରାଜ ଓ ସ୍ଥଳ ବିଶେଷରେ ମହାତ୍ରାଣ ଲାଖରାଜ ପ୍ରଦତ୍ତ ହୋଇ ସେହି ଜମିରୁ ଖଜଣା ବାଦ୍ ହୋଇଥିଲା । ପାଇକାଳୀ, ଚୌକୀଦାରୀ,

ଧୋବାଜାଗ୍ରୀ, ଭଣ୍ଡାରିଜାଗ୍ରୀ, ସେବକ ଜାଗ୍ରୀ ପ୍ରଭୃତି ଜାଗିରୀ ଜମିରେ ଖଜଣା ପଡୁନଥିଲା । ଏତଦ୍‌ଭିନ୍ନ ପ୍ରଜାମାନଙ୍କୁ ଘରବାରୀ ଜମିର ଖଜଣା ଦେବାକୁ ପଡୁନଥିଲା । ସେତେବେଳେ ଜଙ୍ଗଲ ଆଇନ୍ କାର୍ଯ୍ୟକାରୀ ହେଉନଥିବାରୁ ପ୍ରଜାମାନେ ଅନାୟାସରେ ଜଙ୍ଗଲ କାଟି ଚାଷ ଜମିରେ ପରିଣତ କରିପାରୁଥିଲେ । ଚାଷ ଜମିକୁ ଶାରଦ ଓ ବିଆଳି ଦୁଇ କିସମ କରାଯାଇ ପ୍ରଥମ କିସମରେ ଅଧିକ ଖଜଣା ଓ ଦ୍ୱିତୀୟ କିସମରେ ସ୍ୱଳ୍ପ ଖଜଣା ଧାର୍ଯ୍ୟ କରାଯାଇଥିଲା । ଖଜଣାଧାର୍ଯ୍ୟ ହେବା ପରେ ତାହାର ମୂଳ ରେକର୍ଡ଼ କଚେରୀରେ ରହି ଅନ୍ୟଟି ସର୍ବରାକାରଙ୍କ ପାଖରେ ରହୁଥିଲା । ଫଳରେ ସର୍ବରାକାରମାନେ ଧାର୍ଯ୍ୟ ଖଜଣା ଫସଲ ଆମଦାନୀ ପରେ ଦୁଇ କିସ୍ତିରେ ପ୍ରଜାମାନଙ୍କଠାରୁ ଆଦାୟ କରୁଥିଲେ । ସେମାନେ ପ୍ରତି ୧୦୦ଟଙ୍କାରେ ୫ଟଙ୍କା ଲେଖାଏଁ ରଖି ଅବଶିଷ୍ଟ ୯୫ ଟଙ୍କା ବେହେରା ପଧାନଙ୍କ ନିକଟରେ ଦାଖଲ କରୁଥିଲେ । ବେହେରା ପଧାନମାନେ ସର୍ବରାକାରଙ୍କ ଠାରୁ ଆଦାୟ କରିଥିବା ଖଜଣା ରାଜ ପ୍ରାସାଦସ୍ଥ ଖଜଣା ଖାନାରେ ପୈଠ କରୁଥିଲେ। ଖଜଣା ଆଦାୟର ସୁବିଧା ନିମିତ୍ତ ପ୍ରତ୍ୟେକ ବିଷ ବା ପ୍ରଗଣା ଅନୁଯାୟୀ ଖଜଣା ରେଜିଷ୍ଟର ପ୍ରସ୍ତୁତ କରାଯାଇ ଗ୍ରାମ ଅନୁସାରେ ପୃଷ୍ଠାଙ୍କନ କରାଯାଇଥିଲା । ସେହି ପୃଷ୍ଠା ନମ୍ବର ହିଁ ଥିଲା ଗ୍ରାମର ତଉଜି ନମ୍ବର । ଏହି ରେକର୍ଡ଼ ସବୁ ରାଜସ୍ୱ ବିଭାଗର କର୍ମଚାରୀଙ୍କ ତତ୍ତ୍ୱାବଧାନରେ ରହୁଥିଲା ।

୧୮୪୬ ମସିହା ବନ୍ଦୋବସ୍ତ ଅନୁଯାୟୀ ଢେଙ୍କାନାଳ ରାଜ୍ୟର କ୍ଷେତ୍ରଫଳ ଥିଲା ୧୪୬୩ ବର୍ଗ ମାଇଲ । ସାଧାରଣରେ ଏହି ରାଜ୍ୟକୁ ଚବିଶ ବିଷ ବିଭକ୍ତ ଏକ ଶହ କୋଡ଼ିଏ କ୍ରୋଶ (ବର୍ଗ କୋଶ)ର ରାଜ୍ୟ ବୋଲି କୁହାଯାଉଥିଲା । ସମଗ୍ର ରାଜ୍ୟଟି ୨୪ ଗୋଟି ବିଷ ତଥା ମୋଟ ୧୦୦୦ ଗ୍ରାମରେ ବିଭକ୍ତ ଥିଲା । ଜଙ୍ଗଲ, ଅନାବାଦୀ, ସାର୍ବଜନୀନ ଲାଖରାଜ ଓ ଜାଗ୍ରୀ ଜମିକୁ ଛାଡ଼ି ମୋଟ ୫୮,୭୭୨ ମାଣ (ପ୍ରାୟ ଏକ ଏକର) ଜମିରେ ସର୍ବମୋଟ ୬୩,୩୧୬ଟଙ୍କା ଖଜଣା ଧାର୍ଯ୍ୟ କରାଯାଇଥିଲା । ପ୍ରତ୍ୟେକ ଗ୍ରାମରେ ସର୍ବରାକାର ଓ ବିଷରେ ବେହେରା ପଧାନମାନେ ମାସିକ ୫ଟଙ୍କା ବେତନରେ କାର୍ଯ୍ୟ କରୁଥିଲେ । ପ୍ରଜାମାନେ ଜଙ୍ଗଲ ସଫାକରି ଚାଷ ଜମିରେ ପରିଣତ କଲେ ସେହି ଜମି ତାଙ୍କ ନାମରେ ରେକର୍ଡ଼ କରିବାକୁ ସର୍ବରାକାର ଓ ବେହେରା ପଧାନଙ୍କୁ କ୍ଷମତା ଦିଆଯାଇଥିଲା । ସାର୍ବଜନୀନ ଜମି ଓ ରାସ୍ତାକଡ଼ରେ

ବୃକ୍ଷରୋପଣ କରିବା ନିମିତ୍ତ ରାଜଦରବାରରୁ ବିଜ୍ଞପ୍ତି ପ୍ରକାଶ କରାଯାଉଥିଲା । ସର୍ବରାକାର ଓ ବେହେରା ପଧାନମାନଙ୍କୁ ଶାନ୍ତି ଶୃଙ୍ଖଳା ରକ୍ଷା ନିମିତ୍ତ ପୋଲିସ୍ କ୍ଷମତା ପ୍ରଦାନ କରାଯାଇଥିଲା । ସେମାନେ ମଧ୍ୟ ଛୋଟ ଛୋଟ ଦେଓ୍ୱାନୀ ଓ ଫୌଜଦାରୀ ମୋକଦ୍ଦମା ବିଚାର ପୂର୍ବକ ଦୋଷୀଙ୍କୁ ହରିକାଠ ଓ ବେଡ଼ି ପ୍ରଭୃତି ଦଣ୍ଡ ଦେଇପାରୁଥିଲେ । ପ୍ରଜାମାନେ ସେମାନଙ୍କ ଆଦେଶ ବିରୁଦ୍ଧରେ ରାଜାଙ୍କ ନିକଟରେ ଅପିଲ କରିପାରୁଥିଲେ । ଯେଉଁ ଭାଇପୁଅ ଓ ଅନ୍ୟାନ୍ୟ ଭଦ୍ରବ୍ୟକ୍ତିଙ୍କୁ ରାଜଦରବାରରୁ ଅର୍ଥପ୍ରାପ୍ତିର ଆଦେଶ ଦିଆଯାଉଥିଲା ସେମାନେ ସେହି ଆଦେଶ ସର୍ବରାକାର ବା ବେହେରା ପ୍ରଧାନଙ୍କୁ ଦେଇ ଅର୍ଥ ଗ୍ରହଣ କରୁଥିଲେ । ଏହାକୁ ତନଖା କୁହାଯାଉଥିଲା । ରାଜା ଯଦି କାହାକୁ କିଛି ଦାନ ଦେଉଥିଲେ ସେ ତନଖା ଦେଖାଇ ସର୍ବରାକାରଙ୍କଠାରୁ ତାହାର ପ୍ରାପ୍ୟ ଗ୍ରହଣ କରୁଥିଲା  କିନ୍ତୁ ଭାଗୀରଥି ସେହି ପ୍ରଥା ବନ୍ଦ କରି ସମସ୍ତ ପ୍ରାପ୍ୟ ରାଜକୋଷରୁ ନେବାର ବିଧି ପ୍ରଚଳନ କରାଇଲେ । ଏତଦ୍‌ଭିନ୍ନ ଜମିଆବାଦ ଓ କରଧାର୍ଯ୍ୟ ନିମିତ୍ତ ସେ ନିୟମାବଳୀ ସ୍ଥିର କରିଥିଲେ । ଏହି ନିୟମାନୁସାରେ ପ୍ରତ୍ୟେକ ଗ୍ରାମର ଚୌହଦୀ ଜରିବ ହୋଇ ଭଉଁରିଆ ଓ ଓ୍ୱାରିଜା ପ୍ରସ୍ତୁତ ହେଉଥିଲା । ପ୍ରଜାମାନଙ୍କ ସମ୍ମତି କ୍ରମେ କିସମ ସ୍ଥିର କରାଯାଇ ଖଜଣା ଧାର୍ଯ୍ୟ କରାଯାଉଥିଲା । କିସମ ସ୍ଥିର ହେବା ପରେ ମଧ୍ୟ ଯଦି ଫସଲ ଆମଦାନୀ ନହୁଏ ତେବେ ସେହି ବର୍ଷର ଖଜଣା ଛାଡ଼ କରାଯାଉଥିଲା । ମୋଟ୍ ଉପରେ  ଉଲ୍ଲେଖ କଲେ ରାଜା ଭଗୀରଥଙ୍କର ବନ୍ଦୋବସ୍ତ ନିୟମାବଳୀ ଏକ ପ୍ରଜାହିତକର କାର୍ଯ୍ୟ ଥିଲା, ଯାହାକୁ ଅନ୍ୟାନ୍ୟ ଗଡ଼ଜାତମାନେ ଆଦର୍ଶ ଭାବରେ ଗ୍ରହଣ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ, ଭଗୀରଥ ପ୍ରଜାକଲ୍ୟାଣ କାମନାରେ ଆଠଗୋଟି ଖମାର ରାଜ୍ୟର ବିଭିନ୍ନ ଅଞ୍ଚଳରେ ପ୍ରତିଷ୍ଠା କରିଥିଲେ । ଗରିବ ଓ କ୍ଷୁଦ୍ର ଚାଷୀମାନେ ଏହି ରାଜଖମାରରୁ ଧାନକରଜ ଆକାରରେ ନେଇ ଚାଷ କାର୍ଯ୍ୟ ନିର୍ବାହ କରୁଥିଲେ । ଏଥି ନିମିତ୍ତ ପ୍ରଜାମାନଙ୍କଠାରୁ କୌଣସି ସୁଧ ଆଦାୟ ହେଉନଥିଲା ।

ରାଜା ଭଗୀରଥିଙ୍କ ରାଜତ୍ୱରେ ଢେଙ୍କାନାଳ ରାଜ୍ୟରେ ମଠ ମନ୍ଦିର ସମୂହର ସୁପରିଚାଳନା ନିମିତ୍ତ ଦେବୋତ୍ତର ବିଭାଗ ପ୍ରତିଷ୍ଠିତ ହୋଇଥିଲା । ତତ୍‌କାଳୀନ ଢେଙ୍କାନାଳ ରାଜ୍ୟରେ ଦୁଇ ଗୋଟି ବଡ଼ ମନ୍ଦିର ଯଥା – କପିଳାସ ଓ ବଳଦେବଜୀଉ, ଚଉଦଗୋଟି ମଠ ତଥା ଅନ୍ୟାନ୍ୟ ମନ୍ଦିର ରହିଥିଲା । ରାଜା

ସାହେବ ପ୍ରତ୍ୟେକ ବଡ଼ମନ୍ଦିର ନିମିତ୍ତ ଜଣେ ଜଣେ ଜମିଦାର ତଥା ଦେଓଗାଁ ମନ୍ଦିର ଓ କପିଳାସ ମନ୍ଦିର ନିମିତ୍ତ ଜଣେ ଖରସୋଧା ନିଯୁକ୍ତି କରିଥିଲେ । ଯେଉଁ ମଠରେ ମହନ୍ତ ଥିଲେ ସେହି ମଠ ଉପରେ ରାଜା ହସ୍ତକ୍ଷେପ ନକରି ଅନ୍ୟ ମଠରେ ଜଣେ ଲେଖାଏଁ ଜମାଦାର ରଖାଇଲେ । ଗ୍ରାମୀଣ ମନ୍ଦିରମାନଙ୍କରେ ମୁଖିଆ ବ୍ୟକ୍ତିଙ୍କୁ ଜମାଦାର ତଥା ଗ୍ରାମଦେବତୀ ସମୂହଙ୍କୁ ପ୍ରତି ଗ୍ରାମର ଦେହୁରୀ ସେବକ ଦାୟିତ୍ୱରେ ରଖାଇଲେ । ସକଳ ସେବା, ପୂଜା, ନୀତି, ନିଯୋଗ, ଯାନି ଯାତ୍ରାର ସୁପରିଚାଳନା ନିମିତ୍ତ ରାଜ୍ୟରେ ଜଣେ ଦେବୋତ୍ତର ତତ୍ତ୍ୱାବଧାରକ ନିଯୁକ୍ତି ପାଇଲେ । ବଳରାମ ମନ୍ଦିରର ମୋହନ ଓ ପ୍ରସ୍ତର ପ୍ରାଚୀର ଛନ୍ଦେଶ ବିଷସ୍ଥ ପଶ୍ଚିମେଶ୍ୱର ମନ୍ଦିର ମୁଖଶାଳା, ଦେଓଗାଁ ବଳଦେବ ମନ୍ଦିର ମୁଖଶାଳା ଏବଂ କପିଳାସ ମନ୍ଦରି ଭୋଗମଣ୍ଡପର କାରୁକାର୍ଯ୍ୟପୂର୍ଣ୍ଣ କାଷ୍ଠମୋହନ, ଜପମଣ୍ଡପ ତଥା ରୋଷଘର ଭଗୀରଥଙ୍କ କୀର୍ତ୍ତି । ୧୮୫୫ରେ ନିର୍ମିତ କପିଳାସ କାଷ୍ଠମୋହନ ନଷ୍ଟ ହେବାରୁ ସଂପ୍ରତି ନୂତନ କାଷ୍ଠମୋହନ ନିର୍ମିତ । ଏତଦ୍‌ଭିନ୍ନ ସେ ରାଜପ୍ରାସାଦର ଦ୍ୱିତଳ ପ୍ରାସାଦ, ବୃନ୍ଦାବନ ଚନ୍ଦ୍ରଙ୍କ ମନ୍ଦିର, ରଘୁନାଥଙ୍କ ମନ୍ଦିର, ଦେବୋତ୍ତର କାର୍ଯ୍ୟାଳୟ ନିର୍ମାଣ କରିବା ସହିତ ପ୍ରାସାଦ ମଧ୍ୟସ୍ଥ ସୁଗଭୀର କୂପ ଖନନ କରାଇଥିଲେ ।

୧୮୫୬ ମସିହାରେ ଜନୈକ ପଶ୍ଚିମା ରାମାନନ୍ଦୀ ସାଧୁ ରାମ ଲକ୍ଷ୍ମଣ ସୀତା ହନୁମାନ ପ୍ରଭୃତି ଠାକୁର ମୂର୍ତ୍ତିଙ୍କ ସହ ଆସି ନୃସିଂହସାଗର ବା ଯାଉଁଳୀ ପୋଖରୀ ପଶ୍ଚିମ ପାର୍ଶ୍ୱ ହୁଡ଼ାରେ ଅବସ୍ଥାନ କଲେ । କିଛି ଦିନ ପରେ ସେହି ସନ୍ୟାସୀ ଠାକୁରଙ୍କୁ ଛାଡ଼ି ନିରୁଦ୍ଦେଶ ହୋଇଗଲେ । ରାଜା ଭଗୀରଥ ସେହି ସ୍ଥାନରେ ମଠ ନିର୍ମାଣ କରାଇ ଠାକୁରଙ୍କୁ ବିଜେ କରାଇଲେ ତଥା ଶ୍ରୀ ସଂପ୍ରଦାୟର ବୈଷ୍ଣବ ସୀତାରାମ ଦାସଙ୍କ ମହନ୍ତ ଭାବରେ ବରଣ କଲେ । ମଠ ନିର୍ମାଣ ସମୟରେ ନିଅଁରୁ ଆବିର୍ଭାବ ହୋଇଥିବା ବୃହତ୍ ଶାଳଗ୍ରାମ ଏବେ ମଧ ମଠର ପଦ୍ମନାଭ ନାମରେ ପୂଜିତ । ସେହି ମଠର ନାମ ଯାଉଁଳୀପୋଖରୀ ରଘୁନାଥ ମଠ । ମଠର ସୁପରିଚାଳନା ନିମିତ୍ତ ଭଗୀରଥ ମଠ ପାର୍ଶ୍ୱସ୍ଥ ଜଳଜମି ସହିତ ନମଚିରା, ଅଙ୍କରାନ୍ତିପୁର, ଭୈରୀପୁର, ଚିରୁଳେଇ ଓ କୋକେଇଦା ଗ୍ରାମ ଦାନ କରିଥିଲେ ।

ରାଜା ଭଗୀରଥ କେତେଗୋଟି ବ୍ରାହ୍ମଣ ଶାସନ ବସାଇ ନିଷ୍କର ବ୍ରହ୍ମୋତ୍ତର ଲାଖରାଜ ଗ୍ରାମ ଦାନ କରିଥିଲେ । ସେଗୁଡ଼ିକ ହେଉଛି ଭୁବନର ଶ୍ରୀବସ୍ତ ଭଗୀରଥ ପୁର ଶାସନ, ଜେନାଦେଶ ବିଷର ଭଗୀରଥପୁର ଶାସନ ଓ ଉପର ଦେଶ ବିଷର ନୟା ଭଗୀରଥ ପୁର ଶାସନ । ଏତଦ୍‌ଭିନ୍ନ ସେ ବଡ଼ପଣ୍ଡାଙ୍କ ସାନଭାଇ ଖାନ୍‌ସମା (ରାଜପ୍ରାସାଦ ତତ୍ତ୍ୱାବଧାରକ) ପଣ୍ଡିତ ନୀଳକଣ୍ଠ ପଟ୍ଟଯୋଷୀଙ୍କୁ କରମୋଳ ବିଷର ଡାଳସିଂହା ମାର୍ଥାପୁର, କଟକ ଜିଲ୍ଲା ବିଲିପଡ଼ାମଠର ମହନ୍ତ ହୃଦାନନ୍ଦ ଦାସଙ୍କୁ ରାୟସିଂହ ପ୍ରସାଦ ବିଷର ରିଆଗ୍ରାମ, ପଣ୍ଡିତ ଆନନ୍ଦ ବ୍ରହ୍ମାଙ୍କୁ କେଉଟ ବେରଣୀ ଗ୍ରାମ, ରାଜବୈଦ୍ୟ ଫକୀର ବଡ଼ପଣ୍ଡାଙ୍କୁ ମାର୍ଥାପୁର ଶାସନରେ ବାସସ୍ଥାନ ଏବଂ ବ୍ରାହ୍ମଣ ଖଣ୍ଡଖୋଳ, ଘିଅଖୋଲ, ମଠରଗୋଳା ପ୍ରଭୃତି ୧୧ଟି ଗ୍ରାମରେ ଜମି ଏବଂ ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାରଙ୍କୁ ଧନାଷେଣ୍ଢ କାଟେଣୀ ଗ୍ରାମ ଦାନ କରିଥିଲେ । ପ୍ରତିଦିନ ସାଧୁ ସନ୍ଥ ବ୍ରାହ୍ମଣ ବୈଷ୍ଣବଙ୍କୁ ଅନ୍ନ ଓ ବସ୍ତ୍ର ଦାନ କରିବାରେ ସେ ଆନନ୍ଦ ଲାଭ କରୁଥିଲେ ।

ଓଡ଼ିଶାରେ ୧୮୬୫-୬୬ରେ ଦୁର୍ଭିକ୍ଷ ପଡ଼ିଥିଲା । ଏହି ଦୁର୍ଭିକ୍ଷ ପୁରୀ ରାଜା ଦିବ୍ୟସିଂହ ଦେବଙ୍କ ନବମ ଅଙ୍କରେ ପଡ଼ିଥିବାରୁ ଏହାକୁ ନଅଙ୍କ ଦୁର୍ଭିକ୍ଷ କୁହାଯାଇଥିଲା । ଏହି ଦୁର୍ଭିକ୍ଷରେ ଓଡ଼ିଶାର ଏକ ଲକ୍ଷ ବ୍ୟକ୍ତି ପ୍ରାଣ ହରାଇଥିଲେ । ଢେଙ୍କାନାଳରେ ଏହି ଦୁର୍ଭିକ୍ଷର ପ୍ରଭାବ ମଧ୍ୟ ପଡ଼ିଥିଲା । ସେହି ବର୍ଷ ବର୍ଷା ଅଭାବରେ ଫସଲ ନଷ୍ଟ ହୋଇଗଲା । ଚାଉଳ ଟଙ୍କାକୁ ଦୁଇସେର ହୋଇଗଲା । ତାହା ମଧ୍ୟ ସହଜରେ ମିଳିଲା ନାହିଁ । ଲୋକମାନେ ଖାଦ୍ୟ ବିକଳରେ ସାରୁନାଡ଼, ପତ୍ର, ତେନ୍ତୁଳି ପତ୍ର ଖାଇଗଲେ । ଓଡ଼ିଶାର ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲାରେ ବହୁତ ଲୋକ ମରିଗଲେ । ଢେଙ୍କାନାଳରେ ଅନେକ ମଧ୍ୟବିତ୍ତ ଓ କ୍ଷୁଦ୍ରଚାଷୀ ତଥା ମୂଲିଆ ଶ୍ରେଣୀ ବ୍ୟକ୍ତି ସପରିବାର ଉପାସରେ ରହିଲେ । ରାଜା ଭଗୀରଥ ଲୋକଙ୍କ ଦୁର୍ଦ୍ଦଶା ଦେଖି ଶିବୁଲାପାଣି, ଭାପୁର, ଲାଉଲଇ, ସାନ୍ଧା ଓ ଖଡ୍ଗ ପ୍ରସାଦ ପ୍ରଭୃତି ଧାନ୍ୟଘାରରୁ ପ୍ରଜାଙ୍କୁ ଧାନ ବିତରଣ କଲେ । ଦୁର୍ଭିକ୍ଷ ପ୍ରପୀଡ଼ିତ ପ୍ରଜାବର୍ଗଠାରୁ ସାହାଯ୍ୟ କରିବା ନିମିତ୍ତ ରାଜା ସ୍ୱମନ୍ତ୍ରୀ ଉତ୍ସବାନନ୍ଦ ହରିଚନ୍ଦନ ସିଂହ, ଯଦୁନାଥ ଛାମୁ ପଟ୍ଟନାୟକ ଓ ହରି ସାମନ୍ତରାୟଙ୍କୁ ନେଇ ଗୋଟିଏ କମିଟି ଗଠନ କଲେ । ଦୁର୍ଭିକ୍ଷ ପ୍ରପୀଡ଼ିତ ବ୍ୟକ୍ତିଙ୍କ ନିର୍ମିତ୍ତ ରାଜା

ଷୋହଳ ଗୋଟି ମୁଖ୍ୟସ୍ଥାନରେ ଅନ୍ନଛତ୍ର ଖୋଲିଲେ । ରାଜ୍ୟର ବଦାନ୍ୟ ବ୍ୟକ୍ତିଙ୍କ ଠାରୁ ଦୁର୍ଭିକ୍ଷ ଫଣ୍ଡ ନିମିତ୍ତ ଟଙ୍କା ଓ ଶସ୍ୟ ଆକାରରେ ଦାନ ଗ୍ରହଣ କରାଗଲା । ସୌରିକ ବିଷ ବିରାଶାଳ ଗ୍ରାମର ଜମିଦାର ବିଦ୍ୟାଧର ମିଶ୍ର ଦୁଇ ହଜାର ଭରଣ ଧାନ ଦାନ କରିଥିଲେ । ଏତଦ୍‌ଭିନ୍ନ ରାଜା ଭଗୀରଥି ମଧ୍ୟ କଟକ, ପୁରୀ ଓ ବାଲେଶ୍ବର ଜିଲ୍ଲାର ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ନିମିତ୍ତ ଯଥେଷ୍ଟ ଦାନ କରିଥିଲେ । ସୂଚନାଯୋଗ୍ୟ ଯେ, ନଅଙ୍କ ଦୁର୍ଭିକ୍ଷ ସମୟରେ ରାଜା ଭଗୀରଥ ଢେଙ୍କାନାଳ ରାଜ୍ୟର କେତେକ ସ୍ଥାନରେ ଶ୍ରମିକମାନଙ୍କୁ ନିଯୋଜିତ କରି ଜଳାଶୟ ଓ ରାସ୍ତା ନିର୍ମାଣ କରିଥିଲେ । ସେମାନଙ୍କୁ ପାରିଶ୍ରମିକ ଆକାରରେ ଧାନ ଦିଆଯାଉଥିଲା । ଫଳରେ ସେହି ସମୟରେ ଢେଙ୍କାନାଳ ସହରର ସୁବୃହତ୍ ଭଗୀରଥ ସାଗର (ନୂଆ ପୋଖରୀ), ମେଣ୍ଢାପଦା ପୋଖରୀ, ମଇଷିଆ କଡ଼ା ପୋଖରୀ, ଭାପୁର ରାସ୍ତା ଓ ବଉଳପୁର ରାସ୍ତା ପ୍ରଭୃତି ତିଆରି ହୋଇଥିଲା । ରାଜା ଭଗୀରଥଙ୍କ ସୁମହତ କାର୍ଯ୍ୟଯୋଗୁଁ ଢେଙ୍କାନାଳରେ ନଅଙ୍କ ଦୁର୍ଭିକ୍ଷର ପ୍ରଭାବ ଅଳ୍ପ ଅନୁଭୂତ ହୋଇଥିଲା । ମାତ୍ର ପାଞ୍ଚ ଶହ ବ୍ୟକ୍ତି ଏହି ଦୁର୍ଭିକ୍ଷରେ ପ୍ରାଣ ହରାଇଥିଲେ । ଇଂରେଜ ସରକାର ଭଗୀରଥୀଙ୍କ ଏହି କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ତାଙ୍କୁ ମହାରାଜ ଉପାଧି ପ୍ରଦାନ କରିଥିଲେ ।

ନଅଙ୍କ ଦୁର୍ଭିକ୍ଷ ପରେ ୧୮୬୮ ମସିହାରେ ବ୍ରାହ୍ମଣୀ ନଦୀରେ ଭୀଷଣ ବନ୍ୟା ହୋଇଥିଲା । ରଜସଂକ୍ରାନ୍ତି ପୂର୍ବଦିନ ହଠାତ୍ ନଦୀବୃଦ୍ଧି ହୋଇ ତୀରବର୍ତ୍ତୀ ଗ୍ରାମମାନଙ୍କରେ ବନ୍ୟାଜଳ ଜମିଲା । ଠିକ୍ ସେହି ସମୟରେ ପ୍ରବଳ ବର୍ଷା ଓ ପଶ୍ଚିମା ପବନ ବୋହିବାରୁ ବନ୍ୟା ଭୀଷଣାକୃତି ଧାରଣ କଲା । ଅନେକ ଲୋକ ସପରିବାର ଚାଳ ଉପରେ ଆଶ୍ରୟ ନେଲେ । ଦୈବ ଦୁର୍ବିପାକକୁ ଘରଭାଙ୍ଗି ଚାଳ ମଧ୍ୟ ନଦୀ ସ୍ରୋତରେ ଭାସିଲା । ତେଣୁ ଏହି ବନ୍ୟାରେ କେତେ ଯେ ଲୋକ ଭାସିଗଲେ ତା'ର ଇୟତ୍ତା ନାହିଁ । ବ୍ରାହ୍ମଣୀ ନଦୀ କୂଳରେ ଥିବା କମଗରା, କନ୍ତିଓ ରାୟ ନୃସିଂହପୁର, କରବର, ଗୋରଡ଼ିଆ, ମାର୍ଥାପୁର, ଗୋରଡ଼ାପାଳ, ଓଢ଼ଣା, ମାଳପୁରା, ଚଣ୍ଡୀପାଳ, କୀର୍ତ୍ତନପୁର, ପ୍ରଚଣ୍ଡପୁର ପ୍ରଭୃତି ଗ୍ରାମର ବିଶେଷ କ୍ଷୟକ୍ଷତି ହୋଇଥିଲା । ଏହି ବନ୍ୟାରେ କୀର୍ତ୍ତନ ପୁର ଗ୍ରାମଟି ଜନଶୂନ୍ୟ ହୋଇପଡ଼ିଲା । ଏହି ଗ୍ରାମର ମାତ୍ର ୧୮ ଜଣ ବ୍ୟକ୍ତି ବଞ୍ଚିଥିଲେ । ମାର୍ଥାପୁର ଓ ଓଢ଼ଣା ଗ୍ରାମ ମଝିରେ ରାମିଆଳ ନଦୀର ଏକ ଧାର ପ୍ରବାହିତ ହୋଇ ସାହାଡ଼ା

ଘାଇ ନାମଧାରଣ କରି ବ୍ରାହ୍ମଣୀରେ ମିଶିଲା । ମାଳପୁରା ଗ୍ରାମର ପ୍ରାୟ ଦୁଇଶହ ପରିବାର ଗୃହଶୂନ୍ୟ ହୋଇଗଲେ । ରାୟ ନୃସିଂହପୁର ଗ୍ରାମ ନଦୀ ଗର୍ଭରେ ଲୀନ ହୋଇଗଲା । କନ୍ତିଓ ଗ୍ରାମର ଅର୍ଦ୍ଧେକ ନଦୀରେ ମିଶିଗଲା । ମହାରାଜା ଭଗୀରଥ ବନ୍ୟାକ୍ଳିଷ୍ଟ ପ୍ରଜାଙ୍କ ଥଇଥାନ ନିମିତ୍ତ ତୁରନ୍ତ ପଦକ୍ଷେପ ନେଇଥିଲେ । କନ୍ତିଓ ଗ୍ରାମବାସୀଙ୍କୁ ନେଇ ଉତ୍ତର ଦିଗରେ କିଛି ଦୂରରେ ନୂତନ ଗ୍ରାମ ବସାଇଲେ । ସେହି ଗ୍ରାମ ସବୁ କନ୍ତିଓ କାଟେଣୀ ଓ କନ୍ତିଓ ପୁଟସାହି ନାମରେ ପରିଚିତ । ରାୟ ନୃସିଂହପୁର ଶାସନ ବ୍ରାହ୍ମଣମାନଙ୍କୁ ଉତ୍ତର ଦିଗସ୍ଥ କମଗରା ଓ ଗୋଦରିବିଲ ଗ୍ରାମ ନିକଟରେ ରଖାଇଲେ । ଗୋରଡ଼ିଆ ଗ୍ରାମବାସୀଙ୍କୁ ମଧ୍ୟ ଏକ କିଲୋମିଟର ଉତ୍ତରରେ ରଖାଇଲେ । ମାର୍ଥାପୁର ଶାସନର ପୂର୍ବ ପାର୍ଶ୍ୱରେ ନୂଆନଈ ସାହାଡ଼ା ଘାଇ ସୃଷ୍ଟି ହୋଇଥିବାରୁ ମହାରାଜ ଭଗୀରଥ ସେହି ଶାସନଟିକୁ ପଶ୍ଚିମ ଦିଗକୁ ଘୁଞ୍ଚାଇ ଦେଇ ଶାସନ ବସାଇଥିଲେ । ମାର୍ଥାପୁର ଶାସନର ପଶ୍ଚିମକୁ ନୟା ଓଡ଼ଣା ଗ୍ରାମ ନୂତନ ଭାବରେ ସୃଷ୍ଟି ହୋଇଥିଲେ ହେଁ ଓଡ଼ଣା ଗ୍ରାମବାସୀ ପୂର୍ବସ୍ଥାନର ଉର୍ବର ଭୂମି ପରିତ୍ୟାଗ କରି ନୟାଓଡ଼ଣାକୁ ଆସିଲେ ନାହିଁ । ପରବର୍ତ୍ତୀ କାଳରେ ନୟାଓଡ଼ଣା ଗ୍ରାମରେ ମାର୍ଥାପୁର ଉଚ୍ଚ ବିଦ୍ୟାଳୟ, ପଶୁଡାକ୍ତରଖାନା ଓ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠିତ । ନଦୀବୃଦ୍ଧି ଫଳରେ ଚଣ୍ଡୀପାଳର ଜମି ନଦୀର ଦକ୍ଷିଣ ପାର୍ଶ୍ୱରେ ଓ ବସ୍ତି ନଦୀର ଉତ୍ତର ପାର୍ଶ୍ୱରେ ରହିଗଲା । କୀର୍ତ୍ତନପୁର ଗ୍ରାମଟି ସମ୍ପୂର୍ଣ୍ଣ ଧ୍ୱଂସ ବିଧ୍ୱଂସ ହୋଇଯାଇଥିବାରୁ ମହାରାଜ ଭଗୀରଥ ପୂର୍ବଗ୍ରାମର ଉତ୍ତର ପୂର୍ବକୋଣରେ ଭୂଷଳଗ୍ରାମ ନିକଟରେ ନୂତନ କୀର୍ତ୍ତନପୁର ଗ୍ରାମ ବସାଇଲେ । ପ୍ରଚଣ୍ଡପୁର ଗ୍ରାମଟି ନଦୀରେ ଲୀନ ହୋଇଯାଇଥିବାରୁ ସେହି ଗ୍ରାମବାସୀଙ୍କୁ ନୀଳକଣ୍ଠ ପୁର ଗ୍ରାମରେ ରଖାଇଲେ । ଏତଦ୍‌ଭିନ୍ନ ମହାରାଜ ବାଲୀଚର ହୋଇଥିବା ଜମିର ଖଜଣୀ ସେହି ବର୍ଷ ଛାଡ଼ କରିଥିଲେ ।

ମହାରାଜ ଭଗୀରଥ ଜଣେ ପ୍ରଜାବତ୍ସଳ ଓ ସୁଶାସକ ଥିଲେ । ତତ୍‌କାଳୀନ ଗଡ଼ଜାତ ରାଜାମାନଙ୍କ ମଧ୍ୟରେ ସେ ଥିଲେ ଆଦର୍ଶ । ସେତେବେଳେ ଓଡ଼ିଶାରେ କମିଶନର ଥିବା ରେଭେନ୍‌ସା ସାହେବଙ୍କ ସହିତ ଭଗୀରଥଙ୍କର ବନ୍ଧୁତ୍ୱ ରହିଥିଲା । ରେଭେନ୍‌ସା ସାହେବ ଢେଙ୍କାନାଳ ମହାରାଜ ଭଗୀରଥଙ୍କୁ ଜଣେ ଉଦାରଚେତା ସୁଶାସକ ଦୃଷ୍ଟିରେ ଦେଖୁଥିଲେ । ତେଣୁ କମିଶନରଙ୍କ ଅଦାଲତରେ ଆଗତ ହୋଇଥିବା ଅନେକ ମୋକଦ୍ଦମା ସ୍ୱୟଂ କମିଶନରଙ୍କ ଆଦେଶ ମତେ

ଭଗୀରଥ ବିଚାର କରିଥିଲେ । ଏହିପରି ଅନେକ ମୋକଦ୍ଦମାର ପୁଙ୍ଖାନୁପୁଙ୍ଖ ତଦନ୍ତ ଓ ସାକ୍ଷ୍ୟ ପ୍ରମାଣ ତର୍ଜମା କରି ମହାରାଜ ଭଗୀରଥ କମିଶନରଙ୍କ ନିକଟକୁ ଶେଷ ରାୟ ପ୍ରକାଶ ନିମିତ୍ତ ପଠାଇଥିଲେ । ତନ୍ମଧ୍ୟରୁ ଡୋମପଡ଼ା ରାଜ୍ୟବଂଶର ଉତ୍ତରାଧିକାରୀ ସାବ୍ୟସ୍ତ ସମ୍ପର୍କୀୟ ୪୭୬ ମୋକଦ୍ଦମା, ଉଲ୍ଲେଖଯୋଗ୍ୟ । ମହାରାଜ ଭଗୀରଥ ନିରପେକ୍ଷ ଭାବରେ ଏହାର ସାକ୍ଷ୍ୟ ପ୍ରମାଣ ଜବାବ ସୁଆଲ ତର୍ଜମା କରି କମିଶନରଙ୍କ ନିକଟକୁ ପଠାଇଥିଲେ । ମହାରାଜ ଭଗୀରଥ ଆପଣାର ଉତ୍ତମ ଶାସନ, ନିରପେକ୍ଷ ବିଚାର, ପ୍ରଜାନୁରଞ୍ଜନ ଓ ଶୃଙ୍ଖଳା ନିମିତ୍ତ ବହୁବାର ଇଂରେଜ ଶାସକଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲେ । ଗୌରବର କଥା ଏକ ବିଶେଷ ଉତ୍ସବରେ ଫୋର୍ଟ ଉଇଲିୟମ୍ ଦୁର୍ଗଠାରେ ୧୮୭୪ ମସିହା ମେ ୨୧ ତାରିଖରେ ଭଗୀରଥ ମହୀନ୍ଦ୍ର ବାହାଦୂରଙ୍କୁ ୪୧୦ ନମ୍ବର ଆଦେଶରେ ମହାରାଜା ଉପାଧି ପ୍ରଦାନ କରିଥିଲେ । ନଂ୪୧୦ମ୍ବର ।

ଆମ୍ଭର ପ୍ରିୟ ମହାରାଜା-ଢେଙ୍କାନାଳ
ଫୋର୍ଟ ଉଇଲିୟମ୍
ତା ୨୧ ରିଖ ମଇ ସନ ୧୮୭୪ ମସିହା
ବର୍ତ୍ତମାନ ପ୍ରଦତ୍ତ ହେଉଥିବା ତୁମ୍ଭର ପୂର୍ବ ଉପାର୍ଜିତ

ମହାରାଜା ପଦ ଯାହାକି ବିଶେଷ କାରଣମାନଙ୍କରୁ ତୁମ୍ଭଙ୍କୁ ପ୍ରଦତ୍ତ ହୋଇଅଛି ତହିଁ ପ୍ରତି କୌଣସି ମତେ ବାଧାଜନକ ହେବ ନାହିଁ । ସେ ପଦ ତୁମ୍ଭେ ଯାବଜ୍ଜୀବନ ଭୋଗ କରିବ ।

ଏତଦ୍‌ଭିନ୍ନ ମହାରାଜ ଭଗୀରଥଙ୍କୁ ଜଣେ ନ୍ୟାୟ ପରାୟଣ ପ୍ରଜାବତ୍ସଳ ରାଜା ରୂପେ ଇଂରେଜ ସରକାର ଅଭିହିତ କରିଥିଲେ ।

ତା୨୫ରିଖ ମାହେ ଜୁନ୍ ସନ ୧୮୭୪ ମସିହା ।

୯୨୭ ନମ୍ବର

ବଙ୍ଗ ଦେଶର ମହାମାନ୍ୟ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାହେବ ଗଡ଼ଜାତର ସନ ୧୮୭୪ ମସିହାର ସାଲତମାମୀ ରିପୋର୍ଟ ସମାଲୋଚନା ପୂର୍ବକ ଲେଖିଅଛନ୍ତି, ଗଡ଼ଜାତ ରାଜାମାନେ ପୂର୍ବାପେକ୍ଷା ଆପଣା ରାଜ୍ୟ ସାବଧାନ ରୂପେ ଏବଂ ସୁଶୃଙ୍ଖଳାରେ ଶାସନ କରୁଥିବା ବିଷୟ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାହେବ ସାଧାରଣ ମତେ ସ୍ୱୀକାର କରିଅଛନ୍ତି । ମାତ୍ର ଢେଙ୍କାନାଳ ମହାରାଜା ଯେପରି

ନ୍ୟାୟ ପରାୟଣ ଓ ପ୍ରଜାବତ୍ସଳ ଭାବ ପ୍ରଦର୍ଶନ କରିଅଛନ୍ତି ତାହା ଆଦର୍ଶ ସ୍ୱରୂପ ବିବେଚନା କରାଯାଇ ଅନ୍ୟାନ୍ୟ ରାଜାମାନଙ୍କୁ ତଦବିଷୟରେ ଅନୁଗାମୀ ହେବା କର୍ତ୍ତବ୍ୟ ।

ଏଥିରୁ **ସ୍ପଷ୍ଟ** ଉପଲବ୍ଧ ହୁଏ, ମହାରାଜା ଭଗୀରଥ ସମସ୍ତ ଗଡ଼ଜାତର ଆଦର୍ଶ ରାଜା ଭାବରେ ଇଂରେଜ ସରକାରଙ୍କ ପ୍ରିୟଭାଜନ ହୋଇପାରିଥିଲେ । ତାଙ୍କ ରାଜତ୍ୱ ସମୟକୁ ଢେଙ୍କାନାଳର ସୁବର୍ଣ୍ଣଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ରାଜକୀୟ ମର୍ଯ୍ୟାଦାରେ ପାରମ୍ପରିକ ରୀତିରେ ସେ ମହାଡ଼ମ୍ବରରେ ଦୈନନ୍ଦିନ ଜୀବନଯାପନ କରୁଥିଲେ ହେଁ ତାଙ୍କ ଜୀବନ ଓ କର୍ମ ପ୍ରଜାମାନଙ୍କ ନିମିତ୍ତ ଉତ୍ସର୍ଗୀକୃତ ଥିଲା । ପ୍ରତ୍ୟହ ନିତ୍ୟକର୍ମ ଓ ଦେବାର୍ଚ୍ଚନା ପରେ ସେ ପ୍ରଜାମାନଙ୍କ ଆପତ୍ତି ଅଭିଯୋଗ ଶୁଣି ପ୍ରତିକାର ବ୍ୟବସ୍ଥା କରୁଥିଲେ । ଯେକୌଣସି ପ୍ରଜା ବା ରାଜକର୍ମଚାରୀ ଅନାୟାସରେ ମହାରାଜାଙ୍କୁ ସାକ୍ଷାତ୍ କରି ନିଜର ଦୁଃଖ ଓ ସମସ୍ୟା ଜଣାଇପାରୁଥିଲା । ଦରବାର ବ୍ୟତୀତ ଅନ୍ୟାନ୍ୟ ସମୟରେ ମଧ୍ୟ ପ୍ରଜାଙ୍କ ଆପତ୍ତି ଶୁଣୁଥିଲେ । ତାଙ୍କ ରାଜପ୍ରାସାଦ ଏକ ଆଦର୍ଶ ଥିଲା । ପ୍ରଥମେ କଚେରୀ, ଯାହାକୁ ବଉଳ ମୂଳ କଚେରୀ କୁହାଯାଉଥିଲା, ସେଠାରେ ସମସ୍ତ ରାଜକାର୍ଯ୍ୟାଳୟ ଓ ରାଜକୋଷ ତଥା ମହାଫିସ୍‌ଖାନା ରହିଥିଲା । ସିଂହଦ୍ୱାର ପରେ ଦରବାର ତଥା ଭିତରକୁ ଅନ୍ତଃପୁର । ଏପରିକି ରାଜା ଅନ୍ତଃପୁରରେ ଥିବା ସମୟରେ ମଧ୍ୟ ପ୍ରଜାଙ୍କ ସମ୍ବାଦ ତାଙ୍କ ନିକଟରେ ପହଞ୍ଚିବା ନିମିତ୍ତ ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । ସଂକ୍ଷେପରେ ଉଲ୍ଲେଖ କଲେ ଜଣେ ଆଦର୍ଶ ପ୍ରଜାବତ୍ସଳ ବିଚାରବନ୍ତ ସୁଶାସକ ରୂପେ ମହାରାଜା ଭଗୀରଥଙ୍କ ନାମ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ।



# ସଂସ୍କାରକ ଓ ସାହିତ୍ୟକ ଭଗୀରଥ

ମହାରାଜା ଭଗୀରଥ ମହୀନ୍ଦ୍ର ବାହାଦୂର କେବଳ ସୁଶାସକ ନଥିଲେ, ସେ ଜଣେ ସଂସ୍କାରଧର୍ମୀ ପ୍ରଶାସକ ଓ ସୁସାହିତ୍ୟକ ଥିଲେ । ଢେଙ୍କାନାଳ ରାଜ୍ୟର ଶିକ୍ଷା, ସ୍ୱାସ୍ଥ୍ୟ ପ୍ରଭୃତିର ଉନ୍ନତି ନିମିତ୍ତ ସେ ଯେପରି ଯତ୍ନବାନ୍ ଥିଲେ ଆଦିବାସୀ ଓ ଅନାର୍ଯ୍ୟ ଜାତିଙ୍କର ବିକାଶ ନିମିତ୍ତ ସେପରି ପଦକ୍ଷେପ ନେଇଥିଲେ । ସେହି ସମୟରେ ଢେଙ୍କାନାଳର ବିଭିନ୍ନ ଅଞ୍ଚଳରେ ବାସ କରୁଥିବା ଜୁଆଙ୍ଗ (ପାତୁଆ)ମାନେ ବସ୍ତ୍ର ପରିଧାନ କରୁନଥିଲେ । ସେମାନେ ଗଛର ପତ୍ର ସିଆରି ଲଇରେ ବାନ୍ଧି ଅଣ୍ଟାରେ ଗୁଡ଼ାଇ ଲଜ୍ଜା ନିବାରଣ କରୁଥିଲେ । ସେମାନଙ୍କର ଭ୍ରାନ୍ତଧାରଣା ଥିଲା ଯେ, ବସ୍ତ୍ର ପିନ୍ଧିଲେ ବାଘ ଖାଇଯିବ । ଏହା ବ୍ୟତୀତ ଋତୁମତୀ କାଳରେ ଜୁଆଙ୍ଗ ରମଣୀମାନେ ଗାତ ଭିତରେ ଲୁଚି ରହୁଥିଲେ । ମହାରାଜା ଭଗୀରଥ ଏହି କୁପ୍ରଥା ଉଠାଇବା ନିମିତ୍ତ ଦୃଢ଼ ପଦକ୍ଷେପ ନେଇଥିଲେ । ସେ ରାଜକୋଷରୁ ଅର୍ଥ ବ୍ୟୟ କରି ଜୁଆଙ୍ଗମାନଙ୍କୁ ଲୁଗା ପିନ୍ଧାଇଲେ ଏବଂ ଜୁଆଙ୍ଗ ପିଲାମାନେ ପାଠପଢ଼ିବା ନିମିତ୍ତ ରଞ୍ଜାଠାରେ ଏକ ନିମ୍ନ ପ୍ରାଥମିକ ବିଦ୍ୟାଳୟ ସ୍ଥାପନା କରି ସଦାନନ୍ଦ ମିଶ୍ର ନାମରେ ଜଣେ ଶିକ୍ଷକଙ୍କୁ ନିଯୁକ୍ତି ଦେଇଥିଲେ । ଜୁଆଙ୍ଗଙ୍କ ବ୍ୟତୀତ ପତର ସଉରାମାନଙ୍କୁ ମଧ୍ୟ ସେ ସଭ୍ୟ କରିବା ନିମିତ୍ତ ପ୍ରଯତ୍ନଶୀଳ ଥିଲେ ।

ଆପଣା ରାଜ୍ୟରେ ଶିକ୍ଷାର ପ୍ରସାର ନିମିତ୍ତ ମହାରାଜା ଭଗୀରଥ ଢେଙ୍କାନାଳ ସହରରେ ୧୮୬୮ ମସିହାରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନା କରିଥିଲେ । ଏହା ଗଡ଼ଜାତ ଅଞ୍ଚଳର ପ୍ରଥମ ଇଂରାଜୀ ବିଦ୍ୟାଳୟ । ପୂର୍ବେ ଢେଙ୍କାନାଳ ରାଜ୍ୟରେ ଚାଟଶାଳୀ ଶିକ୍ଷାର ପ୍ରସାର ଘଟିଥିଲା । ଆଧୁନିକ ଶିକ୍ଷା ପ୍ରଣାଳୀ ପ୍ରବର୍ତ୍ତନ କରିବା ନିମିତ୍ତ ସେ ଭୁବନ, ମାର୍ଥାପୁର, ଧଳପୁର, ସଦାଶିବପୁର, ବଉଳପୁର, ଭାପୁର, ଇନ୍ଦୁପୁର, ଜଗନ୍ନାଥପୁର, କନ୍ତିଓ, ଡମୋଳ ପ୍ରଭୃତି ଗ୍ରାମରେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଏବଂ ବାରିହାପୁର, ବିରାଶାଳ, ଗଁଦିଆ, ପିଙ୍ଗୁଆ, କରମୂଳ ପ୍ରଭୃତି ଗ୍ରାମମାନଙ୍କରେ ନିମ୍ନ ପ୍ରାଥମିକ ବିଦ୍ୟାଳୟ ବସାଇଥିଲେ । ସେହି ସମୟର ଢେଙ୍କାନାଳ ବ୍ୟତୀତ ଅନ୍ୟ କୌଣସି ଗଡ଼ଜାତରେ ବିଦ୍ୟାଶିକ୍ଷା ନିମିତ୍ତ ଏତାଦୃଶ ପଦକ୍ଷେପ ନିଆଯାଇନଥିଲା ।

ମହାରାଜା ଭଗୀରଥ ବିଦ୍ୟାଳୟ ସ୍ଥାପନା ପରେ ସ୍କୁଲ ସମୂହର ଇନ୍ସପେକ୍ଟରଙ୍କ ଦ୍ୱାରା ସ୍ୱପ୍ରତିଷ୍ଠିତ ବିଦ୍ୟାଳୟ ପରିଚାଳନା ନିମିତ୍ତ ଇଂରେଜ ସରକାରଙ୍କୁ ନିବେଦନ କରିଥିଲେ ।

୫୩ ନମ୍ବର ଶ୍ରୀଳ ଶ୍ରୀଯୁକ୍ତ ମହାମହିମ ମହିମାର୍ଣ୍ଣବ ଶ୍ରୀ ସୁପରିଣ୍ଟେଣ୍ଡେଣ୍ଟ ସାହେବ ଜୀଉଙ୍କ ହଜୁରକୁ କଲେ ଢେଙ୍କାନାଳ ମହାରାଜା ଶ୍ରୀ ଭଗୀରଥ ମହୀନ୍ଦ୍ର ବାହାଦୂରଙ୍କର ଅରଜି ନିବେଦନ, ଏହିକି ଯେ, ଆମ୍ଭ କିଲା ଇଲାକାରେ ଏତଦ୍ରାଜ୍ୟସ୍ଥ ବାଳକମାନେ ଇଂରେଜୀ, ଓଡ଼ିଆ ଓ ସଂସ୍କୃତ ଶିକ୍ଷା କରିବା ନିମିତ୍ତ ସ୍କୁଲ ସ୍ଥାପିତ କରିଅଛୁ । ମାତ୍ର ନିୟମ ଅଭାବରୁ ପାଠଶାଳାର କାର୍ଯ୍ୟ ସୁସଙ୍ଗତ ରୂପେ ଚଳୁନାହିଁ । ଏଣୁ କରି ପ୍ରାର୍ଥନା କରୁଅଛି କି ସ୍କୁଲ ସମୂହର ଇନ୍‌ସପେକ୍ଟର ସାହେବଙ୍କ ଦ୍ୱାରା ସର୍କାରୀ ସ୍କୁଲମାନଙ୍କ ପରି ଆମ୍ଭ ସ୍କୁଲକୁ ତତ୍ତ୍ୱାବଧାରଣ କରାଇବାର ଆଜ୍ଞା ହେଉ । ମାହେ ବୃଷ ୧୪ ଦିନ ସନ ୧୨୭୬ ସାଲ ମୁ.ମଇ ତା୨୫ରିଖ ସନ ୧୮୬୯ ମସିହା ।

ସୂଚନା ଯୋଗ୍ୟ ଯେ, ଆଦିମ ଅଧିବାସୀଙ୍କୁ  ଲୁଗା ପିନ୍ଧାଇବା ଶିକ୍ଷାଦାନ କରାଇବା ତଥା ଶିକ୍ଷାର ପ୍ରସାର ନିମିତ୍ତ ବିଦ୍ୟାଳୟ ସ୍ଥାପନା କରିବା ଯୋଗୁଁ ଇଂରେଜ ସରକାର ମହାରାଜାଙ୍କୁ ପ୍ରଶଂସା କରିଥିଲେ ।

୮୧୩ ନମ୍ବର

ମୁସଫକ୍ ମେହେରବାନ୍ ଦୋସ୍ତାନ୍ ମହାରାଜା ଶ୍ରୀ ଭଗୀରଥ ମହୀନ୍ଦ୍ର ବାହାଦୂର ରାଜା କି ଢେଙ୍କାନାଳ ସଲ ମହୁତାଲା ।

ଆଜ ଦିନ ତୁମ୍ଭ ରିପୋର୍ଟ ଲିଖିତ ସନ୍‌ହାଲ ଜାନୁଆରୀ ମାସ ୩୦ ତାରିଖ । ତୁମ୍ଭ କିଲା  ଇଲାକାରେ ବାସ କରିଥିବା ଏକ ଜାତି ପାତୁଆ ନାମକ ପ୍ରଜା ଅତ୍ୟନ୍ତ ଅସହ୍ୟ ଓ ମୂର୍ଖ ଆପଣା ହିତାହିତ ବିଚାର ନ କରି ଅଦ୍ୟାବଧି ତାଙ୍କର ସ୍ତ୍ରୀ ଓ କନ୍ୟାମାନେ ବସ୍ତ୍ର ପରିଧାନ ନକରି ପଶୁବତ୍ କ୍ଳେଶ ପାଉଥିବା ଓ ତୁମ୍ଭେ ସେମାନଙ୍କୁ ବିଦ୍ୟାଧ୍ୟୟନରେ ମନୋଯୋଗୀ ହେବାକୁ ଓ ସ୍ତ୍ରୀ କନ୍ୟାମାନଙ୍କୁ ବସ୍ତ୍ର ପରିଧାନ କରିବାକୁ ନାନାଦି ଉପଦେଶ ଦେଇ ଆପଣା ହସ୍ତରୁ ଚାରି ପାଞ୍ଚଶହ ଟଙ୍କାର ଲୁଗା ଖରିଦ କରି ନିକଟବାସୀ ପାତୁଆ ପ୍ରଜାମାନଙ୍କୁ ପିନ୍ଧାଇଥିବା ଓ ଦୁଇହଜାର ଟଙ୍କାର ଲୁଗା ତୁମ୍ଭ କିଲା ଭରି ପାତୁଆମାନଙ୍କ ନିମନ୍ତେ ଖର୍ଚ୍ଚ ହେବାର ତୁମ୍ଭଙ୍କୁ ବୋଧ ହେଉଥିବା ଆଦି ବିଷୟରେ ହଜୁରରେ ଗୁଜରି ମୁଲହିଜାରେ ଆସିଲା । ଯେହେତୁ ତୁମ୍ଭେ ପାତୁଆ ଜାତି, ଜଙ୍ଗଲୀ

ଲୋକମାନଙ୍କର ସ୍ତ୍ରୀ ଓ କନ୍ୟାମାନଙ୍କୁ କି ସେମାନେ କେବେ ହେଁ ଲୁଗା ନପିନ୍ଧି ଅସହ୍ୟ ଅବସ୍ଥାରେ କାଳହରଣ କରୁଥିଲେ ସେମାନଙ୍କୁ ନାନାଦି ଉପଦେଶମାନ ଦେଇ ସେମାନଙ୍କର ସମ୍ମତିରେ ଆପଣା ହାତରୁ ଟଙ୍କା ଖରଚ କରି ସେମାନଙ୍କର ସ୍ତ୍ରୀ ଓ କନ୍ୟାମାନଙ୍କୁ ବସ୍ତ୍ର ପରିଧାନ କରାଇଲ । ଏ ବିଷୟରେ ତୁମ୍ଭର ବିଚାରରେ ହଜୁର ସମ୍ମତ ହେଲେ ଓ ମଧ୍ୟ ସମୟ ସମୟରେ ତୁମ୍ଭେ ଅନେକବାର ଆପଣାର ପ୍ରଜାମାନଙ୍କ ହିତୋପକାର ଅର୍ଥେ ହାତରୁ ଅନେକ ଟଙ୍କା ଖର୍ଚ୍ଚ କରି ଏହିପରି କେତେକ ଉତ୍ତମ କାର୍ଯ୍ୟମାନ କରିଥିବାରୁ ହଜୁର ତୁମ୍ଭର ଏକ ପ୍ରକାର କର୍ମରେ ବଡ଼ ଆନନ୍ଦ ହେଲେ । ଅନ୍ୟାନ୍ୟ ରାଜାଗୀ ଇଲାକାରେ ଥିବା ପାତୁଆମାନଙ୍କୁ ସ୍ତ୍ରୀ ଓ କନ୍ୟାମାନଙ୍କୁ ଲୁଗା ପିନ୍ଧାଇବା ସକାଶେ ଫୁରସତ୍ ଅନୁସାରେ ହୁକୁମ ଦିଆଯିବ, ଅତଏବ ଲେଖାଯାଉଅଛି କି ତୁମ୍ଭେ ଏ ବିଷୟରୁ ଓ୍ୱାକବ ହେବ । ୧୮ ତାରିଖ ମାହେ ଫେବୃୟାରୀ ସନ ୧୮୭୧ ମସିହା ।

ଢେଙ୍କାନାଳ ରାଜ୍ୟର ୧୮୭୧-୭୨ ମସିହା ସାଲତମାମି ରିପୋର୍ଟର କେତେକ ଦଫାରୁ ଜଣାଯାଏ ଢେଙ୍କାନାଳରେ ନିଃଶୁଲ୍କ ଶିକ୍ଷାଦାନ ବ୍ୟବସ୍ଥା ପ୍ରଚଳିତ ଥିଲା । ମହାରାଜା ଭଗୀରଥ ଓଡ଼ିଶାର ପ୍ରଥମ ମାଟ୍ରିକୁଲେଟ୍ ବନମାଳୀ ସିଂହଙ୍କୁ ଦେଓ୍ୱାନ୍ ଏବଂ ନୃସିଂହ ଚରଣ ଦାସଙ୍କୁ ବନ୍ଦୋବସ୍ତ ନିମିତ୍ତ ରାଜସ୍ୱମନ୍ତ୍ରୀ ଭାବରେ ରଖିଥିଲେ । ଶିକ୍ଷା ପ୍ରତି ତାଙ୍କର ଆଗ୍ରହ ଥିବାରୁ ସେ ଆଠଗୋଟି ବିଦ୍ୟାଳୟ ସହିତ ଇଂରାଜୀ ବିଦ୍ୟାଳୟ ବସାଇଥିଲେ । ଛାତ୍ରମାନେ ବିନା ବେତନରେ ବିଦ୍ୟା ଶିକ୍ଷା କରିବା ସହିତ ପାଠ୍ୟ ପୁସ୍ତକ କ୍ରୟ କରୁନଥିଲେ । ଏଥି ନିମିତ୍ତ ମହାରାଜା ବାର୍ଷିକ ୧୩୦୦ ଟଙ୍କା ଖର୍ଚ୍ଚ କରୁଥିଲେ । ସରକାରୀ ଡେପୁଟୀ ଇନ୍ସପେକ୍ଟର ନିୟମିତ ଭାବରେ ବିଦ୍ୟାଳୟ ପରିଦର୍ଶନ କରି ଉନ୍ନତି ନିମିତ୍ତ ଉପଦେଶ ପ୍ରଦାନ କରୁଥିଲେ । ସେହି ସାଲତମାମିରୁ ଜଣାଯାଏ ଇଂରେଜ ସରକାର ମହାରାଜାଙ୍କ ଏତାଦୃଶ ସଂସ୍କାରଧର୍ମୀ କାର୍ଯ୍ୟର ଭୂୟସୀ ପ୍ରଶଂସା କରିଥିଲେ ।

ମହାରାଜ ଭଗୀରଥ ୧୮୪୮ ମସିହାରେ ଢେଙ୍କାନାଳରେ ଏକ ସଂସ୍କୃତ ଟୋଲ ବସାଇଥିଲେ । ଏହି ଶିକ୍ଷାନୁଷ୍ଠାନର ନାମ ଥିଲା ଭଗୀରଥ ସଂସ୍କୃତ ବିଦ୍ୟାଳୟ । ଏହି ସଂସ୍କୃତ ବିଦ୍ୟାଳୟ ଅଧ୍ୟକ୍ଷ ଥିଲେ ପଣ୍ଡିତ ମୃତ୍ୟୁଞ୍ଜୟ ତର୍କ ପଞ୍ଚାନନ । ପଣ୍ଡିତ ମୃତ୍ୟୁଞ୍ଜୟ ପୁରୀ ଦାମୋଦରପୁର ନିବାସୀ । ସେ ନବଦୀପରେ ଚଉଦବର୍ଷ ବିଦ୍ୟାଧ୍ୟୟନ କରି ଦର୍ଶନ ଶାସ୍ତ୍ରରେ ଅସାଧାରଣ ପାଣ୍ଡିତ୍ୟ

ଅର୍ଜନ କରିଥିଲେ । ସେ ଥିଲେ ତତ୍‌କାଳୀନ ବଙ୍ଗ ଉତ୍କଳର ସର୍ବଶ୍ରେଷ୍ଠ ନ୍ୟାୟଶାସ୍ତ୍ରବେତ୍ତା । କଟକ ସହରର ତଦନାନ୍ତୀନ ମୁନ୍‌ସଫ୍ ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣ ନବଦ୍ୱୀପରୁ ପଣ୍ଡିତ ମୃତ୍ୟୁଞ୍ଜୟ ତର୍କ ପଞ୍ଚାନନଙ୍କୁ ଆଣି କଟକଠାରେ ଗୋଟିଏ ସଂସ୍କୃତ ବିଦ୍ୟାଳୟ ସ୍ଥାପନ କରିଥିଲେ । କିଛି କାଳ ପରେ ବିଶ୍ୱମ୍ଭର ବିଦ୍ୟାଭୂଷଣଙ୍କର କଟକରୁ ଅନ୍ୟତ୍ର ବଦଳି ହୋଇଗଲା । ଅନ୍ୟ କୌଣସି ଓଡ଼ିଆ ସଂସ୍କୃତ ବିଦ୍ୟାଳୟର ଦାୟିତ୍ୱ ନ ନେବାରୁ ତାହା ଭାଙ୍ଗିଗଲା । ଠିକ୍ ସେହି ସମୟରେ ଢେଙ୍କାନାଳ ଦେୱାନ୍‌ଙ୍କ ଭ୍ରାତା ଦାମୋଦର ସୁରେନ୍ଦ୍ର ସିଂହ କଟକର ସଂସ୍କୃତ ବିଦ୍ୟାଳୟରେ ପଢୁଥିଲେ । ସେ ଢେଙ୍କାନାଳ ମହାରାଜା ଭଗୀରଥଙ୍କୁ ସମସ୍ତ ବିଷୟ ଅବଗତ କରାଇ ଢେଙ୍କାନାଳରେ ସଂସ୍କୃତ ବିଦ୍ୟାଳୟ ବସାଇବାକୁ ନିବେଦନ କଲେ । ମହାରାଜା ଅତ୍ୟନ୍ତ ପ୍ରୀତ ହୋଇ ଢେଙ୍କାନାଳଠାରେ ସଂସ୍କୃତ ବିଦ୍ୟାଳୟ ପ୍ରତିଷ୍ଠା ପୂର୍ବକ ପଣ୍ଡିତ ମୃତ୍ୟୁଞ୍ଜୟ ତର୍କ ପଞ୍ଚାନନଙ୍କୁ ଅଧକ୍ଷ ଏବଂ ମାର୍ଥାପୁର ଶାସନର ପଣ୍ଡିତ ଚିନ୍ତାମଣି ବେଦବାଗୀଶଙ୍କୁ ଅଧାପକ ପଦରେ ନିଯୁକ୍ତ କଲେ । ଏହି ସଂସ୍କୃତ ବିଦ୍ୟାଳୟରେ ଢେଙ୍କାନାଳ ତଥା ଓଡ଼ିଶାର ବିଭିନ୍ନ ପ୍ରାନ୍ତରରୁ ବିଦ୍ୟାର୍ଥୀମାନେ ଆସି ନିଃଶୁଳ୍କ ତଥା ଗ୍ରାସାଚ୍ଛାଦନ ପାଇଁ ବିଦ୍ୟାଧ୍ୟୟନ କରୁଥିଲେ । ଏହି ବିଦ୍ୟାଳୟରେ ଅଧକ୍ଷ ଓ ଅଧାପକଙ୍କ ସହିତ ପଣ୍ଡିତ ପୁରୁଷୋତ୍ତମ ତର୍କାଳଙ୍କାର, ପଣ୍ଡିତ ଆନନ୍ଦ ବ୍ରହ୍ମା, ପଣ୍ଡିତ ଭୁବନେଶ୍ୱର ବଡ଼ପଣ୍ଡା, ପଣ୍ଡିତ ଗୋପୀନାଥ ରାୟଗୁରୁ, ପଣ୍ଡିତ ବାସୁଦେବ ବିଦ୍ୟାନିଧି ପ୍ରଭୃତି ବିଦ୍ୱାନ୍‌ବୃନ୍ଦ ପଢ଼ାଉଥିଲେ । ସମଗ୍ର ପୂର୍ବାଞ୍ଚଳରେ ଏହି ସଂସ୍କୃତ ବିଦ୍ୟାଳୟର ସୁଖ୍ୟାତି ରହିଥିଲା । ବହୁ ଲବ୍ଧପ୍ରତିଷ୍ଠ ଛାତ୍ର ଭଗୀରଥ ସଂସ୍କୃତ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ ହୋଇଥିଲେ । ଏହି ସଂସ୍କୃତ ବିଦ୍ୟାଳୟରେ ପ୍ରତ୍ୟେକ ବର୍ଷ ସମାବର୍ତ୍ତନ ଉତ୍ସବ ଅନୁଷ୍ଠିତ ହୋଇ କୃତୀଛାତ୍ରଙ୍କୁ ଯୋଗ୍ୟତାନୁସାରେ ବିଦ୍ୟାଳଙ୍କାର, ତର୍କାଳଙ୍କାର, ତର୍କରତ୍ନ, ବିଦ୍ୟାରତ୍ନ, ବିଦ୍ୟାଭୂଷଣ, ବାଣୀଭୂଷଣ, ତର୍କଭୂଷଣ ପଞ୍ଚାନନ, ତର୍କ ପଞ୍ଚାନନ ଉପାଧି ସହିତ କୁଣ୍ଡଳ ମୁଦ୍ରିକା, ପଟ୍ଟବସ୍ତ୍ର ଓ ଶାଲ ପ୍ରଭୃତି ପ୍ରଦାନ କରାଯାଏ । ଏହି ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ବିଦ୍ୱାନ୍‌ମାନଙ୍କ ମଧ୍ୟରୁ ଅନେକଙ୍କୁ ମହାରାଜା ଭଗୀରଥ ଭୂସମ୍ପତ୍ତି ଦାନ କରିଥିଲେ । ନିରଭିମାନୀ ରାଜା ଭଗୀରଥ ଏହି ବିଦ୍ୟାଳୟର ଅଧକ୍ଷ ମୃତ୍ୟୁଞ୍ଜୟ ତର୍କ ପଞ୍ଚାନନ, ଦାମୋଦର ସୁରେନ୍ଦ୍ରସିଂହ ଓ ଚିନ୍ତାମଣି ବେଦବାଗୀଶଙ୍କଠାରୁ ଗୌତମ ସୂତ୍ର, ବ୍ୟାସସୂତ୍ର, ବେଦାନ୍ତ ସୂତ୍ର, ନ୍ୟାୟ, ମୀମାଂସା ଓ ଶ୍ରୀମଦ୍

ଭାଗବତାଦି ଅଧ୍ୟୟନ କରିଥିଲେ । ଢେଙ୍କାନାଳ ରାଜ୍ୟରେ ସେହି ସମୟରେ ୨୫ ଗୋଟି ବ୍ରାହ୍ମଣ ଶାସନ ରହିଥିଲା । ତନ୍ମଧ୍ୟରୁ ମାର୍ଥାପୁର, ମୁଣ୍ଡଇଲୋ, ମୁକ୍ତାଦେଇପୁର ଓ ଧଳପୁର ଶାସନମାନଙ୍କରେ ବହୁ ବିଦ୍ୱାନ୍ ନିବାସ କରୁଥିଲେ । ଏହି ବିଦ୍ୱାନମାନଙ୍କ ମଧ୍ୟରୁ ଅଧିକାଂଶ ଭଗୀରଥ ସଂସ୍କୃତ ବିଦ୍ୟାଳୟର ଛାତ୍ର । ଏତଦ୍‌ଭିନ୍ନ ବଙ୍ଗଳା ଓ ଓଡ଼ିଶାର ଅଧିକାଂଶ ପ୍ରାକ୍ତନ ପଣ୍ଡିତ ଏହି ବିଦ୍ୟାଳୟରୁ ଉତୀର୍ଣ୍ଣଛାତ୍ର ।

ଢେଙ୍କାନାଳରେ ମହରାଜା ଭଗୀରଥଙ୍କ ଦ୍ୱାରା ଏକ ବୃହତ୍ ପୁସ୍ତକାଳୟ ପ୍ରତିଷ୍ଠିତ ହୋଇଥିଲା । ଏହି ପୁସ୍ତକାଳୟରେ ଓଡ଼ିଆ, ବଙ୍ଗଳା, ସଂସ୍କୃତ, ହିନ୍ଦୀ, ମରାଠୀ, ଗୁଜୁରାଟୀ ଓ ଇଂରାଜୀ ଭାଷାରେ ପ୍ରାୟ ଛଅ ହଜାର ପୁସ୍ତକ ରହିଥିଲା । ଓଡ଼ିଆ ଭାଷାରେ ସେତେବେଳକୁ ସ୍ୱଳ୍ପ ସଂଖ୍ୟକ ପୁସ୍ତକ ପ୍ରକାଶିତ ହୋଇଥିଲେ ହେଁ ଭଗୀରଥ ସମସ୍ତ ଓଡ଼ିଆ ପୁସ୍ତକ ଏହି ପୁସ୍ତକାଳୟରେ ରଖିଥିଲେ । ଭଗୀରଥୀଙ୍କ ପରେ କଥା ସମ୍ରାଟ୍ ଫକୀରମୋହନ ସେନାପତି ୧୮୭୭ ରୁ ୧୮୮୩ ଢେଙ୍କାନାଳରେ ଆସିଷ୍ଟାଣ୍ଟ ମ୍ୟାନେଜର ରହିଥିଲେ ଏବଂ ସେ ଭଗୀରଥଙ୍କ ପ୍ରତିଷ୍ଠିତ ପୁସ୍ତକାଳୟର ପ୍ରଶଂସା କରିଛନ୍ତି । ଏହି ପୁସ୍ତକାଳୟରୁ ସଂସ୍କୃତ ରାମାୟଣ ଆଣି ଓଡ଼ିଆରେ ଅନୁବାଦ କରିବା କଥା ଫକୀରମୋହନ ସ୍ୱଆତ୍ମଚରିତରେ ସ୍ୱୀକାର କରିଛନ୍ତି । ଏହି ପୁସ୍ତକାଳୟଟି ତତ୍‌କାଳୀନ ଓଡ଼ିଶାର ସର୍ବବୃହତ୍ ପୁସ୍ତକାଳୟ ଥିଲା ଏବଂ ବସ୍ତୁତଃ ମହାରାଜା ଭଗୀରଥ ହିଁ ଥିଲେ ଓଡ଼ିଶାରେ ପାଠାଗାର ଆନ୍ଦୋଳନର ପ୍ରାଣ ପ୍ରତିଷ୍ଠାତା ।

ଭଗୀରଥଙ୍କ ରାଜସଭାରେ ପ୍ରତିଦିନ ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ଆଲୋଚନା ହେଉଥିଲା । ରାଜସଭାର ପଣ୍ଡିତବର୍ଗ ତଥା ଅନ୍ୟାନ୍ୟ ସ୍ଥାନରୁ ନିମନ୍ତ୍ରିତ ବିଦ୍ୱାନ୍‌ବୃନ୍ଦ ଆଲୋଚନାରେ ଅଂଶଗ୍ରହଣ କରୁଥିଲେ । ଏହା ଫକୀରମୋହନଙ୍କ ଆତ୍ମଚରିତରେ ସୁସ୍ପଷ୍ଟ । ମହାରାଜା ଭଗୀରଥ ନବଦ୍ୱୀପ, କାଶୀ, କଲିକତା, ମଥୁରା, ବୃନ୍ଦାବନ, ହରଦ୍ୱାର ଓ କାଞ୍ଚିରୁ ବହୁ ବିଦ୍ୱାନ୍‌ଙ୍କୁ ନିମନ୍ତ୍ରଣ କରି ଢେଙ୍କାନାଳ ଆଣିଥିଲେ । ଉଲ୍ଲେଖଯୋଗ୍ୟ ଯେ, ସେମାନେ କିଛି କାଳ ରାଜସଭାରେ ଶାସ୍ତ୍ରାଲୋଚନା କରିବା ପରେ ମହାରାଜାଙ୍କ ଦ୍ୱାରା ଯଥୋଚିତ ସମ୍ମାନିତ ହୋଇ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରୁଥିଲେ । ମହାରାଜା ଭଗୀରଥ ମଧ୍ୟ ଅସାଧାରଣ ପଣ୍ଡିତ ଥିଲେ । ସକଳ ଶାସ୍ତ୍ରରେ ତାଙ୍କର ଗଭୀର ପ୍ରବେଶ ରହିଥିଲା । ସେ ନିଜେ ମଧ୍ୟ ବହୁ ଚୌପଦୀ ଓ ଭଜନ ରଚନା କରିଥିଲେ ।

ପ୍ରାଚୀନ ସଙ୍ଗୀତ ମଧ୍ୟରୁ ଉତ୍କୃଷ୍ଟ ସଙ୍ଗୀତଗୁଡ଼ିକରୁ ସେ ଚାରିଖଣ୍ଡ ସଂଗୀତ ସାଗର ପ୍ରକାଶ କରିଥିଲେ । ସେ ସମୟରେ ସ୍ୱଳ୍ପ ସଂଖ୍ୟକ ଓଡ଼ିଆ ବହି ବାହାରିଥିବାରୁ ମହାରାଜା ଭଗୀରଥ ଓଡ଼ିଆ ସାହିତ୍ୟର ଉନ୍ନତି କଳ୍ପେ ରଚୟିତାମାନାଙ୍କ ସାହାଯ୍ୟାର୍ଥେ ଗୋଟିଏ ଟ୍ରଷ୍ଟ ଗଠନ କରିଥିଲେ । ସେହି ସମୟରେ ଗୌରୀଶଙ୍କର ରାୟ, ବିଚିତ୍ରାନନ୍ଦ ଦାସ, ବନମାଳୀ ସିଂହ ଓ ପଣ୍ଡିତ ପ୍ରଭାକର ଚୂଡ଼ାମଣି ପ୍ରଭୃତି ଏକତ୍ରିତ ହୋଇ କଟକ ପ୍ରିଣ୍ଟିଂ କମ୍ପାନୀ ପ୍ରତିଷ୍ଠା କଲେ । ମହାରାଜା ଭଗୀରଥ ଏହି କମ୍ପାନୀର ତିନିଗୋଟି ଅଂଶ କ୍ରୟ କରିବା ସହିତ ଛାପାଖାନା ନିର୍ମାଣ ନିମିତ୍ତ ସମସ୍ତ କାଷ୍ଠ ଓ କାଷ୍ଠୋପକରଣ ଦାନ କରିଥିଲେ । କଟକ ଆଗମନ କାଳରେ ଭଗୀରଥ ନିୟମିତ ଏହି ପ୍ରିଣ୍ଟି କମ୍ପାନୀ ପରିଦର୍ଶନ କରୁଥିଲେ । ସେ ପୃଥୁଳକାୟ ଥିବାରୁ ସେଠାରେ ତାଙ୍କ ବସିବା ନିମିତ୍ତ ଗୋଟିଏ ସ୍ୱତନ୍ତ୍ର ଚୌକୀ ରହିଥିଲା । ସେତେବେଳେ ଓଡ଼ିଶାରେ ପାଠ୍ୟପୁସ୍ତକର ଅଭାବ ରହିଥିଲା । ମହାରାଜା ଭଗୀରଥ ପାଠ୍ୟପୁସ୍ତକ ପ୍ରଣୟନ ନିମିତ୍ତ ପ୍ରଯତ୍ନଶୀଳ ଥିଲେ । ତାଙ୍କ ଆନୁକୂଲ୍ୟରେ ଦେୱାନ୍ ବନମାଳୀ ସିଂହଙ୍କ ଦ୍ୱାରା ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଶକୁନ୍ତଳା ଉପାଖ୍ୟାନ ଓଡ଼ିଆରେ ଅନୁବାଦ ହୋଇ ପାଠ୍ୟପୁସ୍ତକ ରୂପେ ମନୋନୀତ ହୋଇଥିଲା । ଦର୍ଶନ, ସାହିତ୍ୟ ଓ ଗଣିତ ଶାସ୍ତ୍ରମାନ ଓଡ଼ିଆରେ ଅନୁବାଦ ହୋଇ ପ୍ରକାଶିତ ହେବା ତାଙ୍କର ଏକାନ୍ତ ଇଚ୍ଛା ଥିଲା । ଏଥି ନିମିତ୍ତ ସେ ଇଂରେଜ ସରକାରଙ୍କୁ ନିବେଦନ କରିଥିଲେ ।

"ଶ୍ରୀଯୁକ୍ତ ମହାମହିମ ମହିମାବର ଶ୍ରୀ ଶ୍ରୀ ସୁପରିଣ୍ଟେଣ୍ଡେଣ୍ଟ୍ ଗଡ଼ଜାତ ସାହେବଙ୍କ ହଜୁରଙ୍କୁ ଢେଙ୍କାନାଳ ମହାରାଜ ଶ୍ରୀ ଭଗୀରଥ ମହୀନ୍ଦ୍ର ବାହାଦୂରଙ୍କ ଅର୍ଜି ନିବେଦନ । ଏଥି ନିମନ୍ତେ ଅର୍ଜି ନିବେଦନ କଲୁଁକି ଖୋଦାଓଲା ବର୍ତ୍ତମାନ ଗଭର୍ଣ୍ଣମେଣ୍ଟ ଅନୁଗ୍ରହରେ ଆମ୍ଭମାନଙ୍କର ଏହି ଓଡ଼ିଶା ପ୍ରଦେଶର ବାଳକମାନଙ୍କର ଇଂରେଜୀ ଓ ଦେଶୀୟ ବିଦ୍ୟାର ଉନ୍ନତି ସାଧନ ନିମିତ୍ତ କଟକ ମୁକାମରେ ଏକ ହାଇସ୍କୁଲ ସ୍ଥାପନ ହେବାରୁ ତଦ୍ୱାରା ଏତଦେଶୀୟ ବିଦ୍ୟାନୁରାଗୀ ଛାତ୍ରମାନଙ୍କର ଯେ ଯୋଗ୍ୟତା ଲାଭ ହେବ ଏଥିରେ କିଛି ସନ୍ଦେହ ଦେଖାନଯାଏ । କିନ୍ତୁ ଏ ଦେଶର ଅନେକ ବାଳକ ସମ୍ପତ୍ତିହୀନ ଥିବାରୁ ହାଇସ୍କୁଲରେ ଅଧ୍ୟୟନ କରିବା ଯୋଗ୍ୟ ବ୍ୟୟାଦି ନିର୍ବାହ କରିବାର ଅକ୍ଷମ ଅଟନ୍ତି ଏବଂ ମଧ୍ୟ ଗଭର୍ଣ୍ଣମେଣ୍ଟ ସ୍କୁଲମାନଙ୍କରେ ଅଦ୍ୟାପି ବାଳକମାନଙ୍କ ଶିକ୍ଷୋପଯୋଗୀ କୌଣସି ସାହିତ୍ୟ ଓ ଗଣିତ ଅଥବା ଦର୍ଶନାଦି ଗ୍ରନ୍ଥମାନ ଉତ୍କଳଭାଷାରେ ରଚନା ଓ ଛପା ହୋଇ

ନଥିବାରୁ ତଦ୍‌ଭାବରେ ଦେଶୀୟ ବିଦ୍ୟାର ତାଦୃଶ ଉନ୍ନତି ହୋଇପାରୁନାହିଁ । ଅତଏବ ଆମ୍ଭେ ଏତଦ୍ଦେଶୀୟ ସାଧାରଣ ବିଦ୍ୟାନୁରାଗୀ ଛାତ୍ରମାନଙ୍କର ଶ୍ରେୟାଭିଳାଷରେ ଚିରସ୍ଥାୟୀ ଦାନସ୍ୱରୂପ ଏ ଅରଜି ଦ୍ୱାରା ନଅହଜାର ୯୦୦୦ଟଙ୍କା ଦାଖଲ କରି ପ୍ରାର୍ଥନା କରୁଅଛୁ କି ଏ ଟଙ୍କା ମଧ୍ୟରୁ ତିନିଗୋଟି ଛାତ୍ରବୃତ୍ତି ଚିରସ୍ଥାୟୀ ସ୍ୱରୂପ ରହିବା ନିମିତ୍ତ ସାତହଜାର ଦୁଇଶହ ୭୨୦୦ଟଙ୍କାର ଶତକରା ପାଞ୍ଚ ୫ଟଙ୍କା ସୁଦର ପ୍ରମିସରୀନୋଟକି ତହିଁର ପ୍ରିମୀୟ ମଏ ଖର୍ଚ୍ଚ ସହିତ ଅନ୍ଦାଜ ସାତ ହଜାର ଆଠ ଶହ ୭୮୦୦ ଟଙ୍କା ହେଉଅଛି । କ୍ରୟ କରାଯାଇ ତାହା ଆମ୍ଭ ନାମରେ ଗଭର୍ଣ୍ଣମେଣ୍ଟଙ୍କ ହସ୍ତରେ ଏହି ସରତରେ ଅମାନତ ରଖାଯାଉକି ତହିଁରୁ ଯେ ମାସିକ ସୁଧ ତିରିଶ ୩୦ ଟଙ୍କା ଆଦାୟ ହେବ ସେ ଟଙ୍କା କଟକ ହାଇସ୍କୁଲରେ ତିନିଗୋଟି ଛାତ୍ର ବୃତ୍ତି ପ୍ରତ୍ୟେକରେ ମାସିକ ୧୦ଟଙ୍କା ଲେଖାଏଁ ଏହି ସରତରେ ଦିଆଯାଉଥିବ କି ଯେଉଁ ଛାତ୍ରମାନଙ୍କର ମାତୃଭାଷା ଉତ୍କଳ ଅଟେ ଓ ୟୁନିଭର୍ସିଟିର ଏନ୍‌ଟ୍ରେନ୍‌ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଲେଜରେ ଅଧ୍ୟୟନ କରିବାର ଇଚ୍ଛା ରଖୁଥିବ କିନ୍ତୁ ତହିଁର ବ୍ୟୟାଦି ନିର୍ବାହ କରିବାକୁ ଅକ୍ଷମ ଥିବାର ସ୍କୁଲର ଲୋକାଲ୍ କମିଟିଙ୍କ ବିବେଚନାରେ ସ୍ଥିର ହେବ ଓ ସେମାନଙ୍କ ମଧ୍ୟରେ ଦୁଇଗୋଟି ଓଡ଼ିଶା ଡିଭିଜନ ଅନ୍ତର୍ଗତ ଆଇନ୍ ଜାରୀଥିବା ମୋଗଲବନ୍ଦୀ ପ୍ରଦେଶୀୟ ଥିବେ ଓ ଏକଗୋଟି ଆଇନ୍ ଗଏରଜାରୀ ଗଡ଼ଜାତ ଇଲାକାର ଥିବ ଓ ଯେ ପର୍ଯ୍ୟନ୍ତ ଗଡ଼ଜାତ ଇଲାକା ନିବାସୀକେହି ଛାତ୍ରବୃତ୍ତି ପାଇବା ଯୋଗ୍ୟ ପରୀକ୍ଷୋର୍ତ୍ତୀର୍ଣ୍ଣ ହୋଇନାହିଁ ସେ ପର୍ଯ୍ୟନ୍ତ ଉକ୍ତ ମୋଗଲବନ୍ଦୀ ଇଲାକାର ନିବାସୀଙ୍କୁ ଦିଆଯାଉଥିବ ଓ ବାକୀ ଏକହଜାର ଦୁଇଶତ ୧୨୦୦ ଟଙ୍କା କିମ୍ୱା କମ୍ପାନୀ କାଗଜ ଖରିଦ ପରେ ଯାହା ଅବଶିଷ୍ଟ ରହିବ ତହିଁରେ ସ୍କୁଲରେ ବାଳକମାନଙ୍କ ଶିକ୍ଷାପଯୋଗୀ ଉତ୍କଳ ଭାଷାର ସାହିତ୍ୟ ଓ ଗଣିତ କିମ୍ୱା ଦର୍ଶନାଦି ନାନାବିଧ ଗ୍ରନ୍ଥମାନ ଯାହାକି ସ୍କୁଲକମିଟିଙ୍କ ବିବେଚନାରେ ସ୍ଥିର ହେବ ତାହା ଅନୁବାଦ କିମ୍ୱା ରଚନା ଅଥବା ଛାପା ହେବାର ଖର୍ଚ୍ଚରେ ଉକ୍ତ ମିଟିଙ୍ଗଙ୍କ ଅଧୀନରେ ରହି ସେଥିର ସାହାଯ୍ୟ କରାଯିବ । ପ୍ରକାଶ ଥାଉ କି ଆମ୍ଭେ ଉକ୍ତ ନଅହଜାର ୯୦୦୦ଟଙ୍କା ଚିରସ୍ଥାୟୀ ଦାନ ସ୍ୱରୂପ ପ୍ରଦାନ କଲୁଁ । କିଛି ଦାବି ନ ରହିଲା, ଅତଏବ ଉକ୍ତ ଛାତ୍ରବୃତ୍ତି ଢେଙ୍କାନାଳ ସ୍କଲରସିପ୍ ନାମରେ ଚିରସ୍ଥାୟୀ ସ୍ୱରୂପ ଜମା ରହିବ । ତା ୧୮ରିଖ ମାହେ ଜାନୁୟାରି ସନ ୧୮୬୯ ମସିହା । ମୁଁ ମାଘ ୯ ଦିନ ସନ୍ ୧୨୭୬ ସାଲ୍ । ପ୍ର ଉକ୍ତ ସ୍କୁଲ ଚାଲୁଥିବା

ପର୍ଯ୍ୟନ୍ତ ଏ ଟଙ୍କା ଉପରେ ଲିଖିତ ବିଶୋଯିବ ଦାନ କଲୁଁ । ମାତ୍ର ସ୍କୁଲ ଉଠିଗଲେ ଉକ୍ତ ଟଙ୍କା ଆମ୍ଭଙ୍କୁ ଉଆପୋଷ ଦିଆଯିବ ।''

ଏଥିରୁ ହୃଦ୍‌ବୋଧ ହୁଏ ସମଗ୍ର ଓଡ଼ିଶାରେ ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ନିମିତ୍ତ ମହାରାଜା ଭଗୀରଥଙ୍କର ଯଥେଷ୍ଟ ଅବଦାନ ରହିଥିଲା । ମହାରାଜାଙ୍କ ଏହି ବଦାନ୍ୟତା ସମ୍ପର୍କରେ ତତ୍‌କାଳୀନ ପତ୍ରପତ୍ରିକାରୁ ମଧ୍ୟ ସୂଚନା ମିଳିଥାଏ । ବାଲେଶ୍ୱରରୁ ପ୍ରକାଶିତ ଶିଶୁଶିକ୍ଷା ପତ୍ରିକାର ୧୮୬୯ରେ ମହାରାଜା ଭଗୀରଥଙ୍କ ସମ୍ପର୍କରେ ନିମ୍ନୋକ୍ତ ସମ୍ବାଦ ପ୍ରକାଶ ପାଇଥିଲା ।

"The most nobel Governor General had appointed the following gentlemen to prescribe oriya book to be used in the Educational intitution.

President W.C. Lessy.
Member Raja Bhagirath Mahindra Bahadur, Dhenkanal
Bichitrananda Das, Cuttack
Banamali Singh, Dhenkanal
Dwarikanath Chakrabati, Cuttack

ଏହି ପତ୍ରିକାରେ ମହାରାଜା ଭଗୀରଥଙ୍କ ଓଡ଼ିଶା ଜେନେରାଲ ଶିକ୍ଷା କମିଟିକୁ ଦେଇଥିବା ୧୦୦୦ ଟଙ୍କାର ଦାନ ବିଷୟରେ ସମ୍ବାଦ ପରିବେଷିତ ।

"The Maharaja of Dhenkanal contributed Rs.1000/- to the general education commttee of cuttack for the published of oriya book for the student of the High school. The sccretary requested the cuttack society for utilising the money for the purpose for which it contributed. (Page 177)

ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ସ୍ୱରଚିତ ''ଉନବିଂଶ ଶତାବ୍ଦୀର ଓଡ଼ିଶା'' ୧ମ ଭାଗ ପୁସ୍ତକରେ ଉଲ୍ଲେଖ କରିଛନ୍ତି :

''ଓଡ଼ିଆ ପୁସ୍ତକ ଲେଖା ପାଇଁ ପୁରସ୍କାର-ଓଡ଼ିଆ ଭାଷାରେ ଆଧୁନିକ ସ୍କୁଲ ପାଠ୍ୟୋପଯୋଗୀ ପୁସ୍ତକର ସଂଖ୍ୟା ଅତି ଅଳ୍ପ ଥିବାରୁ ଲେଖକମାନଙ୍କୁ ଉତ୍ସାହିତ କରିବା ସକାଶେ ଢେଙ୍କାନାଳ ରାଜାଙ୍କ ପାଣ୍ଠିରୁ ଶିକ୍ଷାକମିଟି କେତେ ଖଣ୍ଡି ପୁସ୍ତକ ରଚନା କରିବା ସକାଶେ ମଧ୍ୟ ସ୍ଥିର କଲେ ।''

ଏ ସମ୍ପର୍କରେ ସରକାରୀ ବିଜ୍ଞାପନ ମଧ୍ୟ ପ୍ରକାଶ ପାଇଥିଲା

ବିଜ୍ଞାପନ ୩୦୦ ଟଙ୍କା ପୁରସ୍କାର

କଟକ ବିଦ୍ୟାଧାୟିନୀ କମିଟି ପ୍ରସ୍ତାବ କରିଅଛନ୍ତି କି ଯେ, କେହି ତଳ ଲିଖିତ ନିୟମାନୁସାରେ ସର୍ବୋତ୍କୃଷ୍ଟ ଉତ୍କଳ ଭାଷାରେ ଗ୍ରନ୍ଥ ରଚନା କରିବେ, ତାହାଙ୍କୁ ପାରିତୋଷିକ ସ୍ୱରୂପ ଢେଙ୍କାନାଳ ମହାରାଜାଙ୍କ ପ୍ରଦତ୍ତ ଟଙ୍କାରୁ ୩୦୦ ଟଙ୍କା ଦିଆଯିବ ।

ଡବ୍‌ଲ୍ୟୁ ସି. ଲେସି

ସବ୍‌କମିଟି, କଟକ

ଏଥିରୁ ପ୍ରମାଣିତ ହୁଏ, ଓଡ଼ିଆ ଛାତ୍ରମାନଙ୍କ ଉନ୍ନତି ଓ ଓଡ଼ିଆ ଭାଷା ସାହିତ୍ୟର ବିକାଶରେ ମହାରାଜା ଭଗୀରଥ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ । ଉତ୍କଳର ପରମହିତୈଷୀ ରେଭେନ୍‌ସା ସାହେବ, ଅନ୍ୟତମ ଓଡ଼ିଆ ପ୍ରିୟ ଜନବୀମ୍‌ସ ପ୍ରଥମ ଓଡ଼ିଆ ବ୍ୟାକରଣ ପ୍ରଣେତା ମି.ସଟନ୍, ଓଡ଼ିଆ ଲେଖକ ମି.ଲେସି, ଓଡ଼ିଶାର ବରପୁତ୍ର ବିଚିତ୍ରାନନ୍ଦ ଦାସ, ବନମାଳୀ ସିଂହ, ଗୌରୀଶଙ୍କର ରାୟ, ଓଡ଼ିଆ ବହି ପ୍ରକାଶକ ଦ୍ୱାରିକାନାଥ ଚକ୍ରବର୍ତ୍ତୀ, କଥା ସମ୍ରାଟ୍ ଫକୀର ମୋହନ ସେନାପତି, ବାଲେଶ୍ୱର ରାଜା ଶ୍ୟାମାନନ୍ଦ ଦେ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ ପ୍ରଭୃତିଙ୍କ ସହିତ ମହାରାଜା ଭଗୀରଥଙ୍କର ସୁସମ୍ପର୍କ ରହିଥିଲା । ସେ ଏମାନଙ୍କ ସାହାଯ୍ୟରେ ଓଡ଼ିଆ ଭାଷା ସାହିତ୍ୟର ବିକାଶ ଓ ଓଡ଼ିଶାରେ ଶିକ୍ଷାର ବିକାଶ ସମ୍ପର୍କରେ ବିଶେଷ ପଦକ୍ଷେପ ନେଇଥିଲେ । ଗୌରୀଶଙ୍କର ରାୟ ଓ ବନମାଳୀ ସିଂହ ତାଙ୍କରି ସହାୟତାରେ ବହୁ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ କବିତା ପ୍ରକାଶ କରିଥିଲେ । ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ ରଚନା ନିମିତ୍ତ ମହାରାଜା ଭଗୀରଥ ସୁପ୍ରସିଦ୍ଧ ଓଡ଼ିଆ ଲେଖକ କପିଳେଶ୍ୱର ବିଦ୍ୟାଭୂଷଣ, ଦ୍ୱାରକାନାଥ ଚକ୍ରବର୍ତ୍ତୀ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ପ୍ୟାରୀମୋହନ ସେନ୍, ପ୍ରଭାକର ଚୂଡ଼ାମଣି ପ୍ରଭୃତିଙ୍କ ନିକଟକୁ ଅନେକବାର ପତ୍ର ଲେଖିଥିଲେ । ଗୌରବର କଥା ଭଗୀରଥ ହେଉଛନ୍ତି ପ୍ରଥମ ଓଡ଼ିଆରାଜା ଯେ ସକଳ ରାଜକାର୍ଯ୍ୟ ଓଡ଼ିଆରେ ହେବ ବୋଲି ଆଦେଶ କରିଥିଲେ । ତଦନୁଯାୟୀ ତାଙ୍କ ରାଜକାର୍ଯ୍ୟାଳୟରେ ରାଜସ୍ୱ, ଶାସନ, ଜଙ୍ଗଲ ଓ ଦେବୋତ୍ତର ବିଭାଗର କାର୍ଯ୍ୟ ଓଡ଼ିଆରେ ହେଉଥିଲା । ୧୮୭୦ରେ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ବଙ୍ଗ ଭାଷାରେ ''ଓଡ଼ିଆ ସ୍ୱତନ୍ତ୍ର ଭାଷା ନହେ'' ପୁସ୍ତକ ପ୍ରକାଶନ କଲେ । ଭଟ୍ଟଚାର୍ଯ୍ୟଙ୍କ ସହିତ ରାଜେନ୍ଦ୍ର ଲାଲ ମିତ୍ର ଓ ଉମାଚରଣ ହାଲ୍‌ଦାର ପ୍ରଭୃତି ବଙ୍ଗାଳୀ ଏହି ପୁସ୍ତକର ସମର୍ଥକ ଥିଲେ । ସମଗ୍ର ଓଡ଼ିଶାରେ ଏହା ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଲା । ଉତ୍କଳ ଦୀପିକା

ପ୍ରଭୃତି ପତ୍ରିକା ଏହା ବିରୁଦ୍ଧରେ ଆଲେଖ୍ୟ ପ୍ରକାଶ କଲେ । ''ଓଡ଼ିଆ ଭାଷା ବଞ୍ଚାଅ'' ଶୀର୍ଷକ ଏହି ସାରସ୍ୱତ ଆନ୍ଦୋଳନରେ ଥିଲେ ଫକୀର ମୋହନ ସେନାପତି, ଗୌରୀଶଙ୍କର ରାୟ ପ୍ରଭୃତି ଅଗଣିତ ବରପୁତ୍ର । ମହାରାଜା ଭଗୀରଥ ସେମାନଙ୍କ ପୃଷ୍ଠଭୂମିରେ ଥାଇ ଓଡ଼ିଆ ଭାଷାର ସୁରକ୍ଷା ନିମିତ୍ତ ଜନ୍‌ବିମିସ୍‌ଙ୍କ ସହିତ ଆଲୋଚନା କଲେ ଏବଂ ଜନ୍ ବୀମ୍‌ସ ଏସିଆଟିକ୍ ସୋସାଇଟିରେ ଓଡ଼ିଆ ଭାଷା ସପକ୍ଷରେ ପ୍ରବନ୍ଧ ପାଠ କଲେ । ତାଙ୍କରି ପ୍ରରୋଚନାରେ ଡବ୍‌ଲ୍ୟୁ. ମିଲର ଇଂରାଜୀ ଓଡ଼ିଆ ଅଭିଧାନ ପ୍ରକାଶ କଲେ । ଫଳରେ ଇଂରେଜ ପଦାଧିକାରୀ ବୃନ୍ଦ ଓଡ଼ିଆ ଭାଷାର ମହନୀୟତା ଏବଂ ବଙ୍ଗାଳୀମାନଙ୍କ ଚକ୍ରାନ୍ତ ବୁଝିପାରିଲେ ।

ସଂସ୍କାରଧର୍ମୀ ମହାରାଜା ଭଗୀରଥ ନିଜ ରାଜ୍ୟ ଢେଙ୍କାନାଳରେ ଏଲୋପାଥି ଚିକିତ୍ସାଳୟ ଖୋଲି ପାଶ୍ଚାତ୍ୟ ଚିକିତ୍ସା ପଦ୍ଧତିର ଆଦୃତି ବଢ଼ାଇଥିଲେ । ସେ ସର୍ବସାଧାରଣଙ୍କ ସ୍ୱାସ୍ଥ୍ୟର ଉନ୍ନତି ନିମିତ୍ତ ଗୋଟିଏ ଦାତବ୍ୟ, ଚିକିତ୍ସାଳୟ ଢେଙ୍କାନଳରେ ୧୮୭୦ ମସିହାରେ ଖୋଲିଥିଲେ । ଏହି ଚିକିତ୍ସାଳୟରେ ଜନୈକ ଇଂରେଜ ଡାକ୍ତର, କମ୍ପାଉଣ୍ଡର, ବେହେରା ପ୍ରଭୃତି ନିଯୁକ୍ତି ପାଇଥିଲେ । ରୋଗୀମାନଙ୍କୁ ଏଠାରେ ଚିକିତ୍ସା କରାଯିବା ସହିତ ବିନା ମୂଲ୍ୟରେ ଏଲୋପାଥି ଔଷଧ ଦିଆଯାଉଥିଲା । ଶହ ଶହ ରୋଗୀ ଏଠାରେ ଆରୋଗ୍ୟ ଲାଭ କରିଥିଲେ । ଏସବୁ ସତ୍ତ୍ୱେ ଭଗୀରଥଙ୍କର ଦେଶୀୟ କବିରାଜୀ ଚିକିତ୍ସା ପ୍ରତି ଶ୍ରଦ୍ଧା ରହିଥିଲା । ସେ ବୈଦ୍ୟରାଜ ଗଙ୍ଗାଧର ବ୍ରହ୍ମା, ବୈଦ୍ୟ ଓ ବାଲ୍ୟଚିକିତ୍ସକ ସନ୍‌ମୁଖସିଂହ, ବୈଦ୍ୟ ପ୍ରହ୍ଲାଦ ଚୌଧୁରୀ ଓ ରାଜବୈଦ୍ୟ ଫକୀର ବଡ଼ପଣ୍ଡା ବୈଦ୍ୟଭୂଷଣ ପ୍ରଭୃତିଙ୍କୁ ପ୍ରଚୁର ଭୂସମ୍ପତ୍ତି ଦାନ କରି ଆୟୁର୍ବେଦ ଚିକିତ୍ସାର ପ୍ରସାର କାମନା କରିଥିଲେ । ରାଜା ମଧ୍ୟ ଅନେକ ଯୁବ କବିରାଜଙ୍କୁ ଏଲୋପାଥି ଚିକିତ୍ସା ଶିକ୍ଷା ପ୍ରଦାନର ବ୍ୟବସ୍ଥା କରିଥିଲେ । ସେହିପରି ଜଣେ ଯୁବକବିରାଜ ଯୋରନ୍ଦାନିବାସୀ ଘନଶ୍ୟାମ ତ୍ରିପାଠୀ ଉତ୍ତମ ଚିକିତ୍ସା ଦକ୍ଷତା ନିମିତ୍ତ ଭଗୀରଥଙ୍କର ସ୍ନେହାସ୍ପଦ ହୋଇଥିଲେ । ମହାରାଜ ତାଙ୍କୁ ଏଲୋପାଥି ଚିକିତ୍ସା ଶିକ୍ଷା ଦେବା କାମନାରେ ଢେଙ୍କାନାଳରେ ସ୍ୱପ୍ରତିଷ୍ଠିତ ଚିକିତ୍ସାଳୟରେ ମାସିକ ୧୫ ଟଙ୍କା ଦରମାରେ କମ୍ପାଉଣ୍ଡର ଭାବରେ ନିଯୁକ୍ତି ଦେଲେ । ଘନଶ୍ୟାମ ମଧ୍ୟ ଅଳ୍ପ ଦିନରେ ଏଲୋପାଥି ଚିକିତ୍ସାରେ ଦକ୍ଷତା ଲାଭ କଲେ । ଥରେ ସେ ଭୁଲ୍ ବଶତଃ ମହାରାଜା ଭଗୀରଥଙ୍କୁ ୪୦ଗ୍ରାମ୍ ରସସିନ୍ଦୁର ଖୋଇଦେଲେ । ତତ୍‌କ୍ଷଣାତ୍

ରାଜାଙ୍କ ମଳଦ୍ୱାର ବାଟେ ରକ୍ତ ସ୍ରାବ ହେଲା ଓ ସେ ମୁମୂର୍ଷୁ ପ୍ରାୟ ହୋଇଗଲେ । ଦେଓ୍ୱାନ୍ ବନମାଳୀ ସିଂହ ତତ୍‌କ୍ଷଣାତ୍ କଟକ ସିଭିଲ୍ ସର୍ଜନ ଷ୍ଟୁଆର୍ଟ ସାହେବଙ୍କୁ କଟକରୁ ଅଣାଇ ମହାରାଜଙ୍କ ଚିକିତ୍ସା କରାଇଲେ । ଷ୍ଟୁଆର୍ଟ ସାହେବଙ୍କ ଅକ୍ଲାନ୍ତ ଚିକିତ୍ସା ଫଳରେ ମହାରାଜ ଆରୋଗ୍ୟ ହେଲେ । ମାତ୍ର ୧୦ ଗ୍ରାମ୍ ରସସିନ୍ଦୁର ଖାଇଲେ ବଡ଼ ହାତୀଟିଏ ତତ୍‌କ୍ଷଣାତ୍ ମରିଯିବ । ଠାକୁରଙ୍କ କୃପାରୁ ଏବଂ ଷ୍ଟୁଆର୍ଟ ସାହେବଙ୍କ ଚିକିତ୍ସା ଫଳରେ ମହାରାଜ ୪୦ ଗ୍ରାମ୍ ରସସିନ୍ଦୁର ଖାଇ ବଞ୍ଚିଗଲେ । ସେଥି ନିମିତ୍ତ ମହାରାଜାଙ୍କ ପ୍ରାଣରକ୍ଷା ସକାଶେ ଷ୍ଟୁଆର୍ଟ ସାହେବଙ୍କୁ ଢେଙ୍କାନାଳ ରାଜାଙ୍କ ତରଫରୁ ପନ୍ଦର ହଜାର ଟଙ୍କା ପୁରସ୍କାର ଦିଆଯାଇଥିଲା । ଉଦାରଚେତା ମହାରାଜା ଘନଶ୍ୟାମକୁ ସର୍ବକ୍ଷମା ଦେଇ ଏକାନ୍ତରେ ଟଙ୍କା ଓ ବସ୍ତ୍ର ଦେଇ ସ୍ୱଗ୍ରାମକୁ ପଠାଇଦେଲେ । ସେ ଘନଶ୍ୟାମଙ୍କ ସହିତ ପୂର୍ବ ଶ୍ରଦ୍ଧା ଓ ବିଶ୍ୱାସ ଅତୁଟ ରଖିଥିଲେ । ଏଲୋପାଥି ଚିକିତ୍ସା ଯୋଗୁଁ ଜୀବନ ପ୍ରତି ବିପଦ ଆସିଥିଲେ ହେଁ ମହାରାଜ ତାହାକୁ ଖାତିର କରିନଥିଲେ । ସ୍ୱପ୍ରତିଷ୍ଠିତ ଚିକିତ୍ସାଳୟକୁ ଦ୍ୱିତୀୟ ଶ୍ରେଣୀ କରିବା ତଥା ସରକାରୀ ଡାକ୍ତର ନିଯୁକ୍ତି ନିମିତ୍ତ ଗଭର୍ଣ୍ଣରଙ୍କୁ ନିବେଦନ କରିଥିଲେ । ଇଂରେଜ ସରକାର ଏଥିରେ ସନ୍ତୋଷ ପ୍ରକାଶ କରି ୧୮୭୩ ଜୁଲାଇ ୧୯ ତାରିଖରେ ମହାରାଜାଙ୍କୁ ପତ୍ର ସଂ ୨୬୪୮ରେ ଜଣାଇଥିଲେ :

''ଢେଙ୍କାନାଳ କିଲା ମହାରାଜାଙ୍କର ଚିକିତ୍ସାଳୟକୁ ଚିକିତ୍ସା ସମ୍ପର୍କୀୟ ସଂଶୋଧିତ ନିୟମର ଅଧୀନ କରିବା କାରଣ ତାହାଙ୍କର ଏକ ଆବେଦନ ପତ୍ର ତୁମ୍ଭର ଚଳିତ ମାସ ୮ ତାରିଖ ଲିଖିତ ୧୪୧ ନମ୍ବର ପତ୍ର ସଙ୍ଗେ ପ୍ରାପ୍ତ ହୋଇଥିଲା । ତହିଁର ପ୍ରତ୍ୟୁତ୍ତରରେ ଆମ୍ଭେ ଜଣାଇ ଅଛୁକି ମହାରାଜା ଏପରି ବ୍ୟବହାର୍ଯ୍ୟନୀୟ କାର୍ଯ୍ୟାଳୟ ସ୍ଥାପିତ ଓ ତାହା ସ୍ୱକୀୟ ବ୍ୟୟରେ ରକ୍ଷାକରି ଯେଉଁ ଜ୍ଞାନୋଦୀପିତାବଦାନ୍ୟତା ପ୍ରକାଶ କରିଅଛନ୍ତି ତହିଁରେ ଲେଫଟ୍‌ନାଣ୍ଟ ଗଭର୍ଣ୍ଣର ସାହେବ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛନ୍ତି । ମହାରାଜା ଯେ, ତାଙ୍କ ଚିକିତ୍ସାଳୟକୁ ନୂତନ ଚିକିତ୍ସା ନିୟମରେ ଦ୍ୱିତୀୟ ଶ୍ରେଣୀଭୁକ୍ତ କରିବାର ପ୍ରସ୍ତାବ ରଖିଅଛନ୍ତି ତାହା ମାନ୍ୟବର ଲେଫଟ୍‌ନାଣ୍ଟ ଗଭର୍ଣ୍ଣର ସାହେବ ସମ୍ମତ କଲେ ଓ ଭାରତବର୍ଷର ଚିକିତ୍ସା ଇଲାକାର ସରଜନ ଜେନେରାଲ ସାହେବଙ୍କ ଠାକୁ ମହାରାଜାଙ୍କ ଚିକିତ୍ସାଳୟରେ ଜଣେ ତୃତୀୟ ଶ୍ରେଣୀ ସବ୍-ଆସିଷ୍ଟାଣ୍ଟ ସର୍ଜନ ନିଯୁକ୍ତ କରାଇ ଦେବା ସକାଶେ ଅନୁରୋଧ କରାଯିବ ।''

ଉକ୍ତ ପତ୍ରରୁ ସ୍ୱରାଜ୍ୟରେ ପାଶ୍ଚାତ୍ୟ ଚିକିତ୍ସାର ପ୍ରଚଳନ ଓ ପ୍ରସାର ଦିଗରେ ଭଗୀରଥଙ୍କ ଭୂମିକା ସମ୍ପର୍କରେ ସୂଚନା ଉପଲବ୍ଧ ହୋଇଥାଏ । ଏତଦ୍‌ଭିନ୍ନ କଟକରେ ପ୍ରତିଷ୍ଠିତ ମେଡ଼ିକାଲ ସ୍କୁଲରେ ମହାରାଜା ବହୁ ଦାନ କରି ସମଗ୍ର ଓଡ଼ିଶାରେ ପାଶ୍ଚାତ୍ୟ ଚିକିତ୍ସା ପ୍ରଣାଳୀ ପ୍ରବର୍ତ୍ତନ କାମନା କରିଥିଲେ । ତାଙ୍କରି ପ୍ରରୋଚନାରେ ରେଭେନ୍‌ସା ସାହେବ ଓଡ଼ିଶାର ଅନେକ ସ୍ଥାନରେ ଚିକିତ୍ସାଳୟ ବସାଇଥିଲେ ।

ଢେଙ୍କାନାଳ ରାଜ୍ୟରେ ଡାକଘର ନଥିଲା । ଭଗୀରଥ ୧୮୭୧ ମସିହାରେ ଢେଙ୍କାନାଳ ସହରରେ ଶାଖା ଡାକଘରଟିଏ ଖୋଲିଲେ । କଟକଠାରୁ ଏଠାକୁ ଆସୁଥିବା ଡାକର ସୁଷମ ବଣ୍ଟନର ବ୍ୟବସ୍ଥା ମଧ୍ୟ ସେ କରିଥିଲେ । ଫଳରେ ରାଜ୍ୟର ଅଭ୍ୟନ୍ତର ଅଞ୍ଚଳରେ ମଧ୍ୟ ଚିଠି ପହଞ୍ଚି ପାରୁଥିଲା । ସମଗ୍ର ରାଜ୍ୟରେ ସୁଲଭ ଦରରେ ଦ୍ରବ୍ୟ ମିଳିବାର ଲକ୍ଷ୍ୟରେ ସେ କେତେକ ନୀତି ପ୍ରଣୟନ କରିଥିଲେ । ଏହି ନିୟମରେ ଢେଙ୍କାନାଳ ରାଜ୍ୟର ସମସ୍ତ ହାଟ ଓ ଦୋକାନ ନିୟନ୍ତ୍ରିତ ହେଉଥିଲା । ତାଙ୍କ ରାଜତ୍ୱରେ ଢେଙ୍କାନାଳରେ ଟଙ୍କାକୁ ଧାନ ଚାରିମହଣ ଅର୍ଥାତ୍ ଚାରିପୌଟୀ, ମୁଗ ଏକ ମହଣ, ବିରି ଦେଢ଼ ମହଣ, ହରଡ଼ ଦୁଇ ମହଣ, କୋଳଥ ତିନି ମହଣ, ଖେସାରି ତିନି ମହଣ, ଘିଅ ୪ ମାଣ, ତେଲ ୧୨ ମାଣ, ସୋରିଷ ଏକ ମହଣ ଏବଂ ଧନିଆ ଏକ ମହଣ ହିସାବରେ ମିଳୁଥିଲା । ରାଜା ଦେଶ ବିନା କୌଣସି ଶସ୍ୟ ରାଜ୍ୟ ବାହାରକୁ ଯାଇପାରୁନଥିଲା । କୃଷକମାନଙ୍କ ଉନ୍ନତି ନିମିତ୍ତ ପ୍ରଯତ୍ନ କରାଯାଇଥିଲା । ଭଗୀରଥଙ୍କ ଶାସନ ନ୍ୟାୟ ଓ ଧର୍ମସଙ୍ଗତ ଥିଲା । ରାଜକର୍ମଚାରୀମାନେ ସଦାଚାରୀ ଓ ସତ୍ୟବାଦୀ ଥିଲେ । ସେ ସମୟରେ ଢେଙ୍କାନାଳର ଅନେକ ପ୍ରତିଭା ନିଜ ରାଜ୍ୟ ଓଡ଼ିଶା ଓ ଭାରତରେ ଖ୍ୟାତି ଅର୍ଜନ କରିଥିଲେ । ଆଧୁନିକ ଶିକ୍ଷା ପ୍ରବର୍ତ୍ତନ ଫଳରେ ଢେଙ୍କାନାଳରେ ଏକ ନବଜାଗରଣ ସୃଷ୍ଟି ହୋଇଥିଲା । ଢେଙ୍କାନାଳର ଅନେକ ଯୁବକ ଏଥିରେ ଅନୁପ୍ରାଣିତ ହୋଇଥିଲେ । ଏହି ଯୁବକମାନଙ୍କୁ ଉତ୍ସାହିତ କରିବା ନିମିତ୍ତ ମହାରାଜା ଭଗୀରଥ ଜଣେ ପ୍ରଶିକ୍ଷକଙ୍କ ଅନୁସନ୍ଧାନରେ ଥିଲେ । ଠିକ୍ ସେତିକିବେଳେ ସେ ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣଙ୍କ କନିଷ୍ଠ ଭ୍ରାତ ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ ସନ୍ଧାନ ପାଇଲେ । ଗୋବିନ୍ଦ ଚନ୍ଦ୍ର ଭଦ୍ରକ ସବ୍‌ଡ଼ିଭିଜନ୍ ଜଗନ୍ନାଥପୁର ଗ୍ରାମ ନିବାସୀ କୃଷ୍ଣଚନ୍ଦ୍ର ପଣ୍ଡାଙ୍କ ପୁତ୍ର ଥିଲେ । ତାଙ୍କ ପୂର୍ବପୁରୁଷ ମରହଟ୍ଟା ଶାସନ କାଳରେ

ଯାଜପୁର ପରିତ୍ୟାଗ କରି ଭଦ୍ରକ ଜଗନ୍ନାଥ ପୁରରେ ନିବାସ କରୁଥିଲେ । ଗୋବିନ୍ଦ ଚନ୍ଦ୍ର କଲିକତାରେ ସ୍ୱଯଜମାନ ଗୋପୀନାଥ ଖିଲାରଙ୍କ ବଡ଼ବଜାର ଘରେ ରହି ବିଦ୍ୟାଶିକ୍ଷା କରିଥିଲେ । ଶିକ୍ଷା ପରେ ସେ ପ୍ରଥମେ କିରାଣୀ ଚାକିରୀ କରିଥିଲେ ହେଁ ପରେ ଟ୍ରେନିଂ ନେଇ ଶିକ୍ଷକ ଚାକିରୀ କରିଥିଲେ । କଟକରେ ଥିବା ସମୟରେ ଗୋବିନ୍ଦ ଚନ୍ଦ୍ରଙ୍କ ଲୋକ ହିତକର ସଂସ୍କାରମୂଳକ କାର୍ଯ୍ୟ ମହରାଜା ଭଗୀରଥଙ୍କ ଦୃଷ୍ଟିରେ ପଡ଼ିଥିଲା । ଗୋବିନ୍ଦ ଚନ୍ଦ୍ର ମଧ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନରେ ସାମିଲ ହୋଇ ମହାରାଜାଙ୍କ ସାନ୍ନିଧରେ ଆସିଥିଲେ । ବିଶେଷତଃ ପୁରୀ, କଟକ ଓ ଯାଜପୁର ଅଞ୍ଚଳର ବ୍ରାହ୍ମଣମାନଙ୍କୁ ଆଧୁନିକ ଶିକ୍ଷାରେ ଅନୁପ୍ରାଣିତ କରିବାକୁ ଗୋବିନ୍ଦ ଚନ୍ଦ୍ର ଯେଉଁ ସାହସ ମୂଳକ ପଦକ୍ଷେପ ନେଇଥିଲେ ତାହା ଦ୍ୱାରା ମହାରାଜା ବିଶେଷ ପ୍ରୀତ ହୋଇଥିଲେ । ଗୋବିନ୍ଦ ଚନ୍ଦ୍ର ୧୮୭୪ ମସିହାରେ ପୁରୀରେ ଡେପୁଟି ଇନ୍‌ସିପେକ୍ଟର ଥିବା ସମୟରେ ଜନ୍‌ବୀମ୍‌ସ କଟକ କମିଶନର ପଦବୀରେ ନିଯୁକ୍ତ ହେଲେ । କୌଣସି କାରଣରୁ ଜନବୀମ୍‌ସ ପଣ୍ଡିତ ଗୋବିନ୍ଦ ଚନ୍ଦ୍ରଙ୍କୁ ଚାକିରୀରୁ ବହିଷ୍କାର କରିଦେଲେ । ଠିକ୍ ଏହି ସମୟରେ ଗୋବିନ୍ଦ ଚନ୍ଦ୍ରଙ୍କର ମହାରାଜା ଭଗୀରଥଙ୍କ ସହିତ ସାକ୍ଷାତ୍ ହେଲା । ମହାରାଜା ଗୋବିନ୍ଦ ଚନ୍ଦ୍ରଙ୍କୁ ଆପଣାର ସେକ୍ରେଟେରୀ ପଦରେ ନିଯୁକ୍ତି ଦେଇ ଢେଙ୍କାନାଳ ଆଣିଲେ । ଢେଙ୍କାନାଳ ଅବସ୍ଥାନ କାଳରେ ପଣ୍ଡିତ ଗୋବିନ୍ଦ ଚନ୍ଦ୍ର କେତେକ ପାଠ୍ୟପୁସ୍ତକ ସହ ‘‘ଭଗୀରଥ କୀର୍ତ୍ତିକଳାପ’’ ନାମରେ ଗୋଟିଏ କାବ୍ୟ ରଚନା କରିଥିଲେ, ଢେଙ୍କାନାଳରେ ଗୋବିନ୍ଦ ଚନ୍ଦ୍ର ଯେଉଁ ‘‘ହିତପାଠ’’ ରଚନା କରିଥିଲେ । ତାହା ଓଡ଼ିଶାରେ ବେଶ୍ ଆଦୃତି ଲାଭ କରିଥିଲା । ସେତେବେଳେ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକର ଯେଉଁ ଅବସ୍ଥା ଥିଲା ସେଥିରେ ‘‘ହିତପାଠ’’ ଖଣ୍ଡିକ ବେଶ୍ ଉପାଦେୟ ହୋଇଥିଲା । ଏହି ପୁସ୍ତକ ରଚନା ନିମିତ୍ତ ଗୋବିନ୍ଦ ଚନ୍ଦ୍ର ମହାରାଜାର ଭଗୀରଥଙ୍କଠାରୁ ପ୍ରେରଣା ଲାଭ କରିଥିଲେ । ବାଲେଶ୍ୱରରୁ ପ୍ରକାଶିତ ‘‘ସମ୍ବାଦ ବାହିକା’’ ୧୮୭୫ ଜାନୁୟାରୀ ୧ ତାରିଖ ସଂଖ୍ୟାରେ ‘‘ହିତପାଠ’’ ପୁସ୍ତକର ସମାଲୋଚନାର ପ୍ରକାଶ ପୂର୍ବକ ଉଲ୍ଲେଖ କରିଥିଲେ । ‘‘ପୁରୀର ଭୂତ ପୂର୍ବ ଡେପୁଟୀ ଇନ୍‌ସିପେକ୍ଟର ଶ୍ରୀଯୁକ୍ତ ବାବୁ ଗୋବିନ୍ଦ ଚନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ଗଦ୍ୟ ଓ ପଦ୍ୟରେ ବିରଚିତ କଟକ ପ୍ରିଣ୍ଟିଂ ପ୍ରେସ୍ ଯନ୍ତାଳୟରେ ମୁଦ୍ରିତ । ଗ୍ରନ୍ଥକର୍ତ୍ତା ଅନୁଗ୍ରହ କରି ତହିଁରୁ ଖଣ୍ଡିଏ ଆମ୍ଭମାନଙ୍କୁ ଉପହାର ଦେଇଅଛନ୍ତି । ତେଣୁ ଆମେ ତାହାଙ୍କଠାରେ କୃତଜ୍ଞତା ସ୍ୱୀକାର

କରୁଛୁଁ । ପୁସ୍ତକ ଖଣ୍ଡିକ କଟକର ପୁସ୍ତକ ନିର୍ବାଚନ କମିଟିରେ ଗ୍ରାହ୍ୟ ହୋଇଥିବାରୁ ତାହା ଗତ ବର୍ଷର ବିଦ୍ୟାଳୟରେ ପାଠ୍ୟପୁସ୍ତକ ବୋଲି ନିର୍ଦ୍ଦେଶିତ ହୋଇଥିଲା, ମାତ୍ର ପୁସ୍ତକର ମୁଦ୍ରାଙ୍କନ କାର୍ଯ୍ୟ ଶେଷ ହୋଇନଥିବାରୁ ତାହା ଗତବର୍ଷର ବିଦ୍ୟାଳୟମାନଙ୍କରେ ଚଳିପାରିଲା ନାହିଁ । ଏହି ବର୍ଷରେ ଚଳିବାର ଆମେ ଆଶା କରୁଁ । ଗ୍ରନ୍ଥକର୍ତ୍ତା ବିଜ୍ଞାପନରେ ଲେଖିଛନ୍ତି ଯେ, ''ଏହି ଖଣ୍ଡି ପ୍ରଥମ ଭାଗ ଥିବାରୁ ଏଥିରେ ଯେତେଦୂର ସମ୍ଭବ ସରଳ ଶବ୍ଦ ବ୍ୟବହାର କରିଛୁ ।'' ବାସ୍ତବରେ ସେ ଏହା କରିଛନ୍ତି । ଆମ୍ଭେମାନେ ସେହି ପୁସ୍ତକ ଖଣ୍ଡି ପଢ଼ି ବଡ଼ ପ୍ରୀତ ହେଲୁ, ମାତ୍ର ଆମ୍ଭମାନଙ୍କ ବିବେଚନାରେ ପଦ୍ୟଭାଗ ନଥିଲେ ଉତ୍ତମ ହୋଇଥାନ୍ତା । ବିଜ୍ଞାପନର ଭଙ୍ଗୀରୁ ଜଣାଯାଏ ଯେ, ଗ୍ରନ୍ଥକାର ହିତପାଠର ଦ୍ୱିତୀୟ ଭାଗ ପ୍ରକାଶ କରିବେ । ତାହା ହେଲେ ବଡ଼ ଚିକ୍‌କଣ ହେବ । ସଂପ୍ରତି ବିଦ୍ୟାଳୟମାନ ଏହିଭଳି ପୁସ୍ତକ ପାଇବାର ଆଶା କରେ । ଗୋବିନ୍ଦ ବାବୁଙ୍କ ଦ୍ୱାରା ସେହି ଆଶା କେତେକ ପରିମାଣରେ ପୂର୍ଣ୍ଣ ହେବ । ହିତପାଠ ଖଣ୍ଡିକ ବୋଧୋଦୟ ଉପରେ ପାଠ୍ୟପୁସ୍ତକ ବୋଲି ଆମ୍ଭେମାନେ ବିବେଚନା କରୁଁ ।

ବଡ଼ ଦୁଃଖର ବିଷୟ ଯେ, ଗ୍ରନ୍ଥକାର ସାମାନ୍ୟ ଅପରାଧରେ ଅପଦସ୍ତ ହୋଇଅଛନ୍ତି । ଯେବେ ସେ ସ୍ୱପଦରେ ଥାନ୍ତେ ତେବେ ଉତ୍କଳର ବିଦ୍ୟାଳୟମାନ ତାହାଙ୍କଠାରୁ ଆହୁରି ଉପକାର ପାଆନ୍ତେ ସନ୍ଦେହ ନାହିଁ । ଯାହା ହେଉ ଗୁଣଗ୍ରାହୀ ଢେଙ୍କାନାଳର ମହାରାଜା ତାହାଙ୍କୁ ଆପଣା ଗଡ଼ରେ ଗୋଟିଏ ଭଲପଦ ଦେଇଅଛନ୍ତି । ଏହା ଅତ୍ୟନ୍ତ ଆନନ୍ଦର ବିଷୟ ଅଟଇ । ଏଣୁ ଆମ୍ଭେମାନେ ଢେଙ୍କାନାଳର ମହାରାଜାଙ୍କୁ ଅଶେଷ ଧନ୍ୟବାଦ ପ୍ରଦାନ କରୁଅଛୁଁ ।

ମହାରାଜା ଭଗୀରଥଙ୍କ ପରେ ଜନବୀମ୍‌ସଙ୍କ ଦ୍ୱାରା ଗୋବିନ୍ଦ ଚନ୍ଦ୍ର ଢେଙ୍କାନାଳରୁ ବିତାଡ଼ିତ ହେଲେ ଏବଂ ମୟୁରଭଞ୍ଜ ମହାରାଜ କୃଷ୍ଣଚନ୍ଦ୍ରଙ୍କ ସଂସ୍ପର୍ଶରେ ଆସିଲେ । ମୟୁରଭଞ୍ଜରେ ନିବାସ କାଳରେ ସେ ମହାଭାରତର ଓଡ଼ିଆ ଅନୁବାଦ କରିଥିଲେ । ସେ ଯାହା ହେଉ ମହାରାଜା ଭଗୀରଥ ପଣ୍ଡିତ ଗୋବିନ୍ଦ ଚନ୍ଦ୍ରଙ୍କୁ ଭଲ ପାଉଥିଲେ ଏବଂ ସ୍ୱପୁତ୍ରର ଗୃହଶିକ୍ଷକ ଭାବରେ ତାଙ୍କୁ ନିଯୁକ୍ତି ଦେଇଥିଲେ ।



# ମହିମାଧର୍ମର ଉନ୍ମେଷ

ମହାରାଜା ଭଗୀରଥଙ୍କ ରାଜତ୍ୱରେ ପବିତ୍ର ଢେଙ୍କାନାଳ ମାଟିରେ ହିଁ ମହିମାଧର୍ମର ଉନ୍ମେଷ ଘଟିଥିଲା । ସେହି ସମୟରେ ସମଗ୍ର ଭାରତବର୍ଷରେ ଧର୍ମରେ ନବଜାଗରଣ ସୃଷ୍ଟି ହୋଇଥିଲା । ଭାରତର ପୂର୍ବାଞ୍ଚଳରେ ରାଜା ରାମମୋହନ ରାୟ ଏବଂ ପଶ୍ଚିମାଞ୍ଚଳରେ ମହର୍ଷି ଦୟାନନ୍ଦ ଧର୍ମକ୍ଷେତ୍ରରେ ବ୍ୟାପକ ସଂସ୍କାର ଆଣିଥିଲେ । ଓଡ଼ିଶାରେ ମଧ୍ୟ ସେହି ସମୟରେ ଦୁଇଜଣ ଧର୍ମସଂସ୍କାରକଙ୍କର ଆବିର୍ଭାବ ଘଟିଥିଲା । ଜଣେ ହେଉଛନ୍ତି ସଂସ୍କାରବାଦୀ ସନ୍ଥ ସାଧୁସୁନ୍ଦର ଦାସ । ସେ ଚୌଦ୍ୱାର ସନ୍ନିକଟ କୁଜିବରଠାରେ ଆଶ୍ରମ ସ୍ଥାପନା ପୂର୍ବକ ଆପଣାର ସଂସ୍କାରବାଦୀ ମତ ହାତଲେଖା ''କୁଜିବର ପତ୍ରିକା''ରେ ପ୍ରକାଶ ନକରି ସମାଜକୁ ପ୍ରଭାବିତ କରିଥିଲେ । ଅନ୍ୟଜଣେ ହେଉଛନ୍ତି ପ୍ରାତଃ ସ୍ମରଣୀୟ ମହିମାସ୍ୱାମୀ ବା ମହିମା ଗୋସାଇଁ ।

ମହିମାସ୍ୱାମୀଙ୍କର ପୂର୍ବାଶ୍ରମର ପରିଚୟ ଅଦ୍ୟାବଧି ଅନୁପଲବ୍ଧ । ବିଭିନ୍ନ ଅଭିଲେଖରୁ ତାଙ୍କ ନାମ ମୁକୁନ୍ଦ ଦାସ ମିଳିଥିଲେ ହେଁ ମହିମା ସନ୍ନ୍ୟାସୀ ବୃନ୍ଦ ଏହାକୁ ବିଶ୍ୱାସ କରନ୍ତି ନାହିଁ । କେବଳ ଏତିକି ଜଣାଯାଇଛି ୧୮୨୬ରେ ପୁରୀ ବଡ଼ଦାଣ୍ଡରେ ଜଣେ ସାଧୁ ଧୂଳିରେ ଶୟନ କରୁଥିଲେ ଏବଂ ସଭିଏଁ ତାଙ୍କୁ ଧୂଳିଆ ଗୋସେଇଁ କହୁଥିଲେ । ନିରାକାର ବ୍ରହ୍ମଙ୍କ ସମ୍ପର୍କରେ ତାଙ୍କର ଅଗାଧ ଜ୍ଞାନ ଥିଲା । ଏହି ନିର୍ଗୁଣବାଦୀ ସନ୍ଥ ୧୮୨୬ରୁ ୧୮୩୮ ପର୍ଯ୍ୟନ୍ତ ଦୀର୍ଘ ବାରବର୍ଷ ଖଣ୍ଡଗିରି ପର୍ବତରେ ତପଶ୍ଚର୍ଯ୍ୟା କରିଥିଲେ । ସେହି ସମୟରେ ସେ କେବଳ ଜଳପାନ କରି ଜୀବନ ଧାରଣ କରୁଥିବାରୁ ତାଙ୍କ ''ନୀରାହାରୀ ଗୋସାଇଁ'' କୁହାଯାଉଥିଲା । ୧୮୩୮ ଠାରୁ ୧୮୫୦ ପର୍ଯ୍ୟନ୍ତ ଏହି ମହାତ୍ମା କପିଳାସ ପର୍ବତର ପଶ୍ଚିମାଞ୍ଚଳରେ ତପଶ୍ଚର୍ଯ୍ୟା କରୁଥିଲେ । ସେହି ସମୟରେ ଦେଓ ଗାଁର ସଦାନନ୍ଦ ଶବର ପ୍ରତ୍ୟହ ଫଳ ଯୋଗାଉଥିଲା ତଥା ସାଧୁ ଜଣକ କେବଳ ଫଳାହାର କରି ତପଶ୍ଚର୍ଯ୍ୟାରେ ବ୍ରତୀ ରହିଥିଲେ । ତେଣୁ ଲୋକେ ତାଙ୍କୁ ''ଫଳାହାରୀ ଗୋସାଇଁ'' କହିଲେ । ତତ୍‌ପରେ ଢେଙ୍କାନାଳ ରାଜା ଭଗୀରଥ ମହୀନ୍ଦ୍ର ବାହାଦୂରଙ୍କ ପାଟରାଣୀ ଏକ ବିଶେଷ କାର୍ଯ୍ୟସିଦ୍ଧି କାମନାରେ ମହାତ୍ମା

ଜଣଙ୍କୁ ଦୀର୍ଘ ବାରବର୍ଷ ଗୋଦୁଗ୍ଧ ଯୋଗାଇଲେ । କେବଳ ଦୁଗ୍ଧପାନ ପୂର୍ବକ ୧୮୫୧ ଠାରୁ ୧୮୬୨ ଦୀର୍ଘ ବାର ବର୍ଷ ସେ ତପଶ୍ଚର୍ଯ୍ୟାରେ ବ୍ରତୀ ରହିଥିବାରୁ ତାଙ୍କୁ ''କ୍ଷୀରାହାରୀ ଗୋସାଇଁ'' କୁହାଗଲା । ପରିଶେଷରେ ୧୮୬୨ ମସିହାରେ ସେ ସିଦ୍ଧିଲାଭ କରି ମହିମା ଧର୍ମର ପ୍ରଚାର କଲେ ତଥା ସଚରାଚର ''ମହିମା ଗୋସାଇଁ'' ନାମରେ ପରିଚିତ ହେଲେ । କପିଳାସ ପର୍ବତର ଯେଉଁ ସ୍ଥାନରେ ମହିମା ଗୋସାଇଁ ସାଧନାରେ ବ୍ରତୀ ଥିଲେ ତାହା ସଂପ୍ରତି '' ତପୋବନ ଆଶ୍ରମ'' ନାମରେ ପରିଚିତ ।

ମହିମା ଗୋସାଇଁଙ୍କର ପ୍ରଥମ ଶିଷ୍ୟ ଥିଲେ ଗୋବିନ୍ଦ ଦାସ । ଗୋବିନ୍ଦ ଦାସଙ୍କର ପୂର୍ବନାମ ଥିଲା ଜଗନ୍ନାଥ ଦାସ ଏବଂ ମହିମା ଗୋସାଇଁଙ୍କଠାରୁ ଦୀକ୍ଷା ଗ୍ରହଣ କରିବା ପରେ ସେ ଗୋବିନ୍ଦ ବାବା ନାମରେ ପରିଚିତ ହେଲେ ଏବଂ ବୌଦ ଅନ୍ତର୍ଗତ ବାଲାସିଂହଠାରେ ଆଶ୍ରମ ସ୍ଥାପନା କଲେ । ମହିମା ଗୋସାଇଁ ଗୋବିନ୍ଦ ବାବାଙ୍କ ସମେତ ଚଉଷଠୀ ଜଣ ଯୁବକଙ୍କୁ ଦୀକ୍ଷା ପ୍ରଦାନ କରି କୁମ୍ଭୀ ବୃକ୍ଷର  ବଲ୍‌କଳ ଭେକ ଦେଇଥିଲେ । ଏହି ଚଉଷଠୀ ଜଣ ହିଁ ମହିମା ଧର୍ମର ଆଦିସିଦ୍ଧ । ଢେଙ୍କାନାଳ ଇତିହାସରେ ବର୍ଣ୍ଣନା ରହିଛି ଏହି ଚଉଷଠୀ ଜଣଙ୍କୁ ବଲ୍‌କଳ ପିନ୍ଧିବାକୁ ଦେଇ ମହିମା ଗୋସାଇଁ କହିଥିଲେ ଯେ, ଏହା ପରେ ତ୍ୟାଗୀମାନେ ଆଉ ବଲ୍‌କଳ ପିନ୍ଧିବେ ନାହିଁ । ଏହା ପରେ ଯେଉଁମାନେ ସନ୍ନ୍ୟାସୀ ହେବେ ସେମାନେ କୌପୀନ ପିନ୍ଧିବେ । ୧୯୧୬ ପର୍ଯ୍ୟନ୍ତ ଏହି ପରମ୍ପରା ବଳବତ୍ତର ରହିଥିଲେ ହେଁ ଏହା ପରେ କେତେକ ସନ୍ନ୍ୟାସୀ ବଲ୍‌କଳ ପିନ୍ଧିବାରୁ ମହିମା ସଂପ୍ରଦାୟରେ ଗଣ୍ଡଗୋଳ ହୋଇ ଏହା ବଲ୍‌କଳଧାରୀ ଓ କୌପୀନଧାରୀ ଦୁଇଭାଗରେ ବିଭକ୍ତ ହୋଇଗଲା । ଯେଉଁ ଗହୀମାନେ ମହିମାଧର୍ମରେ ଦୀକ୍ଷିତ ହେଉଥିଲେ ସେମାନେ ଗେରୁଆ ଲୁଗା ପିନ୍ଧୁ...ଲେ । ସନ୍ଥକବି ଭୀମଭୋଇ ମଧ୍ୟ ମହିମା ଧର୍ମ ଗ୍ରହଣ ପୂର୍ବକ ଏହି ଧର୍ମ ସମ୍ବନ୍ଧୀୟ ଅନେକ ଉପାଦେୟ ଗ୍ରନ୍ଥ ରଚନା କରିଛନ୍ତି, ଯେଉଁ ଶାସ୍ତ୍ର ହିଁ ମହିମାଧର୍ମର ବେଦ ସ୍ୱରୂପ । ମହିମା ଗୋସାଇଁଙ୍କ ଠାରୁ ଦୀକ୍ଷାଗ୍ରହଣ ପରେ ସାଧନାରେ ବ୍ରତୀ ହୋଇ ଯେଉଁ ଯୁବ ମହିମା ସନ୍ୟାସୀବୃନ୍ଦ ସିଦ୍ଧ ଭାବରେ ସୁନାମ ଅର୍ଜନ କରିଥିଲେ ସେମାନଙ୍କ ମଧ୍ୟରେ ନୃସିଂହଦାସ, ଅନାମ ଦାସ, ରଘୁବର ଦାସ, କୃପାସିନ୍ଧୁ ଦାସ, ଅପର୍ତ୍ତି ଦାସ ଓ କୁଳୁଧର ଦାସ ପ୍ରଭୃତି ମୂଖ୍ୟ । ନିଜେ ମହିମା ସ୍ୱାମୀ, ଢେଙ୍କାନାଳ, କେନ୍ଦୁଝର, ଆଠଗଡ଼, ବାଙ୍କୀ, ପଟିଆ, ଖୋର୍ଦ୍ଧା, ଦଶପଲା, ବୌଦ, ସୋନପୁର,

ରେଢ଼ାଖୋଲ, ଅନୁଗୁଳ, ହିନ୍ଦୋଳ ଓ କାମାଖ୍ୟାନଗର ପ୍ରଭୃତି ଅଞ୍ଚଳ ପରିଭ୍ରମଣ କରି ମହିମା ଧର୍ମ ପ୍ରଚାର କରିଥିଲେ । ମହିମା ଗୋସାଇଁ ଓ ସନ୍ନ୍ୟାସୀମାନେ ଗୋଟିଏ ଗ୍ରାମରେ ଗୋଟିଏ ଦିନ ରହି ତତ୍‌ପରଦିନ ଅନ୍ୟଗ୍ରାମକୁ ଯାଉଥିଲେ । ସେମାନେ ବାସଗୃହ ବା ଗୃହସଂଲଗ୍ନ କୌଣସି ଘରେ ନରହି ବୃକ୍ଷମୂଳ ବା ଅନ୍ୟ ଘରେ ରହୁଥିଲେ । କେତେକ ଗ୍ରାମରେ ଗ୍ରାମ ବାହାରେ ଗୃହୀ ଭକ୍ତଗଣ ମହିମାଟୁଙ୍ଗୀ ନିର୍ମାଣ କରିଥିଲେ । ଏହି ଟୁଙ୍ଗୀ ବିଯୋଡ଼ ସଂଖ୍ୟାର ଶୋଣୀ ଅର୍ଥାତ୍ ୨୧, ୨୩, ୨୯ ପ୍ରଭୃତି ସଂଖ୍ୟାରେ ଶେଣୀରେ ନିର୍ମାଣ ହେଉଥିଲା । ସେହି ସମୟର ଟୁଙ୍ଗୀମାନଙ୍କ ମଧ୍ୟରେ ବାଙ୍କୀ ମାଳବିହାର ପୁର, ପଟିଆର ଡମଣା, ଢେଙ୍କାନାଳର ବଉଳପୁର, ଜକା, ମଢ଼ି, କଣ୍ଟାପାଳ, ବିରିପାଳ, ଖଡ୍ଗପ୍ରସାଦ, କୀର୍ତ୍ତନପୁର ଓ ଯୋରନ୍ଦା ତଥା ହିନ୍ଦୋଳର ରଞ୍ଜାଗଡ଼ ଓ ଭାନୁପଡ଼ା ପ୍ରଭୃତି ପ୍ରସିଦ୍ଧ ଥିଲା । ମହିମା ସନ୍ୟାସୀମାନେ ନୂଆ ହାଣ୍ଡି ଖପରା ବା ପତ୍ରରେ ମୁକ୍ତାକାଶ ତଳେ ଭୋଜନ କରୁଥିଲେ । ରାଜା, ବ୍ରାହ୍ମଣ ଓ ଧୋବାଘର ବ୍ୟତୀତ ଅନ୍ୟ ସମସ୍ତଙ୍କ ଘରେ ସେମାନେ ଖାଉଥିଲେ । ମହିମାଧର୍ମାଶ୍ରିତ ସନ୍ନ୍ୟାସୀ ଓ ଗୃହୀ ବ୍ରାହ୍ମ ମୁହୂର୍ତ୍ତରୁ ସ୍ନାନ କରି ସୂର୍ଯ୍ୟୋଦୟ ପୂର୍ବରୁ ପୂର୍ବ ଦିଗକୁ ମୁଖ କରି ଅଷ୍ଟାଙ୍ଗ ପ୍ରଣାମ ଏବଂ ସୂର୍ଯ୍ୟାସ୍ତ ପୂର୍ବରୁ ପଶ୍ଚିମଦିଗକୁ ମୁହଁ କରି ଅଷ୍ଟାଙ୍ଗ ପ୍ରଣାମ କରନ୍ତି । ସୂର୍ଯ୍ୟାସ୍ତ ପରେ ସେମାନେ ଭୋଜନ କରନ୍ତି ନାହିଁ । ମହିମାଧର୍ମରେ ଜାତିଭେଦର ବିଚାର ନାହିଁ । ମହିମା ସଂପ୍ରଦାୟରେ ହିନ୍ଦୁବିବାହ ପଦ୍ଧତି ଅନୁରୂପ ବିବାହ ପ୍ରଥା ପ୍ରଚଳିତ, ଅଥଚ ବୈଦିକ ମନ୍ତ୍ର ବା ପୁରୋହିତର ଆବଶ୍ୟକତା ନାହିଁ । କନ୍ୟା ବର ଗଳାରେ ବରଣମାଳା ପକାଇବା ପରେ ବେଦୀରେ ବିବାହ କାର୍ଯ୍ୟ ଅନୁଷ୍ଠିତ ହୋଇଥାଏ ।

୧୮୨୬ ମସିହା ଅର୍ଥାତ୍ ପୁରୀରେ ମହିମା ଗୋସାଇଁଙ୍କ ଅବସ୍ଥାନ କାଳରୁ ମହିମାବ୍ଦ ପ୍ରଚଳିତ । କୁହାଯାଏ, ସେହି ବର୍ଷ ମହିମାସ୍ୱାମୀ ଅଲେଖ ମଣ୍ଡଳ ପ୍ରତିଷ୍ଠା ପୂର୍ବକ ଆଧ୍ୟାତ୍ମିକ କ୍ଷେତ୍ରରେ କୁସଂସ୍କାର ଦୂରୀକରଣର ପ୍ରଚେଷ୍ଟା କରିଥିଲେ । ଧର୍ମର ପ୍ରକୃତ ସ୍ୱରୂପକୁ ଜନସାଧାରଣଙ୍କ ହୃଦୟରେ ପହଞ୍ଚାଇବା ହିଁ ତାଙ୍କର ମୂଳ ଲକ୍ଷ୍ୟ ଥିଲା । ''ଜାତି, ଧର୍ମ, ବର୍ଣ୍ଣ, ସଂପ୍ରଦାୟ, ଉପାସନା, ଭାଷା, ବେଶ ଭୂଷାର ଭିନ୍ନତା ସତ୍ତ୍ୱେ ସମଗ୍ର ବିଶ୍ୱବାସୀ ଏକ ପରମେଶ୍ୱରଙ୍କ ସନ୍ତାନ'' ଏହା ହିଁ ଥିଲା ମହିମା ସ୍ୱାମୀଙ୍କର ମାନବ ଜାତି ନିମିତ୍ତ ସନ୍ଦେଶ । ଶୂନାବାସୀ ଅଲେଖ ପରଂବ୍ରହ୍ମଙ୍କର ଶରଣ ନେବା ହିଁ ମହିମାସ୍ୱାମୀଙ୍କର ଶ୍ରେଷ୍ଠ ଉପଦେଶ । ସମଗ୍ର ବିଶ୍ୱକୁ ନିଜର ପ୍ରତ୍ୟକ୍ଷ ଦିବ୍ୟାନୁଭୂତିର ସନ୍ଦେଶ ଦେବାକୁ ଯାଇ ସେ ତ୍ରିରତ୍ନ ପ୍ରଦାନ

କରିଥିଲେ । ସେହି ତ୍ରିରତ୍ନ ହେଉଛି ମହିମା ଦର୍ଶନ, ମହିମାସଂଖ୍ୟାବିଜ୍ଞାନ ଓ ମହିମା ଆୟୁର୍ବିଜ୍ଞାନ । ଦଳିତ, ନିଷ୍ପେସିତ, ଅଜ୍ଞ, ଅବହେଳିତ, ଅସ୍ପୃଶ୍ୟ ଏବଂ ନିଷ୍ପାପ ପଲ୍ଲୀବାସୀଙ୍କୁ ଧର୍ମ ଉପାସନା ତଥା ବେଦବେଦାନ୍ତର ନିଗୁଢ଼ ତତ୍ତ୍ୱ ହୃଦୟଙ୍ଗମ କରାଇବାରେ ମହିମାସ୍ୱାମୀଙ୍କର ପଦକ୍ଷେପ ଉଲ୍ଲେଖନୀୟ । ସ୍ୱକୀୟ ଦିବ୍ୟାନୁଭୂତି ତଥା ଯୁଗାନ୍ତକାରୀ ଦର୍ଶନର ପ୍ରଚାର ଯୋଗୁଁ ସେ ମହିମାଧର୍ମାବଲମ୍ବୀଙ୍କ ହୃଦୟରେ ଭଗବାନଙ୍କ ଆସନ ଅଳଙ୍କୃତ କରିପାରିଥିଲେ ।

ଧର୍ମ ପ୍ରଚାର କାଳରେ ମହିମାସ୍ୱାମୀ ରେଢ଼ାଖୋଲ ଅନ୍ତର୍ଗତ ଗ୍ରାମଡିହା ଗାଁର ଭୀମଭୋଇଙ୍କ ସମ୍ପର୍କରେ ଜାଣିବାକୁ ପାଇଲେ । ଗୋସାଇଁ ତାଙ୍କୁ ମହିମାଧର୍ମର ନୀତିମାନ ଶିକ୍ଷା ଦେଲେ । ଭୀମଭୋଇ ସୁଲଳିତ କଣ୍ଠରେ ଭଜନ ଓ ସ୍ତୁତି ଗାନ କରିପାରୁଥିଲେ । ତତ୍‌ରଚିତ ଭଜନାବଳୀ, ସ୍ତୁତି ଚିନ୍ତାମଣୀ ଓ ବ୍ରହ୍ମ ନିରୂପଣ ପ୍ରଭୃତି ମହିମାଧର୍ମର ବେଦ ସ୍ୱରୂପ । ଭୀମଭୋଇ ସୋନପୁର ନିକଟସ୍ଥ ଖଳିଆପାଲିଠାରେ ତାଙ୍କ ମୁଖ୍ୟ ଆଶ୍ରମ ପ୍ରତିଷ୍ଠା କରିଥିଲେ । ସେଠାରେ ତାଙ୍କର ବହୁ ଅନୁଗାମୀ ଶିଷ୍ୟ ଥିଲେ । ଭୀମଭୋଇଙ୍କ ଶିଷ୍ୟଗଣ ଦଳବଦ୍ଧ ଭାବେ ଶ୍ରୀମନ୍ଦିରରେ ପଶି ଜଗନ୍ନାଥଙ୍କ ବିଗ୍ରହ ଧ୍ୱଂସ କରିବାକୁ ଚେଷ୍ଟା କରିଥିଲେ । ଏହି ଘଟଣା ୧୮୮୧ ମାର୍ଚ୍ଚ ୧ ତାରିଖରେ ଘଟିଥିଲା । ଜଗନ୍ନାଥଙ୍କ ଭକ୍ତମାନଙ୍କ ସହିତ ସେମାନଙ୍କର ସଂଘର୍ଷ ଘଟିଥିଲା ଏବଂ ଏଥିରେ ଜଣେ ବ୍ୟକ୍ତି ମୃତ୍ୟୁବରଣ କରିଥିଲେ । ଭୀମଭୋଇ ଅନ୍ଧ ଥିଲେ କ ନାହିଁ ତାହା ବିବାଦାସ୍ପଦ ।

ମହିମାସ୍ୱାମୀ ପଦବ୍ରଜରେ ବିଭିନ୍ନ ସ୍ଥାନ ଭ୍ରମଣ କରି ମହିମାଧର୍ମର ବ୍ୟାପକ ପ୍ରସାର ଘଟାଇଥିଲେ । ଅନେକ ସ୍ଥାନରେ ସେ ଅଲୌକିକ ଲୀଳା ଦେଖାଇବାର କିମ୍ବଦନ୍ତୀ ରହିଛି । ଅନ୍ୟାନ୍ୟ ଧର୍ମ ସଂସ୍କାରକଙ୍କ ସଦୃଶ ସେ ନିର୍ଯ୍ୟାତନା ମଧ୍ୟ ସହ୍ୟ କରିଥିଲେ । ଏକଦା ତାଙ୍କ ଆଶ୍ରମ ସନ୍ନିକଟରେ କେତେଜଣ ନାରୀ ଉପସ୍ଥିତ ହୋଇ ଦାବୀ କଲେ ଯେ, ମହିମା ସନ୍ନ୍ୟାସୀମାନେ ସେମାନଙ୍କର କାମ ବାସନା ପୂରଣ କରନ୍ତୁ । ମହିମା ଗୋସାଇଁ ସେମାନଙ୍କୁ ବୁଝାଇ ଘରକୁ ଫେରାଇ ଦେଇଥିଲେ । ଏକଦା ମହିମା ଗୋସାଇଁ ବଉଳପୁରଠାରେ ମହିମା ମହୋତ୍ସବରେ ଆୟୋଜନ କରିଥିଲେ । ସେହି ମହୋତ୍ସବକୁ ସେ ମହାରାଜା ଭଗୀରଥଙ୍କୁ ନିମନ୍ତ୍ରଣ କରିଥିଲେ । ତାଙ୍କର ଇଚ୍ଛା ଥିଲା ଯେ, ସେ ମହାରାଜାଙ୍କ ସହିତ ଏକତ୍ରରେ ଉପବେଶନ କରିବେ ତଥା ଉଭୟଙ୍କ ମୁଣ୍ଡରେ ଛତ୍ର ଟେକାଯିବ । କିନ୍ତୁ ରାଜା ମହିମା ଗୋସାଇଁଙ୍କ ଦୁରଭିସନ୍ଧ

ବୁଝିପାରି ସେଠାକୁ ଗଲେ ନାହିଁ । ଫଳରେ ମହିମା ଗୋସାଇଁ କ୍ରୋଧାନ୍ଧ ହୋଇ ସମସ୍ତ ମୂଲ୍ୟବାନ ପଦାର୍ଥ ଅଗ୍ନିକୁ ନିକ୍ଷେପ କରିଦେଲେ । ୧୮୭୩ ମସିହାରେ ରଞ୍ଜାଗୋଳ ପ୍ରଭୃତି କେତେକ ଗ୍ରାମରେ ଯୁବତୀ ସ୍ତ୍ରୀ ଲୋକମାନେ ଟୁଙ୍ଗୀ ଭିତରେ ଗୋସାଇଁଙ୍କୁ ଅର୍ଘ୍ୟ ଦେଇ ବନ୍ଦାପନା କରିଥିଲେ ଏବଂ କେତେକ ସ୍ତ୍ରୀ ଲୋକ ସନ୍ନ୍ୟାସିନୀ ହୋଇଥିଲେ । ଏହାର ପ୍ରତିବାଦ ରେଭେନ୍‌ସା ସାହେବଙ୍କ ନିକଟରେ ହୋଇଥିଲା । ଠିକ୍ ଏହି ସମୟରେ ବାଙ୍କୀ ମାଳବିହାରୀ ପୁର ଟୁଙ୍ଗୀଠାରେ ମହିମା ଧର୍ମାବଲମ୍ବୀଙ୍କ ମଧ୍ୟରେ ଗଣ୍ଡଗୋଳ ହୋଇଥିଲା । ଏହି ଗଣ୍ଡଗୋଳରେ କଳିବୀର ଗ୍ରାମର ଜଣେ ବ୍ୟକ୍ତିର ମୃତ୍ୟୁ ଘଟିଥିଲା । ଏହି କାରଣରୁ କମିଶନର ସାହେବ ମହିମା ଗୋସାଇଁଙ୍କ ଧରିବା ପାଇଁ ସହକାରୀ ଅଧକ୍ଷ ହରେକୃଷ୍ଣ ଦାସ ରାୟ ବାହାଦୂରଙ୍କୁ ପ୍ରେରଣ କଲେ । କିନ୍ତୁ ମହିମା ଗୋସାଇଁ କେନ୍ଦୁଝର ଜଙ୍ଗଲରେ ଆତ୍ମଗୋପନ କରିବାରୁ ଧରା ପଡ଼ିପାରିଲେ ନାହିଁ ।

୧୮୭୪ ମସିହାରେ ମହିମା ଗୋସାଇଁ ଯୋରନ୍ଦାଠାରେ ମହିମା ଧର୍ମର ମୁଖ୍ୟ ପୀଠ ସ୍ଥାପନା କଲେ । ୧୮୭୬ ମସିହାରେ ମହିମା ଗୋସାଇଁ ପରଲୋକ ଗମନ କଲେ । ଯୋରନ୍ଦାଠାରେ ତାଙ୍କର ସମାଧି ମନ୍ଦିର ବିଦ୍ୟମାନ । ପ୍ରତିବର୍ଷ ମାଘ ଶୁକ୍ଳ ଚତୁର୍ଦ୍ଦଶୀରେ ଏଠାରେ ମହିମା ମେଳା ଅନୁଷ୍ଠିତ ହେଉଛି । ଏହି ମନ୍ଦିର ପ୍ରଥମେ ଚାରି ହାତ, ତତ୍ପରେ ଆଠ ହାତ, ୧୬ ହାତ, ୩୨ ହାତ ହୋଇ ସଂପ୍ରତି ୬୪ ହାତର ମନ୍ଦିର ନିର୍ମାଣ ହୋଇଅଛି । ଏତଦ୍‌ଭିନ୍ନ ଯୋରନ୍ଦାଠାରେ ଶୂନ୍ୟମନ୍ଦିର, ଧୂନି ମନ୍ଦିର ଓ ଗାଦୀ ମନ୍ଦିର ରହିଅଛି । ଗାଦୀ ମନ୍ଦିରଠାରେ ପ୍ରତ୍ୟହ ଚନ୍ଦନ ପାଣି ସେଚନ ହୋଇ ଚାରି ପାଞ୍ଚ ଗୋଟା ନଡ଼ିଆ ଭଙ୍ଗାଯାଇ କ୍ଷୀର ଢଳାଯାଏ ଏବଂ ତମାଖୁ ପିକା ଲାଗି ହୁଏ । ବର୍ତ୍ତମାନ ଯୋରନ୍ଦା ମହିମା ଧର୍ମର ତୀର୍ଥରେ ପରିଣତ । ମହିମା ଗୋସାଇଁଙ୍କ ମୃତ୍ୟୁ ପରେ ତାହାଙ୍କର ସମସ୍ତ ସମ୍ପତ୍ତି ନିଲାମ ହୋଇ ଢେଙ୍କାନାଳ ଦେବୋତ୍ତର ଫଣ୍ଡ ଭୁକ୍ତ ହୋଇଥିଲା । କିନ୍ତୁ ପରେ ବଦାନ୍ୟବ୍ୟକ୍ତିମାନେ ବହୁମୂଲ୍ୟ ପଦାର୍ଥ ଓ ଟଙ୍କା ଦାନପୂର୍ବକ ଯୋରନ୍ଦାମଠର ସର୍ବାଙ୍ଗୀନ ଉନ୍ନତ ସାଧନ କରିଅଛନ୍ତି ।

ମହାରାଜା ଭଗୀରଥଙ୍କ ରାଜତ୍ୱରେ ମହିମା ଧର୍ମର ଉନ୍ମେଷ ଏକ ଉଲ୍ଲେଖନୀୟ ଘଟଣା । ଉଦାରଚେତା ମହାରାଜ ମହିମା ଧର୍ମର ପ୍ରଚାର ଓ ମଠ ସ୍ଥାପନା ନିମିତ୍ତ ସାହାଯ୍ୟ କରିଥିଲେ । ରାଜା ସ୍ୱୟଂ ସନାତନ ଧର୍ମାବଲମ୍ବୀ ଥିଲେ ହେଁ ମହିମା ଧର୍ମ ପ୍ରତି ତାଙ୍କର ବିଦ୍ୱେଷ ନଥିଲା । ଏହି ସଂସ୍କାରବାଦୀ ମହାରାଜା

୧୮୭୭ ମସିହା ଫେବୃୟାରୀ ୫ ତାରିଖ ମଧ ରାତ୍ରରେ ଇହଲୀଳା ସମ୍ବରଣ କଲେ । ସେହିଦିନ ବାମଣ୍ଡାରାଜା ବାସୁଦେବ ସୁଢ଼ଳଦେବ ଢେଙ୍କାନାଳ ଆସି ରାଜାଙ୍କୁ ସାକ୍ଷାତ୍ କରିବା ନିମିତ୍ତ ଭାପୁରରେ ଅବସ୍ଥାନ କରିଥିଲେ । ମଧରାତ୍ରିରେ ମହାରାଜାଙ୍କ ଅକାଳ ବିୟୋଗ ଘଟିବାରୁ ସାର୍ ବାସୁଦେବ ସୁଢ଼ଳଦେବ କହିଥିଲେ, ‘‘ଆଜିଠାରୁ ଉତ୍କଳ ପ୍ରଦେଶସ୍ଥ ରାଜମଣ୍ଡଳୀର ଗୌରବ ରବି ଏକାବେଳେକେ ଚିରଦିନ ନିମିତ୍ତ ଅସ୍ତମିତ ହେଲେ ।’’ ମହାରାଜ ଭଗୀରଥଙ୍କ ବିୟୋଗରେ ସମଗ୍ର ଓଡ଼ିଶାରେ ଶୋକର ଛାୟାର ଖେଳିଗଲା । ସମଗ୍ର ଢେଙ୍କାନାଳର ପ୍ରଜାବୃନ୍ଦ ଶୋକାଭିଭୂତ ହୋଇ ପଡ଼ିଲେ । ପରଦିନ ପ୍ରତ୍ୟୁଷରୁ ହଜାର ହଜାର ପ୍ରଜା ଓ ମାନ୍ୟଗଣ୍ୟଙ୍କ ଉପସ୍ଥିତିରେ ରାଜଶ୍ମଶାନ (ମଡ଼ାଦେଉଳ) ଠାରେ ମହାରାଜାଙ୍କ ଅନ୍ତ୍ୟେଷ୍ଟିକ୍ରିୟା ସମାପନ କରାଯାଇ ଶବ ସଂସ୍କାର କରାଗଲା । ବର୍ତ୍ତମାନ ମଧ ସେହି ଶ୍ମଶାନରେ ମହାରାଜାଙ୍କ ସମାଧି ମନ୍ଦିର ରହିଅଛି । ଏହି ଦାରୁଣ ଦୁଃଖର ଚିତ୍ର ଉପସ୍ଥାପନା ପୂର୍ବକ ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ସ୍ୱରଚିତ ‘‘ଭଗୀରଥ କୀର୍ତ୍ତିକଳାପ’’ରେ ଉଲ୍ଲେଖ କରିଛନ୍ତି ।

ପୁରବାସୀ ପାରିଷଦ ରୋଦନ    ଦଶଦିଗଭେଦୀ ଶୁଭିଲାସ୍ୱନ
ଗଡ଼େ ପଡ଼ିଲା ଡାକ ହାହାକାର    ଗ୍ରାମୁଁ ଗ୍ରାମକୁ ସଂକ୍ରମି ସ୍ୱେଚ୍ଛାର
ସେ ଶୋକ ଘଟନା
ବିନାଶ କଲା ଲୋକଙ୍କ ଚେତନା ।
ପ୍ରାଣୀମାତ୍ରକ ଭଳମନ୍ଦ ବାଣୀ    ଅନ୍ତକାଳକୁ ସ୍ଥିର ସିନା ଜାଣି
କେବୋଲେ ମୋର ନୃପତି ରତନ    ଛାଡ଼ିଗଲେ କାହିଁ ମୋ ଗଣ୍ଠିଧନ
ମୋତେ କିମ୍ବା ସଙ୍ଗେ
ନନେଇ ଫିଙ୍ଗିଲେ ଘୋର ତରଙ୍ଗେ ।
କେବେ ହେଁ ନଗଲା ମୋର ଜୀବନ    ଥାନ୍ତେ କି ମୋହର ପ୍ରିୟରାଜନ
ଦାରୁଣ ଯମକି ବୁଦ୍ଧି ବିହିଲା    ଦେଖାଇ ଭୋଜ୍ୟକୁ ଭୁଞ୍ଜୁ ହରିଲା
କାହିଁ ପାଇଁ ରୋଷ
ଏଡ଼େ ତାର କଲୁ କେବଣ ଦୋଷ ।
କେ ଭାଷଇ ଆମ୍ଭ କପାଳ ହୀନ    ନିଧ ଭୋଗକରି ସୁଦୀନ
ବିଧିକି କମ୍ପାଇ ନିନ୍ଦା କରିବା    ଜଳେ କି ଅନଳେ ପ୍ରାଣ ହାରିବା
ଆଉ ଏ ସଂସାରେ

ରହିବା କି ସୁଖ ଲାଭ ଆଶାରେ ।

ଶୂନ୍ୟ ଦିଶୁଛି ମୋତେ ଚଉଦିଗ ଯମ ନବକି ବୁଲାଇ ପରିଘ
ନେଲେ ହନ୍ତା ଭଲ ମିଛ ଧମକ କଷ୍ଟ ଏଡ଼େ କିମ୍ପା କରେ ଚମକ
ହାୟ ନରନାଥ
କି ଦୋଷେ ଛାଡ଼ିଲ କରି ଅନାଥ ।
କେ କହେ ନୃପତି ପଣ୍ଡିତ ଧୀର ରସିକ ସରଳ ହୃଦୟ ବୀର
ଉଚ୍ଚ ସ୍ଥୁଳ ବପୁ ଦୟା ସାଗର ପ୍ରଜା ବତ୍ସଳ ସଙ୍ଗୀ ସେ ଗୃହର
ଜନକ ସଭାର
ନ୍ୟାୟ ବିତରି ଦୟା ସହକାର ।

ଭଗୀରଥଙ୍କ ବିୟୋଗରେ କଟକ, କେନ୍ଦ୍ରାପଡ଼ା, ଯାଜପୁର, ଭଦ୍ରକ, ବାଲେଶ୍ୱର, ପୁରୀ ଓ ବାମଣ୍ଡା ପ୍ରଭୃତି ସ୍ଥାନରେ ଶୋକ ସଭାମାନ ହୋଇଥିଲା । କର୍ମବୀର ଗୌରୀଶଙ୍କର ରାୟ ତତ୍‌କାଳୀନ ସାପ୍ତାହିକ "ଉତ୍କଳ ଦୀପିକା" ତା୧୦.୨.୧୮୭୭ରିଖ ସଂଖ୍ୟାରେ ଲେଖିଥିଲେ "ଆମ୍ଭେମାନେ ଅତ୍ୟନ୍ତ ଦୁଃଖର ସହିତ ଶ୍ରବଣ କଲୁ ଯେ, ଢେଙ୍କାନାଳ ମହାରାଜା ଭଗୀରଥ ମହୀନ୍ଦ୍ର ବାହାଦୂର ଗତ ସୋମବାର (ତା୮.୨.୧୮୭୭) ରାତ୍ର ଶେଷରେ ମାନବଲୀଳା ସମାପ୍ତ କରି ସ୍ୱର୍ଗଲୋକକୁ ଗମନ କରିଅଛନ୍ତି । ମହାରାଜ ଆଜକୁ ଛମମାସ ହେବ ଭଗନ୍ଦର ରୋଗରେ ପୀଡ଼ିତ ଥିଲେ । ତାହାଙ୍କ ଗଡ଼ଲୋକଙ୍କ କଥା ଅବା କି କହିବା - ସେମାନେ ନିତ୍ୟ ତାହାଙ୍କ ସ୍ନେହ ଦୟାକୁ ଉଦାର ସ୍ୱଭାବରେ ଫଳ ଭୋଗ କରୁଥିଲେ । ବାସ୍ତବରେ ମହାରାଜା ଭଗୀରଥ ଗଡ଼ଜାତ ରାଜାମାନଙ୍କର ଶିରୋମଣି ଥିଲେ ଓ ଗଡ଼ଜାତର ଉନ୍ନତିର ପ୍ରଥମ ହେତୁ ଥିଲେ । ଅଗ୍ରେ ତାହାଙ୍କ ରାଜ୍ୟରେ ଚିକିତ୍ସାଳୟ, ବିଦ୍ୟାଳୟ, ସଡ଼କ, ଡାକଘର ପ୍ରଭୃତି ସାଧାରଣ ହିତ କାର୍ଯ୍ୟରେ ଅନୁଷ୍ଠାନ ହେଲା ଓ କଟକ ହାଇସ୍କୁଲରେ ସେ ଅଗ୍ରେ ଛାତ୍ରବୃତ୍ତି ସ୍ଥାପନ କରି ବିଦ୍ୟାପ୍ରତି, ତାହାଙ୍କ ପ୍ରଗାଢ଼ ଅନୁରାଗର ପରିଚୟ ସାଧାରଣଙ୍କୁ ଦେଲେ । ସେ ସ୍ୱୟଂ ଯେମନ୍ତେ ସଂସ୍କୃତ ଭାଷାରେ ପଣ୍ଡିତ ଥିଲେ ତେମନ୍ତ ପଣ୍ଡିତମାନଙ୍କର ଯଥାର୍ଥ ସମ୍ମାନ କରୁଥିଲେ । ତାହାଙ୍କର ବଦାନ୍ୟତା ଯେମନ୍ତ ଆୟବ୍ୟୟର ଶୃଙ୍ଖଳା ତେମନ୍ତ ଥିଲା । ପ୍ରଜାମାନେ "କର ଭିନ୍ନ କିଛି ଦେଉ ନଥିଲେ ଓ ତାହାଙ୍କ ପାଳନ ରକ୍ଷା ବିଷୟରେ ଏମନ୍ତ ସୁବିଚାର ପୂର୍ବକ ବାର୍ଯ୍ୟ କରୁଥିଲେ ଯେ, ମୋଗଲଙ୍କ ପ୍ରଜାଙ୍କଠାରୁ ସେମାନେ ସୁଖୀ ଥିଲେ, ଫଳତଃ ତାହାଙ୍କର ଗୁଣକୀର୍ତ୍ତନ

କରିବାକୁ ଆମ୍ଭମାନଙ୍କର ଏ କ୍ଷୁଦ୍ର ପତ୍ରିକାରେ ସ୍ଥାନ ନାହିଁ । ତାହା ଅପରିସୀମ ଓ ଓଡ଼ିଶାର ଚତୁର୍ଦ୍ଦିଗରେ ପ୍ରସାର ଏପରି ମହାରାଜାଙ୍କୁ ହରାଇ କାହାର ଚିତ୍ତ ସ୍ଥିର ହେବ ? ଆମ୍ଭେମାନେ ମହାରାଜାଙ୍କୁ ଠାରେ ବିଶେଷ ଋଣୀ କାରଣ ତାହାଙ୍କ ବଦାନ୍ୟତା, ଏ ଯନ୍ତ୍ରାଳୟ (କଟକ ପ୍ରିଣ୍ଟିଂ କମ୍ପାନୀ)ର ଉନ୍ନତି ହୋଇଅଛି । ସାଧାରଣ ହିତ ତାହାଙ୍କର ଏକମାତ୍ର ବ୍ରତ ଥିଲା ଓ ଏମନ୍ତ ଲୋକଙ୍କୁ ପରମେଶ୍ୱର ବୃଦ୍ଧ ବୟସ ପର୍ଯ୍ୟନ୍ତ ବଞ୍ଚିବାକୁ ନଦେଲେ ଏହା ଓଡ଼ିଶାର ଦୁର୍ଭାଗ୍ୟ ଅଟଇ, ଆଉ କି ଓଡ଼ିଶା ଏପରି ରାଜା ପାଇବ ?

ମହାରାଜା ଭଗୀରଥ ଷାଠିଏ ବର୍ଷ ନପୂରୁଣୁ ସ୍ୱଳ୍ପକାଳ ମଧ୍ୟରେ ପରଲୋକ ଗମନ କରିଥିଲେ ହେଁ ଅନେକ ଜନ ହିତକର କାର୍ଯ୍ୟ କରିଯାଇଥିଲେ । ତାଙ୍କରି ଆନୁକୂଲ୍ୟରେ ଇଂରାଜୀ ଶିକ୍ଷା ଓ ଆଧୁନିକ ଶିକ୍ଷାର ପ୍ରସାର ହୋଇଥିଲା । ପାଠ୍ୟପୁସ୍ତକ ରଚନା ଓ ପ୍ରକାଶନ, ପ୍ରାଚୀନ ସାହିତ୍ୟର ପ୍ରକାଶନ ଏବଂ ନୂତନ ଲେଖକମାନଙ୍କୁ ପ୍ରୋତ୍ସାହନ ଦେବା ନିମିତ୍ତ ସେ ପ୍ରଯତ୍ନଶୀଳ ଥିଲେ । ତାଙ୍କରି ଆନୁକୂଲ୍ୟରେ ସଂସ୍କୃତ ଶିକ୍ଷାର ପ୍ରସାର ଘଟିଥିଲା । ଏତଦ୍‌ଭିନ୍ନ ରାସ୍ତା, ଦେବାଳୟ ଓ ଚିକିତ୍ସାଳୟ ନିର୍ମାଣ କରିବାରେ ସେ ବ୍ରତୀ ଥିଲେ । ତତ୍‌କାଳୀନ ଉତ୍କଳୀୟ ଜନସମାଜରେ ତଥା ପଦାଧିକାରୀଙ୍କ ନିକଟରେ ତାଙ୍କର ସମ୍ମାନ ରହିଥିଲା । ପୁରୀର ଗଜପତି ମହାରାଜାଙ୍କ ସଦୃଶ ନୀତିନିୟମ ଓ ପରମ୍ପରା ପାଳନ ନିମିତ୍ତ ସେ ସନନ୍ଦ ଲାଭ କରିଥିଲେ । ଏତାଦୃଶ ଅନେକ ଗୁଣାବଳୀରେ ଭୂଷିତ ହୋଇ ସେ ଇତିହାସରେ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଯାଇଛନ୍ତି ।



# ରାଜା ଦୀନବନ୍ଧୁ ମହୀନ୍ଦ୍ର ବାହାଦୂର

ମହାରାଜା ଭଗୀରଥ ମହୀନ୍ଦ୍ର ବାହାଦୂର ନିଃସନ୍ତାନ ଥିଲେ । ତେଣୁ ସେ ସ୍ୱୀୟ ଶାଳକ ବୌଦରାଜା ପୀତାମ୍ବର ଦେବଙ୍କ କନିଷ୍ଠପୁତ୍ର କାର୍ତ୍ତିକେଶ୍ୱରଙ୍କୁ ୧୮୭୬ ମସିହାରେ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ତାଙ୍କର ଦନାମ ଦୀନବନ୍ଧୁ ରଖିଥିଲେ । ପୋଷ୍ୟପୁତ୍ର ହୋଇ ଢେଙ୍କାନାଳ ଆସିବା ବେଳକୁ ଦୀନବନ୍ଧୁଙ୍କର ବୟସ ମାତ୍ର ୧୦ବର୍ଷ ହୋଇଥିଲା। ମହାରାଜା ଭଗୀରଥ ପଣ୍ଡିତ ଗୋବୀନ୍ଦ୍ରଚନ୍ଦ୍ର ମହାପାତ୍ରଙ୍କୁ ଦୀନବନ୍ଧୁଙ୍କର ଗୃହଶିକ୍ଷକ ରୂପରେ ନିଯୁକ୍ତ କରିଥିଲେ । ପ୍ରତ୍ୟହ ସନ୍ଧ୍ୟା ସମୟରେ ସ୍ୱମନ୍ତୀ ବନମାଳୀ ସିଂହ ଓ ପୁତ୍ର ଦୀନବନ୍ଧୁଙ୍କୁ ନିକଟରେ ବସାଇ ପ୍ରଜାପାଳନ ଓ ରାଜକାର୍ଯ୍ୟ ନିର୍ବାହର ସମୁଚିତ ଶିକ୍ଷା ଦେଉଥିଲେ ।

ଅକାଳରେ ମହାରାଜା ଭଗୀରଥ ପରଲୋକଗମନ କରିବାରୁ ନାବାଳକ ଦୀନବନ୍ଧୁ ବାହାଦୂର ଉପାଧି ଧାରଣ ପୂର୍ବକ ରାଜ ସିଂହାସନ ଆରୋହଣ କଲେ ତଥା ଦେଓ୍ୱାନ୍ ବନମାଳୀସିଂହ ନାବାଳକ ରାଜାଙ୍କର ତତ୍ତ୍ୱାବଧାରକ ରହିଲେ । ତତ୍‌କାଳୀନ ଇଂରେଜ ସରକାରଙ୍କ ଆଦେଶମତେ ଦେଓ୍ୱାନ୍ ବନମାଳୀସିଂହ ମ୍ୟାନେଜର ପଦବୀରେ ରହି ରାଜକାର୍ଯ୍ୟ ତୁଲାଇଲେ ଏବଂ ନାବାଳକ ଦୀନବନ୍ଧୁ କଟକ ରେଭେନସା କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କଲେ । ଅଧ୍ୟୟନ କାଳରେ ସୁନାମଧନ୍ୟ ପ୍ୟାରୀମୋହନ ସେନ୍ ତାଙ୍କର ଗୃହଶିକ୍ଷକ ନିଯୁକ୍ତ ହେଲେ । ଉଲ୍ଲେଖଯୋଗ୍ୟ ଯେ ୧୮୭୭ ମସିହାରେ ଦୀନବନ୍ଧୁ ରାଜା ହେବାପରେ ବ୍ୟାସକବି ଫକୀର ମୋହନ ସେନାପତି ଢେଙ୍କାନାଳରେ ସହକାରୀ ପରିଚାଳକ (Asst. Manager) କାର୍ଯ୍ୟରେ ଯୋଗ ଦେଇଥିଲେ । ଅର୍ଥାତ୍ ବନମାଳୀ ସିଂହ ଥିଲେ Manager ଓ ଫକୀରମୋହାନ ଥିଲେ Asst. Manager । ସହକାରୀ ପରିଚାଳକ ଭାବରେ ଫକୀର ମୋହନଙ୍କ ଦରମାଥିଲା ମାସିକ ୧୦୦ ଟଙ୍କା ସେହି ସମୟରେ Asst. Manager ରହିବା ନିମିତ୍ତ ଘରଖଣ୍ଡିଏ ନଥିଲା । ତେଣୁ ଫକୀରମୋହନ ନିଜେ ରାଜପ୍ରାସାଦର ଉତ୍ତରଦିଗରେ ଗୋଟିଏ ବାଉଁଶବଣ ପରିଷ୍କାର କରାଇ ୧୬୦୦ ଟଙ୍କା ବ୍ୟୟରେ ଘରଖଣ୍ଡିଏ ନିର୍ମାଣ କଲେ ଏବଂ ରାଜକୋଷରୁ ଏହି ଅର୍ଥ ପାଇଲେ । ବର୍ତ୍ତମାନ ସେହି ଘରଟି ମୁଖ୍ୟ ଡାକଘର

ନିକଟରେ ଏକ ରାଜସ୍ୱବାସଗୃହ ଭାବରେ ପରିଚିହ୍ନିତ । ଫକୀରମୋହନ ସ୍ୱରଚିତ ଆତ୍ମଜୀବନୀରେ ଢେଙ୍କାନାଳ ସଂପର୍କରେ ଗୋଟିଏ ପରିଚ୍ଛେଦ ଲେଖିଛନ୍ତି । ମହାରାଜ ଭଗୀରଥଙ୍କ ସହିତ ତାଙ୍କର ସୁସଂପର୍କ ରହିଥିଲା, ଅଥଚ ସେ ଏଠାରେ ନିଯୁକ୍ତି ପାଇବା ବେଳକୁ ମହାରାଜା ଜୀବିତ ନଥିଲେ । ଢେଙ୍କାନାଳ ରହଣୀ ସମୟରେ ଫକୀରମୋହନଙ୍କର ଗୋଟିଏ ପୁତ୍ରସନ୍ତାନ ଜନ୍ମହୋଇ ମରିଗଲା, ଏଥିରେ ତାଙ୍କ ପତ୍ନୀ ମ୍ରିୟମାଣ ହୋଇଯିବାରୁ ସେ ପ୍ରତ୍ୟହ ରାମାୟଣ ପାଠର ବ୍ୟବସ୍ଥାକଲେ ଏବଂ ପରେ ନିଜେ ଢେଙ୍କାନାଳ ରାଜପ୍ରାସାଦ ପାଠଗାରରୁ ସଂସ୍କୃତ ରାମାୟଣ ପାଣି ଓଡ଼ିଆରେ ଅନୁବାଦ କଲେ । ଅନୁବାଦିତ ରାମାୟଣ ଫକୀରମୋହନ ନିଜ ଶୋକାତୁରା ସ୍ତ୍ରୀଙ୍କୁ ଶୁଣାଇବାପରେ ତାଙ୍କ ପୁତ୍ରଶୋକ ଅପନୋଦିତ ହୋଇଥିଲା । ସେହି ଅନୁବାଦିତ ଓଡ଼ିଆ ରାମାୟଣ ଫକୀରମୋହନ ଜନ୍‌ବୀମ୍‌ସଙ୍କୁ ଉତ୍ସର୍ଗ କରିଥିଲେ । ଆତ୍ମଜୀବନୀରୁ ଜଣାଯାଏ ଫକୀରମୋହନ ୧୮୭୭ ଠାରୁ ୧୮୮୩ ପର୍ଯ୍ୟନ୍ତ ଛଅବର୍ଷ ଢେଙ୍କାନାଳରେ Asst. Manager ଥିଲେ । ସେତେବେଳେ ରାଜା ଦୀନବନ୍ଧୁ ନାବାଳକ ଥାଇ କଟକରେ ବିଦ୍ୟାଧ୍ୟୟନ କରୁଥିଲେ । ମୁଖ୍ୟତଃ ଦେୱାନ୍ ବନମାଳୀ ସିଂହ ହିଁ ରାଜ୍ୟର ସର୍ବେସର୍ବା ଥଲେ । ତତ୍‌କାଳୀନ ଶାସନ ଲୋକହିତକର ଥିଲା । ଫକୀରମୋହନ ଉଲ୍ଲେଖ କରିଛନ୍ତି ଯେ ତାଙ୍କ ଢେଙ୍କାନାଳ ରହଣୀରେ ସେ ରାମାୟଣ ଅନୁବାଦରେ ମନୋନିବେଶ କରିଥିଲେ । ଏହା ତାଙ୍କ ସାରସ୍ୱତ ସର୍ଜନାର ଅନ୍ୟତମ ଦିଗ, ଢେଙ୍କାନାଳରୁ ଯାହାର ଉନ୍ମେଷ ଘଟିଥିଲା । ଅବଶ୍ୟ ପରିଶେଷରେ ଏକ ବିବାଦୀୟ ଘଟଣାରେ ସେ Asst. Manager ପଦବୀରୁ ଇସ୍ତାପାଦେଇଥିଲେ ବୋଲି ଲେଖିଛନ୍ତି ।

ନାବାଳକ ରାଜା ଦୀନବନ୍ଧୁ ୧୮୮୩ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ମାଟ୍ରିକ୍ (ଏଣ୍ଟ୍ରାନ୍‌ସ୍) ପରୀକ୍ଷା ଦେଲେ । କିନ୍ତୁ ଏଥିରେ ସେ କୃତକାର୍ଯ୍ୟ ହୋଇପାରିନଥିଲେ । ୧୮୮୪ ମସିହାରେ ୧୮ ବର୍ଷ ବୟସରେ ଦୀନବନ୍ଧୁ ବଣାଇରାଜା ଇନ୍ଦ୍ରଦେବଙ୍କ କନ୍ୟା ଅନ୍ନପୂର୍ଣ୍ଣା ମହାଦେବୀଙ୍କ ପାଣିଗ୍ରହଣ କଲେ। ମହାରାଣୀ ଅନ୍ନପୂର୍ଣ୍ଣା ବିଦୁଷୀ ଓ ଧର୍ମପରାୟଣା ଥିଲେ । ରାଜା ଦୀନବନ୍ଧୁ ମଧ ପରୋପକାରୀ, ଦୟାଳୁ ଓ ଧର୍ମ ପରାୟଣ ଥିଲେ । ତେଣୁ ଉଭୟଦମ୍ପତିଙ୍କର ଆଦର୍ଶଦାମ୍ପତ୍ୟ ଓ ଗୁଣାବଳୀ ପରିଜନ ପରିଚାରଙ୍କ ଉପରେ ଗଭୀର ପ୍ରଭାବ ପକାଇଥିଲା । ବିଶେଷତଃ ଦୀନବନ୍ଧୁଙ୍କର ଦୟାଗୁଣ ଛାତ୍ରାବସ୍ଥାରୁ ଜଣାପଡ଼ିଥିଲା ।

ପର ଦୁଃଖରେ ତାଙ୍କ ହୃଦୟ ତରଳି ଯାଉଥିଲା । ଏକଦା କିଶୋର ଦୀନବନ୍ଧୁ ବିଦ୍ୟାଳୟ ଯିବା ସମୟରେ ଅକସ୍ମାତ୍ ବର୍ଷା ହେବାରୁ ଗୋଟିଏ ବୃକ୍ଷମୂଳରେ ଆଶ୍ରୟନେଲେ । ସେହି ସମୟରେ ନିକଟରେ ଥିବା ଘରେ ଗୋଟିଏ ଦରିଦ୍ର ଦଂପତି ଦୁଃଖରେ କାଳାତିପାତ କରୁଥାନ୍ତି ଏବଂ ଅଭାବ ଅନାଟନ ଯୋଗୁଁ ସ୍ତ୍ରୀଟି ତାର ସ୍ୱାମୀଙ୍କୁ ଭର୍ତ୍ସନା କରୁଥାଏ । ଦୀନବନ୍ଧୁ ସେମାନଙ୍କ ଦୁଃଖରେ ବିଗଳିତ ହୋଇ ୩୦୦ଟଙ୍କା ସାହାଯ୍ୟ କରିଥିଲେ । ଫଳରେ ସେହି ଦରିଦ୍ର ବ୍ୟକ୍ତିଟି ବ୍ୟବସାୟ କରି ସୁଖରେ ରହିଲା । ଦୀନବନ୍ଧୁଙ୍କ ସଦୃଶ ତାଙ୍କ ପାଟରାଣୀ ଅନ୍ନପୂର୍ଣ୍ଣା ମଧ୍ୟ ଦୟାଶୀଳା ଥିଲେ । ରାଜପ୍ରାସାଦର ଦାସୀ ପରିବାରି ତାଙ୍କୁ ଦେବୀତୁଲ୍ୟ ଜ୍ଞାନ କରୁଥିଲେ । ମହାରାଣୀ ଅନ୍ନପୂର୍ଣ୍ଣା କପିଳାସ ପୀଠରେ ନାରାୟଣ ମନ୍ଦିର ନିର୍ମାଣ କରି ସୁଚିକ୍କଣ କୃଷ୍ଣଶିଳା ନିର୍ମିତ ନାରାୟଣ ମୂର୍ତ୍ତି ପ୍ରତିଷ୍ଠା କରିଥିଲେ । ସେହି ନାରାୟଣଙ୍କ ପାଦପଦ୍ମରୁ ଗଙ୍ଗା ପ୍ରବହମାନା । ନାରାୟଣଙ୍କ ସେବା ପୂଜା ନିମିତ୍ତ ମହାରାଣୀ ବଣିଆପଡ଼ ବିଷ ମହୁଲଖୋଳି ଗ୍ରାମଟି ଦାନ ଦେଇଥିଲେ । ମୁକ୍ତାଦେଇପୁର ଶାସନର ପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କ ତତ୍ତ୍ୱାବଧାନରେ ନାରାୟଣ ମନ୍ଦିର ନିର୍ମାଣ ହୋଇଥିଲା । କୁଞ୍ଜକାନ୍ତ ପୋଖରୀ ମଧ୍ୟ ରାଣୀ ଅନ୍ନପୂର୍ଣ୍ଣାଙ୍କ କୀର୍ତ୍ତୀ । ସେଥିନିମିତ୍ତ କୁଞ୍ଜକାନ୍ତ ପୋଖରୀର ନାମ ଅନ୍ନପୂର୍ଣ୍ଣା ସରୋବର । ରାଜା ଦୀନବନ୍ଧୁ କପିଳାସର ଅଚିନ୍ତା ପହଣ୍ଡ, ଚଣ୍ଡୀଙ୍କ ମନ୍ଦିର ଏବଂ ବିଜେ ପ୍ରତିମାଙ୍କ ମନ୍ଦିର ନିର୍ମାଣ କରାଇଥିଲେ । ସେତେବେଳେ କପିଳାସକୁ ପାବଛ ରାସ୍ତା ବା ବାରବାଙ୍କରାସ୍ତା ନଥିଲା ଯାତ୍ରୀମାନେ ଶିଖଚଢ଼ି ପୀଠକୁ ଯାଉଥିଲେ । ଯାତ୍ରୀମାନଙ୍କ ଜଳକଷ୍ଟ ଦୂରୀକରଣ ନିମିତ୍ତ ରାଜାଦୀନବନ୍ଧୁ ଜମ୍ବକୁଣ୍ଡ (ପାପନାଶିନୀ କୁଣ୍ଡ)ର ଉଦ୍‌ବୃତ୍ତ ଜଳକୁ ସେହି ବାଟେ ପ୍ରବାହିତ କରିବାର ବ୍ୟବସ୍ଥା କରାଇଥିଲେ । ସେ ମଧ୍ୟ କପିଳାସ ଓ ସପ୍ତଶଯ୍ୟାର ନିର୍ଝର ଜଳକୁ ପ୍ରୟଃପ୍ରଣାଳୀ ଦ୍ୱାରା ସ୍ୱୀୟ ରାଜଧାନୀ ଢେଙ୍କାନାଳକୁ ଆଣିବାର ଯୋଜନା କରିଥିଲେ । ଅକାଳରେ ପରଲୋକ ଘଟିବାରୁ ସେହି ଯୋଜନା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ରାଜପ୍ରାସାଦ ଉତ୍ତରଦିଗସ୍ଥ ଜଙ୍ଗଲ ସଫାକରି ରାଜା ଦୀନବନ୍ଧୁ ଗୋଟିଏ ବଙ୍ଗଳା ନିର୍ମାଣ କରାଇ ମହୋତ୍ସବ କରାଇଥିଲେ । ସେହି ବଙ୍ଗଳାକୁ ଶାଳୁଆବଙ୍ଗଳା କୁହାଯାଉଥିଲା । ବର୍ତ୍ତମାନ ତାହା ଉପଜୀଲାପାଳଙ୍କ ସରକାରୀ ବାସଗୃହ । ପଣ୍ଡିତ

ଗୋବିନ୍ଦ ଚନ୍ଦ୍ରମହାପାତ୍ର ସ୍ୱରଚିତ ''ଭଗୀରଥ କୀର୍ତ୍ତୀକଳାପ''ରେ ରାଜା ଦୀନବନ୍ଧୁଙ୍କ ସଂପର୍କରେ ଉଲ୍ଲେଖ କରିଛନ୍ତି–

ନାମ ଦୀନବନ୍ଧୁ ଦୀନଜନ ବନ୍ଧୁ
ଅତି ପରିମଳ କାନ୍ତି,
ବାହାର ଅନ୍ତର ସମାନ ତାଙ୍କର
ହୋଇ ପିତୃ ରୂପ କାନ୍ତି ।
ପ୍ରଫୁଲ୍ଲ ବଦନବହି ଅନୁକ୍ଷଣ
ଅକ୍ରୋଧ କ୍ଷମାରେ ପୁରି,
ଶୁଶୀଳ ପଣରେ ସୁବୁଦ୍ଧି ଗୁଣରେ
ଜଣେ କି ପାଇବ ଝୁରି ।
ଆସଇ ଚିତ୍ତକୁଦୀପରୁ ଦୀପକୁ
ଲଗାଇବା ପରି ଏହି
ଶୋକ ଅନ୍ଧକାର ନାଶିବା ପ୍ରକାର
ସୁଖ ଆଲୋକକୁ ଦେଇ ।
ଅଛିକି ଯେତୁଲା ନୟନ ପିତୁଲା
ସମସ୍ତଙ୍କ ଏହି ହେଲେ,
ଆଶାକି ଭରସା ପ୍ରଜାଙ୍କର ବସା
କରିୟାଙ୍କ ଠାରେ ହେଲେ ।

ଶ୍ରୀ ଚନ୍ଦ୍ରଶେଖରଙ୍କ ପ୍ରତି ରାଜ ଦଂପତିଙ୍କର ଅଶେଷ ଭକ୍ତି ରହିଥିଲା । ରାଜା ଦୀନବନ୍ଧୁ ସତାଇଶି ଶାସନର ବ୍ରାହ୍ମଣଙ୍କୁ ବରଣକରି କପିଳାସ ପୀଠରେ ମହାରୁଦ୍ରାଭିଷେକ କରାଇଥିଲେ । ଦେବ ଦେବ ମହାଦେବଙ୍କ କରୁଣାରୁ ବିବାହର ପରବର୍ଷ ୧୮୮୫ ମସିହା ଫେବୃଆରୀ ୨୦ ତାରିଖ ପବିତ୍ର ଶିବ ଚତୁର୍ଦ୍ଦଶୀତିଥିରେ ଏକ ପୁତ୍ରସନ୍ତାନ ଜନ୍ମନେଲା । ପୁତ୍ରର ନାମ ରଖାଗଲା ''ସୁରପ୍ରତାପ''। ଦୁଃଖର ବିଷୟ, ଏହି ରାଜକୁମାରଙ୍କୁ ମାତ୍ର ଛଅ ମାସ ହୋଇଥିବା ସମୟରେ ରାଜା ଦୀନବନ୍ଧୁ ସମସ୍ତଙ୍କୁ ଶୋକସାଗରେ ଭସାଇ ୧୮୮୫ ମସିହା ଜୁନ୍ ୨୯ ତାରିଖରେ ପରଲୋକ ଗମନ କଲେ । ରାଜାଙ୍କ ମୃତ୍ୟୁ କଟକରେ ହୋଇଥିଲେ ହେଁ ଢେଙ୍କାନାଳକୁ ଶବ ଅଣାଯାଇ ରାଜକୀୟ

ମର୍ଯ୍ୟାଦାରେ ମଡ଼ାଦେଉଳଠାରେ ଶବ ସଂସ୍କାର କରାଗଲା । ରାଜାଙ୍କ ମୃତ୍ୟୁରେ ସମଗ୍ର ଢେଙ୍କାନାଳ ରାଜ୍ୟ ତଥା ଓଡ଼ିଶାରେ ଶୋକର ଛାୟା ଖେଳିଗଲା । ଯୁବକରାଜା ଦୀନବନ୍ଧୁଙ୍କ ବିୟୋଗରେ ଉତ୍କଳଦୀପିକା ପତ୍ରିକା "ଢେଙ୍କାନାଳର ଦୁର୍ଦ୍ଦଶା" ଶିରୋନାମାରେ ଯେଉଁ ଶୋକସମ୍ବାଦ ପ୍ରକାଶ କରିଥିଲା । ତାହା ନିମ୍ନରେ ପ୍ରଦତ୍ତ ହେଲା ।

"ଅଦ୍ୟ ମହାରାଜା ଦୀନବନ୍ଧୁ ମହୀନ୍ଦ୍ର ବାହାଦୂରଙ୍କ ସ୍ୱର୍ଗାରୋହଣରେ ଚତୁର୍ଦ୍ଦିଗ ଅନ୍ଧକାର, ଚତୁର୍ଦ୍ଦିଗ ହାହାକାର ଏବଂ କ୍ରନ୍ଦନଧ୍ୱନିରେ ଆକାଶମାର୍ଗ ପ୍ରତିଧ୍ୱନିତ ହେଉଅଛି । "ହାୟ କିହେଲା କିହେଲା କି ଘଟିଲା" ଏହି ଶବ୍ଦ କେବଳ ସମସ୍ତଙ୍କ ମୁଖରୁ ନିର୍ଗତ । କେହି କେହି କିଛି କହିନପାରି ଏକାବେଳେକେ ମୂର୍ଚ୍ଛା ପ୍ରାୟ । କେହିବା ଅଶ୍ରୁପୂର୍ଣ୍ଣ ଲୋଚନ ଏବଂ ଆକୁଳିତ ହୃଦୟରେ ଗଦଗଦ ହୋଇ ଉଚ୍ଚସ୍ୱରରେ ବିଧାତାକୁ ନିନ୍ଦାକରି କହୁଅଛି "ରେ ନିଷ୍ଠୁର ବିଧାତଃ ଯାହାକୁ ଲକ୍ଷ ଲକ୍ଷ ଜୀବନ ଆଶ୍ରାକରି ଏବଂ ଆଶାଲତାକୁ ବହୁଦୂର ପର୍ଯ୍ୟନ୍ତ ବିସ୍ତୁତକରି ଚାତକ ପ୍ରାୟ ଚାହିଁ ବସିଥିଲୁଁ, ଯେକି କାଲି ରାଜସିଂହାସନୋପରି ରାଜାଭିଷେକ ହୋଇ ରାଜ୍ୟଆଲୋକିତ କରି ଯଶପତାକା ଉଡ଼ାଉଥାନ୍ତା, ଯେକି ଓଡ଼ିଶାର ମୁଖମଣ୍ଡଳ ଜାଜ୍ଜଲ୍ୟମାନକରି ନିଦର୍ଶନ ସ୍ୱରୂପ ହୋଇଥାନ୍ତା, ଆଜି ତାହାର ଜୀବନ ନେଇ ମନକାମନା ପୂର୍ଣ୍ଣକଲୁ । ପ୍ରଭୁ ! ତୁମ୍ଭର ଦୟାମୟ ନାମର କି ଏହି କାର୍ଯ୍ୟ, ତୁମ୍ଭ ଘରର କି ଏହି ବିଚାର । ବର୍ତ୍ତମାନ ନିରୀହ ପ୍ରାଣୀମାନଙ୍କର ଯେଉଁ ଆର୍ତ୍ତନାଦ ଏବଂ ଯେଉଁ କୋଳାହଳ ଧ୍ୱନିତ ତାହାକି ତୁମ୍ଭ କର୍ଣ୍ଣ ପଥରେ ପତିତ ହେଉନାହିଁ । ଏହିମାତ୍ର କହି ବାକ୍‌ଶକ୍ତି ବିହୀନ ଏବଂ କଣ୍ଠଶୁଷ୍କ ହୋଇ ଭୂମିରେ ଗଡୁଅଛି । କେହି ବା ହାୟ ! ପ୍ରାଣନାଥ, ତୁମ୍ଭର ଲାବଣ୍ୟମୂର୍ତ୍ତି, ପ୍ରଫୁଲ୍ଲ ଆନନ, ହର୍ଷୋତ୍‌ଫୁଲ୍ଲ ଲୋଚନ ଦର୍ଶନକରି ଆଉକି ନେତ୍ର ପବିତ୍ର କରିବୁ । ଆଉକି ଏ ଜନ୍ମରେ ତୁମ୍ଭର ମୃଦୁ ମୃଦୁ ହାସ୍ୟରେ ମଧୁର କଣ୍ଠର ମିଷ୍ଟବାକ୍ୟ ଏତାପିତ ପ୍ରାଣକୁ ଶୀତଳ କରିବ ? ଏତିକି କହି ଉଚ୍ଚସ୍ୱରରେ ରୋଦନ । ବାସ୍ତବରେ କହିବାକୁ ଗଲେ ବୃଦ୍ଧମହାରାଜାଙ୍କର ସ୍ୱର୍ଗାରୋହଣରେ ଲୋକଙ୍କର ଏତେଦୂର କଷ୍ଟ ହୋଇନଥିଲା, କାରଣ ସେତେବେଳକୁ ଯୁବରାଜାଙ୍କର ୧୨ ବର୍ଷ ବୟସ । ଆଶାଥିଲା ଯେ ଈଶ୍ୱର ରଖିଥିଲେ କାଲିକି କାଲି ନୂତନ ରାଜା ଆଉ ତାଙ୍କ ଯୌବନାବସ୍ଥାରେ ନବ ନବ ଉତ୍ସବ ଏବଂ

ସମାରୋହମାନ ଦେଖିବାଦ୍ୱାରା ଆପଣା ଜୀବନକୁ ଚରିତାର୍ଥକରି ମାନବଜନ୍ମ ସାର୍ଥକ କରିବା, ଏହି ଇଚ୍ଛାରେ ଦିନ ଗଣି ଗଣି ମହାରାଜାଙ୍କ ସହିତ ଆମୋଦ ପ୍ରମୋଦରେ କାଳାତିପାତ କରି ଆସୁଥିଲେ । କିନ୍ତୁ ବର୍ତ୍ତମାନ ବିଧାତାର ଏମନ୍ତ ଦୁର୍ଘଟନା ଦେଖି ଅଗାଧ ଦୁଃଖ ସୁମଦ୍ରରେ ପଡ଼ି କିଛି ସ୍ଥଳ କୂଳ ନପାଅଇ ପ୍ରତିନିଃଶ୍ୱାସରେ ସକଳ ଆବାଳବୃଦ୍ଧ ବନିତା ଯେପରି ଦୀର୍ଘନିଶ୍ୱାସ ପରିତ୍ୟାଗକରି ରୋଦନ କରୁଅଛନ୍ତି ତାହା ଶୁଣେ କିଏ ? କିଏ କାହାକୁ ଆଶ୍ୱାସବାକ୍ୟ ପ୍ରୟୋଗଦ୍ୱାରା ଦଗ୍ଧ ଏବଂ ଆକୁଳିତ ହୃଦୟକୁ ଶୀତଳ କରିବ, କ୍ଷମତା କାହାର ? ବର୍ତ୍ତମାନ ମହାରାଜାଙ୍କୁ ମୃତଦିବସ ନେଇ ବ୧୯/୬/୧୦ ବୟସ ହୋଇଥିଲା । ୨୨ବର୍ଷ ଆଦ୍ୟରେ ରାଜ୍ୟଭାର ଗ୍ରହଣ କରିଥାନ୍ତେ ଏତେବେଳେ ଦଇବର ଏମନ୍ତ ପାଞ୍ଚହେଲା । ଏପରି ଅଳ୍ପ ବୟସରେ ତାଙ୍କର ଯେପରି ସମସ୍ତ ନିର୍ମଳମନ, ସତ୍ ଅନ୍ତକରଣ, ସରଳ ହୃଦୟ, ଆଉ ଯେପରି ସର୍ବସାଧାରଣଙ୍କ ପ୍ରତି ସମଦୃଷ୍ଟିର ପରିଚୟ ମିଳୁଥିଲା, ଯେପରିକି ସହିଷ୍ଣୁତା, ଧୈର୍ଯ୍ୟଶୀଳ ଏବଂ ଉଦାରତାଭାବ କ୍ରମେ କ୍ରମେ ବୃଦ୍ଧିହୋଇ ଆସୁଥିଲା, ତାହା ଲୋକେ ଦେଖି ଚମତ୍କାର ହେଉଥିଲେ । ଯୌବନାବସ୍ଥାରେ ସାଧାରଣର ଯେପରି ଅନିଷ୍ଟକର ଚାଞ୍ଚଲ୍ୟ ଓ ବୈଷମ୍ୟ ଦେଖାଯାଏ ସେ ସବୁ ତାହାଙ୍କଠାରେ ଦେଖାଯାଉନଥିଲା । ମନମଧ୍ୟରେ ଅନେକ ବିଚାର କରିକରି ଚଳୁଥିଲେ। ଦିନକର ଗୋଟିଏ ସାମାନ୍ୟକଥା ନକହି ସ୍ଥିରହୋଇ ରହିପାରିଲି ନାହିଁ । ଏକଦିନରେ ଦୁଇଚାରିଜଣ ପ୍ରଜା ଛାମୁଙ୍କ ଦେଖାକରିବାକୁ ଯାଇଥିଲେ । ସେମାନେ ବାରଣ୍ଡାରେ ବସି କଥୋପକଥନ ହେଉଁ ହେଉଁ କିଛି ଗୋଳମାଳ ହୋଇଉଠିଲା, ତହୁଁ ଦରଓ୍ୱାନମାନେ ସେମାନଙ୍କୁ ବାହାର କରିଦେଲେ । ମହାରାଜା ଏ ସମ୍ବାଦ ପାଇବାମାତ୍ରେକେ ପ୍ରଜାମାନଙ୍କୁ ନିଜେ ଡାକି କିୟତ୍‌କାଳ ସେମାନଙ୍କ ସଙ୍ଗେ ମିଷ୍ଟାଳାପକରି ଛାଡ଼ିଦେଲେ ଏବଂ ଦରଓ୍ୱାନ୍‌ମାନଙ୍କୁ ବୁଝାଇ ଦେଇକହିଲେ ଦେଖ ସେମାନେ କେତେ଼ ଆଶାରେ ଆମ୍ଭପାଖକୁ ଦୁଃଖ ଜଣାଇବା ପାଇଁ ଆସିଅଛନ୍ତି । ତୁମ୍ଭେମାନେ ଯେବେ ସେମାନଙ୍କ ପ୍ରତି ଏପରି ନିଷ୍ଠୁର ବ୍ୟବହାର କରିବ ତାହାହେଲେ ସେମାନଙ୍କ ମନରେ କେତେ କଷ୍ଟହେବ ଏହା ତୁମ୍ଭେମାନେ ବୁଝିପାରୁନାହଁ । ଅତଏବ ଆଉ ଏଣିକି ଯେପରି ତୁମ୍ଭମାନଙ୍କର ସେପରି ମନ୍ଦବ୍ୟବହାର ଦେଖାନଯାଏ ସେଥିପ୍ରତି ସାବଧାନ ହେବ ।''

ଓଡ଼ିଶାର ତତ୍‌କାଳୀନ ସୁନାମଧନ୍ୟ ପଣ୍ଡିତଗୋବିନ୍ଦ ରଥ ରାଜା ଦୀନବନ୍ଧୁଙ୍କ ବିୟୋଗର ''ଉତ୍କଳ ଦୀପିକା''ରେ ନିମ୍ନୋକ୍ତ ଶୋକଗାଥା ଲେଖିଥିଲେ ।

''କିଶୁଣୁଛ ସବୁ ଉତ୍କଳ ସନ୍ତାନ, ପଡ଼ିଲା ମସ୍ତକେ ଘୋର ବଜ୍ରବାଣ ।
ଦୀନବନ୍ଧୁ ଦୀନଜନର ପରାଣ, ଏ ଭୂଲୋକରେତ ନାହିଁ ଆଉରେ ।
ଉତ୍କଳ ପ୍ରାଙ୍ଗଣ କରି ଅନ୍ଧକାର, କେହି କାର ନୁହେଁ ଅଳୀକ ସଂସାର ।
ଏହି କଥା ଗୋଟି କରିଣ ପ୍ରଚାର, ଢେଙ୍କାନାଳ ନାଥ ଗଲେ କାହିଁରେ ।
ରେ ନିଷ୍ଠୁର ଯମ ଏକି ଆଚରଣ, କୁସୁମ ଉଦ୍ୟାନେ କରିଣ ଭ୍ରମଣ ।
କି କୁସୁମକଳି କଲୁରେ ହରଣ, ଅସହ୍ୟ ଯାତନା ହୃଦୟେ ବହେ ।
ଯାହାର ସୁଗନ୍ଧ ପୁରନ୍ତା ଭାରତ, ମହକି ଉଠନ୍ତା ଏଦିଗ ଦିଗନ୍ତ ।
ସେ କଳିକା ମୋର ନେଲୁରେ କୃତାନ୍ତ ମାନବ ଦେହେକି ଏକଥା ସହେ ।
କେତେ ଭବିଷ୍ୟତ ଆଶାଯେ ମୋହର,କଲୁରେ ବିଧାତା ସବୁ ନାରଖାର ।
ବୁଡ଼ିଲା ଜାହାଜ ଘୋର ପାରାବାର, ଅସୀମ ଅଗାଧ ଅନନ୍ତ ଜଳେ ।
ଆଉ ଏ ଜୀବନେ ଅମୂଲ୍ୟ ଜାହାଜ, ଉଠାଇବା ପାଇଁ ନାହିଁ କିଛି ସାଜ ।
ଆହା ଆହା ମୋର ଢେଙ୍କାନାଳ ରାଜ, ଉପାୟ ଥିଲେ ମୁଁ ଖୋଜନ୍ତୀ ବଳେ ।
କିକଲେ ସେ ତବ କର୍ମଚାରୀ ଗଣ, ଦେଶୀୟ ଚିକିତ୍ସା ଦେଲେ ବିସର୍ଜନ ।
ବିଲାତି ଚିକିତ୍ସା ଭାରତ ସନ୍ତାନ, ସହିବାର ନୁହେ ବିଧିବିଧାନ ।
ଯେ ଧାତୁରେ ପିଣ୍ଡ ହୋଇଛି ଗଠନ, ଯେ ଅନ୍ନେ ଏ ଦେହ ହୋଇଛି ବର୍ଦ୍ଧନ ।
ଯେଉଁ ଜଳବାୟୁ ଶରୀର ସ୍ପର୍ଶନ, କରେ ତାହା ମନେ ନହେଲେ ସ୍ଥାନ ।
ବଜ୍ରଗତିକାଳ ଦେଶୀ ଚିକିତ୍ସକ, ଚାହିଁ ପରସ୍ପରେ ହୋଇ ଦକ ଦକ ।
ଅନାଦର ଦେଖି ବହଇ ଲୋତକ, ବୃଥାରେ ନିଦାନ ମାଧବ କର ।
ବଡ଼ଲୋକ ହେଲେ ପୀଡ଼ାରେ କାତର, ଆସିବେ ବିଦେଶୀ ଗୋରା, ଡାକତର ।
ରାଜକର୍ମଚାରୀଙ୍କର ଏ ବିଚାର, ଲୁଚ କବିରାଜ ଗମ୍ଭାରୀ ଘର ।
କେଉଁ କୁକ୍ଷଣରେ କଲ ଆଗମନ, ଢେଙ୍କାନାଳ ଦୁର୍ଗ କରି ବିସର୍ଜନ ।
ଦୁର୍ଗ ମହାମାରୀ ଭୟ କି କାରଣ, ଏ ରାକ୍ଷସଜ୍ୱର ଘୋଟିଲା ଆସି ।
ଦେହୀ ହେଲେ ରୋଗ ଅଟଇ ନିଶ୍ଚୟ, ଏ କଥାରେ ନାହିଁ ମନରେ ସଂଶୟ ।
କେତେକ ଲଭନ୍ତି ଆରୋଗ୍ୟ ଅଭୟ, ନଗଲା ଦେଲାକ ଗ୍ରାସୀ ।

ଖେଳୁଥିଲା ଦିନେ ନାନା ରସ ରଙ୍ଗେ, ଶ୍ରୀ ନନ୍ଦକିଶୋର ପୂର୍ଣ୍ଣବାବୁ ସଙ୍ଗେ ।
କେଡ଼େ ବଡ଼ ସ୍ଫୂର୍ତ୍ତି ଦେଖୁଥିଲେ ଅଙ୍ଗେ, ଏହି କାଠଯୋଡ଼ି ନଦୀର ଘାଟେ ।
ସେ ଅମୂଲ୍ୟ ଦେଇ ପଡ଼ିଣ ବିଭଙ୍ଗେ, ମୃତ୍ତିକା ସମାନ ମିଶେ ମାଟି ସଙ୍ଗେ ।
କଟକ ଛାଡ଼ିଣ ଢେଙ୍କାନାଳ ଦୁର୍ଗେ, ଶବରୂପେ ଆଜି ଚଳିଲା ବାଟେ ।
ହେ ନୃପ ତୁମ୍ଭର ଶବ ଦରଶନ, କରି କଳରବେ କରନ୍ତି କ୍ରନ୍ଦନ ।
ଢେଙ୍କାନାଳ ବନଚାରୀ ପକ୍ଷୀଗଣ, ଏ ଶୋକ ଆବେଗ ସହି ନପାରି ।
କଳଧ୍ୱନିକରି ନଦୀ ଜଳ ଚଳେ, ନୁହେ କଳଧ୍ୱନି କାନ୍ଦଇ ବିକଳେ ।
କମ୍ପନ୍ତି ସପତ୍ରେ ବିଟପୀ ସକଳେ, କହୁଛି ଏକଥା ନିଶ୍ଚୟ କରି ।
ଲୋଡ଼ୁଛନ୍ତି ତବ ମୁଖ ଦରଶନ, କଟକ କଲେଜ ସହଧ୍ୟାୟୀଗଣ ।
ଦେଖଇ ତାଙ୍କର ବିଷାଦ ଆନନ, ଆସିବକି ଥରେ ଦେଖିବା ପାଇଁ ।
ଆଉକି ତୁମ୍ଭର ମସ୍ତକ ନମନ, ଦେଖିଣ ସୁଯୋଗ୍ୟ ଉପାଧ୍ୟାୟ ଗଣ ।
ଆଶୀର୍ବାଦ କରି ହେବେ ହୃଷ୍ଟମନ, ହାସ୍ୟ ପୂର୍ଣ୍ଣମୁଖ ଚନ୍ଦ୍ରକୁ ଚାହିଁ ।
ଆସ ଢେଙ୍କାନାଳ ପରଜାସକଳ, ପଧାନ ପାଇକ ସୈନ୍ୟ ଦଳବଳ ।
ନେତ୍ରରେ ଲୋତକ କରି ଢଳ ଢଳ, ମୃତ ମହାରାଜ ଦେଖରେ ଥରେ ।
ରାଜାଙ୍କର ବ୍ରତ ବିବାହ କାଳରେ, ଯେ ଉତ୍ସବ ସୁଖ ଲଭିଛ ମନରେ ।
ଶୋକଚିହ୍ନ ସବୁ ଧରି କଳେବରେ, ଶତଗୁଣେ ତାହା ଫେରାଅବାରେ ।
ପ୍ରକାଣ୍ଡ ଶରୀର ଚୁମ୍ବିଛି ଭୂତଳ, ମତ କରୀଅବା ପଡ଼ିଛି ଅଚଳ ।
ବିକୃତ ବଦନ ଦିଶୁଛି କରାଳ, ମୁଖ ଶ୍ରୀ ଅନ୍ତର ହୋଇଛି ଏବେ ।
ଏ ଶୋକକି କେବେ କରିଛ ଧାରଣ, କହିବାରେ ମୋତେ ଦୁଃଖୀ ପ୍ରଜାଗଣ ।
ଥିଲେ ତୁମ୍ଭ ଭାଗ୍ୟ ସୁଖର ବିଧାନ, ଅନ୍ତର ହୁଅନ୍ତେ ନୃପତି କେବେ ।
ଶରଚନ୍ଦ୍ରେ ହେଲେ କଳା ଆବରଣ, ଯେସନେରେ ମ୍ଳାନ ତାହାର କିରଣ ।
ତେସନେ କାଳିମା ଧରିଛି ବଦନ, ମରିଯାଏଁ ବିନା କି ରୂପ ଛବି ।
ବିଂଶତି ବର୍ଷରେ କରି ପଦାର୍ପଣ, ହରାଇଲ ବୀର ଯୁବକ ଜୀବନ ।
ଭସାଇଲ ଆହା ଏ ନାରୀ ରତନ, କି.ଗାଇବେ ଦୁଃଖ କାହାଣୀ କବି ।
ନୃପତିଙ୍କ ଗୁଣ କରିବା ସ୍ମରଣ, ଅକାରଣ ଏହି ପ୍ରଳାପ ବଚନ ।
ଗତ ସଙ୍ଗେ ଆଉ ନାହିରେ ମିଳନ, ପ୍ରକୃତି ନିୟମ ଅକାଟ୍ୟବାଣୀ ।
କର ଆଶୀର୍ବାଦ ହେ ବିଶ୍ୱକାରଣ, ନୃପତି କରନ୍ତୁ ସ୍ୱର୍ଗ ଆରୋହଣ ।

ଦରିଦ୍ର ସଂଙ୍ଖାଳି ଶିଶୁର ବଦନ, ଚାହିଁଣ ରହନ୍ତୁ ବିଧବା ରାଣୀ।

ମହାରାଜା ଦୀନବନ୍ଧୁ ମୃତ୍ୟୁରେ ତତ୍‌କାଳୀନ ମାସିକ ପତ୍ରିକା ''ଶିକ୍ଷବନ୍ଧୁ'' ମଧ୍ୟ ଶୋକଗାଥା ପ୍ରକାଶ କରିଥିଲେ ।

''ପଡ଼ିଲା ଚହଳ ରାତ୍ରିକାଳରେ କଟକ ନଗର ଅନ୍ତରାଳରେ
ଛାଡ଼ିଏ ଜଗତ, ପରଲୋକ ଗତ, ଢେଙ୍କାନାଳନାଥ ହା ଅକାତରେ
ବେଳ ବୁଡ଼ିଗଲା, ଉଷାକାଳରେ ।୧।
ଦୀନବନ୍ଧୁ ଦୀନ ବାନ୍ଧବସମ, ସର୍ବ ଆଶା ଦୀପ୍ତି ବର୍ଦ୍ଧନେ କ୍ଷମ
ଉତ୍କଳ ଗଗନେ, କେଡ଼େ ସୁଶୋଭନେ, ଉଇଁଥିଲ ଦଶା ହେଲା ଚରମ
ଅକାଳେ ଘଟିଲା ଦାରୁଣ ତମ।୨।
ଆହାକି କୋମଳ ଯୁବା ବୟସ, ବଂଶତିକି କରିଥିଲା ପରଶ
ଧର୍ମରାଜ ନାମ, ଏକ କଲୁକାମ ରେ ନିଷ୍ଠୁର ଯମ । ଏହି ତୋ ଯଶ
ପୋଡ଼ିଦେଲୁ କେତେ ଲୋକ ହରଷ।୩।
ବିକଶିତ ହୋଇ ପାଇ ଯତନ ଆସୁଥିଲା ସଦଗୁଣ ସୁମନ
(ସୌଜନ୍ୟ ବିନୟ ଦୟାଦି ନିଚୟ)ବାସ ଚହଟିବା କାଳେ ଏସନ
ଦୁର୍ଯୋଗ ଦଇବ କଲା ଘଟନ।୪।
ତୁମ୍ଭ ଦୟା ଭକ୍ତି ଗୁଣ ସ୍ମରଣେ ବିକଳ ହୁଅନ୍ତି ସରବ ଜନେ
ଦୁଃଖୀ ଧନୀମାନେ, କିରଣ ସ୍ନେହ ଦାନେ, ଥିଲେ ଯେ ଭାଷନ୍ତି କ୍ରନ୍ଦନ ସ୍ୱନେ
ରାଜା ହୋଇଗର୍ବ ନଥିଲା ମନେ ।୫।
ନିକଟରେ ହୋଇଥିଲେ ରାଜନ ନୁହନ୍ତି ବା କାହା ସ୍ନେହ ଭାଜନ
ଆବାଳ ବନିତା କରୁଛନ୍ତି ଚିନ୍ତା କେମନ୍ତ ସେ ସର୍ବ ମନୋହରଣ ।
କରିଥିଲା ଜଣା ନୋହେ କାରଣ ।୬।
ଜଳପନ୍ତି କେତେ ବିଳାପୀଦଳ ଏହା ଡାକତରୀ ଚିକିତ୍ସାଫଳ
କିନ୍ତୁ ଶେଷଦିନ, ହେଲେ କି ପ୍ରବୀଣ, କାହାକୁ ରଖିବ କରିକୌଶଳ
ସର୍ବକାର୍ଯ୍ୟେ ବିଧି ବିଧି ପ୍ରବଳ ।୭।
ଗଡ଼ବିଜେକାଳେ ରାଜାଙ୍କ ସଙ୍ଗେ, ଯେଉଁ କର୍ମଚାରୀମାନେ କିରଙ୍ଗେ
ଚଢ଼ିଥାନ୍ତି ହାତୀ, ଫୁଲାଇଣ ଛାତି, ଭାସୁଥାନ୍ତି ମୋଦ ସିନ୍ଧୁ ତରଙ୍ଗ,
ସେହିମାନେ ଆଜି କେଡ଼େ କିରଙ୍ଗେ ।୮।

ଶ୍ଳୋକ ଶୁଷ୍କ ମୁଖେ ସେ ରାଜଶବ, ଘେନିଣ ଗଡ଼କୁ ଚଳିଲେ ଜବ
କଲେ କୋଳାହଳ, ପରଜାସକଳ, ଉଠିଲା ଦୁଃସହ କ୍ରନ୍ଦନରବ
ଢେଙ୍କାନାଳ ହେଲା ବିଗତଧର୍ବ ।୯।
କାନ୍ଦନ୍ତି ଯେତେକ ନଅରବାସୀ, ଗୁଣ୍ଡହୋଇ ପ୍ରଜାକାନ୍ଦନ୍ତି ଆସି
ଏ ଡାଳରୁ ଖସି, ସେ ଡାଳରେ ବସି, କାନ୍ଦନ୍ତି ବିକଳେ ବିହଙ୍ଗରାଶି
ଢେଙ୍କାନାଳ ଯାଏ ଶୋକରେ ଭାସି ।୧୦।
ବୃକ୍ଷ ଲତା ଆଜି ହୋଇ କାତର, କାନ୍ଦନ୍ତି ନିଶ୍ଚୟ ପୁଷ୍ପପତର
ଝଡ଼ିଣ ପଡ଼ଇ, ବନଜନ୍ତୁ ତହିଁ ହୁଅନ୍ତି ବିଶେଷ ଆକୁଳ ଭରା
କାଳଧ୍ୱନି ଶୁଣି ପ୍ରତି ଗ୍ରାମର ।୧୧।
ଭଗୀରଥ ନାମ ସାର୍ଥକ କରି, କୁଳ ଉଦ୍ଧାରକୁ ନୃପକେଶରୀ
ଆଣିଥିଲେ ପୁତ୍ର, ସୁଚାରୁ ଚରିତ୍ର, ଆହା ଛାଡ଼ି ଗଲେ କି ବେଗଧରି
ପରକାଳ-ସିନ୍ଧୁଗର୍ଭ ବିହରି ।୧୨।
ତୁମ୍ଭ ଲୀଳାମାର୍ଗ ଶୁଷ୍କ ସରିତ ତହିଁ ରାଜରାଣୀ ମୀନପରିତ
ଛଟପଟ ହୋଇ ଅବନୀରେ ଶୋଇ କାନ୍ଦି କାନ୍ଦି ହୋଇଛନ୍ତି ମୂର୍ଚ୍ଛିତ
ତଥାପିତ ହୋଇଅଛ ନିଦ୍ରିତ ।୧୩।
ପନ୍ଦର ବର୍ଷୀୟା ନାରୀ ମାତର, କି ଜାଣନ୍ତି ଅବା ଏ ଜଗତର
ରାଜକନ୍ୟା ଥିଲେ ରାଣୀ ଯେ ହୋଇଲେ, ତାଙ୍କୁ ପୁଣି ଏଡ଼େ ନିଷ୍ଠୁରତର
ଦୁଃଖ ଦେଲା ବିଧି-ଛାତି ପଥର ।୧୪।
ଉଠି ଦେଖତବ ଶିଶୁନନ୍ଦନ ମାତା ମୁଖ ଚାହିଁ କରେ କ୍ରନ୍ଦନ
ଯାହା ଜନ୍ମଦିନ, ବସ୍ତ୍ର, ରତ୍ନ, ଧନ, କେତେ କରିଥିଲ ଯେ ବିତରଣ
ଏବେ କିଂପା ଏଡ଼େ ନିର୍ଦ୍ଦୟ ପଣ ।୧୫।
ପରଜାଏ ଗ୍ରୀଷ୍ମକାଳ ଚାତକ ପରି ଚାହିଁଥିଲେ ହୋଇ ଆତଙ୍କ
ନେଲେ ରାଜ୍ୟଭାର କହି ଦୁଃଖବାର ସୁଖୀ ହୋଇଥାନ୍ତେ ତାଙ୍କ ପାତକ
ଫଳରେ ନୋହିଲେ ଏତେ ମାତ୍ରକ ।୧୬।
ଈଶ୍ୱରଙ୍କ ଇଚ୍ଛାକେ ପାରେକଳି କେବେ ଘଟଇ କି ଘଟଣାବଳୀ
କି ଆନନ୍ଦ ନୃତ୍ୟେ, ସେ ମଙ୍ଗଳକୃତ୍ୟେ କାଲି ରାଜ୍ୟ ଯାଉଥିଲା ଚହଲୀ
ଆଜିଗଲା ପୁଣି ଶୋକରେ ଜଳି ।୧୭।

କାଲି ପୁତ୍ରଧନ ହୋଇ ପ୍ରାପତ ଯେହୁ ହୋଇଥିଲେ ଆନନ୍ଦେ ମତ୍ତ
ଲାଗଇ ତାଟକା, ସଲିଳ ଫୋଟକା, ପରିଦ୍ୱରିତେ ସେ ଆଜି କେମନ୍ତ
କାଳସ୍ରୋତ ଗର୍ଭେ ହେଲେ ଗୁପତ ।୧୮।
ଆହେ ପ୍ରେମମୟ କରୁଣାକର, ବିଶ୍ୱଲୀଳା ସୂତ୍ରଧର ଈଶ୍ୱର
ରାଜାଙ୍କୁ ତୁମ୍ଭର ପ୍ରେମ କ୍ରୋଡେଧରପତିହୀନା ରାଣୀ ଦଗ୍ଧ ଅନ୍ତର
ଚରଣାମୃତରେ ଶୀତଳ କର ।୧୯।
ଦୀର୍ଘଜୀବୀ କର ରାଜକୁମରେ ଯେ ଦ୍ୱିତୀୟାଚନ୍ଦ୍ର ଶୋଭାକୁ ଧରେ ।
ହୋଇ ପୂର୍ଣ୍ଣତର, ଢେଙ୍କାନାଳର ଆଶା ଚକୋରକୁ ତୋଷନ୍ତୁଖରେ
ଏହି ମୋ ପ୍ରାର୍ଥନା ତବ ପୟରେ ।୨୦।''

ଦୀନବନ୍ଧୁଙ୍କ ବିୟୋଗରେ ବିଭିନ୍ନ, ପତ୍ରପତ୍ରିକା ଶୋକସମ୍ବାଦ ଓ ଶୋକଗାଥା ପ୍ରକାଶ କରିବା ସହିତ ବିଭିନ୍ନ ସ୍ଥାନରେ ଶୋଭସଭା ମଧ୍ୟ ଅନୁଷ୍ଠିତ ହୋଇଥିଲା । ଢେଙ୍କାନାଳର ପଣ୍ଡିତ ରାମଚନ୍ଦ୍ରନନ୍ଦ ଶୋକାତୁର ହୋଇ ଲେଖିଥିଲେ –

''ଆସାର ଜୀବନ ଥାଉ ଆଉ କିସ କରିବ,
ଦୀନବନ୍ଧୁ ଦୀନବନ୍ଧୁ ବୋଲି ସଦା ଝୁରିବ । ଘୋଷା''
ଯାମିନୀ ବିଦାୟକାଳେ ଉଷାର ଉଦୟ 'ବେଳେ
ଦେଖି ଦୀନବନ୍ଧୁ ଦୀନବନ୍ଧୁ ମନେ ପଡ଼ିବ ।୧।
ବିହଙ୍ଗମଗଣ ଯେବେ ଗାଇବେ ମଧୁର ରବେ
ଦୀନବନ୍ଧୁ ମଧୁଭାଷା କର୍ଣ୍ଣ ତହୁଁ ଶୁଣିବ ।୨।
ଉତ୍କଳ ଜନନୀ କେତେ ଆଶା କରିଥିଲା ତୋତେ
ଟେକି ମୁଖ, ଏବେ ଦୁଃଖ, କାହା ଆଗେ କହିବ । ୩।
ତାହାର ଦୁର୍ଦ୍ଦଶା ଦେଖି କିଏ ଆଉ ହେବ ଦୁଃଖୀ
ଘୁଞ୍ଚାଇବା ପାଇଁ ତାହା କାହା ମନ ବଳିବ ।୪।
ଅକିଞ୍ଚନ ଦୁଃଖୀଜନ ଦେଖି ଦ୍ରବିବ କାମନ
ଧନଦାନେ ତାଙ୍କ କଷ୍ଟ କିଏ ଦୂର କରିବ ।୫।
ଯୁବରାଜ ଛମାସିଆ ରାଣୀ ପନ୍ଦର ବର୍ଷୀୟା
ସେମାନଙ୍କୁ ଦୁଃଖାର୍ଣ୍ଣବୁ କିଏ ଆଉ ତାରିବ।୬।

ଗରିବ ପ୍ରଜାଗୁହାରି ଶୁଣିବ କେ କର୍ଣ୍ଣଡେରି
ଶୋକେ ଭାଷେ ରାମ କାହା ଆଗେ ଅଳି କରିବ ।୭।

ଦୀନବନ୍ଧୁ ବିୟୋଗରେ ନାରୀକବି ସୁଲକ୍ଷଣା ପଟ୍ଟନାୟକ ''ଦୀନବନ୍ଧୁ କୋଇଲି'' ନାମରେ ଗୋଟିଏ ଶୋକକବିତା ରଚନା କରିଥିଲେ ।

କୋଇଲି କପାଳରେ ଏହାଥିଲା କଟକ ଘେନାଇ ଗଲା ।
ଦଶମାସ ରାଣୀ ଗର୍ଭର ଧଇଲେ
ମୁଖ ଦେଖାଇ ନଦେଲା ଲୋ କୋଇଲି ।୧।
କୋଇଲି, ଖରେ ଘେନିଗଲା ବିହି ଖଣ୍ଡ ତପସ୍ୟା ଅଟଇ
ହରିହର ସେବା ପୂର୍ବେ କରିନାହୁଁ
ରାଜାଙ୍କୁ ସେବିକା କାହିଁ ଲୋ କୋଇଲି।୨।
କୋଇଲି, ଗଲାବେଳେ ନୃପବର କୁମର ଧଇଲା କର
ଛଳ ଛଳ ମନ ଦକ ଦକ ହୋଇ
ନେତ୍ରୁ ବହେ ନୀର ଧାର, ଲୋ କୋଇଲି ।୩।

× × ×

କୋଇଲି, ଲକ୍ଷେ ଚନ୍ଦ୍ର ଏକକରି ଶ୍ରୀମୁଖସ୍ଥ ଯିବେ ହାରି
ଏଡ଼େ ଶୁଭ୍ର ରୂପ ଅନ୍ତର ହୋଇଲା
ପ୍ରାଣ ନଗଲା ବାହାରି, ଲୋ କୋଇଲି ।୨୮।
କୋଇଲି, ବହୁତ ବୁଦ୍ଧିତାଙ୍କର କହିପାରେ କି ମୋ ଛାର
କୁମରମଣି ଯେବେ ରାଜା ହୋଇବ
ସବୁ ଦୁଃଖଯିବ ପାର, ଲୋ କୋଇଲି ।୨୯।

କୋଇଲି ଶୋକ ଗାଥାଟିଅତୀବ କରୁଣ ରସସିକ୍ତ। ସୁଲକ୍ଷଣା ଥିଲେ ରାଜମନ୍ତ୍ରୀ ନିତ୍ୟାନନ୍ଦ ପଟ୍ଟନାୟକଙ୍କ ସହଧର୍ମିଣୀ । ସେ ଦୀନବନ୍ଧୁ କୋଇଲି ସମେତ ''ପାରିଜାତ ମାଳା'' ନାମକ ଖଣ୍ଡକାବ୍ୟ ରଚନା କରିଥିଲେ । କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନ ନାରୀକବି ସୁଲକ୍ଷଣାଙ୍କର ପ୍ରଶଂସା କରିଯାଇଛନ୍ତି । ପାରିଜାତ ମାଳା କାବ୍ୟଟିକୁ ସୁଲକ୍ଷଣା ଅଳତାରେ ପିଞ୍ଛବୁଡ଼ାଇ କାନ୍ଥରେ ଲେଖିଥିଲେ । ତଦୀୟପୁତ୍ର ତଥା ଦେଓ୍ୱାନ୍ ଦାମୋଦର ପଟ୍ଟନାୟକ ମାତାଙ୍କ କବିତ୍ୱରେ ଆତ୍ମବିଭୋର ହୋଇ କାବ୍ୟଟିକୁ ପ୍ରକାଶ କରିଥିଲେ ।

ଦାମୋଦର ମଧ୍ୟ ସୁକବି ଥିଲେ । ତାଙ୍କ ରଚିତ ଭଲପିଲା, କପିଳାସ ଯାତ୍ରା, ବାଲିଯାତ୍ରା, ପଦ୍ମମୁଖ, ଜାତୀୟ ସଂଗୀତ ପ୍ରଭୃତି ଓଡ଼ିଶାରେ ପାଠକଙ୍କ ଦ୍ୱାରା ଆଦୃତ ହୋଇଥିଲା । ଏତଦ୍‌ଭିନ୍ନ ସେ ପ୍ରାଚୀନ ଓଡ଼ିଆ ସଂଗୀତକୁ "ସଂଗୀତସାଗର ନାମରେ ସଂକଳନ କରିଥିଲେ । ସେ ମଧ୍ୟ ତଦ୍‌କାଳୀନ "ଇନ୍ଦ୍ରଧନୁ ବିଜୁଳି" ସାରସ୍ୱତ ବିବାଦରେ ଛଦ୍ମନାମ "ଯୁବରାଜ" ନାମରେ ସ୍ତମ୍ଭ ଲେଖୁଥିଲେ ।

ଦୀନବନ୍ଧୁ ରାଜତ୍ୱକାଳ ବିଚାରକୁ ନିଆଯାଇନାହିଁ । କାରଣ ସେ ମୃତ୍ୟୁପର୍ଯ୍ୟନ୍ତ ନାବାଳକ ଥିଲେ ତଥା ରାଜ୍ୟଭାର ଗ୍ରହଣ କରିନଥିଲେ । ରାଜ୍ୟ court of ward ଅଧୀନରେ ଥିଲା । ତଥାପି ରାଜ୍ୟରେ ସୁଶାସନ ପ୍ରତିଷ୍ଠିତ ହୋଇଥିଲା । ଏହି ସମୟରେ ୧୮୮୩-୮୪ ମସିହାରେ ରାଜ୍ୟର ଦ୍ୱିତୀୟ ବନ୍ଦୋବସ୍ତ ହୋଇଥିଲା । ଏହାକୁ "ଜଗମୋହନବାବୁଙ୍କ ଭଉଁରିଆ ବନ୍ଦୋବସ୍ତ" କୁହାଯାଏ । ଏହି ବନ୍ଦୋବସ୍ତ ମାଣ ଗୁଣ୍ଠ ବିଶ୍ୱା ପଦ୍ଧତିରେ ପ୍ରାଚୀନ ନିୟମରେ ହୋଇଥିଲା । ଏହି ବନ୍ଦୋବସ୍ତରେ ନକ୍ସାନଥିଲା । ପ୍ରତ୍ୟେକ ପ୍ଲଟକୁ ଭଉଁରିଆ କୁହାଯାଇଥିଲା ଏବଂ ନମ୍ବରୱାରୀ ଭଉଁରିଆରେ ଲମ୍ବ ନିରୂପଣ କରାଯାଇ ଖସଡ଼ା ପ୍ରସ୍ତୁତ ହୋଇ ପ୍ରଜାୱାରୀ ରେକର୍ଡ଼ ହୋଇଥିଲା । ପୂର୍ବବନ୍ଦୋବସ୍ତରେ ଯେପରି ଦେବୋତ୍ତର, ବ୍ରହ୍ମୋତ୍ତର ଓ ସେବକ ଜାଗୀରୁ ଖଜଣା ଛାଡ଼ ହୋଇଥିଲା, ଏହି ବନ୍ଦୋବସ୍ତରେ ମଧ୍ୟ ସେହି ନିୟମ ଅନୁସୃତ ହୋଇଥିଲା । ପ୍ରଥମ ବନ୍ଦୋବସ୍ତ ଅର୍ଥାତ୍ ୧୮୪୬-୪୭ ବନ୍ଦୋବସ୍ତରେ ରାଜ୍ୟର ମୋଟ ରାଜସ୍ୱ ୬୩,୩୧୬ ଥିଲେ ହେଁ, ଏହି ବନ୍ଦୋବସ୍ତରେ ତାହା ବୃଦ୍ଧିହୋଇ ୯୮,୩୩୯କୁ ବୃଦ୍ଧି ହୋଇଥିଲା । ଶ୍ରୀଯୁକ୍ତ ଜଗମୋହନ ଘୋଷ ବନ୍ଦୋବସ୍ତ ଅଧିକାରୀ ଭାବରେ ନିଯୁକ୍ତ ହୋଇ କାର୍ଯ୍ୟନିର୍ବାହ କରିଥିଲେ। ବନ୍ଦୋବସ୍ତ ସମୟର ପ୍ରଜାମାନଙ୍କ ଦାବୀ, ଆପତ୍ତି ଓ ମତକୁ ଅଗ୍ରାଧିକାର ଦିଆଯାଇଥିଲା। ଫଳରେ କୌଣସି ପ୍ରଜା ଅସନ୍ତୁଷ୍ଟ ହୋଇନଥିଲେ । ଜମିର କିସମ ନିର୍ଦ୍ଧାରଣ କରାଯାଇ ପ୍ରଜାମାନଙ୍କର ସତ୍ତ୍ୱ ସାବ୍ୟସ୍ତ କରାଯାଇଥିଲା । ତତ୍‌କାଳୀନ ଜମିର କିସମ ଥିଲା ଶାରଦ, ବିଆଳି ଓ ତଇଳା । ଘରଡ଼ିହରୁ ଖଜଣା ଛାଡ଼ ହୋଇଥିଲା । ପ୍ରଜାମାନେ ବ୍ରହ୍ମୋତ୍ତର, ଦେବୋତ୍ତର, ରୟତି, ଥାନୀ, ଅନୁଯାୟୀ ସର୍ବରାକାରମାନେ ଖଜଣା ଦୁଇକିସ୍ତିରେ

ପ୍ରଜାଙ୍କଠାରୁ ଆଦାୟ କରୁଥିଲେ ଏବଂ ଆପଣାର ପାରିଶ୍ରମିକ ୧୦% କାଟି ରଖି ଅବଶିଷ୍ଟ ରାଜକୋଷରେ ଜମା ଦେଉଥିଲେ ।

ଢେଙ୍କାନାଳର ତତ୍କାଳୀନ ପ୍ରଶାସନ ଉଚ୍ଚକୋଟୀର ଥିଲା । ପୂର୍ବ ମହାରାଜା ଭାଗୀରଥଙ୍କ ଦ୍ୱାରା ପ୍ରତିଷ୍ଠିତ ସକଳ ବିଭାଗର କାର୍ଯ୍ୟ ମ୍ୟାନେଜର ବନମାଳୀ ସିଂହ ପ୍ରତ୍ୟକ୍ଷ ଅନୁଧାନ କରୁଥିଲେ । ପ୍ରଜାବୃନ୍ଦ ଆଗତ କରିଥିବା ମୋକଦ୍ଦମା ମ୍ୟାନେଜର ଓ ସହକାରୀ ମାନେଜର ବିଚାର କରୁଥିଲେ । ସହକାରୀ ମ୍ୟାନେଜରଙ୍କ ଆଦେଶ ବିରୁଦ୍ଧରେ ମ୍ୟାନେଜରଙ୍କ ଅଦାଲତରେ ଏବଂ ମ୍ୟାନେଜରଙ୍କ ଆଦେଶ ବରୁଦ୍ଧରେ କମିଶନରଙ୍କ ଅଦାଲତରେ ଅପିଲ ଦାଏର କରାଯାଇପାରୁଥିଲା । ମ୍ୟାନେଜର ଓ ପଦସ୍ଥ ଅଧିକାରୀ ହାତୀରେ ଯାଇ ସରଜିନ୍ ତଦନ୍ତ କରୁଥିଲେ ତଥା ପ୍ରଜାମାନଙ୍କ ସୁବିଧାଅସୁବିଧା ତଦାରଖ କରୁଥିଲେ । କୃଷିକଲ୍ୟାଣ ଓ ଖାଦ୍ୟାଭାବ ନିମିତ୍ତ ପୂର୍ବରୁ ପ୍ରତିଷ୍ଠିତ ଖମାରମାନଙ୍କରେ ଶସ୍ୟ ମହଜୁଦ୍ ରହୁଥିଲା । ଦୀନବନ୍ଧୁଙ୍କ ରାଜତ୍ୱରେ ୧୮୮୫ ମସିହାରେ ଜାତୀୟକଂଗ୍ରେସ ଗଠନହୋଇ ଜାତୀୟ ଆନ୍ଦୋଳନ ମୁଣ୍ଡ ଟେକିଥିଲେ ହେଁ ଢେଙ୍କାନାଳରେ ଏହାର ପ୍ରଭାବ ଅନୁଭୂତ ହୋଇନଥିଲା । ଦୀନବନ୍ଧୁଙ୍କ ରାଜତ୍ୱରେ ଢେଙ୍କାନାଳରେ ଶିକ୍ଷା, ସାହିତ୍ୟ ଓ ସଂସ୍କୃତିର ଉତ୍ତରୋତ୍ତର ଉନ୍ନତି ଘଟିଥିଲା । ସବୁ କିଛି ସୁରୁଖୁରୁରେ ଚାଲିଥିଲେ ହେଁ, ଯୁବକ ରାଜାଙ୍କ ଅକାଳ ବିୟୋଗ ପ୍ରଜାବର୍ଗଙ୍କୁ ଦାରୁଣ ଆଘାତ ଦେଇଥିଲା ।



# ରାଜର୍ଷି ସୁରପ୍ରତାପ

ଶ୍ରୀ ଶ୍ରୀ ଚନ୍ଦ୍ରଶେଖରଙ୍କ ଅପାର କରୁଣାରୁ ୧୮୮୫ ପବିତ୍ର ଶିବରାତ୍ରିରେ ସୁରପ୍ରତାପ ଜନ୍ମଗ୍ରହଣ କରିଥିଲେ । ତଦୀୟ ପିତା ମହାରାଜ ଦୀନବନ୍ଧୁଙ୍କର ମହାପ୍ରୟାଣ ସେହି ବର୍ଷ ଜୁନ୍ ମାସରେ ହୋଇଥିଲା । ସେତେବେଳକୁ ରାଜକୁମାର ମାତ୍ର ଛଅ ମାସର । ସେହି ଛଅମାସର ଶିଶୁ ଢେଙ୍କାନାଳ ରାଜସିଂହାସନ ଆରୋହଣ କରି ମହୀୟସୀ ଜନନୀ ଅନ୍ନପୂର୍ଣ୍ଣାଙ୍କ ତତ୍ତ୍ୱାବଧାନରେ ଲାଳିତ ପାଳିତ ହେଲେ । ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ମହାରାଣୀ ଅନ୍ନପୂର୍ଣ୍ଣାଙ୍କର ଦେବବ୍ରାହ୍ମଣଙ୍କ ଠାରେ ଭକ୍ତି ରହିଥିଲା ଏବଂ ସେହିମାନଙ୍କ ଆଶୀର୍ବାଦରୁ ସେ ସୁରପ୍ରତାପଙ୍କୁ ଲାଭ କରିଥିଲେ । ସେ ସକଳ ରାଜବିଭବ, କ୍ଷମତା ଓ ସ୍ୱାଭିମାନଙ୍କୁ ଜଳାଞ୍ଜଳି ଦେଇ ସୁରପ୍ରତାପଙ୍କୁ ସୁଯୋଗ୍ୟ କରିବାରେ ପ୍ରଯତ୍ନ ଥିଲେ । ରାଜକୁମାରଙ୍କ ବାଲ୍ୟଶିକ୍ଷା ରାଜପ୍ରାସାଦରେ ହିଁ ହୋଇଥିଲା । ଆଠ ବର୍ଷରେ ଉପନୀତ ହୁଅନ୍ତେ ୧୮୯୩ ମସିହାରେ ରାଜକୁମାର ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଲେ । ଏହି ସମୟରେ ଦେୱାନ୍ ବନମାଳୀ ସିଂହ ରାଜ୍ୟଶାସନ ଦାୟିତ୍ୱରେ ଥାଆନ୍ତି । ସେ ବ୍ୟାସଦେବ ଫକୀରମୋହନଙ୍କ ପରାମର୍ଶକ୍ରମେ ପାର୍ବତୀଚରଣ ଦାସଙ୍କୁ ରାଜ କୁମାରଙ୍କ ଗୃହଶିକ୍ଷକ ଭାବରେ ନିଯୁକ୍ତି ଦେଇଥିଲେ ।

ପାର୍ବତୀବାବୁଙ୍କ ବାସସ୍ଥାନ ବାଲେଶ୍ୱର ଜିଲ୍ଲା ସୋରୋ ସନ୍ନିକଟ ଗୁହାଳିଆ ସାହି । ସେ ବର୍ଣ୍ଣରେ କରଣ ଓ ବୈଷ୍ଣବଧର୍ମୀ ବଲମ୍ବୀ ଥିଲେ । ସୁନାମଧନ୍ୟ ବୈଷ୍ଣବକବି ପାର୍ବତୀବାବୁ ସଂଗୀତ ହାରାବଳୀ, ଓଡ଼ିଆକୀର୍ତ୍ତନ, ପ୍ରତାପରୁଦ୍ର, ରାୟରାମାନନ୍ଦ, ପ୍ରଭୁ ଶ୍ୟାମାନନ୍ଦ ଭକ୍ତକଥା, ସ୍ତ୍ରୀଶିକ୍ଷା, ଠାକୁର ହରିଦାସ ପ୍ରଭୃତି ରଚନା କରିଥିଲେ ଏବଂ ଚୈତନ୍ୟ ଚରିତାମୃତ ଓ ଚୈତନ୍ୟ ଚନ୍ଦ୍ରାମୃତର ଓଡ଼ିଆ ଅନୁବାଦ କରିଥିଲେ । କଲିକତାରୁ ବି.ଏ. ପାସ୍ କଲାପରେ ପ୍ରଥମେ ଶିକ୍ଷକତା କରୁଥିଲେ ଏବଂ ପରେ ରାଜକୁମାର ସୁରପ୍ରତାପଙ୍କ ଗୃହଶିକ୍ଷକ ଭାବରେ ନିଯୁକ୍ତ ହେଲେ । ତାଙ୍କରି ଦିଗ୍‌ଦର୍ଶନରେ ରାଜକୁମାର ଜଣେ ମେଧାବୀଛାତ୍ର ଭାବରେ ଉଚ୍ଚତମ ଶ୍ରେଣୀକୁ ଉନ୍ନୀତ ହେଉଥିଲେ । ଦୁର୍ଭାଗ୍ୟକୁ ଶିରଃଶୂଳ ରୋଗରେ ଆକ୍ରାନ୍ତ ହୋଇ ସେ ଏଣ୍ଟ୍ରାନ୍‌ସ ପରୀକ୍ଷା ଦେଇନପାରି ବିଦ୍ୟାଳୟ ପରିତ୍ୟାଗ

କରିଦେଲେ । ଦୀର୍ଘଦିନ ପୀଡ଼ିତ ରହିବାପରେ ପୁନର୍ବାର ବିଦ୍ୟାଳୟରେ ଅଧ୍ୟୟନ କରିବାକୁ ଇଚ୍ଛାପ୍ରକାଶ କଲେ । କିନ୍ତୁ ଓଡ଼ିଶାର ତଦନାନ୍ତୀନ କମିଶନର ଶ୍ରୀଯୁକ୍ତ କୃଷ୍ଣଗୋବିନ୍ଦ ଗୁପ୍ତଙ୍କ ପରାମର୍ଶକ୍ରମେ ବିଦ୍ୟାଳୟ ସମୂହର ଭୂତପୂର୍ବ ଇନ୍‌ସିପେକ୍ଟର ଶ୍ରୀଯୁକ୍ତ ଜଗବନ୍ଧୁ ଲାହାଙ୍କ ନିକଟରେ ଘରୋଇ ଭାବେ ଅଧ୍ୟୟନ କଲେ । ଜଗବନ୍ଧୁ ବାବୁଙ୍କ ପ୍ରଚେଷ୍ଟା ତଥା ସୁରପ୍ରତାପଙ୍କ ଅଧ୍ୟବସାୟ ବଳରେ ସେ ଇଂରାଜୀ ଓ ଅନ୍ୟାନ୍ୟ ଶାସ୍ତ୍ରରେ ବ୍ୟୁତ୍ପତି ଲାଭ କରିଥିଲେ । ତାଙ୍କର ଇଂରାଜୀଜ୍ଞାନ ଉପାଧ୍ୟାୟନୀ ବିଞ୍ଚଙ୍କ ଠାରୁ ଅଧିକ ଥିଲା । ପାଶ୍ଚାତ୍ୟଶିକ୍ଷା, ସଭ୍ୟତା ଓ ସଂସ୍କୃତିରେ ସେ ଅନୁପ୍ରାଣିତ ହୋଇଥିଲେ ହେଁ ସ୍ୱକୀୟ ହିନ୍ଦୁତ୍ୱକୁ ସର୍ବସ୍ୱ ମଣୁଥିଲେ । ଆପଣାର କର୍ତ୍ତବ୍ୟନିଷ୍ଠା, ସତ୍ୟବାଦୀତା, ନ୍ୟାୟପରାୟଣତା, ଚରିତ୍ରନିଷ୍ଠା, ଗାମ୍ଭୀର୍ଯ୍ୟ ଓ ଉଦାରତା ନିମିତ୍ତ ସେ ଲୋକମୁଖରେ ରାଜର୍ଷି ନାମରେ ପ୍ରିୟତା ଅର୍ଜନ କରିଥିଲେ । ସ୍ୱଗୁରୁ ପାର୍ବତୀ ଚରଣଦାସ ଓ ଜଗବନ୍ଧୁ ଲାହାଙ୍କୁ ସେ ଦେବତା ତୁଲ୍ୟ ଜ୍ଞାନ କରୁଥିଲେ । ରାଜାସୁରପ୍ରତାପ ସ୍ୱଗୁରୁ ଜଗବନ୍ଧୁ ଲାହାଙ୍କୁ କିଛି ଭୂସଂପତ୍ତି ଦାନ କରିଥିଲେ । କିନ୍ତୁ ଶ୍ରୀଯୁକ୍ତ ଲାହା ସେହି ଭୂସଂପତ୍ତି ଦେବୋତ୍ତର ବିଭାଗ ଅଧୀନରେ ଗୋଟିଏ ଟ୍ରଷ୍ଟ ଭାବରେ ରଖି ଲବ୍ଧ ଧନରେ ଗରିବ ଛାତ୍ରବୃତ୍ତି ପ୍ରଦାନର ସୁବନ୍ଦୋବସ୍ତ କରିଥିଲେ ।

୧୮୯୬ରେ ବୈଦିକ ରୀତିରେ ସୁରପ୍ରତାପଙ୍କ ଉପନୟନ ଅନୁଷ୍ଠିତ ହୋଇଥିଲା । ରାଜପୁରୋଧା ପଣ୍ଡିତ ଶ୍ୟାମସୁନ୍ଦର ମିଶ୍ର ଏବଂ ଦର୍ପଣୀ ଜମିଦାର ପଣ୍ଡିତ ବୈଦ୍ୟନାଥଙ୍କ ଦ୍ୱାରା ଉପନୟନ ଉପନୟନ କାର୍ଯ୍ୟ ସମାପନ ହୋଇଥିଲା। ୧୯୦୨ ମସିହା ଫେବୃଆରୀ ୨୪ ତାରିଖରେ ଷଢ଼େଇକଳା ମହାରାଜା ଉଦିତ ନାରାୟଣ ସିଂହଦେଓଙ୍କ ପୌତ୍ରୀ ତଥା ଯୁବରାଜ ନୃପସିଂହ ସୁକନ୍ୟା ସର୍ବଗୁଣସଂପନ୍ନା କୃଷ୍ଣଚନ୍ଦ୍ର ପ୍ରିୟାଙ୍କ ସହିତ ସୁରପ୍ରତାପଙ୍କ ଶୁଭ ପରିଣୟ ଅନୁଷ୍ଠିତ ହୋଇଥିଲା । ମହାରାଣୀ କୃଷ୍ଣଚନ୍ଦ୍ର ପ୍ରିୟା ବୁଦ୍ଧିମତୀ, ବିଦ୍ୟାବତୀ, ଭକ୍ତିମତୀ ଓ ସୁକବି ଥିଲେ । ବାଲ୍ୟକାଳରେ ବୋହୂ ହୋଇ ଆସିବା ପରେ ଦୀର୍ଘ ବାରବର୍ଷକାଳ ମିସେସ୍ ଆନି ପ୍ରସନ୍ନମୟୀ ସିଂହ, ମିସେସ୍ ବାନୁର୍ଜୀ ଏବଂ ମିସେସ୍ ଚିନ୍ନାସ୍ୱା ପ୍ରଭୃତି ସୁପଣ୍ଡିତା ଶିକ୍ଷୟିତ୍ରୀମାନଙ୍କ ଦ୍ୱାରା ସୁଶିକ୍ଷା ପ୍ରାପ୍ତ ହେଲେ । ସଙ୍ଗୀତ ବିଦ୍ୟାରେ ସେ ବିଶେଷ ପାରଦର୍ଶିତା ଲାଭ କରିଥିଲେ ଏବଂ ହାରମୋନିୟମ୍ ଶିକ୍ଷା ସମ୍ବନ୍ଧୀୟ ସଙ୍ଗୀତ ପୁଷ୍ପାଞ୍ଜଳି ପୁସ୍ତକ ରଚନା କରିଥିଲେ । ଓଡ଼ିଆ ଭାଷାରେ ଏହା ସର୍ବପ୍ରଥମ ସଂଗୀତଶିକ୍ଷା ପୁସ୍ତକ ।

ମହାରାଜା ଦୀନବନ୍ଧୁ ମହୀନ୍ଦ୍ରବାହାଦୂରଙ୍କ ଅକାଳ ବିୟୋଗରେ ମର୍ମାହତ ହୋଇ ରାଜପ୍ରତିନିଧି ବନମାଳୀ ସିଂହ ସ୍ୱକାର୍ଯ୍ୟରୁ ଇସ୍ତଫା ପ୍ରଦାନ କଲେ । ତାଙ୍କ ପରେ ବାବୁ ସୁଦାମ ଚରଣ ନାୟକ ରାଜ୍ୟର ମ୍ୟାନେଜର ପଦରେ ନିଯୁକ୍ତ ହୋଇଥିଲେ। କିଛି ବର୍ଷ ପରେ ସେ ଗଡ଼ଜାତ ମାହାଲର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡଣ୍ଟପଦବୀକୁ ଉନ୍ନୀତ ହେବାରୁ ବାବୁ କୃଷ୍ଣଚନ୍ଦ୍ର ମହାନ୍ତି ଏହି ପଦରେ ନିଯୁକ୍ତ ହେଲେ । ସେ ସମଗ୍ର ଢେଙ୍କାନାଳର ଭୂବନ୍ଦୋବସ୍ତ କାର୍ଯ୍ୟ ଆରମ୍ଭ କରିଥିଲେ । ତାହାଶେଷ ନହେଉଣୁବାବୁ ଜଗମୋହନ ଘୋଷ ତାଙ୍କ ପଦବୀରେ ନିଯୁକ୍ତ ପାଇଲେ । ସେ ମ୍ୟାନେଜର ଥିବା ସମୟରେ ବନ୍ଦୋବସ୍ତ କାର୍ଯ୍ୟ ଶେଷ ହୋଇଥିଲା । ତାଙ୍କ ପରେ ବାବୁ ରାଜକିଶୋର ଦାସ ବାବୁ ରାସବିହାରୀ ନାୟକ ଓ ବାବୁ ରାମଚନ୍ଦ୍ର ବୋଷ ଯଥାକ୍ରମେ ମ୍ୟାନେଜର ପଦରେ ନିଯୁକ୍ତି ପାଇଥିଲେ ।

ସୁରପ୍ରତାପ ନାବାଳକ ଥିବା ସମୟରେ ୧୮୬୮ ମସିହାରେ ପ୍ରତିଷ୍ଠିତ ହୋଇଥିବା ମଧ୍ୟଇଂରାଜୀ ବିଦ୍ୟାଳୟଟି ୧୮୯୬ ସିହାରେ ଉଚ୍ଚଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇଥିଲା । ସେହି ସମୟରେ କବିବର ରାଧାନାଥ ରାୟ ଓଡ଼ିଶାର Inspector of schools ପଦବୀରେ ଅଧିଷ୍ଠିତ ଥିଲେ । ସେ ମହାଶୟ ମଧ୍ୟଇଂରାଜୀ ବିଦ୍ୟାଳୟ ଛାତ୍ରଙ୍କର କୃତୀତ୍ୱ ଓ ବିଦ୍ୟାଳୟର ଶୃଙ୍ଖଳା ଉପଲବ୍ଧି ପୂର୍ବକ ଏହାକୁ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କରିବାକୁ ସରକାରଙ୍କୁ ସୁପାରିଶ୍ କରିଥିଲେ । ଓଡ଼ିଶାର ତତ୍‌କାଳୀନ କମିଶନର ସୁନାମଧନ୍ୟ ରମେଶଚନ୍ଦ୍ର ଦତ୍ତଙ୍କ ବ୍ୟକ୍ତିଗତ ପ୍ରଚେଷ୍ଟାରେ ୧୮୯୬ ମସିହାରେ ଏହି ମଧ୍ୟଇଂରାଜୀ ବିଦ୍ୟାଳୟଟି ଉଚ୍ଚଇଂରାଜୀ ବିଦ୍ୟାଳୟରେ ପରିଣତ ହେଲା । ବର୍ତ୍ତମାନ ଯେଉଁଠାରେ ପୋଲିସ୍‌କାର୍ଯ୍ୟାଳୟ ହେଉଛି ସେହିଠାରେ ପ୍ରଥମେ ଉଚ୍ଚଇଂରାଜୀ ବିଦ୍ୟାଳୟଟି ଚାଲୁଥିଲା । ପରେ କୁଞ୍ଜକାନ୍ତ ତୋଟାର ପଶ୍ଚିମଦିଗରେ ରାଜା ସୁରପ୍ରତାପଙ୍କ ଦ୍ୱାରା ନୂତନଗୃହ ନିର୍ମାଣ ହୋଇ ସେହିସ୍ଥାନର ବିଦ୍ୟାଳୟ ଉଠିଆସିଲା । ନୂତନ ଗୃହରେ କଲେଜ ସ୍ଥାପନା କରିବା କାମନାରେ ସୁରପ୍ରତାପ ଏହାକୁ ଦ୍ୱିତଳ ପ୍ରାସାଦ କରିଥିଲେ । କିନ୍ତୁ ଅକାଳରେ ତାଙ୍କର ବିୟୋଗ ଘଟିବାରୁ କଲେଜ ସ୍ଥାପନ ହୋଇପାରିଲା ନାହିଁ ।

୧୯୦୪ ମସିହାରେ ସୁରପ୍ରତାପଙ୍କର ଜ୍ୟେଷ୍ଠପୁତ୍ର ଶଙ୍କରପ୍ରତାପ ଜନ୍ମଗ୍ରହଣ କଲେ ଏବଂ ୧୯୦୬ ମସିହାରେ ସୁରପ୍ରତାପ ସାବାଳକ ହୋଇ ରାଜ୍ୟଶାସନ ଭାର ଗ୍ରହଣ କରିଥିଲେ । ତାଙ୍କ ଶାସନନୀତିରେ ସନ୍ତୁଷ୍ଟ ହୋଇ

ଇଂରେଜ ସରକାର ତାଙ୍କୁ ପ୍ରଥମଶ୍ରେଣୀ ରାଜାର ମାନ୍ୟତା ପ୍ରଦାନ ପୂର୍ବକ ପ୍ରାଣଦଣ୍ଡ ଓ ଦୀପାନ୍ତର ପ୍ରଭୃତି ବିଶେଷ କ୍ଷମତା ପ୍ରଦାନ କରିଥିଲେ । ରାଜତ୍ୱର ପ୍ରାରମ୍ଭରେ ସ୍ୱରାଜ୍ୟରେ ଶିକ୍ଷାର ପ୍ରସାର ନିମିତ୍ତ ସେ ୧୭ଗୋଟି ବାଳକ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ, ଏକ ଗୋଟି ବାଳିକା ଉଚ୍ଚପ୍ରାଥମିକ ବିଦ୍ୟାଳୟ, ଏକଗୋଟି ଗୁରୁଟ୍ରେନିଂ ସ୍କୁଲ ତଥା ୩୦୦ଟି ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଏତଦ୍‌ଭିନ୍ନ ପୂର୍ବରୁ ପ୍ରତିଷ୍ଠିତ ସଂସ୍କୃତ ବିଦ୍ୟାଳୟରେ ଦୁଇ ଜଣ ପଣ୍ଡିତ ଓ ଜଣେ ଇଂରାଜୀ ଶିକ୍ଷକ ନିଯୁକ୍ତି ଦେଇଥିଲେ । ରାଜ୍ୟର ବିଦ୍ୟାଳୟ ସମୂହକୁ ସୁଶୃଙ୍ଖଳିତ କରିବା ନିମିତ୍ତ ରାଜା ସୁରପ୍ରତାପ ବାବୁ ଅଦ୍ୱୈତଚନ୍ଦ୍ର ମହାପାତ୍ରଙ୍କୁ ବିଦ୍ୟାଳୟ ସମୂହର ସବ୍ ଇନ୍‌ସ୍ପେକ୍ଟର ଏବଂ ଶ୍ରୀଗୌରାଙ୍ଗ ଛାମୁ ପଟ୍ଟନାୟକ ତଥା ପଣ୍ଡିତ ରାମଚନ୍ଦ୍ରନନ୍ଦ ଭକ୍ତି ବିନୋଦଙ୍କୁ ସର୍କଲ ପଣ୍ଡିତ ପଦବୀରେ ନିଯୁକ୍ତି ଦେଇଥିଲେ ।

୧୮୭୭ ମସିହାଠାରୁ ୧୯୦୬ ମସିହା ପର୍ଯ୍ୟନ୍ତ ଦୀର୍ଘ ୩୦ ବର୍ଷ କାଳ ଢେଙ୍କାନାଳ ରାଜ୍ୟଟି ଇଂରେଜ ସରକାରଙ୍କ ପ୍ରତ୍ୟକ୍ଷ ଶାସନାଧୀନ ଥିଲା । ସେହି ସମୟ ମଧ୍ୟରେ ପୋଲିସ୍‌ବିଭାଗ, ଶିକ୍ଷା ବିଭାଗ, ଜଙ୍ଗଲ ବିଭାଗ, ଅବକାରୀ ବିଭାଗ ଓ ଇଂଜିନିୟରିଙ୍ଗ ବିଭାଗ ପ୍ରଭୃତିର ବିଶେଷ ଉନ୍ନତି ସାଧନ ହୋଇପାରିନଥିଲା । ରାଜା ସୁରପ୍ରତାପ ପ୍ରଥମେ ଏହି ବିଭାଗ ସମୂହର ପୁନର୍ଗଠନ କରିଥିଲେ। ଏତଦ୍‌ଭିନ୍ନ ସେ ଚଢ଼େଇ ରଗଡ଼ା (ବସଷ୍ଟାଣ୍ଡ ନିକଟ ପର୍ବତ) ଉପରେ ସର୍କିଟ୍ ହାଉସ୍, ରାଜଭବନ ପାର୍ଶ୍ୱବର୍ତ୍ତୀ ବିଚାରାଳୟ, ରାଜପ୍ରତିନିଧିଙ୍କ ଆବାସଗୃହ, ଗୁଡ଼ିଆନାଳୀ ସନ୍ନିକଟ ଥାନା, ଡାକ୍ତରଖାନା, କାରାଗାର, ଅଶ୍ୱଶାଳା, ମଟରଗ୍ୟାରେଜ୍, ମଢ଼ୀ କଚେରୀଗୃହ, ମଢ଼ୀ ଓ ଗଁଦିଆର ଧାନ୍ୟଗାର, ମୋଟଙ୍ଗା, ବାଙ୍ଗୁରସିଂହ, ଝରଣ ଝାଡ଼ଗାଡ଼ିଆ ପ୍ରଭୃତି ସ୍ଥାନରେ ପାନ୍ଥଶାଳା, କଟକ ତୁଳସୀପୁର କୋଠୀ ନିର୍ମାଣ କରିଥିଲେ । ଏତଦ୍‌ଭିନ୍ନ ସେ କୋରିଆଁ ବେଗା ଓ ବାଙ୍ଗୁରିସିଂହ ପ୍ରଭୃତି ସ୍ଥାନରେ ପୋଲ ତିଆରି କରିଥିଲେ । ତାଙ୍କ ସମୟରେ ଭୁବନ, ଶଙ୍କରପୁର, ମଢ଼ୀ, ପଳାଶୁଣୀ ପ୍ରଭୃତି ରାସ୍ତାମାନ ନିର୍ମାଣ ହୋଇଥିଲା । କୃଷକମାନଙ୍କ ହିତାର୍ଥେ ସେ ଗୁଣ୍ଡୁରାପଶି, ଏକ ଘରିଆ, ତୁମୁସିଂହା, ମେରାମଣ୍ଡଳୀ ଓ କାମର୍ଦ୍ଦାର ବୃହତ୍ ପୁଷ୍କରିଣୀ ମାନ ଖୋଳାଇଥିଲେ ।

ରାଜା ସୁରପ୍ରତାପ ବିଭିନ୍ନ ସ୍ଥାନରୁ ଉଚ୍ଚଜାତୀୟ ବୃଷଭ ଆଣି ସ୍ୱରାଜ୍ୟରେ ଉଚ୍ଚଜାତୀୟ ଗୋବଂଶ ବୃଦ୍ଧି କରାଇଥିଲେ । ଗୋପାଳନର ଉନ୍ନତି ନିମିତ୍ତ ସେ ଦୁଇଜଣ ଗୋପରିଦର୍ଶକ ନିଯୁକ୍ତ କରିଥିଲେ । ଏତଦ୍‌ଭିନ୍ନ ଅପାରଗ ଗୋରୁମାନଙ୍କ

ରକ୍ଷଣାବେକ୍ଷଣ ନିମିତ୍ତ ସେ ଗୋଟିଏ ଗୋରକ୍ଷିଣୀ ଆଶ୍ରମ ସ୍ଥାପନାକରି ସ୍ୱପୁତ୍ରର ନାମାନୁସାରେ ଏହାର ନାମ "ଶଙ୍କରାଶ୍ରମ" ରଖିଥିଲେ । ତତ୍‌କାଳୀନ ଓଡ଼ିଶାରେ ଶଙ୍କରାଶ୍ରମ ଏକ ଆଦର୍ଶ ଓ ପ୍ରଧାନ ଗୋରକ୍ଷିଣୀ ଆଶ୍ରମ ରୂପେ ଖ୍ୟାତ ଥିଲା । ଏହି ଶଙ୍କରାଶ୍ରମର ଦାୟିତ୍ୱ ସେ ପଣ୍ଡିତ ଗଣେଶ୍ୱର ମିଶ୍ରଙ୍କୁ ଦେଇଥିଲେ । ଏହାବ୍ୟତୀତ ପଣ୍ଡିତ ମିଶ୍ର ସୁର ପ୍ରତାପ ପ୍ରେସ୍ ଦାୟିତ୍ୱ ଏବଂ ମୁକ୍ତାଦେଇ ପୁର ଶାସନର ମହାଦେବମନ୍ଦିର ଓ ଗୋପୀନାଥ ମନ୍ଦିର ଦାୟିତ୍ୱରେ ଥିଲେ । ପ୍ରୋକ୍ତ ସୁରପ୍ରତାପ ପ୍ରେସ୍‌ଟି ଢେଙ୍କାନାଳର ପ୍ରଥମ ଛାପାଖାନା । ଏହା ୧୮୯୬ରେ ପ୍ରତିଷ୍ଠା ହୋଇଥିଲା । ବଳଭଦ୍ର ଦେବଙ୍କ "ଋତୁସଂହାର" ବୈଷ୍ଣବଚରଣ ଦାସଙ୍କ ଉପନ୍ୟାସ "ମନେମନେ" ସାଧୁଚରଣ ମାନସିଂହ ହରିଚନ୍ଦନଙ୍କ "ମଙ୍ଗଳଗୀତ" ସୂର୍ଯ୍ୟମଣି ଗୀତାବଳୀ, ଜନ୍ମୋତ୍ସବ, ଇନ୍ଦିରାପରିଣୟ ପ୍ରଭୃତି ପୁସ୍ତକ ମୁଦ୍ରଣ କରି ସେହି ପ୍ରେସ୍ ସୁଖ୍ୟାତି ଲାଭ କରିଥିଲା । ପ୍ରେସ୍ ପରିଚାଳନାରେ ପଣ୍ଡିତ ବୈଦ୍ୟନାଥ ଦାଶ ସ୍ୱୀୟଗୁରୁ ପଣ୍ଡିତ ଗଣେଶ୍ୱର ମିଶ୍ରଙ୍କୁ ସାହାଯ୍ୟ କରୁଥିଲେ । ଗୁରୁଶିଷ୍ୟ ଉଭୟଙ୍କ ପ୍ରଚେଷ୍ଟାରେ ଢେଙ୍କାନାଳର ସୁରପ୍ରତାପ ପ୍ରେସ୍‌ଟି ସମଗ୍ର ଓଡ଼ିଶାରେ ଖ୍ୟାତି ଲାଭ କରିବା ସହିତ ଅନେକ ପୁସ୍ତକ ମୁଦ୍ରଣ କରିପାରିଥିଲା ।

ସୁରପ୍ରତାପଙ୍କ ରାଜତ୍ୱରେ ଢେଙ୍କାନାଳରେ ଦୁଇଗୋଟି ବଡ଼ଠାକୁର (ଶ୍ରୀଚନ୍ଦ୍ରଶେଖର ଓ ଶ୍ରୀବଳଦେବ ଜୀଉ), ୧୪ଗୋଟି ମଠ, ୧୨୫ଗୋଟି ସାନ ଠାକୁର ଏବଂ ୮୦୬ ଗ୍ରାମଦେବତୀ ଥିଲେ । ଦେବୋତ୍ତର ଜମିର ପରିମାଣ ୩୬,୦୦୦ ମାଣ (ଏକର) ଥିଲା । ରାଜା ସ୍ୱୀୟଗୁରୁ ପାର୍ବତୀଚରଣ ଦାସଙ୍କୁ ଦେବୋତ୍ତର ଅଧିକାରୀ ଏବଂ ରାଜପଣ୍ଡିତ ଗଙ୍ଗାଧର ପାଣିଙ୍କୁ ଦେବୋତ୍ତର ନୀରୀକ୍ଷକ ପଦବୀରେ ନିଯୁକ୍ତ ଦେଇଥିଲେ । ସେହି ସମୟରେ ସମସ୍ତ ଦେବୋତ୍ତର ଜମି ନିଜିଚାଷ ନହୋଇ ସ୍ୱଳ୍ପ ପରିମାଣରେ ଜମି ୧୬ ଗୋଟି ଖମାରରେ ନିଜିଚାଷ ହେଉଥିଲା । ବଳକାଜମି ପ୍ରଜାମାନଙ୍କୁ ସଞ୍ଜାଲଗାଣ ହେଉଥିଲା ଏବଂ ସ୍ଥଳବିଶେଷରେ ଦେବୋତ୍ତର କାର୍ଯ୍ୟାଳୟର ସ୍ୱତନ୍ତ୍ର କବୁଲିୟତ୍ ଅନୁସାରେ ସଞ୍ଜା ଆଦାୟ ହେଉଥିଲା । ପାର୍ବତୀବାବୁ ଏହାକୁ ଦୃଷ୍ଟିରେ ରଖି ୧୯୧୦-୧୨ ମସିହାରେ ଦେବୋତ୍ତର ଜମିର ଏକ ସ୍ୱତନ୍ତ୍ର ବନ୍ଦୋବସ୍ତ କରିଥିଲେ । ଏହି ବନ୍ଦୋବସ୍ତ ଫଳରେ ରାଜ୍ୟର ସମସ୍ତ ଦେବୋତ୍ତର ଜମି ମାପକରାଯାଇ ଠାକୁରଙ୍କ ନିଜିଚାଷ ଓ ପ୍ରଜାଦଖଲ ଜମିର ପୃଥକ୍‌ରେକର୍ଡ ପ୍ରସ୍ତୁତ ହୋଇ ରେକର୍ଡ଼ମତେ ସଞ୍ଜାଅସୁଲ କରାଯାଉଥିଲା । ଯେଉଁ ମଠରେ ମହନ୍ତ

ନଥିଲେ ସେଠାରେ ଜଣେ ଲେଖାଏଁ ଜିମାଦାର ନିଯୁକ୍ତି କରାଗଲା । କପିଳାସ ପୀଠକୁ ମଟରଗାଡ଼ି ଯିବା ନିମିତ୍ତ ବାରବାଙ୍କ ରାସ୍ତା ୧୯୦୯ ମସିହାରେ ନିର୍ମାଣ କରାଯାଇଥିଲା ଏବଂ ପୀଠ ଉପରେ ବଙ୍ଗଳାଟିଏ ମଧ୍ୟ ରାଜା ନିର୍ମାଣ କଲେ ।

ଢେଙ୍କାନାଳରେ ଦଧିବାମନଙ୍କ ରଥଯାତ୍ରା ଅନୁଷ୍ଠିତ ହେଉଥିଲା । ୧୯୦୯ ମସିହାରେ ରାଜା ସୁରପ୍ରତାପ ଶ୍ରୀବଳଦେବ ଜୀଉ ମନ୍ଦିର ପ୍ରାଙ୍ଗଣରେ ଜଗନ୍ନାଥ ମନ୍ଦିର ନିର୍ମାଣ ପୂର୍ବକ ବିଗ୍ରହ ପ୍ରତିଷ୍ଠା କରିଥିଲେ । ଏହି କାର୍ଯ୍ୟ ପଣ୍ଡିତ ଭୁବନେଶ୍ୱର ମିଶ୍ରଙ୍କ ତତ୍ତ୍ୱାବଧାନରେ ହୋଇଥିଲା । ସେହି ବର୍ଷ ରାଜା ଦୁଇଗୋଟି ରଥ ନିର୍ମାଣ କରାଇଲେ । ବଡ଼ରଥରେ ଜଗନ୍ନାଥ ଓ ସାନରଥରେ ଦଧିବାମନ ବିଜେ ହୋଇ ରଥଯାତ୍ରା ଅନୁଷ୍ଠିତ ହେବାର ସ୍ଥିରୀକୃତ ହୋଇଥିଲା । କିନ୍ତୁ ଦଧିବାମନମଠର ମହନ୍ତ ଏହାକୁ ଠାକୁରଙ୍କ ଅପମାନ ଭାବି ଦଧିବାମନଙ୍କୁ ରଥରେ ବିଜେ କରାଇ ଦେଲେ ନାହିଁ । ଉଦାରଚେତା ରାଜା ମହନ୍ତଙ୍କ କାର୍ଯ୍ୟରେ ହସ୍ତକ୍ଷେପ ନକରି ବଡ଼ରଥରେ ଜଗନ୍ନାଥ ଓ ସାନରଥରେ ରାଜପ୍ରାସାଦର ଠାକୁରମାନଙ୍କ ବିଜେ କରାଇ ରଥଯାତ୍ରା ସଂପନ୍ନ କଲେ । ପୂର୍ବରୁ ରଥ ମୀନାବଜାର ପର୍ଯ୍ୟନ୍ତ ଯାଉଥିଲା । ରାଜା ବାଜିଚୌକସ୍ଥିତ ଗୁଣ୍ଡିଚାମନ୍ଦିର ନିର୍ମାଣ କରାଇ ରଥକୁ ସେଠାପର୍ଯ୍ୟନ୍ତ ନେଲେ ।

ଦେବୋତ୍ତରର ବିଭିନ୍ନ ଖମାରଘର, ଦେଓଗାଁ ସରଘର ଓ ଧର୍ମଶାଳା, ଦୁର୍ଗାପ୍ରାସାଦ ଗ୍ରାନେରୀ, ଶ୍ରୀବଳଦେବ ଜୀଉଙ୍କ ଭଣ୍ଡାର ଘର ଓ ଝୁଲଣଘର, ଜୟଗୋପାଳ ମନ୍ଦିର, ନଡ଼ିଆଳୀର ଶ୍ରୀଲଡୁକେଶ୍ୱର ମହାଦେବଙ୍କ ମନ୍ଦିର, କୋରିଆ ସ୍ୱପ୍ନେଶ୍ୱର ମନ୍ଦିର, ନାଧରା ରାମଚଣ୍ଡୀଙ୍କ ମଣ୍ଡପ ଓ ଭଣ୍ଡାରଘର, ତେନ୍ତୁଳିସିଂହା ରାମେଶ୍ୱର ମନ୍ଦିର ପ୍ରଭୃତି, ସୁରପ୍ରତାପଙ୍କ କୀର୍ତ୍ତୀ । ସେହି ସମୟରେ କାମାକ୍ଷାନଗର ସନ୍ନିକଟ ମହୁଲପାଳର ସ୍ୱର୍ଗୀୟ ଗୁଣନିଧି ପଟ୍ଟନାୟକ ଶ୍ରୀଧାମ ବୃନ୍ଦାବନରୁ ଶ୍ରୀ ବିପିନ୍ ବିହାରୀ ଜୀଉଙ୍କ ଶ୍ରୀମୂର୍ତ୍ତି ମୁଣ୍ଡରେ ଆଣି ୧୯୧୩ ମସିହାରେ ପହଞ୍ଚିଲେ ଏବଂ ସ୍ୱଗ୍ରାମରେ ପ୍ରତିଷ୍ଠା କରିବାକୁ ଇଚ୍ଛାକଲେ । ରାଜା ସୁରପ୍ରତାପ ଏହି ଠାକୁରଙ୍କ ସେବାପୂଜା ନିମିତ୍ତ ୨୬ମାଣ ଜମି ପ୍ରଦାନ କରିଥିଲେ । ରାଜା ସ୍ୱୀୟ ବୈଷ୍ଣବଗୁରୁ ଶ୍ରୀବୃନ୍ଦାବନ ରାଧାରମଣ ମଠାଧୀଶ ପଣ୍ଡିତ ମଦୁସୂଦନ ଗୋସ୍ୱାମୀଙ୍କ ନିର୍ଦ୍ଦେଶମତେ ଶ୍ରୀକୃଷ୍ଣ, ଶ୍ରୀରାଧା ଓ ଅଷ୍ଟସଖୀଙ୍କର ମଣି ଓ ଧାତୁ ବିଗ୍ରହ ନିର୍ମାଣ କରାଇ ୧୯୧୭ ଜୁନ୍ ୨୯ତାରିଖ ଆଷାଢ଼ ଶୁକ୍ଳଦଶମୀ ତିଥିରେ ପ୍ରତିଷ୍ଠା କରାଇଥିଲେ । ତତ୍‌ସଂଲଗ୍ନ ଆମ୍ରବନ ମଧ୍ୟ ରାଜାଙ୍କ

ସ୍ୱହସ୍ତରୋପିତ । ଏହା ମଧୁବନ ନାମରେ ଖ୍ୟାତ । ରାଜା ସୁରପ୍ରତାପ କୁଞ୍ଜପନ୍ତ ଠାକୁରଙ୍କ ନୀତିନିଯୋଗ ନିମିତ୍ତ ନତିଆଳି ଗ୍ରାମରେ ଭୂସଂପତ୍ତି ଖଞ୍ଜା କରିଥିଲେ ।

ସୁରପ୍ରତାପଙ୍କ ରାଜତ୍ୱରେ ଢେଙ୍କାନାଳର ସମସ୍ତ ଦେବଦେବୀଙ୍କ ନୀତିନିଯୋଗ, ସେବାପୂଜା ଓ ଯାନିଯାତ୍ରା ନିମିତ୍ତ ସ୍ୱତନ୍ତ୍ର ବଜେଟ୍ ପ୍ରସ୍ତୁତ ହୋଇଥିଲା । ଏହି ବଜେଟ୍ ତତ୍‌କାଳୀନ ରାଜପୁରୋଧା ପଣ୍ଡିତ ଶ୍ୟାମସୁନ୍ଦର ମିଶ୍ରଙ୍କ ନିର୍ଦ୍ଦେଶମତେ ଦେବୋତ୍ତର ଅଧିକାରୀ ପାର୍ବତୀଚରଣ ଦାସ ପ୍ରସ୍ତୁତ କରିଥିଲେ । ଏଥିରେ ପ୍ରତ୍ୟେକ ଠାକୁରଙ୍କ ସକାଳଧୂପ ଠାରୁ ପହଡ଼ଧୂପ ପର୍ଯ୍ୟନ୍ତ ସକଳଭୋଗ, ତହିଁରେ ପରିମାଣ, ସମୟ ନିର୍ଘଣ୍ଟ ତଥା ଯାନିଯାତ୍ରାର ବିଶେଷ ଖର୍ଚ୍ଚ ଉଲ୍ଲିଖିତ ଥିଲା । ପ୍ରାୟ ଏକ ଶହ ବର୍ଷ କାଳ ଏହି ବଜେଟ୍ ଅନୁଯାୟୀ ସମସ୍ତ ଠାକୁରଙ୍କ ନୀତିନିଯୋଗ ସଂପନ୍ନ ହୋଇ ଆସୁଅଛି । ବୈଷ୍ଣବଭାବପନ୍ନ ରାଜା ଅନେକ ନୂତନ ମନ୍ଦିର ମଧ ନିର୍ମାଣ କରାଇଥିଲେ । ଏତଦ୍‌ଭିନ୍ନ ସେ ରଥଯାତ୍ରା, ଚନ୍ଦନଯାତ୍ରା, ଶିବରାତ୍ରି, ଗୋଷ୍ଠାଷ୍ଟମୀ, ଶିବବିବାହ, ଗୋବର୍ଦ୍ଧନ ମହୋତ୍ସବ ପ୍ରଭୃତି ଯାନିଯାତ୍ରା ମହାସମାରୋହରେ ସଂପନ୍ନ କରିଥିଲେ । ସେହି ପରଂପରା ଅଦ୍ୟାବଧି ପ୍ରଚଳିତ ।

ଢେଙ୍କାନାଳର ବନ୍ଦୋବସ୍ତକାର୍ଯ୍ୟ ସୁଚାରୁରୂପେ ସଂପନ୍ନ ନିମିତ୍ତ ରାଜା ସୁରପ୍ରତାପ ଶ୍ରୀଯୁକ୍ତ ରାଜକିଶୋର ତ୍ରିପାଠୀଙ୍କୁ ନିଯୁକ୍ତି ଦେଇଥିଲେ । ପରବର୍ତ୍ତୀ କାଳରେ ଶ୍ରୀଯୁକ୍ତ ତ୍ରିପାଠୀ ରାୟବାହାଦୂର ଉପାଧି ପ୍ରାପ୍ତହୋଇ ଦେଓ୍ୱାନ୍ ଭାବରେ କାର୍ଯ୍ୟ କରିଥିଲେ । ବନ୍ଦୋବସ୍ତ ରେକର୍ଡ଼ରୁ ଜଣାଯାଏ ୧୯୧୨-୧୩ ମସିହାରେ ରାଜ୍ୟର କ୍ଷେତ୍ରଫଳ ୧୪୬୩ ବର୍ଗମାଇଲ ଥିଲା ଏବଂ ସମୁଦାୟ ୨, ୬୯, ୮୫୩ ଜଣ ଲୋକ ବାସ କରୁଥିଲେ । ତନ୍ମଧ୍ୟରୁ ୧୩୧୨୪୦ ଜଣ ଥିଲେ ପୁରୁଷ ଓ ୧୩୮୬୧୩ ଜଣ ଥିଲେ ସ୍ତ୍ରୀ । ରାଜ୍ୟରେ ସର୍ବମୋଟ୍ ୧୦୯୦ ଗୋଟି ରାଜସ୍ୱ ଗ୍ରାମ ରହିଥିଲା । ରାଜ୍ୟର ମୋଟ ରାଜସ୍ୱ ଥିଲା ଟ ୩,୯୨,୬୮୬ଙ୍କା ଏବଂ ବ୍ୟୟ ଥିଲା ୪୨,୯୧,୮୯୨ଙ୍କା । ଚାଷୀମାନଙ୍କ ହିତାର୍ଥେ ରାଜା ୪୦ଗୋଟି ବିରାଟ ଜଳାଶୟ ନିର୍ମାଣ କରିଥିଲେ ୧୯୦୮.୦୯ ମସିହାର ଦୁର୍ଭିକ୍ଷରେ ରାଜା ସ୍ୱୀୟ ରାଜକୋଷର ଟ୬୦, ୦୦୦ ଙ୍କା ବ୍ୟୟକରି ଅନ୍ନକ୍ଲିଷ୍ଟ ପ୍ରଜାମାନଙ୍କୁ ସାହାଯ୍ୟ ପ୍ରଦାନ କରିଥିଲେ । ଚାଷୀମାନେ ଋଣକରି କୃଷିକାର୍ଯ୍ୟ ସଂପାଦନା ନିମିତ୍ତ ସେ କୃଷିବ୍ୟାଙ୍କ ଖୋଲିଥିଲେ । ୧୯୧୫ ମସିହାରେ ମରୁଡ଼ି ପଡ଼ିବାରୁ ସେ ଖଜଣା ଛାଡ଼ କରିଥିଲେ ତଥା ସରକାରୀ

ଖମାରରୁ ବିନା ସୁଧରେ ପ୍ରଜାଙ୍କୁ ଧାନକରଜ ଦେଇଥିଲେ । ସେହି ସମୟରେ ମୋଟ ରାଜସ୍ୱ ଟ ୨,୮୫, ୬୬୮ଙ୍କା ଥିଲା ବେଳେ, ବ୍ୟୟ ବାବଦକୁ ଟ୩,୬୦,୩୬୦ଙ୍କଲା ଖର୍ଚ୍ଚ ହୋଇଥିଲା । ୧୯୧୮ ମସିହା ବେଳକୁ ମୋଟ ଆୟ ଟ ୩,୦୪,୯୪୪ ଙ୍କା ଥିଲାବେଳେ ବ୍ୟୟ ଟ୩,୩୮୯୭୬ ଙ୍କା ହୋଇଥିଲା । ରାଜାଙ୍କର ଏତାଦୃଶ ଜନମଙ୍ଗଳ କାର୍ଯ୍ୟରେ ତତ୍କାଳୀନ ଇଂରେଜ ସରକାର ବିଶେଷ ପ୍ରୀତ ହୋଇଥିଲେ । ଏ ସଂପର୍କରେ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଏଚ.ଏଲ୍.ଫ୍ରେଗର ୧୯୦୭ ମସିହା (ତା୫/୧୧/୧୯୦୭) ବେଙ୍ଗଲ୍ ଗେଜେଟ୍‌ରେ ଉଲ୍ଲେଖ କରିଥିଲେ :

"Raja Surapratap Mahindra Bahadur was installed in Februarey 1906. He was a progressive ruler of enlightened views and an impartial administrater of justice. He introduced various administrative measures and administered the state well and wisely. He took keen interest in education and the reforms. He introduced the education department in the state, placed it on a sound footing. Both primary and secondry education as the result of measures taken by him made considerable pragress. He had some big irrigation project constrocted in the state and had some temples constructed and repaired. During his rule Scarecity due to partial failure of crops,over took the state in 1908. He met the situation and relieved the distress by speuding about a lakh of rupees. He commenced the land revenue settlement in 1912 on modern scientific principles."

ଆପଣାର ପ୍ରଜାବତ୍ସଳତା, ସୁଶାସନ ଓ ଉଦାରନୀତି ଯୋଗୁଁ ସେ ଇଂରେଜ ସରକାରଙ୍କ ସମେତ ସମସ୍ତଙ୍କର ପ୍ରିୟଭାଜନ ହୋଇ ପାରିଥିଲେ । ଇଂରେଜ ପ୍ରଶାସନରେ ସେ ଏକ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଥିଲେ । ରାଜତ୍ୱର ପ୍ରାରମ୍ଭରେ ୧୮୯୪ ମସିହା ଅକ୍ଟୋବର ୨୭ ତାରିଖରେ ଇଂରେଜ ସରକାର ନାବାଳକ ସୁରପ୍ରତାପଙ୍କୁ ରାଜା ଭାବରେ ସନନ୍ଦ ପ୍ରଦାନ କରିଥିଲେହେଁ ତାଙ୍କ ସୁଶାସନରେ ସନ୍ତୋଷ ପ୍ରକାଶ କରି ୧୯୧୫ ମସିହା ମେ ୧୫ ତାରିଖରେ ନୂତନ ସନନ୍ଦ ପ୍ରଦାନ କରିଥିଲେ । ଏହି ସନନ୍ଦରେ ସୁରପ୍ରତାପଙ୍କୁ କେତେକ ବିଶେଷ କ୍ଷମତା ପ୍ରଦାନ କରାଯାଇଥିଲା । ସେ ମଧ୍ୟ ଆପଣାର ଜନମଙ୍ଗଳ କାର୍ଯ୍ୟାବଳୀ ଯୋଗୁଁ ଭାରତୀୟ ରାଜନ୍ୟବର୍ଗଙ୍କ ମଧ୍ୟରେ ସୁଖ୍ୟାତି ଅର୍ଜନ କରିଥିଲେ । ଭାରତୀୟ ରାଜନ୍ୟବର୍ଗଙ୍କ ଉପରେ ସଂକ୍ଷିପ୍ତ ବିବରଣୀ ମୂଳକ ପୁସ୍ତକ

Rulling princes and chief of Indianରେ ସୁରପ୍ରତାପଙ୍କ ସଂପର୍କରେ ଉଲ୍ଲେଖ ରହିଛି

"Raja Sura pratap mahindra Bahadur the son of Dinabandhu. Mahindra Bahadur was born in 1885 and he took charge of the state in 1906 after completing his 21st year. During his minority the chief was carefully educated. The Raja since his installeation on the gadi, introduced resedwed. forest lows, improved the working of the same by appointing qualified officecs reclaimed jungle lands by leasing them out an easy term, executed irrigation workds on important lines for facilitating agreculture, encouraged the breeding of cows and horses by the free distribution of good bulls and stallions, devoloped various kinds of arts and industries, such as weaving, carpentry, fine art works in feligree, horn and ivory, seuf candidates ab road for technical education, erected magnificant building for the English high school in commemoration of his illustrians grandfather is founded the george primary school, established a network of compulsory primary schools for removing illiteracy from the state, created bank on the lines of co-operative association to help the needly tenaants and to save them from the jams of the money leanding mahajans and middleman Introduced the town improvement scheme for the sanitation of town and providing means for obiviating the heavy losses sustaired by the town men on account of frequent burning of houses and among many other things supplimanted the courts of justice by creating addifinal magistrates for the speedy disposal of cases...."

ଏହା ହେଉଛି ସୁରପ୍ରତାପଙ୍କ ଲୋକହିତକର କାର୍ଯ୍ୟାବଳୀର ସଂକ୍ଷିପ୍ତ ସୂଚନା ।

ଜ୍ୟେଷ୍ଠପୁତ୍ର ଶଙ୍କର ପ୍ରତାପଙ୍କ ପରେ ରାଜାଙ୍କର ଅନ୍ୟ ପାଞ୍ଚଗୋଟି ପୁତ୍ର ହୋଇଥିଲେ । ସେମାନେ ହେଲେ ନୃସିଂହ ପ୍ରତାପ, ଶ୍ରୀଶେଶ ପ୍ରତାପ, ଅମରେନ୍ଦ୍ର ପ୍ରତାପ, ସମରେନ୍ଦ୍ର, ପ୍ରତାପ ଗୌରେନ୍ଦ୍ର ପ୍ରତାପ । ତନ୍ମଧ୍ୟରୁ ଚତୁର୍ଥ ରାଜକୁମାର ଅମରେନ୍ଦ୍ର ପ୍ରତାପ ପରବର୍ତ୍ତୀ କାଳରେ ଡମପଡ଼ା ରାଜ୍ୟକୁ ପୋଷ୍ୟପୁତ୍ର ହୋଇ ଯାଇଥିଲେ ।

ସୁରପ୍ରତାପଙ୍କ ରାଜତ୍ୱରେ ଢେଙ୍କାନାଳରେ ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରଭୂତ କଲ୍ୟାଣ ସାଧନ ହୋଇଥିଲା । ସେହି ସମୟରେ ପଣ୍ଡିତ ରାମଚନ୍ଦ୍ରନନ୍ଦ

ଢେଙ୍କାନାଳ ଇତିହାସ, ଅଷ୍ଟନାୟିକା, ରାମଚଣ୍ଡୀ ଜଣାଣ, ପଣ୍ଡିତ ଗଣେଶ୍ୱର ମିଶ୍ର ସର୍ବମଙ୍ଗଳାସ୍ତୁତି, ପଣ୍ଡିତ ବାସୁଦେବ ପଟ୍ଟନାୟକ ବ୍ରଜନାଥ ସାହିତ୍ୟ ସମୀକ୍ଷା, ମାର୍ଥାପୁରର ପଣ୍ଡିତ ବୈଦ୍ୟନାଥ ଦାଶ ପ୍ରକୃତିଗାଥା, ଭୁବନର ପଣ୍ଡିତ କେଶବ ମିଶ୍ର ନାଏବବାବୁ, ଶୋଭନା ପ୍ରଭୃତି ରଚନା କରିଥିଲେ । ନିଜେ ରାଜା "ସାକ୍ଷୀଗୋପାଳ" ରଚନା କରିଥିଲେ, ଯାହାକି ତାଙ୍କ ମୃତ୍ୟୁପରେ ତଦୀୟ ମହାରାଣୀ କୃଷ୍ଣଚନ୍ଦ୍ର ପ୍ରିୟାଙ୍କ ଦ୍ୱାରା ଶେଷ ହୋଇଥିଲା । ତତ୍‌କାଳୀନ ଢେଙ୍କାନାଳର ବିଶିଷ୍ଟ ନାଟ୍ୟକାର ଥିଲେ ଚନ୍ଦ୍ରଶେଖର ପାଣି । ସେ ଭକ୍ତବୀର, ବାଲୁକାପିଣ୍ଡ, ଇନ୍ଦିରା ପରିଣୟ, ରଘୁ ଅରକ୍ଷିତ, ବୀର ତ୍ରିଲୋଚନ ଚନ୍ଦ୍ରହାସ ପ୍ରଭୃତି ନାଟକ, କଳିକୁଳଚନ୍ଦ୍ରମା ନାମକ ପ୍ରହସନ ଏବଂ ଗୁଣ୍ଡିଚିମୂଷା ନାମରେ ଶିଶୁସାହିତ୍ୟ ରଚନା କରିଥିଲେ । ପଣ୍ଡିତ ନଗେନ୍ଦ୍ର ମହାପାତ୍ର ଓ ପଣ୍ଡିତ ବୈଷ୍ଣବ ମହାପାତ୍ରଙ୍କ ସକଳକୃତୀ ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ । ମାର୍ଥାପୁର ଶାସନର ପଣ୍ଡିତ ଚକ୍ରଧର ଦାଶ ହରିଲୀଳାମୃତ, ଶ୍ୟାମଲୀଳାମୃତ, ଚମ୍ପୁ, ଭାଗବତମହାତ୍ମ୍ୟ, ବହ୍ମବୈବର୍ତ୍ତପୁରାଣ, ମାଳତୀ ଜନ୍ମ, ସୁଭଦ୍ରା ହରଣ, ଚନ୍ଦ୍ରାବତୀ ହରଣ, ଆତ୍ମବୋଧଗୀତା, ବିଷମରହସ୍ୟ, ଚଉତିଶା ଓ ମୁକ୍ତିସୋପାନଗୀତା ପ୍ରଭୃତି ରଚନା କରିଥିଲେ । ରାଜସଭାରେ ପ୍ରତ୍ୟହ ଜ୍ଞାନୀ ଗୁଣୀବିଦ୍ୱାନଙ୍କ ଦ୍ୱାରା ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ଆଲୋଚନା ହେଉଥିଲା ।

ସେହି ସମୟରେ ଢେଙ୍କାନାଳ ରାଜ୍ୟରେ ୨୭ ଗୋଟି ବ୍ରାହ୍ମଣୀଶାସନ ରହିଥିଲା । ସେଗୁଡ଼ିକ ହେଉଛି ମାର୍ଥାପୁର ଶାସନ, ପୁରୁଷୋତ୍ତମ ପୁର ଶାସନ, ଶ୍ରୀବସ୍ତ ଭଗୀରଥ ପୁର ଶାସନ, ନୃସିଂହପୁର ଶାସନ (କୃଷ୍ଣପୁର), ଇଚ୍ଛାବତୀପୁର ଶାସନ, ରାୟ ନୃସିଂହ ପୁରଶାସନ, ଭଗୀରଥ ପୁର ଶାସନ, କୁନ୍ଦନ ଦେଇ ପୁର ଶାସନ, ମୁଣ୍ଡଇଲେ ବଳଭଦ୍ରପୁର ଶାସନ, ଗୋବିନ୍ଦ ବିଦ୍ୟାଧର ପୁର ଶାସନ ନୟାଭାଗୀରଥୀ ପୁର ଶାସନ, ବ୍ରଜ ବିହାରୀ ପୁରଶାସନ, କୁଞ୍ଜବିହାରୀ ପୁର ଶାସନ, ସଦାଶିବ ପୁର ଶାସନ, ଭୋଜଦେଇ ପୁର ଶାସନ, ନୀଳାମ୍ବର ପୁର ଶାସନ, ମହୀନ୍ଦ୍ରପୁର ଶାସନ, ବିଷ୍ଣୁପୁର ଶାସନ, ବୃନ୍ଦାବନପୁର ଶାସନ, ମୁକ୍ତାଦେଇ ପୁର ଶାସନ, ରାଧାଦେଇପୁର ଶାସନ, ଲତାଦେଇ ପୁର ଶାସନ, ରାମଚନ୍ଦ୍ର ପୁର ଶାସନ, ବିଷ୍ଣୁପୁର କରଗୋଳା ଶାସନ, ନୀଳକଣ୍ଠପୁର ଶାସନ, ରାୟପୁର ଶାସନ ଓ ସାମନ୍ତ ସିଂହାର ପୁର ଶାସନ । ଏତଦ୍‌ଭିନ୍ନ ୩୨ ଗୋଟି କରବାଡ଼ ମଧ୍ୟ ରହିଥିଲା । ଏହି ଶାସନ ଓ କରବାଡ଼ ମାନଙ୍କର ସୁପରିଚାଳନା ତଥା ଉନ୍ନୟନ

ନିମିତ୍ତ ରାଜା ସୁରପ୍ରତାପ ଶାସନ ମହାଜନ ମହାସଭା ଓ କେତେକ ନୀତି ପ୍ରଣୟନ କରିଥିଲେ ।

ଏହି ସମୟରେ ଢେଙ୍କାନାଳରେ ନାଟ୍ୟକଳାର ବିଶେଷ ଉନ୍ନତି, ପରିଲକ୍ଷିତ ହୋଇଥିଲା । ବିଶେଷତଃ ରଙ୍ଗମହଲରେ ନିୟମିତ ନାଟକ ପରିବେଷଣ ହୋଇ ଦର୍ଶକୀୟ ଆଦୃତି ଲାଭ କରିଥିଲା । ଏତଦ୍‌ଭିନ୍ନ ଭୁବନ ମାର୍ଥାପୁର ପ୍ରଭୃତି ସ୍ଥାନରେ ସୌଖୀନ ନାଟ୍ୟ ସଂସ୍ଥାମାନ ଗଢ଼ି ଉଠିଥିଲା । ରାଜା ସୁରପ୍ରତାପ ଷଢ଼େଇକଳା, ପୁରୁଲିଆ ଓ ମୟୁରଭଞ୍ଜରୁ ଛଉ ନୃତ୍ୟ ବିଶାରଦଙ୍କୁ ଆଣି ଢେଙ୍କାନାଳରେ ଛଉନାଟର ପ୍ରସାର କରିଥିଲେ । ପରିଣାମ ସ୍ୱରୂପ ଚନ୍ଦ୍ରଶେଖର ପ୍ରସାଦ ଓ ବଳରାମପୁରରେ ବାର୍ଷିକ ଛଉନୃତ୍ୟ ମହାବିଷୁବ ସଂକ୍ରାନ୍ତିରେ ଅନୁଷ୍ଠିତ ହେଉଥିଲା । ଏତଦ୍‌ଭିନ୍ନ ରାଜାଙ୍କ ପ୍ରୋତ୍ସାହନରେ ରାୟରାମାନନ୍ଦ, ସାକ୍ଷୀଗୋପାଳ, ପ୍ରତାପରୁଦ୍ର ପ୍ରଭୃତି ନାଟକ ମଞ୍ଚସ୍ଥ ହୋଇଥିଲା ।

ସୁରପ୍ରତାପ ଥିଲେ ପରମବୈଷ୍ଣବ । ତାଙ୍କ ଗୁରୁ ପାର୍ବତୀ ଚରଣ ଦାସ ମଧ୍ୟ ବୈଷ୍ଣବ ଥିଲେ । ଅପରପକ୍ଷରେ ଢେଙ୍କାନାଳ ରାଜପରିବାରର ବୈଷ୍ଣବଗୁରୁ ଥିଲେ ବୃନ୍ଦାବନ ରାଧାରମଣ ମଠାଧୀଶ ଗୋପାଳ ଭଟ୍ଟଗୋସ୍ୱାମୀଙ୍କ ପରିବାର । ଏହି ବଂଶର ସୁଯୋଗ୍ୟ ଦାୟାଦ ପରମବୈଷ୍ଣବ ମଧୁସୂଦନ ଗୋସ୍ୱାମୀ ଢେଙ୍କାନାଳ ପଦାର୍ପଣ ପୂର୍ବକ କୁଞ୍ଜକାନ୍ତ ମନ୍ଦିର ନିର୍ମାଣ କରିଥିଲେ । ଏହା ପରେ ଗୋଷ୍ଠାଷ୍ଟମୀ, ନିତ୍ୟାନନ୍ଦ ମହାପ୍ରଭୁଙ୍କ ଜନ୍ମୋତ୍ସବ ପ୍ରଭୃତି ବୈଷ୍ଣବ ମହୋତ୍ସବ କୁଞ୍ଜକାନ୍ତ ମନ୍ଦିରରେ ଅନୁଷ୍ଠିତ ହେଉଥିଲା । ରାଜାଙ୍କ ପ୍ରଚେଷ୍ଟାରେ କୁଞ୍ଜକାନ୍ତ ମନ୍ଦିର, ବଳଦେବଜୀଉ ମନ୍ଦିର, କନ୍ତିଓ ମଠ ଓ ଯାଉଁଳୀ ପୋଖରୀ ମଠରେ ମହାସମାରୋହରେ ଝୁଲଣ ଓ ରାସୋତ୍ସବ ଅନୁଷ୍ଠିତ ହେଉଥିଲା । ସେହି ସମୟରେ ବଳଦେବ ଜୀଉ ମନ୍ଦିର ପ୍ରାଙ୍ଗଣରେ ସାର୍ବଜନୀନ ରାସୋତ୍ସବ ଅନୁଷ୍ଠିତ ହେଉଥିଲା । ଏହି ମହୋତ୍ସବରେ ଭୁବନ ସନ୍ନିକଟ ବେଣ୍ଟମାଳିଆ ଗ୍ରାମର ବୈଷ୍ଣବ ବୃନ୍ଦ ଚିତ୍ତାକର୍ଷକ ରାସଲୀଳା ପରିବେଷଣ କରୁଥିଲେ । ଏତଦ୍‌ଭିନ୍ନ ରାଜ୍ୟର ବିଭିନ୍ନ ସ୍ଥାନରେ ରାସଲୀଳା ଓ କୃଷ୍ଣଲୀଳା ପରିବେଷିତ ହେଉଥିଲା । ମୋଟ ଉପରେ ଉଲ୍ଲେଖକଲେ, ସମଗ୍ର ଢେଙ୍କାନାଳରେ ସେହି ସମୟରେ ବୈଷ୍ଣବ ଧର୍ମର ସ୍ରୋତ ପ୍ରବାହିତ ହେଉଥିଲା ।

ଦେବୋପମ ଗୁଣାବଳୀ ସଂପନ୍ନ ରାଜର୍ଷି ସୁରପ୍ରତାପ ପ୍ରଜାମଙ୍ଗଳରେ ଆପଣାକୁ ନିୟୋଜିତ କରି ସଭିଙ୍କର ପ୍ରିୟଭାଜନ ହୋଇପାରିଥିଲେ । ଏହି

ଧର୍ମାତ୍ମା ଓ ପରମବୈଷ୍ଣବ ରାଜାଙ୍କ ପ୍ରଚେଷ୍ଟାରେ ଢେଙ୍କାନାଳର ଧର୍ମ, ସଂସ୍କୃତି, ପରଂପରା,ସାହିତ୍ୟ ଓ ପ୍ରଶାସନ ନବ ରୂପ ଧାରଣ କରିଥିଲା । ଓଡ଼ିଶାର ପ୍ରଥମ ଇତିହାସ ରଚୟିତା W.W. Hunter ସ୍ୱରଚିତ History of Orissa Vol-I page 104 ରେ ଉଲ୍ଲେଖ କରିଛନ୍ତି :-

"As Dhenkanal is most civilised so mayurabhaja of the peacock country is the largest of the Tribntary states."

ଦୁଃଖର ବିଷୟ, ମାତ୍ର ୩୪ ବର୍ଷ ବୟସରେ ସମସ୍ତଙ୍କୁ ଶୋକସାଗରରେ ଭସାଇ ରାଜର୍ଷି ସୁରପ୍ରତାପ ୧୯୧୮ ମସିହା ଅକ୍ଟୋବର ୧୬ ତାରିଖରେ ସ୍ୱର୍ଗାରୋହଣ କରିଥିଲେ । ରାଜାଙ୍କର ଏହି ଅକାଳ ବିୟୋଗ ରାଜ୍ୟବାସୀ, ପ୍ରଜା, ପରିଜନ, ସର୍ଭିଙ୍କୁ ବାଧିଥିଲା । ବିଶେଷତଃ ରାଜପରିବାରରେ ରାଜମାତା ଅନ୍ନପୂର୍ଣ୍ଣା, ମହାରାଣୀ କୃଷ୍ଣଚନ୍ଦ୍ର ପ୍ରିୟା ତଥା ଛଅଜଣ ରାଜକୁମାରଙ୍କୁ ରାଜା ଶୋକସାଗରରେ ଭସାଇ ଦେଇ ଚାଲିଗଲେ । ପୁତ୍ରସମ ରାଜାଙ୍କ ବିୟୋଗରେ ମ୍ରିୟମାଣ ହୋଇ ଗୁରୁ·ପାର୍ବତୀଚରଣ ଦାସ ଚାକିରୀରୁ ଇସ୍ତଫା ଦେଇ ବୃନ୍ଦାବନ ଚାଲିଗଲେ । ତାଙ୍କ ଇସ୍ତଫା ପତ୍ରଟି କରୁଣ ରସାସିକ୍ତ । ସେ ପରବର୍ତ୍ତୀ ଜୀବନ ବାବାଜୀ ପଦ୍ମଚରଣ ଦାସ ଭାବରେ ବୃନ୍ଦାବନରେ କଟାଇଲେ ।

ପରବର୍ତ୍ତୀ କାଳରେ ବାବାଜୀ ପଦ୍ମଚରଣ ଦାସ ଶ୍ରୀଚୈତନ୍ୟ ଚରିତାମୃତର ଓଡ଼ିଆ ଅନୁବାଦଟିକୁ ରାଜର୍ଷି ସୁରପ୍ରତାପଙ୍କ ନାମରେ ଉତ୍ସର୍ଗ କରିଥିଲେ ।

"ହେ ସୁର ପ୍ରତାପ ସୁରୋପମ ଗୁଣାବଳୀ,
ଗଲୁ ଚାଲି ଢେଙ୍କାନାଳ କରିଣ ଅନ୍ଧାର ।
ଲାଗୁଥିଲା ଢେଙ୍କାନାଳ ବୃନ୍ଦାବନ ପରି
ବନରାଜି ସୁଶୋଭିତ ଗିରି ସୁବେଷ୍ଟିତ
× × ×
ଅଛିତ ଶ୍ରୀକୁଞ୍ଜକାନ୍ତ ସୁନ୍ଦର ମନ୍ଦିର,
ଅଛି ସେହି ବନଶୋଭା ଅକ୍ଷୁର୍ଣ୍ଣ ଭାବରେ ।
ଗିରିରାଜି ରହିଛନ୍ତି ଅଟଳ ମହୀରେ;
କିନ୍ତୁ କି ଅଭାବ ଆଜି ହୋଇଛି ମୋହରେ
× × ×

ପଦେ ପଦେ ଦେଖିଅଛି ତୋର ଆଚରଣ
କି ବର୍ଣ୍ଣିବି ଗୁଣାବଳୀ ସୁରରେ ତୋହର

× × ×

କହୁଅଛି ଚୁମ୍ବକରେ ସେମାନଙ୍କୁ କିଛି
ରାଜା ହୋଇ ନଥିଲା ତୋ ରାଜ ଅଭିମାନ
ଧନଗର୍ବ ରୂପଗର୍ବ ଯଉବନ ଗର୍ବ
ମାଳିଥିଲେ ଏସକଳ ତୋହଠାରେ ହାରି।

× × ×

ଆହୁରି ରହିଲା ଏକ ବାସନା ଅପୂର୍ଣ୍ଣ,
ନପାରିଲ ଯା ଶୁଣାଇ ଥରେ ପୂର୍ଣ୍ଣକରି ।
ଚୈତନ୍ୟ ଚଇତାମୃତ ସର୍ବାମୃତ ସାର,
ବୁଝାଇଣ କିଛି କିଛି ଏହି ଟୀକା ସହ ।

ରାଜା ସୁରପ୍ରତାପ ମହୀନ୍ଦ୍ର ବାହାଦୂର ଯଥାର୍ଥରେ ଥିଲେ ରାଜର୍ଷି । ଅଖଣ୍ଡ କ୍ଷମତା, ଅଚଳାଚଳ ସଂପତ୍ତିର ଅଧିକାରୀ ହୋଇ ମଧ୍ୟ ସେ ନିରଭିମାନ ଓ ବୈଷ୍ଣବ ଭାବାପନ୍ନ ଥିଲେ । ବୈଷ୍ଣବଧର୍ମର ପ୍ରଚାର କାମନାରେ ସେ ପଣ୍ଡିତ କୁଳଦା ପ୍ରସାଦ ମଲ୍ଲିକ ଭାଗବତରତ୍ନ, ବାବାଜୀ ଶ୍ରୀ ରାମ ଦାସ, କୀର୍ତ୍ତନୀୟା ଶ୍ରୀ ହରିଦାସ, ସୁବକ୍ତା ଉପେନ୍ଦ୍ର ଭକ୍ତିବିନୋଦ, ଠାକୁର ଶ୍ରୀ ହରନାଥ, ମୋହନ ସୁନ୍ଦର ଦେବଗୋସ୍ୱାମୀ, ସନ୍ନ୍ୟାସୀ ମଧୁସୂଦନ ତୀର୍ଥ ସରସ୍ୱତୀ, ବାବାଜୀ ନିତ୍ୟାନନ୍ଦ ଦାସ ପ୍ରଭୃତିଙ୍କୁ ଢେଙ୍କାନାଳ ଆଣି ନାମ ପ୍ରଚାର କରାଇଥିଲେ । ଅଧିକନ୍ତୁ, ସେ ସ୍ୱରାଜ୍ୟରେ ନାମ ପ୍ରସାର କାମନାରେ କେତେଜଣ କୀର୍ତ୍ତନିୟାଙ୍କୁ ସଂକୀର୍ତ୍ତନ ପ୍ରଶିକ୍ଷକ ଭାବରେ ନିଯୁକ୍ତି ଦେଇଥିଲେ । ଗୌରବର କଥା, ମୃତ୍ୟୁର ଅବ୍ୟବହିତ ପୂର୍ବରୁ ରାଜାଙ୍କ ଇଚ୍ଛାରେ ରଙ୍ଗମଞ୍ଚରେ ''ନିମାଇ ସନ୍ୟାସ'' ଲୀଳା ଅଭିନୀତ ହୋଇ ଗଭୀର ଆଲୋଡ଼ନ ସୃଷ୍ଟି କରିଥିଲା । ସଂକ୍ଷେପରେ ଉଲ୍ଲେଖକଲେ, ମାତ୍ର ବାରବର୍ଷ ଶାସନରେ ସୁଶାସକ ଓ ପରମବୈଷ୍ଣବ ଭାବରେ କାର୍ଯ୍ୟନିର୍ବାହକରି ଶ୍ରୀକୃଷ୍ଣାନୁରାଗୀ ରାଜର୍ଷି ସୁରପ୍ରତାପ ପବିତ୍ର ଆଶ୍ୱିନ ଶୁକ୍ଳ ଏକାଦଶୀ ତିଥିରେ କୃଷ୍ଣପଦାରବିନ୍ଦରେ ଲୀନ ହୋଇଗଲେ ।



# ରାଜା ଶଙ୍କର ପ୍ରତାପ ମହୀନ୍ଦ୍ରବାହାଦୂର

ରାଜର୍ଷି ସୁରପ୍ରତାପଙ୍କ ମୃତ୍ୟୁପରେ ତଦୀୟ ଜ୍ୟେଷ୍ଠପୁତ୍ର ଶଙ୍କର ପ୍ରତାପ ଢେଙ୍କାନାଳର ରାଜା ହେଲେ । କିନ୍ତୁ ରାଜା ହେବା ସମୟରେ ସେ ନାବାଳକଥିବାରୁ ରାଜ୍ୟ court of wardବା ଇଂରେଜ ସରକାରଙ୍କ ପ୍ରତ୍ୟକ୍ଷ ଶାସନାଧୀନ ରହିଲା । ୧୯୧୮ରେ ସୁରପ୍ରତାପଙ୍କ ମୃତ୍ୟୁ ହେବାବେଳକୁ ଶଙ୍କର ପ୍ରତାପଙ୍କ ବୟସ ଥିଲା ୧୪ ବର୍ଷ । ଶଙ୍କର ପ୍ରତାପ ୧୯୦୪ ମସିହାରେ ଜନ୍ମ ନେଇଥିଲେ । ଚଉଦବର୍ଷ ବୟସରେ ସେ ଯେତେବେଳେ ରାୟପୁରର ରାଜକୁମାର କଲେଜରେ ଅଧ୍ୟୟନ କରୁଥିଲେ ଠିକ୍ ସେହି ସମୟରେ ୧୯୧୮ ମସିହାରେ ତାଙ୍କ ପିତା ରାଜର୍ଷି ସ୍ୱରପ୍ରତାପ ଅକାଳରେ ପରଲୋକ ଗମନକଲେ । ପରେ ୧୯୧୯ ମସିହା ମେ ୨ ତାରିଖରେ ଢେଙ୍କାନାଳ ରାଜପ୍ରାସାଦସ୍ଥ ରଙ୍ଗମହଲରେ ଓଡ଼ିଶା ପ୍ରଦେଶର କମିଶନର, କଟକ କଲେକ୍ଟର, ଅନୁଗୋଳର ଡେପୁଟି କମିଶନର ରାଜ୍ୟର ଅଧକ୍ଷ ବା ସୁପରିଣ୍ଟେଣ୍ଡେଣ୍ଟ ତଥା ଅନ୍ୟାନ୍ୟ ଦରବାରୀଙ୍କ ଉପସ୍ଥିତିରେ ରାଜା ଶଙ୍କର ପ୍ରତାପ କୌଳିକ ପଦପଦବୀ ସହିତ ରାଜଗାଦୀନସୀନ ହୋଇଥିଲେ । ରାଜା ନାବାଳକ ଥିବାରୁ ଇଂରେଜ ସରକାରଙ୍କ ପ୍ରତ୍ୟକ୍ଷ ଶାସନରେ ଜଣେ ପ୍ରତିନିଧିଙ୍କ ଦ୍ୱାରା ରାଜ୍ୟଶାସନ ପରିଚାଳିତ ହେଲା । ୧୯୧୮ଠାରୁ ରାଜା ସାବାଳକ ହେବା ଅର୍ଥାତ୍ ୧୯୨୫ ମସିହା ପର୍ଯ୍ୟନ୍ତ ନାବାଳକ ରାଜା ଶଙ୍କର ପ୍ରତାପ ମହୀନ୍ଦ୍ର ବାହାଦୂରଙ୍କ ଅଭିଭାବକ ଥିଲେ ବାରିଷ୍ଟର ଜାନକୀନାଥ ବୋଷ, ଶ୍ରୀ ପ୍ରଫୁଲ ସରକାର, ରାୟ ବାହାଦୂର ରାଜକିଶୋର, ରାଜକୁମାର କଲେଜର ଅଧକ୍ଷ ଭି.ଏସ୍.ଷ୍ଟୋ, ମିଷ୍ଟର ସ୍ମିଥ୍ ପିୟରସ୍ ଏବଂ ସାର୍ ଯଦୁନାଥ ସରକାର ।

ସେହି ସମୟରେ ଓଡ଼ିଶା ପ୍ରଦେଶ ସ୍ୱତନ୍ତ୍ର ହୋଇନଥିଲା । ଓଡ଼ିଶାର ମୋଗଲବନ୍ଦୀ ଅଞ୍ଚଳକୁ ଇଂରେଜମାନେ ପ୍ରତ୍ୟକ୍ଷ ଶାସନ କରୁଥିଲେ ଓ ଗଡ଼ଜାତଅଞ୍ଚଳ ସଂପୃକ୍ତ ରାଜାମାନଙ୍କ ଶାସନରେ ଥିଲା । ଢେଙ୍କାନାଳ ରାଜ୍ୟ କରଦ ଗଡ଼ ଜାତ ରାଜ୍ୟ ହେଲେ ହେଁ ନାବାଳକ ଥିବାରୁ ଏହା ପ୍ରତ୍ୟକ୍ଷ ଶାସନରେ ଥାଇ ମୋଗଲ ବନ୍ଦୀ ସଦୃଶ ଆଇନ୍ ଏଠାରେ ପ୍ରଚଳନ ହେଉଥିଲା । ଇଂରେଜମାନଙ୍କ ଆଇନ୍ ଯୋଗୁଁ ପ୍ରଜାମାନଙ୍କର କୌଣସି ଅଧିକାର ନଥିଲା । ତତ୍କାଳୀନ ଇଂରେଜ ଶାସକମାନେ ନିର୍ମମ ଭାବରେ ଶାସନ କରୁଥିଲେ । ପୂର୍ବରୁ

ମହାରାଜା ଭାଗୀରଥଙ୍କ ମୃତ୍ୟୁପରେ ତଥା ନାବାଳକ ଅବସ୍ଥାରେ ରାଜା ଦୀନବନ୍ଧୁଙ୍କ ମୃତ୍ୟୁପରେ ୧୮୭୭ ଠାରୁ ୧୯୦୬ ପର୍ଯ୍ୟନ୍ତ ଢେଙ୍କାନାଳରାଜ୍ୟ ଇଂରେଜମାନଙ୍କ ପ୍ରତ୍ୟକ୍ଷ ନିୟନ୍ତ୍ରଣରେ ରହିଥିଲା । କିନ୍ତୁ ତତ୍‌କାଳୀନ ପ୍ରଶାସକଙ୍କ ଦୂରଦୃଷ୍ଟି ଯୋଗୁଁ ଢେଙ୍କାନାଳରେ ମହାରାଜା ଭାଗୀରଥି ଜାରିକରିଥିବା ସଂସ୍କାରମୂଳକ ନୀତି ଅପରିବର୍ତ୍ତିତ ରହିଥିଲା । ରାଜର୍ଷି ସୁରପ୍ରତାପ ୧୯୦୬ ରୁ ୧୯୧୮ ପର୍ଯ୍ୟନ୍ତ ରାଜ୍ୟ ଶାସନ ପୂର୍ବକ ସେହି ନୀତିନିୟମ ବଳବତ୍ତର ରଖିଥିଲେ । ଫଳରେ ଢେଙ୍କାନାଳ ପ୍ରଜା ଶୋଷଣର ଶିକାର ହୋଇନଥିଲେ । ୧୯୧୮ ଠାରୁ ଯେଉଁ ପ୍ରଶାସକବୃନ୍ଦ ନାବାଳକ ରାଜା ଶଙ୍କର ପ୍ରତାପଙ୍କ ଅଭିଭାବକ ଥିଲେ ସେମାନେ ପୂର୍ବରୁ ରାଜପରିବାର ଓ ରାଜ୍ୟର ପ୍ରଜାଙ୍କ ସହ ଜଡ଼ିତ ଥିଲେ । ଏପରିକି ସେମାନଙ୍କ ମଧ୍ୟରୁ କେତେଜଣ ଢେଙ୍କାନାଳବାସୀ ଥିଲେ । ପରିଣାମ ସ୍ୱରୂପ court of wards ସମୟରେ ମଧ୍ୟ ଢେଙ୍କାନାଳରେ ଉତ୍ତମ ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରାଯାଇଥିଲା ।

ରାଜର୍ଷି ସୁରପ୍ରତାପଙ୍କ ରାଜତ୍ୱରେ ୧୯୧୨-୧୩ ମସିହାରେ ଢେଙ୍କାନାଳର ଭୂ-ବନ୍ଦୋବସ୍ତ କରାଯାଇଥିଲା । କିନ୍ତୁ ଏହାର ଜରିବ ଆଧୁନିକ ପଦ୍ଧତିରେ 'ଅର୍ଥାତ୍ ଏକର ଡେସିମିଲ୍ ରୀତିରେ ନକରାଯାଇ ପ୍ରାଚୀନ ମାଣଗୁଣ୍ଠ ପଦ୍ଧତିରେ ହୋଇଥିଲା । ତେଣୁ ରାଜା ସୁରପ୍ରତାପ ନୂତନ ପଦ୍ଧତିରେ ବନ୍ଦୋବସ୍ତ କାର୍ଯ୍ୟ ଆରମ୍ଭ କରାଇଥିଲେ । ଏହି ବନ୍ଦୋବସ୍ତକାର୍ଯ୍ୟ ନିର୍ବାହ କରିବା ନିମିତ୍ତ ସେ କଟକରୁ ସର୍ଭେ ଟ୍ରେନିଂ ପାସ୍ କରିଥିବା ସୁଦକ୍ଷ ଓ ଅଭିଜ୍ଞ ଅମୀନ ତଥା କାନୁନ୍‌ଗୋ ମାନଙ୍କୁ ନିଯୁକ୍ତି ଦେଇଥିଲେ । ସକଳ ବନ୍ଦୋବସ୍ତ କାର୍ଯ୍ୟ ଦେଓ୍ୱାନ୍ ରାଜକିଶୋର ତ୍ରିପାଠୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚାଲିଥିଲା । ଅମୀନ ଓ କାନୁନ୍ ଗୋମାନେ ପୂର୍ବବନ୍ଦୋବସ୍ତର ଅଭିଲେଖ ଓ ଭଉଁରିଆ ଅନୁଯାୟୀ ପ୍ରତ୍ୟେକ ରାଜସ୍ୱ ଗ୍ରାମର ସୀମା ନିର୍ଦ୍ଧାରଣ କରିନକ୍‌ସା ପ୍ରସ୍ତୁତ କରିଥିଲେ । ଏହି ନକ୍‌ସାରେ ପୂର୍ବର ଭଉଁରିଆ ନମ୍ବର ପରିବର୍ତ୍ତେ ପ୍ଲଟ ନମ୍ବର ଦିଆଯାଇଥିଲା। ପ୍ରତ୍ୟେକ ପ୍ଲଟର ଲମ୍ବ ପ୍ରସ୍ଥ ତଥା କ୍ଷେତ୍ରଫଳ ନିର୍ଣ୍ଣୟ କରାଯାଇ ବନ୍ଦୋବସ୍ତ ଅଭିଲେଖରେ ଦଖଲକାରୀ ପ୍ରଜାର ନାମ ଏବଂ ମନ୍ତବ୍ୟ କଲମରେ ପୂର୍ବବନ୍ଦୋବସ୍ତର ଭଉଁରିଆ ନମ୍ବର ଦରଜ କରାଯାଇଥିଲା । ଜମିର କ୍ଷେତ୍ରଫଳ ମାଣଗୁଣ୍ଠରେ ଉଲ୍ଲେଖ କରାନଯାଇ ଏକର ଡେସିମିଲ୍‌ରେ ଲେଖାଯାଇଥିଲା । ପ୍ରାଥମିକ ପର୍ଯ୍ୟାୟରେ ପ୍ରଜାମାନଙ୍କୁ ପାରଚା (Draftପର୍ଚ୍ଚା) ପ୍ରଦାନ କରାଯାଇ ଦାବୀ ଆପତ୍ତି ଜଣାଇବାକୁ ନିର୍ଦ୍ଦେଶ

ଦିଆଯାଇଥିଲା । ଠିକ୍ ଏହି ସମୟରେ ରାଜାଙ୍କର ଅକାଳମୃତ୍ୟୁ ହେବାରୁ ଅନିର୍ଦ୍ଦିଷ୍ଟ କାଳପର୍ଯ୍ୟନ୍ତ ବନ୍ଦୋବସ୍ତ କାର୍ଯ୍ୟ ବନ୍ଦ ରହିଥିଲା । ପରେ ନାବାଳକ ରାଜା ଗାଦିନସୀନ ହେବାପରେ ଦେୱାନ୍ ରାଜକିଶୋର ତ୍ରିପାଠୀ ଇଂରେଜସରକାରଙ୍କ ଅନୁମତି କ୍ରମେ ବନ୍ଦୋବସ୍ତକାର୍ଯ୍ୟ ପୁନର୍ବାର ୧୯୨୧ ମସିହାରୁ ଆରମ୍ଭ କଲେ । ଏହି ପୁନର୍ବନ୍ଦୋବସ୍ତରେ ଶ୍ରୀ ଉପେନ୍ଦ୍ର ମହାନ୍ତି ବନ୍ଦୋବସ୍ତ ଅଧିକାରୀ ଭାବରେ ନିଯୁକ୍ତି ପାଇଥିଲେ । ୧୯୨୩-୨୪ରେ ଏହି ବନ୍ଦୋବସ୍ତ ଶେଷ ହେଲା । ସାଧାରଣ ବ୍ୟକ୍ତିବିଶେଷ ଏହାକୁ ୧୯୨୩-୨୪ ମସିହାର ଉପେନ୍ଦ୍ର ବାବୁଙ୍କ ରିଭିଜନ୍ ବନ୍ଦୋବସ୍ତ । କହିଥିଲେ ଏହି ବନ୍ଦୋବସ୍ତ ଅନୁଯାୟୀ ରାଜ୍ୟର ମୋଟ ରାଜସ୍ୱ ଥିଲା ଟଙ୍କା ୨,୪୧,୫୪୯ । ପ୍ରଜା ବା ରୟତମାନେ ନିର୍ଦ୍ଧାରିତ ହାରରେ ଖଜଣା (ଭୂରାଜସ୍ୱ) ଓ ସେସ୍ ପ୍ରଭୃତି ଦାଖଲକରି ଜମି ଭୋଗ କରୁଥିଲେ । ନିଜର ଚାଷଜମିଥିବା ଗ୍ରାମମାନଙ୍କରେ ବାସକରୁଥିବା ପ୍ରଜା ବା ରୟତ ମାନଙ୍କୁ ''ଥାନୀ'' ଓ ଅପରଗ୍ରାମରେ ବାସକରୁଥିବା ରୟତମାନଙ୍କୁ ''ପାହୀ'' ସତ୍ତ୍ୱ ପ୍ରଦାନ କରାଯାଇଥିଲା । ଦେବୋତ୍ତର, ବ୍ରହ୍ମୋତ୍ତର ଓ ପାଇକାଳି ଜମିମାନଙ୍କରୁ ଖଜଣା ଛାଡ଼ କରାଯାଉଥିଲା । ପ୍ରତି ରାଜସ୍ୱ ଗ୍ରାମର ତଉଜି ନମ୍ବର ଉଲ୍ଲେଖ କରାଯାଇ ପ୍ରାଗଣା ବା ବିଷୱାରୀ ଖଜଣା ଅସୁଲ ରେକର୍ଡ଼ ପ୍ରସ୍ତୁତ କରାଯାଇଥିଲା । ପ୍ରତି ଗ୍ରାମ ବା କେତେଗୁଡ଼ିଏ ଗ୍ରାମ ନିମିତ୍ତ ଖଜଣାଅସୁଲପାଇଁ ସର୍ବରାକାର ନିଯୁକ୍ତି ହୋଇଥିଲେ । ସେମାନେ ଆଦାୟ କରିଥିବା ଖଜଣାର ୧୨.୫% କାଟିରଖି ଅବଶିଷ୍ଟ ଖଜଣାଖାନା ବା ଟ୍ରେଜେରୀରେ ଦାଖଲ କରୁଥିଲେ । ସର୍ବରାକାରଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ବା ଉତ୍ତରାଧିକାରୀ ସର୍ବରାକାର ପଦବୀରେ ନିଯୁକ୍ତି ପାଉଥିଲେ । ଉପଯୁକ୍ତ ଉତ୍ତରାଧିକାରୀ ନଥିଲେ ନୂତନ ସର୍ବରାକାର ନିଯୁକ୍ତିର ବ୍ୟବସ୍ଥା ରହିଥିଲା । ପ୍ରଜାମାନେ ଖଜଣା ନଦେଲେ ଜମିରୁ ଉଚ୍ଛେଦ ହେଉଥିଲେ । ଆଦିବାସୀ ଓ ନିମ୍ନଜାତିର ବ୍ୟକ୍ତିବିଶେଷ ଦରବାରଙ୍କ ଅନୁମତି ବିନା ଜମି ବିକ୍ରୀ, ଦାନ, ବଦଳି ବା ବନ୍ଧକ ଦେଇପାରୁନଥିଲେ । ପ୍ରଜାମାନେ ତଇଲା ବା ଜଙ୍ଗଲ ଜମି ଅନୁମତି ପୂର୍ବକ ଧାନଜମିରେ ପରିଣତ କରୁଥିଲେ ଏବଂ ଆବଶ୍ୟକୀୟ ସଲାମୀ ଦେଇ ପଟ୍ଟା ହାସଲ କରୁଥିଲେ । କୌଣସି ରୟତ ଅଭାବରେ ପଡ଼ି ଜମି ବିକ୍ରୟ କରିବାକୁ ଚାହିଁଲେ ନିର୍ଦ୍ଧାରଣ ସଲମୀ ଦେଇ କବଲା ସଂପାଦନ କରୁଥିଲା । ଏହି ବନ୍ଦୋବସ୍ତରେ ପ୍ରଜାଙ୍କ ଉପରେ ଅଧିକ ଖଜଣାଧାର୍ଯ୍ୟ ହୋଇଥିବାରୁ ପ୍ରଜାଅସନ୍ତୋଷ ସୃଷ୍ଟି ହୋଇ ଆନ୍ଦୋଳନ ଜନ୍ମ ନେଇଥିଲା ।

ପରଜଙ୍ଗ ଅଞ୍ଚଳରେ କୃଷକମାନେ ମହେଶଚନ୍ଦ୍ର ସୁବାହୁସିଂହ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଓ ବେଣୁଧର ପଣ୍ଡାଙ୍କ ନେତୃତ୍ୱରେ ଏହି ଆନ୍ଦୋଳନ ଚଳାଇଥିଲେ । ରାଜ୍ୟ ପ୍ରତ୍ୟକ୍ଷ ଶାସନାଧୀନ ଥିବାରୁ Political agad ଏଥିରେ ହସ୍ତକ୍ଷେପ କରି ଦୃଢ଼ ହସ୍ତରେ ଆନ୍ଦୋଳନ ଦମନ କରିଥିଲେ । ଫଳରେ ନେତୃବୃନ୍ଦ ଗିରଫ ହୋଇ ଜେଲରେ ରହିଲେ । ଏହାପରେ ବର୍ଦ୍ଧିତ ଖଜଣା କିଛି ପରିମାଣରେ କମାଇ ଦିଆଗଲା । ଏହା ଢେଙ୍କାନାଳ ପ୍ରଥମ ପ୍ରଜାଆନ୍ଦୋଳନ ।

ଏହି ପ୍ରଜାଅସନ୍ତୋଷ ଢେଙ୍କାନାଳ ରାଜାଙ୍କ ଅବର୍ତ୍ତମାନରେ ଅର୍ଥାତ୍ ରାଜର୍ଷି ସୁରପ୍ରତାପଙ୍କ ମୃତ୍ୟୁ ତଥା ନାବାଳକ ଶଙ୍କର ପ୍ରତାପଙ୍କ ରାଜତ୍ୱରେ ହିଁ ସଂଘଟିତ ହୋଇଥିଲା । ଆନ୍ଦୋଳନକାରୀ ପ୍ରଜାବୃନ୍ଦ ରାଜର୍ଷି ସୁରପ୍ରତାପଙ୍କର ଏକାନ୍ତ ଅନୁଗତ ଥିଲେ । ସେମାନଙ୍କର ବଦ୍ଧମୂଳ ଧାରଣଥିଲାଯେ ସ୍ୱର୍ଗୀୟ ରାଜା ବଞ୍ଚିଥିଲେ କେବେହେଁ ଖଜଣାବୃଦ୍ଧି ହୋଇନଥାନ୍ତା । ଯେହେତୁ ଇଂରେଜ ସରକାର ପ୍ରତ୍ୟକ୍ଷ ଭାବରେ ରାଜ୍ୟଶାସନ କରୁଛନ୍ତି ମନଇଛା ଖଜଣା ବୃଦ୍ଧି କଲେ । ପ୍ରଜାମାନଙ୍କର ନେତା ମହେଶଚନ୍ଦ୍ର ସୁବାହୁସିଂ ପରଜଙ୍ଗ ଅଞ୍ଚଳ ସରାଙ୍ଗ ଗ୍ରାମନିବାସୀ । ପ୍ରଜାଙ୍କ ପ୍ରତି ତାଙ୍କର ଦରଦ ରହିଥିଲା । ପ୍ରକୃତରେ ସେତେବେଳେ କୌଣସି ପ୍ରଜାଙ୍କୁ ଚାରିପଇସା ମଧ୍ୟ ଅଧିକ ବାଧୁଥିଲା । କେବଳ ଧାନ ବ୍ୟତୀତ ଅନ୍ୟ କୌଣସି ଫସଲ କୃଷକର ଆୟନଥିଲା । ମରୁଡ଼ି ହେଲେ ଧାନ ମଧ୍ୟ ଆଦାୟ ହେଉନଥିଲା । ସେପରି ସ୍ଥଳେ ଚାରିପଇସା ବୃଦ୍ଧି ଖଜଣା ଦେବାକୁ ମଧ୍ୟ ପ୍ରଜା ସକ୍ଷମ ନଥିଲେ । ବିଶେଷତଃ ତତ୍‌ପୂର୍ବରୁ ୧୯୧୮ ମସିହା ନଇବଢ଼ି ଓ ମରୁଡ଼ି ପ୍ରଜାଙ୍କୁ ଅତିଷ୍ଠ କରିଦେଇଥିଲା । ତେଣୁ ବୀରଭୂମି ପରଜଙ୍ଗରୁ ହିଁ ପ୍ରଥମେ ପ୍ରଜାମାନଙ୍କର ପ୍ରତିବାଦର ସ୍ୱର ଉଠିଥିଲା । ପ୍ରଶାସନ କଠୋର ଦମନନୀତି ଅବଲମ୍ୱନ କରିଥିଲେ ହେଁ ପ୍ରଜା ଅସନ୍ତୋଷର ନିଆଁ ଲିଭାଇବାକୁ ସମର୍ଥ ହୋଇନଥିଲେ । କେବଳ ପ୍ରଶାସନ ଭୟରେ ଲୋକ ପଟ୍ଟାଗ୍ରହଣ କରି ବନ୍ଦୋବସ୍ତକୁ ମାନିଲେ । ମନରେ କିନ୍ତୁ ସେମାନଙ୍କର ସୁଖନଥିଲା । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଢେଙ୍କାନାଳର ପ୍ରଜା ରାଜାନୁଗତ ଥିଲେ । ସ୍ୱଂୟଂ ରାଜାଙ୍କ ଉପସ୍ଥିତି ତଥା ଆଦେଶରେ ବନ୍ଦୋବସ୍ତକାର୍ଯ୍ୟ ସମାପନ ହେବା ସେମାନେ ଚାହୁଁଥିଲେ । ସୂଚନାଯୋଗ୍ୟ ଯେ, ତାଳଚେର ରେଳପଥ ନିମିତ୍ତ ଢେଙ୍କାନାଳର ରାଜା ସୁରପ୍ରତାପ ବିନାସଲାମୀରେ ଜମିଯୋଗଇ ଦେବାକୁ ପ୍ରତିଶ୍ରୁତି ଦେଇଥିଲେ ଏବଂ ତାଙ୍କର ଇଚ୍ଛାନୁସାରେ ୧୯୨୩-୨୪ ବନ୍ଦୋବସ୍ତ ରେକର୍ଡ଼ରେ ଜାଗା

ବିନାମୂଲ୍ୟରେ ରେଳବିଭାଗ ନାମରେ ରେକର୍ଡ଼ କରାଯାଉଥିଲା । ଏତଦ୍‌ଭିନ୍ନ କେତେକ ପ୍ରଶାସକ ଓ କର୍ମଚାରୀ କିଛି କିଛି ଜମି ତଥା ସ୍ଥଳବିଶେଷରେ ଗୋଟିଏ ଲେଖାଏଁ ଗ୍ରାମ ନିଜ ନାମରେ ରେକର୍ଡ଼ କରାଇନେଇଥିଲେ । ତେଣୁ ପ୍ରଜାମାନଙ୍କ ମଧ୍ୟରେ ଗୁଜବ ପ୍ରଚାରିତ ହେଲା ଯେ ସେହି ପର୍ଯ୍ୟାପ୍ତ ଜମିର ଖଜଣାହିଁ ବର୍ଦ୍ଧିତ ଖଜଣା ସ୍ୱରୂପରେ ପ୍ରଜାମାନଙ୍କ ଉପରେ ଲଦି ଦିଆଯାଇଛି । ମନେହୁଏ, ଆପୋଷକଥାବାର୍ତ୍ତା ମାଧ୍ୟମରେ ପ୍ରକୃତ ସତ୍ୟ ସେମାନଙ୍କ ନିକଟରେ ଉପସ୍ଥାପନା କରିବାକୁ କେହି ପ୍ରୟାସ କରିନଥିଲେ । ଅଧିକନ୍ତୁ, ଦମନ ଦ୍ୱାରା ଆନ୍ଦୋଳନକୁ ବନ୍ଦ କରିବାର ପ୍ରଚେଷ୍ଟା କରାଯାଇଥିଲା । ଏହା ସତ୍ୟ ଯେ, ବର୍ଦ୍ଧିତ ଖଜଣା ସେତେ ଅଧିକ ନଥିଲା ଏବଂ ଏହା ଅନ୍ୟାନ୍ୟ ଗଡ଼ଜାତ ତୁଳନାରେ କମ୍ ଥିଲା । ପ୍ରଜାମାନଙ୍କୁ ଏହା ବୁଝାଇ ଦିଆଯାଇଥିଲେ ଆନ୍ଦୋଳନ ଶାନ୍ତ ହୋଇଯାଇଥାନ୍ତା । ଅବଶ୍ୟ ରାଜା ଜୀବିତଥିଲେ ସାଧାରଣ ସଭାରେ ଉଦ୍‌ବୋଧନ ପ୍ରଦାନ ପୂର୍ବକ ପ୍ରଜାଅସନ୍ତୋଷ ନିରାକରଣ କରାଇ ପାରିଥାନ୍ତେ ।

ଢେଙ୍କାନାଳ ରାଜପରିବାରର ସ୍ଥିତି ସେତେବେଳେ ଭଲନଥିଲା । ରାଜର୍ଷି ସୁରପ୍ରତାପ ୧୮୮୫ରେ ଜନ୍ମହୋଇ ମାତ୍ର ୩୩ ବର୍ଷ ବୟସରେ ୧୯୧୮ରେ ପରଲୋକଗମନ କଲେ । ବୃଦ୍ଧାମାତା ଅର୍ଣ୍ଣପୂର୍ଣ୍ଣାଦେବୀ, ବିଧବାରାଣୀ କୃଷ୍ଣଚନ୍ଦ୍ରପ୍ରିୟା ଏବଂ ଶଙ୍କର ପ୍ରତାପ, ନୃସିଂହ ପ୍ରତାପ, ଶ୍ରୀଶେଷ ପ୍ରତାପ, ଅମରେନ୍ଦ୍ର ପ୍ରତାପ, ସମରେନ୍ଦ୍ର ପ୍ରତାପ ଓ ଗୌରେନ୍ଦ୍ର ପ୍ରତାପ ପ୍ରଭୃତି, ଶ୍ରୀଶେଷ ପ୍ରତାପ, ଅମରେନ୍ଦ୍ର ପ୍ରତାପ, ସମରେନ୍ଦ୍ର ପ୍ରତାପ ଓ ଗୌରେନ୍ଦ୍ର ପ୍ରତାପ ପ୍ରଭୃତି ଛଅକୁମାରଙ୍କୁ ଛାଡ଼ି ରାଜା ମୃତ୍ୟୁବରଣ କରିଥିଲେ । ପ୍ରଜାମାନଙ୍କ ମଧ୍ୟରୁ ତାଙ୍କର ପ୍ରତାପଙ୍କୁ ବୟସ ଥିଲା ମାତ୍ର ଚଉଦବର୍ଷ ଏବଂ ଅନ୍ୟ ସମସ୍ତେ ତାଙ୍କ ଠାରୁ ସାନ ଥିଲେ । ରାଜା ହେବାବେଳକୁ ଶଙ୍କର ପ୍ରତାପ ନାବାଳକ ଥାଇ ରାୟପୁର ରାଜକୁମାର କଲେଜରେ ଅଧ୍ୟୟନ କରୁଥିଲେ । ରାଜ୍ୟ ବା ରାଜ୍ୟଶାସନ ସଂପର୍କରେ ତାଙ୍କର ଧାରଣା ହିଁ ନଥିଲା । ଯଥାର୍ଥରେ, ପ୍ରଶାସକ ମାନେହି ଥିଲେ ରାଜ୍ୟର ସର୍ବେସର୍ବା । ସୌଭାଗ୍ୟର କଥା, ୧୯୧୮ ଠାରୁ ୧୯୨୫ ପର୍ଯ୍ୟନ୍ତ ଯେଉଁମାନେ ନାବାଳକ ରାଜାଙ୍କର ଅଭିଭାବକ ଥିଲେ ସେମାନେ ସମସ୍ତେ ରାଜପରିବାରର ଅନ୍ତରଙ୍ଗ ଥିଲେ । ଫଳରେ ବିଶେଷ କିଛି ଘଟଣା ନଘଟି ସୁରୁଖୁରୁରେ ଶାସନ ଚାଲିଥିଲା । ଏହି ଅଭିଭାବକ ବୃନ୍ଦ ରାଜା ଓ ରାଜଭ୍ରାତାମାନଙ୍କ ସୁଶିକ୍ଷା ନିମିତ୍ତ ପ୍ରଯତ୍ନଶୀଳ ଥିଲେ । ରାଜର୍ଷି ସୁରପ୍ରତାପ ମଧ୍ୟ

ଦିବ୍ୟଦ୍ରଷ୍ଟା ଥିଲେ । ଜୀବନ ସ୍ୱଳ୍ପକାଳ ଉପଲବ୍ଧି କରି ସେ ମୃତ୍ୟୁପୂର୍ବରୁ ତାଙ୍କ ପୁଅମାନେ କ'ଣ କ'ଣ ଭାଗପାଇବେ, ପ୍ରାଞ୍ଜଳଭାବରେ ଲେଖି ଯାଇଥିଲେ । ଚତୁର୍ଥ ପୁତ୍ର ଅମରେନ୍ଦ୍ର ପ୍ରତାପ ଡମପଡ଼ାରାଜ୍ୟକୁ ପୁଅ ହୋଇଯାଇଥିଲେ । ତେଣୁ ପାଞ୍ଚପୁଅଙ୍କର ଭବିଷ୍ୟତ ଭରଣ ପୋଷଣ ନିମିତ୍ତ ସେମନାଙ୍କୁ କିଛି କିଛି ଭୂସଂପତ୍ତି ଦେବାକୁ ସେ ଉଲ୍ଲେଖ କରିଥିଲେ । ସ୍ୱର୍ଗୀୟ ରାଜାଙ୍କର ନିଷତ୍ତି ଅନୁଯାୟୀ ୧୯୨୩-୨୪ ବନ୍ଦୋବସ୍ତରେ ଏହା ରେକର୍ଡ଼ଭୁକ୍ତ କରାଯାଇଥିଲା ।

ରାଜା ସୁରପ୍ରତାପ ପରଲୋକଗମନ କଲାପରେ ତଦୀୟ ଧର୍ମପତ୍ନୀ କୃଷ୍ଣଚନ୍ଦ୍ରପ୍ରିୟା ରାଜନବର ପରିବର୍ତ୍ତେ କୁଞ୍ଜକାନ୍ତ ସନ୍ନିକଟ ଗୃହରେ ସନ୍ନ୍ୟାସିନୀ ଭାବରେ କାଳାତିପାତ କଲେ । ରାଧାକୃଷ୍ଣଙ୍କ ସେବା, ଭଜନ, କୀର୍ତ୍ତନ, ପୁରାଣ ଓ ଭାଗବତପାଠରେ ତାଙ୍କ ସମୟ ଅତିବାହିତ ହେଲା । ନଅରରେ ରାଜକୁମାରମାନେ ରହି ବିଦ୍ୟାଧ୍ୟୟନ କଲେ । ରାଜକୁମାରଗଣ ଦାସଦାସୀ ପରିବାରୀଙ୍କ ଦ୍ୱାରା ଲାଳିତ ପାଳିତ ହେଲେ । ସର୍ବଶ୍ରୀ ରାୟବାହାଦୂର ରାଜକିଶୋର ତ୍ରିପାଠୀ, କବିରାଜ ବାଳକୃଷ୍ଣ ନନ୍ଦ, ପଣ୍ଡିତ ଶିଖରେଶ୍ୱର ମିଶ୍ର, ପଣ୍ଡିତ ପରମାନନ୍ଦ ମିଶ୍ର, ପଣ୍ଡିତ ଅନନ୍ତଚରଣ ତର୍କ ପଞ୍ଚାନନ ପ୍ରଭୃତି ବିଦ୍ୱାନ୍ ଓ ପଣ୍ଡିତ ବୃନ୍ଦ ରାଜକୁମାରମାନଙ୍କ ଶିକ୍ଷାଦୀକ୍ଷା ଦାୟିତ୍ୱରେ ରହିଲେ । ସର୍ବୋପରି ଦେଓ୍ୱାନ୍ ରାଜକିଶୋର ତ୍ରିପାଠୀ ହିଁ ଥିଲେ ରାଜ୍ୟ ତଥା ରାଜପ୍ରାସାଦର ସର୍ବେସର୍ବା । ସେ ଜଣେ ସୁଦକ୍ଷ ପ୍ରଶାସକ ଥିଲେ । ଢେଙ୍କାନାଳରେ ଦେଓ୍ୱାନ୍ ରହିବା ପୂର୍ବରୁ ସେ ମୟୂରଭଞ୍ଜ ରାଜ୍ୟର ବାମନଘାଟୀ (ରାଇରଙ୍ଗପୁର) ଉପଖଣ୍ଡରେ ମାଜିଷ୍ଟ୍ରେଟ୍ ଥିଲେ । ରାଜା ସୁରପ୍ରତାପ ତାଙ୍କୁ ଆଣି ଦେଓ୍ୱାନ୍ ପଦରେ ନିଯୁକ୍ତି ଦେଇଥିଲେ । ସୂଚନାଯୋଗ୍ୟଯେ, ସୁରପ୍ରତାପଙ୍କ ମୃତ୍ୟୁପରେ ସମଗ୍ର ଓଡ଼ିଶାରେ ଭୟଙ୍କର ଦୁର୍ଭିକ୍ଷ ହୋଇଥିଲା । ଢେଙ୍କାନାଳ ମଧ୍ୟ ଏଥିରୁ ବାଦ୍ ପଡ଼ିନଥିଲା । ଦେଓ୍ୱାନ୍ ରାଜକିଶୋର ତ୍ରିପାଠୀ ଓ ମଢ଼ିରେ ମାଜିଷ୍ଟ୍ରେଟ୍ ଥିବା ଶ୍ରୀଯୁକ୍ତ ଭରତନାୟକ ଗ୍ରାମାଞ୍ଚଳରେ ଅନ୍ନଛତ୍ର ଖୋଲି ଦୁର୍ଭିକ୍ଷ ନିରାକରଣର ସୁବ୍ୟବସ୍ଥା କରିଥିଲେ । ଭୁବନ, ଆଦିପୁରା, ମାଳପୁରା, ଅନ୍ନପୂର୍ଣ୍ଣା ପୁର, ବାଗିହାପୁର, ଖଡ୍ଗପ୍ରାସାଦ, ଭାପୁର, ଗଁଦିଆ ଓ ପିଙ୍ଗୁଆ ପ୍ରଭୃତି ସ୍ଥାନମାନଙ୍କରେ ଅନ୍ନଛତ୍ର ଖୋଲାଯାଇଥିଲା । ଫଳରେ ଢେଙ୍କାନାଳ ରାଜ୍ୟର ଅନେକ ପ୍ରଜା ଦୁର୍ଭିକ୍ଷ କବଳରୁ ବଞ୍ଚି ଯାଇଥିଲେ । ତଥାପି ୭୦୦ ବ୍ୟକ୍ତି ଦୁର୍ଭିକ୍ଷରେ ମରିଥିଲେ ବୋଲି ଏକ ଅସମର୍ଥିତ ହିସାବରୁ ଜଣାଯାଏ । ସେହି ଦୁର୍ଭିକ୍ଷ ସମୟରେ ଖାଦ୍ୟ ବଦଳରେ

କାମ (Food for work) ଯୋଜନା ମାଧ୍ୟମରେ ସୁବୃହତ୍ ମେଣ୍ଢାପଦା ପୋଖରୀ, ମହିଷିଆକଡ଼ା ପ୍ରଭୃତି ନିର୍ମାଣ ହୋଇଥିଲା । ମୋଟ ଉପରେ ଦେଓ୍ୱାନ୍ ରାଜକିଶୋର ତ୍ରିପାଠୀଙ୍କ ଦୂରଦୃଷ୍ଟି, ସୁଶାସନ, ନିଷ୍ପକ୍ଷ ପାଟିତା ଓ କର୍ତ୍ତବ୍ୟ ପରାୟଣତା ଯୋଗୁଁ ଢେଙ୍କାନାଳବାସୀ ଦୁର୍ଭିକ୍ଷ କବଳରୁ ରକ୍ଷାପାଇଲେ । ଇଂରେଜସରକାର ମଧ୍ୟ ଶ୍ରୀଯୁକ୍ତ ତ୍ରିପାଠୀଙ୍କ ଉପରେ ପ୍ରୀତ ହୋଇ ତାଙ୍କୁ ରାୟସାହେବ ଓ ରାୟବାହାଦୂର ଉପାଧି ପ୍ରଦାନ କରିଥିଲେ । ନାବାଳକ ଶଙ୍କରପ୍ରତାପ ରାଜାହେବାପରେ ମଧ୍ୟ ରାୟପୁର ରାଜକୁମାର କଲେଜରେ ଅଧ୍ୟୟନ କଲେ ଏବଂ ସେଠାରୁ ଉତ୍ତୀର୍ଣ୍ଣ ହେବାପରେ କଟକସ୍ଥ ରେଭେନ୍‌ସା କଲେଜରେ ଅଧ୍ୟୟନ କଲେ । ଅନ୍ୟାନ୍ୟ ରାଜଭ୍ରାତାମାନେ ମଧ୍ୟ ଯଥାକ୍ରମେ ନିମ୍ନସୋପାନମାନଙ୍କରେ ଅଧ୍ୟୟନ କରୁଥିଲେ । ତେଣୁ ସମସ୍ତ ପ୍ରଶାସନିକ କାର୍ଯ୍ୟର ଦାୟିତ୍ୱ ଦେଓ୍ୱାନ୍ ରାଜକିଶୋର ତ୍ରିପାଠୀଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ସେ ଭାଗୀରଥଙ୍କ ସମୟରୁ ଆରମ୍ଭ ହୋଇଥିବା ନୀତିନିୟମରେ ଶାସନକାର୍ଯ୍ୟ ନିର୍ବାହ କରୁଥିଲେ ।

ଅଧ୍ୟୟନାନ୍ତେ ନାବାଳକ ରାଜା ଶଙ୍କର ପ୍ରତାପଙ୍କ ଶୁଭବିବାହ ଷଢ଼େଇକଳା ଜ୍ୟେଷ୍ଠରାଜକୁମାରୀ ରତ୍ନପ୍ରଭାଙ୍କ ସହିତ ୧୯୨୪ ମସିହାରେ ଅନୁଷ୍ଠିତ ହେଲା । ଏହି ବିବାହ ବିଧିନିର୍ଦ୍ଦିଷ୍ଟ ଥିଲା । ରାଜର୍ଷି ସୁରପ୍ରତାପ ମଧ୍ୟ ଷଢ଼େଇକଳାରେ ବିବାହ କରିଥିଲେ । ସେଠାକାର ରାଜା ଆଦିତ୍ୟ ପ୍ରତାପ ସିଂହଦେଓ ଥିଲେ ସୁରପ୍ରତାପଙ୍କ ଶାଳକ । ଉଭୟଙ୍କ ମଧ୍ୟରେ ସୁସଂପର୍କ ରହିଥିଲା । ଏକଦା ପୁରୀ ଦର୍ଶନାର୍ଥେଆସି ରାଜା ଆଦିତ୍ୟ ପ୍ରତାପ ଢେଙ୍କାନାଳ ରାଜପ୍ରାସାଦରେ ଅତିଥି ହୋଇଥିଲେ । ସେହି ସମୟରେ ଜ୍ୟେଷ୍ଠା ରାଜକୁମାରୀ ରତ୍ନପ୍ରଭା ଥିଲେ କୋମଳମତି ଶିଶୁ । ରାଜା ସୁରପ୍ରତାପ ସେହି ଟିକିଝିଅକୁ କୋଳକୁ ନେଇ ସ୍ନେହ କହିଥିଲେ । ଏହି ରତ୍ନଟିକୁ ବୋହୂକରି ଆଣିଲେ ମୋ ନଅର ପୁରିଉଠିବ । ପ୍ରଭୃତରେ ତାଙ୍କ  ଅବର୍ତ୍ତମାନରେ କଥାଟି ସତରେ ପରିଣତ ହୋଇଥିଲା । ଏହା ପ୍ରାୟ ୧୯୧୨ ମସିହାର ଘଟଣା । ୧୯୦୯ରେ ଜନ୍ମ ନେଇଥିବା ରତ୍ନପ୍ରଭାଙ୍କୁ ସେତେବେଳେ ମାତ୍ର ତିନିବର୍ଷ । ୧୯୧୮ରେ ରାଜର୍ଷି ସୁରପ୍ରତାପ ପରଲୋକ ଗମନ କଲେ । ଷଢ଼େଇକଳା ରାଜା ଆଦିତ୍ୟପ୍ରତାପ ବିଧବା ଭଉଣୀ ଓ ଭଣଜାମାନଙ୍କୁ ସଂଙ୍ଖୋଳିବାକୁ ଆସିଥିଲେ ହେଁ ଏ ସଂପର୍କରେ କୌଣସି ପ୍ରସଙ୍ଗ ଉତ୍‌ଥାପନ ହୋଇନଥିଲା । ସେ କେବଳ ରାଜପୁତ୍ର ସୁଶିକ୍ଷା ତଥା ଭବିଷ୍ୟତ

ସଂପର୍କରେ ପ୍ରଶାସକମାନଙ୍କ ସହ ଆଲୋଚନା ପୂର୍ବକ ଫେରିଯାଇଥିଲେ । ସେ ଯାହାହେଉ ଶ୍ରୀବୃନ୍ଦାବଚନ୍ଦ୍ରଙ୍କ ଅପାର କରୁଣାରୁ ଶଙ୍କର ପ୍ରତାପଙ୍କ ଶିକ୍ଷା ଶେଷ ହେବାପରେ ରାଜକୁମାରୀ ରତ୍ନପ୍ରଭାଙ୍କ ସହିତ ତାଙ୍କର ବିବାହ ପ୍ରସଙ୍ଗ ଉତ୍‌ଥାପନ ହେଲା । ସେତେବେଳକୁ ରାଜକୁମାରୀ ପନ୍ଦରବର୍ଷୀୟା କିଶୋରୀ ତଥା ସୁଶିକ୍ଷିତା ଏବଂ ସଂସ୍କୃତିସଂପନ୍ନା । ରତ୍ନପ୍ରଭା ଥିଲେ ମାମୁଁଝିଅ ଏବଂ ଶଙ୍କର ପ୍ରତାପ ଥିଲେ ପୀଉସୀ ପୁଅ । ପୁଣ୍ୟବନ୍ତ ରାଜା ସୁରପ୍ରତାପଙ୍କ କଥା ଓ ଇଚ୍ଛାକୁ କାର୍ଯ୍ୟକାରୀ କରିବାନିମିତ୍ତ "ଦକ୍ଷିଣେ ମାତୁଳ କନ୍ୟା" ନ୍ୟାୟରେ ଏହି ବିବାହରେ ଉଭୟ ରାଜପରିବାର ସମ୍ମତି ପ୍ରଦାନ କରିଥିଲେ । ପାରଂପରୀକ ରୀତି ଓ ବୈଦିକ ବିଧିରେ ୧୯୨୪ ମସିହା ନଭେମ୍ବର ୨୨ ତାରିଖରେ ମହାସମାରୋହରେ ରାଜା ଶଙ୍କରପ୍ରତାପ ଓ ରାଣୀ ରତ୍ନପ୍ରଭାଙ୍କ ଶୁଭବିବାହ ଅନୁଷ୍ଠିତ ହେଲା ।

ଷଢ଼େଇକଳା ରାଜ୍ୟଟି ବର୍ତ୍ତମାନ ଝାଡ଼ଖଣ୍ଡ ପ୍ରଦେଶ ଅନ୍ତର୍ଭୁକ୍ତ ହୋଇଥିଲେ ହେଁ ପୂର୍ବରୁ ଏହା ଓଡ଼ିଶା ପ୍ରଦେଶ ଅନ୍ତର୍ଗତ ଥିଲା । ଏହି ରାଜବଂଶ ଏକ ସଂସ୍କୃତି ସଂପନ୍ନ ପ୍ରଗତିଶୀଳ ରାଜବଂଶ ରୂପେ ଖ୍ୟାତ । ଇତିହାସ ଅନୁଧ୍ୟାନ କଲେ ଜଣାଯାଏ ଏହି ରାଜବଂଶ ଭଗବାନ୍ ଶ୍ରୀରାମଙ୍କ ପୁତ୍ର କୁଶ ବଂଶୋଦ୍ଭବ । ଯୋଧପୁର ରାଜବଂଶର ଶ୍ରୀବିକ୍ରମସିଂହ ଗଭର୍ଣ୍ଣର ଜେନେରାଲ ଲର୍ଡ଼ଉଏଲ୍‌ସଲିଙ୍କ ସମୟରେ ଷଢ଼େଇକଳା ରାଜବଂଶ ସ୍ଥାପନା କରିଥିଲେ । ଏହାର ରାଜଧାନୀ ପୁଣ୍ୟତୋୟା ଖଡ଼କେଇ ନଦୀକୂଳରେ ଅବସ୍ଥିତ । ଶ୍ରୀବିକ୍ରମ ସିଂହଙ୍କ ପରେ ଅଭିରାମ ସିଂହ, ଅଜାମ୍ବର ସିଂହ, ଚକ୍ରଧର ସିଂହ, ଉଦିତ୍ ନାରାୟଣ ସିଂହ ପ୍ରଭୃତି ରାଜା ଏହି ରାଜବଂଶର ସୁନାମ ରଖିଯାଇଛନ୍ତି । ଉଦିତ୍ ନାରାୟଣ ସିଂହଙ୍କ ପୁତ୍ର ନୃପସିଂହଙ୍କ କନ୍ୟା କୃଷ୍ଣଚନ୍ଦ୍ର ପ୍ରିୟାଙ୍କୁ ଢେଙ୍କାନାଳ ରାଜା ସୁରପ୍ରତାପ ୧୯୦୨ ମସିହା ଫେବୃଆରୀ ୨୪ ତାରିଖରେ ବିବାହ କରିଥିଲେ । ତତ୍‌ପରେ ସୁରପ୍ରତାପଙ୍କ ଜ୍ୟେଷ୍ଠପୁତ୍ର ଶଙ୍କର ପ୍ରତାପ ଷଢ଼େଇକଳା ପରଲୋକଗତ ରାଜା ନୃସିଂହଙ୍କ ପୁତ୍ର ଆଦିତ୍ୟ ପ୍ରତାପ ସିଂହଦେବଙ୍କ କନ୍ୟା ରତ୍ନପ୍ରଭାଙ୍କୁ ବିବାହ କଲେ । ପରିଣାମ ସ୍ୱରୂପ ଏହି ବୈବାହିକ ସଂପର୍କ ଢେଙ୍କାନାଳ ଓ ଷଢ଼େଇକଳା ଉଭୟ ରାଜବଂଶର ପାରଂପରୀକ ସଂପର୍କ ଓ ମର୍ଯ୍ୟାଦା ସୃଷ୍ଟି ହେଲା ।

ସାବାଳକ ହୋଇ ୨୧ ବର୍ଷରେ ପଦାର୍ପଣ କରିବାପରେ ରାଜା ଶଙ୍କର ପ୍ରତାପ ୧୯୨୫ ମସିହାରେ ସକଳ କ୍ଷମତାସହ ରାଜ୍ୟଭାର ଗ୍ରହଣକଲେ । ସେ ଶିକ୍ଷିତ, ସଂଯମୀ, ଉଦାରଚେତା ଓ ପ୍ରଜାହିତୈଷୀ ଥିଲେ । ନାବାଳକ ଥିବା

ସମୟରେ ସେ ପ୍ରତ୍ୟେକ ସୁବିଧାଅସୁବିଧା ବୁଝୁଥିଲେ ହେଁ କିଛି କରି ପାରିନଥିଲେ । ତେଣୁ ଶାସନଭାର ଗ୍ରହଣ କରିବା ପରେ ସେ ରାଜ୍ୟର ପ୍ରତ୍ୟେକ ବିଭାଗର କାର୍ଯ୍ୟପ୍ରଣାଳୀ ଅନୁଧ୍ୟାନ କଲେ। ଉଚ୍ଚପଦାଧିକାରୀଙ୍କ ସହ ଆଲୋଚନା ମାଧ୍ୟମରେ ସେ ପ୍ରଥମେ ବାସ୍ତବ ଅସୁବିଧା ଉପଲବ୍ଧି କରିଥିଲେ ତଥା ଶାସନ ସଂସ୍କାରରେ ମନୋନିବେଶ କରିଥିଲେ । ସେ ନାବାଳକ ଥିବା ସମୟରେ ସଂଘଟିତ ହୋଇଥିବା ବନ୍ଦୋବସ୍ତ ଜନିତ ପ୍ରଜାଅସନ୍ତୋଷ ସଂପର୍କରେ ଅବଗତ ଥିଲେ ହେଁ କୌଣସି ପ୍ରତିକାରର ବ୍ୟବସ୍ଥା କରିପାରିନଥିଲେ । ତେଣୁ ପ୍ରଥମ ପଦକ୍ଷେପ ସ୍ୱରୂପ ସେ ପ୍ରଜାଆନ୍ଦୋଳନରେ ଗିରଫ ହୋଇଥିବା ପ୍ରଜାଙ୍କ ନେତୃବୃନ୍ଦଙ୍କୁ ଖଲାସ କରିଦେଲେ । ଏପରିକି ମୁଖ୍ୟନେତା ମହେଶଚନ୍ଦ୍ର ସୁବାହୁସିଂହଙ୍କୁ ପରଜଙ୍ଗ ଅଞ୍ଚଳରେ କେତେକ ଗ୍ରାମର ସର୍ବରାକାର ପଦବୀରେ ନିଯୁକ୍ତି ଦେଲେ । ଏତଦ୍‌ଭିନ୍ନ Court of wards ସମୟରେ ନିଲମ୍ବିତ ଓ ବହିଷ୍କୃତ ହୋଇଥିବା କେତେକ ରାଜକର୍ମଚାରୀଙ୍କୁ ସତ୍ୟାସତ୍ୟ ଅନୁସନ୍ଧାନ ପୂର୍ବକ ପୁନଃନିଯୁକ୍ତି ଦେଇଥିଲେ । ଏହାଦୃଶ କାର୍ଯ୍ୟଦ୍ୱାରା ସେ ପ୍ରଜାମାନଙ୍କର ଆସ୍ଥାଭାଜନ ହୋଇଥିଲେ ।

ଶଙ୍କର ପ୍ରତାପ ସାବାଳକ ହୋଇ କ୍ଷମତା ଗ୍ରହଣ କରିବା ସମୟରେ ମଧ୍ୟ ରାଜଭ୍ରାତାମାନେ ନାବାଳକ ଥାଇ ବିଦ୍ୟାଧ୍ୟୟନ କରୁଥିଲେ । ସେମାନଙ୍କର ଉଚିତ ଶିକ୍ଷାର ବନ୍ଦୋବସ୍ତ ପୂର୍ବକ ରାଜା ଘରୋଇ ଶିକ୍ଷକମାନଙ୍କୁ ନିଯୁକ୍ତି କରିଥିଲେ । ତାଙ୍କରି ପ୍ରଚେଷ୍ଟାରେ ହିଁ ଦ୍ୱିତୀୟ ରାଜପୁତ୍ର ପଞ୍ଚାୟତ ନୃସିଂହ ପ୍ରତାପ ରାୟପୁର ରାଜକୁମାର କଲେଜରେ ଅଧ୍ୟୟନ କରି ସର୍ବ ଭାରତୀୟସ୍ତରରେ ପ୍ରଥମସ୍ଥାନ ଅଧିକାର କରିଥିଲେ । ତୃତୀୟପୁତ୍ର ଶ୍ରୀଶେଷ ପ୍ରଦାପ ମଧ୍ୟ ସେତେବେଳକୁ ରାଜକୁମାର କଲେଜରେ ଅଧ୍ୟୟନ କରୁଥିଲେ । ରାଜା ତାଙ୍କର ସୁଶିକ୍ଷା ନିମିତ୍ତ ସକଳ ପ୍ରକାର ଯତ୍ନ ନେଇଥିଲେ । ଚତୁର୍ଥ ପୁତ୍ର ଅମରେନ୍ଦ୍ର ପ୍ରତାପ ଡମପଡ଼ା ରାଜ୍ୟକୁ ପୋଷ୍ୟପୁତ୍ର ହୋଇଯାଇଥିଲେ । ତଥାପି ତାଙ୍କର ପ୍ରାଥମିକଶିକ୍ଷା ଢେଙ୍କାନାଳରେ ହିଁ ସମାହିତ ହୋଇଥିଲା । ସୂଚନାଯୋଗ୍ୟ ଏହି ପୋଷ୍ୟପୁତ୍ର ସଂପର୍କରେ କନ୍ଦଳ ଉପସ୍ଥିତ ହୋଇ ମାମଲା କୋର୍ଟକେଚରୀ ପର୍ଯ୍ୟନ୍ତ ଗଲା । ରାଜା ଶଙ୍କର ପ୍ରତାପ ତତ୍‌କାଳୀନ ସୁବିଖ୍ୟାତ ବାରିଷ୍ଟର ଜାନକୀନାଥ ବୋଷ (ନେତାଜୀ ସୁଭାଷ ବୋଷଙ୍କ ପିତା)ଙ୍କୁ ଓକିଲ ଭାବରେ ନିଯୁକ୍ତ କରି ମୋକଦ୍ଦମା ଲଢ଼ିଥିଲେ । ପରବର୍ତ୍ତୀ କାଳରେ ଏହି ପ୍ରସଙ୍ଗ Privy council ପର୍ଯ୍ୟନ୍ତ ଯାଇଥିଲା

ଏବଂ ଶଙ୍କର ପ୍ରତାପଙ୍କ ଚେଷ୍ଟାରେ ଅମରେନ୍ଦ୍ର ପ୍ରତାପ ଜୟଲାଭ କରିଥିଲେ । ପଞ୍ଚମ ଓ ଷଷ୍ଠ ରାଜପୁତ୍ର ସମରେନ୍ଦ୍ର ପ୍ରତାପ ଓ ଗୌରେନ୍ଦ୍ର ପ୍ରତାପଙ୍କର ସମସ୍ତ ଦାୟିତ୍ୱ ବହନ କରି ସେମାନେ ଭବିଷ୍ୟତରେ କିପରି ସୁମଣିଷ ହେବେ ସେଥିନିମିତ୍ତ ଶଙ୍କରପ୍ରତାପ ପ୍ରଯତ୍ନଶୀଳ ଥିଲେ ।

ସେହି ସମୟରେ ରାଜମାତା କୃଷ୍ଣଚନ୍ଦ୍ର ପ୍ରିୟା ଓ ଜେଜେ ମଣିମା (ପିତାମହୀ) ଅନ୍ନପୂର୍ଣ୍ଣା ଜୀବିତଥାଇ କୁଞ୍ଜକାନ୍ତସ୍ଥିତ କ୍ଷୁଦ୍ରପ୍ରାସାଦରେ ନିବାସ କରୁଥିଲେ । ରାଜା ଶଙ୍କର ପ୍ରତାପ ସେମାନଙ୍କ ପ୍ରତି ଭକ୍ତି ପ୍ରଦର୍ଶନ ପୂର୍ବକ ସେମାନଙ୍କ ସେବାର ସୁବନ୍ଦୋବସ୍ତ କରାଇଥିଲେ । ଯେପରି ଏଥିରେ କୌଣସି ଦୃଟି ନହୁଏ ସେଥିପ୍ରତି ଯଥେଷ୍ଟ ଧ୍ୟାନ ଦେଇଥିଲେ । ସେମାନଙ୍କ ନିମିତ୍ତ ଦାସୀ ପରିବାରୀ ନିଯୁକ୍ତ କରିବା ସହିତ ସମୟ ସମୟରେ ନିଜେଯାଇ ଭଲମନ୍ଦ ବୁଝୁଥିଲେ । ମୋଟ ଉପରେ ଉଲ୍ଲେଖକଲେ, ଅଳ୍ପ ବୟସରୁ ରାଜଗାଦୀ ଆରୋହଣ କରିଥିଲେ ହେଁ ପ୍ରତ୍ୟେକଟି କାର୍ଯ୍ୟ ସୁଚାରୁରୂପେ ନିର୍ବାହ କରିବା ନିମିତ୍ତ ରାଜା ଶଙ୍କର ପ୍ରତାପ ଯତ୍ନବାନ୍ ଥିଲେ ।



# ଢେଙ୍କାନାଳରେ ଶାସନ ସଂସ୍କାର

୧୯୨୫ ମସିହାରେ ସାବାଳକ ହୋଇ କ୍ଷମତା ଲାଭ କଲାପରେ ରାଜାଶଙ୍କର ପ୍ରତାପ ମହୀନ୍ଦ୍ରବାହାଦୂର ରାଜ୍ୟର ସମସ୍ତ ପ୍ରଶାସନିକ ଅଧିକାରୀମାନଙ୍କୁ ଡାକି ଶାସନ ସଂସ୍କାର ନିମିତ୍ତ ଏକ ଅଧିବେଶନ ବସାଇଥିଲେ । ଏହି ବୈଠକର ନିଷ୍ପତ୍ତି ଅନୁଯାୟୀ ସମସ୍ତ ବିଭାଗରେ ପ୍ରଜାହିତକର ନୀତି ଅନୁସୃତ ହେଲା । ତତ୍‌ପରେ ରାଜ୍ୟର ବିଶିଷ୍ଟ ନାଗରିକ, ବେହେରାପଧାନ ଓ ସର୍ବରାକାରଙ୍କୁ ଏକିତ୍ରିତ କରି ଖଜଣାବୃଦ୍ଧିର ପ୍ରାସଙ୍ଗିଙ୍ଗତା, ଉପାଦେୟତା ଓ ଯଥାର୍ଥତା ସଂପର୍କରେ ବୁଝାଇଥିଲେ । ଏପରିକି ଅନ୍ୟାନ୍ୟ ରାଜ୍ୟରେ ଏବଂ ମୋଗଲବନ୍ଦୀ ଅଞ୍ଚଳରେ ଏହାଠାରୁ ଅଧିକ ଖଜଣା ଆଦାୟ ହେଉଥିବାର ସୂଚନା ପ୍ରଦାନ କରିଥିଲେ । ଫଳରେ ପ୍ରଜା, ସର୍ବରାକାର ଓ ବେହେରା ପ୍ରଧାନ ମାନେ ଉଦାରଭାବରେ ଏହି ପ୍ରସ୍ତାବ ଗ୍ରହଣ କରିଥିଲେ । ଅଧିକନ୍ତୁ ରାଜ୍ୟର ସମସ୍ତ ବିଭାଗର ପ୍ରଶାସନିକ ସଂସ୍କାର ନିମିତ୍ତ ଏକ କମିଟି ଗଠନ କରାଗଲା । ଏହି କମିଟିର ସଭାପତି ଥିଲେ ଦେଓ୍ୱାନ୍ ରାଜକିଶୋର ତ୍ରିପାଠୀ ଏବଂ ସଂପାଦକ ଥିଲେ ମୁଖ୍ୟସହାୟକ ବାବୁ ଚିନ୍ତାମଣି ଦାସ । ଅନ୍ୟାନ୍ୟ ସଭ୍ୟମାନଙ୍କ ମଧ୍ୟରେ ସହକାରୀ ଦେଓ୍ୱାନ୍, ଜଙ୍ଗଲ ଅଧିକାରୀ ଓ ଦେବୋତ୍ତର ଅଧିକାରୀ ରହିଥିଲେ । ଏହି କମିଟି ପ୍ରତ୍ୟେକ ବିଭାଗର କାର୍ଯ୍ୟପ୍ରଣାଳୀ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ ପୂର୍ବକ ସଂସ୍କାର ନିମିତ୍ତ ରିପୋର୍ଟ ଦାଖଲ କଲେ ଏବଂ କମିଟି ରିପୋର୍ଟ ଅନୁସାରେ ଦରବାର ସଂସ୍କାର ନିମିତ୍ତ ଆଦେଶ ପ୍ରଦାନ କଲେ ।

ଢେଙ୍କାନାଳ ରାଜ୍ୟର ମୂଲ୍ୟବାନ୍ ସଂପତ୍ତି ହେଉଛି ଜଙ୍ଗଲ । ସେତେବେଳେ ଢେଙ୍କାନାଳର ଚାରଖୋଲା, କପିଳାସ, ସଡଙ୍ଗୀ, ରଞ୍ଜାଗଡ଼, ଅନନ୍ତପୁର, ହଳଦୀକୁଣ୍ଡୀ, ବିରାଶାଳ, ସର୍ପଣୀ, ଉଦୟଗିରି ପ୍ରଭୃତି ସଂରକ୍ଷିତ ଜଙ୍ଗଲରେ ପ୍ରଚୁର ପରିମାଣରେ ଶାଳ, ପିଆଶାଳ, ଶିଶୁ, ଫାଶୀ, କଙ୍ଗଡ଼ା ପ୍ରଭୃତି ମୂଲ୍ୟବାନ୍ କାଠ ଓ ବାଉଁଶ ରହିଥିଲା । ତେଣୁ ଜଙ୍ଗଲ ସୁରକ୍ଷା ଆଇନ୍ ତୁରନ୍ତ କାର୍ଯ୍ୟକାରୀ କରାଗଲା । ଏତଦ୍‌ଭିନ୍ନ ବିଭିନ୍ନ ଜଙ୍ଗଲଜାତ ଜିନିଷରୁ ରାଜସ୍ୱ ଆଦାୟ ହେଉଥିବାରୁ ଏହି ଜଙ୍ଗଲଜାତ ପଦାର୍ଥଗୁଡ଼ିକର ରପ୍ତାନୀ ଉପରେ

କଟକଣା ଜାରୀ କରାଗଲା । ସଂରକ୍ଷିତ ଜଙ୍ଗଲରୁ କାଠକାଟିବା ନିମିତ୍ତ ବିଭିନ୍ନ ଠିକାଦାରଙ୍କୁ ଠିକା ଦିଆଗଲା । ସେମାନେ ନିର୍ଦ୍ଦିଷ୍ଟ ପରିମାଣର ରାଜସ୍ୱ ଦେଇ କଲାପରେ ଗଛ କାଟିବା ନିମିତ୍ତ ଅନୁମତି ପାଇଲେ । ଗଛ କାଟିବା ପରେ ଜଙ୍ଗଲ ଅଧିକାରୀ ତନଖି କରିବାର ବ୍ୟବସ୍ଥା ରହିଲା । ତନଖିପରେ କର୍ତ୍ତୃପକ୍ଷଙ୍କ ଅନୁମତିକ୍ରମେ ବିକ୍ରୟ କରିବା ନିମିତ୍ତ କାଠଗୁଡ଼ିକୁ ଜଙ୍ଗଲବାହାରକୁ ଛଡ଼ା ଯାଉଥିଲା । ଏହାଦ୍ୱାରା ଘନଫୁଟ ଅନୁଯାୟୀ ଠିକାଦାରଙ୍କ ଠାରୁ ରାଜସ୍ୱ ଆଦାୟ ହୋଇ ରାଜ୍ୟର ଆୟ ବୃଦ୍ଧି ପାଇଲା । କାଠ ସଦୃଶ ବାଉଁଶ ନିମିତ୍ତ ମଧ୍ୟ ଏହିନୀତି ଅନୁସୃତ ହେଲା । ଏତଦ୍‌ଭିନ୍ନ ମହୁ, ମହୁଲ, ବିଭିନ୍ନ ଚେରମୂଳୀ ଓ ପାଳୁଅ ପ୍ରଭୃତି ଜଙ୍ଗଲରୁ ସଂଗ୍ରହ ନିମିତ୍ତ କଟକଣା ଜାରି କରାଗଲା । ପ୍ରଥମେ କିଛି ସ୍ୱାର୍ଥପର ବ୍ୟକ୍ତି ଏହି ନୀତିର ବିରୋଧ କରିବା ସହିତ ପ୍ରଜାମାନଙ୍କୁ ଉସ୍‌କାଉଥିଲେ ହେଁ ତାର ପ୍ରଭାବ ଲୋକଙ୍କ ଉପରେ ପଡ଼ିଲାନାହିଁ । ଜଙ୍ଗଲ ସୁରକ୍ଷା ନିମିତ୍ତ ସୁଦକ୍ଷ ବନରକ୍ଷୀ, ବନପାଳ, ଖଣ୍ଡୀୟ ବନାଧିକାରୀ ନିଯୁକ୍ତି ପାଇଲେ ଏବଂ ସର୍ବୋପରି ସୁଦକ୍ଷ ଜଙ୍ଗଲ ଅଧିକାରୀ ଦୁର୍ଗାଚରଣ ପଟ୍ଟନାୟକଙ୍କୁ ରାଜ୍ୟର ସର୍ବୋଚ୍ଚ ବନାଧିକାରୀ ପଦବୀରେ ଅବସ୍ଥାପିତ କରାଗଲା । ପ୍ରଜାମାନେ ଗୃହନିର୍ମାଣ ଓ ଚାଷକାର୍ଯ୍ୟ ନିମିତ୍ତ ଜଙ୍ଗଲ ଅଧିକାରୀଙ୍କ ଅନୁମତିକ୍ରମେ କାଠ ଓ ବାଉଁଶ ନେଇପାରୁଥିଲେ । ଏଥିନିମିତ୍ତ ସେମାନଙ୍କଠାରୁ ସ୍ୱଳ୍ପ ପରିମାଣରେ ସେସ୍ ବା ଜଙ୍ଗଲକର ଆଦାୟ କରାଯାଉଥିଲା । କୌଣସି ବ୍ୟକ୍ତି ନିଜର ବ୍ୟବହାର ନିମିତ୍ତ ବଡ଼ଗଛ ନେବାକୁ ଚାହିଁଲେ ତା ପ୍ରତିବଦଳରେ ତାକୁ ତିନିଗୋଟି ଗଛ ଲଗାଇବାକୁ ପଡୁଥିଲା । ଜଙ୍ଗଲ ନିକଟବର୍ତ୍ତୀ ଗ୍ରାମବାସୀମାନେ ଜଙ୍ଗଲ ସଂପଦକୁ ଆପଣାର ଭାବି ରକ୍ଷଣାବେକ୍ଷଣ କରୁଥିଲେ ଏବଂ ଏହାକୁ ଜାତୀୟ କାର୍ଯ୍ୟ ସ୍ୱରୂପରେ ବିବେଚନା କରୁଥିଲେ । କେବଳ ଜଙ୍ଗଲ ନୁହେଁ, ବନ୍ୟପ୍ରାଣୀ ସୁରକ୍ଷା ନିମିତ୍ତ ମଧ୍ୟ ଆଇନ୍ କାର୍ଯ୍ୟକାରୀ ହୋଇଥିଲା । ଜଙ୍ଗଲ ମଧ୍ୟରେ କେହି ଅବାଧ ପଶୁ ଶିକାର କରିପାରୁନଥିଲେ। ସମୟେ ସମୟେ ହାତୀମାନେ ଆସି ଫସଲ ଓ ଜୀବନ ନଷ୍ଟ କରୁନଥିବାରୁ ସେମାନଙ୍କୁ ନମାରି ଖେଦା କରାଯାଇ ଜୀବନ୍ତ ଧରାଯାଉଥିଲା ।

ଢେଙ୍କାନାଳର ଶିକ୍ଷାବିଭାଗ ମହାରାଜା ଭଗୀରଥଙ୍କ ସମୟରୁ ସୁଦୃଢ଼ ହୋଇଥିଲା । ତାଙ୍କ ଅମଳରେ କେତେକ ପ୍ରାଥମିକ ବିଦ୍ୟାଳୟ, ମଧ୍ୟଇଂରାଜୀ ବିଦ୍ୟାଳୟ ଏବଂ ସଂସ୍କୃତଟୋଲ୍ ପ୍ରତିଷ୍ଠା ହୋଇଥିଲା । ରାଜା ସୁରପ୍ରତାପଙ୍କ

ରାଜତ୍ୱରେ ମଧ୍ୟଇଂରାଜୀ ବିଦ୍ୟାଳୟଟି ୧୮୯୬ ମସିହାରେ ଉଚ୍ଚଇଂରାଜୀ ବିଦ୍ୟାଳୟରେ ପରିଣତ ହୋଇଥିଲା । ରାଜା ଶଙ୍କର ପ୍ରତାପ କେତେଗୋଟି ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସ୍ଥାପନା କରିଥିଲେ । ଏତଦ୍‌ଭିନ୍ନ ଢେଙ୍କାନାଳ ଓ ମଢ଼ି (ବାମାଖ୍ୟାନଗର)ରେ ଦୁଇଗୋଟି ମଧ୍ୟଇଂରାଜୀ ବିଦ୍ୟାଳୟ ପ୍ରଥମ ପର୍ଯ୍ୟାୟରେ ପ୍ରତିଷ୍ଠା କଲେ । ଦ୍ୱିତୀୟ ପର୍ଯ୍ୟାୟରେ ମାର୍ଥାପୁର ଇର୍ଣ୍ଣାକୁଲାର ସ୍କୁଲକୁ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଏବଂ ଭୁବନଠାରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ବସାଇଲେ । ଉଚ୍ଚଶିକ୍ଷିତ, ଚରିତ୍ରବନ୍ତ ତଥା ମେଧାବୀ ବ୍ୟକ୍ତିମାନଙ୍କୁ ସେ ଶିକ୍ଷକ ପଦରେ ନିଯୁକ୍ତି ଦେଲେ । ବିଶେଷତଃ ଦୁଇ ତିନୋଟି ନିକଟବର୍ତ୍ତୀ ଗ୍ରାମର ମଧ୍ୟସ୍ଥାନରେ ସେ ବିଦ୍ୟାଳୟମାନ ପ୍ରତିଷ୍ଠା କରୁଥିଲେ, ଯାହା ଫଳରେ ସମାଜର ସକଳଶ୍ରେଣୀର ପିଲା ପାଠପଢ଼ିବାର ସୁଯୋଗ ପାଇପାରିବେ । ଏହି କାର୍ଯ୍ୟକ୍ରମରେ ସେ ଜନସାଧାରଣଙ୍କୁ ସାମିଲ କରୁଥିଲେ । ଏଥି ନିମିତ୍ତ ସ୍ଥାନୀୟ ସର୍ବରାକାର ଓ ମୁଖିଆମାନଙ୍କୁ ନେଇ କମିଟି ଗଠନ କରାଯାଇଥିଲା । ଏହି କମିଟି ଛାତ୍ରଛାତ୍ରୀମାନଙ୍କର ଅଧିକ ଉପସ୍ଥାନ, ବିଦ୍ୟାଳୟ ମରାମତି, ବାଡ଼ବନ୍ଦୀ, ବଗିଚାକାର୍ଯ୍ୟ ନିମିତ୍ତ ଯତ୍ନ ନେଉଥିଲେ । ପ୍ରାୟ ପ୍ରତ୍ୟେକ ଗ୍ରାମର ଚାଷୀମାନେ ପ୍ରତିବର୍ଷ ବିଦ୍ୟାଳୟ ଗୃହ ଛପର କରିଦେଉଥିଲେ । ଆବଶ୍ୟକ ସ୍ଥଳେ ଗ୍ରାମବାସୀମାନେ ସାହାଯ୍ୟ ସହଯୋଗକରି ଶିକ୍ଷକ ଓ ଛାତ୍ରଛାତ୍ରୀଙ୍କ ଦ୍ୱାରା ହୋଇପାରୁ ନଥିବା କାର୍ଯ୍ୟ ଆପଣାର ଭାବି କରିନେଉଥିଲେ । ମୋଟ ଉପରେ କହିଲେ ରାଜ୍ୟର ସର୍ଭିଁଏ ଶିକ୍ଷାର ଅଭିବୃଦ୍ଧିକୁ ଜାତୀୟ କାର୍ଯ୍ୟ ସ୍ୱରୂପରେ ବିବେଚନା କରିଥିଲେ । ଗ୍ରାମାଞ୍ଚଳକୁ ଗସ୍ତରେ ଯାଉଥିବା ପଦାଧିକାରୀମାନଙ୍କୁ ମଧ୍ୟ ବିଦ୍ୟାଳୟର ସୁବିଧା ଅସୁବିଦା ତଦାରଖ କରି ବ୍ୟବସ୍ଥା ଗ୍ରହଣ କରିବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ଶିକ୍ଷକମାନଙ୍କୁ ତାଲିମ୍ ଦେବାନିମିତ୍ତ ଏକ ଗୁରୁଟ୍ରେନିଂ ସ୍କୁଲ୍ ପ୍ରତିଷ୍ଠା କରାଯାଇ ପଣ୍ଡିତ ବୈଦ୍ୟନାଥ ଦାଶ, ପଣ୍ଡିତ କେଶବଚନ୍ଦ୍ର ମିଶ୍ର, କବିଭୂଷଣ ରାଜକିଶୋର ପଟ୍ଟନାୟକ ପ୍ରଭୃତି ସୁଯୋଗ୍ୟ ବ୍ୟକ୍ତିବିଶେଷଙ୍କୁ ଟ୍ରେନିଂ ସ୍କୁଲର ଶିକ୍ଷକ ଭାବରେ ନିଯୁକ୍ତି ଦିଆଯାଇଥିଲା ।

ସେହି ସମୟରେ ଢେଙ୍କାନାଳ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଏକ ପ୍ରସିଦ୍ଧ ହାଇସ୍କୁଲ ଭାବରେ ଖ୍ୟାତି ଲାଭ କରିଥିଲା । ଏହି ହାଇସ୍କୁଲରେ ଯୋଗ୍ୟ ଓ ପଣ୍ଡିତ ତଥା ଅଭିଜ୍ଞ ଶିକ୍ଷାବିତ୍‌ମାନଙ୍କୁ ଶିକ୍ଷକ ଭାବରେ ନିଯୁକ୍ତି ଦିଆଯାଇଥିଲା । ଏପରିକି ସତ୍ୟବାଦୀର ବନବିଦ୍ୟାଳୟରେ ଶିକ୍ଷକତା କରି ଖ୍ୟାତି ଅର୍ଜନ କରିଥିବା କେତେକ

ଯୋଗ୍ୟଶିକ୍ଷକଙ୍କୁ ଏଠାରେ ନିଯୁକ୍ତି ଦିଆଯାଇଥିଲା । କଲିକତାରୁ ମଧ୍ୟ ସୁଯୋଗ୍ୟବ୍ୟକ୍ତିଙ୍କୁ ଆଣି ଏହି ବିଦ୍ୟାଳୟର ପ୍ରଧାନଶିକ୍ଷକ । ପଦବୀରେ ନିଯୁକ୍ତି ଦିଆଯାଇଥିଲା । ସୂଚନାଯୋଗ୍ୟଯେ, ଏହି ହାଇସ୍କୁଲର ପାଠାଗାର ସମଗ୍ର ଓଡ଼ିଶାରେ ସାରସ୍ୱତ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ସେତେବେଳର ଛାତ୍ର ଯେଉଁମାନଙ୍କ ପରବର୍ତ୍ତୀକାଳରେ ଖ୍ୟାତିଅର୍ଜନ କରିଥିଲେ ଯଥା– ଅନ୍ନଦାଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, କାଳୀଚରଣ ପଟ୍ଟନାୟକ ଓ ସୁଧାକର ପଟ୍ଟନାୟକ ପ୍ରଭୃତିଙ୍କ ଲେଖନୀରେ ଢେଙ୍କାନାଳ ହାଇସ୍କୁଲର ମହିମା ବର୍ଣ୍ଣିତ। ଏହି ବିଦ୍ୟାଳୟରେ ସିଲାବସ୍ ଅନୁଯାୟୀ ଶିକ୍ଷାଦାନ ସହିତ ଫୁଟବଲ୍, ହକି, ବିଭିନ୍ନ ଡ୍ରିଲ୍, ଓ ସ୍କାଉଟ୍ ପ୍ରଭୃତି ଶିକ୍ଷା ଦିଆଯାଉଥିଲା । ଗୌରବର ବିଷୟ, ଛାତ୍ରଛାତ୍ରୀଙ୍କ ମଧ୍ୟରେ ସୃଜନଶୀଳତା ସୃଷ୍ଟି ନିମିତ୍ତ ୧୯୨୮ ମସିହାରୁ ଢେଙ୍କାନାଳ ହାଇସ୍କୁଲରେ "ଶଙ୍କର ବିଜୟ" ନାମକ ପତ୍ରିକା ପ୍ରକାଶିତ ହେଲା । ଛାତ୍ରଛାତ୍ରୀଙ୍କ ମଧ୍ୟରେ ପ୍ରବନ୍ଧ, ଗଳ୍ପ ଓ କବିତା ଲେଖିବା ଓ ଖେଳ, ଡ୍ରିଲ୍ ତଥା ସ୍କାଉଟ୍‌ର ଆଗ୍ରହ ସୃଷ୍ଟି କରିବା ନିମିତ୍ତ ପୁରସ୍କାର ପ୍ରଦାନର ବିଧି ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । କବିତା ନିମିତ୍ତ ଟ୫ ଗଦ୍ୟ ନିମିତ୍ତ ଟ୮, ହକିର ଶ୍ରେଷ୍ଠ ଖେଳାଳୀଙ୍କୁ ଟ୫, ଶ୍ରେଷ୍ଠ ସ୍କାଉଟ୍‌ଙ୍କୁ ଟ୬ ଓ ଡ୍ରିଲ୍‌ରେ ପ୍ରଥମ ଛାତ୍ର ବା ଛାତ୍ରୀଙ୍କୁ ଟ୮ ପୁରସ୍କାର ଦିଆଯାଉଥିଲା । ରାଜା ଶଙ୍କର ପ୍ରତାପଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସ୍କୁଲଟି ପରିଚାଳିତ ହେଉଥିଲା । ଗରିବ ଓ ମେଧାବୀ ଛାତ୍ରମାନଙ୍କୁ ଦରବାର ତରଫରୁ ବୃତ୍ତି ପ୍ରଦାନ କରାଯାଉଥିଲା । ଅନେକ ଛାତ୍ରଙ୍କୁ ଯାଉଁଳୀ ପୋଖରୀ ମଠରେ ରଖାଯାଇ ଖାଦ୍ୟପେୟର ମାଗଣା ବ୍ୟବସ୍ଥା ହୋଇଥିଲା । ଫଳରେ ଗ୍ରାମାଞ୍ଚଳର ଗରିବ ଛାତ୍ରମାନେ ହାଇସ୍କୁଲରେ ବିଦ୍ୟାଧ୍ୟୟନର ସୁଯୋଗ ଲାଭ କରିପାରୁଥିଲେ । ଢେଙ୍କାନାଳ ହାଇସ୍କୁଲ ସମେତ ରାଜ୍ୟର ଅନ୍ୟାନ୍ୟ ବିଦ୍ୟାଳୟରେ ସ୍କାଉଟ୍ ଶିକ୍ଷା ପ୍ରଚଳନ ଥିଲା । ନିଜେ ରାଜା ଶଙ୍କର ପ୍ରତାପ ଢେଙ୍କାନାଳ ସ୍କାଉଟ୍‌ର ମୁଖ୍ୟ ଥିଲେ । ତଦନୁରୂପ ରାଣୀ ରତ୍ନପରେ ଦେବୀ ମଧ୍ୟ ଗାଇଡ୍‌ର ମୁଖ୍ୟ ଥିଲେ । ରାଣୀ ମଧ୍ୟ ଗାଇଡ୍‌ଶିକ୍ଷା ନିମନ୍ତେ ପୁସ୍ତକ ରଚନା କରିଥିଲେ । ରାଜ୍ୟସ୍ତରୀୟ ସ୍କାଉଟ୍ ଓ ଗାଇଡ୍ ମେଳା ଅନୁଷ୍ଠିତ ହୋଇ କୃତୀ ପ୍ରତିଯୋଗୀମାନଙ୍କୁ ପୁରସ୍କୃତ କରାଯାଉଥିଲା ।

ଢେଙ୍କାନାଳର ଦେବୋତ୍ତର ବିଭାଗର ପ୍ରତିଷ୍ଠାତା ହେଉଛନ୍ତି ମହାରାଜା ଭାଗୀରଥ । ପରବର୍ତ୍ତୀ କାଳରେ ରାଜର୍ଷି ସୁରପ୍ରତାପ ଓ ବୈଷ୍ଣବ ଭାବାପନ୍ନ

ପାର୍ବତୀ ଚରଣ ଦାସଙ୍କ ମିଳିତ ପ୍ରଚେଷ୍ଟାରେ ଦେବୋତ୍ତର ବିଭାଗର ଉତ୍ତରୋତ୍ତର ଅଭିବୃଦ୍ଧି ଘଟିପାରିଥିଲା । ରାଜା ଶଙ୍କର ପ୍ରତାପ ଏହି ବିଭାଗଟିକୁ ରାଣୀ ରତ୍ନପ୍ରଭା ଦେବୀଙ୍କ ଦାୟିତ୍ୱରେ ରଖିଥିଲେ । ସେତେବେଳେ ଢେଙ୍କାନାଳର ବଡ଼ଠାକୁର ଭାବରେ ଶ୍ରୀବଳଦେବଜୀଉ ଓ ଶ୍ରୀଚନ୍ଦ୍ରଶେଖର ମହାଦେବଙ୍କର ପ୍ରସିଦ୍ଧି ରହିଥିଲା । ଏହାଛଡ଼ା, ଖୁଣ୍ଟୁଝରୀ ମଠ, ଦଧିବାମନ ମଠ, ଦୁର୍ଗାପ୍ରସାଦ ମଠ, ତେନ୍ତଳିଆ ମଠ, ବାଲିବୋମଠ, ଖୋକସା ମଠ, ମଲାଙ୍ଗଡିହ ମଠ, ଜୀରିଡ଼ାମାଳୀ ମଠ, ଅଘିରାଗୋଡ଼ା ମଠ ପ୍ରଭୃତି ଚଉଦ ଗୋଟି ମଠର ପରିଚାଳନା ଭାର ଦେବୋତ୍ତର ବିଭାଗ ଉପରେ ନ୍ୟସ୍ତ ରହିଥିଲା । ଗ୍ରାମମାନଙ୍କରେ ଥିବା ମହାଦେବମନ୍ଦିର, ରାଧାକୃଷ୍ଣ ମନ୍ଦିର ଓ ଗୋପୀନାଥ ମନ୍ଦିର ତଥା ଦଧିବାମନ ମନ୍ଦିର ପ୍ରଭୃତିର ସଂଖ୍ୟା ଥିଲା ୧୨୫ ଏବଂ ବିଭିନ୍ନ ଗ୍ରାମଦେବତୀଙ୍କର ସଂଖ୍ୟା ଥିଲା ୮୦୪ । ଏହି ସବୁ ଠାକୁରଙ୍କ ପରିଚାଳନା କାର୍ଯ୍ୟ ଦେବୋତ୍ତର ତଦାରଖ କରୁଥିଲା । ରାଜା ଶଙ୍କରପ୍ରତାପ ଏହି ମଠମନ୍ଦିର ପରିଚାଳନା ନିମିତ୍ତ କେତକେ ନୂତନ ନୀତି ପ୍ରଣୟନ କରିଥିଲେ । ମଠମନ୍ଦିର ସମୂହର ପରିଚାଳନା ନିମିତ୍ତ ଢେଙ୍କାନାଳ ରାଜବଂଶ ବହୁପରିମାଣରେ ନିଷ୍କର ଜମି ଦାନ କରିଥିଲେ । ଏହି ଜମି ଖମାରମାନଙ୍କରେ ହେଉଥିବା ଚାଷକାର୍ଯ୍ୟ ଦ୍ୱାରା ଆବାଦ କରାଯାଉଥିଲା । ଧାନ, ବିରି, ମୁଗ, ଆଖୁ ଓ ଅନ୍ୟାନ୍ୟ ପନିପରିବା ଏହି ଜମିରୁ ଆଦାୟ ହୋଇ ଠାକୁରଙ୍କ ନୀତିନିଯୋଗ, ଯାନିଯାତ୍ରା ଓ ପର୍ବପର୍ବାଣୀ ସମାହିତ ହେଉଥିଲା । ପ୍ରତ୍ୟେକ ମଠମନ୍ଦିର ସୁପରିଚାଳନା ନିମିତ୍ତ ଜିମାଦାର ନିଯୁକ୍ତି ପାଇଥିଲେ । ବଳରାମମନ୍ଦିର, କପିଳାସ, ଦେଓଗାଁ ଓ ଅନ୍ୟାନ୍ୟ ମଠ ନିମିତ୍ତ ଜଣେ ଜଣେ ସବୈତନିକଜିମାଦାର ତଥା ମୁଖ୍ୟ ଗ୍ରାମମାନଙ୍କରେ ଥିବା ମନ୍ଦିର ସମୂହରେ ଗ୍ରାମର ବିଶିଷ୍ଟ ବ୍ୟକ୍ତିବିଶେଷଙ୍କୁ ଅବୈତିନିକ ଜିମାଦାର ନିଯୁକ୍ତି କରାଯାଇଥିଲା । ଗ୍ରାମଦେବତୀମାନଙ୍କ ପୂଜା ଓ ପରିଚାଳନା ଉଭୟ ପୂଜକ ବା ଦେହୁରୀ ସମାପନ କରୁଥିଲେ । ଗ୍ରାମବାସୀମାନେ ଏହି ଗ୍ରାମପୀଠରେ ବାର୍ଷିକ ମହୋତ୍ସବ ବା ଯନ୍ତାଳ କରୁଥିଲେ । ସକଳ ଦେବଦେବୀ ମନ୍ଦିର ପରିଚାଳନା ତଦାରଖ କରିବା ନିମିତ୍ତ ଜଣେ ଦେବୋତ୍ତର ନୀରୀକ୍ଷକ ନିଯୁକ୍ତି ପାଇଥିଲେ । ଯେଉଁ ଜମି ଖମାର ମାନଙ୍କରେ ଥିବା ହାତଚାଷରେ ଚାଷ ହେଉନଥିଲା ତାହା ସ୍ଥାନୀୟ ପ୍ରଜାମାନେ ବାର୍ଷିକ ସଞ୍ଜାରେ କବୁଲିୟତ୍ (Agreement) ସଂପାଦକ କରି ଚାଷ କରୁଥିଲେ । ଦେବୋତ୍ତର କାର୍ଯାଳୟରେ ଜଣେ ମୋହରିର ତାହାର ହିସାବ

ରଖୁଥିଲେ । ତାଙ୍କୁ ସାହାଯ୍ୟକରିବା ଓ ନୋଟିସ୍ ନେବା ନିମିତ୍ତ ଜଣେ ପିଅନ ରହିଥିଲେ । ପୂଜକ, ମାଳୀ ଓ ଦେହୁରୀମାନେ ଜମି ଭୋଗ କରି ଠାକୁରଙ୍କ ସେବାପୂଜା କରୁଥିଲେ, ଅତିଥି ଅଭ୍ୟାଗତ, ସାଧୁ ଓ ସନ୍ଥଙ୍କ ନିମିତ୍ତ ଖଞ୍ଜାଭୋଗର ବ୍ୟବସ୍ଥା କରାଯାଇଥିଲା । ଏତଦ୍‌ଭିନ୍ନ ଦେବୋତ୍ତର ବିଭାଗର ବିଭିନ୍ନ ଖମାରରେ ଗାଈ ଓ ମହିଁଷୀ ରହିଥିଲେ । ଠାକୁରଙ୍କ ସେବାପୂଜା ନିମିତ୍ତ କ୍ଷୀର, ଦହି, ଛେନା, ଲହୁଣୀ ଓ ଘିଅର ଅଭାବ ନଥିଲା । ନିଜେ ରାଣୀ ରତ୍ନପ୍ରଭା ଦେବୀ ଦେବୋତ୍ତର ବିଭାଗର ସର୍ବୋଚ୍ଚ କର୍ମକର୍ତ୍ତା ଓ ରାଜଭ୍ରାତା ଶ୍ରୀଶେଷ ପ୍ରତାପ ସିଂହଦେଓ ଦେବୋତ୍ର ଅଧିକାରୀ ଭାବରେ କାର୍ଯ୍ୟନିର୍ବାହ କରୁଥିଲେ । ଦେବୋତ୍ତର ଆକାଉଣ୍ଟର ଟ୍ରେଜେରୀରେ ଏକ ସ୍ୱତନ୍ତ୍ର ହିସାବ ରହୁଥିଲା । ଯେ କୌଣସି ବ୍ୟକ୍ତି ଚାହିଁଲେ ଦେବୋତ୍ତର ଦେୟ ଏହି ଆକାଉଣ୍ଟରେ ଚାଲାଣ ମାଧ୍ୟମରେ ଦାଖଲ କରିପାରୁଥିଲେ । ସ୍ୱାଧୀନତାର ବହୁବର୍ଷ ପରେ ବି P.L.a/c ଭାବରେ ଏହା ପ୍ରଚଳିତ ଥିଲା । ଧର୍ମପ୍ରାଣ ରାଜା କପିଳାସ ପୀଠରେ ହନୁମାନ ମନ୍ଦିର, ବାଲିବୋମଠ, ତେନ୍ତଳିଆ ମଠ, ଦୁର୍ଗାପ୍ରସାଦ ଖମାର, ଖୁଣ୍ଟଝରୀ ମଠ, ପ୍ରଭୃତି ନିର୍ମାଣ କରିଥିଲେ । ଏତଦ୍‌ଭିନ୍ନ ରାଜପଣ୍ଡିତ, ରାଜପୁରୋଧା ଓ ଅନ୍ୟାନ୍ୟ ଜ୍ଞାନୀଗୁଣୀ ବ୍ୟକ୍ତିଙ୍କ ପରାମର୍ଶ କ୍ରମେ ଦେବୋତ୍ତର ପରିଚାଳନା ନିମିତ୍ତ କେତେକ ନୂତନ ନୀତି ପ୍ରଣୟନ କରିଥିଲେ । ସେହି ସମୟରେ ବଉଳମୂଳ କଚେରୀ ଅର୍ଥାତ୍ ରାଜପ୍ରାସାଦ ନିକଟସ୍ଥ ପୁରୁଣାକଚେରୀରେ କାର୍ଯ୍ୟାଳୟ ଥିଲା। କାର୍ଯ୍ୟାଳୟ ନିମିତ୍ତ ସ୍ଥାନାଭାବ ଅନୁଭବ କରି ରାଜା ଶଙ୍କର ପ୍ରତାପ ନୂତନ କଚେରୀ ନିର୍ମାଣ ଯୋଜନା କଲେ। ଚୀନ୍ ଓ ଇଉରୋପୀୟ ସ୍ଥପତି ଓ ଯନ୍ତ୍ରୀଙ୍କ ବୈଷୟିକ ଜ୍ଞାନକୌଶଳରେ ନୂତନ କଚେରୀ ନିର୍ମିତ ହେଲା । ନିର୍ମାଣରେ ବ୍ୟବହୃତ ଲୌହକଡ଼ି ଟାଟାକଂପାନୀରୁ, କାଚ ବେଲଜିୟମ୍‌ରୁ ଓ କାଠ ଢେଙ୍କାନାଳର ଜଙ୍ଗଲରୁ ସଂଗ୍ରହ ହୋଇଥିଲା । ଏଗୁଡ଼ିକ ଅଦ୍ୟାବଧି ଅକ୍ଷୁର୍ଣ୍ଣ ରହିଛି । ଏହି କଚେରୀ ନିର୍ମାଣ ନିମିତ୍ତ ସ୍ୱତନ୍ତ୍ର ଭାବରେ ଇଟା ତିଆରି କରାଯାଇଥିଲା । ୧୯୨୮ରେ ନୂତନ କାର୍ଯ୍ୟାଳୟଟି ପ୍ରତିଷ୍ଠା ହୋଇ ସମସ୍ତ କାର୍ଯ୍ୟାଳୟ ନଅର ନିକଟରୁ ଏଠାକୁ ସ୍ଥାନାନ୍ତରିତ ହେଲା । ସଂପ୍ରତି ଏହା ଜିଲାପାଳଙ୍କ କାର୍ଯ୍ୟାଳୟ । ଦରବାର ହଲ୍‌ଟି ବର୍ତ୍ତମାନ ଜିଲାପାଳଙ୍କ ପ୍ରକୋଷ୍ଠ ଭାବରେ ବ୍ୟବହୃତ । ଯେଉଁ ଐଶାନ୍ୟକୋଣରେ ଦୋବୋତ୍ତର କାର୍ଯ୍ୟାଳୟ ଚାଲିଥିଲା, ବର୍ତ୍ତମାନ ମଧ୍ୟ ସେହିଠାରେ ଚାଲୁଅଛି । ଅଭିଲେଖାଗାର ଟିକୁ ସେତେବେଳେ ଯେପରି ନିର୍ମାଣ

କରାଯାଇଥିଲା ତାହା ସେହିପରି ରହିଅଛି । ଏହାର କାନ୍ଥଗୁଡ଼ିକ ଏତେ ଶକ୍ତ ଯେ ପ୍ରସ୍ଥାନ ପଙ୍ଖା ଲଗାଇବାକୁ ଦୁଇଗୋଟି ଗୋଲେଇ କଣା କରିବାକୁ ପ୍ରାୟ ସାତଦିନ ସମୟ ଲାଗିଥିଲା । ଏତଦ୍‌ଭିନ୍ନ ଅନ୍ୟଯେଉଁ କୋଠାଗୁଡ଼ିକ ସେହି ସମୟରେ ନିର୍ମାଣ ହୋଇଥିଲା, ସେଗୁଡ଼ିକ ହେଉଛି ଦେଓ୍ୱାନ୍ ବଙ୍ଗଳା (ସଂପ୍ରତି ଜିଲାପାଳଙ୍କ ବାସଭବନ), ଶାଳୁଆ ବଙ୍ଗଳା (ସଂପ୍ରତି ଉପଜିଲାପାଳଙ୍କ ବାସଭବନ), ବାଟବଙ୍ଗଳା (ସଂପ୍ରତି ମୁନସଫ୍‌ଙ୍କ ବାସଭବନ), ମୁଖ୍ୟ ଡାକ୍ତରଖାନାର ପ୍ରସୂତି ବିଭାଗ, ଏସ୍.ପି.ବଙ୍ଗଳା, ଡି.ଏଫ୍.ଓ.ବଙ୍ଗଳା ପ୍ରଭୃତି । ଢେଙ୍କାନାଳ ସହରକୁ ସୁନ୍ଦର ରୂପେ ଗଢ଼ିବାର ପରିକଳ୍ପନାରେ ରାଜାସାହେବ ଟାଉନ୍ ପ୍ଲାନିଂ ଆରମ୍ଭ କରିଥିଲେ । ପ୍ରଶସ୍ତ ରାସ୍ତାନିର୍ମାଣ, ରାସ୍ତାର ଉଭୟ ପାର୍ଶ୍ୱରେ ବୃକ୍ଷରୋପଣ, ଜଳ ନିଷ୍କାସନ ନିମିତ୍ତ ଡ୍ରେନ୍ ନିର୍ମାଣ ଆଦି କାର୍ଯ୍ୟ ତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ହୋଇଥିଲା । ରାସ୍ତା ପ୍ରଶସ୍ତ କରିବା ନିମିତ୍ତ ସେ ପ୍ରମୁଖବ୍ୟକ୍ତିମାନଙ୍କ ସହିତ ଆଲୋଚନା କରିଥିଲେ । ଅନେକ ସ୍ୱଚ୍ଛଳ ବ୍ୟକ୍ତି ସ୍ୱଇଚ୍ଛାରେ ଜାଗାଛାଡ଼ି ଦେଇଥିଲେ । ଯେଉଁ ଗରିବ ଲୋକମାନେ ଜାଗାଛାଡ଼ିଲେ ସେମାନଙ୍କୁ ଆଇନ୍ ଅନୁସାରେ ଉପଯୁକ୍ତ କ୍ଷତିପୂରଣ ପ୍ରଦାନ କରାଯାଇଥିଲା । ସେହି ସମୟରେ ନିର୍ମିତ ପ୍ରଶସ୍ତ ରାସ୍ତା ଓ ଡ୍ରେନ୍ ଅଦ୍ୟାବଧୁ ବିଦ୍ୟମାନ ।

ଦିବ୍ୟଦ୍ରଷ୍ଟା ରାଜର୍ଷି ସୁରପ୍ରତାପ ମୃତ୍ୟୁପୂର୍ବରୁ କେଉଁ ପୁଅ କେତେ ଜମି ଓ କେଉଁ ଖମାର ପାଇବ ତାର ଗୋଟିଏ ଚିଠା ପ୍ରସ୍ତୁତ କରିଥିଲେ । ରାଜ୍ୟଭାର ଗ୍ରହଣ କରିବା ପରେ ରାଜା ଶଙ୍କର ପ୍ରତାପ ପିତୃଆଜ୍ଞା ପାଳନ କରିବାକୁ ଯାଇ ପ୍ରତ୍ୟେକ ଭାଇଙ୍କ ନାମରେ ଚିଠା ଅନୁଯାୟୀ ପ୍ରଦତ୍ତ ଜମି ଓ ଖମାର ରେକର୍ଡ଼ କରିଦେଲେ । ତଦନୁଯାୟୀ ପଟ୍ଟାୟତ ନୃସିଂହ ପ୍ରତାପଙ୍କର ଚାଉଳିଆ ଖମାର, ନିନିସାହେବ ଶ୍ରୀଶେଶ ପ୍ରତାପଙ୍କର ରାମେଇ ଖମାର, ସାନ ସାହେବ ସମରେନ୍ଦ୍ର ପ୍ରତାପଙ୍କର ସାରିଆପଡ଼ା ଖମାର, ଟିକି ସାହେବ ଗୌରେନ୍ଦ୍ର ପ୍ରତାପଙ୍କର କଙ୍କଡ଼ାହାଡ଼ ଖମାର ଭାଗ ପଡ଼ିଥିଲା । ସୂଚନାଯୋଗ୍ୟ ଯେ, ରାଜା ନିଜ ନାମରେ କୌଣସି ଭୂସଂପତ୍ତି ଓ ଖମାର ରେକର୍ଡ଼ କରିନଥିଲେ । କେବଳ ରାଜପ୍ରାସାଦ ଓ ମାଳୀବଗିଚା ଉତ୍ତରାଧିକାରୀ ସୂତ୍ରେ ତାଙ୍କ ନାମରେ ରେକର୍ଡ଼ ହୋଇଥିଲା । ଏହି ମାଳୀ ବଗିଚା ଥିଲା ରାଜାନଅରର ପରିବା ବଗିଚା । ସଂପ୍ରତି ସେଠାରେ ଢେଙ୍କାନାଳ ମହିଳା ମହାବିଦ୍ୟାଳୟ ନିର୍ମିତ ।

ଶଙ୍କର ପ୍ରତାପଙ୍କ ରାଜତ୍ୱର ପ୍ରାରମ୍ଭରେ ନିର୍ଗୁଣ୍ଡିଠାରୁ ତାଳଚେର ପର୍ଯ୍ୟନ୍ତ ରେଳପଥ ନିର୍ମାଣ ହେଲା । ଏହି ରେଳପଥ ନିମିତ୍ତ ଆବଶ୍ୟକୀୟ ଜମି ବିନାସଲାମୀରେ ଯୋଗାଇଦେବାକୁ ରାଜର୍ଷି ସୁରପ୍ରତାପ ପ୍ରତିଶ୍ରୁତି ଦେଇଥିଲେ । ତଦନୁଯାୟୀ ଶଙ୍କରପ୍ରତାପ ଢେଙ୍କାନାଳ ରାଜ୍ୟରେ ୮୦ କି.ମି. ରେଳପଥ ନିର୍ମାଣ ତଥା ଢେଙ୍କାନାଳ ଓ ମେରାମଣ୍ଡଳୀରେ ରେଳଷ୍ଟେସନ୍ ନିର୍ମାଣ ନିମିତ୍ତ ବିନାସଲାମୀରେ ଜାଗା ଯୋଗାଇ ଦେଇଥିଲେ । ରାଜାଙ୍କ ସହଯୋଗ ଓ ଉଦ୍ୟମରେ ଏହି ରେଳପଥ ନିର୍ମାଣ କାର୍ଯ୍ୟ ଶୀଘ୍ର ଶେଷହୋଇ ୧୯୨୭ ମସିହାଠାରୁ ରେଳଚଳାଚଳ ଆରମ୍ଭ ହେଲା । ଫଳରେ ତାଳଚେରରୁ ଉତ୍ପାଦିତ କୋଇଲା ତଥା ଢେଙ୍କାନାଳ ଓ ଅନୁଗୁଳ ଅଞ୍ଚଳରୁ ଉତ୍ପାଦିତ ଖାଦ୍ୟଶସ୍ୟ, ଜଙ୍ଗଲଜାତ ଦ୍ରବ୍ୟ କାଠ ବାଉଁଶ ପ୍ରଭୃତି ଅନାୟାସରେ ରେଳଯୋଗେ ବାହାରକୁ ରପ୍ତାନୀହୋଇପାରିଲା । ଏହି ରେଳପଥରେ ପାସେଞ୍ଜର ଟ୍ରେନ୍ ଚଳାଚଳଯୋଗୁଁ ସାଧାରଣ ଲୋକେ ଯାତାୟତର ସୁବିଧା ମଧ୍ୟ ପାଇଲେ ।

ପ୍ରଶାସନକୁ ଲୋକାଭିମୁଖୀ କରିବା ନିମିତ୍ତ ରାଜା ଶଙ୍କରପ୍ରତାପ ସମଗ୍ର ଢେଙ୍କାନାଳ ରାଜ୍ୟକୁ ଛଅଗୋଟି ତହସିଲରେ ବିଭକ୍ତ କରିଥିଲେ । ସେହି ତହସିଲଗୁଡ଼ିକ ହେଉଛି ଭାଗୀରଥିପୁର, ରତ୍ନପ୍ରଭା, ସୁରପ୍ରତାପପୁର, ରାୟସିଂହ ପ୍ରସାଦ, ପରଜଙ୍ଗ ଓ ସଦର । ପ୍ରତ୍ୟେକ ତହସିଲ୍‌ରେ ସୁଯୋଗ୍ୟ ବ୍ୟକ୍ତିଙ୍କୁ ତହସିଲଦାର ପଦବୀରେ ନିଯୁକ୍ତି ଦିଆଯାଇଥିଲା । ନିଯୁକ୍ତ ତହସିଲ୍‌ଦାରମାନେ ରାଜସ୍ୱଆଦାୟକାରୀ ସର୍ବରାକାରମାନଙ୍କ କାର୍ଯ୍ୟ ତଦାରଖ କରିବା ସହିତ ଜମିବାଡ଼ିବିକ୍ରୟ ପରେ ଖତିୟାନ ସଂଶୋଧନ ଓ ପଟ୍ଟାବଣ୍ଟନ, ବକେୟା ଖଜଣା ଆଦାୟ ଓ ଅନାଦେୟେ ଜମିଉଚ୍ଛେଦ, ଅନବାଦୀ ଜମି କେହି ଆବାଦକଲେ ନିୟମାନୁଯାୟୀ ତା ନାମର ରେକର୍ଡ଼, ଜଳାଶୟ, ମାଛଖାତ, କୁଦ ଓ ପଠାପ୍ରଭୃତି ନିଲାମ, ହାଟଗୁଡ଼ିକ ବାର୍ଷିକ ନିଲାମ ଆଦି କାର୍ଯ୍ୟ କରୁଥିଲେ । ସର୍ବରାକାରମାନେ ଭୂରାଜସ୍ୱ ଓ ତହସିଲଦାରମାନେ ଅନ୍ୟାନ୍ୟ ରାଜସ୍ୱ ଆଦାୟ କରୁଥିଲେ । ଫଳରେ ରାଜ୍ୟର ରାଜସ୍ୱ ବୃଦ୍ଧି ହୋଇ ବିଭାଗଟି ସୁଶୃଙ୍ଖଳିତ ହୋଇଥିଲା । ଆବଶ୍ୟକସ୍ଥଳେ ଦରବାର ଓ ଦେୱାନ୍‌ଙ୍କ ଆଦେଶମତେ ତହସିଲ୍‌ଦାରମାନେ ସରଜମିନ୍ ତଦନ୍ତକରି ରିପୋର୍ଟ ଦାଖଲ କରୁଥିଲେ । ସର୍ବୋପରି ତହସିଲ୍‌ଦାରମାନେ ଆପଣା ଆପଣା ଅଞ୍ଚଳ ପରିସରରେ ରାଜପ୍ରତିନିଧି ସ୍ୱରୂପରେ ସକଳକାର୍ଯ୍ୟ ନିର୍ବାହ କରୁଥିଲେ । ଢେଙ୍କାନାଳ ଦରବାର କାର୍ଯ୍ୟାଳୟରେ ତଉଜି ବିଭାଗ ଓ ଖଜଣାଖାନା

(Treasury) ରହିଥିଲା । ତଉଜି ବିଭାଗରେ ପ୍ରତ୍ୟେକ ରାଜସ୍ୱ ଗ୍ରାମକୁ ତଉଜିନମ୍ବର ପ୍ରଦାନହୋଇ ପ୍ରତି ଗ୍ରାମର ରେଜିଷ୍ଟର ରହୁଥିଲା । ଆଦାୟ ହେଉଥିବା ଖଜଣା ସେହି ଗ୍ରାମର ରେଜିଷ୍ଟରରେ ଉଲ୍ଲେଖ ହେବାପରେ ଖଜଣାଖାନାରେ ଦାଖଲ ହେଉଥିଲା । ଫଳରେ ଆଦାୟ ହେଉଥିବା ଖଜଣା ଓ ବକେୟା ଖଜଣାର ସଠିକ୍ ହିସାବ ମିଳିପାରୁଥିଲା । ଢେଙ୍କାନାଳରେ ସ୍ୱାଧୀନତା ପର ପର୍ଯ୍ୟନ୍ତ ସେହି ନୀତି ପ୍ରଚଳନ ଥିଲା । ଦରବାର କାର୍ଯ୍ୟାଳୟ ଅନ୍ୟଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଭାଗ ଥିଲା ଇଂଲିଶ୍ ବିଭାଗ । ଏହି ବିଭାଗ ଇଂରେଜ ସରକାରଙ୍କ ପଦାଧିକାରୀ ଯଥା– କଲେକ୍ଟର, କମିଶନର, ପଲିଟିକାଲ ଏଜେଣ୍ଟ ଓ ଅନ୍ୟାନ୍ୟ ସରକାରୀ କାର୍ଯ୍ୟାଳୟ ସହିତ ଯୋଗାଯୋଗ ରଖୁଥିଲା । ଏତଦ୍‌ଭିନ୍ନ ନିଜାରତ ବିଭାଗ ଅନ୍ୟାନ୍ୟ ସମସ୍ତ କାର୍ଯ୍ୟର ତତ୍ତ୍ୱାବଧାନରେ ଥିଲା । ୧୯୩୬ ମାର୍ଚ୍ଚ ୩୧ରେ ଉଦ୍‌ଘୋଷିତ Extraordinary ଗେଜେଟ୍ ଅନୁଯାୟୀ ଦରବାର କାର୍ଯ୍ୟାଳୟର ସମୁଦାୟ ୧୮ଟି ବିଭାଗ ରହିଥିଲା । ସେଗୁଡ଼ିକ ହେଉଛି ଉନ୍ନୟନ ଶିକ୍ଷା, ସ୍ୱାସ୍ଥ୍ୟ, ପୋଲିସ୍ ଓ ଅବକାରୀ, ଷ୍ଟୋରବିଭାଗ, ଜେଲ୍ ଓ ପ୍ରେସ୍, ଚାଷ ଓ ବଗିଚା, ଗ୍ରାମ୍ୟ ଉନ୍ନୟନ, ମତ୍ସ୍ୟ ଜଙ୍ଗଲ, ଶିଳ୍ପ, ଖଣି ଓ ଭୂତତ୍ତ୍ୱ, ବାରିକମିସ୍ତ୍ରୀ (PWD.) ଆଇନ୍, ଅଭିଲେଖ ପ୍ରଭୃତି । ଏହି ସବୁ କାର୍ଯ୍ୟର ଦାୟିତ୍ୱରେ ରାଜସ୍ୱମନ୍ତ୍ରୀ, ଘରୋଇମନ୍ତ୍ରୀ ଓ ଆଇନମନ୍ତ୍ରୀ ରହିଥିଲେ । କର୍ମଚାରୀମାନଙ୍କ କାର୍ଯ୍ୟ ଦେଓ୍ୱାନ୍, ସହକାରୀ ଦେଓ୍ୱାନ୍ ଓ କାର୍ଯ୍ୟାଳୟ ଅଧୀକ୍ଷକ ତଦାରଖ କରୁଥିଲେ । ପରେ Executive council ଗଠନ କରାଯାଇ ସକଳ ବିଭାଗର କାର୍ଯ୍ୟକୁ ସୁବ୍ୟବସ୍ଥିତ ଓ ସୁଶୃଙ୍ଖଳିତ କରାଗଲା । ଏହି Council ରେ ରାଜା ସଭାପତି, ପଟ୍ଟାୟତ ଉପସଭାପତି, ଦେଓ୍ୱାନ୍ ବାହାଦୂର ଦୟାନିଧି ଦାସ ଆଇନ୍ ଉପଦେଷ୍ଟା ଓ ରାଜକୁମାର ଶ୍ରୀଶେଷ ପ୍ରତାପ ଘରୋଇ ବିଭାଗ ଉପଦେଷ୍ଟା ରହିଲେ । କିଏ କେଉଁ ବିଭାଗ ଦାୟିତ୍ୱରେ ରହିବେ ଓ କିପରିକାର୍ଯ୍ୟ ସୁଚାରୁରୂପେ ନିର୍ବାହ ହେବ ସେଥିନିମିତ୍ତ ଉପବିଧି ଓ ବିଜ୍ଞପ୍ତି ପ୍ରକାଶ ପାଇଥିଲା ।

ଓଡ଼ିଆ ଭାଷାସାହିତ୍ୟର ଉନ୍ନତି ନିମିତ୍ତ ରାଜା ଶଙ୍କରପ୍ରତାପ ପ୍ରଯତ୍ନଶୀଳ ଥିଲେ । ନିଜେ ରାଣୀ, ରାଜମାତା, ରାଜଭ୍ରାତା ଓ ଓ ସେମାନଙ୍କ ପୂର୍ବବଂଶଜ ଜଣେ ଜଣେ ସାରସ୍ୱତସାଧକ ଥିବାରୁ ଢେଙ୍କାନାଳ ରାଜପରିବାର ଏକ ସାରସ୍ୱତ ପରିବାର ଭାବରେ ସୁଖ୍ୟାତି ଅର୍ଜନ କରିଥିଲେ । ଏହି ବଂଶର ଉତ୍ତରଦାୟାଦ ଭାବରେ ରାଜା ଶଙ୍କର ପ୍ରତାପ ସାହିତ୍ୟର ମଙ୍ଗଳ ନିମିତ୍ତ ବିଶେଷ ପଦକ୍ଷେପ

ନେଇଥିଲେ । ୧୯୩୧ ମସିହାରେ ରାଜଭ୍ରାତା ଶ୍ରୀଶେଶ ପ୍ରତାପ ସିଂହଦେଓଙ୍କ ସହିତ ପଣ୍ଡିତ ବାସୁଦେବ ପଟ୍ଟନାୟକ, ପଣ୍ଡିତ ବୈଦ୍ୟନାଥ ଦାଶ, ପଣ୍ଡିତ ଗଙ୍ଗାଧର ମିଶ୍ର ଓ କବିଭୂଷଣ ରାଜକିଶୋର ପଟ୍ଟନାୟକ ମିଶି ଢେଙ୍କାନାଳ ସାହିତ୍ୟ ସଂସଦ ଗଠନ କରିଥିଲେ । ରାଜାସାହେବ ଏହି ସାରସ୍ୱତ ଅନୁଷ୍ଠାନକୁ ପ୍ରୋତ୍ସାହନ ଦେବାସହିତ, ବ୍ରଜନାଥ ବଡ଼ଜେନାଙ୍କ କୃତୀ ସଂଗ୍ରହରେ ମନୋନିବେଶ କରିଥିଲେ । ସେ କବିଭୂଷଣ ରାଜକିଶୋର ପଟ୍ଟନାୟକଙ୍କୁ ହାତୀରେ କାବରାଗ୍ରାମକୁ ପଠାଇ ବ୍ରଜନାଥଙ୍କ ବଂଶଧର ଧନେଶ୍ୱର ପଟ୍ଟନାୟକ ଯାଉଁଳୀପୋଖରୀ ମଠରେ ରଖାଯାଇ ମାଗଣାରେ ଶିକ୍ଷାଲାଭ ବ୍ୟବସ୍ଥା କରିଥିଲେ । ୧୯୩୧ରେ ମଧ ସାରସ୍ୱତ ସାଧକ ରାଜକିଶୋର ପଟ୍ଟନାୟକଙ୍କୁ ରାଜାସାହେବ "କବିଭୂଷଣ" ଉପାଧିରେ ଭୂଷିତ କରିଥିଲେ । ଏତଦ୍‌ଭିନ୍ନ ତତ୍‌କାଳୀନ ସାରସ୍ୱତସାଧକ ପଣ୍ଡିତ ବୈଦ୍ୟନାଥ ଦାଶ, ପଣ୍ଡିତ ଚକ୍ରଧର ଦାଶ, ପଣ୍ଡିତ ଗଙ୍ଗାଧର ମିଶ୍ର, ପଣ୍ଡିତ କେଶବଚନ୍ଦ୍ର ମିଶ୍ର, ସାମନ୍ତ ସୂର୍ଯ୍ୟନାରାୟଣ ପଟ୍ଟନାୟକ, ପଣ୍ଡିତ ଜୟକୃଷ୍ଣ ମିଶ୍ର ପ୍ରଭୃତିଙ୍କୁ ସେ ସର୍ବଦା ଉତ୍ସାହିତ କରୁଥିଲେ । ମହାରାଜା ଭାଗୀରଥଙ୍କ ଅମଳରୁ ରାଜା ପ୍ରାସାଦରେ ପ୍ରତିଷ୍ଠିତ ହୋଇଥିବା ପୁସ୍ତକାଳୟର ଅଭିବୃଦ୍ଧି ରାଜାସାହେବଙ୍କ ଦ୍ୱାରା ହିଁ ହୋଇଥିଲା । ସେ ବିଭିନ୍ନ ଭାଷାର ବହୁ ପୁସ୍ତକ କ୍ରୟକରି ପୁସ୍ତକାଳୟର କଳେବର ବୃଦ୍ଧି କରିଥିଲେ। ଏଠାରେ ଗଛିତଥିବା ପୁରୁଣା ଚିରାପୁସ୍ତକଗୁଡ଼ିକ ସେ ନିଜେ ପୁନର୍ବାର ସିଲେଇକରି ବନ୍ଧେଇ କରିଥିଲେ । କେବଳ ସେତିକି ନୁହେଁ ପୁସ୍ତକ ସଂରକ୍ଷଣ ଓ ବନ୍ଧେଇ ବିଷୟରେ ସେ ଅନେକ ଯୁବକଙ୍କୁ ତାଲିମ୍ ଦେଇଥିଲେ । ପରବର୍ତ୍ତୀ କାଳରେ ରାଜାଙ୍କ ଉଦ୍ୟମରେ ମାର୍ଥାପୁର ଶାସନରେ ସର୍ବୋଦୟ ପୁସ୍ତକାଳୟ ପ୍ରତିଷ୍ଠା ହୋଇଥିଲା । ଏହା ବ୍ୟତୀତ ପ୍ରତ୍ୟେକ ବିଦ୍ୟାଳୟରେ ମଧ ତାଙ୍କ ପ୍ରଚେଷ୍ଟାରେ ପାଠାଗାର ଖୋଲିଥିଲା ।

ରାଜର୍ଷି ସୁରପ୍ରତାପଙ୍କ ରାଜତ୍ୱରେ ଢେଙ୍କାନାଳରେ ଛଉନୃତ୍ୟର ପ୍ରଶିକ୍ଷଣ ଆରମ୍ଭ ହୋଇଥିଲା । ରାଜାଶଙ୍କର ପ୍ରତାପ ଷଢ଼େଇକଳା, ପୁରୁଲିଆ ଓ ମୟୂରଭଞ୍ଜରୁ ଛଉନୃତ୍ୟ ବିଶେଷଜ୍ଞଙ୍କୁ ଆଣି ପ୍ରଶିକ୍ଷଣ ବ୍ୟବସ୍ଥାକୁ ଜୋର୍‌ଦାର କରିଥିଲେ । ଫଳରେ ଢେଙ୍କାନାଳରେ ଗଞ୍ଜେଇଡିହ, ଝୁମ୍ପୁଡ଼ିଆ, ବାଲ୍ୟାମ୍ବା ବଳରାମପୁର ପ୍ରଭୃତି ଗ୍ରାମମାନଙ୍କରେ ଗୋଟିଏ ଲେଖାଏଁ ଛଉଦଳ ସୃଷ୍ଟି ହୋଇଥିଲା । ଏମାନେ ରାଜ୍ୟ ଓ ରାଜ୍ୟ ବାହାରେ ଛଉନୃତ୍ୟ ପ୍ରଦର୍ଶନ ପୂର୍ବକ

ପ୍ରସିଦ୍ଧ ଅର୍ଜନ କରିଥିଲେ । ଏତଦ୍‌ଭିନ୍ନ ରାଜପ୍ରାସାଦ ''ଶଙ୍କରରଙ୍ଗମହଲ''ରେ ନିୟମିତ ଆଧୁନିକ ନାଟକ ମଞ୍ଚସ୍ଥ ହେବାରେ ରାଜା ପ୍ରଯତ୍ନଶୀଳ ଥିଲେ । ତାଙ୍କରି ଚେଷ୍ଟାରେ ଭୁବନ, କୀର୍ତ୍ତନପୁର, ମାର୍ଥାପୁର, ପରଜଙ୍ଗ, ଖଡ୍ଗପ୍ରସାଦ ପ୍ରଭୃତି ଗ୍ରାମମାନଙ୍କରେ ଆଧୁନିକ ନାଟକ ମଞ୍ଚସ୍ଥ ହୋଇଥିଲା । ଏଥିରେ ପ୍ରଭାବିତ ହୋଇ କେତେକ ସୌଖୀନ ନାଟ୍ୟସଂସ୍ଥା ଢେଙ୍କାନାଳରେ ମୁଣ୍ଡଟେକିଥିଲେ । ତନ୍ମଧ୍ୟରେ ପୀତବାସ ମିଶ୍ରଙ୍କ ଭୁବନ ଯାତ୍ରାଦଳ, ନନ୍ଦଦାସଙ୍କ କୀର୍ତ୍ତନପୁର ଯାତ୍ରାଦଳ, ମହନିଦାସଙ୍କ ମାର୍ଥାପୁର, ଯାତ୍ରାଦଳ, ପ୍ରଭାକର ମିଶ୍ରଙ୍କର ଆନନ୍ଦପୁର ଯାତ୍ରାଦଳ ରାଜ୍ୟ ଓ ରାଜ୍ୟବାହାରେ ସୁନାମ ଅର୍ଜନ କରିଥିଲେ ।

ସେତେବେଳେ ଢେଙ୍କାନାଳ ସହର ହନୁମାନ ସାହି (ମହାବୀରବଜାର) ରେ ଗୋଟିଏ ରାସଦଳ ଥିଲା । ଏହାର ପ୍ରତିଷ୍ଠାତା ଥିଲେ ବ୍ରଜକିଶୋର ପଟ୍ଟନାୟକ । ବ୍ରଜବାବୁ ପ୍ରତ୍ୟେକ ବର୍ଷ କୁମାର ପୂର୍ଣ୍ଣମୀରେ ତାଙ୍କ ରାସଦଳର ବାର୍ଷିକ ଅଭିନୟ ଆରମ୍ଭ କରୁଥିଲେ । ୧୯୨୩ ମସିହାରେ ସେ କୁମାର ପୂର୍ଣ୍ଣମୀଠାରୁ ଗଜଲକ୍ଷ୍ମୀ ପୂଜା ଆରମ୍ଭ କଲେ ଏବଂ ପ୍ରତି ରାତିରେ ଲକ୍ଷ୍ମୀମେଢ଼ ସମ୍ମୁଖରେ ରାସ ଅନୁଷ୍ଠିତ ହେଲା । ରାଜାସାହେବ ଏହାକୁ ପ୍ରୋତ୍ସାହନ ଦେଇଥିଲେ । ୧୯୨୫ରେ ମଧ୍ୟ ମୀନାବଜାରଠାରେ ଅନ୍ୟଗୋଟିଏ ଗଜଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ ଆରମ୍ଭ ହେଲା । ଉଭୟ ପ୍ରତିଷ୍ଠାନ ରାଜାଙ୍କଠାରୁ ପ୍ରୋତ୍ସାହନ ପାଇଲେ । କ୍ରମେ ପ୍ରତ୍ୟେକ ବଜାର ଓ ସାହିରେ ଗଜଲକ୍ଷ୍ମୀପୂଜା ଅନୁଷ୍ଠିତ ହୋଇ, ସଂପ୍ରତି ଢେଙ୍କାନାଳ ଗଜଲକ୍ଷ୍ମୀପୂଜା ଏକ ଭାରତପ୍ରସିଦ୍ଧ ମହୋତ୍ସବ ସ୍ୱରୂପରେ ମହିମାମଣ୍ଡିତ ।

ରାଜା ଭାଗୀରଥଙ୍କ ମୃତ୍ୟୁପରେ ୧୮୭୭ ଠାରୁ ୧୯୦୬ ପର୍ଯ୍ୟନ୍ତ ଢେଙ୍କାନାଳ ରାଜ୍ୟ ଇଂରେଜମାନଙ୍କ ପ୍ରତ୍ୟକ୍ଷ ଶାସନାଧୀନ ଥିଲା । ତତ୍‌ପରେ ୧୯୧୮ଠାରୁ ୧୯୨୫ ପର୍ଯ୍ୟନ୍ତ ମଧ୍ୟ ପ୍ରତ୍ୟକ୍ଷ ଶାସନରେ ରହିଲା । ଏରୂପ ମୋଟ ୩୭ ବର୍ଷ ଇଂରେଜ ଶାସନାଧୀନ ଥିବାରୁ ବିଶେଷ ପ୍ରଜାହିତକର ନୀତି ପ୍ରବର୍ତ୍ତନ କରାଯାଇନଥିଲା । ତେଣୁ ରାଜା ଶଙ୍କର ପ୍ରତାପ ଅନେକ ପ୍ରଜାହିତକର ନୀତି ପ୍ରଚଳନ କରାଇବାରେ ବ୍ରତୀ ହେଲେ । ଏହା କେତେକ ସୁବିଧାବାଦୀ ବ୍ୟକ୍ତି ଓ ସ୍ୱାର୍ଥାନ୍ୱେଷୀ ରାଜକର୍ମଚାରୀଙ୍କୁ ସୁହାଇଲା ନାହିଁ । ସେମାନେ ରାଜାଙ୍କର ପ୍ରତ୍ୟେକ ଉନ୍ନୟନ କାର୍ଯ୍ୟକୁ ପରୋକ୍ଷରେ ସମାଲୋଚନା କରି ଜନବିରୋଧୀ ମତ ସୃଷ୍ଟି କରୁଥିଲେ । କିନ୍ତୁ ଶଙ୍କର ପ୍ରତାପଙ୍କର ସେ ସବୁ ପ୍ରତି ଖାତିର ନଥିଲା । ସେ

ଜଣେ ସରଳ, ନିରହଙ୍କାରୀ, ଧର୍ମପ୍ରାଣ, ଜ୍ଞାନୀ ଓ ନିଃସ୍ୱାର୍ଥପର ବ୍ୟକ୍ତିଥିଲେ। ସେ ଥିଲେ ସତ୍ୟାଶ୍ରୟୀ, ଜ୍ଞାନପିପାସୁ ତଥା ଈଶ୍ୱରନିଷ୍ଠ । ମିଥ୍ୟାବାଦୀ ଓ ମିଥ୍ୟାଚାରୀଙ୍କୁ ସେ ପ୍ରଶୟ ଦେଉନଥିଲେ । ଯୁବକ ବୟସରୁ ସେ ଅନେକ ତୀର୍ଥଭ୍ରମଣ କରି ଅଗଣିତ ସାଧୁସନ୍ଥଙ୍କ ଦର୍ଶନ ଓ ଆଶୀର୍ବାଦ ଲାଭ କରିଥିଲେ। ଧର୍ମ, ଦର୍ଶନ, ତନ୍ତ୍ର, ସଂସ୍କୃତି, ସାହିତ୍ୟ ଓ ମ୍ୟାଜିକ୍‌ରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଓ ଦକ୍ଷତା ରହିଥିଲା । ଆପଣାର ପାଣ୍ଡିତ୍ୟଯୋଗୁଁ ବିଦ୍ୟାପୀଠ କାଶୀର ବିଦ୍ୱଜ୍ଜନମଣ୍ଡଳୀରୁ ସେ ''ବିଦ୍ୟାସାଗର'' ଉପାଧି ଲାଭ କରିଥିଲେ । ରାଜ୍ୟରେ ସ୍କାଉଟ୍ ଓ ଗାଇଡ଼ର ପ୍ରସାର ଯୋଗୁଁ ସେ ଆନ୍ତର୍ଜାତୀୟ ସ୍ତରରେ ସୁଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ମନରେ ଗୋଟିଏ ଦୁଃଖ ରହିଥିଲା ଯେ ବିବାହର ବହୁବର୍ଷ ବିତିଯାଇଥିଲେ ହେଁ ସେ ସନ୍ତାନସୁଖ ଲାଭ କରିନଥିଲେ । ଏଥିନିମିତ୍ତ ସେ ଅନେକ ଚିକିତ୍ସକ, ସାଧୁସନ୍ଥ ତଥା ଦେବଦେବୀଙ୍କ ଶରଣାପନ୍ନ ହୋଇଥିଲେ । ରାଜାଙ୍କର ଏହି ଦୁର୍ଦ୍ଦିନରେ ଅନେକ ଖଳବ୍ୟକ୍ତି ତାଙ୍କୁ ଗାଦିଚ୍ୟୁତ କରିବାର ମସୁଧା କରିଥିଲେ ଓ ଜୀବନରେ ମାରିଦେବାକୁ ଷଡ଼ଯନ୍ତ୍ର କରିଥିଲେ, ଯାହାକି ପରବର୍ତ୍ତୀ ଅଧ୍ୟାୟ ମାନଙ୍କରେ ପର୍ଯ୍ୟାୟକ୍ରମେ ଆଲୋଚନା ହେବ ।



# ଢେଙ୍କାନାଳରେ ପ୍ରଜା ଆନ୍ଦୋଳନ

ରାଜାଙ୍କର ପ୍ରତାପ ଥିଲେ ସ୍କାଉଟ୍ ପ୍ରିୟ । ସେ ଥିଲେ ରାଜ୍ୟର ମୁଖ୍ୟସ୍କାଉଟ୍ । ୧୯୩୭ରେ ହଲାଣ୍ଡରେ ବିଶ୍ୱଜାମ୍ବୋରୀ ଅନୁଷ୍ଠିତ ହେଲା । ଏହି ବିଶ୍ୱଜାମ୍ବୋରୀରେ ଢେଙ୍କାନାଳ ସ୍କାଉଟ୍ ଦଳକୁ ନେଇ ରାଜାସାହେବ ହଲାଣ୍ଡଯାତ୍ରା କଲେ । ସାଥୀରେ ସ୍କାଉଟ୍‌ମାନଙ୍କ ବ୍ୟତୀତ ରାଣୀସାହେବା ରାଜ୍ୟର ଚିଫ୍ ଗାର୍ଡ଼େନ ଭାବରେ ଯାତ୍ରା କରିଥିଲେ । ରାଜାସାହେବ ଓ ରାଣୀସାହେବଙ୍କ ସହ ଢେଙ୍କାନାଳ ସ୍କାଉଟ୍‌ଦଳ ହଲାଣ୍ଡଠାରେ ବିଶ୍ୱଜାମ୍ବୋରୀରେ କୃତୀତ୍ୱ ପ୍ରଦର୍ଶନ କରି ଉଚ୍ଚ, ପ୍ରଶଂସିତ ହୋଇଥିଲେ । ରାଜାସାହେବ ଓ ରାଣୀସାହେବଙ୍କୁ ଲର୍ଡ଼ ବେଡ଼ନ ପାଉଲ ଏଥିନିମିତ୍ତ ଭୂତ୍ୟସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ବିଶ୍ୱ ଜାମ୍ବୋରୀ ସରିବାପରେ ସ୍କାଉଟ୍‌ଦଳ ଢେଙ୍କାନାଳ ଫେରିଆସିଲେ । କିନ୍ତୁ ରାଜା ଓ ରାଣୀ କେତେକ ଅନୁଚରଙ୍କ ସହ ପଶ୍ଚିମ ଇଉରୋପ ଓ ଆମେରିକା ପରିଭ୍ରମଣରେ ଗଲେ ।

ରାଜାଙ୍କର ଦୀର୍ଘଦିନ ଅନୁପସ୍ଥିତିରେ ଢେଙ୍କାନାଳରେ ଏକ ବିଷମ ପରିସ୍ଥିତି ସୃଷ୍ଟି ହୋଇଥିଲା । ୧୯୨୪ରୁ ରାଜାଙ୍କର ଶୁଭବିବାହ ହୋଇଥିଲେ ହେଁ ୧୯୩୭ ପର୍ଯ୍ୟନ୍ତ ସେ ନିଃସନ୍ତାନ ଥିଲେ । ଦୀର୍ଘ ୧୪ ବର୍ଷ ନିଃସନ୍ତାନ ରହିବାପରେ ଲୋକବିଶ୍ୱାସ ସୃଷ୍ଟି ହୋଇଥିଲା ଯେ ''ଆଉ ରାଜାଙ୍କର ପିଲାଛୁଆ ହେବନି ।'' କିନ୍ତୁ ରାଣୀ ରତ୍ନପ୍ରଭା ଆତ୍ମବିଶ୍ୱାସ ହରାଇନଥିଲେ । ବାଲ୍ୟକାଳରୁ ଦେବବ୍ରାହ୍ମଣ ସାଧୁସନ୍ଥ ଭକ୍ତିକୁ ଆପଣେଇ ନେଇଥିବା ରାଣୀସାହେବା ପରମାତ୍ମାଙ୍କ ଉପରେ ଅଟଳ ବିଶ୍ୱାସ ରଖିଥିଲେ । ବିଡ଼ମ୍ବନାରେ ବିଷୟ ହେଉଛି ଏହି ଦୁର୍ଦ୍ଦିନରେ ରାଜାଙ୍କୁ ଗାଡ଼ିଚ୍ୟୁତ କରାଇବାର ଚକ୍ରାନ୍ତ ଚାଲିଥିଲା । କୁଚକ୍ରୀଗୋଷ୍ଠୀ ରାଜାଙ୍କ ଦୀର୍ଘ ଅନୁପସ୍ଥିତିର ସୁଯୋଗ ନେଇ ରାଜାଙ୍କୁ ବଦ୍‌ନାମ କରିବା ଉଦ୍ଦେଶ୍ୟରେ କେତେକ ଜନବିରୋଧୀ କାର୍ଯ୍ୟ କଲେ । ରାଜାଙ୍କ ଅନୁପସ୍ଥିତିରେ ପଟ୍ଟାୟତ ନୃସିଂହ ପ୍ରତାପ ସିଂହଦେଓ ହିଁ ଥିଲେ ରାଜ୍ୟର ସର୍ବେସର୍ବା । ସେ ଥିଲେ ରାଜ୍ୟର ପ୍ରଧାନମନ୍ତ୍ରୀ । କେତେକ ରାଜକର୍ମଚାରୀ ତାଙ୍କୁ ମଧ୍ୟ ବିଭ୍ରାନ୍ତ କରିଦେଲେ । ପଟ୍ଟାୟତ ଉଚ୍ଚଶିକ୍ଷିତ ହେଲେହେଁ କ୍ଷମତାର ମୋହରେ ଧୂର୍ତ୍ତ କର୍ମଚାରୀଙ୍କର ଶରବ୍ୟ ହୋଇଥିଲେ । ପଟ୍ଟାୟତ ନିଜରହିବା ନିମିତ୍ତ ଢେଙ୍କାନାଳ ସହର

ଉତ୍ତରଦିଗରେ ଥିବା ଏକ ପାହାଡ଼ ଉପରେ ଗୋଟିଏ ନୂତନ ରାଜପ୍ରାସାଦ ନିର୍ମାଣ କଲେ । ଏହାର ନାମ ଥିଲା ଯତନ ନଗର । ଅନେ୍ୱଶତ ପ୍ରକୋଷ୍ଠ ବିଶିଷ୍ଟ ଏହି ତ୍ରିତଳରାଜପ୍ରାସାଦ ନିର୍ମାଣ ନିମିତ୍ତ ପ୍ରଜାମାନଙ୍କୁ ଅକଥନୀୟ ଯନ୍ତ୍ରଣା ଦିଆଯାଇଥିଲା । ପ୍ରଜାବର୍ଗ ଚୁଡ଼ାଚଉଳ ଧରି ଗାଁମାନଙ୍କରୁ ଆସି ହାତରେ ରୋଷେଇ କରି ଖାଇ ବେଠି ଖଟୁଥିଲେ । ସେଥିରେ କାମରେ ତୃଟି ହେଲେ ରାଜକର୍ମଚାରୀଗଣ ନିସ୍ଥୁକ ପ୍ରହାର କରୁଥିଲେ । ଲୋକଙ୍କୁ ଏହା ବାଧିଥିଲା । ଯାହା ଫଳରେ ସମଗ୍ର ଢେଙ୍କାନାଳ ରାଜ୍ୟରେ ପ୍ରଜା ଅସନ୍ତୋଷ ସୃଷ୍ଟିହେଲା । ପ୍ରଜାମାନଙ୍କ ଆପତ୍ତି ଶୁଣିବାକୁ କେହି ନଥିଲେ । ରାଜା ବିଦେଶରେ ଏବଂ ଅସାଧୁ ରାଜକର୍ମଚାରୀମାନେ ପ୍ରଜାଙ୍କ ଉପରେ ଅତ୍ୟାଚାର କରୁଛନ୍ତି । ପ୍ରାଥମିକ ଅବସ୍ଥାରେ ଢେଙ୍କାନାଳର ବିଭିନ୍ନ ଅଞ୍ଚଳରୁ ବିରୋଧ ସ୍ୱର ଉଠିଥିଲେ ହେଁ ସେ ସ୍ୱର ପ୍ରଶାସକଙ୍କୁ ଶୁଭିନଥିଲା ।

ସେତେବେଳକୁ ଗାନ୍ଧିଜୀ ଦୁଇଥର ଓଡ଼ିଶା ପରିଭ୍ରମଣ କଲେଣି । ପରିଣାମ ସ୍ୱରୂପ ଓଡ଼ିଶାରେ ଅନେକ ଗାନ୍ଧିବାଦୀ ନେତା ସୃଷ୍ଟି ହେଲେଣି । ୧୯୩୧ ମସିହାରେ କଟକରେ ଓଡ଼ିଶା ରାଜ୍ୟ ପ୍ରଜାସଂଘ (Orissa state people conference) ଗଠିତ ହୋଇଥିଲା । ଏହାର ଦ୍ୱିତୀୟ ଅଧିବେଶନ କଟକଠାରେ ୧୯୩୭ ଜୁନ୍ ୨୩ ଓ ୨୪ ତାରିଖରେ ଡକ୍ଟର ପଟ୍ଟାଭି ସୀତାରାମାୟାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସୌଭାଗ୍ୟକ୍ରମେ ଢେଙ୍କାନାଳର ବୈଜ୍ଞାନିକ ସାରଙ୍ଗଧରଦାସ ଏହାର ସଂପାଦକ ରହିଲେ ଏବଂ ଢେଙ୍କାନାଳର ଆଇନଜ୍ଞ ହରମୋହନ ପଟ୍ଟନାୟକ ଏହି ସଂଘର କାର୍ଯ୍ୟକାରିଣୀ ସଦସ୍ୟ ଥିଲେ । ୧୯୩୮ ଜୁନ୍‌ରେ ପ୍ରଜାମାନଙ୍କ ଦାବୀଆପତ୍ତି ତଦନ୍ତ ନିମିତ୍ତ ଅନୁସନ୍ଧାନ କମିଟି ଗଠନ ହେଲା । ଏହି କମିଟିରେ ହରେକୃଷ୍ଣ ମହତାବ ଚେୟାରମ୍ୟାନ୍ ଏବଂ ବଳବନ୍ତରାୟ ମେହେଟ୍ଟା ତଥା ଲାଲମୋହନ ପଟ୍ଟନାୟକ ସଦସ୍ୟ ରହିଥିଲେ । କମିଟି ଅନୁଗୁଳଠାରେ ପ୍ରଜାଙ୍କ ଆପତ୍ତି ଶୁଣାଣି କରୁଥିବା ସମୟରେ ବୀରଭୂମି ପର୍ଜଙ୍ଗର କେତେକ ପ୍ରଜାନେତା ୧୯୩୮ ଜୁନ୍ ୨୭ ତାରିଖରେ ଏକ ପ୍ରଜାମଣ୍ଡଳ ଗଠନ କଲେ। ଏହାର ସଭାପତି ଥିଲେ ପରଜଙ୍ଗଥାନା ମାଣିକ୍ୟମରା ଗ୍ରାମର ଆଉତ୍ରାଣ ପାତ୍ର, ଦୁଇଜଣ ଉପସଭାପତି ଥିଲେ ଚାନ୍ଦପୁରର କୃତିବାସ ସୁବୁଦ୍ଧି ଓ କୁଆଁଳୋର ଶ୍ୟାମସୁନ୍ଦର ସାହୁ ଏବଂ ଆମ୍ବପଳାସ ଗ୍ରାମର ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଏହାର ସଂପାଦକ ରହିଥିଲେ । ଏହି ପ୍ରଜାମଣ୍ଡଳର କୋଷାଧ୍ୟକ୍ଷ ଥିଲେ

ଝିଲ୍ଲୀଗ୍ରାମର ତ୍ରିଲୋଚନ ପ୍ରଧାନ । କ୍ରମେ ଗ୍ରାମେ ଗ୍ରାମେ ପ୍ରଜାମଣ୍ଡଳର ମିଟିଂ ବସି ରାଜାଦେଶ ତଥା ପାନ ଉପରେ ଥିବା କଟକଣା ବିରୁଦ୍ଧରେ ଜନମତ ସୃଷ୍ଟି କରାଗଲା । ପ୍ରଜାମଣ୍ଡଳ ଏଥିରେ ସଫଳ ମଧହେଲେ । ଗୌରବର କଥା, ହରମୋହନ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ, ବୈଷ୍ଣବ ପଟ୍ଟନାୟକ, ମହେଶ ଚନ୍ଦ୍ର ସୁବାହୁ ସିଂହ, ଶ୍ରୀକାନ୍ତ ରାଉତ, ସତ୍ୟବାଦୀ ମିଶ୍ର, ଲାଲୁ ମହମଦ, କାହ୍ନୁଚରଣକର, କାହ୍ନୁଚରଣ ପତି, ମହନ୍ତ ପ୍ରଧାନ, ନରୋତ୍ତମ ଦାସ ପ୍ରଭୃତି ତୁଙ୍ଗ ନେତୃବୃନ୍ଦ ପ୍ରଜାମଣ୍ଡଳ କାର୍ଯ୍ୟରୁ ତ୍ୱରାନ୍ୱିତ କରାଇ ଗ୍ରାମେ ଗ୍ରାମେ ବୁଲି ବିପୁଳ ପ୍ରଜାସମର୍ଥନ ଲାଭ କଲେ । ସମଗ୍ର ଢେଙ୍କାନାଳ ରାଜ୍ୟରେ ରାଜଶାସନ ବିରୁଦ୍ଧରେ ସ୍ଲୋଗାନ୍ ସୃଷ୍ଟି ହେଲା । ୧୯୩୮ ଅଗଷ୍ଟ ୧୦ ତାରିଖରେ କୁଆଁଲୋଠାରେ ପ୍ରଜାମଣ୍ଡଳ ପୁନର୍ଗଠନ କରାଗଲା । ପୁନର୍ଗଠନରେ ହରମୋହନ ପଟ୍ଟନାୟକ ସଭାପତି, ଲକ୍ଷ୍ମୀଧର ସାହୁ ସଂପାଦକ, ବୈଷ୍ଣବ ପଟ୍ଟନାୟକ ଓ ଗତିକୃଷ୍ଣ ଭଞ୍ଜ କାର୍ଯ୍ୟକାରୀ ସଂପାଦନ, ଭଜମନ ସାହୁ କୋଷାଧକ୍ଷ, ଶ୍ରୀକାନ୍ତ ରାଉତ ସ୍ୱେଚ୍ଛାବାହିନୀ ମୁଖ୍ୟ, ସତ୍ୟବାଦୀ ମିଶ୍ର ପ୍ରଚାରକ ଭାବରେ କାର୍ଯ୍ୟକଲେ । ଦରବାର ପ୍ରଶାସନ ପ୍ରଜାମଣ୍ଡଳ ବେଆଇନ୍ ଘୋଷଣା କରିବାରୁ ରାଜ୍ୟବାହାରେ ଜେନାପୁରଠାରେ ୧୯୩୮ ସେପ୍ଟେମ୍ବର ୨ ତାରିଖରେ ପ୍ରଜାମଣ୍ଡଳ ଅଧିବେଶନ ଅନୁଷ୍ଠିତ ହେଲା । ଗଡ଼ଜାତଗାନ୍ଧୀ ତଥା ତତ୍କାଳୀନ ଓଡ଼ିଶା ରାଜ୍ୟ ପ୍ରଜାସଂଘର ସଂପାଦକ ସାରଙ୍ଗ ଧରଦାସ ଏହି ଅଧିବେଶନରେ ସଭାପତିତ୍ୱ କରିଥିଲେ । ଏହି ଅଧିବେଶନରେ ରାଜଶାସନର ଅତ୍ୟାଚାର, ବେଠି, ବେଗାରି, ରସଦ, ମାଗଣଓ ଭେଟି ପ୍ରଭୃତିରୁ ବନ୍ଦ କରାଗଲା । କଟକରୁ ଅନେକ ନେତା ଏହି ଅଧିବେଶନରେ ଯୋଗଦେଇ ପ୍ରଜାଙ୍କୁ ଉଦ୍‌ବୋଧନ ଦେଇଥିଲେ । ଏହିଅଧିବେଶନର ତିନିଦିନ ପରେ ସେପ୍ଟେମ୍ବର ୬ ତାରିଖରେ ସୁନିଆଁ ପଡ଼ିଲା ଏବଂ ଅଧିବେଶନର ନିଷ୍ପତ୍ତି ଅନୁଯାୟୀ ସୁନିଆଁଭେଟି ବନ୍ଦ କରିଦିଆଗଲା ।

ପ୍ରଜାମଣ୍ଡଳ କର୍ମୀମାନେ ଗ୍ରାମେ ଗ୍ରାମେ ବୁଲି ବାର୍ତ୍ତା ପ୍ରଚାରକଲେ । ଶ୍ରୀକାନ୍ତ ରାଉତ, ସତ୍ୟବାଦୀ ମିଶ୍ର, ଲାଲୁ ମହମ୍ମଦ ପ୍ରଭୃତି କେତେକ ଯୁବନେତା କଟକରୁ କୃଷକ ଓ ରଣଭେରୀ ଆଣି ଢେଙ୍କାନାଳ ରାଜ୍ୟର ପ୍ରଜାମାନଙ୍କୁ ବିଦରଣ କରୁଥିଲେ । ସେମାନଙ୍କ ଗିରଫ କରାଯିବାକୁ ମସୁଧା ହେବାରୁ ସେମାନେ କଟକରୁ ରେଳଯୋଗେ ଜେନାପୁର ଆସି ସେଠାରୁ ରାତ୍ରିକାଳରେ ଡଙ୍ଗାରେ ଯାଇ ଗ୍ରାମେ ଗ୍ରାମେ କୃଷକ ଓ ରଣଭେରୀ ବାଛିଲେ । ଯେଉଁ ନାଉରୀମାନେ

ସେମାନଙ୍କୁ ବ୍ରାହ୍ମଣୀନଦୀରେ ଡଙ୍ଗାରେ ନେବା ଆଣିବା କରୁଥିଲେ ସେମାନେ ଥିଲେ ଗୋରଡ଼ାପାଳ ଗ୍ରାମର ସତ୍ୟାନନ୍ଦ ମଳିକ, ବନମାଳୀ ଦେହୁରୀ, ନାଥମାଝୀ ଓ କଣ୍ଠକବି ପ୍ରଭୃତି । ଏତଦ୍‌ଭିନ୍ନ ଢେଙ୍କାନାଳ ରାଜ୍ୟର ମୁଖ୍ୟସ୍ଥାନ ଗୁବନ, ମାର୍ଥାପୁର, ପିଙ୍ଗୁଆ, ସଡ଼ଙ୍ଗୀ, ଗାଁଦିଆ ବାଲିପଡ଼ା, ବାଲିଗୋରଡ଼, ପରଜଙ୍ଗ, ମଙ୍ଗଳପୁର, ତୁମୁସିଂହା ପ୍ରଭୃତି ଗ୍ରାମାମାନଙ୍କରେ ପ୍ରଜାମଣ୍ଡଳର ସଭା ଅନୁଷ୍ଠିତ ହୋଇ ଜନସଚେତନତା ବ୍ୟାପକ କରାଯାଇଥିଲା ସମଗ୍ର ରାଜ୍ୟରେ ବିଦ୍ରୋହର ଅଗ୍ନି ଜଳି ଉଠିଲା, ସର୍ବତ୍ର ରାଜାଦେଶକୁ ଅମାନ୍ୟ କରାଗଲା, ରାଜକର୍ମଚାରୀଙ୍କୁ ବୟକଟ୍ କରାଗଲା । ଏପରିକି ଗ୍ରାମମାନଙ୍କରେ ଯେଉଁମାନେ ରାଜାଙ୍କ ପକ୍ଷ ନେଲେ ସେମାନଙ୍କୁ ବୟକଟ୍ କରାଗଲା । ଯେଉଁ ସର୍ବରାକାରମାନେ ରାଜାଙ୍କ ସପକ୍ଷରେ କାର୍ଯ୍ୟକଲେ ସେମାନଙ୍କୁ ପ୍ରଜାମାନେ ଖଜଣା ଦେଲେନାହିଁ ଓ ସେମାନ୍ଙ୍କର ଆଦେଶ ମାନିଲେ ନାହିଁ । ଫଳରେ ସମଗ୍ର ରାଜ୍ୟରେ ଅଚଳାବସ୍ଥା ସୃଷ୍ଟିହେଲା ।

ରାଜ୍ୟରେ ପ୍ରଜାଆନ୍ଦୋଳନର ଖବର ପାଇ ରାଜା ଶଙ୍କର ପ୍ରତାପ ବିଦେଶରୁ ଫେରି ଆସିଲେ, ଆନ୍ଦୋଳନ ବନ୍ଦ କରିବା ନିମିତ୍ତ ସେ ବିଭିନ୍ନ କୌଶଳ ଅବଲମ୍ବନ କଲେ ହେଁ ତାହା ଫଳପ୍ରଦ ହେଲାନାହିଁ। ସେତେବେଳକୁ ଢେଙ୍କାନାଳ ସମେତ ନୀଳଗିରି, ତାଳଚେର, ରଣପୁର, ନୟାଗଡ଼ ପ୍ରଭୃତି ଆଠଦଶ ଗୋଟି ଗଡ଼ଜାତରେ ପ୍ରଜାଆନ୍ଦୋଳନ ବ୍ୟାପକ ରୂପଧାରଣ କରିସାରିଥିଲା । କଂଗ୍ରେସ ନେତୃବର୍ଗ ମଧ୍ୟ ପ୍ରଜାଆନ୍ଦୋଳନକୁ ପ୍ରୋତ୍ସାହନ ଦେଲେ । କୃଷକ ସମ୍ବାଦରେ ପ୍ରଜାଆନ୍ଦୋଳନ ଓ ରାଜଶାସନ ବିରୁଦ୍ଧରେ ସମ୍ବାଦମାନ ପ୍ରକାଶ ପାଉଥାଏ । ଗଡ଼ଜାତ ଗାନ୍ଧୀ ସାରଙ୍ଗଧର ଦାସ "ଲଣ୍ଡା ଦେହୁରୀ"ର ଛଦ୍ମ ନାମରେ ପ୍ରଜାଙ୍କ ଦୁଃଖଦୁର୍ଦ୍ଦଶା ଏହି ପତ୍ରିକାରେ ଲେଖୁଥିଲେ। ତାଙ୍କ ଲେଖାରେ ପ୍ରଜାବର୍ଗ ବିଶେଷ ପ୍ରଭାବିତ ହୋଇଥିଲେ । ଓଡ଼ିଶା ପ୍ରଦେଶ କଂଗ୍ରେସର ନେତୃବୃନ୍ଦଙ୍କ ସମର୍ଥନ ଲାଭ କରି ଢେଙ୍କାନାଳରେ ପ୍ରଜା ଆନ୍ଦୋଳନ ପ୍ରବଳରୁ ପ୍ରବଳତର ହେଲା । ରାଜା ଶଙ୍କର ପ୍ରତାପ ଅନ୍ୟୋନ୍ୟପାୟ ହୋଇ ପ୍ରଜାମଣ୍ଡଳ ନେତା ହରମୋହନ ପଟ୍ଟନାୟକ ଓ ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କୁ ଆଲୋଚନା ନିମିତ୍ତ ଦରବାରକୁ ଡକାଇ ପଠାଇଥିଲେ । କିନ୍ତୁ ଏହି ଆଲୋଚନା ଫଳପ୍ରଦ ହେଲାନାହିଁ । ଇତ୍ୟବସରେ ବ୍ରଜକିଶୋର ଧଳଙ୍କ ନେତୃତ୍ୱରେ ଛଦେଶ ଅଞ୍ଚଳରେ, ଶ୍ରୀକାନ୍ତ ରାଉତଙ୍କ ନେତୃତ୍ୱରେ ମୋଟଙ୍ଗା ଅଞ୍ଚଳରେ, ମହେଶ ଚନ୍ଦ୍ର

ସୁବାହୁ ସିଂହଙ୍କ ନେତୃତ୍ୱରେ ପରଜଙ୍ଗ ଅଞ୍ଚଳରେ, ନରୋତ୍ତମ ଦାସଙ୍କ ନେତୃତ୍ୱରେ ଯୋରନ୍ଦା ଅଞ୍ଚଳରେ, ସତ୍ୟବାଦୀ ମିଶ୍ରଙ୍କ ନେତୃତ୍ୱରେ ମାର୍ଥାପୁର ଅଞ୍ଚଳରେ, ମହନ୍ତ ପ୍ରଧାନଙ୍କ ନେତୃତ୍ୱରେ ଭୁବନ ଅଞ୍ଚଳରେ ଓ କୃତ୍ତିବାସ ପ୍ରଧାନଙ୍କ ନେତୃତ୍ୱରେ ନିହଲପ୍ରସାଦ ଅଞ୍ଚଳରେ ପ୍ରଜାଆନ୍ଦୋଳନ ତେଜି ଉଠିଥିଲା । ବାଧହୋଇ ରାଜାସାହେବ Political Agent ଙ୍କ ସହିତ ଆଲୋଚନା ପୂର୍ବକ ପ୍ରତିକାର ଓ ପରାମର୍ଶ ଲୋଡ଼ିଲେ । ଇଂରେଜ ସରକାର ଢେଙ୍କାନାଳ ସହିତ ସମସ୍ତ ଗଡ଼ଜାତକୁ ଫୌଜ ପଠାଇଲେ । ଏକଶହ ଗୋରା ଫୌଜଙ୍କ ସହିତ ଇଂରେଜ ବାହିନୀର K.O.S.B ଗୁର୍ଖା ପୋଲିସ୍ ମଧ୍ୟ ଢେଙ୍କାନାଳକୁ ଆସିଥିଲେ ।

୧୯୩୮ ମସିହା ସେପ୍ଟେମ୍ବର ୧୧ ତାରିଖରେ ହଠାତ୍ ପ୍ରଜାମଣ୍ଡଳର ସଭାପତି ହରମୋହନ ପଟ୍ଟନାୟକ, ଉପସଭାପତି ମହେଶଚନ୍ଦ୍ର ସୁବାହୁସିଂହ, ସଂପାଦନ ଲକ୍ଷ୍ମୀଧର ସାହୁ ଏବଂ ଦଶଜଣ ତୁଙ୍ଗନେତା ଯଥା ଶ୍ରୀକାନ୍ତ ରାଉତ, ସତ୍ୟବାଦୀ ମିଶ୍ର, ନିରାକାର ପଟ୍ଟନାୟକ, ଭଜମନ ସାହୁ, ନାଲୁ ମହମଦ, କାଶୀନାଥ ମିଶ୍ର, ରବି ପଟ୍ଟନାୟକ, ପ୍ରାଣବନ୍ଧୁ ଦାସ ପ୍ରଭୃତି ଢେଙ୍କାନାଳଗଡ଼ସ୍ଥିତ ପ୍ରଜାମଣ୍ଡଳ କାର୍ଯ୍ୟାଳୟରୁ ଗିରଫ ହେଲେ । ଏହାର ପ୍ରତିବାଦରେ ହଜାର ହଜାର ପ୍ରଜା ଢେଙ୍କାନାଳ ଜେଲ ଘେରାଉକରି ନେତୃବର୍ଗଙ୍କ ଖଲାସ ଦାବୀକଲେ । ଫୋର୍ସବାହିନୀ ହାତୀ ଓ ଘୋଡ଼ାରେ ଚଢ଼ି ସେମାନଙ୍କୁ ମାଡ଼ଦେଇ ଘଉଡ଼ାଇବାକୁ ଚେଷ୍ଟା କଲେ । ଅଧିକନ୍ତୁ ତତ୍‌ପରଦିନ ଅର୍ଥାତ୍ ସେପ୍ଟେମ୍ବର ୧୨ ତାରିଖରେ ପ୍ରାୟ ତିରିଶ ହଜାର ପ୍ରଜା ଅଳସୁଆ ହାଟଠାରେ ଏକତ୍ରିତ ହୋଇ ବିରାଟ ସାଧାରଣ ସଭା ଆରମ୍ଭ କଲେ। ଏହି ସଭାରେ ନେତାମାନଙ୍କ ଗିରଫ ପ୍ରତିବାଦରେ ଆଲୋଚନା ହେଲା । ପୋଲିସ୍ ଗୁଳିଚାଳନା କରିବାରୁ ଅନେକ ପ୍ରଜା ଖଣ୍ଡିଆ ଖାବରା ହେଲେ । ତିନିଥର ଗୁଳିଚାଳନା କରି ମଧ୍ୟ ପୋଲିସ୍ ପ୍ରଜାଙ୍କୁ ଘଉଡ଼ାଇବାକୁ ସକ୍ଷମ ହୋଇନଥିଲେ । ସମବେତ ପ୍ରଜା ମଧ୍ୟ ପୋଲିସ୍ ଉପରକୁ ଟେକା ପଥର ଫୋପାଡ଼ିଲେ । ପରିସ୍ଥିତି ଅଣାୟତ୍ତ ହେବାରୁ ରାଜାସାହେବ ସେହି ଦିନ ରାତିରେ ଗିରଫ ନେତାମାନଙ୍କୁ ଛାଡ଼ିଦେଲେ । ପ୍ରଜାମାନେ ୧୩ ତାରିଖ ଦିନ ସ୍ୱାଧୀନ ଦିବସ ପାଳନ କଲେ । ରାଜାମଧ୍ୟ ପ୍ରଜାମଣ୍ଡଳର କେତେକ ଦାବୀ ଗ୍ରହଣ କରିବାକୁ ସମ୍ମତି ପ୍ରଦାନ କଲେ ତଥା ପ୍ରଜାମଣ୍ଡଳ ରାଜାଙ୍କ ସହିତ ଆଲୋଚନା ନିମିତ୍ତ ରାଜିହେଲେ। ସାରଙ୍ଗଧର ଦାସ, ହରେକୃଷ୍ଣ ମହତାବ ଓ ମାଳତୀ ଚୌଧୁରୀ ଏଥିରେ ହସ୍ତକ୍ଷେପ କରିଥିଲେ ହେଁ ଆନ୍ଦୋଳନ ପ୍ରଶମିତ ହେଲାନାହିଁ ।

ସେପ୍ଟେମ୍ବର ୧୫ରେ ନିଜେ ପଲିଟିକାଲ ଏଜେଣ୍ଟ ଢେଙ୍କାନାଳରେ ଉପସ୍ଥିତ ହେଲେ । ତାଙ୍କ ସାଥୀରେ ଅନ୍ୟ ରାଜ୍ୟର ଫୋର୍ସ ମଧ୍ୟ ଆସିଥିଲେ। ତତ୍‌ପରେ ପ୍ରଜାମାନଙ୍କ ଉପରେ ଦମନଲୀଳା ଆରମ୍ଭ ହେଲା। ପୋଲିସ୍ ବାହିନୀ ଘରଘର ବୁଲି ନେତାମାନଙ୍କୁ ଗିରଫ କଲେ । ମହିଳା ଓ ଶିଶୁମାନେ ମଧ୍ୟ ପୋଲିସ୍ ଅତ୍ୟାଚାରରୁବାଦ୍ ଯାଇନଥିଲେ। ସେପ୍ଟେମ୍ବର ୨୨ରେ ପ୍ରଜାମଣ୍ଡଳକୁ ଅସିଦ୍ଧ ଘୋଷଣା କରାଗଲା । ଶହ ଶହ ପ୍ରଜାମଣ୍ଡଳ କର୍ମୀ ଗିରଫ ହେଲେ। ଗିରଫ ନେତାମାନଙ୍କୁ ରଖିବାକୁ ଜେଲରେ ସ୍ଥାନାଭାବ ହେଲା । ଏଥିରେ ଉତ୍‌କ୍ଷିପ୍ତ ହୋଇ ପ୍ରଜାମଣ୍ଡଳକର୍ମୀ ଦୀର୍ଘକାଳ ଆନ୍ଦୋଳନ ନିମିତ୍ତ ଶପଥ ନେଲେ । ଏହି ଶପଥସଭା କମଗରା ଗ୍ରାମର ବ୍ରାହ୍ମଣୀକୂଳରେ ଅନୁଷ୍ଠିତ ହୋଇଥିଲା । ପରେ ପରେ ଢେଙ୍କାନାଳଗଡ଼ରେ ମଧ୍ୟ ସଭା ଅନୁଷ୍ଠିତ ହେଲା । ଏହି ସଭାରେ ନବକୃଷ୍ଣ ଚୌଧୁରୀ,ମାଳତୀ ଚୌଧୁରୀ, ରବି ଘୋଷ, ସାରଙ୍ଗଧର ଦାସ ଓ ଭଗବତୀ ପାଣିଗ୍ରାହୀ ଉଦ୍‌ବୋଧନ ଦେଇଥିଲେ । ଏନ୍ ଆର,ସ୍ୱାମୀ ଓ ରାଧାନାଥ ରଥ ପ୍ରଭୃତି ସାମ୍ବାଦିକ ମଧ୍ୟ ଯୋଗଦେଇ ସମ୍ବାଦ ପ୍ରକାଶ କରିଥିଲେ । ଏହି ସଭାରେ ଅହିଂସା ଆନ୍ଦୋଳନ ଜାରୀ ରଖିବାକୁ ନିଷ୍ପତ୍ତି ନିଆଗଲା ।

ପଲିଟିକାଲ୍ ଏଜେଣ୍ଟଙ୍କ ନିଷ୍ପତ୍ତିକ୍ରମେ ପୋଲିସ୍ ବାହିନୀ କେତେଗୋଟି ଦଳରେ ବିଭକ୍ତ ହୋଇ ଢେଙ୍କାନାଳ ରାଜ୍ୟର ବିଭିନ୍ନ ଅଞ୍ଚଳକୁ ବିଦ୍ରୋହ ଦମନ ନିମିତ୍ତ ପ୍ରେରିତ ହେଲେ । ତତ୍‌ପୂର୍ବରୁ ପ୍ରଜାମଣ୍ଡଳ ନିଷ୍ପତ୍ତିକ୍ରମେ ପ୍ରଜାମାନେ ଘରଦ୍ୱାରଛାଡ଼ି ପରିବାର ସହିତ ଅନୁଗୁଳ, ସୁକିନ୍ଦା, କେନ୍ଦୁଝର ଓ ମୋଗଲବନ୍ଦୀ ଅଞ୍ଚଳକୁ ଚାଲିଗଲେ । ଏହାକୁ ''ହିଜରାତ୍'' କୁହାଗଲା । କର୍ମୀମାନେ ଅନୁଗୁଳ ଓ ଜେନାପୁର ନିକଟ କଲାଣ୍ଡଠାରେ ଶିବିର ପକାଇ ଆଲୋଚନା ଓ ଆନ୍ଦୋଳନାତ୍ମକ ପନ୍ଥା ସ୍ଥିର କରୁଥିଲେ । ଶିବିରର ନିଷ୍ପତ୍ତି ଅନୁଯାୟୀ କର୍ମୀମାନେ ପୋଲିସ୍ ଆଖିରେ ଧୂଳିଦେଇ କାର୍ଯ୍ୟକାରକ ହେଉଥିଲେ । ୧୯୩୮ ଅକ୍ଟୋବର ଆଠ ତାରିଖରେ ପୋଲିସ୍‌ବାହିନୀ ମାର୍ଥାପୁର ଗ୍ରାମଠାରେ ପହଞ୍ଚି ସତ୍ୟବାଦୀ ମିଶ୍ରଙ୍କୁ ଖୋଜିଲେ । କିନ୍ତୁ ସେତେବେଳକୁ ସତ୍ୟବାଦୀ ମିଶ୍ର ଗ୍ରାମରେ ନଥିଲେ ଓ ତାଙ୍କ ପରିବାର ସୁକିନ୍ଦାରେ ଯାଇ ଆତ୍ମଗୋପନ କରିଥିଲେ। ଓଢ଼ଣା ଗ୍ରାମଠାରେ ସତ୍ୟବାଦୀ ମିଶ୍ରଙ୍କର ଗଚ୍ଛିତ ଥିବା ପ୍ରାୟ ଏକ ଲକ୍ଷ ଟଙ୍କାର କାଠରେ ପୋଲିସ୍‌ବାହିନୀ ଅଗ୍ନିସଂଯୋଗ କରିଦେଲେ । ହଠାତ୍ ପୋଲିସ୍ ବାହିନୀ ଖବର ପାଇଲେ ଯେ ଘନଶ୍ୟାମ ଦାସଙ୍କ ଘରେ ସତ୍ୟବାଦୀ ମିଶ୍ର ଲୁଚିଛନ୍ତି। ତାଙ୍କୁ

ଖୋଜିବାକୁ ଯାଇ ଗୋରାଫଉଜ୍ ଘନଶ୍ୟାମ ଦାଶଙ୍କ ଗୋଟିଏ ଦାମୁଡ଼ିଠାରୁ ନାତ ଖାଇଲେ । ସଙ୍ଗେ ସଙ୍ଗେ ଫୋର୍ସମାନେ ସେହି ଦାମୁଡ଼ିଟିକୁ ଗୁଳିକରି ମାରିଦେଲେ । ସେହିଦିନ ରାତି ପୋଲିସ୍‌ଫୋର୍ସ ମାର୍ଥାପୁରଠାରେ ଅବସ୍ଥାନ କଲେ । ତତ୍‌ପରଦିନ ଭୁବନ ଅଭିମୁଖେ ପ୍ରସ୍ଥାନ କଲେ । ଅକ୍ଟୋବର ୧୦ ତାରିଖ ଦିନ ପୋଲିସ୍ ବାହିନୀ ଭୁବନରେ ପ୍ରଜାମାନଙ୍କ ଉପରେ ଅକଥନୀୟ ଯନ୍ତ୍ରଣା ଆରମ୍ଭ କଲେ । ସେମାନେ ପୁରୁଷ, ସ୍ତ୍ରୀ, ପିଲା ସମସ୍ତଙ୍କୁ ମାଡ଼ଦେଇ କେତେଜଣଙ୍କୁ ଗିରଫ କଲେ । ଭୁବନ ଗ୍ରାମବାସୀ ପ୍ରତିବାଦ କରିବାରୁ ପୋଲିସ୍ ଗୁଳିଚାଳନା କଲେ । ଏହି ଗୁଳିରେ ଗୁରିନାଏକ ସହୀଦ ହେଲେ ତଥା ରଘୁନାଏକ ଗୁରୁତର ଆହତ ହେଲେ । ସନ୍ଧ୍ୟା ସମୟରୁ ଶହ ଶହ ପ୍ରଜା ଭୁବନଥାନା ଘେରାଉକରି ରଖିଲେ । ଫଳରେ ପୋଲିସ ବାହିନୀ ଆତଙ୍କିତ ହୋଇପଡ଼ିଲେ । ସେହି ରାତିରେ ପୋଲିସ୍‌ବାହିନୀ ଗିରଫ କରିଥିବା ଲୋକଙ୍କୁଧରି ନୀଳକଣ୍ଠପୁର ଘାଟ ଆଡ଼େ ପଳାୟନ କଲେ । ପ୍ରଜାମାନେ ମଧ୍ୟ ସେମାନଙ୍କର ପଶ୍ଚାତ୍‌ଧାବନ କରି ଟେକାପଥର ଫୋପାଡ଼ିଲେ । ପ୍ରାଣଭୟରେ ରାତି ୪ଟା ସମୟରେ ପୋଲିସ୍‌ବାହିନୀ ନୀଳକଣ୍ଠପୁର ଘାଟରେ ପହଞ୍ଚି ସେମାନଙ୍କୁ ତୁରନ୍ତ ପାରକରିଦେବାକୁ ନାଉରିଆଙ୍କୁ ଆଦେଶ ଦେଲେ । କିନ୍ତୁ ନାଉରିଆମାନେ ପୋଲିସ୍‌ମାନଙ୍କ କଥା ଶୁଣିଲେ ନାହିଁ । ମାଜିଷ୍ଟ୍ରେଟ୍ ବିନୟଘୋଷଙ୍କ ଆଦେଶରେ ପୋଲିସ୍ ଗୁଳିଚାଳନା କଲେ । ଏଥିରେ ବାଜିରାଉତ, ହୃଷୀପ୍ରଧାନ, ନଟମଳିକ ଓ ଲକ୍ଷ୍ମଣ ମଳିକ ମହୀଦ ହେଲେ । ଏତଦ୍‌ଭିନ୍ନ ଅନ୍ୟ ଆଠଜଣ ମଧ୍ୟ ଗୁଳିମାଡ଼ଖାଇ ରକ୍ତାକ୍ତ ହୋଇଥିଲେ । ନୀଳକଣ୍ଠପୁର ବ୍ରାହ୍ମଣୀଘାଟ ସଂଗ୍ରାମୀମାନଙ୍କ ରକ୍ତରେ ରଞ୍ଜିତ ହୋଇଗଲା । ବାରବର୍ଷର ବାଳକ ବାଜିରାଉତର ମୃତ୍ୟୁ ଅତ୍ୟନ୍ତ ଶୋକାକୁଳ ପରିସ୍ଥିତି ସୃଷ୍ଟିକଲା । ପ୍ରଜାମଣ୍ଡଳ ମାଡ଼ିଆସୁଥିବାର ଦେଖି ପୋଲିସ୍‌ବାହିନୀ ନିଜେ ଡଙ୍ଗାବାହି ନଦୀର ଅପରପାର୍ଶ୍ୱକୁ ପଳାୟନ କଲେ । ତତ୍‌ପରେ ରବିଘୋଷ, ମହନ୍ତ ପ୍ରଧାନ, କୃତିବାସ ପ୍ରଧାନ, ଶ୍ରୀକାନ୍ତ ରାଉତ ଓ ଫନୀପାଲ ପ୍ରଭୃତି କେତେକ ତୁଙ୍ଗନେତା ଶଗଡ଼ରେ ସହୀଦମାନଙ୍କ ଶବ ଓ ଆହତମାନଙ୍କୁ ନେଇ କଟକରେ ପହଞ୍ଚିଲେ । ଅକ୍ଟୋବର ୧୨ ତାରିଖରେ ଶବବ୍ୟବଚ୍ଛେଦ କରାଗଲା ତଥା ହଜାର ହଜାର ବ୍ୟକ୍ତି ବିରାଟ ଶୋଭାଯାତ୍ରାରେ ଶବଗୁଡ଼ିକ ନେଇ ଖାନନଗର ଶ୍ମଶାନରେ ଦାହ କଲେ । ଏହା ସମଗ୍ର ଭାରତରେ ଚହଳ ସୃଷ୍ଟି କଲା ।

ପୋଲିସ୍ ବାହିନୀର ଅନ୍ୟ ଗୋଟିଏ ଦଳ ମୋଟଙ୍ଗା ଅଞ୍ଚଳକୁ ଯାଇଥିଲେ । ସେମାନେ ଅକ୍ଟୋବର ୧୭ ତାରିଖରେ ବଳରାମ ପ୍ରସାଦ ଓ ମୃଦଙ୍ଗାପଲ୍ଲୀ ପ୍ରଭୃତି ଗ୍ରାମକୁ ଯାଇ ଲୋକମାନଙ୍କୁ ରାଜାଦେଶ ମାନିବାକୁ ପ୍ରବର୍ତ୍ତାଇଥିଲେ । କିନ୍ତୁ କୌଣସି ପ୍ରଜା ତାଙ୍କ କଥା ନଶୁଣି ପ୍ରତିବାଦ କରିବାରୁ ପୋଲିସ୍‌ମାନେ ନିର୍ମମ ଭାବରେ ଲାଠିଚାର୍ଜ କଲେ । ବିଦ୍ରୋହ ପ୍ରଶମିତ ନହେବାରୁ ଗୁଳିଚାଳନା ମଧ୍ୟ କଲେ । ଏହି ଗୁଳିଚାଳନାରେ ଛଅଜଣ ଆହତ ହୋଇଥିଲେ । ତତ୍‌ପରେ ଅକ୍ଟୋବର ୨୧ ତାରିଖରେ ପୋଲିସ୍‌ବାହିନୀ ତୁମୁସିଂହା ଓ ଶ୍ରୀମୂଳା ଗ୍ରାମରେ ଅତ୍ୟାଚାର କରିଥିଲେ । ପୋଲିସ୍ ପାଞ୍ଚଜଣ କର୍ମୀଙ୍କୁ ଗିରଫ କରିବାରୁ ଉତ୍ତେଜନା ସୃଷ୍ଟିହେଲା । ସଙ୍ଗେ ସଙ୍ଗେ ମଧ୍ୟ ଗୁଳିଚାଳନା ଆରମ୍ଭ ହେଲା । ଏଥିରେ ଦାସିଆ ସାହୁ, ନରହରି ତନ୍ତୀ ଓ ଶମ୍ଭୁନାଏକ ସହୀଦ ହୋଇଥିଲେ । ଏତଦ୍‌ଭିନ୍ନ ଦଶଜଣ ଏହିଁ ଗୁଳିଚାଳନାରେ ଆହତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ଦୀନାବେହେରା ଡାକ୍ତରଖାନାରେ ପ୍ରାଣ ହରାଇଲେ । ଏହାପରେ ପୋଲିସ୍‌ବାହିନୀ କୁଟୁମୁଣ୍ଡା ଗ୍ରାମରେ ଗୁଳିଚାଳନା କଲେ । ଏଥିରେ କାଶୀନାଏକ ଓ ଧୋବେଇ ନାଏବ ସହୀଦ ହେଲେ ଏବଂ ଅନ୍ୟ ଦୁଇଜଣ ଆହତ ହୋଇଥିଲେ । ଏହି ସମୟରେ ପୋଲିସ୍‌ବାହିନୀ ସମ୍ବାଦ ପାଇଲେ ଯେ କନ୍ଦରସିଂହା ଗ୍ରାମରେ ପ୍ରଜାମଣ୍ଡଳକର୍ମୀ ଏକତ୍ରିତ ହୋଇଛନ୍ତି । ତୁରନ୍ତ ମାଜିଷ୍ଟ୍ରେଟ୍ ଓ ପୋଲିସ୍ ସେହି ଗ୍ରାମ ଘେରାଉକଲେ । ପୋଲିସ୍‌ମାନେ ଗ୍ରାମବାସୀଙ୍କୁ ଆତ୍ମସମର୍ପଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ ହେଁ ସେମାନେ କର୍ଣ୍ଣପାତ କଲେ ନାହିଁ । ନଭେମ୍ବର ୧୧ ତାରିଖ ରାତିରେ ପଲିଟିକାଲ୍ ଏଜେଣ୍ଟଙ୍କ ନିର୍ଦ୍ଦେଶକ୍ରମେ ଏସ୍.ଡ଼ି.ଓ ଓ ଫୋର୍ସ କନ୍ଦରସିଂହା ଗ୍ରାମ ଉପରେ ଚଢ଼ଉକଲେ । ସେମାନେ କେତେଜଣଙ୍କୁ ଗିରଫ କରିବା ସହିତ ଲାଠିଚାର୍ଜ କଲେ । ଅବସ୍ଥା ଅଣାୟତ୍ତ ହେବାରୁ ଗୁଳିଚାଳନା କରାଗଲା । ଏବଂ ନାଥ ବିଶ୍ୱାଳ, କାଳିଆବିଶ୍ୱାଳ ଓ ପଦନ ବିଶ୍ୱାଳ ସହୀଦ ହୋଇଥିଲେ ।

ପ୍ରଜାଆନ୍ଦୋଳନ ବନ୍ଦ କରିବା ନିମିତ୍ତ ଦମନମୂଳକ ପଦକ୍ଷେପର ସୁଫଳ କମିଳିବାରୁ ରାଜାସାହେବ ପ୍ରଜାଙ୍କ ନିମିତ୍ତ କେତେକ ସୁବିଧା ସୁଯୋଗ ଘୋଷଣାକଲେ । ପାନ ଉପରୁ ନିଷେଧାଜ୍ଞା ଉଠିଗଲା, ଜଙ୍ଗଲଆଇନ୍‌ରେ ସଂଶୋଧନ ଅଣାଗଲା ଏବଂ କେତେକାଂଶରେ ଖଜଣା ତଥା ସେସ୍ ଛାଡ଼ କରାଗଲଣ । ତଥାପି ପ୍ରଜାମଣ୍ଡଳ କର୍ମୀମାନେ ସନ୍ତୁଷ୍ଟ ହେଲେ ନାହିଁ । ଅପରପକ୍ଷରେ ପୋଲିସ୍‌ବାହିନୀ ଭୁବନ, ପରଜଙ୍ଗ, ମଡ଼ି, ମାର୍ଥାପୁର,କୁଲେଇ,

କାଲୁଣୀଗୋଡ଼ା, କାଶୀପୁର, ନିହଲପ୍ରସାଦ, କରଗୋଳା, ରାୟପୁର, ମନ୍ଦାର, ଟୋଲରପଶି, ସତଙ୍ଗୀ, ବଙ୍କୁରିଆ, ଦେଓଗାଁ, ଗଁଦିଆ ଖଡ୍ଗପ୍ରସାଦ ଓ ଗଞ୍ଜେଇଡିହ ପ୍ରଭୃତି ମୁଖ୍ୟସ୍ଥାନ ମାନଙ୍କରେ ଚଢ଼ାଉକରି ପ୍ରାୟ ଏକହଜାର କର୍ମୀ ଓ ନେତାଙ୍କୁ ଗିରଫ କଲେ । ଯେଉଁ ପ୍ରମୁଖ ନେତୃବୃନ୍ଦ ଗିରଫ ହୋଇଥିଲେ ସେମାନେ ହେଲେ ଶ୍ରୀକାନ୍ତ ରାଉତ, ବ୍ରଜକିଶୋର ଧଳ, ମହନ୍ତ ପ୍ରଧାନ, କୃତିବାସ ପ୍ରଧାନ, ସତ୍ୟବାଦୀ ମିଶ୍ର, ନିରାକାର ପଟ୍ଟନାୟକ, ଭଜମନ ସାହୁ, ଲାଲୁ ମହମଦ, କାହ୍ନୁଚରଣ କର, କାହ୍ନୁଚରଣ ପତି, ଖୁସା ସାହୁ, ମହେଶଚନ୍ଦ୍ର ସୁବାହୁ ସିଂହ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଓ ଅନ୍ୟାନ୍ୟ ବହୁ ତୁଙ୍ଗନେତା । କେତେକ ନେତାଙ୍କୁ ଧରାଇଦେଲେ ପୁରସ୍କାର ଦିଆଯିବ ବୋଲି ଘୋଷଣା କରାଗଲା ।

୧୯୩୮ ଡିସେମ୍ବର ୩ ତାରିଖରେ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଅନେକ ସତ୍ୟାଗ୍ରାହୀ ଢେଙ୍କାନାଳ ଆସିଲେ । ସେତେବେଳକୁ ଗିରଫ ନେତୃବର୍ଗଙ୍କୁ ଜିଲାମାଜିଷ୍ଟ୍ରେଟ୍ ଏନ୍.ଏ.ଜେ. ଅଣ୍ଡରସନଙ୍କ ଅଦାଲତରେ ଜେଲ ଓ ଜୋରିମାନା ଆଦେଶ ହୋଇସାରିଥାଏ। ଢେଙ୍କାନାଳ ରାଜ୍ୟର ସର୍ବତ୍ର ଅଶାନ୍ତି । ଏହି ସମୟରେ ଭଗବତୀ ଚରଣ ପାଣିଗ୍ରାହୀ, ଗୋକୁଳାନନ୍ଦ ରାୟ ଚୂଡ଼ାମଣି, ଗୌରାଙ୍ଗ ଚରଣ ଦାସ, ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ପ୍ରଭୃତି ଜାତୀୟ ପତାକା ଉଡ଼ାଇ ଓ ଜାତୀୟ ସଂଗୀତ ଗାନ କରି ଢେଙ୍କାନାଳରେ ଶୋଭାଯାତ୍ରା କରିଥିଲେ । ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ସର୍ବତ୍ର ସତ୍ୟାଗ୍ରହ ପାଳନ ହେଲା । କର୍ମୀ ଓ ନେତାମାନଙ୍କ ହଲାଣ୍ଡ ତଥା ଅନୁଗୁଳ ଶିବିରରେ ତାଲିମ୍ ଦିଆଯାଇ ଗ୍ରାମାଞ୍ଚଳକୁ ପଠାଗଲା । ଠିକ୍ ସେହି ସମୟରେ ରଣପୁରରେ ଏସ୍.ଆର.ବେଜଲଗେଟ୍ ଲୋକଙ୍କ ଶବବ୍ୟ ହୋଇ ମୃତ୍ୟୁବରଣ କଲେ । ଏପରିସ୍ଥିତିରେ ଓଡ଼ିଶାରେ ସର୍ବତ୍ର ଟିକିଏ ଶାନ୍ତ ବାତାବରଣ ସୃଷ୍ଟିହେଲା । ଢେଙ୍କାନାଳ ରାଜା ମଧ୍ୟ କୋହଳ ମନୋଭାବ ପ୍ରଦର୍ଶନ କଲେ । ୧୯୩୯ ରେ ରାଜସାହେବ କେତେକ ପ୍ରଜାହିତକର ଆଇନ ପ୍ରବର୍ତ୍ତନ କଲେ । ପଞ୍ଚାୟତ ବ୍ୟବସ୍ଥା ମଧ୍ୟ କାର୍ଯ୍ୟକାରୀ ହୋଇ ସମଗ୍ର ଢେଙ୍କାନାଳ ରାଜ୍ୟରେ ୩୨୯ଗୋଟି ଗ୍ରାମପଞ୍ଚାୟତ ଗଠନ ହେଲା । ସାବାଳକ ଭୋଟ ପ୍ରଥା ପ୍ରଚଳନ କରାଯାଇ କର୍ମଚାରୀମାନେ ଲୋକଙ୍କଠାରୁ ଭୋଟଗ୍ରହଣ କଲେ । ପ୍ରଜାସଭା ଓ ପ୍ରଜାପରିଷଦ ଗଠନ କରାଗଲା । ଏହି ପ୍ରଜାପରିଷଦର ଅର୍ଦ୍ଧାଧିକ ସଭ୍ୟ ଲୋକଙ୍କ ଦ୍ୱାରା ନିର୍ବାଚିତ ହେଲେ ।



# ଢେଙ୍କାନାଳରେ ଭାରତଛାଡ଼ ଆନ୍ଦୋଳନ

ରାଜା ଶଙ୍କର ପ୍ରତାପ ମହୀନ୍ଦ୍ରବାହାଦୂର ପ୍ରଜାଙ୍କୁ ସନ୍ତୁଷ୍ଟ କରିବା ନିମିତ୍ତ ନାନାବିଧ ଜନହିତକର କାର୍ଯ୍ୟସହିତ ଢେଙ୍କାନାଳରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥାର ପ୍ରତୀକ ସ୍ୱରୂପ ପ୍ରଜାପରିଷଦ, ପ୍ରଜାସଭା ଓ ପଞ୍ଚାୟତ ଗଠନ କରିଥିଲେ ମଧ ପ୍ରଜାମାନେ ଶାନ୍ତ ହୋଇନଥିଲେ । ୧୯୩୯ ମସିହାରେ କୌଣସି ସ୍ଥାନରେ ବିଶେଷ ବଡ଼ଧରଣର ପ୍ରଜା ଆନ୍ଦୋଳନ ଘଟିନଥିଲେ ହେଁ ଗୁପ୍ତ ଭାବରେ ପ୍ରଜାମଣ୍ଡଳକର୍ମୀ ସକ୍ରିୟ ଥିଲେ । ସେମାନେ ତାଙ୍କ ପୂର୍ବ ସଂଗଠନ ଜାରୀ ରଖିଥିଲେ । ୧୯୩୯ରେ ଅନୁସନ୍ଧାନ କମିଟି ବସି ଗଡ଼ଜାତ ଆନ୍ଦୋଳନ ସଂପର୍କରେ ତଦନ୍ତ ହୋଇଥିଲା । ଇତ୍ୟବସରରେ ଜଣେ ବ୍ୟକ୍ତି ମହାତ୍ମାଗାନ୍ଧୀଙ୍କୁ ଜଣାଇଥିଲେ ଯେ ଅଭିଯୋଗ ସଂପୂର୍ଣ୍ଣ ମିଥ୍ୟା ଓ ଉଦ୍ଦେଶ୍ୟମୂଳକ ତଥା କପଳୋକଳ୍ପିତ ।

ଦୀର୍ଘକାଳପରେ ରାଣୀ ରତ୍ନପ୍ରଭା ଦେବୀ ଗର୍ଭବତୀ ହେଲେ । ରାଜା ଶଙ୍କର ପ୍ରତାପ ରାଣୀଙ୍କୁ ନେଇ ୧୯୪୧ ମସିହା ଜାନୁଆରୀ ମାସରେ କଲିକତା ଗଲେ । ବିବାହର ୧୭ ବର୍ଷ ପରେ ରାଣୀ ଗର୍ଭବତୀ ହୋଇଥିବାରୁ ନିୟମିତ ମେଡ଼ିକାଲ ଚେକିଙ୍ଗ୍‌ରେ ଆବଶ୍ୟକତା ପଡ଼ିଲା । ତେଣୁ ରାଜାସାହେବ ସପରିବାର ୬ ଏଲଗ୍ରୀନରୋଡ଼ରେ ରହିଲେ। ସାଥୀରେ କେତେଜଣ ଚାକର, ଚାକରାଣୀ, ଡ୍ରାଇଭର ଓ ରାଜାଙ୍କ ସାନଭାଇ ଗୌରେନ୍ଦ୍ର ପ୍ରତାପ ଥାଆନ୍ତି । ଠିକ୍ ସେତିକିବେଳେ ନେତାଜୀ ସୁଭାଷଚନ୍ଦ୍ର ବୋଷ କଲିକତାସ୍ଥିତ ଏଲଗ୍ରୀନ୍‌ରୋଡ଼ରେ ଥିବା ତାଙ୍କ ପୈତୃକ ଘରେ ଗୃହବନ୍ଦୀ ଥାଆନ୍ତି । ସୁଭାଷଙ୍କ ପରିବାର ସହିତ ଢେଙ୍କାନାଳ ରାଜପରିବାରର ପୂର୍ବରୁ ବନ୍ଧୁତ୍ୱ ରହିଥିଲା । ଏପରିକି ସୁଭାଷଙ୍କ ପିତା ଜାନକୀନାଥବୋଷ ନାବାଳକ ରାଜାଙ୍କର ଅଭିଭାବକ ଥିଲେ । ସେହି ସୂତ୍ରରେ ରାଜାଶଙ୍କର ପ୍ରତାପ ନିୟମିତ ସୁଭାଷଙ୍କ ନିକଟକୁ ଯାଉଥିଲେ। ସର୍ବଦା ଗୁଇନ୍ଦା ପୋଲିସ୍ ସୁଭାଷଙ୍କ ଉପରେ ନଜର ରଖିଥିଲେ ହେଁ ଢେଙ୍କାନାଳ ରାଜା ଜଣେ ପ୍ରଥମଶ୍ରେଣୀ ଶାସକ ହୋଇଥିବାରୁ ତାଙ୍କୁ ସନ୍ଦେହ କରିନଥିଲେ । ୧୯୪୧ ମସିହା ଜାନୁଆରୀ ୧୬ ତାରିଖ ରାତି ୯ଟାରେ ସୁଭାଷଚନ୍ଦ୍ର ଜଣେ ମୁସଲମାନ ବୀମା ଏଜେଣ୍ଟ ବେଶରେ ଢେଙ୍କାନାଳ ରାଜାଙ୍କର ନାଲି ନମ୍ବର ପ୍ଲେଟ ଲାଗିଥିବା

୫ ନମ୍ବର କାର୍‌ରେ ନାଟକୀୟ ଭଙ୍ଗୀରେ କଲିକତାରୁ ପଳାୟନ କଲେ । ଢେଙ୍କାନାଳ ରାଜାଙ୍କ ଡ୍ରାଇଭର ସ୍ୱର୍ଗତ କାହ୍ନୁଚରଣ ସିଂହ ଓ ଚାକର ବଳଭଦ୍ର ପରିଡ଼ା ସେହି କାରରେ ନେଇ ସୁଭାଷଚନ୍ଦ୍ରବୋଷଙ୍କୁ ଛାଡ଼ିଦେଇ ଆସିଲେ । ତତ୍‌ପରେ ସେ ଟ୍ରେନ୍‌ରେ ଭାରତର ଉତ୍ତର ପଶ୍ଚିମ ସୀମାନ୍ତକୁ ଯାଇ ସେଠାରୁ ଆଫଗାନିସ୍ଥାନ, ଇଟାଲୀ ଦେଇ ଜର୍ମାନରେ ପହଞ୍ଚିଲେ । ଢେଙ୍କାନାଳ ରାଜାଙ୍କ ଗାଡ଼ିକୁ ସନ୍ଦେହରେ କେହି ତନଖି କରିନଥିଲେ । କିନ୍ତୁ ପରେ ତଦନ୍ତରେ ଜଣାପଡ଼ିବାରୁ ଢେଙ୍କାନାଳ ରାଜା ଇଂରେଜ ଶାସକଙ୍କ ସନ୍ଦେହ ଘେରରେ ରହିଲେ। କିନ୍ତୁ, ନେତାଜୀଙ୍କର ଜଣେ ସଂପର୍କୀୟ ବିନା ଲାଇସେନ୍‌ସରେ ଗାଡ଼ିଚଳାଇ ତାଙ୍କୁ କଲିକତାରୁ ବାହାରରୁ ନେଇଥିଲେ ବୋଲି ଦାବୀ କରନ୍ତି । ସୂଚନାଯୋଗ୍ୟଯେ, ସେହି ଦାବୀଦାରଙ୍କ ବୟସ ସେତେବେଳକୁ ମାତ୍ର ବାର ବର୍ଷ ହୋଇଥିଲା, ଜଣେ ବାରବର୍ଷର ବାଳକ ବିନା ଲାଇସେନ୍‌ସରେ ଗାଡ଼ିଚଳାଇ ନେତାଜୀଙ୍କ ଅନ୍ତର୍ଦ୍ଧାନରେ ସାହାଯ୍ୟ କରିବା ବିଶ୍ୱାସ ଯୋଗ୍ୟ ନୁହେଁ । ଏହା ସତ୍ୟଯେ, ନେତାଜୀଙ୍କ ସହିତ ଢେଙ୍କାନାଳ ରାଜାଙ୍କର ଅନ୍ତରଙ୍ଗ ସଂପର୍କ ରହିଥିଲା । ସେ ତାଙ୍କ ପୈତୃକ ଘରବାଡ଼ି ୧୪ କାମାକ୍‌ଷ୍ଟ୍ରୀଟ୍‌ରେ କ୍ରୟ କରିଥିଲେ । ନେତାଜୀଙ୍କ ନିମନ୍ତ୍ରଣ କ୍ରମେ ରାଜା ଶଙ୍କର ପ୍ରତାପ ମଧ୍ୟ କଲିକତା କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ । ସେହି ସମୟରେ ଇଂରେଜଶାସନଧୀନ ଜଣେ ଦେଶୀୟରାଜା କଂଗ୍ରେସ ଅଧିବେଶନରେ ଯୋଗ ଦେବା କମ୍ ସାହାସର କଥା ନଥିଲା, ହୃଦ୍‌ବୋଧ ହୁଏ, ସ୍ୱଦେଶପ୍ରେମୀ ରାଜା ଶଙ୍କର ପ୍ରତାପଙ୍କ ସହ ନେତାଜୀ ଅନ୍ତର୍ଦ୍ଧାନ ସଂପର୍କରେ ଗୁପ୍ତ ମନ୍ତ୍ରଣା କରିଥିଲେ । ରାଣୀ ରତ୍ନପ୍ରଭାଦେବୀ ମଧ୍ୟ ସ୍ୱୀୟ ଆତ୍ମଜୀବନୀରେ ଗୁପ୍ତ ଆଲୋଚନା କରିବା ଲେଖିଛନ୍ତି । ଅନ୍ତର୍ଦ୍ଧାନର ୨/୩ ଦିନ ପୂର୍ବରୁ ରାଜାସାହେବ ନେତାଜୀଙ୍କ ସହିତ ଗୁପ୍ତ ଆଲୋଚନା କରିବା ମଧ୍ୟ ରତ୍ନପ୍ରଭାଦେବୀ ଲେଖିଛନ୍ତି । ନେତାଜୀ ରାଜାଙ୍କୁ ଗାଡ଼ିଦେବାକୁ ଅନୁରୋଧ କରିଥିଲେ ଏବଂ ନିର୍ଦ୍ଧାରିତ ତାରିଖ ଓ ସମୟରେ ରାଜା ଡ୍ରାଇଭର ତଥା ଜନୈକ ବିଶ୍ୱସ୍ତ ଚାକର ସହିତ ଗାଡ଼ି ପଠାଇଛନ୍ତି । ସେହି ଗାଡ଼ିରେ ନେତାଜୀ ଯାଇଥିଲେ ହେଁ ଢେଙ୍କାନାଳ ଷ୍ଟେଟ୍‌ର ପତାକା ଓ ନାଲି ନମ୍ବର ପ୍ଲେଟ ଲାଗିଥିବାରୁ ବ୍ରିଟିଶ୍ ପୋଲିସ୍ ବା ଗୁଇନ୍ଦାମାନେ ସନ୍ଦେହ କରିନାହାନ୍ତି। ପରବର୍ତ୍ତୀ କାଳରେ ଇଂରେଜ ପ୍ରଶାସକ ଏ ପ୍ରସଙ୍ଗ ଜାଣି ପାରିଥିଲେ ତଥା ରାଜା ଶଙ୍କର ପ୍ରତାପଙ୍କ ଗତିବିଧି ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ଅଥଚ

ନେତାଜୀ ଜର୍ମାନୀର ରାଷ୍ଟ୍ରମୁଖ୍ୟ ହିଟ୍‌ଲରଙ୍କ ସହିତ ସଂପର୍କ ସ୍ଥାପନା ପୂର୍ବକ ବର୍ଲିନ୍ ଠାରେ ଆଜାଦ୍‌ହିନ୍ଦ୍‌ରେ ଭାଷଣ ଦେବାପରେ ଇଂରେଜମାନେ ଆତଙ୍କିତ ହୋଇପଡ଼ିଥିଲେ । ବ୍ରିଟିଶ୍ ପ୍ରଶାସକମାନେ ଢେଙ୍କାନାଳ ରାଜାଙ୍କ ଉପରେ ରାଗ ରଖି ତାଙ୍କ ଦୋଷତ୍ରୁଟି ଖୋଜିବାକୁ ଲାଗିଲେ । ଅବଶ୍ୟ, ରାଜାଙ୍କର ଆଚରଣରେ ବା ଉଚ୍ଚାରଣରେ କୌଣସି ତୃଟି ଇଂରେଜ ସରକାର ପାଇପାରିନଥିଲେ ।

ଜଗତଜନନୀ କାମାକ୍ଷାଦେବୀଙ୍କ କୃପାରୁ ରାଣୀ ରତ୍ନପ୍ରଭା ଦେବୀ ବିବାହର ସତରବର୍ଷ ପରେ ୧୯୪୧ ଅଗଷ୍ଟ ୬ ତାରିଖ ପବିତ୍ର ଶ୍ରାବଣ ପୂର୍ଣ୍ଣିମା ଦିନ କଲିକତା ସହରରେ ପ୍ରଥମ ସନ୍ତାନ ପ୍ରସବ କଲେ । ଦୀର୍ଘଦିନ ପରେ ସନ୍ତାନପ୍ରାପ୍ତି ଏବଂ ଢେଙ୍କାନାଳରେ ଇଷ୍ଟ ଶ୍ରୀବଳଦେବଜୀଉଙ୍କ ଜନ୍ମୋତ୍ସବରେ ପ୍ରାପ୍ତି ହୋଇଥିବାରୁ ରାଜଦଂପତ୍ତି, ରାଜପରିବାର ଓ ପ୍ରଜାବର୍ଗଙ୍କର ଆନନ୍ଦର ସୀମା ରହିଲା ନାହିଁ । କାମାକ୍ଷାଙ୍କ ଆଶୀର୍ବାଦରୁ ଜନ୍ମ ହୋଇଥିବାରୁ ନାମ ରଖାଗଲା କାମାକ୍ଷା ପ୍ରସାଦ । ତୁରନ୍ତ ଯୁବରାଜଙ୍କ ଜନ୍ମର ଶୁଭସମ୍ବାଦ ଢେଙ୍କାନାଳରେ ପହଞ୍ଚିଗଲା । ସମଗ୍ର ରାଜ୍ୟରେ ଆନନ୍ଦର ଲହରୀ ଖେଳିଗଲା, ରାଜା ଓ ରାଣୀସାହେବା ଯେତେବେଳେ ନବଜାତ କୁମାରଙ୍କୁ ଧରି ଢେଙ୍କାନାଳ ଆସିଲେ ସେତେବେଳେ ଅଗଣିତ ପ୍ରଜା ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ଗଡ଼ଢେଙ୍କାନାଳ ରେଲଷ୍ଟେସନରେ ହଜାର ହଜାର ପ୍ରଜା ଏକତ୍ରିତ ହୋଇ ରାଜଦଂପତ୍ତି ଯୁବରାଜଙ୍କୁ ଧରି ଓହ୍ଲାଇଲାବେଳେ ଶୁଭେଚ୍ଛା ଜଣାଇଥିଲେ । ବ୍ରାହ୍ମଣଗଣ ବେଦପାଠ ଓ ମଙ୍ଗଳଗାନକରି ଯୁବରାଜଙ୍କ ସମେତ ରାଜଦଂପତ୍ତିଙ୍କୁ ରାଜପ୍ରାସାଦକୁ ପାଛୋଟି ନେଇଥିଲେ । ଢେଙ୍କାନାଳ ସହରର ସର୍ବତ୍ର ଆମନ୍ତ୍ରଣ ଓ ପୂର୍ଣ୍ଣକୁମ୍ଭ ବସାଯାଇଥିଲା । ମଠ ମନ୍ଦିରମାନଙ୍କରେ ବିଶେଷ ପୂଜାର୍ଚ୍ଚନା ଅନୁଷ୍ଠିତ ହୋଇଥିଲା । ଦୀନ, ଦୁଃଖୀ, ରଙ୍କୀ ଓ ରୋଗୀମାନଙ୍କୁ ଅନ୍ନବସ୍ତ୍ର ଦାନ କରାଯାଇଥିଲା । ବ୍ରାହ୍ମଣଶାସନ ସମୂହକୁ ଦାନଦକ୍ଷିଣା ଦିଆଯାଇଥିଲା । ଅନେକ ରାଜବନ୍ଦୀଙ୍କୁ ମଧ୍ୟ ଖଲାସ କରି ଦିଆଯାଇଥିଲା ।

୧୯୪୨ ମସିହା ଅଗଷ୍ଟ ୮ ତାରିଖରେ ବମ୍ବେରେ ନିଖିଳ ଭାରତ କଂଗ୍ରେସ ଅଧିବେଶନ ବସିଲା । ଏହି ଅଧିବେଶନରେ ''ଭାରତଛାଡ଼'' ପ୍ରସ୍ତାବ ଗୃହୀତ ହୋଇଥିଲା । ସମବେତ ଜନତା ଓ ସମଗ୍ର ଭାରତବାସୀଙ୍କୁ ଗାନ୍ଧିଜୀଙ୍କର ଆହ୍ୱାନ ଥିଲା ''କର ବା ମର'' ଅର୍ଥାତ୍ ଆମେ ଭାରତରୁ ସ୍ୱାଧୀନ କରିବା ବା ସ୍ୱାଧୀନତା ପଥରେ ଅଗ୍ରସର ହୋଇ ଆତ୍ମବିସର୍ଜନ କରିବା । ଇଂରେଜ ସରକାର

ତୁରନ୍ତ ଗାନ୍ଧିଜୀଙ୍କ ସମେତ ମୁଖ୍ୟ ନେତୃବୃନ୍ଦଙ୍କୁ ଗିରଫ କଲେ ଏବଂ କଂଗ୍ରେସ ସଂଗଠନକୁ ଅସିଦ୍ଧ ଘୋଷଣା କଲେ । ଏହା ଫଳରେ ସମଗ୍ର ଭାରତରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହେଲା । ଢେଙ୍କାନାଳରେ ମଧ୍ୟ ଏହାର ସୁଦର ପ୍ରସାରୀ ପ୍ରଭାବ ପଡ଼ିଥିଲା । ସମଗ୍ର ଭାରତବାସୀ ଅଗଷ୍ଟ ବିପ୍ଳବ ବା ଭାରତଛାଡ଼ ଆନ୍ଦୋଳନରେ ମାତିଥିଲାବେଳେ ଢେଙ୍କାନାଳବାସୀ ନୀରବରେ ବସି ରହିନଥିଲେ । ପ୍ରଜାମଣ୍ଡଳ କର୍ମୀମାନେ ମଧ୍ୟ ସକ୍ରିୟ ହୋଇଉଠିଥିଲେ । ସେମାନେ କେତେକ ସ୍ଥାନରେ ଗୁପ୍ତ ସଭା ବସାଇ ଆନ୍ଦୋଳନର କାର୍ଯ୍ୟକ୍ରମ ପ୍ରସ୍ତୁତ କଲେ । ରାଜ୍ୟପ୍ରଶାସନ ଏସମ୍ବାଦ ପାଇ ପ୍ରତିକାର ନିମିତ୍ତ ଅଗଷ୍ଟ ୧୧ ତାରିଖରେ ଢେଙ୍କାନାଳରାଜ୍ୟରେ ଜରୁରୀ ପରିସ୍ଥିତି ଘୋଷଣା କଲେ। ଏହି ଘୋଷଣାରେ ପ୍ରଜାମଣ୍ଡଳ ସଂଗଠନକୁ ଅସିଦ୍ଧ ଉଲ୍ଲେଖ କରାଯାଇଥିଲା । ଏହାର ପାଞ୍ଚଦିନ ପରେ ଅଗଷ୍ଟ ୧୬ ତାରିଖରେ ସଭା, ସମିତି ଓ ଶୋଭାଯାତ୍ରା ଉପରେ ନିଷେଧାଜ୍ଞା ଜାରୀ ହେଲା, ଅଗଷ୍ଟ ୧୭ ତାରିଖରେ ପ୍ରଜାମଣ୍ଡଳ କର୍ମୀ କିଶୋରିସାହୁ, ଦିବାକର ବିଶ୍ୱାଳ, ବୈଷ୍ଣବ ଚରଣ ପଟ୍ଟନାୟକ, ମହେଶଚନ୍ଦ୍ର ସୁବାହୁସିଂହ ଓ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ପ୍ରଭୃତିଙ୍କ ନାମରେ ଓ୍ୱାରେଣ୍ଟ ବାହାରିଲା, ତନ୍ମଧ୍ୟରୁ ମହେଶଚନ୍ଦ୍ର ସୁବାହୁସିଂହ ଓ ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଗିରଫ ହୋଇଥିଲେ ଅନ୍ୟମାନେ ଆତ୍ମଗୋପନ କରିବାରୁ ପୋଲିସ୍ ସେମାନଙ୍କୁ ଧରି ପାରିଲେ ନାହିଁ ।

ସେତିକିବେଳେ ଢେଙ୍କାନାଳରେ ଯୁବରାଜ କାମାକ୍ଷା ପ୍ରସାଦଙ୍କର ପ୍ରଥମ ଜନ୍ମବାର୍ଷିକୀ ମହାସମାରୋହରେ ପାଳନ କରାଯାଉଥାଏ । କେବଳ ରାଜଧାନୀରେ ନୁହେଁ,ପ୍ରତ୍ୟେକ ଗ୍ରାମରେ ମଧ୍ୟ ଉତ୍ସବର ଆୟୋଜନ ଚାଲିଥାଏ। ପ୍ରତ୍ୟେକ ମଠ ମନ୍ଦିରରେ ପୂଜାର୍ଚ୍ଚନା ଚାଲିଥାଏ । ଏହି ଅବସରରେ ବ୍ରାହ୍ମଣୀ ଉତ୍ତର ପାର୍ଶ୍ୱରେ ଥିବା ଉପଖଣ୍ଡର ସଦର ମହକୁମା ''ମଢ଼ି''ର ନାମ ପରିବର୍ତ୍ତନ କରି ଯୁବରାଜଙ୍କ ନାମରେ ''କାମାକ୍ଷାନଗର'' ରଖିବାକୁ ଆଦେଶ ପ୍ରକାଶିତ ହୋଇଥାଏ । ପଣ୍ଡିତ ଗଙ୍ଗାଧର ମିଶ୍ର ସେହି ସମୟରେ ସେଠାରେ ଏସ୍.ଡି.ଓ ଥାଆନ୍ତି । ପ୍ରଜାମଣ୍ଡଳ କର୍ମୀମାନେ ପୂର୍ବନିଷ୍ପତ୍ତି ଅନୁଯାୟୀ ଅଗଷ୍ଟ ୨୩ ତାରିଖରେ ପରଜଙ୍ଗ ଥାନା ରଙ୍ଗଥଳୀଠାରେ ଏକତ୍ରିତ ହେଲେ । ସେମାନେ ସେଠାରୁ ଅଭିଯାନ ଆରମ୍ଭ କରି ଅଗଷ୍ଟ ୧୬ ତାରିଖ ସୂର୍ଯ୍ୟୋଦୟର ଘଣ୍ଟାଏ ପୂର୍ବରୁ କାମାକ୍ଷାନଗର ଠାରେ ପହଞ୍ଚିଲେ । ଏହି ବିପ୍ଳବୀମାନେ ମୋଟ ୧୯ ଜଣ ଥିଲେ । ବୀର ବୈଷ୍ଣବ ପଟ୍ଟନାୟକ ଓ ମୂଷାମଲିକଙ୍କ ନେତୃତ୍ୱରେ ଏହି ୧୯

ଜଣ ବନ୍ଧୁକ, ଛୁରୀ, ଲାଠି ଓ ଧନୁଶର ପ୍ରଭୃତି ମାରଣାସ୍ତ୍ର ଧରି ତିରଙ୍ଗ ପତାକା ଉଡ଼ାଇ କାମାକ୍ଷାନଗରରେ ପଦାର୍ପଣ କଲେ । ତତ୍‌କ୍ଷଣାତ୍ ବିପ୍ଳବୀମାନେ ଥାନା ଉପରେ ଚଢ଼ାଉକରି ଅସ୍ତ୍ରଶସ୍ତ୍ର ଲୁଟିନେଲେ । ପରେ ପରେ ମଡ଼ିକଚେରୀ ଓ ତହସିଲ କାର୍ଯ୍ୟାଳୟରେ ନିଆଁ ଲଗାଇଦେଲେ ଏହାପରେ ବିପ୍ଳବୀମାନେ କାମାକ୍ଷା ନଗର ଠାରେ ସାଧାରଣ ସଭା ଡକାଇ ଜନସାଧାରଣଙ୍କୁ ସ୍ୱାଧୀନ ସରକାର ଗଠନ ସଂପର୍କରେ ସୂଚନା ଦେଲେ । କାମାକ୍ଷାନଗରର ସମସ୍ତ କାର୍ଯ୍ୟାଳୟ ଅଧିକାର କରିବାପରେ ବିପ୍ଳବୀମାନେ ଗ୍ରାମେ ଗ୍ରାମେ ଫ୍ଳାଗ୍‌ମାର୍ଚ୍ଚ କଲେ । ଅବସ୍ଥା ଆୟତ୍ତ ହେବାରୁ ଢେଙ୍କାନାଳରୁ ଫୋର୍ସ କାମାକ୍ଷାନଗର ଯାଇ ଅବସ୍ଥା ଆୟତ୍ତ କରେ । ବିପ୍ଳବୀମାନେ ପୁନର୍ବାର ପରଜଙ୍ଗ ଅଞ୍ଚଳକୁ ଚାଲିଗଲେ । ସେପ୍ଟେମ୍ବର ୪ତାରିଖରେ ପୋଲିସ୍‌ଫୋର୍ସ ଓ ବିପ୍ଳବୀଙ୍କ ମଧ୍ୟରେ ଜହ୍ନାପଡ଼ାଠାରେ ଖଣ୍ଡଯୁଦ୍ଧ ହେଲା, ଉଭୟବାହିନୀ ଗୁଳି ଫାୟାରିଂ କରିଥିଲେ । ପୋଲିସ୍ ଗୁଳିରେ ତୋରଡ଼ାନାଳୀର ବୀରସାହୁ ଓ କୁସୁମୁଣ୍ଡାର ବେନୁ ସାହୁ ସହୀଦ ହେଲେ । ବୈଷ୍ଣବ ପଟ୍ଟନାୟକ ଗୁଳିମାଡ଼ ଖାଇ ପଳାୟନ କଲେ । ତତ୍‌ପରଦିନ ଅର୍ଥାତ୍ ସେପ୍ଟେମ୍ବର ୫ ତାରିଖରେ କେତେକ ବିପ୍ଳବୀ ମାଣିକ୍ୟମରାଗ୍ରାମରେ ଦେବରାଜପାତ୍ରଙ୍କ ନେତୃତ୍ୱରେ ଗେଙ୍ଗୁଟିଆ ପୋଲିସ୍ ଫାଣ୍ଡି ଓ ଜଙ୍ଗଲ ବିଭାଗ ବିଟ ଘର ପୋଡ଼ିଦେଲ । ପୋଲିସ୍ ଗ୍ରାମେ ଗ୍ରାମେ ଖୋଜି କେତେଜଣ ବିପ୍ଳବୀଙ୍କୁ ଧରିଲେ । ସେମାନଙ୍କ ବିରୁଦ୍ଧରେ କେଶ୍ ଚାଲିଲା । ବିଚାରରେ ମୂଷାମାଳିକ, ଆନନ୍ଦସ୍ୱାଇଁ ଓ ଅନୁକୂଳ ସାହୁଙ୍କୁ ମୃତ୍ୟୁଦଣ୍ଡ ଆଦେଶ ହେଲା । ପଦ୍ମନାଭ ସାହୁ, କୁଳମଣି, ପ୍ରଧାନ, ହାଡ଼ିବନ୍ଧ ପରିଡ଼ା, ତୀର୍ଥସାହୁ, ରଘୁନାଥ ଦେହୁରୀ, ଲକ୍ଷ୍ମଣ ନାଏକ, ଲୋଚନ ସିଂହ, ହରେକୃଷ୍ଣ ସାହୁ, ନବଘନ ବେହେରା, ରାଧାନାଥ ଭୂତିଆ ଓ ସଂପାଦି ସାହୁଙ୍କୁ ଆଜୀବନ ଜେଲ ଦଣ୍ଡରେ ଦଣ୍ଡିତ କରାଯାଇଥିଲା । ପରେ ଉଚ୍ଚପଦାଧିକାରୀଙ୍କ ନିଷ୍ପତ୍ତିକ୍ରମେ ମୂଷାମଳିକ ଗେରଙ୍କୁ ଫାଶୀ ଦଣ୍ଡରୁ ମୁକ୍ତି ମିଳିଥିଲା । ଏହି ଘଟଣାକୁ କେନ୍ଦ୍ରକରି ରାଜାଙ୍କ ବିରୁଦ୍ଧରେ ଅନେକ ମନଗଢ଼ା କାହାଣୀ ସୃଷ୍ଟି ହୋଇଥିଲା । ସୃଷ୍ଟିକାରୀମାନେ ପ୍ରଜାଙ୍କ ମନରେ ଯେକୌଣସି ଉପାୟରେ ରାଜାଙ୍କ ବିରୁଦ୍ଧରେ ଧାରଣା ଜନ୍ମାଇଥିଲେ ।

ନେତାଜୀଙ୍କ ପଳାୟନ ପରେ ଇଂରେଜସରକାର ଭୟଭୀତ ହୋଇପଡ଼ିଲେ । ଏହି ଘଟଣାରେ ଇଂରେଜମାନେ ରାଜା ଶଙ୍କର ପ୍ରତାପଙ୍କୁ

ସନ୍ଦେହ କରିଥିଲେ ବୋଲି ପୂର୍ବରୁ କୁହାଯାଇଛି । ତଦନ୍ତରେ ସତକଥା ଜଣାପଡ଼ିବାରୁ ରାଜା ତାଙ୍କର ପ୍ରତାପ, ସାନଭାଇ ଗୌରେନ୍ଦ୍ର ପ୍ରତାପ ସିଂହଦେଓ ଏବଂ ରାଣୀ ରତ୍ନପ୍ରଭା ଦେବୀଙ୍କ ନାମରେ ୱାରଣ୍ଟ ଜାରି କରାଯାଇଥିଲା । ମାତ୍ର ଢେଙ୍କାନାଳ ରାଜା ‘‘A’’ ଶ୍ରେଣୀର ଶାସକ ହୋଇଥିବାରୁ ତାଙ୍କୁ ଗିରଫ କରିବା ସହଜ ହୋଇନଥିଲା । ରାଜାଙ୍କର ବିଶିଷ୍ଟ କଂଗ୍ରେସ ନେତୃବର୍ଗଙ୍କ ସହିତ ସଂପର୍କ ଓ ଫରୱାର୍ଡ଼ ବ୍ଲକ୍ କର୍ମକର୍ତ୍ତାଙ୍କ ସହିତ ଘନିଷ୍ଠତା ସନ୍ଦେହକୁ ଘନୀଭୂତ କରିଥିଲା । ସେହି ସମୟରେ ବିଶ୍ୱଯୁଦ୍ଧ ଚାଲିଥାଏ । ନେତାଜୀ ଜାପାନ ସହାୟତାରେ ଆଜାଦ୍ ହିନ୍ଦ୍ ଫୌଜ ଗଢ଼ି ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ ଜାରୀ ରଖିଥିଲେ। ଠିକ୍ ସେହି ସମୟରେ ଜାପାନର ଏକ ଯୁଦ୍ଧ ଉଡ଼ାଜାହାଜ ଢେଙ୍କାନାଳ ସନ୍ନିକଟ ଆଠଗଡ଼ ରାଜାଙ୍କ ଉଡ଼ାଜାହାଜ ପଡ଼ିଆରେ ଅବତରଣ ପୂର୍ବକ। ତେଲ ନେଇ ନିର୍ବିଘ୍ନରେ ଫେରିଯାଇଥିଲା । ଶତ୍ରୁପକ୍ଷର ଉଡ଼ାଜାହାଜ ବ୍ରିଟିଶ୍ ଶାସିତ ଭାରତର ଏକ କ୍ଷୁଦ୍ର ଦେଶୀୟ ରାଜ୍ୟରେ ଅବତରଣ କରି ଫେରିବା କମ୍ ଆଶ୍ଚର୍ଯ୍ୟର ବିଷୟ ନଥିଲା। ଏହା ପୂର୍ବଯୋଜନା କାର୍ଯ୍ୟକ୍ରମ ଥିଲା ବୋଲି ଇଂରେଜ କର୍ତ୍ତୃପକ୍ଷ ଧରିନେଲେ । ଏହି ଘଟଣାରେ ମଧ୍ୟ ଇଂରେଜ ପ୍ରଶାସକମାନେ ଆଠଗଡ଼ରାଜା ଓ ଢେଙ୍କାନାଳ ରାଜାଙ୍କୁ ଦୋଷୀ ମଣିଲେ । ଆଠଗଡ଼ ରାଜାଙ୍କଠାରୁ କ୍ଷମତାଚ୍ୟୁତ କରାଯାଇ ତାଙ୍କୁ ରାଜ୍ୟ ବାହାରେ ରହିବାକୁ ଆଦେଶ ମିଳିଲା । ଢେଙ୍କାନାଳ ରାଜାଙ୍କ କ୍ଷମତାକୁ ସଙ୍କୁଚିତ କରାଯାଇ ନିର୍ଯ୍ୟାତନା ଓ ଲାଞ୍ଛନା ଦିଆଯାଇଥିଲା । ରାଜ୍ୟରେ କୁଶାସନର ଦୋଷ ଆରୋପିତ କରାଯାଇ ୧୯୪୪ ମସିହା ଜାନୁଆରୀ ୧୭ ତାରିଖରୁ ରାଜାଙ୍କର ପ୍ରତିନିଧି ଭାବରେ ରାୟସାହେବ ଏସ.କେ ଶ୍ରୀବାସ୍ତବ ମୁଖ୍ୟମନ୍ତ୍ରୀ, ରାଓସାହେବ ଟି ସତ୍ୟନାରାୟଣ ସାଧାରଣ ମନ୍ତ୍ରୀ, ରାୟସାହେବ, ରାୟଗୋପାଳ ଦାସ ସ୍ୱତନ୍ତ୍ର ଅଧିକାରୀ ଏବଂ ରାୟବାହାଦୂର ଓ.କେ.ଚାର୍ଟାର୍ଜୀ ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଭାବରେ ଢେଙ୍କାନାଳର ଶାସନକାର୍ଯ୍ୟ ନିର୍ବାହ କଲେ । ସ୍ୱାଧୀନ ଚେତା ରାଜାସାହେବ ଏଥିରେ ବ୍ୟଥିତ ହୋଇ ସପରିବାର ଢେଙ୍କାନାଳ ରାଜ୍ୟବାହାରେ ବଲାଙ୍ଗୀର, ବୌଦ, ଷଢ଼େଇକଳା, କଲିକତା, କାଶ୍ମୀର ପାତିଆଲା, ତ୍ରାଭାଙ୍କୋର, କୋଚିନ୍, ଓଟି, ପଞ୍ଚକୋଟ, ଦିଲ୍ଲୀ, ଲାହୋର, ସିଂହଳ ଓ ରାଉଲପିଣ୍ଡି ପ୍ରଭୃତି, ସ୍ଥାନମାନଙ୍କରେ ରହିଲେ । ରାଜାଙ୍କ ଅନୁପସ୍ଥିତିରେ ନିଯୁକ୍ତ ପ୍ରଶାସନ ବୃନ୍ଦ କ୍ଷମତାବହିର୍ଭୂତ କାର୍ଯ୍ୟକରି ପ୍ରଜାଙ୍କୁ ହଇରାଣ କଲେ । ଏମାନେ ବିଭିନ୍ନ ବ୍ୟକ୍ତିଙ୍କୁ ଧମକ ଚମକ ଦେଇ ରାଜାଙ୍କ ବିରୁଦ୍ଧରେ ସାକ୍ଷ୍ୟ

ଦେବାକୁ ବାଧ କରିଥିଲେ । ରାଜାଭ୍ରାତା ଶ୍ରୀଶେଶ ପ୍ରତାପଙ୍କ ସମେତ କେତେକ ରାଜକର୍ମଚାରୀଙ୍କୁ ଅନ୍ୟାୟ ଭାବରେ ବନ୍ଦୀ କରାଗଲା । ରାଜାଙ୍କର ଅନ୍ୟଜଣେ ଭ୍ରାତା ଯାଉଁକୀ ପୋଖରୀ ମଠରେ ପୂଜା କରାଉଥିବା ସମୟରେ ପ୍ରଚାର ହେଲା ଯେ ସେ ଇଂରେଜମାନଙ୍କୁ ଭାରତରୁ ତଡ଼ିବା ଉଦ୍ଦେଶ୍ୟରେ ବଗଳାମୁଖୀ ପୂଜା କରୁଛନ୍ତି । ତାଙ୍କ ବିରୁଦ୍ଧରେ ୱାରେଣ୍ଟ ଜାରୀ କରାଗଲା । ମାତ୍ର ସେ ଗୋପନରେ କାଶ୍ମୀର ପଳାୟନ କଲେ । ନିଯୁକ୍ତ ପ୍ରଶାସକଙ୍କ ଦ୍ୱାରା ରାଜ ପରିବାର, ରାଜକର୍ମଚାରୀ ଓ ରାଜାନୁଗତ ପ୍ରଜା ନିର୍ଯ୍ୟାତିତ ହେଲେ । କିନ୍ତୁ ସକଳ ପରିସ୍ଥିତିକୁ ସହ୍ୟକରି ରାଜାସାହେବ ନୀରବରେ ଅଜ୍ଞାତ ବାସକୁ ଶ୍ରେୟ ମଣିଥିଲେ ।



# ଗଡ଼ଜାତ ମିଶ୍ରଣରେ ଢେଙ୍କାନାଳ

ଢେଙ୍କାନାଳ ରାଜା ଶଙ୍କର ପ୍ରତାପ ସିଂହଦେଓ ମହୀନ୍ଦ୍ର ବାହାଦୂର କଂଗ୍ରେସର ଦୃଢ଼ ସମର୍ଥକ ଓ ଜାନକୀ ନାଥ ବୋଷଙ୍କ ପରିବାରର ଘନିଷ୍ଠ ଥିଲେ । ସେଥିନିମିତ୍ତ ସେ ଇଂରେଜ କର୍ତ୍ତୃପକ୍ଷଙ୍କ କ୍ରୁର ଦୃଷ୍ଟିରେ ପଡ଼ିଲେ । ବିଶେଷତଃ ଜାପାନୀ ଉଡ଼ାଜାହାଜ ଆଠଗଡ଼ ଏରୋଡ୍ରମରେ ଅବତରଣ କରିବା ପରେ ତାଙ୍କୁ ଗିରଫ କରିବାକୁ ଯୋଜନା କରାଯାଇଥିଲା । ଏକଥା ଚାର୍ଲସ ଚେରିଭିକ୍ ଟ୍ରନ୍‌ଚଙ୍କ ସଙ୍କଳିତ Viceray's agent ପୁସ୍ତକରେ ସୁସ୍ପଷ୍ଟ ଉଲ୍ଲେଖ ଅଛି ।

"The Rajah of Dhenkaual was to be arrested at the first news of Japanese landing. Bisco found him an unlovable character, a known suupporter of Congress....."

ଏହା ସତ୍ୟଯେ ଢେଙ୍କାନାଳ ରାଜା କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିଲେ । ଜାନକୀ ନାଥ ବୋଷଙ୍କ ପରିବାର ସହତ ତାଙ୍କର ଦୀର୍ଘଦିନର ବନ୍ଧୁତା ରହିଥିଲା । ସୁଭାଷ ବୋଷଙ୍କ ପଳାୟନରେ ସେ ସାହାଯ୍ୟ କରିଥିଲେ । ତେଣୁ ରାଜାଙ୍କୁ ଗାଦୀଚ୍ୟୁତ କରାଯିବାର ମସୁଧା ହୋଇଥିଲା । ଭି.ପି.ମେନନ୍ "The story of the intigration of Indian states" ପୁସ୍ତକରେ ଉଲ୍ଲେଖ କରିଛନ୍ତି ଯେ "The ruler of Dheukaual had a few years, previously, been asked by the political Depastment to stay outside his state. Before the avent of indipendence, he had been allowed to return to his state." ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି, ଇଂରେଜ ଶାସକମାନେ ଢେଙ୍କାନାଳ ରାଜାଙ୍କୁ ସ୍ୱରାଜ୍ୟରୁ ବିତାଡ଼ିତ କରିଥିଲେ ।

ପ୍ରକୃତରେ ଢେଙ୍କାନାଳ ରାଜା ଜଣେ ଯଥାର୍ଥ ଦେଶପ୍ରେମୀ ଥିଲେ । ସେ ସର୍ବଦା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସାହାଯ୍ୟ କରୁଥିଲେ । କେବଳ ଯେ ନେତାଜୀ ସୁଭାଷଙ୍କୁ ସାହାଯ୍ୟ କରିଥିଲେ ନୁହେଁ, ତତ୍‌ପୂର୍ବରୁ ବିପ୍ଳବୀକବି ଅନନ୍ତ ପଟ୍ଟନାୟକଙ୍କୁ ମଧ୍ୟ ସାହାଯ୍ୟ କରିଥିଲେ । ନ୍ୟାୟମୂର୍ତ୍ତି ରାଜକିଶୋର ଦାସ ସ୍ୱରଚିତ "ଅନେକ ଦିନର ଅନେକ କଥା" ପୁସ୍ତକରେ ଉଲ୍ଲେଖ କରିଛନ୍ତିଯେ ଗଡ଼ଜାତ ଆନ୍ଦୋଳନ ସମୟରେ ବିପ୍ଳବୀ କବି ଅନନ୍ତ ପଟ୍ଟନାୟକ ଢେଙ୍କାନାଳ ଜେଲରେ ରହୁଥିଲେ ଏବଂ ତାଙ୍କର ଓକିଲ୍ ହିସାବରେ ଜଷ୍ଟିସ୍ ଦାସ ରାଜାଙ୍କ

ଅତିଥି ଭାବରେ ରାଜ୍ୟ ଅତିଥି ଭବନରେ ରହୁଥିଲେ । ଏକଦା ସେ ଅନନ୍ତ ବାବୁଙ୍କ ସହିତ ସାକ୍ଷାତ କରିବାକୁ ଇଚ୍ଛାକରିବାରୁ ରାଜାଙ୍କ ଗୁପ୍ତ ନିର୍ଦ୍ଦେଶକ୍ରମେ କବି ଅନନ୍ତ ପଟ୍ଟନାୟକଙ୍କୁ ଜେଲରୁ ଅତିଥିଭବନକୁ ଆଣା ଯାଇଥିଲା ଏବଂ ସେ ଜଷ୍ଟିସ୍ ଦାସଙ୍କ ସହିତ ସାକ୍ଷାତ ଆଲୋଚନା କରିବା ସହିତ ଭୋଜନ ମଧ୍ୟ କରିଥିଲେ। ଏଥିରୁ ରାଜାଙ୍କ ଉଦାର ହୃଦୟର ପରିଚୟ ମିଳିଥାଏ । ତଦନୁରୂପ ବିପ୍ଳବୀ ବୀର ବୈଷ୍ଣବ ପଟ୍ଟନାୟକ ଓ ପ୍ରଜାମଣ୍ଡଳର ସଭାପତି ହରମୋହନ ପଟ୍ଟନାୟକଙ୍କ ସହିତ ତାଙ୍କର ସ୍ନେହସୌହାର୍ଦ୍ଦ୍ୟ ରହିଥିଲା ବୋଲି ରାଣୀ ରତ୍ନପ୍ରଭା ଦେବୀ ସ୍ୱ ଆତ୍ମଚରିତରେ ଉଲ୍ଲେଖ ରକିଛନ୍ତି । ରାଜାଙ୍କର ଦେଶପ୍ରେମ ଓ ଉଦାରଗୁଣ ଯୋଗୁଁ ହି ତାଙ୍କୁ ଦେଶାନ୍ତରୀ ହେବାକୁ ପଡ଼ିଲା । ସକଳ କ୍ଷମତାରୁ ଚ୍ୟୁତ ହୋଇ ପରିବାର ସହ ୧୯୪୪ ମସିହାରୁ ସେ ଢେଙ୍କାନାଳ ବାହାରେ ଯାଯାବର ଜୀବନ କଟାଇଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଇଂଲଣ୍ଡ ବିଜୟ ଲାଭ କରିଥିଲେହେଁ ଆଜାଦ୍‌ହିନ୍ଦ୍ ଫୌଜଙ୍କ ଆକ୍ରମଣ ଓ ଭାରତଛାଡ଼ ଆନ୍ଦୋଳନରେ ଭୀତତ୍ରସ୍ତ ହୋଇପଡ଼ିଥିଲା । ଯୁଦ୍ଧ ଶେଷରେ ମଧ୍ୟ ଇଂଲଣ୍ଡର ଆଭ୍ୟନ୍ତରୀଣ ଅବସ୍ଥା ବିପର୍ଯ୍ୟସ୍ତ ହୋଇପଡ଼ିଥିଲା । ଠିକ୍ ଏହି ସମୟରେ ୧୯୪୫ରେ ଲର୍ଡ଼ୱାଭେଲ ଭାରତର ବଡ଼ଲାଟ ହୋଇ ଆସିଲେ । କଂଗ୍ରେସ ନେତାମାନେ ମୁକ୍ତ ହେଲେ ଏବଂ ଭାରତରେ ରାଜନୈତିକ ପରିବର୍ତ୍ତନର ସୂତ୍ରପାତ ଘଟିଲା । ପ୍ରଦେଶମାନଙ୍କରେ ନିର୍ବାଚନ ହୋଇ ନୂତନ ମନ୍ତ୍ରୀମଣ୍ଡଳମାନ ଗଠନ ହେଲା । ଓଡ଼ିଶାରେ ମଧ୍ୟ କଂଗ୍ରେସଦଳ ନିର୍ବାଚନ ଜିତି ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଠନ ହେଲା । ସେହିବର୍ଷ ଢେଙ୍କାନାଳ ରାଜାଙ୍କ ଉପରୁ ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କ ପ୍ରତିବନ୍ଧକ ଉଠାଇ ଦିଆଗଲା, ଇଂରେଜ ପ୍ରଶାସକବୃନ୍ଦ ରାଜ୍ୟରୁ ବିଦାହେଲେ ତଥା ରାଜା ଶଙ୍କର ପ୍ରତାପ ଢେଙ୍କାନାଳ ଫେରିଆସି ପୁନଃ କ୍ଷମତାସୀନ ହେଲେ। ଭବଦେବ ସରକାର ନୂତନ ଦେବାନ୍ ଭାବରେ ନିଯୁକ୍ତି ପାଇଲେ । ୧୯୪୬ ଅକ୍ଟୋବର ଛଅତାରିଖ ପବିତ୍ର ବିଜୟାଦଶମୀ ତିଥିରେ ରାଜା ଶଙ୍କର ପ୍ରତାପ ଦରବାରର ସ୍ୱତନ୍ତ୍ର ଅଧିବେଶନ ବସାଇ ରାଜ୍ୟର ମୁଖ୍ୟ ନାଗରିକବୃନ୍ଦଙ୍କୁ ନିମନ୍ତ୍ରଣ କରିଥିଲେ । ଏହି ଅବସରରେ ରାଜାସାହେବ ସମଗ୍ର ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ଇଂରାଜୀରେ ଏକ ଅଭିଭାଷଣ ପ୍ରଦାନ କରିଥିଲେ । ଏହି ଅଭିଭାଷଣରେ ରାଜା ପ୍ରଜାବର୍ଗଙ୍କୁ Bill of right, civil liberty ଓ ଆଇନ୍‌ର ଶାସନ ଦେବାକଥା ଉଦ୍‌ଘୋଷଣା କରିଥିଲେ ।

ରାଜାଙ୍କର ଏହି ଉଦ୍‌ଘୋଷଣା ଢେଙ୍କାନାଳ ଷ୍ଟେଟ୍‌ର ସ୍ୱତନ୍ତ୍ର ଗେଜେଟ୍‌ରେ "Address of the ruler, Dhenkanal state in durbar held on 6.10.46." ଶିରୋନାମାରେ ପ୍ରକାଶିତ ହୋଇଥିଲା ।ଏତଦ୍‌ଭିନ୍ନ ପୋଲିସ୍ ପ୍ରଶାସନର ଉନ୍ନତ କରିବା ତଥା ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ନିମିତ୍ତ ରାଜା ବଦ୍ଧପରିକର ବୋଲି ଘୋଷଣା କରାଯାଇଥିଲା । ଉଦ୍‌ଘୋଷଣାରେ କେତେଗୋଟି ପ୍ରଜାହିତକର ଯୋଜନାର ଉଦାହରଣ ମଧ୍ୟ ପ୍ରଦାନ କରାଯାଇଥିଲା ।

ଇତ୍ୟବସରରେ ଇଂଲଣ୍ଡରେ ଶ୍ରମିକଦଳ ଶାସନଭାର ଗ୍ରହଣକଲେ । ୧୯୪୬ରେ ଭାରତର ସ୍ୱାଧୀନତା ନିମିତ୍ତ ଇଂଲଣ୍ଡର ସରକାରୀ ପ୍ରତିନିଧି ଚିନ୍ତା ଓ ଯୋଜନା କଲେ । ଦୁର୍ଭାଗ୍ୟର ବିଷୟ, ସେତେବେଳକୁ ମୁସ୍‌ଲିମ୍‌ଲିଗ୍ ଭାରତକୁ ହିନ୍ଦୁସ୍ଥାନ ଓ ପାକିସ୍ଥାନ ଦୁଇଭାଗରେ ବିଭକ୍ତ କରିବାକୁ ଦାବୀ କଲେ । ଏହାପରେ ବଙ୍ଗ, ବିହାର ଓ ପଞ୍ଜାବରେ ହିନ୍ଦୁମୁସଲମାନ ସଂଘର୍ଷ ଘଟି ବ୍ୟାପକ ଧନଜୀବନ କ୍ଷୟ ହେଲା, ଅବସ୍ଥା ଗୁରୁତର ଆକାର ଧାରଣ କରିବାକୁ ଲର୍ଡ୍‌ଓ୍ୱାଭେଲ୍‌ଙ୍କୁ ବଡ଼ଲାଟ୍ ପଦବୀରୁ ହଟାଇ ଇଂରେଜ ପ୍ରଶାସକ ଲର୍ଡ୍‌ମାଉଣ୍ଟ ବାଟେନ୍‌ଙ୍କୁ ବଡ଼ଲାଟ୍ ପଦବୀରେ ଅବସ୍ଥାପିତ କଲେ । କଂଗ୍ରେସ ଓ ମୁସଲିମ୍‌ଲିଗ୍‌ଙ୍କ ସ୍ୱୀକୃତି ଅନୁସାରେ ଭାରତ ଦୁଇଭାଗରେ ବିଭକ୍ତ ହେଲା । ତଦନୁସାରେ ଭାରତ ସ୍ୱାଧୀନତା ଆଇନ୍ ବ୍ରିଟିଶ୍ ପାର୍ଲିଆମେଣ୍ଟରେ ପାଶ୍ ହେଲା ଏବଂ ୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ଇଂରେଜଶାସନରୁ ମୁକ୍ତ ହୋଇ ସ୍ୱାଧୀନ ହେଲା । କିନ୍ତୁ ଇଂରେଜମାନେ ଭାରତ ଭୂଖଣ୍ଡରେ ଥିବା ପ୍ରାୟ ଛଅଶହ ଦେଶୀୟ ରାଜ୍ୟର ପୂର୍ବସନନ୍ଦ ପ୍ରତ୍ୟାହାର କରିଦେଇ ସ୍ୱାଧୀନ କରିଦେଲେ । ଓଡ଼ିଶାର ଛବିଶଗୋଟି ଗଡ଼ଜାତ ମଧ୍ୟ ସ୍ୱାଧୀନ ହୋଇଗଲେ । ଦେଶୀୟ ରାଜ୍ୟସମୂହରେ ରାଜନୈତିକ ଦଳ ଓ ପ୍ରଜାମଣ୍ଡଳକର୍ମୀ ତଥା ସଂଗଠନ ସକ୍ରିୟ ହୋଇଉଠିଲେ । ଅଧିକାଂଶ ଦେଶୀୟ ରାଜ୍ୟରେ ମନୋନୀତ ବା ନିର୍ବାଚିତ ସଦସ୍ୟଙ୍କୁ ନେଇ ରାଜ୍ୟ କାଉନ୍‌ସିଲ୍ ବା ପ୍ରଜା କାଉନ୍‌ସିଲ୍ ଗଠନ ହେଲା, ଶାସନଭାର ଏହି କାଉନ୍‌ସିଲ୍ ହାତରେ ରହିଲା ଏବଂ ରାଜା ନାମକୁ ମାତ୍ର ଶାସକ ରହିଲେ । ଏହି ପରିବର୍ତ୍ତନ ପରିସ୍ଥିତିରେ ଗଡ଼ଜାତ ସମୂହର ସ୍ଥିତି ଏବଂ ପ୍ରଜାଙ୍କ ସ୍ଥିତି ନେଇ ଅନେକ ଆଶା ଆଶଙ୍କା ଉପୁଜିଲା ।

୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ସମେତ ସମସ୍ତ ଗଡ଼ଜାତ ସ୍ୱାଧୀନ ହେଲେ । ଏହି ଅବସରରେ ଢେଙ୍କନାଳର ସର୍ବତ୍ର ପ୍ରଥମ ସ୍ୱାଧୀନତା ଦିବସ ପାଳନ କରାଯାଇଥିଲା । ଢେଙ୍କାନାଳ କଚେରୀରେ ଜାତୀୟ ପତାକା

ଉଡ଼ାଯାଇ ଜାକଜମକରେ ସ୍ୱାଧୀନତା ଦିବସ ପାଳନ କରାଯାଇଥିଲା । ରାଜପ୍ରାସାଦରେ ମଧ୍ୟ ମହାସମାରୋହରେ ସ୍ୱାଧୀନତା ଦିବସ ପାଳନ ହୋଇଥିଲା । ଏତଦ୍‌ଭିନ୍ନ ଢେଙ୍କାନାଳ ଉଚ୍ଚଇଂରାଜୀ ବିଦ୍ୟାଳୟ, ଜର୍ଜ ଉ:ପ୍ରା: ବିଦ୍ୟାଳୟ, ଭୁବନ ମଧ୍ୟଇଂରାଜୀ ବିଦ୍ୟାଳୟ, ମାର୍ଥାପୁର ମଧ୍ୟଇଂରାଜୀ ବିଦ୍ୟାଳୟ, କାମାକ୍ଷାନଗର କଚେରୀ, କାମାକ୍ଷାନଗର ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରଭୃତିରେ ଜାତୀୟ ପତାକା ଉତ୍ତୋଳନ କରାଯାଇଥିଲା। ପ୍ରଜାମଣ୍ଡଳକର୍ମୀମାନେ ଆନନ୍ଦ ଓ ଉତ୍ସାହର ସହିତ ତ୍ରିରଙ୍ଗା ଜାତୀୟ ପତାକା ଉଡ଼ାଇ ରାଜ୍ୟର ପ୍ରମୁଖ ସ୍ଥାନମାନଙ୍କରେ ସ୍ୱାଧୀନତା ଦିବସ ପାଳନ କରିଥିଲେ । ଜାତୀୟ ସଂଗୀତଗାନ, ଜୟଧ୍ୱନି ଓ ଦେଶାତ୍ମବୋଧକ ସଂଗୀତ ଗାନରେ ଗଗନ ପବନ ପ୍ରକଂପିତ ହେଲା । ବିଭିନ୍ନ ପ୍ରମୁଖସ୍ଥାନ ଓ ବିଦ୍ୟାଳୟ ସ୍ୱମୂହରେ ନେତୃବୃନ୍ଦ ସ୍ୱାଧୀନତା ଆନ୍ଦୋଳନ ସଂପର୍କରେ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଲେ । ଶିକ୍ଷକମାନେ ଛାତ୍ରଛାତ୍ରୀଙ୍କୁ ଜାତୀୟ ପତାକା ଓ ଜାତୀୟସଂଗୀତ ଶିକ୍ଷାଦାନ କରିବା ସହିତ ଏହାର ମହତ୍ତ୍ୱ ସଂପର୍କରେ ସୂଚନା ଦେଲେ । କେତେକ ପ୍ରଜାମଣ୍ଡଳକର୍ମୀ ସ୍ଲୋଗାନ୍‌ଦେଇ ପତାକା ଉଡ଼ାଇ ଗ୍ରାମେ ଗ୍ରାମେ ସ୍ୱାଧୀନତାର ବାର୍ତ୍ତା ପହଞ୍ଚାଇଥିଲେ ।

ସ୍ୱାଧୀନତା ପରେ ବିଭିନ୍ନ ଗଡ଼ଜାତରେ ପରିସ୍ଥିତି ଜଟିଳ ଆକାର ଧାରଣ କଲା । ବିଭିନ୍ନ ଗଡ଼ଜାତରେ ଗଠିତ ପ୍ରଜାମଣ୍ଡଳ କର୍ମୀମାନେ ସ୍ୱାଧୀନତା ପରେ ରାଜାମାନେ ଶାସନକରିବା ବରଦାସ୍ତ କରିପାରିଲେ ନାହିଁ । ଶାସନ ନିମିତ୍ତ ବିପ୍ଳବ କରିବାକୁ ସେମାନେ ଆଗଭର ହେଲେ । ଢେଙ୍କାନାଳରେ ମଧ୍ୟ ତଦନୁରୂପ ଅବସ୍ଥା ଘଟିଲା, ଢେଙ୍କାନାଳରେ ପ୍ରଜାମଣ୍ଡଳ ମୂଳରୁ ରାଜାଙ୍କ ସପକ୍ଷରେ ନଥିଲେ । ସ୍ୱାଧୀନତା ପରେ ସେମାନେ ଦାୟିତ୍ୱମୂଳକ ଶାସନ ଚାହିଁଲେ । ରାଜ୍ୟଶାସନ ଦଖଲ ନିମନ୍ତେ ପ୍ରଜାମଣ୍ଡଳ ନେତୃବର୍ଗଙ୍କ ମଧ୍ୟରେ ଦୁଇ ତିନିମାସ ଧରି ବିଚାର ଆଲୋଚନା ଚାଲିଲା । ତତ୍‌ପରେ କେତେକ ପ୍ରଜାମଣ୍ଡଳ କର୍ମୀ ରାଜାଶଙ୍କର ପ୍ରତାପଙ୍କୁ କ୍ଷମତା ହସ୍ତାନ୍ତର କରିବାକୁ ଦାବୀ କଲେ । ପ୍ରଜାମଣ୍ଡଳର ଅନ୍ୟ ଗୋଟିଏ ଦଳ ମନ୍ତ୍ରୀମଣ୍ଡଳ ଗଠନ କରିବାକୁ ଦାବୀକଲେ । ଏପରିସ୍ଥିତିରେ ରାଜାସାହେବ କଣ କରିବେ ସ୍ଥିର କରିପାରିଲେ ନାହିଁ । ଇତିମଧ୍ୟରେ ଓଡ଼ିଶାର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ନିକଟରେ କେତେକ ଗଡ଼ଜାତ ରାଜା ଓଡ଼ିଶା ସହିତ ଗଡ଼ଜାତ ମିଶ୍ରଣ ପ୍ରସ୍ତାବ ଦେଲେ ।

ଅବଶ୍ୟ କେତେକ ମୁଷ୍ଟିମେୟ ପ୍ରଜାମଣ୍ଡଳ କର୍ମୀଏହା ସପକ୍ଷରେ ନଥିଲେ । ଇଂରେଜମାନେ ଦେଶୀୟ ରାଜାମାନଙ୍କୁ ସ୍ୱାଧୀନତା ଦେବା ସହିତ ଘୋଷଣା କରିଥିଲେ ଯେ ସେମାନେ ଇଚ୍ଛାକଲେ ଭାରତ ବା ପାକିସ୍ଥାନ ଯେଉଁ ଦେଶ ସାଥୀରେ ମିଶିପାରିବେ । ତେଣୁ ଘରୋଇମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଭାରତ ସହିତ ଦେଶୀୟ ରାଜ୍ୟ ସମୂହର ମିଶ୍ରଣ ନିମିତ୍ତ ତତ୍ପର ହୋଇଉଠିଲେ । ଢେଙ୍କାନାଳ ରାଜା ପ୍ରଜାମଣ୍ଡଳ କର୍ମୀଙ୍କ ଦାବୀକୁ ପ୍ରତ୍ୟାଖ୍ୟାନ କରି ଡକ୍ଟର ହରେକୃଷ୍ଣ ମହତାବ, ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଅନ୍ୟ ରାଜାମାନଙ୍କ ସହିତ ଆଲୋଚନା କଲେ । ଡକ୍ଟର ମହତାବ ଓ ରାଜାମାନଙ୍କ ପ୍ରଚେଷ୍ଟାରେ କେନ୍ଦ୍ର ଘରୋଇମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ଭି.ପି.ମେନନ୍ କଟକ ଆସିଲେ । ସେମାନେ ୧୯୪୭ ଡିସେମ୍ବର ୧୩ ତାରିଖରେ କଟକରେ ପହଞ୍ଚିବା ପରେ ଓଡ଼ିଶା ସରକାର ଓ ରାଜାମାନଙ୍କ ସହିତ ଆଲୋଚନା କଲେ । ସେହି ସମୟରେ ଓଡ଼ିଶାର ୨୬ଟି ଗଡ଼ଜାତ ମଧ୍ୟରୁ ୧୧ଟି "କ" ଶ୍ରେଣୀ, ୧୨ଟି "ଖ" ଶ୍ରେଣୀ ଓ ୩ ଗୋଟି "ଗ" ଶ୍ରେଣୀ ଦେଶୀୟ ରାଜ୍ୟଥିଲା । ପଟେଲ୍ ପ୍ରଥମେ "କ" ଶ୍ରେଣୀ ରାଜାମାନଙ୍କ ସହିତ ଆଲୋଚନା କଲେ । ପାଟଣା ଓ କଳାହାଣ୍ଡି ରାଜାଙ୍କ ସହିତ କେତେକ ରାଜା ମିଶ୍ରଣ ସପକ୍ଷରେ ନଥିଲେ। ସେମାନେ ମିଶ୍ରଣ ବିପକ୍ଷରେ ଅନେକ ପ୍ରଶ୍ନ ଉଠାଇଲେ । ସର୍ଦ୍ଦାର ପଟେଲ ସେମାନଙ୍କୁ ଭବିଷ୍ୟତ ସଂପର୍କରେ ଚେତାବନୀ ଶୁଣାଇଲେ । ତା ୧୫/୧୨/ ୪୭ରେ ପୁନର୍ବାର ଆଲୋଚନା ହେଲା । ରାତ୍ରି ୧୦ଟା ପର୍ଯ୍ୟନ୍ତ କୌଣସି ନିଷ୍ପତ୍ତି ନିଆଯାଇପାରିଲା ନାହିଁ । ପ୍ରଥମେ ଢେଙ୍କାନାଳ ରାଜା ମିଶ୍ରଣ ସପକ୍ଷରେ ମତ ଦେଲେ । ଅଳ୍ପସମୟ ମଧ୍ୟରେ ଅନ୍ୟ ରାଜନ୍ୟବୃନ୍ଦ ମିଶ୍ରଣ ନିମିତ୍ତ ରାଜି ହୋଇଗଲେ। ପରିଶେଷରେ ୧୯୪୭ ଡିସେମ୍ବର ୧୫ ତାରିଖରେ ଗଡ଼ଜାତ ମିଶ୍ରଣଚୁକ୍ତି ସ୍ୱାକ୍ଷର ହେଲା । ଏହି ଚୁକ୍ତି ଅନୁଯାୟୀ ୧୯୪୮ ଜାନୁଆରୀ ୧ ତାରିଖରୁ ଦେଶୀୟରାଜ୍ୟଗୁଡ଼ିକ ଓଡ଼ିଶା ଶାସନରେ ବିଲୀନ ହେବାର ସ୍ଥିର ହୋଇଥିଲା ଏବଂ ରାଜାମାନେ କେତେକ ବିଶେଷ ସୁବିଧା ସୁଯୋଗ ଓ ହାତପାଣ୍ଠି ପାଇବାର ବ୍ୟବସ୍ଥା ରହିଥିଲା ।

ସେହି ଚୁକ୍ତି ଅନୁଯାୟୀ ରାଜାମାନେ ସେମାନଙ୍କର ପାରଂପରିକ ମର୍ଯ୍ୟାଦା, ପଦବୀ ଓ ସମ୍ମାନ ବଜାୟ ରଖିବେ, ସେମାନଙ୍କର ସଂପତ୍ତି ତାଲିକା

ଓ ପଦବୀ ସଂପର୍କରେ ବିବରଣୀ ପ୍ରଦାନ କରିବେ ବୋଲି ସ୍ଥିରୀକୃତ ହୋଇଥିଲା । କେବଳ ମୟୂରଭଞ୍ଜ ରାଜ୍ୟରେ ପ୍ରଜାପରିଷଦ ହାତରେ ଶାସନ ଭାର ନ୍ୟସ୍ତ ଥିବାରୁ ଏହା ବର୍ଷକ ପରେ ଓଡ଼ିଶାରେ ମିଶିଲା । ଗଡ଼ଜାତ ମିଶ୍ରଣ ଚୁକ୍ତିରେ ସମସ୍ତେ ରାଜା ଦସ୍ତଖତ କରିବାପରେ ପ୍ରତି ରାଜ୍ୟକୁ ଜଣେ ଜଣେ ପ୍ରଶାସକ ଓ କିଛି ଫୋର୍ସ ପଠାଗଲା ।

୧୯୪୮ ଜାନୁଆରୀ ୧ ତାରିଖ ପୂର୍ବରୁ ଶ୍ରୀଯୁକ୍ତ ଲୋକନାଥ ପଟ୍ଟନାୟକ ଢେଙ୍କାନାଳରେ ପ୍ରଶାସକ ଭାବରେ ନିଯୁକ୍ତ ହେଲେ । ରାଜା ଶଙ୍କର ପ୍ରତାପ ପ୍ରଜାମଣ୍ଡଳ ଦାବୀକୁ ପ୍ରତ୍ୟାଖ୍ୟାନ କରି ପ୍ରଥମେ ଗଡ଼ଜାତ ମିଶ୍ରଣ ଚୁକ୍ତିରେ ସ୍ୱାକ୍ଷର କରିଥିବାରୁ ପ୍ରଜାମଣ୍ଡଳର ଚକ୍ଷୁଶୀଳ ହୋଇଥାନ୍ତି । ପ୍ରଶାସକ ଶୀଯୁକ୍ତ ପଟ୍ଟନାୟକ ଢେଙ୍କାନାଳକୁ ଆସିବାପରେ ରାଜାଙ୍କ ନିର୍ଦ୍ଦେଶମତେ ଦେଓ୍ୱାନ୍ ଭବଦେବ ସରକାର ୧୯୪୭ ଡିସେମ୍ବର ୩୧ ତାରିଖ ମଧ୍ୟ ରାତ୍ରରେ ତାଙ୍କୁ ସାକ୍ଷାତ୍ କରି ଢେଙ୍କାନାଳ ରାଜ୍ୟର ସଂପୂର୍ଣ୍ଣ ବିବରଣୀ ବର୍ଣ୍ଣିତ ପୁସ୍ତକ (Statistical atlas of Dhenkanal) ପ୍ରଦାନ କରିବା ସହିତ ରାଜ୍ୟଭାର ସମର୍ପଣକଲେ । ନବନିଯୁକ୍ତ ପ୍ରଶାସକ ରାଜ୍ୟର ଶାସନ ବ୍ୟବସ୍ଥା, ରାଜସ୍ୱ ପ୍ରଶାସନ, ବିଚାର ବିଭାଗ, ତଉଜି ବିଭାଗ, ଟ୍ରେଜେରୀ ତଥା ଜଙ୍ଗଲ ବିଭାଗର କାର୍ଯ୍ୟାବଳୀରେ ବିସ୍ମିତ ହୋଇଯାଇଥିଲେ । ରାଜ୍ୟରେ ପୋଲିସ୍ ବିଭାଗର ଶୃଙ୍ଖଳା ପ୍ରଶାସକଙ୍କୁ ପ୍ରୀତ କରିଥିଲା । ଅଭିଲେଖାଗାର ଦେଖିଲାପରେ ଏହାକୁ ଏକ ଆଦର୍ଶ ରେକର୍ଡ଼ରୁମ୍ ବୋଲି କହିଥିଲେ । ରାଜାସାହେବ ପ୍ରଶାସକଙ୍କୁ ରାଜ୍ୟଭାର ଦେବାସହିତ ଢେଙ୍କାନାଳରେ ଅବସ୍ଥିତ ସମସ୍ତ ମଠମନ୍ଦିରର ଦାୟିତ୍ୱ ମଧ୍ୟ ଅର୍ପଣ କରିଥିଲେ । ସରକାରୀ ନିଷ୍ପତ୍ତି ଅନୁଯାୟୀ ଢେଙ୍କାନାଳ, ହିନ୍ଦୋଳ, ତାଳଚେର, ପାଲଲହଡ଼ା, ଆଠମଲିକ ଓ ରେଢ଼ାଖୋଲ ପ୍ରଭୃତି ଛଅଗୋଟି ଦେଶୀୟ ରାଜ୍ୟ ଏବଂ ଅନୁଗୁଳ ଖାସ୍‌ମାହାଲ୍‌କୁ ନେଇ ଢେଙ୍କାନାଳ ଜିଲ୍ଲା ଗଠିତ ହେଲା । ୧୯୪୯ରେ ଜିଲା ପୁନର୍ଗଠନ ସମୟରେ ରେଢ଼ାଖୋଲ ଅଞ୍ଚଳ ଢେଙ୍କାନାଳ ଜିଲାରୁ ବାଦ୍‌ଯାଇ ସମ୍ବଲପୁର ଜିଲାରେ ମିଶିଲା । ପରବର୍ତ୍ତୀ କାଳରେ ୧୯୯୪ ମସିହାରେ ଢେଙ୍କାନାଳ ଜିଲାର ଅନୁଗୁଳ, ତାଳଚେର, ପାଲଲହଡ଼ା ଓ ଆଠମଲ୍ଲିକ ଉପଖଣ୍ଡକୁ ନେଇ ନୂତନ ଭାବରେ ଅନୁଗୁଳ ଜିଲା ଗଠନ ହେଲା । ବର୍ତ୍ତମାନ ଢେଙ୍କାନାଳ, କାମାଖ୍ୟାନଗର ଓ

ହିନ୍ଦୋଳ ଉପଖଣ୍ଡକୁ ନେଇ ଢେଙ୍କାନାଳ ଜିଲାଗଠିତ । ଆଠଗୋଟି ବ୍ଲକ ଓ ଛଅଗୋଟି ତହସିଲରେ ବିଭକ୍ତ ଏହି ଜିଲାର ଆୟତନ ୪୪୫୨ ବର୍ଗକିଲୋମିଟର, ଲୋକସଂଖ୍ୟା ୧୦,୬୫,୯୮୩ ଜଣ ତଥା ଶିକ୍ଷିତ ହାର ୭୦.୧୧% ।

ମିଶ୍ରଣ ଚୁକ୍ତି ଅନୁଯାୟୀ ଢେଙ୍କାନାଳ ରାଜା ପାରମ୍ପରିକ ପଦବୀ, ମର୍ଯ୍ୟାଦା ଓ ହାତପାଣ୍ଠି ପାଇଥିଲେ । ଅବଶ୍ୟ ପରେ ତାହା ୧୯୬୮ ମସିହାଠାରୁ ହାତପାଣ୍ଠି ସହିତ କେତେକ ସ୍ୱତନ୍ତ୍ର ସୁବିଧା ପ୍ରତ୍ୟାହାର କରି ଦିଆଗଲା । ରାଜା ଶଙ୍କର ପ୍ରତାପ ସ୍ୱାଧୀନତା ପରେ ୧୯୫୭ରେ ଅନୁଷ୍ଠିତ ଦ୍ୱିତୀୟ ସାଧାରଣ ନିର୍ବାଚନରେ ଢେଙ୍କାନାଳ ନିର୍ବାଚନ ମଣ୍ଡଳୀରୁ ଓ ରାଣୀ ରତ୍ନପ୍ରଭାଦେବୀ କାମାଖ୍ୟାନଗର ନିର୍ବାଚନ ମଣ୍ଡଳୀରୁ ବିପୁଳ ଜନସମର୍ଥନ ଲାଭ କରି ଓଡ଼ିଶା ବିଧାନସଭାରୁ ନିର୍ବଚିତ ହୋଇଥିଲେ । ୧୯୬୪ରେ ମଧ ରାଜାସାହେବ ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ । ୧୯୬୫ରେ ପରଜଙ୍ଗ ଅଞ୍ଚଳ ଗସ୍ତକାଳରେ ରାଜାସାହେବଙ୍କୁ ପ୍ରଥମ ହୃଦ୍‌ଘାତ ହୋଇଥିଲା । ଏହାପରେ ସେ ଚିକିତ୍ସା ନିମିତ୍ତ କଲିକତା ଯାତ୍ରାକଲେ । କଲିକତାରେ ସୁଦକ୍ଷ ଚିକିତ୍ସକଙ୍କ ଚିକିତ୍ସା ସତ୍ତ୍ୱେ ତାଙ୍କର ଦ୍ୱିତୀୟ ହୃଦ୍‌ଘାତ ହେଲା ଏବଂ ୧୯୬୫ ଅଗଷ୍ଟ ୩ ତାରିଖରେ ସେ ତାଙ୍କ କଲିକତାସ୍ଥିତ ୧୪, କାମାକ୍‌ଷ୍ଟ୍ରୀଟ୍‌ ବାସଭବନରେ ଶେଷନିଃଶ୍ୱାସ ତ୍ୟାଗକଲେ । ରାଜାଙ୍କ ମରଶରୀର ଉଡ଼ାଜାହାଜରେ ଭୁବନେଶ୍ୱର ଓ ସ୍ୱତନ୍ତ୍ରଗାଡ଼ିରେ ଢେଙ୍କାନାଳ ଅଣାଗଲା । ହଜାର ହଜାର ଜନତା ସେମାନଙ୍କର ପ୍ରିୟରାଜା ଓ ନେତାଙ୍କ ଶେଷଦର୍ଶନ କରିବାପରେ ପାରଂପରୀକ ମର୍ଯ୍ୟାଦାରେ ରାଜଶ୍ମଶାନଠାରେ ଶେଷକୃତ୍ୟ ସଂପନ୍ନ ହେଲା । ରାଜା ଶଙ୍କର ପ୍ରତାପଙ୍କ ମୃତ୍ୟୁପରେ ରାଜ ପରଂପରା ଅନୁଯାୟୀ ତଦୀୟ ଜ୍ୟେଷ୍ଠପୁତ୍ର ପଦପଦବୀସହ ରାଜା କାମାକ୍ଷା ପ୍ରସାଦ ସିଂହଦେଓ ରାୟସିଂହ ଭ୍ରମରରେ ମହୀନ୍ଦ୍ର ବାହାଦୂର ଉପାଧି ଧାରଣକରି ରାଜପଦରେ ଅଭିଷିକ୍ତ ହେଲେ । ଅନେକ ଥର ସାଂସଦ ଓ ମନ୍ତ୍ରୀ ତଥା ଅବୈତନିକ ଉଚ୍ଚ ସମାରିକ ପଦାଧିକାରୀ ଭାବରେ (ବ୍ରିଗେଡ଼ିଇୟର) ସେ ରାଷ୍ଟ୍ରପତିଙ୍କ ଅତିବିଶିଷ୍ଟ ସେବାପଦକ ଲାଭ କରିପାରିଛନ୍ତି ।



# ଢେଙ୍କାନାଳର ସାଂସ୍କୃତିକ ଇତିହାସ

ଶ୍ୟାମଳବନାନୀ ତଥା ପର୍ବତ ପରିଶୋଭିତ ଢେଙ୍କାନାଳ ପ୍ରାଚୀନ କାଳରୁ ସାଂସ୍କୃତିକ ପୀଠ ରୂପେ ମହିମାନ୍ୱିତା । ଶବରବୀର ଢେଙ୍କା ନାମରେ ନାମିତ ଏବଂ ଓଡ଼ିଶାର ମଧ୍ୟାଞ୍ଚଳରେ ଅବସ୍ଥିତ ଏହି ଭୂଖଣ୍ଡରେ ଅନାର୍ଯ୍ୟ, ଆର୍ଯ୍ୟ, ନାଗ, ଶୈବ, ଶାକ୍ତ, ବୈଷ୍ଣବ ଓ ମହିମା ସଂସ୍କୃତିର ମହାମିଳନ ସଂଘଟିତ ହୋଇ ଏକ ସମନ୍ୱୟାତ୍ମକ ସାଂସ୍କୃତିକଧାରା ପ୍ରବାହିତ । କ୍ଷୁଦ୍ର କ୍ଷୁଦ୍ର ଜନପଦ ସମୂହର ମିଶ୍ରଣରେ ଗଠିତ ଢେଙ୍କାନାଳ ମଧ୍ୟଯୁଗରୁ ଏକ ସାଂସ୍କୃତିକ ଗୌରବମଣ୍ଡିତ, ସାମରିକ ଶକ୍ତିସଂପନ୍ନ, ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ ବିଭବଶାଳୀ ଭୂଖଣ୍ଡରୂପେ ଖ୍ୟାତି ଲାଭ କରିଥିଲା । ଏହାର ପ୍ରାଚୀନ କୀର୍ତ୍ତୀ ଓ ପ୍ରତ୍ନସଂପଦ, ଶିଳାଲେଖ, ତାମ୍ରପତ୍ର ସାହିତ୍ୟ ତଥା ଲୋକକଥାରେ ଐତିହ୍ୟ ଓ ସଂସ୍କୃତିର ଗୌରବ ଲୁକ୍‌କାୟିତ ।

ଆଯୌତର ସଂସ୍କୃତି ହିଁ ଢେଙ୍କାନାଳର ଆଦି ସଂସ୍କୃତି । ଭୌଗୋଳିକ ଦୃଷ୍ଟିକୋଣରୁ ଢେଙ୍କାନାଳର ମଧ୍ୟ ଭାଗରେ ପ୍ରବାହିତ ବ୍ରାହ୍ମଣୀ ନଦୀର ଉତ୍ତର ଦିଗ ଅର୍ଥାତ୍ କାମାକ୍ଷାନଗର ଉପଖଣ୍ଡର ପ୍ରାଚୀନ ସଂସ୍କୃତି ହେଉଛି ଉତ୍ତର ବ୍ରାହ୍ମଣୀୟ ଆଯୌତର ସଂସ୍କୃତି ଏବଂ ଦକ୍ଷିଣଦିଗ ଅର୍ଥାତ୍ ଢେଙ୍କାନାଳ ଉପଖଣ୍ଡର ପ୍ରାଚୀନ ସଂସ୍କୃତି ହେଉଛି ଦକ୍ଷିଣ ବ୍ରାହ୍ମଣୀୟ ଅଯୌତର ସଂସ୍କୃତି । ବ୍ରାହ୍ମଣୀର ଉତ୍ତର ପାର୍ଶ୍ୱରେ ନାନାଦି ଆଦିବାସୀ ଜନଜାତି ବାସ କରୁଥିଲେ । ସେମାନେ ହେଉଛନ୍ତି ଜୁଆଙ୍ଗ, ମହ୍ଲାର, ମୁଣ୍ଡ, ଶବର, କନ୍ଧ ପ୍ରଭୃତି ଏବଂ ସେମାନଙ୍କର ପ୍ରତ୍ୟେକ ସଂପ୍ରଦାୟର ଭିନ୍ନ ଭିନ୍ନ ସଂସ୍କୃତି ରହିଥିଲା । ସୂଚନା ଯୋଗ୍ୟ ଯେ, ତାମ୍ର ଅଭିଲେଖରୁ ଉପଲବ୍ଧ ଯେ ଅଠର ଜଣ ଗଣ୍ଡ ଦଳପତି ଏହି ଉତ୍ତରାଞ୍ଚଳକୁ ଶାସନ କରୁଥିଲେ । ଅତଏବ, ନିଃସନ୍ଦେହରେ ବ୍ୟକ୍ତ କରାଯାଇ ପାରେ ଯେ ଉତ୍ତରାଞ୍ଚଳରେ ପ୍ରତ୍ୟେକ ଆଦିବାସୀ ସଂପ୍ରଦାୟର ନିଜସ୍ୱ ସଂସ୍କୃତି ରହିଥିଲେହେଁ ଗଣ୍ଡସଂସ୍କୃତି ପ୍ରାଧାନ୍ୟ ଲାଭ କଲା । ଗଣ୍ଡମାନେ ମୂଖ୍ୟତଃ ଦେବୀଉପାସକ, କୃଷି ସେମାନଙ୍କ ଜୀବିକା ଏବଂ ମୃଗୟା ସେମାନଙ୍କର ସଉକ । ସେମାନଙ୍କର ଆଚରଣ କ୍ଷତ୍ରିୟୋଚିତ । ଏବେ ମଧ୍ୟ କାମାକ୍ଷାନଗର ଉପଖଣ୍ଡର ବିଭିନ୍ନ ଗ୍ରାମାମାନଙ୍କରେ ଖଣ୍ଡମାନେ ନିବାସ କରୁଛନ୍ତି । ପୂର୍ବ ଅଧ୍ୟାୟରେ ତତ୍ ସଂପର୍କରେ ଆଲୋଚନା

ହୋଇଥିବାରୁ ବର୍ଣ୍ଣନା ଅନାବଶ୍ୟକ । ହୃଦ୍‌ବୋଧ ହୁଏ, ଉତ୍ତରାଞ୍ଚଳର ପ୍ରତ୍ୟେକ ଜନଜାତିର ସଂସ୍କୃତି ଗଣ୍ଡସଂସ୍କୃତି ଦ୍ୱାରା ପ୍ରଭାବିତ ହୋଇଥିଲା । ବ୍ରାହ୍ମଣୀର ଦକ୍ଷିଣାଞ୍ଚଳରେ ବିଭିନ୍ନ ଜନଜାତି ଯଥା– ଶବର, କନ୍ଧ, ତଅଁଳା, ଜୁଆଙ୍ଗ ଓ ଡମ (ଗୋଦରା) ସଂସ୍କୃତିର ପ୍ରଭାବ ରହିଥିଲା । ବର୍ତ୍ତମାନର ଢେଙ୍କାନାଳର ଶବର ସଂସ୍କୃତି ଓ ବଣିଆପଡ଼ା ନିକଟସ୍ଥ ଡମରାଜା କଟକରେ ଡମସଂସ୍କୃତି ଦକ୍ଷିଣାଞ୍ଚଳରେ ପ୍ରାଧାନ୍ୟ ଲାଭକରିଥିଲା । ଶବରମାନେ ଯେପରି ଦେବୀ ଉପାସକ, ଡମମାନେ ମଧ୍ୟ ତଦ୍ରୂପ ଦେବୀଭକ୍ତ । ସେମାନଙ୍କ ଦେବୀ ଉପାସନା ଜୁଆଙ୍ଗ, କନ୍ଧ, ତଅଁଳା ପ୍ରଭୃତି ଜନଜାତିଙ୍କୁ ପ୍ରଭାବିତ କରିଥିଲା । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ, ପ୍ରାଚୀନ କାଳରେ ଢେଙ୍କାନାଳରେ ଗଣ୍ଡ, ଶବର, ଡମ ସଂସ୍କୃତିର ପ୍ରାଧାନ୍ୟ ସହିତ ପ୍ରତ୍ୟେକ ଅଣଆର୍ଯ୍ୟ ସଂସ୍କୃତି ବିକାଶ ଲାଭ କରିଥିଲା ।

ପରବର୍ତ୍ତୀ କାଳରେ ଆର୍ଯ୍ୟ ଜାତିର ଏକ ବିଶାଳଗୋଷ୍ଠୀ ବିନ୍ଧ୍ୟାଞ୍ଚଳ ଅତିକ୍ରମ କରି ପ୍ରଥମେ ଓଡ଼ିଶାର ବ୍ରାହ୍ମଣୀ ଅବବାହିକାରେ ବସବାସ କଲେ । ପରେ ପରେ ଉପକୂଳ ଓଡ଼ିଶାରେ ସେମାନେ ସ୍ଥାୟୀ ବସବାସ କଲେ । ବ୍ରାହ୍ମଣୀ ଅବମହିକାର ଆଦ୍ୟ ନିବାସ କାଳରେ ଚାଷ କରି ଜୀବିକା ନିର୍ବାହ କରୁଥିବାରୁ ସେମାନଙ୍କୁ ଓଡ଼ କୁହାଯାଉଥିଲା । ଆଦିବାସୀ ଭାଷାରେ ଓଡ଼ ଅର୍ଥାତ୍ ଚାଷ । ଓଡ଼ମାନଙ୍କର ବ୍ରାହ୍ମଣୀ ଅବବାହିକାର ପ୍ରାଚୀନ ନିଦର୍ଶନ ହେଉଛି ବିକ୍ରମଖୋଲ ଶିଳାଲେଖ। ପୁରାଣ ସାହିତ୍ୟରେ ଓଡ୍ରମାନଙ୍କୁ ଦଶାର୍ଣ୍ଣ ଓ ବ୍ରାହ୍ମଣୀନଦୀକୁ ଦଶାର୍ଣ୍ଣ ନଦୀ କୁହାଯାଇଯାଇଛି । ଅନୁମିତ ହୁଏ, ଓଡ୍ର ଜାତିର ଏକ ଶାଖା ବ୍ରାହ୍ମଣୀକୂଳରେ ସ୍ଥାୟୀ ବସବାସ କରି ଚାଷକାର୍ଯ୍ୟ ଆରମ୍ଭ କଲେ । ସେହିମାନେ ହିଁ ଢେଙ୍କାନାଳ ଅଞ୍ଚଳରେ ଓଡ୍ର ସଂସ୍କୃତିର ପ୍ରସାର ଘଟାଇଥିଲେ । ଅଦ୍ୟାବଧି ଏହି ଅଞ୍ଚଳରେ ଓଡ୍ର ଜାତିର ବଂଶଧର ବାସ କରୁଅଛନ୍ତି ତଥା ସେମାନଙ୍କର ଗୋତ୍ର ନାଗସ । ଓଡ୍ରମାନେ ଯଥାର୍ଥରେ ନାଗ ଉପାସକ ଥିଲେ । ପୂର୍ବ ଅଧ୍ୟାୟ ମାନଙ୍କରେ ନାଗସଭ୍ୟତା ସଂପର୍କରେ ବିସ୍ତାର ଆଲୋଚନା ହୋଇଛି । ନାଗନା, ବଳଦେବଜୀଉ, ଗିରିଦୁର୍ଗ ଡମରାଜା କଟକ ପ୍ରଭୃତି ନାଗସଂସ୍କୃତିର ସ୍ମାରକୀ । ଓଡ୍ରମାନେ ଓଡ଼ିଶା ସ୍ୱାଭିମାନରେ ବ୍ରାହ୍ମଣୀ ଅବବାହିକାରେ ଅନେକ ଗ୍ରାମ ବସାଇଥିଲେ । ସେଥିରୁ ଅନେକ ବିଲୁପ୍ତ ହୋଇଥିଲେ ହେଁ, ଓଡ଼ସିଂହା, ଓଡ଼ିଶ, ଓଡ଼ାପଡ଼ା, ଓଡ଼ିଙ୍ଗା ପ୍ରଭୃତି ଅନେକ ଗ୍ରାମ ଅଦ୍ୟାବଧି ବିଦ୍ୟମାନ । ଓଡ୍ରମାନଙ୍କର ସଂସ୍କୃତିହିଁ ଥିଲା କୃଷିଭିତ୍ତିକ ସଂସ୍କୃତି । ଆଦିବାସୀ ସଂସ୍କୃତିର ପ୍ରଭାବରେ

ଓଡ୍ରମାନେ ମଧ୍ୟ ନାଗଦେବଦେବୀ ସହିତ ଅନ୍ୟାନ୍ୟ ଦେବଦେବୀ ଉପାସନା କରିଥିଲେ । ଓଡ୍ରମାନଙ୍କ ସଂସ୍ପର୍ଶରେ ଆସି ଆଦିବାସୀମାନେ ମଧ୍ୟ ଚାଷ ଆରମ୍ଭ କରିଥିଲେ ।

ଚତୁର୍ଥ-ପଞ୍ଚମ ଶତାବ୍ଦୀରୁ ଲକୁଳୀଶ ସଂପ୍ରଦାୟ ବ୍ରାହ୍ମଣୀ ଅବବାହିକାରେ ଶୈବଧର୍ମ ପ୍ରଚାର କରିଥିଲେ । ଏହାରି ପ୍ରଭାବରେ ନାଗ ସଂସ୍କୃତିର କେନ୍ଦ୍ରବିନ୍ଦୁ ନାଗନାଥେଶ୍ୱର ପ୍ରସିଦ୍ଧ ଦ୍ୱାଦଶଜ୍ୟୋତିର୍ଲିଙ୍ଗ ମଧ୍ୟରେ ମାନ୍ୟତା ଲାଭକଲେ, ଯାହାକି ପୂର୍ବରୁ ଆଲୋକିତ । କ୍ରମେ ବିଭିନ୍ନ ସ୍ଥାନରେ ଶିବଲିଙ୍ଗ ସ୍ଥାପନା ହେଲା । ଅନେକ ଗବେଷକଙ୍କର ବିଶ୍ୱାସ ଶୈବାଚାର୍ଯ୍ୟବୃନ୍ଦ ନାଗସଂସ୍କୃତିକୁ ନିଜର କରିବାକୁ ଶିବଲିଙ୍ଗ ସହିତ ନାଗ ପୂଜା ଆରମ୍ଭ କରିଥିଲେ । କିନ୍ତୁ ପ୍ରକୃତ ପକ୍ଷେ, ଶିବ ଓ ଲିଙ୍ଗ ହେଉଛନ୍ତି ସୃଷ୍ଟିର ପ୍ରତୀକ ଏବଂ ମହାକାଳ ନାଗ ତାଙ୍କୁ ବେଷ୍ଟନ କରିଛି ଅର୍ଥାତ୍ ପ୍ରତ୍ୟେକ ସୃଷ୍ଟିର ଅନ୍ତ ବା ମୃତ୍ୟୁ ରହିଛି । ଏହି ଚେତନାର ସ୍ପର୍ଶରେ ଲିଙ୍ଗ ଉପାସାନାର ପ୍ରସାର ଘଟିଥିଲା । ଶୈବସଂସ୍କୃତିର ଉତ୍ତରଣରେ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଢେଙ୍କାନାଳ ଅଞ୍ଚଳରେ ବହୁଶିବଲିଙ୍ଗ ପ୍ରତିଷ୍ଠା ହୋଇଥିଲା । ଏହି ସମୟରେ କପିଳାସର ଶିଖରେଶ୍ୱର ବା ଚନ୍ଦ୍ରଶେଖର, ଏକ ଘରିଆର କନକେଶ୍ୱର, ମାର୍ଥାପୁରଶାସନର ବାଲୁଙ୍କେଶ୍ୱର, ଗୋରଡ଼ିଆର ଉଗ୍ରେସ୍ୱର ପ୍ରଭୃତି ଅନେକ ଶିବଲିଙ୍ଗ ପ୍ରତିଷ୍ଠାହୋଇ ସମଗ୍ର ଢେଙ୍କାନାଳ ଅଞ୍ଚଳ ଶୈବସାମ୍ରାଜ୍ୟରେ ପରିଣତ ହୋଇଥିଲା । ''ଗୌରବର କଥା, ଏହି ସମୟରେ ନାଧରା ରାମଚଣ୍ଡୀ, କୁଆଁଲୋ ସ୍ତମ୍ଭେଶ୍ୱରୀ, କପିଳାସ ପାର୍ବତୀ ଓ ଭୁବନେଶ୍ୱରୀ, ଢେଙ୍କାନାଳରେ ଜେନାଦେଇ, ମାର୍ଥାପୁରରେ ବ୍ରାହ୍ମଣୀଦେବୀ, ଶିବୁଳାଗଡ଼ରେ କାଳୁଣୀ ପ୍ରଭୃତି ଶକ୍ତିପୀଠ ସଂସ୍ଥାପିତ ହୋଇ ଢେଙ୍କାନାଳ ମାଟିରେ ଶାକ୍ତ ସଂସ୍କୃତିର ପ୍ରସାର ଘଟିଥିଲା । ଶୈବ ଓ ଶାକ୍ତ ସଂସ୍କୃତିର ମିଳନରେ କପିଳାସରୁ ଦଣ୍ଡନାଚର ଅୟମାରମ୍ଭ ହୋଇ ସମଗ୍ର ଢେଙ୍କାନାଳ ଅଞ୍ଚଳରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ଏତଦ୍‌ଭିନ୍ନ ନାଗନାର ପିଠିପୋଡ଼ାଯାତ୍ରା ଢେଙ୍କାନାଳର ମେରୁଯାତ୍ରା ଓ ବିଭିନ୍ନ ସ୍ଥାନରେ ଝାମୁଯାତ୍ରା ଢେଙ୍କାନାଳର ଜନଜୀବନକୁ ପ୍ରଭାବିତ କରିଥିଲା । ବିଭିନ୍ନ ଶିବମନ୍ଦିରରେ ସମାରୋହରେ ଶିବରାତ୍ରି, ଚତୁର୍ଦ୍ଦଶୀ ବେଢ଼ା ପରିକ୍ରମା ଓ ମହାଦୀପ ପ୍ରଜ୍ୱଳନର ପରଂପରା ଏହି ସମୟରୁ ଆରମ୍ଭ ହୋଇଥିଲା । ଜନସାଧାରଣ ମଧ୍ୟ ଶିବରାତ୍ରି ବ୍ୟତୀତ ଅନ୍ୟାନ୍ୟ ଶୈବ ଓ ଶାକ୍ତ ବ୍ରତ ପାଳନ କରିଥିଲେ ।

ସପ୍ତମ ଶତାବ୍ଦୀଠାରୁ ଦଶମ ଶତାବ୍ଦୀ ମଧ୍ୟରେ ଢେଙ୍କାନାଳ ମାଟିରେ ଶୈବ ଓ ବୈଷ୍ଣବ ସଂସ୍କୃତିର ମିଳନ ଘଟିଥିଲା । ବ୍ରାହ୍ମଣୀ ଉପତ୍ୟକାର ସରାଙ୍ଗ ଓ ଭୀମକାଣ୍ଡଠାରେ ନିର୍ମିତ ବିଶାଳକାୟ ବିଷ୍ଣୁମୂର୍ତ୍ତି ଏହି ସମୟର କୀର୍ତ୍ତୀ । ଶୈବ ଓ ବୈଷ୍ଣବ ସଂସ୍କୃତିର ମିଳନାତ୍ମକ ପ୍ରକ୍ରିୟାରେ ପ୍ରଭାବିତ ହୋଇ ସୋମବଂଶୀ ରାଜା ଚନ୍ଦ୍ରକେଶରୀ ଚାନ୍ଦପୁର (ଚନ୍ଦ୍ରପୁର) ଠାରେ ଏକ ହରିହରମନ୍ଦିର ନିର୍ମାଣ କରିଥିଲେ । ପରବର୍ତ୍ତୀ କାଳରେ ମନ୍ଦିରଟି ଭାଙ୍ଗି ଯାଇଥିଲେ ହେଁ ହରିହର ମୂର୍ତ୍ତି ଅଦ୍ୟାବଧି ନୀଧରା ରାମଚଣ୍ଡୀ ପୀଠରେ ବିରାଜିତ । କପିଳାସ ପୀଠରେ ମଧ୍ୟ ଚନ୍ଦ୍ରକେଶରୀ ପ୍ରଥମ ଶିବମନ୍ଦିର ନିର୍ମାଣ ପୂର୍ବକ ହରିହର ଉପାସନା ପ୍ରବର୍ତ୍ତନ କରିଥିଲେ । ମନ୍ଦିର ଚୂଡ଼ାରେ ଅର୍ଦ୍ଧଚକ୍ରପୀନାକ ସ୍ଥାପନ, ବୃଷଭ ଓ ଗରୁଡ଼ଙ୍କର ଯୁଗଳମୂର୍ତ୍ତି ସ୍ଥାପନ ତଥା ଶିବପ୍ରସାଦରେ ତୁଳସୀ ଓ ବେଲପତ୍ର ପକାଇ ଭୋଗଲାଗିବା ଏବଂ ମନ୍ଦିର ମଧ୍ୟରେ ନାଗବେଷ୍ଟିତ ବୃହତ୍ ଶାଳଗ୍ରାମ ପୂଜା ସେହି ଯୁଗରୁ ଆରମ୍ଭ ହୋଇଥିଲା । ଏହି ଯୁଗରେ ଢେଙ୍କାନାଳରେ ବୌଦ୍ଧ ସଂସ୍କୃତିର ଅନୁପ୍ରବେଶ ଘଟିଥିଲା । ତତ୍‌କାଳୀନ ବିଖ୍ୟାତ ସ୍ଥପତି ଅମୃଭଟ୍ଟାରକ ବ୍ରାହ୍ମଣୀ ତଟସ୍ଥ ଜୟାଶ୍ରମ ବୌଦ୍ଧ ବିହାରରେ ବୌଦ୍ଧମୂର୍ତ୍ତି ନିର୍ମାଣ କରିଥିଲେ । ସେହି ମୂର୍ତ୍ତି ଏଅବଧି ବିଦ୍ୟାମନ । ଏତଦ୍‌ଭିନ୍ନ ବ୍ରାହ୍ମଣୀ ତଟରେ ଅନେକ ବୌଦ୍ଧସ୍ତୁପ ନିର୍ମାଣହୋଇଥିଲା । ଅବଶ୍ୟ ପରବର୍ତ୍ତୀ କାଳରେ ଶୈବସଂସ୍କୃତି ପ୍ରଭାବରେ ଜୟାଶ୍ରମ ବୌଦ୍ଧବିହାର ପଣ୍ଡିମେଶ୍ୱର ଶିବମନ୍ଦିରରେ ଓ ଭୁବନ ସନ୍ନିକଟ ବୌଦ୍ଧସ୍ତୁପ ବୁଦ୍ଧେଶ୍ୱର ଶିବଲିଙ୍ଗରେ ରୂପାୟିତ ହୋଇଥିଲା । ବ୍ରାହ୍ମଣୀ ଅବବାହିକାରେ ଅନେକ ବୌଦ୍ଧବିହାର ସଂପ୍ରତି ବିଲୁପ୍ତ । ପ୍ରମାଣିତ ହୁଏ, ବ୍ରାହ୍ମଣୀ ଅବବାହିକାରେ ଶୈବଶାକ୍ତବୈଷ୍ଣବ ଓ ବୌଦ୍ଧ ସଂସ୍କୃତିର ସମ୍ମିଶ୍ରଣରେ ଏକ ସମନ୍ୱୟାତ୍ମକ ସାଂସ୍କୃତିକ ଧାରା ପ୍ରବାହିତ ହୋଇଥିଲା । ଏହି ଅଞ୍ଚଳରୁ ପ୍ରାପ୍ତ ଭୌମକର ବଂଶ ଓ ସ୍ତମ୍ଭବଂଶର ତାମ୍ରଶାସନରୁ ଏହାର ସତ୍ୟତା ଅନୁଭୂତ ହୋଇଥାଏ । ଅଧିକନ୍ତୁ, ପ୍ରାପ୍ତତାମ୍ରଲେଖରୁ ଉପଲବ୍‌ଧ ହୋଇଥାଏ ଯେ ସେହି ସମୟରେ ଢେଙ୍କାନାଳରେ ବୈଦିକ ସଂସ୍କୃତିର ପ୍ରସାର ଘଟିଥିଲା । ଏହି ସମୟରେ ବ୍ରାହ୍ମଣୀ ଅବବାହିକାରେ ମାର୍ଥାପୁର, ମୁଣ୍ଡଇଲୋ, କାକୁଡ଼ି ପ୍ରଭୃତି ବ୍ରାହ୍ମଣ ଶାସନ ପ୍ରତିଷ୍ଠିତ ହୋଇଥିଲା ଏବଂ ଅନେକ ବୈଦିକ ବିଦ୍ୱାନ୍ ରାଜାମାନଙ୍କ ଠାରୁ ଦାନସୂତ୍ରରେ ପ୍ରଚୁର ଭୂସଂପତ୍ତି ପାଇ ସ୍ଥାୟୀ ବସବାସ କରିଥିଲେ । ଏହି ସମୟରେ ଢେଙ୍କାନାଳରେ ରାଜତ୍ୱ କରୁଥିବା ଭୌମକର

ରାଜାରାଣୀ ତଥା ସେମାନଙ୍କ ଅଧୀନସ୍ଥ ସ୍ତମ୍ଭ, ତୁଙ୍ଗ ଓ ସିଂହ ବଂଶୀୟ ମଣ୍ଡଳଅଧିପତି ବୃନ୍ଦ ସକଳ ସଂସ୍କୃତିକୁ ପୃଷ୍ଟପୋଷକତା ପ୍ରଦାନ ପୂର୍ବ ସମନ୍ୱୟାତ୍ମକ ସାଂସ୍କୃତିକ ଭାବଧାରାକୁ ପରିପୁଷ୍ଟ କରିଥିଲେ ।

ଦ୍ୱାଦଶ ଶତାବ୍ଦୀରେ ତୃତୀୟ ଅନଙ୍ଗଭୀମଦେବ ତଳମୂଳରୁ ବଳଦେବ ଜୀଉଙ୍କୁ ଭୀମନଗରୀ ଦୁର୍ଗକୁ ଆଣିଥିଲେ । ସେ ମଧ ନାଗନା ଶିବମନ୍ଦିର ନିର୍ମାଣ କରିଥିଲେ । ତଦୀୟ ପୁତ୍ର ପ୍ରଥମ ନରସିଂହଦେବ କପିଳାସ ମନ୍ଦିର ପୁନର୍ନିର୍ମାଣ କରିବା ସହିତ ମନ୍ଦିରର ପଶ୍ଚିମ ପାର୍ଶ୍ୱ କାନ୍ଥରେ ଜଗନ୍ନାଥ ବିଗ୍ରହ ଖୋଦନ କରିଥିଲେ । ପରିଣାମ ସ୍ୱରୂପ ଦ୍ୱାଦଶ ଶତାବ୍ଦୀରୁ ଢେଙ୍କାନାଳରେ ଜଗନ୍ନାଥ ସଂସ୍କୃତିର ପ୍ରସାର ଘଟିଲା । ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ଗଜପତି ପ୍ରତାପରୁଦ୍ରଦେବ କପିଳାସ ପାଦଦେଶ ଦେଓଗାଁଠାରେ ବଳଦେବ ମନ୍ଦିର ନିର୍ମାଣ କଲେ ଏବଂ ପରେ ପରେ ଢେଙ୍କାନାଳରେ ରାଜବଂଶ ପ୍ରତିଷ୍ଠିତ ହେଲା । ଢେଙ୍କନାଳ ରାଜବଂଶର ବିଭିନ୍ନ ରାଜାମାନଙ୍କ ଦ୍ୱାରା କାବରାର ଦଧିବାମନ, କରମୂଳରେ ଦଧିବାମନ, ପରଜଙ୍ଗର ପତିତପାବନ, ଭୁବନର ତୃତୀୟାଦେବ, ବଉଳପୁରର ତୃତୀୟାଦେବ, ବଣସିଂହର ଦଧିବମନ, ତାଳବରକୋଟର ଦଧିବାମନ ପ୍ରଭୃତି ଅଗଣିତ ଜଗନ୍ନାଥ ମୂର୍ତ୍ତି ପ୍ରତିଷ୍ଠିତ ହୋଇ ଜଗନ୍ନାଥ ସଂସ୍କୃତିର ବ୍ୟାପକ ପ୍ରସାର ଘଟିଲା । ମହନୀୟତା ହେଉଛି ଢେଙ୍କାନାଳ ସହରରେ ନୃସିଂହଭ୍ରମରବରଙ୍କ ଦ୍ୱାରା ଶ୍ରୀବତ୍ସ ଖଣ୍ଡଶାଳରୀତିରେ ବଳଦେଜୀଉ ମନ୍ଦିର ଓ ଉତ୍କଳୀୟ ବୈଷ୍ଣବଙ୍କ ଦ୍ୱାରା ଦଧିବାମନ ମନ୍ଦିର ସପ୍ତଦଶ ଶତାବ୍ଦୀରେ ପ୍ରତିଷ୍ଠିତ ହେଲା । ସେହିଦିନଠାରୁ ଢେଙ୍କାନାଳରେ ରଥଯାତ୍ରା ଆରମ୍ଭ ହୋଇ ସଂପ୍ରତି ତିନିଶହ ବର୍ଷ ଅତିକ୍ରମ କଲାଣି। ଏହା ପ୍ରଭାବରେ ଦେଓଗାଁ, ଭୁବନ, ନୂଆଗଡ଼, ମାର୍ଥାପୁର, ଗୋରଡ଼ିଆ, ମଲାଙ୍ଗଡିହ, କାମାକ୍ଷାନଗର, ହିନ୍ଦୋଳରୋଡ଼, ପ୍ରଭୃତି ଅନେକ ସ୍ଥାନରେ ରଥଯାତ୍ରା ଅନୁଷ୍ଠିତ ହେଲା । ପରିଣାମ ସ୍ୱରୂପ ସମଗ୍ର ଢେଙ୍କାନାଳରେ ଜଗନ୍ନାଥ ଧର୍ମ ଏକ ଗଣଧର୍ମର ରୂପ ଗ୍ରହଣ କରିଥିଲା ।

ଚତୁର୍ଦ୍ଦଶ ଶତାବ୍ଦୀରେ ବିଶ୍ୱପ୍ରସିଦ୍ଧ ଭାଷ୍ୟକାର ଶ୍ରୀଧରସ୍ୱାମୀ କପିଳାସରେ ନିବାସ ପୂର୍ବକ ଭାଗବତ ଓ ଗୀତାର ଟୀକା ରଚନା କଲେ । ସେ ମଧ ପାର୍ବତୀଙ୍କ ପାର୍ଶ୍ୱରେ ନୃସିଂହ ମୂର୍ତ୍ତି ଏବଂ ଭୁବନେଶ୍ୱରୀ ମଠରେ ଗିରିବର ଗିରିଧାରୀ ମୂର୍ତ୍ତି ସ୍ଥାପନା କରି ଶାକ୍ତ ସଂସ୍କୃତି ସହିତ ବୈଷ୍ଣବ ସଂସ୍କୃତିର ମିଳନ ଘଟାଇ ଥିଲେ। ଶ୍ରୀଧର ସ୍ୱାମୀଙ୍କ ପ୍ରଚେଷ୍ଟାରେ ଢେଙ୍କାନାଳରେ ଭାଗବତ ଧର୍ମର ପ୍ରସାର

ହୋଇଥିଲା । ଷୋଡ଼ଶ-ସପ୍ତଦଶ ଶତାବ୍ଦୀରେ ଭକ୍ତକବି ଦୀନକୃଷ୍ଣ ଦାସ ଏକଘରିଆ ଗ୍ରାମରେ ନିବାସ କରି ଆପଣା ରଚନା ଦ୍ୱାରା ଭାଗବତ ଧର୍ମକୁ ସାର୍ବଜନୀନ କରିପାରିଥିଲେ । ମଧ୍ୟଯୁଗରେ ଢେଙ୍କାନାଳ ରାଜବଂଶ ଦ୍ୱାର କଣ୍ଡିଓ ମଠ, ଖୁଣ୍ଟୁଝରୀ ମଠ, ତେନ୍ତୁଳିଆ ମଠ, ଜୀରିଡ଼ାମାଳୀ ମଠ, ମଲାଙ୍ଗଡିହ ମଠ, ଖୋକସା ମଠ, ବାଲିବୋ ମଠ, ଅଘିରାଯୋଡ଼ା ମଠ ପ୍ରଭୃତି ସ୍ଥାପନା ହେବାପରେ ଢେଙ୍କାନାଳରେ ବୈଷ୍ଣବଧର୍ମର ବହୁ ପ୍ରସାର ଘଟିଲା, ଗ୍ରାମେ ଗ୍ରାମେ ଭାଗବତ ଟୁଙ୍ଗୀ ସ୍ଥାପନ ହୋଇ ଭାଗବତଧର୍ମ ଏକ ଗଣଧର୍ମର ରୂପ ନେଲା । ଶ୍ରୀ ବୃନ୍ଦାବନଚନ୍ଦ୍ର ରାଜବଂଶର ଇଷ୍ଟହୋଇଥିବାରୁ ରାଜନ୍ୟବୃନ୍ଦ ବୈଷ୍ଣବଧର୍ମ ପ୍ରଚାରକୁ ପ୍ରୋତ୍ସାହନ ଦେଲେ । ପରିଣାମ ସ୍ୱରୂପ ବିଭିନ୍ନ ସ୍ଥଳରେ ରାଧାକୃଷ୍ଣ ବିଗ୍ରହ ଓ ରଘୁନାଥ ବିଗ୍ରହ ପୂଜିତ ହେଲେ । ବୃନ୍ଦବାନ, ନଦୀଆ, ପୁରୀ, କାଶୀ ଓ ଅଯୋଧ୍ୟା ପ୍ରଭୃତି ଧାମରୁ ସାଧୁସନ୍ନ୍ୟାସୀ ବୃନ୍ଦ ଢେଙ୍କାନାଳ ଆଗମନ କରି ବୈଷ୍ଣବ ଧର୍ମ ପ୍ରଚାର କଲେ । ଏତଦ୍‌ଭିନ୍ନ ସତାଇଶ ଗୋଟି ବ୍ରାହ୍ମଣ ଶାସନରେ ବୈଦିକ ସଂସ୍କୃତି ବଳଦତ୍ତର ରହିଥିଲା । ବ୍ରାହ୍ମଣମାନେ ମଧ୍ୟ ଗ୍ରାମେ ଗ୍ରାମେ ରାମାୟଣ, ଭାଗବତ ଓ ହରିବଂଶ ପ୍ରଭୃତି ଶାସ୍ତ୍ର ପାରାୟଣ ପୂର୍ବକ ଭକ୍ତିଧାରା ପ୍ରସାର କଲେ । ପରବର୍ତ୍ତୀ କାଳରେ ବିଭିନ୍ନ ସ୍ଥାନରେ ଶ୍ରୀରାମନବମୀ, ଜନ୍ମାଷ୍ଟମୀ, ନନ୍ଦୋତ୍ସବ, ହରିହାଟ, ଅନନ୍ତମୁଖୀ ଭାଗବତ, ଅଷ୍ଟପ୍ରହରୀ, ଚଳିଶପ୍ରହରୀ ପ୍ରଭୃତି ଅନୁଷ୍ଠିତ ହେଲା ବିଂଶ ଶତାବ୍ଦୀର ପ୍ରଥମପାଦରେ କୁଞ୍ଜକାନ୍ତ ମନ୍ଦିର ପ୍ରତିଷ୍ଠିତ ହେବା ସହିତ ନାମସଂକୀର୍ତ୍ତନ ପ୍ରସାରର ପ୍ରଶାସନିକ ବିଧିବ୍ୟବସ୍ଥା ଗ୍ରହଣ କରାଯାଇ ଏକ ସମନ୍ୱୟାତ୍ମକ ଧର୍ମଧାରରେ ଜନମାନସକୁ ଉଦ୍‌ବୃଦ୍ଧ କରାଇବାର ପ୍ରଚେଷ୍ଟା କରାଯାଇଥିଲା ।

ଊନବିଂଶ ଶତାବ୍ଦୀରେ ଢେଙ୍କାନାଳ ମାଟିରେ ମହିମାଧର୍ମର ଉନ୍ମେଷ ଏକ ଉଲ୍ଲେଖନୀୟ ଘଟଣା । ପୂଜ୍ୟ ମହିମାସ୍ୱାମୀ ଓ ତଦୀୟ ଶିଷ୍ୟ ମଣ୍ଡଳୀ ପୁରପଲ୍ଲୀ ଭ୍ରମଣ କରି ଦୀନହୀନ ଅକିଞ୍ଚନଙ୍କୁ ଧର୍ମବାଣୀ ଶୁଣାଇଲେ । ମୁଖ୍ୟସ୍ଥାନ ମାନଙ୍କରେ ମହିମାଟୁଙ୍ଗୀ ସ୍ଥାପନ ହେବା ସହିତ ସ୍ଥାନେ ସ୍ଥାନେ ମହିମାସମ୍ମିଳନୀ ଅନୁଷ୍ଠିତ ହେଲା । ଯୋରନ୍ଦାରେ ମହିମାଗାଦୀ ସ୍ଥାପନପରେ ବାର୍ଷିକ ମହିମାମେଳା ପାଳନ ହୋଇ ହଜାର ହଜାର ବ୍ୟକ୍ତି ମ ହିମାଧର୍ମରେ ଅନୁପ୍ରାଣିତ ହେଲେ । ପ୍ରାଥମିକ ଅବସ୍ଥାରେ ଉଚ୍ଚ ଜାତ୍ୟାଭିମାନୀ କେତେକ ଏହି ଧର୍ମକୁ ଭିନ୍ନ ଦୃଷ୍ଟିରେ ଦେଖୁଥିଲେ ହେଁ ପରବର୍ତ୍ତୀକାଳରେ ଏହା ସାର୍ବଜନୀନ ସ୍ୱୀକୃତୀ ଲାଭ କରିଥିଲା ।

ପରିଣାମ ସ୍ୱରୂପ ମହିମାଧର୍ମ ଆନ୍ତର୍ଜାତୀୟ ସ୍ୱୀକୃତି ଲାଭ କରିବା ସହିତ ମହିମାଗାଦୀ ମହିମାତୀର୍ଥରେ ରୂପାନ୍ତରିତ ହେଲା । ବର୍ଷସାରା ମହିମାସନ୍ନ୍ୟାସୀ ବୃନ୍ଦ ଧର୍ମ ପ୍ରଚାରରେ ବ୍ରତୀରହି ମାଘମାସରେ ମହିମାଗାଦୀରେ ମହାସମାରୋହରେ ମହିମାମେଳା କରାଇଲେ ଏବଂ ଏହାର ସୁଦୂର ପ୍ରସାରୀ ପ୍ରଭାବ ଜନସାଧାରଣଙ୍କ ଉପରେ ପଡ଼ିଲା ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଢେଙ୍କାନାଳରେ ଗଜଲକ୍ଷ୍ମୀ ପୂଜା ଆରମ୍ଭ ହେଲା, ୧୯୨୩ ମସିହାରେ ମହାବୀରବଜାରର ବାର୍ଷିକ ରାସୋତ୍ସବରେ ଏହା ଆରମ୍ଭହୋଇ ସଂପ୍ରତି ଭାରତ ପ୍ରସିଦ୍ଧ ମହୋତ୍ସବର ମାନ୍ୟତା ଲାଭକରିଛି । ପ୍ରତିବର୍ଷ କୁମାରପୂର୍ଣ୍ଣମୀଠାରୁ ଏକାଦଶ ଦିବସ ବ୍ୟାପୀ ମହାସମାରୋହରେ ଢେଙ୍କାନାଳ ଲକ୍ଷ୍ମୀପୂଜା ଅନୁଷ୍ଠିତ ହୋଇ ଜନମାନସରେ ଅଭୂତ ପୂର୍ବ ଉତ୍ସାହ, ଉଦ୍ଦୀପନା ଓ ଆନନ୍ଦ ସୃଷ୍ଟି କରିଛି । ଏହା ପ୍ରଭାବରେ ବଣସିଂହ, ଓଡ଼ାପଡ଼ା, କରମୂଳ, ଆଦିପୁରା, ଗୋବିନ୍ଦପୁର ପ୍ରଭୃତି ସ୍ଥାନମାନଙ୍କରେ ମଧ୍ୟ ସମାରୋହରେ ଲକ୍ଷ୍ମୀପୂଜା ଅନୁଷ୍ଠିତ ହେଲାଣି । ଢେଙ୍କାନାଳରେ ଅନୁଷ୍ଠିତ ଅନ୍ୟାନ୍ୟ ଯାନିଯାତ୍ରା ଓ ପର୍ବପର୍ବାଣୀ ମଧ୍ୟରେ କପିଳାସର ଶିବରାତ୍ରି, ନାଧରା ମକର ଯାତ୍ରା, ଭୁବନର ଦଶହରା ବଳଦଯାତ୍ରା, ସପ୍ତଶଯ୍ୟାର ରାମନବମୀ ଯାତ୍ରା, ମାର୍ଥାପୁରର ଦୋଳଯାତ୍ରା, ପଣ୍ଡିମେଶ୍ୱର ରାସଯାତ୍ରା, କାମାକ୍ଷାନଗରର ଦଶହରା ପ୍ରଭୃତି ସୁପ୍ରସିଦ୍ଧ । ଏହାବ୍ୟତୀତ ବିଭିନ୍ନ ଗ୍ରାମ, ମଠମନ୍ଦିର ଓ ପୀଠମାନଙ୍କରେ ରାମାୟଣ, ଗୀତା, ଭାଗବତ ପାରାୟଣ ପ୍ରବଚନ, ଜଗନ୍ନାଥ କଥାମୃତ ତଥା ପାଲା ସୁଆଙ୍ଗ ଦାସକାଠିଆ ମାଧ୍ୟମରେ ସାଂସ୍କୃତିକ ଧାରାକୁ ବ୍ୟାପକ କରାଯାଇପାରିଛି ।

ସଂକ୍ଷେପରେ ଉଲ୍ଲେଖକଲେ, ପ୍ରାଚୀନ କାଳରୁ ଢେଙ୍କାନାଳ ମାଟିରେ ସମନ୍ୱୟାତ୍ମକ ସାଂସ୍କୃତିକ ଧାରାର ଉନ୍ମେଷଘଟି ସମୟକ୍ରମେ ଏହା ଆର୍ଯ୍ୟ, ଅନାର୍ଯ୍ୟ, ବୈଦିକ, ବୈଷ୍ଣବ, ଶୈବ, ଶାକ୍ତ, ବୌଦ୍ଧ, ନାଗ, ନାଥ ଓ ମହିମା ସଂସ୍କୃତିର ମହାମିଳନରେ ଅପୂର୍ବ ଭାବୋଚ୍ଛ୍ୱାସ ସୃଷ୍ଟିକରି ପାରିଛି । ଅଧିକନ୍ତୁ, ସ୍ୱାଧୀନୋତ୍ତର କାଳରେ ଏହି ଧାରା ସାର୍ବଜନୀନ ସ୍ୱୀକୃତ ଲାଭକରି ଏକବିଂଶ ଶତାବ୍ଦୀରେ ମହିମୋଜ୍ଜ୍ୱଳ ସାଂସ୍କୃତିକ ସୌରଭରେ ସୁରଭିତ ।



# ଢେଙ୍କାନାଳର ସାମରିକ ସଂସ୍କୃତି

ଢେଙ୍କାନାଳର ପ୍ରାଚୀନ ଇତିହାସ ଅନୁଧ୍ୟାନ କଲେ ଜଣାଯାଏ ଯେ ପୂର୍ବେ ଏହି ଭୂଖଣ୍ଡ ଅନେକ କ୍ଷୁଦ୍ର ଜନପଦରେ ବିଭକ୍ତ ଥିଲା । ଉତ୍ତରାଞ୍ଚଳରେ ଗଣ୍ଡମାନେ ରାଜତ୍ୱ କରୁଥିଲେ । ପ୍ରାପ୍ତ ତାମ୍ରଶାସନରେ ''ଅଷ୍ଟାଦଶ ଗୋନ୍ଦମାଧିପତି'' ଉଲ୍ଲିଖିତ ଥିବାରୁ ପ୍ରମାଣିତ ହୁଏ ଉତ୍ତରାଞ୍ଚଳରେ ଅଠରଜଣ ଗଣ୍ଡଦଳପତି ଶାସନ କରୁଥିଲେ । ପୂର୍ବରେ ଡମ ଦଳପତି ଶାସନ କରୁଥିଲେ ଏବଂ ସେମାନଙ୍କର ଦୁର୍ଗ ଡମରାଜାକଟକ ନାମରେ ପରିଚିହ୍ନିତ । ଦକ୍ଷିଣ ଦିଗରେ ପ୍ରବଳ ପ୍ରତାପୀ ଶବରରାଜା ଢେଙ୍କା ପାଣିହେଲା ପର୍ବତରେ ଓ ତଦୀୟଭ୍ରାତ ବିଲଙ୍କା କପିଳାସ ପର୍ବତରେ ରାଜଧାନୀ ସ୍ଥାପନ କରି ଶାସନ କରୁଥିଲେ । ଏହି ପ୍ରାଚୀନ ଦଳପତିଗଣ ଧନୁର୍ବିଦ୍ୟା, ମୁଷ୍ଟିଯୁଦ୍ଧ ଓ ମଲ୍ଲଯୁଦ୍ଧରେ ପାରଙ୍ଗମ ଥିଲେ । କୋଦାଳକ ସ୍ତମ୍ଭମାନେ ପ୍ରଥମେ ଗଣ୍ଡଦଳପତି ଓ ଶବର ଦଳପତିଙ୍କୁ ପରାସ୍ତକଲେ ଏବଂ କରମୂଳର ନାଗବଂଶୀମାନେ ଡମଦଳପତିଙ୍କୁ ପରାସ୍ତ କଲେ । ଫଳରେ ସମଗ୍ର ଢେଙ୍କାନାଳ ରାଜ୍ୟ କରମୂଳ ମଣ୍ଡଳ ଓ କୋଦାଳକ ମଣ୍ଡଳରେ ବିଭକ୍ତ ହୋଇ ନାଗ ଓ ସ୍ତମ୍ଭରାଜାଙ୍କ ଦ୍ୱାରା ଶାସିତ ହେଲା । ତାମ୍ରଶାସନରୁ ପ୍ରମାଣମିଳେ ଯେ କୋଦାଳକ ମଣ୍ଡଳର ଶୁକ୍ଳୀବଂଶୀ ସ୍ତମ୍ଭ ଉପାଧିଧାରୀ ରାଜାଗଣ ସପ୍ତମ, ଅଷ୍ଟମ ଓ ନବମ ଶତାବ୍ଦୀରେ ସାମରିକ ନୈପୁଣ୍ୟରେ ସ୍ୱାଭିମାନରେ ରାଜୁତି କରୁଥିଲେ । ସେମାନଙ୍କ ପ୍ରଦତ୍ତ ତାମ୍ରଶାସନରେ ମହାସାମନ୍ତ, ମହାରାଜା, ଆଯୁକ୍ତ, ଦଣ୍ଡପାଣିକ, ରାଜପୁତ୍ର, ଅନ୍ତରଙ୍ଗ, କୁମାର, ଅମାତ୍ୟ, ବିଷୟପତି ପ୍ରଭୃତି ସାମରିକ ପଦପଦବୀ ଉଲ୍ଲିଖିତ ଥିବାରୁ ଅନୁମିତ ହୁଏ ସେହି ସମୟରେ ଢେଙ୍କାନାଳର ସାମରିକ ସଂସ୍କୃତି ଉନ୍ନତ ଥିଲା । ଏହି ଅଞ୍ଚଳରୁ ସେହି ସମୟର ପ୍ରାପ୍ତ ଭୌମରାଜା ଓ ରାଣୀଙ୍କ ତାମ୍ରଶାସନରୁ ମଧ୍ୟ ଅନୁରୂପ ସାମରିକ ମର୍ଯ୍ୟାଦାର ପରିଚୟ ମିଳିଅଛି । ଐତିହାସିକ ସମୀକ୍ଷାରୁ ଜଣାଯାଇଛି ଯେ ଢେଙ୍କାନାଳର ସ୍ତମ୍ଭ, ତୁଙ୍ଗ ଓ ସିଂହ ପ୍ରଭୃତି ରାଜନ୍ୟବୃନ୍ଦ ମଣ୍ଡଳାଧିପତି ଭାବରେ କିଛିକାଳ ଭୌମକରମାନଙ୍କ ଅଧୀନସ୍ଥ ଥିଲେ । ତଥାପି ସେମାନେ ସମସ୍ତେ ସ୍ୱତନ୍ତ୍ର ସାମରିକ ମର୍ଯ୍ୟାଦା ଉପଭୋଗ କରୁଥିଲେ । ପ୍ରତ୍ୟେକଙ୍କର ବିଶାଳ ସୈନ୍ୟବାହିନୀ ଥିଲା । ଭୌମରାଣୀ ତ୍ରିଭୁବନ ମହାଦେବୀଙ୍କ ତାମ୍ରଶାସନରେ ''ମହାସାମନ୍ତ ଚକ୍ରେଣ

ନିର୍ବେଦ୍ୟମାନ କାତ୍ୟାୟିନୀଚ ସିଂହାସନମାରୁଢ଼ା'' ଲେଖାଥିବାରୁ ଉପଲବ୍ଧ ହୁଏ ତ୍ରିଭୁବନ ମହାଦେବୀ ଢେଙ୍କାନାଳର ମହାସାମନ୍ତଙ୍କ ସାମରିକ ବିଭବରେ ଆପଣାକୁ କାତ୍ୟାୟିନୀଙ୍କ ସଦୃଶା ଗୌରବାନ୍ୱିତା ମନେ କରୁଥିଲେ । ସେହି ସମୟରେ ତାମ୍ରଶାସନରେ ଚାଟ ଓ ଭଟ୍ଟ ଶବ୍ଦ ବ୍ୟବହାର ହୋଇଥିବାରୁ ବିଶ୍ୱାସ କରାଯାଏ ତତ୍‌କାଳୀନ ଢେଙ୍କାନାଳ ସୈନ୍ୟବାହିନୀ ଦୁଇଭାଗରେ ବିଭକ୍ତ ଥିଲା । ବିଶେଷ ଆବଶ୍ୟକତା ପଡ଼ିଲେ ଯେଉଁମାନେ ସୈନିକ ରୂପେ କାର୍ଯ୍ୟ କରୁଥିଲେ ସେମାନଙ୍କୁ ଚାଟ ଏବଂ ସ୍ଥାୟୀସୈନିକ ରୂପେ କାର୍ଯ୍ୟକରୁଥିବା ବୀରବୃନ୍ଦଙ୍କୁ ଭଟ୍ଟ କୁହାଯାଉଥିଲା । ଏତଦଭିନ୍ନ ସ୍ୱତନ୍ତ୍ର ତାଲିମ୍‌ପ୍ରାପ୍ତ ସୈନିକବୃନ୍ଦ କୋଟ ବା ଦୁର୍ଗରେ ସର୍ବଦା ଯୁଦ୍ଧ ନିମିତ୍ତ ସଜାଗ ରହୁଥିଲେ । ପ୍ରମାଣିତ ହୁଏ, ସେହି ସମୟରେ ଢେଙ୍କାନାଳବାସୀ ଏକ ସୁଶୃଙ୍ଖଳିତ ସାମରିକ ସଂସ୍କୃତିରେ ଉଦ୍‌ବୁଦ୍ଧ ଥିଲେ ।

ଦଶମ-ଏକାଦଶ-ଦ୍ୱାଦଶ ଓ ତ୍ରୟୋଦଶ ଶତାବ୍ଦୀରେ ସୋମ ଓ ଗଙ୍ଗବଂଶ ରାଜତ୍ୱରେ ଢେଙ୍କାନାଳ ଶାସନାଧୀନ ଥିଲା । ସୂଚନାଯୋଗ୍ୟ ଯେ ସେହି ସମୟରେ ପ୍ରାଚୀନ ଭୀମନଗରୀଦୁର୍ଗ ହିଁ ପଶ୍ଚିମାଞ୍ଚଳରେ ସୁରକ୍ଷାଦୁର୍ଗ ଥିଲା । ଭୀମନଗରୀ ଦୁର୍ଗରେ ଅଗଣିତ ଯୋଦ୍ଧାରହି ପଶ୍ଚିମର କଳଚୁରୀ ଓ ଅନ୍ୟାନ୍ୟମାନଙ୍କୁ ପ୍ରତିରୋଧ କରୁଥିଲେ । ତତ୍‌ବାଳୀନ କରମୂଳ ଓ ନୂଆଗଡ଼ ଦୁର୍ଗରେ ମଧ୍ୟ ଅଗଣିତ ସୈନ୍ୟନିବାସ କରି ପୂର୍ବାଞ୍ଚଳରୁ ଆସୁଥିବା ଶତ୍ରୁମାନଙ୍କୁ ପ୍ରତିରୋଧ କରୁଥିଲେ । ଏତଦ୍‌ଭିନ୍ନ ଉତ୍ତରାଞ୍ଚଳରେ ଶିବୁଳାଗଡ଼, ପର୍ଢ଼ଙ୍ଗଗଡ଼, ହଦଗଡ଼, ମାଣିତ୍ରୀଗଡ଼ (ଜଗନ୍ନାଥପୁର), ନୃସିଂହପ୍ରସାଦ, ଗାଁପୁର ଓ ଯମୁନାକୋଟ ପ୍ରଭୃତି ପ୍ରାଚୀନ ଦୁର୍ଗମାନ ରହିଥିଲା । ତଦନୁରୂପ ଦକ୍ଷିଣାଅଞ୍ଚଳରେ ବେଗା, ଖଙ୍କିରା, ଅଞ୍ଜିରା, ବଣିଆପଡ଼ା, ଆଡିଣ୍ଡା, ରୂପାବଳିଆ, ଗୋବିନ୍ଦପୁର, ତାଳବରକୋଟ, ବଳରାମ ପ୍ରସାଦ ପ୍ରଭୃତି ଦୁର୍ଗମାନ ରହିଥିଲା । ସେତେବେଳେ ଢେଙ୍କାନାଳ ରାଜବଂଶ ପ୍ରତିଷ୍ଠା ହୋଇନଥିଲେ ହେଁ ଏହି ଦୁର୍ଗ ସମୂହ ବିଭିନ୍ନ ସାମନ୍ତ ବା ଭୂମ୍ୟାଧିକାରୀଙ୍କ ଅଧୀନରେ ରହିଥିଲା, ସେମାନେ ସୁଶିକ୍ଷିତ ଯୋଦ୍ଧାମାନଙ୍କୁ ଏହି ଦୁର୍ଗମାନଙ୍କରେ ସଜାଗ ରଖୁଥିଲେ । ଏହିସବୁ ଦୁର୍ଭେଦ୍ୟ ଦୁର୍ଗମାନଙ୍କର ଭଗ୍ନାବଶେଷ ବର୍ତ୍ତମାନ ମଧ୍ୟ ଦୃଷ୍ଟିଗୋଚର ହୋଇଥାଏ । କେତେକ ଦୁର୍ଗର ଭଗ୍ନାବଶେଷରୁ ପ୍ରାଚୀନ ଯୁଦ୍ଧାସ୍ତ୍ର ମିଳିଥିଲେ ହେଁ ତତ୍‌କାଳୀନ ଯୁଦ୍ଧକୌଶଳ ଓ ସାମରିକ ବିଭବ ସଂପର୍କୀୟ ସଂପୂର୍ଣ୍ଣତଥ୍ୟ ଏ ପର୍ଯ୍ୟନ୍ତ ଉପଲବ୍ଧ ହୋଇନାହିଁ ।

ଦ୍ୱାଦଶ ଶତାବ୍ଦୀରେ ତୃତୀୟ ଅନଙ୍ଗଭୀମଦେବ, ଭୀମନଗରୀ ଦୁର୍ଗରେ ନିବାସ ପୂର୍ବକ ଏହାକୁ ଗୋଟିଏ ଦଣ୍ଡପାଟର ମାନ୍ୟତା ପ୍ରଦାନ କରିଥିଲେ ତାଙ୍କର ସମସାମୟିକ ଇତିବୃତ୍ତି ଆଲୋଚନାକଲେ ଜଣାଯାଏ ଯେ ସେ ସମଗ୍ର ଢେଙ୍କାନାଳ ଅଞ୍ଚଳରୁ ଏକ ଶାସନାଧୀନ କରିବା ନିମିତ୍ତ ବିରାଟ ସାମରିକ ଅଭିଯାନ ଚଳାଇଥିଲେ । ସେ ସ୍ତମ୍ଭବଂଶୀମାନଙ୍କୁ ଯୁଦ୍ଧରେ ପରାସ୍ତକରି କୁଆଁଳୋରୁ ବିତାଡ଼ିତ କରିଥିଲେ । ସ୍ତମ୍ଭବଂଶଧର ବୃନ୍ଦ ତତ୍‌ପରେ କେନ୍ଦୁଝର ସୀମାନ୍ତ କାଳିଆହତା ଗ୍ରାମରେ ନିବାସ କଲେ । ଯୁଦ୍ଧରେ ବ୍ୟବହୃତ ଖଣ୍ଡାଧୋଇବା ଦ୍ୱାରା ଏକ ବୃହତ୍ ପୁଷ୍କରିଣୀର ଜଳ ରକ୍ତାକ୍ତ ହୋଇଯାଇଥିଲା, ଯାହାକି ଅଦ୍ୟାବଧି ଖଣ୍ଡାଧୁଆପୋଖରୀ ନାମରେ ଖ୍ୟାତ । ସେହି ସମୟରେ ଭୀମନଗରୀ ଦୁର୍ଗ ଅଧୀନରେ ଖଡ୍ଗପ୍ରସାଦ, ପୁରୁଣାକୋଟ, ଦୁଦୁରକୋଟ, ବଜ୍ରକୋଟ, ବଳରାମ ପ୍ରସାଦ, ତଳମୂଳ ପ୍ରଭୃତି ଅନେକ କ୍ଷୁଦ୍ର କ୍ଷୁଦ୍ର ସାମରିକ ଦୁର୍ଗ ରହିଥିଲା । ସେହି ସବୁ ଦୁର୍ଗମାନଙ୍କରେ ସର୍ବଦା ସୈନ୍ୟ ମହଜୁଦ ରହୁଥିଲେ। ବର୍ତ୍ତମାନ ସେହି ସ୍ଥାନମାନଙ୍କରେ କ୍ଷତ୍ରିୟବୀରବୃନ୍ଦଙ୍କ ବଂଶଧରଗଣ ବାସ କରୁଛନ୍ତି । ଅନଙ୍ଗଭୀମ ଦେବଙ୍କ ପରେ ତଦୀୟ ପୁତ୍ର ପ୍ରଥମ ନରସିଂହଦେବ ଆପଣାର ଚତୁରଙ୍ଗ ସେନାବାହିନୀ ସହ ଏହି ଅଞ୍ଚଳରେ ପ୍ରବେଶକରି ବିଶ୍ୱପ୍ରସିଦ୍ଧ କୋଣାର୍କ ମନ୍ଦିର ନିର୍ମାଣ ନିମିତ୍ତ ପରଜଙ୍ଗ ସନ୍ନିକଟ ରଙ୍ଗଥଳୀ ଗ୍ରାମରୁ ଲୌହକଡ଼ି ନେଇଥିଲେ ଏବଂ ଶୈଳଶୈବ କ୍ଷେତ୍ର କପିଳାସରେ ଶିବମନ୍ଦିର ନିର୍ମାଣ କରାଇଥିଲେ । କପିଳାସ ସ୍ଥିତ ଦଧିନଭତି ଶିଳାଲେଖରେ ସମର ମୁଖାନେକ ରିପୁଦର୍ପମର୍ଦନ ଭୁଜବଳ ପରାକ୍ରମ ତଥା ପ୍ରଚଣ୍ଡ ଦୋର୍ଦଣ୍ଡ ମହାବରାହ ମହାରାଜ ପ୍ରଭୃତି ଉଲ୍ଲିଖିତ ଥିବାରୁ ହୃଦ୍‌ବୋଧ ହୁଏ ଯେ ସେହି ସମୟରେ ଢେଙ୍କାନାଳରେ ଏକ ଉନ୍ନତ ସାମରିକ ପରଂପରା ଅବ୍ୟାହତ ରହିଥିଲା । ପ୍ରଥମ ନରସିଂହଦେବଙ୍କ ସେନାପତି ବିଷ୍ଣୁସାମନ୍ତରାୟ ସୁଦକ୍ଷ ସୈନ୍ୟବାହିନୀ ସହ ଢେଙ୍କାନାଳ ଅଞ୍ଚଳରେ ଦୀର୍ଘକାଳ ନିବାସ କରି ଦୁଇ ଗୋଟି ବ୍ରାହ୍ମଣଶାସନ ଯଥା– ବିଷ୍ଣପୁର ଓ ସାମନ୍ତରାୟ ପୁର ବସାଇଥିଲେ । ସୂଚନାଯୋଗ୍ୟ ଯେ ନରସିଂହଦେବଙ୍କ ରାଜଧାନୀ ଚୌଦ୍ୱାର ଢେଙ୍କାନାଳଠାରୁ ଅନତିଦୂରରେ ଅବସ୍ଥିତ ଥିଲା । ସେ ମଧ୍ୟ ଆପଣାର ସେନାଧ୍ୟକ୍ଷ ତୁଳସୀ ସେନାପତିଙ୍କୁ କପିଳାସ ମନ୍ଦିର ଦାୟିତ୍ୱ ଅର୍ପଣ ପୂର୍ବକ ରାୟି ନାମକ ଗ୍ରାମ ଦାନ କରିଥିଲେ । ପ୍ରମାଣିତ ହୁଏ, ଗଙ୍ଗ ରାଜତ୍ୱରେ ଢେଙ୍କାନାଳରେ ଅନେକ ବୀରଯୋଦ୍ଧା ଓ ଖଣ୍ଡାୟତ ବସବାସ କରୁଥିଲେ । ସେମାନଙ୍କର ସ୍ଥାୟୀ ବସବାସ

ଯୋଗୁଁ ଗଙ୍ଗରାଜତ୍ୱରେ ଢେଙ୍କାନାଳରେ ଏକ ଉନ୍ନତ ସାମରିକ ସଂସ୍କୃତି ବିକାଶଲାଭ କରିଥିଲା ।

ଢେଙ୍କାନାଳର ପ୍ରାଚୀନ ରାଜଧାନୀ କରମୂଳ ପାଟଣାରେ ନାଗବଂଶୀ ଓ ସୋମବଂଶୀ କ୍ଷତ୍ରିୟବୃନ୍ଦ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜୁତି କରୁଥିଲେ। କରମୂଳ ସନ୍ନିକଟ ଗିରିଦୁର୍ଗର ଭଗ୍ନାବଶେଷ, ପାଣପଦା, ହାତୀବାରି, ଅଶ୍ୱଖୋଲା ପ୍ରଭୃତି ସ୍ଥାନ ଏହି ପ୍ରାଚୀନ ନଗରୀର ଯଶଗାନ କରୁଅଛି । ୧୫୩୧ ଖ୍ରୀଷ୍ଟାବ୍ଦରେ ଉଦୀୟମାନ ବୀର ହରିବିଦ୍ୟାଧର ରାୟସିଂହ ଗଜପତି ପ୍ରତାପରୁଦ୍ର ଦେବଙ୍କ ଠାରୁ ସନନ୍ଦ ଲାଭକରି କରମୂଳ ରାଜ୍ୟର ଅଧିପତି ହେଲେ । ସେ ଆପଣାର ଅଭୂତ ପୂର୍ବ ସାମରିକ କୌଶଳରେ ସ୍ଥାନୀୟ ଭୂମ୍ୟାଧିକାରୀ ଓ ସାମନ୍ତଙ୍କୁ ପରାସ୍ତକରି ଢେଙ୍କାନାଳ ରାଜ୍ୟ ଓ ରାଜବଂଶ ପ୍ରତିଷ୍ଠା କରିଥିଲେ । ବୃହତ୍ତର ଢେଙ୍କାନାଳ ରାଜ୍ୟର ପ୍ରଶାସନିକ ଦୃଷ୍ଟିକୋଣରୁ ସେ ୧୫୮୧ ମସିହାରେ ଆପଣାର ରାଜଧାନୀ ଢେଙ୍କାନାଳକୁ ସ୍ଥାନାନ୍ତର କଲେ। ଏହି ଯଶସ୍ୱୀବୀର ସାମରିକ ପ୍ରଶାସନର ମର୍ଯ୍ୟାଦାରେ ପ୍ରତ୍ୟେକ ପ୍ରାଚୀନ ଜନପଦକୁ ଗୋଟିଏ ଗୋଟିଏ ପ୍ରଗଣା ବା ବିଷର ମାନ୍ୟତା ପ୍ରଦାନ କରିଥିଲେ । ଢେଙ୍କାନାଳର ବୀର ସୈନିକ ବୃନ୍ଦଙ୍କୁ ସଂଗଠିତ କରିବା ନିମିତ୍ତ ହରିବିଦ୍ୟାଧର ଓ ତଦୀୟ ଉତ୍ତରାଧିକାରୀଗଣ ପ୍ରତ୍ୟେକ ପ୍ରଗଣାରେ ଦଳବେହେରା, ନଖଦଳ, ସାମନ୍ତ ପ୍ରଭୃତି ସ୍ୱତନ୍ତ୍ର ପଦବିମାନ ସୃଷ୍ଟି କରିଥିଲେ । ରଣାଙ୍ଗନରେ କୃତୀତ୍ୱ ପ୍ରଦର୍ଶନ କରୁଥିବା ସୈନିକ ମାନଙ୍କୁ ବିଭିନ୍ନ ସାମରିକ ପଦପଦବୀରେ ଭୂଷିତ କରାଯାଇ ଭୂସଂପତ୍ତି ପ୍ରଦାନ କରାଯାଇଥିଲା, ସେହି ସବୁ ପଦପଦବୀ ହେଉଛି ସାମନ୍ତରାୟ, ବିଜୟ ସିଂହ, କୁହାଟ ସିଂହ, ଗୁମାନସିଂହ, ମାନସିଂହ, ମହାମାନସିଂହ, ଦକ୍ଷିଣକବାଟ, ଉତ୍ତରକବାଟ, ପଶ୍ଚିମକବାଟ, ଛୁଆଳସିଂହ, ଇନ୍ଦ୍ରଜିତ୍ ସିଂହ, ଚନ୍ଦ୍ରସିଂହ, ମଙ୍ଗରାଜ ଇତ୍ୟାଦି । ବର୍ତ୍ତମାନ ମଧ୍ୟ ବୀରବୃନ୍ଦଙ୍କ ବଂଶଧରମାନେ ସେହି ପଦବୀ ବ୍ୟବହାର କରୁଛନ୍ତି । ସୈନିକମାନଙ୍କୁ ଢେଙ୍କାନାଳରାଜା ଯେଉଁ ଭୂସଂପତ୍ତି ଦାନ କରିଥିଲେ ତାହା କାଳକ୍ରମେ ଜାୟଗିରୀ ସୂତ୍ରେ ପାଇକାଳି ଜମିଭାବେ ବିବେଚିତ ହେଲା । ପ୍ରତ୍ୟେକ ପ୍ରଗଣା ବା ବିଷରେ ପଦାତିକ ବାହିନୀରେ କାର୍ଯ୍ୟକରୁଥିବା ସୈନକଙ୍କୁ ପାଇକ ନାମରେ ଅଭିହିତ କରାଗଲା । ଯାହାର ପା ବା ପାଦ ସର୍ବଦା ରଣାଙ୍ଗନ ଉଦ୍ଦେଶ୍ୟରେ ପ୍ରସ୍ତୁତ ସେହିମନାଙ୍କୁ ସାମରିକମାନ୍ୟତାରେ ପାଇକ ଆଖ୍ୟା ଦିଆଯାଇ ଜାୟଗିରି ପ୍ରଦାନ ହେଲା । ଢେଙ୍କାନାଳ ସାମରିକ ପରଂପରାରେ ପାଇକ ଏକ

ଜାତି ନଥିଲା, ବରଂ ବୃତ୍ତି ଥିଲା । ଢେଙ୍କାନାଳର ଆରାଧ୍ୟ ଦେବତା ଶ୍ରୀବଳଦେବଜୀଉଙ୍କର ପାଦପଦ୍ମକୁ ଲକ୍ଷ୍ୟରଖି ବୀରସୈନିକ ବୃନ୍ଦ କୃଷିକ୍ଷେତ୍ରରେ କୃଷକ ତଥା ଯୁଦ୍ଧ କ୍ଷେତ୍ରରେ ସୈନିକ ରୂପେ ଆପଣାର ପରାକାଷ୍ଠା ପ୍ରଦର୍ଶନ ପୂର୍ବକ ଜାତୀୟ ସ୍ୱାଭିମାନରେ ଉଦ୍‌ବୁଦ୍ଧ ହୋଇ ପାରିଥିଲେ । ମଲ୍ଲଯୁଦ୍ଧ, ମୁଷ୍ଟିଯୁଦ୍ଧ, ଗଦାଯୁଦ୍ଧ, ତରବାରୀ ଚାଳନା, ତୀର ଚାଳନା ପ୍ରଭୃତି ପାରଂପରିକ ଯୁଦ୍ଧବିଦ୍ୟା ସହିତ ମଧ୍ୟଯୁଗରେ ଢେଙ୍କାନାଳର ପାଇକମାନେ ତୋପ, କମାଣ ଓ ବନ୍ଧୁକ ଚାଳନା ମଧ ଶିକ୍ଷା କରିଥିଲେ । ଢେଙ୍କାନାଳରେ ରାଜାଗଣ ଆପଣାର ସୈନ୍ୟବାହିନୀରେ ଅନେକ ନାଗାସୈନ୍ୟ ଓ ତେଲଙ୍ଗାସୈନ୍ୟ ମଧ ମୁତୟନ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ ଏହି ସମୟରେ ସମଗ୍ର ଢେଙ୍କାନାଳରେ ଅଭୂତପୂର୍ବ ସାମରିକ ଉନ୍ମାଦନା ଖେଳିଯାଉଥିଲା । ରାଜ୍ୟରକ୍ଷା ନିମିତ୍ତ ଯୁଦ୍ଧରେ ପ୍ରାଣବଳିଦେବା ପୁଣ୍ୟ, ଯଶ ଓ ସ୍ୱର୍ଗପ୍ରାପ୍ତି ହୁଏ ବୋଲି ଢେଙ୍କାନାଳ ପାଇକମାନଙ୍କର ଦୃଢ଼ବିଶ୍ୱାସ ରହିଥିଲା । ହରିବିଦ୍ୟାଧରଙ୍କ ପ୍ରତିଷ୍ଠିତ ଢେଙ୍କାନାଳ ରାଜବଂଶ ଆନୁକୂଲ୍ୟରେ ଢେଙ୍କାନାଳର ସାମରିକ ସଂସ୍କୃତି ଶୀର୍ଷସ୍ଥାନରେ ଉପନୀତ ହୋଇଥିଲା । ଇତିହାସ ଅନୁଧ୍ୟାନକଲେ ଜଣାଯାଏ, ୧୫୩୬ ରେ ଆଡିଣ୍ଡାଯୁଦ୍ଧ, ୧୫୩୯ରେ ବଣିଆପଡ଼ା, ଯୁଦ୍ଧ, ୧୫୪୧ରେ ନୂଆଗଡ଼, ଯୁଦ୍ଧ, ୧୫୯୫ରେ ମୁଣ୍ଡମାରୀ ଯୁଦ୍ଧ, ୧୫୯୭ରେ ଟାଙ୍ଗରାପଡ଼ା ଯୁଦ୍ଧ, ୧୫୯୮ରେ କଳାକଳା ଯୁଦ୍ଧ, ୧୬୦୧ରେ ମଧୁପୁର ଯୁଦ୍ଧ, ୧୬୧୬ରେ ତାଳଚେର ଯୁଦ୍ଧ, ୧୬୯୬ରେ ଦ୍ୱିତୀୟ ମଧୁପୁର ଯୁଦ୍ଧ, ୧୬୯୯ରେ ସୁକିନ୍ଦା ଯୁଦ୍ଧ, ୧୭୦୧ରେ ଶିବୁଲା ଯୁଦ୍ଧ, ୧୭୦୩ରେ ହିନ୍ଦୋଳଯୁଦ୍ଧ, ୧୭୧୧ରେ ତିଗିରିଆ ଯୁଦ୍ଧ, ୧୭୧୭ରେ ଅନୁଗୁଳ ଯୁଦ୍ଧ, ୧୭୨୯ରେ ଦ୍ୱିତୀୟ ଅନୁଗୁଳ ଯୁଦ୍ଧ, ୧୭୫୩ରେ କେନ୍ଦୁଝର ଯୁଦ୍ଧ, ୧୭୫୫ରେ ଆଠଗଡ଼ ଯୁଦ୍ଧ, ୧୭୭୯ ଓ ୧୭୮୧ରେ ମରହଟ୍ଟା ସୈନିକଙ୍କ ସହିତ ଯୁଦ୍ଧରେ ଢେଙ୍କାନାଳ ସୈନ୍ୟବାହିନୀ ଅପୂର୍ବ ବୀରତ୍ୱ ପ୍ରଦର୍ଶନ କରିଥିଲେ । ୧୭୮୧ରେ ଷାଠିଏ ବାଟିଆ ରଣାଙ୍ଗନରେ ଢେଙ୍କାନାଳର ଦଶହଜାର ସୈନ୍ୟ ମରହଟ୍ଟାଙ୍କର ଚାଳିଶହଜାର ସୈନ୍ୟ ବିଶିଷ୍ଟ ଚତୁରଙ୍ଗ ବାହିନୀକୁ ଅଠର ଦିନ ଯୁଦ୍ଧରେ କିପରି ପରାସ୍ତ କରିଥିଲେ ତାହାର ପ୍ରତ୍ୟକ୍ଷଦର୍ଶୀ ବିବରଣୀ କବି ବ୍ରଜନାଥ ବଡ଼ଜେନାଙ୍କ ସମରତରଙ୍ଗରେ ପ୍ରାଞ୍ଜଳଭାବେ ବର୍ଣ୍ଣିତ । ପ୍ରତ୍ୟେକ ଯୁଦ୍ଧର ଐତିହାସିକ ବିଶେଷତ୍ୱ ହେଉଛି ଢେଙ୍କାନାଳର ରାଜାଗଣ ନିଜେ ସେନାଧ୍ୟକ୍ଷ ରୂପେ ସୈନ୍ୟ ପରିଚାଳନା କରି ଚମତ୍କାର ରଣକୌଶଳ ପ୍ରଦର୍ଶନ

ପୂର୍ବକ ଅସାଧାରଣ ବୀରତ୍ୱର ପରିଚୟ ଦେଖାଇ ଅଛନ୍ତି । ଢେଙ୍କାନାଳ ସୈନ୍ୟ ବାହିନୀ ଦୁର୍ଦ୍ଧର୍ଷ ମରହଟ୍ଟା ଓ ଦୁର୍ଦ୍ଦାନ୍ତ ମୁସଲମାନମାନଙ୍କୁ ଯେପରି ଭାବରେ ପ୍ରତିରୋଧ କରିଛନ୍ତି ତାହା ବର୍ଣ୍ଣନାତୀତ । ତତ୍କାଳୀନ ସମର ସାହିତ୍ୟରୁ ଢେଙ୍କାନାଳ, ବୀରବୃନ୍ଦଙ୍କର ଅଭେଦ୍ୟ ଦୁର୍ଗନିର୍ମାଣ, ଅପୂର୍ବ ରଣକୌଶଳ, ସୁପରିକଳ୍ପିତ, ସମରସଜ୍ଜା, ଲକ୍ଷ୍ୟଭେଦୀ ଯୁଦ୍ଧାସ୍ତ୍ର ପ୍ରୟୋଗ ତଥା ଅସାଧାରଣ ଦେଶପ୍ରୀତି ପ୍ରାଞ୍ଜଳ ବର୍ଣ୍ଣନା ମିଳିଥାଏ । ଏହିସବୁ ସମର ସାହିତ୍ୟ ମଧ୍ୟରେ କବି ଗୋକୁଳ ପଟ୍ଟନାୟକ ମଧୁପୁରକୋଇଲି, କବିଚଡ଼କଙ୍କ ଚଡ଼କତୁହା ଏବଂ ବ୍ରଜନାଥ ବଡ଼ଜେନାଙ୍କ ସମରତରଙ୍ଗ ବିଶେଷ ପ୍ରଣିଧାନ ଯୋଗ୍ୟ । ମାତୃଭୂମିର ଗୌରବରକ୍ଷା ତଥା ସ୍ୱକୀୟ ସ୍ୱାଭିମାନ ନିମିତ୍ତ ଢେଙ୍କାନାଳ ପାଇକଙ୍କର ଉଚ୍ଚତର କର୍ତ୍ତବ୍ୟବୋଧର ଗୌରବୋଜ୍ଜ୍ୱଳ ଚିତ୍ର ଏହି ସବୁ ସମର ସାହିତ୍ୟରୁ ଉପଲବ୍ଧ ହୋଇଥାଏ । ଏତଦ୍‌ଭିନ୍ନ ଢେଙ୍କାନାଳର ଅନ୍ୟାନ ସାହିତ୍ୟ ଓ ଲୋକ ସାହିତ୍ୟରେ ଅନେକ ସାମରିକ ଉତ୍ତେଜନାକାରୀ ପାଇକବୋଲି ରହିଛି, ଯାହା ଏକ ସ୍ୱତନ୍ତ୍ର ଆଲୋଚନା ଆବଶ୍ୟକ କରେ ।

ଢେଙ୍କାନାଳର ମଧ୍ୟଯୁଗୀୟ କ୍ଷୁଦ୍ରାସ୍ତ୍ରମାନଙ୍କ ମଧ୍ୟରେ ବିଭିନ୍ନ ଶକ୍ତିଶାଳୀ ତୋପ, ବନ୍ଧୁକ, ଖଣ୍ଡା, ତରବାରୀ, କରବାଳ, କୁନ୍ତ, ଧୂପ, ଢଙ୍କୁଣ, ବାର୍ଛା, ଫାର୍ସା, କଟାରୀ, ଧନୁତୀର, ଗଦା, ଚକ୍ର ପ୍ରଭୃତି ଉଲ୍ଲେଖଯୋଗ୍ୟ । ସେହି ଅସ୍ତ୍ର ମଧ୍ୟରୁ ଅନେକ ବର୍ତ୍ତମାନ ମଧ୍ୟ ଢେଙ୍କାନାଳ ସଂଗ୍ରହାଳୟରେ ସଂରକ୍ଷିତ ରହିଛି । ଏହି ସବୁ ଯୁଦ୍ଧାସ୍ତ୍ର ନିର୍ମାଣ ନିମିତ୍ତ ରଙ୍ଗଥଳୀ, ସାରିଆପଡ଼ା, ସିମିନର, ଗାଲୁ, ଦୋମୁହାଣୀ ପ୍ରଭୃତି ସ୍ଥାନମାନଙ୍କର କାରଖାନାମାନ ରହିଥିଲା। ଏହା ବ୍ୟତୀତ ଢେଙ୍କାନାଳ ନରପତିଗଣ ବିଦେଶରୁ ଅନେକ ଆଧୁନିକ ଯୁଦ୍ଧାସ୍ତ୍ର କ୍ରୟ କରୁଥିଲେ । ରାଜ୍ୟ ରାଜସ୍ୱର ଏକ ନିର୍ଦ୍ଦିଷ୍ଟ ଅଂଶ ସାମରିକ ଖର୍ଚ୍ଚ ରୂପେ ବ୍ୟୟ କରୁଥିଲେ । ରାଜାଙ୍କ ପ୍ରତ୍ୟକ୍ଷ ଦାୟିତ୍ୱରେ ସାମରିକ ବିଭାଗ ରହୁଥିଲା । ସୁଦକ୍ଷ, କୁଶଳୀ ତଥା ସମରନିପୁଣ ଯୋଗ୍ୟବ୍ୟକ୍ତିଙ୍କୁ ଉଚ୍ଚତମ ସାମରିକ ପଦବୀରେ ମୁତୟନ କରାଯାଇଥିଲା ସାମରିକ ବିଭାଗରେ ପଦାତିକ ବାହିନୀ, ଘୋଡ଼ାସବାର ବାହିନୀ ପ୍ରଭୃତି ଉପବିଭାଗମାନ ଖୋଲାଯାଇଥିଲା, ଯୁଦ୍ଧ ହସ୍ତୀଙ୍କ ନିମିତ୍ତ ହାତୀଶାଳ ଓ ଯୁଦ୍ଧାଶ୍ୱମାନଙ୍କ ନିମିତ୍ତ ଘୋଡ଼ାପାଗ ମଧ୍ୟ ରହିଥିଲା, ନୂତନ ସୈନିକମାନଙ୍କୁ ତାଲିମଦେବା ନିମିତ୍ତ ବିଧିବ୍ୟବସ୍ଥା କରାଯାଇଥିଲା । ଢେଙ୍କାନାଳ ପାଇକମାନେ ପାରିବାରିକ ବେଶରେ ପାଇକଛାମାରି, ଅଣ୍ଟାବାନ୍ଧି, ମୁଣ୍ଡରେ ପଗଡ଼ି, ବାହୁରେ

ବାହୁଟି, କଟିରେ କଟାରୀ, ଶିରରେ ସିନ୍ଦୁରକଲି, କାନରେ କୁଣ୍ଡଳ ଓ ହାତରେ ଢାଲ ତରବାରୀଧରି ଯୁଦ୍ଧକ୍ଷେତ୍ରକୁ ଲମ୍ଫ ପ୍ରଦାନ କରିଥିଲେ । ମନରେ ଅଦମ୍ୟ ଉତ୍ସାହ ତଥା ହୃଦୟରେ ଶତ୍ରୁବିଧ୍ୱଂସନର ଉଚ୍ଛାସରେ ସେମାନଙ୍କ ଚାଲି, ବୋଲି, ଠାଣି ଓ ବାଣୀରେ ବୀରତ୍ୱର ପୂର୍ଣ୍ଣସୂଚନା ପ୍ରକଟିତ ହେଉଥିଲା । ଢେଙ୍କାନାଳ ପାଇକଙ୍କ ରଣହୁଙ୍କାର ଓ କୁହାଟ ନିରସ ପ୍ରାଣରେବି ବୀରତ୍ୱ ସଂଚାର କରାଇ ଲୋମ ପୁଲକିତ କରୁଥିଲା ।

ଢେଙ୍କାନାଳର ବୀରବାଦ୍ୟ ମଧ୍ୟରେ ଢୋଲ,ଟମକ, ବଡ଼କାଠ, ତୁରୀ, ଭେରୀ, ବୀରକାହାଳୀ, ସିଙ୍ଗା ଓ ଶଙ୍ଖ ପ୍ରଭୃତି ଅନ୍ୟତମ । ଏହି ସବୁ ବୀରବାଦ୍ୟ ବଜାଇବା ନିମିତ୍ତ ଜାୟଗିରୀ ପାଇ ବିଭିନ୍ନ ସଂପ୍ରଦାୟ ରହିଥିଲେ । ସର୍ବୋପରି, ମଧ୍ୟଯୁଗୀୟ ସାମରିକ ସଂସ୍କୃତିର ଗୌରବରେ ଢେଙ୍କାନାଳଧୀଶ୍ୱର ମହୀନ୍ଦ୍ରବାହାଦୂର ଉପାଧିରେ ବିଭୂଷିତ ହୋଇଥିଲେ ।

ଢେଙ୍କାନାଳ ସାମରିକ ସଂସ୍କୃତିର ଗୌରବମୟ କୀର୍ତ୍ତୀ ହିଁ ଢେଙ୍କାନାଳ ରାଜପ୍ରସାଦ । ପାଣି ଓ ହଳା ପର୍ବତ ଉପତ୍ୟକାର ପ୍ରତିଷ୍ଠିତ ଏହି ଗିରିଦୁର୍ଗବେଷ୍ଟିତ ରାଜପ୍ରସାଦ ଭାରତୀୟ ସାମରିକ ପରଂପରାର ଉନ୍ନତ କୌଶଳରେ ନିର୍ମିତ । ଶତୃଆକ୍ରମଣ ପ୍ରତିହତ ଉଦ୍ଦେଶ୍ୟରେ ଏକ ସୁଦୀର୍ଘ ଜଳପୂର୍ଣ୍ଣ ପରୀକ୍ଷା ସମଗ୍ର ଦୂର୍ଗକୁ ବେଷ୍ଟନ କରିଥିଲା । ସଂପ୍ରତି ଏହାର ଭଗ୍ନାବଶେଷ ସ୍ଥାନେ ସ୍ଥାନେ ଦୃଷ୍ଟିଗୋଚର ହୁଏ । ଦୁର୍ଗର ଦୁଇଗୋଟି ପ୍ରାଚୀର ମଧ୍ୟରୁ ବାହ୍ୟ ପ୍ରାଚୀର ଠାରୁ ଗଡ଼ଖାଇ ଭୀଷଣ ଦୁର୍ଭେଦ୍ୟ କଣ୍ଟକିତ ବାଂଶବନ ପରିପୂର୍ଣ୍ଣ ଥିଲା । ବାହ୍ୟପ୍ରାଚୀର ଓ ଅନ୍ତପ୍ରାଚୀର ମଧ୍ୟରେ ସୁସଜ୍ଜିତ ତୋପ ଓ ସୁଦକ୍ଷ ସେନାନୀ ସର୍ବଦା ଜାଗ୍ରତ ରହୁଥିଲେ । ଦୁର୍ଗର ସର୍ବୋଚ୍ଚ ସ୍ଥାନରେ ତ୍ରିତଳ ରାଜପ୍ରାସାଦରେ ରାଜ ପରିବାର ନିବାସ ପୂର୍ବକ ବହୁଦୂରରୁ ଶତ୍ରୁ ଆଗମନ ଲକ୍ଷ୍ୟ କରି ପାରୁଥିଲେ । ଏହାର ପ୍ରାଚୀର ଓ କାନ୍ଥ ବହୁପ୍ରସ୍ଥ ବିଶିଷ୍ଟ ତଥା ଦୁର୍ଭେଦ୍ୟ ଥିଲା । ଗୋପନରେ ଦୁର୍ଗପ୍ରବେଶ ଓ ପଳାୟନ ନିମିତ୍ତ ଗୁପ୍ତସୁଡ଼ଙ୍ଗର ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ଏହି ଦୁର୍ଗରୁ ହିଁ ଢେଙ୍କାନାଳର ଉନ୍ନତ ସାମରିକ ସଂଗଠନର ପରିଚୟ ମିଳିଥାଏ । ସଂପ୍ରତି ଏହି ଦୁର୍ଗର ଦକ୍ଷିଣାଂଶ, ପଶ୍ଚିମାଂଶ ଓ ଉତ୍ତରାଂଶର ଅନେକ ଅଂଶ ନଷ୍ଟ ହୋଇଯାଇଛି । ତଥାପି, ଯେ କୌଣସି ଦର୍ଶକ ଦୁର୍ଗ ପରିଭ୍ରମଣ କଲେ ତତ୍‌କାଳୀନ ସାମରିକ ବୈଭବରେ ଉଦ୍‌ବୃଦ୍ଧ ହୋଇପାରିବ ।

ଢେଙ୍କାନାଳରେ ସାମରିକ ପରଂପରାରେ ଦଶହରା ଏକ ଜାତୀୟ ଚେତନାଦ୍ୟୋତକ ସାର୍ବଜନୀନ ମହୋତ୍ସବ ସ୍ୱୀକୃତ। ଏହି ପବିତ୍ର ଦିବସରେ

ଦେବୀମନ୍ଦିରଉଠାରେ ତୋପ ସଲାମୀ ଦିଆଯାଏ ଏବଂ ବାର୍ଷିକ ସମରାଭ୍ୟାସର ଅୟମାରମ୍ଭ କରାଯାଏ । ଅଦ୍ୟାବଧି ଏହି ପ୍ରଥା ପ୍ରଚଳିତ । ଏହି ଦିନ ରାଜା ବୀର ପାଇକମାନଙ୍କଗହଣରେ ବୀରବାଦ୍ୟବାଦନ ସହ ରାଜପ୍ରସାଦରୁ ଦେବୀମନ୍ଦିରକୁ ଆଗମନ କରିଥାନ୍ତି । ସେଥିରେ ଦେବୀଙ୍କ ସନ୍ନିକଟରେ ଖଣ୍ଡାପୂଜା ହେବାପରେ ଲାଖବିନ୍ଧା ହୋଇ ତୋପସଲାମୀ ଦିଆଯାଏ । ତତ୍‌ପରେ ମହାସମାରୋହରେ ଦେବୀ ନଅର ମଧ୍ୟକୁ ବିଜେ କରିଥାନ୍ତି । ଏହି ଅବସରରେ ପାଇକମାନେ ପାରଂପରିକ ଖେଳ ପ୍ରଦର୍ଶନ କରିଥାନ୍ତି । ଢେଙ୍କାନାଳର ଗ୍ରାମାଞ୍ଚଳରେ ମଧ୍ୟ ପାଇକମାନେ ବିଜୟାଦଶମୀ ଅବସରରେ ପାରମ୍ପରିକ ରୀତିରେ ଯୁଦ୍ଧାସ୍ତ୍ର ପୂଜନ ଓ କୌତୁକ ଯୁଦ୍ଧକ୍ରୀଡ଼ା ପ୍ରଦର୍ଶନ କରିଥାନ୍ତ । ଯେଉଁଠାରେ ପାଇକଖେଳ ହୋଇପାରେନାହିଁ ସେଠାରେ କେବଳ ଖଣ୍ଡାପୂଜା ହୋଇଥାଏ । ସୁଖର ବିଷୟ, ଢେଙ୍କାନାଳର ଗୌରବୋଜ୍ଜ୍ୱଳ ସାମରିକ ସଂସ୍କୃତିର ଅତୀତକୁ ସ୍ମରଣକରି ଜାତୀୟଚେତନା ସୃଷ୍ଟି ଉଦ୍ଦେଶ୍ୟରେ ପ୍ରତିବର୍ଷ କୁଞ୍ଜକାନ୍ତସ୍ଥିତ ସୁରପ୍ରତାପ ସ୍ମୃତିପୀଠଠାରେ ବାର୍ଷିକ ପାଇକ ଆଖଡ଼ା ଅନୁଷ୍ଠିତ ହେଉଅଛି । ଜାତୀୟ ସଂହତି ତଥା ଭାବାତ୍ମକ ଐକାର ଗୌରବବୋଧ ଜାଗ୍ରତ ହିଁ ଏହାର ପରମଲକ୍ଷ୍ୟ । ପ୍ରତିବର୍ଷ ମହାସମାରୋହରେ ଅନୁଷ୍ଠିତ ଏହି ପାଇକ ଆଖଡ଼ାରେ ସୁନାମଧନ୍ୟ ବ୍ୟକ୍ତିବିଶେଷ ଯୋଗଦାନ ପୂର୍ବକ ଭାରତୀୟ ସାମରିକ ସଂସ୍କୃତିକୁ ଓଡ଼ିଆ ତଥା ଢେଙ୍କାନାଳର ପାଇକମାନଙ୍କ ଅବଦାନ ସଂପର୍କରେ ଦର୍ଶକବୃନ୍ଦଙ୍କୁ ଉଦ୍‌ବୋଧନ ହେଇଥାନ୍ତି । ଏହାପରେ ଆନୁଷ୍ଠାନିକ ଭାବରେ ବିଭିନ୍ନ ପ୍ରାଚୀନ ଓ ମଧ୍ୟଯୁଗୀୟ ରଣକୌଶଳ ପ୍ରଦର୍ଶନ କରାଯାଉଛି । ଢେଙ୍କାନାଳର ରାଜା ଓ ରାଜପରିବାର ଉପସ୍ଥିତ ଏହି ସକଳ କାର୍ଯ୍ୟକୁ ପରିଚାଳନା କରିବା ସହିତ ସମସ୍ତ ବ୍ୟୟ ମଧ୍ୟ ବହନ କରୁଅଛି । ଗୌରବୋଜ୍ଜ୍ୱଳ ଐତିହ୍ୟର ସ୍ମୃତିଚାରଣ ପୂର୍ବକ ସମ୍ଭାବନାମୟ ଭବିଷ୍ୟତ ଦିଗରେ ଆଗେଇବାହିଁ ଏହାର ମହତ ଲକ୍ଷ୍ୟ । ଏହାହିଁ ପ୍ରକୃତରେ ଢେଙ୍କାନାଳ ଗୌରବୋଜ୍ଜ୍ୱଳ ସାମରିକ ସଂସ୍କୃତିର ସ୍ମୃତିଚାରଣ ତଥା ଢେଙ୍କାନାଳବାସୀଙ୍କର ମର୍ଯ୍ୟାଦାବନ୍ତ ଆତ୍ମପରିଚୟ । ଶତାବ୍ଦୀ ଶତାବ୍ଦୀ ଧରି ଢେଙ୍କାନାଳରେ ପ୍ରବାହିତ ସାମରିକ ସଂସ୍କୃତିର ଏହା ହେଉଛି ବାର୍ଷିକ ସ୍ୱାଭିମାନ ମହୋତ୍ସବ ।



# ଢେଙ୍କାନାଳରେ ରଥଯାତ୍ରାର ପରଂପରା

ଢେଙ୍କାନାଳର ପଞ୍ଚମରାଜା ହେଉଛନ୍ତି ନୃସିଂହ ଭ୍ରମରବର । ସେ ଜଣେ ଅସଧାରଣ ବୀର, ପରମବୈଷ୍ଣବ ଓ କବିଥିଲେ । ଏହାଙ୍କ ରାଜତ୍ୱକାଳ ହେଉଛି ୧୬୮୦ ରୁ ୧୭୦୮ । ଏହି ରାଜାଙ୍କ ଅମଳରେ ୧୬୮୨ ଖ୍ରୀଷ୍ଟାବ୍ଦରେ ଶ୍ରୀବଳଦେବ ଜୀଉଙ୍କ ମନ୍ଦିର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଥିଲା । ରାଜା ନୃସିଂହ ଶ୍ରୀଜଗନ୍ନାଥଙ୍କର ଅନନ୍ୟ ଭକ୍ତଥିଲେ । ସେ ଉତ୍କଳୀୟ ବୈଷ୍ଣବ, ରାମାନନ୍ଦୀବୈଷ୍ଣବ, ନାଗାବୈଷ୍ଣବଙ୍କୁ ଜମିଜମା ପ୍ରଦାନ କରି ଖୁଣ୍ଟୁଝରୀ, ଖୋକସା, ବାଲିବୋ, ରିଆ, ମଠତେନ୍ତୁଳିଆ, ଜିରିଡ଼ାମାଳୀ, ଅଘିରାଗୋଡ଼ା ପ୍ରଭୃତି ସ୍ଥାନରେ ମଠସ୍ଥାପନା କରିଥିଲେ । ତନ୍ମଧ୍ୟରୁ ଖୁଣ୍ଟୁଝରୀ ମଠର ମହନ୍ତ ନିଜିଗଡ଼ରେ ଗୋଟିଏ ଦଧିବାମନ ମନ୍ଦିର ନିର୍ମାଣ କରିବାକୁ ମନସ୍ଥ କଲେ। ମହନ୍ତଙ୍କ ଇଚ୍ଛାନୁଯାୟୀ ରାଜା ନୃସିଂହ ଢେଙ୍କାନାଳର ରଥଗଡ଼ା ସାହିରେ ମଠ ପ୍ରତିଷ୍ଠା କରି ପରିଚାଳନା ନିମିତ୍ତ ଏକଶହ ଏକର ବା ପାଞ୍ଚବାଟୀ ଜମି ପ୍ରଦାନ କଲେ । ୧୬୯୦ ମସିହାରେ ଦଧିବାମନ ମଠ ପ୍ରତିଷ୍ଠା ହେଲା ଏବଂ ସେହିଦିନଠାରୁ ଏହା ଖୁଣ୍ଟୁଝରୀମଠର ମହନ୍ତଙ୍କ ଦ୍ୱାରା ପରିଚାଳିତ ହେଲା । ୧୬୯୦ ମସିହା ଶ୍ରୀଗୁଣ୍ଡିଚାଠାରୁ ଢେଙ୍କାନାଳରେ ଦଧିବାନଙ୍କ ରଥଯାତ୍ରାର ଅୟଆରମ୍ଭ ହେଲା । ପ୍ରତିବର୍ଷ ଗୋଟିଏ ରଥରେ ଦଧିବାମନ ବିଜେ ହୋଇ ଶ୍ରୀଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରିଥାନ୍ତି । ସେତେବେଳେ ତଳଗଡ଼, ଘୋଡ଼ାଡ଼ିଆଁ ପାଟଣାଠାରେ ଗୁଣ୍ଡିଚା ମନ୍ଦିର ଥିଲା, ଯାହାକି ସଂପ୍ରତି ମୀନାବଜାର ଦଧିବାମନ ମନ୍ଦିର ଭାବରେ ପରିଚିତ । ଦଧିବାମନ ମଠର ମହନ୍ତ ରଥଯାତ୍ରାର ସମସ୍ତ ବିଧିବିଧାନ ଓ ପରିଚାଳନା ନିର୍ବାହ କରୁଥିଲେ । ସୂଚନାଯୋଗ୍ୟ ଯେ ଶ୍ରୀ ବଳଦେବଜୀଉ ଧବଳମୟ ମଣିବିଗ୍ରହ ହୋଇଥିବାରୁ କେବଳ ସ୍ନାନ ଓ ଅଣବସର ଲୀଳା ସଂରଚନା କରନ୍ତି, କିନ୍ତୁ ରଥଯାତ୍ରାରେ ଯାଆନ୍ତି ନାହିଁ । କେବଳ ରଥଗଡ଼ାସ୍ଥିତ ଦଧିବାମନ ଏହି ରଥରେ ଯାତ୍ରା କରିଥାଆନ୍ତି । ଶ୍ରୀକ୍ଷେତ୍ରରେ ଘୋଷଯାତ୍ରା ପରଂପରାନୁଯାୟୀ ଢେଙ୍କାନାଳ ରଥଯାତ୍ରା ନିର୍ବାହ କରାଯାଏ । ଏହି ଯାତ୍ରା ଢେଙ୍କାନାଳ ଜନମାନସକୁ ଜଗନ୍ନାଥ ଚେତନା ରସାଣିତ କରିପାରିଥିଲା । ରାଜାଙ୍କ ପୃଷ୍ଠପୋଷକତାରେ ଢେଙ୍କାନାଳର

ବିଭିନ୍ନ ସ୍ଥାନରେ ରାଧାକୃଷ୍ଣ, ଗୋପୀନାଥ, ମଦନମୋହନଙ୍କ ସହିତ ଦଧିବାମନ, ପତିତପାବନ, ତୃତୀୟାଦେବ ପ୍ରଭୃତି ପ୍ରତିଷ୍ଠିତ ହୋଇଥିଲେ ।

ଦେଓଗାଁଠାରେ ଗଜପତି ପ୍ରତାପରୁଦ୍ରଦେବ ଶ୍ରୀବଳଦେବ ଜୀଉଙ୍କ ମନ୍ଦିର ନିର୍ମାଣ କରିଥିଲେ ହେଁ ସେଠାରେ ରଥଯାତ୍ରା ପ୍ରଚଳନ କରାଇନଥିଲେ । ରାଜା ନୃସିଂହ ୧୭୦୦ ଖ୍ରୀଷ୍ଟାବ୍ଦରେ ଦେଓଗାଁଠାରେ ରଥଯାତ୍ରା ଆରମ୍ଭ କରିଥିଲେ । ମନ୍ଦିରର ଉତ୍ତରଦିଗରେ ଗୋଟିଏ କ୍ଷୁଦ୍ର ଗୁଣ୍ଡିଚାମନ୍ଦିର ନିର୍ମାଣ କରି ଶ୍ରୀକ୍ଷେତ୍ର ପରଂପରାରେ ସେ ଏଠାରେ ରଥଯାତ୍ରା ପ୍ରଚଳନ କରାଇଥିଲେ । ବିଧି ଅନୁସାରେ ଅକ୍ଷୟ ତୃତୀୟା ଠାରୁ ରଥ ଅନୁକୂଳ, ବନଯାଗ, ଅକ୍ଷପୂଜା ପ୍ରଭୃତି ଅନୁଷ୍ଠିତ ହୋଇ ଶିବସାଗରରେ ଚନ୍ଦନଯାତ୍ରା, ସ୍ନାନମଣ୍ଡପରେ ସ୍ନାନଯାତ୍ରା, ଅଣସର, ନେତ୍ରୋତ୍ସବ, ରଥଯାତ୍ରା, ବାହୁଡ଼ାଯାତ୍ରା ଅନୁଷ୍ଠିତ ହୋଇ ଶୈବସଂସ୍କୃତି ସହିତ ଜଗନ୍ନାଥ ସଂସ୍କୃତିର ମହାମିଳନ ସଂଘଟିତ୍ ହୋଇଥିଲା । ସଂପ୍ରତି, ଏହି ଯାତ୍ରା ଏକ ଗଣମହୋତ୍ସବର ଭବ୍ୟ ରୂପ ଧାରଣ କରିଛି ।. ଦେଓଗାଁ ରଥଯାତ୍ରାରେ ଗୋଟିଏ ରଥ ନିର୍ମାଣ ହୁଏ । ଦ୍ୱାଦଶଚକ ବିଶିଷ୍ଟ ଏହି ରଥର ଉଚ୍ଚତା ୨୧ ହାତ ଓ ନାମ ତାଳଧ୍ୱଜ । ଏହାର ରକ୍ଷକ ବାସୁଦେବ ଓ ଆୟୁଧ ହଳମୂଷଳ । ଅନନ୍ତନାଗ ହେଉଛନ୍ତି ଏହି ରଥର ଶିରଦେବତା, ସାରଥୀଙ୍କ ନାମ ମାତଳୀ ଓ ଦ୍ୱାରପାଳ ହେଉଛନ୍ତି ନନ୍ଦସୁନନ୍ଦ ।

ମହାରାଜା ଭଗୀରଥ ମହୀନ୍ଦ୍ର ବାହାଦୂରଙ୍କ ରାଜତ୍ୱରେ ଢେଙ୍କାନାଳର ବିଭିନ୍ନ ସ୍ଥାନରେ ରଥଯାତ୍ରା ଆରମ୍ଭ ହେଲା । ଭଗୀରଥୀଙ୍କ ପରେ ତଦୀୟ ପୁତ୍ର ଦୀନବନ୍ଧୁ ଶ୍ରୀବଳଦେବଜୀଉଙ୍କ ମନ୍ଦିର ପ୍ରାଙ୍ଗଣରେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ କରିବାକୁ ମନସ୍ଥ କରିଥିଲେ । କିନ୍ତୁ ଅକାଳରେ ମାତ୍ର ଉଣେଇଶ ବର୍ଷ ବୟସରେ ତାଙ୍କର ମୃତ୍ୟୁହେବାରୁ ତାହା କରିପାରିନଥିଲେ । ତାଙ୍କ ପରେ ସୁପୁତ୍ର ରାଜର୍ଷି ସୁରପ୍ରତାପ ୧୯୦୯ ମସିହାରେ ଶ୍ରୀ ବଳଦେବଜୀଉଙ୍କ ମନ୍ଦିରର ଦକ୍ଷିଣପାର୍ଶ୍ୱରେ ୪୦ ଫୁଟ ଉଚ୍ଚତା ବିଶିଷ୍ଟ ଶ୍ରୀ ଜଗନ୍ନାଥ ମନ୍ଦିର ନିର୍ମାଣ କରି ଠାକୁରଙ୍କୁ ପ୍ରତିଷ୍ଠା କଲେ । ସେହି ବର୍ଷ ରାଜା ସୁରପ୍ରତାପ ନବପ୍ରତିଷ୍ଠିତ ଶ୍ରୀ ଜଗନ୍ନାଥଙ୍କୁ ରଥଯାତ୍ରାରେ ନେବାର କାମନାକରି ଦୁଇଗୋଟି ରଥ ନିର୍ମାଣ କରାଇଲେ । ବଡ଼ରଥରେ ଜଗନ୍ନାଥ ଏବଂ ସାନରଥରେ ଦଧିବାମନ ଯାତ୍ରା କରିବାର ସମସ୍ତ ସୁବନ୍ଦୋବସ୍ତ କରାଯାଇଥିଲେହେଁ ଦଧିବାମନ ମଠରେ ତତ୍କାଳୀନ ମହନ୍ତ ରାଧାଚରଣ ଦାସ ଏହାକୁ ଦଧିବାମନଙ୍କ ଅପମାନ ବୋଧକରି ସାନରଥରେ

ଦଧିବାମନଙ୍କୁ ବିଜେ କରାଇଲେ ନାହିଁ । ଉଦାରଚେତା ରାଜା ଓ ତତ୍‌କାଳୀନ ଦେବୋତ୍ତର ଅଧିକାରୀ ପାର୍ବତୀ ଚରଣ ଦାସ ମହନ୍ତଙ୍କ କାର୍ଯ୍ୟରେ ହସ୍ତକ୍ଷେପ ନକରି ବଡ଼ରଥରେ ଜଗନ୍ନାଥ ଓ ସାନରଥରେ ରାଜପ୍ରାସାଦରେ ଜଗନ୍ନାଥ ଓ ଅନ୍ୟାନ୍ୟ ମୂର୍ତ୍ତି ବିଜେକରାଇ ରଥଯାତ୍ରା କଲେ । ସେହି ବର୍ଷଠାରୁ ବାଜିଚୌକରେ କନ୍ତିଓ ବ୍ରହ୍ମଚାରୀଙ୍କ ପ୍ରଦତ୍ତ ସ୍ଥାନରେ ଗୁଣ୍ଡିଚାମନ୍ଦିର ହେଲା ଏବଂ ପୂର୍ବୋକ୍ତ ମୀନାବଜାର ଗୁଣ୍ଡିଚାମନ୍ଦିର ଏକ ଦଧିବାମନ ମନ୍ଦିରରେ ରୂପାନ୍ତରିତ ହେଲା । ସେହି ବର୍ଷଠାରୁ ଦଧିବାମନ ଆଉ ରଥରେ ଯାତ୍ରା କରୁନାହାନ୍ତି । ଅଦ୍ୟାବଧି ସେହି ପରଂପରା ପ୍ରଚଳିତ ।

ଢେଙ୍କାନାଳ ରଥଯାତ୍ରାରେ ଦୁଇଗୋଟି ରଥ ନିର୍ମାଣ କରାଯାଉଅଛି । ଏହି ରଥଦ୍ୱୟ ଶିଳ୍ପଶାସ୍ତ୍ର, ମାନସାର, ଶୁଲ୍ୟସୂତ୍ର, ବିଶ୍ୱକର୍ମୀୟ ରଥନିର୍ମାଣ ପଦ୍ଧତି, ଗୃହକର୍ଣ୍ଣିକା ଓ ଶିଳ୍ପସାର ସଂଗ୍ରହ ବିଧିରେ ନିର୍ମାଣ କରାଯାଉଛି । ବଡ଼ରଥର ଉଚ୍ଚତା ୨୭ ହାତ ୧୭ ଅଙ୍ଗୁଳି ଏବଂ ଏହା ଦ୍ୱାଦଶଚକ ବିଶିଷ୍ଟ । ଏଥିରେ ଚାରିଗୋଟି ଅଶ୍ୱ ସଂଯୋଜିତ ହୋଇ ଟାଣିବା ନିମିତ୍ତ ଚାରିଗୋଟି ସୁଦୃଢ଼ ଦଉଡ଼ି ବନ୍ଧାଯାଏ । ଏହି ରଥର ପାର୍ଶ୍ୱଦେବତା ବରାହ, ନୃସିଂହ ଓ ବାମନ ଏବଂ ରଥ ମଧ୍ୟରେ ଦଶାବତାର ମୂର୍ତ୍ତି ସ୍ଥାପିତ । ଏହି ରଥର ସାରଥୀର ନାମ ଦାରୁକ, ରଥରକ୍ଷକ, ଗରୁଡ଼ ଓ ଆୟୁଧ ଚକ୍ର ତଥା ଶଙ୍ଖ । କଲ୍ୟାଣ ସୁନ୍ଦର ଏହି ରଥର ଶିରଦେବତା । ସଂଯୋଜିତ ଅଶ୍ୱମାନଙ୍କର ନାମ ଶଙ୍ଖ, ବଳାହକ, ଶ୍ୱେତ ଓ ହରିଦାଶ୍ୱ । ସାନରଥ ଉଚ୍ଚତାର କୌଣସି ନିର୍ଦ୍ଦିଷ୍ଟ ପରିମାପ ନାହିଁ । ଏହା ଆଠଚକ ବିଶିଷ୍ଟ । ଏହି ରଥର ରକ୍ଷକ ବାସୁଦେବ ଓ ସାରଥୀ ମାତଳୀ । ତୀବ୍ର ଓ ଘୋର ଦୁଇଗୋଟି ଅଶ୍ୱ । ସାନରଥରେ ଟାଣିବା ନିମିତ୍ତ ଦୁଇଗୋଟି ଦଉଡ଼ି ବନ୍ଧାଯାଏ। ଗୌରବର ବିଷୟ, ୧୯୯୯ ମସିହାରୁ କେବଳ ମହିଳାଭକ୍ତ ବୃନ୍ଦ ସାନରଥ ଟାଣୁ ଅଛନ୍ତି ।

ଅକ୍ଷୟ ତୃତୀୟାଠାରୁ ଢେଙ୍କାନାଳରେ ରଥ ନିର୍ମାଣ ଅନୁକୂଳ ହୁଏ । ମନ୍ଦିରର ପୂଜାପଣ୍ଡା ବୈଦିକ ବିଧିରେ ଅକ୍ଷୟ ତୃତୀୟାଦିନ ଠାକୁରଙ୍କ ଆଜ୍ଞାମାଳ ସହ ରଥଗଡ଼ାକୁ ଆସି ଅକ୍ଷ ପୂଜାକରନ୍ତି ଏବଂ ସେହିଦିନଠାରୁ ରଥନିର୍ମାଣ ଆରମ୍ଭ କରାଯାଏ । ଅକ୍ଷୟତୃତୀୟା ଠାରୁ ରଥଗଡ଼ାରେ ଅସ୍ଥାୟୀଗୃହ ନିର୍ମାଣ କରାଯାଇ ଅଭ୍ୟନ୍ତରରେ ରଥକାର୍ଯ୍ୟ ଚାଲିଥାଏ । ସ୍ନାନପୂର୍ଣ୍ଣମୀ ପରେ ଚକଲାଗି ହୋଇ ପଦାରେ ରଥ ନିର୍ମାଣ ହୁଏ । ସ୍ନାନପୂର୍ଣ୍ଣିମାଦିନ ପ୍ରତ୍ୟୁଷରୁ ଠାକୁରମାନେ ପହଣ୍ଡିର

ସ୍ନାନମଣ୍ଡପକୁ ବିଜେ ହୁଅନ୍ତି । ଉତ୍ତରପାର୍ଶ୍ୱ ସ୍ନାନମଣ୍ଡପରେ ଶ୍ରୀ ବଳଦେବଜୀଉଙ୍କ ସମେତ ସୁଭଦ୍ରା, କୃଷ୍ଣ, ରୁକ୍ମିଣୀ ସ୍ନାନ କରନ୍ତି ଏବଂ ଦକ୍ଷିଣପାର୍ଶ୍ୱ ସ୍ନାନ ମଣ୍ଡପରେ ଶ୍ରୀ ଜଗନ୍ନାଥ ସ୍ନାନ କରନ୍ତି । ସୁବାସିତ ବନୌଷଧି ମିଶ୍ରିତ ଜଳରେ ଶ୍ରୀଜୀଉମାନଙ୍କୁ ସ୍ନାନ କଲାପରେ ଚନ୍ଦନଲାଗି ହୁଏ । ଏହାପରେ ବସ୍ତ୍ରଲାଗି ଓ ଅଳଙ୍କାର ଆଭୂଷଣାଦି ଲାଗି ହୁଏ । ସ୍ନାନମଣ୍ଡପରେ ଧୂପ (ସକାଳ, ମଧ୍ୟାହ୍ନ ଓ ସନ୍ଧ୍ୟା) ଲାଗି ହୁଏ। ରାତ୍ରିରେ ଠାକୁରମାନେ ପହଣ୍ଡିରେ ଅଣସର ଘରକୁ ବିଜେ ହୁଅନ୍ତି । ଅଣସର କାଳରେ ଠାକୁରଙ୍କର ଶ୍ରୀଅଙ୍ଗସଂସ୍କାର, ଲେପ ଓ ଚିତ୍ର କରାଯାଏ । ନେତ୍ରୋତ୍ସବ ଦିନ ଠାକୁରଙ୍କୁ ଚକ୍ଷୁପ୍ରଦାନ କରାଯାଏ ଓ ପ୍ରତ୍ୟେକ ମନ୍ଦିରରେ ନୂଆପତାକା ଚଢ଼ାଯାଏ ।

ରଥଯାତ୍ରାଦିନ କେବଳ ଜଗନ୍ନାଥ ରଥ ଉପରକୁ ବିଜେ କରନ୍ତି । ଅନ୍ୟଠାକୁର ରଥଯାତ୍ରାରେ ଯିବାର ପରଂପରା ଢେଙ୍କାନାଳରେ ନାହିଁ । ପାରଂପରୀକ ରୀତିରେ ଢେଙ୍କାନାଳରାଜା ମଙ୍ଗଳାରୋପଣ କରିବାପରେ ଠାକୁରଙ୍କ ପହଣ୍ଡି ହୁଏ । ରାଜା ମଧ୍ୟ ପହଣ୍ଡିରେ ଠାକୁରଙ୍କ ପାଟଡୋର ଧରନ୍ତି। ଦଧିବାମନ ମଠ ଠାରେ ଠାକୁରଙ୍କୁ ଅଧରପଣା ଲାଗି କରାଯାଏ । ଠାକୁର ରଥପରିକ୍ରମା ପୂର୍ବକ ରଥ ଉପରକୁ ବିଜେ ହୋଇଥାନ୍ତି । ଠାକୁର ରଥାରୁଢ଼ ହେବାପରେ ରାଜା ସ୍ୱର୍ଣ୍ଣସମାର୍ଜନୀରେ ଛେରାପହଁରା କରିଥାନ୍ତି । ଛେରାପହଁରା ପରେ ରାଜା ମୁଣ୍ଡରେ ଶିରସ୍ତ୍ରାଣ ଭିଡ଼ି ପ୍ରଥମେ ରଥରେ ମୁଣ୍ଡ ଲଗାଇବାପରେ ରଥଟଣାଆରମ୍ଭହୁଏ । ରଥଟଣା ସମୟରେ ମୀନକେତନଧ୍ୱଜା ଆଗେ ଆଗେ ଚାଲୁଥାଏ । ଶ୍ରୀଗୁଣ୍ଡିଚାଦିନ ଠାକୁର ରଥ ଉପରେ ରହନ୍ତି ଓ ତହିଁ ପରଦିନ ପହଣ୍ଡିହୋଇ ଗୁଣ୍ଡିଚା ମନ୍ଦିରର ରତ୍ନସିଂହାସନକୁ ବିଜେ କରନ୍ତି । ଠାକୁର ଶ୍ରୀଗୁଣ୍ଡିଚାମନ୍ଦିରରେ ସାତଦିନ ନିବାସ କରନ୍ତି । ପଞ୍ଚମୀ ଦିନ ହେରାପଞ୍ଚମୀ ଓ ଷଷ୍ଠୀଦିନ ରଥ ଦକ୍ଷିଣମୋଡ଼ ହୁଏ । ବାହୁଡ଼ା ଦଶମୀ ଦିନ ଖେଚେଡ଼ିଭୋଗପରେ ଠାକୁର ପହଣ୍ଡିରେ ରଥକୁ ବିଜେ ହୁଅନ୍ତି ଏବଂ ଶ୍ରୀଗୁଣ୍ଡିଚା ସଦୃଶ ରଥଟଣା ହୋଇଥାଏ । ଦଶମୀ ଓ ଏକାଦଶୀ ଦୁଇଦିନ ଠାକୁର ରଥ ଉପରେ ରହନ୍ତି । ଏକାଦଶୀଦିନ ଠାକୁରଙ୍କ ସୁନାବେଶ ଅନୁଷ୍ଠିତ ହୋଇଥାଏ । ଦ୍ୱାଦଶୀ ରାତ୍ରିରେ ଠାକୁର ମନ୍ଦିରକୁ ପହଣ୍ଡିହୋଇ ଆସନ୍ତି । ଏହି ଯାତ୍ରାରେ ଏକ ଲକ୍ଷରୁ ଅଧିକ ଭକ୍ତ ଓ ଯାତ୍ରୀ ଏକତ୍ରିତ ହୋଇଥାନ୍ତି । ରଥଗଡ଼ା ଓ ଗୁଣ୍ଡିଚାମନ୍ଦିରଠାରେ ଭଜନ ସମାରୋହ ତଥା ପ୍ରବଚନ ଅନୁଷ୍ଠିତ ହୋଇଥାଏ ।

ଢେଙ୍କାନାଳ ସହରବ୍ୟତୀତ ଅନ୍ୟାନ୍ୟ ସ୍ଥାନରେ ଦଧିବାମନ, ତୃତୀୟାଦେବ ଓ ପତିତପାବନ ପ୍ରଭୃତି ଦେବତାଙ୍କର ମନ୍ଦିର ରହିଅଛି। ଏଥିରୁ ଅନେକ ସ୍ଥାନରେ ପାରଂପରୀକ ରୀତିରେ ରଥଯାତ୍ରା ଅନୁଷ୍ଠିତ ହୋଇଥାଏ । ଭୁବନଠାରେ ତୃତୀୟାଦେବଙ୍କ ରଥଯାତ୍ରା ମହାରାଜା ଭାଗୀରଥଙ୍କ ରାଜତ୍ୱରୁ ହୋଇଆସୁଅଛି । ଏଠାରେ ତିନିଗୋଟି ରଥ ନିର୍ମାଣ କରାଯାଏ । ପ୍ରାୟ ପଚାଶହଜାର ଭକ୍ତ ଓ ଯାତ୍ରୀ ଭୁବନ ରଥଯାତ୍ରାରେ ଯୋଗ ଦେଇଥାନ୍ତି । ଐତିହାସିକ ନୀଳକଣ୍ଠପୁର ଗ୍ରାମରେ ଊନବିଂଶ ଶତାବ୍ଦୀରୁ ଦଧିବାମନଙ୍କ ରଥଯାତ୍ରା ହୋଇଆସୁଅଛି । ଏଠାରେ ଗୋଟିଏ ରଥ ନିର୍ମାଣ କରାଯାଏ । ଆଖପାଖ ଗ୍ରାମରୁ ପ୍ରାୟ ଦଶହଜାର ଭକ୍ତ ଏହି ଯାତ୍ରାରେ ଯୋଗଦେଇଥାନ୍ତି । ମଲାଙ୍ଗଡ଼ିହ ମଠରେ ଦଧିମାନଙ୍କ ରଥଯାତ୍ରା ଊନବିଂଶ ଶତାବ୍ଦୀରୁ ପାଳିତ । ଗୋରଡ଼ିଥାଠାରେ ଦଧିବାମନଙ୍କ ରଥଯାତ୍ରା ଊନବିଂଶ ଶତାବ୍ଦୀରୁ ପାଳିତ । ଆଳୁତୁମାଠାରେ ମଧ ଦଧିବାମନଙ୍କ ରଥଯାତ୍ରା ଅନୁଷ୍ଠିତ ହୋଇ ଆସୁଅଛି । କନ୍ଧରାଗ୍ରାମରେ ମଧ ଦଧିବାମଙ୍କ ରଥଯାତ୍ରା ହେଉଅଛି । ପରଜଙ୍ଗଠାରେ ମହାରାଜା ଭାଗୀରଥଙ୍କ ରାଜତ୍ୱରୁ ପତିତପାବନଙ୍କ ରାଥଯାତ୍ରା ହୋଇ ଆସୁଅଛି । ଗଁପୁର ଦଧିବାମନଙ୍କ ରଥଯାତ୍ରା ବିଂଶ ଶତାବ୍ଦୀରୁ ପାଳିତ । ଦଲାରଠାରେ ଦଧିବାମନଙ୍କ ରଥଯାତ୍ରା, କରମୂଳଠାରେ ଦଧିବାମନଙ୍କ ରଥଯାତ୍ରା, କାବେରାଗ୍ରାମରେ ଦଧିବାମନଙ୍କ ରଥଯାତ୍ରା, ଲହଡ଼ାଠାରେ ଦଧିବାମନଙ୍କ ରଥଯାତ୍ରା, ନୂଆଗଡ଼ ଠାରେ ତୃତୀୟାଦେବଙ୍କରଥଯାତ୍ରା, ବଳରାମପୁରରେ ତୃତୀୟାଦେବଙ୍କ ରଥଯାତ୍ରା, ବଉଳପୁରଠାରେ ତୃତୀୟାଦେବଙ୍କ ରଥଯାତ୍ରା, ତାଳବରକୋଟଠାରେ ଦଧିବାମନଙ୍କ ରଥଯାତ୍ରା ଓ ମାର୍ଥାପୁରଶାସନରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ରାଜାରାଜୁଡ଼ା ଅମଳରୁ ଅନୁଷ୍ଠିତ । ଏତଦ୍‌ଭିନ୍ନ, କାମାକ୍ଷାନଗର, ଓଡ଼ାପଡ଼ା, ଗଁଦିଆ, ଯୋରନ୍ଦା, ରାଙ୍କିଆ, ଯମୁନାକୋଟ ପ୍ରଭୃତି ସ୍ଥାନରେ ମହାସମାରୋହରେ ରଥଯାତ୍ରା ପାଳନ କରାଯାଉଅଛି । ପ୍ରତିବର୍ଷ ଅଭୂତପୂର୍ବ ଆଇନ ଉଲ୍ଲାସରେ ବିଭିନ୍ନ ସ୍ଥାନରେ ରଥଯାତ୍ରା ଅନୁଷ୍ଠିତ ହୋଇ ଢେଙ୍କାନାଳରେ ଏହା ଏକ ଗଣ ମହୋତ୍ସବରେ ଭବ୍ୟରୂପ ଧାରଣ କରିଛି । ଦିନକୁ ଦିନ ବିଭିନ୍ନ ସ୍ଥାନର ଅନୁଷ୍ଠିତ ରଥଯାତ୍ରାରେ ଭକ୍ତଙ୍କ ସଂଖ୍ୟା ବୃଦ୍ଧିପାଇବାରେ ଲାଗିଲାଣି । ସ୍ଥଳ ବିଶେଷରେ ଶ୍ରୀ ଜଗନ୍ନାଥ ଲୀଳାମୃତ ପରିବେଷଣ ଓ ପ୍ରବଚନ ଅନୁଷ୍ଠିତ ହୋଇ ଢେଙ୍କନାଳ ଜନମାନସ ଭକ୍ତିରସାଣିତ ହୋଇପାରିଛି । ଅନେକ ସ୍ଥାନରେ ଦେବୋତ୍ତର ବିରାଗ

ଦ୍ୱାରା ରଥଯାତ୍ରା ପରିଚାଳିତ ହେଉଥିଲେହେଁ ଜନସାଧାରଣ ଅକୁଣ୍ଠ ଚିତ୍ତରେ ଯୋଗଦାନ ପୂର୍ବକ ଏହିସବୁ ଯାତ୍ରାକୁ ସାଫଲ୍ୟମଣ୍ଡିତ କରୁଛନ୍ତି । କେତେକ ସ୍ଥାନରେ ନୂତନ ଭାବରେ ମଧ୍ୟ ଶ୍ରୀ ଜଗନ୍ନାଥ ମନ୍ଦିର ନିର୍ମାଣ କରାଯାଇ ରଥଯାତ୍ରା ପ୍ରଚଳନ କରାଗଲାଣି । ପିଙ୍ଗୁଆ, ମନ୍ଦାର, ଝାରଦା, ଗୋବିନ୍ଦପୁର ଓ ଗଁବଆଠାରେ ଜଗନ୍ନାଥ ମନ୍ଦିର ନଥାଇ ମଧ୍ୟ ରଥଯାତ୍ରା ଅନୁଷ୍ଠିତ ହେଉଅଛି ।

ଢେଙ୍କାନାଳରେ ରାଜକୀୟ ପୃଷ୍ଠପୋଷକତାରେ ଷୋଡ଼ଶ ଶତାବ୍ଦୀରୁ ଜଗନ୍ନାଥ ସଂସ୍କୃତିର ବୀଜବିପନ ହୋଇଥିଲେହେଁ ସମାଜର ଆଦୃତି ଲାଭ ପୂର୍ବକ ଏହା ବିକାଶ ଲାଭ କରିଥିଲା । ଏହାର ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟ ହେଉଛି ଢେଙ୍କାନାଳର ପ୍ରାଚୀନ ଓ ସାର୍ବଜନୀନ ଶୈବସଂସ୍କୃତି ସହ ସମନ୍ୱୟ ରକ୍ଷି ଏହା ବିକାଶର ଧାରାରେ ପ୍ରବାହିତ ହୋଇଥିଲା । ପରିଣାମ ସ୍ୱରୂପ ଜଗନ୍ନାଥଙ୍କର ସ୍ୱୟଂ ପତିତପାବନ ଲୀଳା ରଥଯାତ୍ରାରେ ଏହା ଜାତି ଅଜାତିର ପ୍ରାଚୀର ଉଠାଇଦେଇ ଢେଙ୍କାନାଳର ସାର୍ବଜନୀନ ଧର୍ମରୂପେ ପରିପ୍ରକାଶ ହୋଇଥିଲା । ଢେଙ୍କାନାଳର କୋଣେ ଅନୁକୋଣେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ହେବା ସହିତ ରଥଯାତ୍ରା ଅନୁଷ୍ଠିତ ହୋଇ ଏହା ଢେଙ୍କାନାଳର ଜନମାନସକୁ ଜଗନ୍ନାଥ ଚେତନା ରସାଣିତ କରିପାରିଥିଲା । ସମନ୍ୱୟ ଚେତନାର ଉତ୍ତରଣରେ ଏହାର ବ୍ୟାପକ ପ୍ରସାର ଘଟି ସଂପ୍ରତି ଢେଙ୍କାନାଳମାଟିରେ ଏହା ଭବ୍ୟରୂପ ଧାରଣ କରିଛି । ଗୌରବର କଥା, ଜଗନ୍ନାଥ ସଂସ୍କୃତିର ଉତ୍ତରଣ ଓ ଭୂୟୋବିକାଶରେ ୧୯୨୩ ମସିହାଠାରୁ ଢେଙ୍କାନାଳରେ ଲକ୍ଷ୍ମୀପୂଜା ଅନୁଷ୍ଠିତ ହୋଇ ସଂପ୍ରତି ଭାରତପ୍ରସିଦ୍ଧ ମହୋତ୍ସବର ମାନ୍ୟତା ପ୍ରାପ୍ତ । ସଂକ୍ଷେପରେ ଉଲ୍ଲେଖକଲେ, ଢେଙ୍କାନାଳ ମାଟି ଯୁଗେ ଯୁଗେ ଜଗନ୍ନାଥ ସଂସ୍କୃତି ଓ ରଥଯାତ୍ରା ତଥା ଲକ୍ଷ୍ମୀପୂଜା ସଦୃଶ ଜାତିବିଚାର ଶୂନ୍ୟ ଉପାସନାର ପ୍ରବହମାନ ଧାରାରେ ପ୍ଲାବିତ ଏବଂ ଢେଙ୍କାନାଳର ଜନମାନସ ଜଗନ୍ନାଥ ଚେତନାର ଉଦ୍‌ବୁଦ୍ଧ ।



# ଢେଙ୍କାନାଳର ଶାକ୍ତ ସଂସ୍କୃତି

ଓଡ଼ିଶାର ଶାକ୍ତ ସଂସ୍କୃତିରେ ଢେଙ୍କାନାଳର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ଗବେଷକଙ୍କ ମତରେ ଓଡ଼ିଶାର ଯାଜପୁରରେ ଆରାଧିତ ବିରଜାହିଁ ଭାରତର ପ୍ରଥମ ଦ୍ୱିଭୂଜା ମହିଷମର୍ଦ୍ଦିନୀ ମୂର୍ତ୍ତି । ବିରଜାଙ୍କ ମୂର୍ତ୍ତି ଅନୁଧ୍ୟାନ ପୂର୍ବକ ମୂର୍ତ୍ତିତତ୍ତ୍ୱବିଦ୍‌ମାନେ ମତ ଦିଅନ୍ତି ଯେ ଏହି ମୂର୍ତ୍ତି ଦ୍ୱିତୀୟ ଖ୍ରୀଷ୍ଟାବ୍ଦ ଠାରୁ ଚତୁର୍ଥ ଶତାବ୍ଦୀ ମଧ୍ୟରେ ନିର୍ମିତ । ଠିକ୍ ସେହି ସମୟରେ ଢେଙ୍କାନାଳ ଜିଲା କୁଆଁଳୋ ଗ୍ରାମ ସନ୍ନିକଟ ସ୍ତମ୍ଭେଶ୍ୱରୀ ମୂର୍ତ୍ତି ନିର୍ମିତ । ଏଥିରୁ ପ୍ରମାଣିତ ହୁଏ ଉପକୂଳ ଅଞ୍ଚଳ ଯାଜପୁରରେ ଯେଉଁ ସମୟରେ ବିରଜାଙ୍କ ପୂଜା ଆରମ୍ଭ କରାଯାଇଥିଲା ଠିକ୍ ସେହି ସମୟରେ ପାର୍ବତ୍ୟାଞ୍ଚଳ ଢେଙ୍କାନାଳର ପ୍ରାଚୀନ କୋଦାଳକ ନଗରୀ (କୁଆଁଳୋ) ସନ୍ନିକଟରେ ସ୍ତମ୍ଭେଶ୍ୱରୀ ଉପାସନା ଆରମ୍ଭ କରାଯାଇଥିଲା । ସ୍ତମ୍ଭେଶ୍ୱରୀ ଚତୁର୍ଭୂଜା ମହିଷ ମର୍ଦ୍ଦିନୀ ହୋଇଥିବାରୁ କେତେକଙ୍କ ମତରେ ବିରଜାଙ୍କ ଉପାସନାରେ ପ୍ରଭାବିତ ହୋଇ ବ୍ରାହ୍ମଣୀ ଅବବାହିକାରେ ନିବାସ କରୁଥିବା ଅଣଆର୍ଯ୍ୟ ଗୋଷ୍ଠୀ ସ୍ତମ୍ଭେଶ୍ୱରୀଙ୍କ ପୂଜା ଆରମ୍ଭ କରିଥିଲେ ।

ସ୍ତମ୍ଭେଶ୍ୱରୀ ଉପାସନାର ଐତିହ୍ୟ ବହୁପ୍ରାଚୀନ । ଗବେଷକ ବିଜୟଚନ୍ଦ୍ର ମଜୁମ୍‌ଦାର ସୋନପୁର ସ୍ଥିତ ସ୍ତମ୍ଭେଶ୍ୱରୀଙ୍କର ସୁବିସ୍ତୃତ ଇତିହାସ ବର୍ଣ୍ଣନା କରିଥିଲେହେଁ କୁଆଁଳୋ ସନ୍ନିକଟ ସ୍ତମ୍ଭେଶ୍ୱରୀଙ୍କ ସଂପର୍କରେ ବିଷଦ ଗବେଷଣା ହୋଇନାହିଁ । କେବଳ ଢେଙ୍କାନାଳ ଇତିହାସର ପ୍ରଣେତା ପଣ୍ଡିତ ରାମଚନ୍ଦ୍ରନନ୍ଦ ଭକ୍ତିବିନନାଦ ସ୍ତମ୍ଭେଶ୍ୱରୀଙ୍କ ସଂପର୍କରେ ତଥ୍ୟ ଉପସ୍ଥାପନା କରିଛନ୍ତି । ତାଙ୍କ ମତରେ କୁଆଁଳୋ ସନ୍ନିକଟ ସ୍ତମ୍ଭେଶ୍ୱରୀ ହିଁ ଓଡ଼ିଶାର ପ୍ରଥମ ସ୍ତମ୍ଭେଶ୍ୱରୀ ମୂର୍ତ୍ତି ଏବଂ ଏହାଙ୍କ ଉପାସନାରେ ପ୍ରଭାବିତ ହୋଇ ସୋନପୁର ତଥା ଅନ୍ୟାନ୍ୟ ଅଞ୍ଚଳର ଅଧିବାସୀ ବୃନ୍ଦ ସ୍ତମ୍ଭେଶ୍ୱରୀ ପୂଜା କରୁଥିଲେ ।

ଢେଙ୍କାନାଳ ଜିଲା ପରଜଙ୍ଗ ଥାନାର କୁଆଁଳୋ ଗ୍ରାମ ହେଉଛି ପ୍ରାଚୀନ କୋଦାଳକ ନଗରୀ । ଏଠାରେ ବର୍ତ୍ତମାନ ଅଷ୍ଟଶମ୍ଭୁ ମନ୍ଦିର ଭଗ୍ନ ଅବସ୍ଥାରେ ବିଦ୍ୟମାନ, ଯାହାକି ସ୍ତମ୍ଭ ଉପାଧିଧାରୀ ଶୁଲ୍କୀ ବଂଶୀ ରାଜନ୍ୟବୃନ୍ଦଙ୍କ କୀର୍ତ୍ତୀ । ସ୍ତମ୍ଭେଶ୍ୱରୀ ଏହି ଶୁଲ୍କୀ ରାଜାମାନଙ୍କ ଇଷ୍ଟଦେବୀ ଥିଲେ । ବର୍ତ୍ତମାନ ଏହି ମୂର୍ତ୍ତି ବାଲିସାହି ଓ କଲଦା ଗ୍ରାମ ମଧ୍ୟରେ ଅବସ୍ଥିତ ସିଙ୍ଗଡ଼ା ଗ୍ରାମ ମୁଣ୍ଡରେ ମୁକ୍ତାକାଶ

ତଳେ ପୂଜିତା । ୫ ଫୁଟ ଉଚ୍ଚର ଏହି ଚତୁର୍ଭୁଜା ମହିଷ ମର୍ଦ୍ଦିନୀ ମୂର୍ତ୍ତି ସ୍ତମ୍ଭାକୃତି ଏକ ଶିଳାରେ ନିର୍ମିତ । ପାଦଦେଶରେ ବିଶାଳ ପଥରଟିଏ ପଡ଼ିରହିଛି । ମୂର୍ତ୍ତିଟିର ମସ୍ତକରେ କୀରୀଟୀ, ହସ୍ତରେ ଖଡ୍ଗ, ପାନପାତ୍ର ଓ ତୋମର, ଉଦରଦେଶ କଙ୍କାଳ, ସ୍କନ୍ଧରେ ଉପବୀତ ଏବଂ ପୃଷ୍ଠଦେଶରେ ଉଡ୍ଡୀୟମାନ କାକ ବିଦ୍ୟମାନ ସ୍ଥାନୀୟ ଲୋକେ ଏହି ମୂର୍ତ୍ତିକୁ ''ସିଙ୍ଗଡ଼ାଚଣ୍ଡୀ'' କହିଥାନ୍ତି । ସ୍ଥାନଟି ଏକ ପ୍ରାଚୀନ ତନ୍ତ୍ରପୀଠ ସଦୃଶ ପ୍ରତୀୟମାନ ।

ଗବେଷକଙ୍କ ମତରେ ସ୍ତମ୍ଭେଶ୍ୱରୀ ଏକ ଅଣଆର୍ଯ୍ୟ ପୂଜିତା ଦେବୀ ଓ ତାହାଙ୍କ ପାରଂପରୀକ ପୂଜକ ହେଉଛି ଡମାଳ ବା ଦମାଳ ଜାତି । ସୂଚନା ଯୋଗ୍ୟ ଯେ, ସ୍ତମ୍ଭେଶ୍ୱରୀଙ୍କ ପୀଠ ନିକଟରେ ତମୋଳ ନାମରେ ଏକ ଗ୍ରାମ ରହିଅଛି ଏବଂ ଅଦ୍ୟାବଧି ଡମାଳମାନେ ସ୍ତମ୍ଭେଶ୍ୱରୀଙ୍କ ପୂଜକ । ବିଜୟଚନ୍ଦ୍ର ମଜୁମ୍‌ଦାରଙ୍କ ମତରେ ସ୍ତମ୍ଭେଶ୍ୱରୀଙ୍କ ଆଦିପୀଠ ଓଡ଼ସିଂହା, ଯାହାକି ସ୍ତମ୍ଭେଶ୍ୱରୀ ପୀଠର ଅନତି ଦୂରରେ ଅବସ୍ଥିତ । ଏଥିରୁ ପ୍ରମାଣିତ ହେଉଛି ଢେଙ୍କାନାଳର ସ୍ତମ୍ଭେଶ୍ୱରୀ ଓଡ଼ିଶାର ପ୍ରାଚୀନ ସ୍ତମ୍ଭେଶ୍ୱରୀ । ଆର୍ଯ୍ୟମାନେ ଏହି ଭୂଖଣ୍ଡରେ ଅନୁପ୍ରବେଶ କରିବାର ବହୁ ପୂର୍ବରୁ ଅଣଆର୍ଯ୍ୟ ଡମାଳମାନେ କୁଆଁଲୋ ସନ୍ନିକଟ ସିଙ୍ଗଡ଼ା ଗ୍ରାମରେ ସ୍ତମ୍ଭେଶ୍ୱରୀଙ୍କ ପୂଜା କରୁଥିଲେ । ସୂଚନା ଯୋଗ୍ୟ ଯେ, ପ୍ରାଚୀନ କାଳରୁ ଢେଙ୍କାନାଳର ଶବର, ଗଣ୍ଡ, କୋହ୍ଲ, ଜୁଆଙ୍ଗ, କନ୍ଧ, ଡମ ପ୍ରଭୃତି ଜନଜାତି ଦେବୀ ଉପାସକ ଥିଲେ ଏବଂ ସେହିମାନଙ୍କ ଶାକ୍ତଚେତନାରୁ ଚତୁର୍ଭୂଜା ସ୍ତମ୍ଭେଶ୍ୱରୀ ଉପାସନାରେ ଉନ୍ମେଷ ଘଟିଥିଲା । ପରବର୍ତ୍ତୀ କାଳରେ ଆର୍ଯ୍ୟମାନେ ଏହି ଭୂଖଣ୍ଡରେ ବସବାସ କଲେ ତଥା କୁଆଁଲୋ ଠାରେ ଚୌହାନ୍ ବଂଶୀୟ ଶୁଳ୍କୀ ରାଜନ୍ୟବୃନ୍ଦ ରାଜତ୍ୱ କଲେ । ଏହି ବଂଶର ରାଜାମାନଙ୍କ ତାମ୍ରଶାସନରୁ ଉପଲବ୍‌ଧ ହୁଏ ସେମାନେ ସ୍ତମ୍ଭେଶ୍ୱରୀ ଉପାସକ ଥିଲେ । ଅନେକ ତାମ୍ରଶାସନରେ ସ୍ତମ୍ଭେଶ୍ୱରୀ ସେମାନଙ୍କର ଇଷ୍ଟଦେବୀ ଥିଲେ ବୋଲି ଉଲ୍ଲେଖ ରହିଛି । ଗୌରବର କଥା, ତାମ୍ରପତ୍ର ମାନଙ୍କରେ କୁଆଁଲୋ, ଓଡସିଂହା ଓ ସିଙ୍ଗଡ଼ା ପ୍ରଭୃତି ଗ୍ରାମମାନଙ୍କର ନାମୋଲ୍ଲେଖ ରହିଛି । ଏଥିରୁ ହୃଦ୍‌ବୋଧ ହୁଏ, ଅଣଆର୍ଯ୍ୟ ଡମାଳମାନଙ୍କ ପୂଜିତା ସ୍ତମ୍ଭେଶ୍ୱରୀ ଶାକ୍ତଚେତନାର ଉତ୍ତରଣରେ ଆର୍ଯ୍ୟବଂଶୀ ଶୁଳ୍କୀରାଜାମାନଙ୍କ ଇଷ୍ଟଦେବୀରେ ରୂପାନ୍ତରିତ ହୋଇଥିଲେ । ଢେଙ୍କାନାଳ ଇତିହାସ ବର୍ଣ୍ଣନାନୁସାରେ ସ୍ତମ୍ଭେଶ୍ୱରୀଙ୍କର ଭବ୍ୟ ମନ୍ଦିର ରହିଥିଲା, ଯାହାକି ସଂପ୍ରତି ଭୂତଳଶାୟୀ । ଶୁଳ୍କୀବଂଶର ଅନ୍ୟତମ କୀର୍ତ୍ତୀ କୁଆଁଲୋର

ଅଷ୍ଟଶମ୍ଭୁ ମନ୍ଦିର ସଂପ୍ରତି ଅର୍ଦ୍ଧଭଗ୍ନ ଅବସ୍ଥାରେ ଦଣ୍ଡାୟମାନ । ଏହି ଅଷ୍ଟଶମ୍ଭୁ ପୀଠରେ ଦଶଭୂଜା ମହିଷମର୍ଦ୍ଦିନୀ କନକେଶ୍ୱରୀ ନାମରେ ପୂଜିତା । ଶିବମନ୍ଦିର ସମୂହର କାନ୍ଥରେ ଅଙ୍କିତ ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ଓ ଅନ୍ୟାନ୍ୟ ଦେବୀମୂର୍ତ୍ତିରୁ ଉପଲବ୍ଧ ହୁଏ, ସପ୍ତମ ଶତାବ୍ଦୀଠାରୁ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଢେଙ୍କାନାଳରେ ଶକ୍ତି ଉପାସନା ଚରମ ଶୀର୍ଷରେ ଉପନୀତ ହୋଇଥିଲା । ଶୁଳ୍କୀମାନଙ୍କ ତାମ୍ରଶାସନରୁ ଜଣାଯାଏ ସେମାନେ ଶୈବ ଥିଲେ ଏବଂ ସେହି ବଂଶ ଦ୍ୱାରା ନିର୍ମିତ ଅଷ୍ଟଶମ୍ଭୁମନ୍ଦିର ତତ୍‌କାଳୀନ ଭାରତର ସୁଉଚ୍ଚ କାରୁକାର୍ଯ୍ୟ ମଣ୍ଡିତ ମନ୍ଦିରଥିଲା । ମନ୍ଦିର ସନ୍ନିକଟରେ ସେମାନେ ଦଶଭୂଜା କନକେଶ୍ୱରୀ ପୂଜା କରୁଥିଲେ ହେଁ ପୂର୍ବରୁ ଅଣଆର୍ଯ୍ୟ ପୂଜିତା ସ୍ତମ୍ଭେଶ୍ୱରୀଙ୍କୁ କୁଳଦେବୀର ମର୍ଯ୍ୟାଦା ପ୍ରଦାନ ପୂର୍ବକ ଅସଂଖ୍ୟ ଅଣଆର୍ଯ୍ୟ ପ୍ରଜାଙ୍କ ପ୍ରିୟଭାଜନ ହୋଇଥିଲେ । ସେହି ସ୍ତମ୍ଭେଶ୍ୱରୀଙ୍କ ପ୍ରାସାଦରୁ ସେ ଅଠରଜଣ ଗଣ୍ଡଦଳପତିଙ୍କୁ ପରାସ୍ତକରି ବିଶାଳ ଭୂଖଣ୍ଡର ଅଧିକାରୀ ହୋଇପାରିଥିଲେ । ଶୈବଧର୍ମୀ ଶୁଳ୍କୀ ରାଜନ୍ୟ ବୃନ୍ଦଙ୍କ ପୁରୋଧା ଯଜୁର୍ବେଦାଧ୍ୟାୟୀ କୃଷ୍ଣାତ୍ରେୟ ଗୋତ୍ରୀ ପଣ୍ଡିତବର୍ଗ ଚଣ୍ଡୀପୂଜା କରି ଚଣ୍ଡଉପାଧି ଧାରଣ କରିଥିଲେ । ସେମାନଙ୍କ ପୁରୋଧା ବଂଶ ସଂପ୍ରତି ମୁଣ୍ଡଇଲୋ ଓ ବିରାଶାଳ ଗ୍ରାମରେ ନିବାସ କରୁଛନ୍ତି । ପ୍ରମାଣିତ ହୁଏ, ସପ୍ତଶତାବ୍ଦୀ ଠାରୁ ଦଶମଶତାବ୍ଦୀ ପର୍ଯ୍ୟନ୍ତ ଢେଙ୍କାନାଳରେ ଚଣ୍ଡୀ ଉପାସନାର ପ୍ରାବଲ୍ୟ ରହିଥିଲା ତଥା ଅଦ୍ୟାବଧି ସ୍ତମ୍ଭେଶ୍ୱରୀ ସିଙ୍ଗଡ଼ାଚଣ୍ଡୀ ନାମରେ ଖ୍ୟାତ ।

ଢେଙ୍କାନାଳର ବ୍ରାହ୍ମଣୀ ଉପତ୍ୟକା ଓ ଦକ୍ଷିଣ ଭାଗରେ ନାଗ ସଂସ୍କୃତି, ବିକାଶ ଲାଭ କରିଥିଲା । ଗଁଦିଅର ପୂର୍ବଦିଗରେ ଅବସ୍ଥିତ ନାମରାଜନ୍ୟବୃନ୍ଦଙ୍କ ପ୍ରାଚୀନ ରାଜଧାନୀ ଡମରାଜାକଟକରେ ନାଗମାତା ହିଁ ଥିଲେ ଇଷ୍ଟଦେବୀ । ଏହି ଦେବୀ ଗଡ଼ଚଣ୍ଡୀ ରୂପେ ପୂଜା ପାଉଥିଲେ । କୃଷ୍ଣଶିଳାରେ ନିର୍ମିତ ଏହି ମୂର୍ତ୍ତିଙ୍କର ଊର୍ଦ୍ଧାଂଶ ନାରୀ ଓ ଅଧମାଙ୍ଗ ସର୍ପାକୃତି । ମସ୍ତକରେ ସପ୍ତସର୍ପର ଛତ୍ର । ଏହି ମୂର୍ତ୍ତି ଯଥାର୍ଥରେ ନାଗମାତା ଇଳା । ସ୍ଥାନୀୟ ଲୋକେ ଏହାକୁ ଅନନ୍ତେଶ୍ୱରୀ କହିଥାନ୍ତି । ତଦନୁରୂପ ପ୍ରସିଦ୍ଧ ଦ୍ୱାଦଶଜ୍ୟୋତିର୍ଲିଙ୍ଗ ବ୍ରାହ୍ମଣୀ ତଟସ୍ଥ ନାଗନାଥେଶ୍ୱରଙ୍କ ପୀଠର ଅନତି ଦୂରରେ ଦେବୀ ନାଗନାମୀ ବିରାଜିତା, ତାଙ୍କରି ନାମାନୁସାରେ ସ୍ଥାନର ନାମ ନାଗନା । ଏହି ଦେବୀ ତ୍ରିଫଣାବିଶିଷ୍ଟ ନାଗମାତାଙ୍କ ମୂର୍ତ୍ତି । ସଂପ୍ରତି ଗ୍ରାମଦେବୀ ଭାବରେ ଏହି ନାଗମାତା ପୂଜିତା । ଏଥିରୁ ପ୍ରମାଣିତ ହୁଏ, ଢେଙ୍କାନାଳ ଉତରାଂଶରେ ଦେବୀ ସ୍ତମ୍ଭେଶ୍ୱରୀଙ୍କ ଉପାସନା ଚାଲିଥିବା ସମୟରେ

ମଧ୍ୟାଞ୍ଚଳ ଓ ଦକ୍ଷିଣାଞ୍ଚଳରେ ନାଗମାତାଙ୍କର ଉପାସନା ଚାଲିଥିଲା । ଏତଦଭିନ୍ନ ଶବର, ଗଣ୍ଡ, ଜୁଆଙ୍ଗ, ମୁଣ୍ଡା, କନ୍ଧ, ଭୂମିଜ, ଡମ୍ବ, ଗୋନ୍ଦରା ପ୍ରଭୃତି ପ୍ରତ୍ୟେକ ଆଦିମ ଅଧିବାସୀ ଦେବୀଉପାସକ ଥିଲେ । ପ୍ରାଥମିକ ଅବସ୍ଥାରେ ସେମାନେ ପ୍ରତୀକାତ୍ମକ ଉପାସନା କରୁଥିଲେ ହେ ପରବର୍ତ୍ତୀକାଳରେ ବିଭିନ୍ନ ଦେବୀ ମୂର୍ତ୍ତି ପୂଜା କରିଥିଲେ । ସେହି ମୂର୍ତ୍ତିମାନଙ୍କ ମଧ୍ୟରୁ ଅନେକ ସଂପ୍ରତି ଗ୍ରାମଦେବୀ ଭାବରେ ପୂଜିତ ।

ଯାଜପୁର ସନ୍ନିକଟରେ ରାଜତ୍ୱ କରୁଥିବା ଭୌମକର ରାଜା ଓ ରାଣୀମାନେ ପଶ୍ଚିମ ଦିଗରେ ଭୌମନଗରୀ ଦୁର୍ଗ ସ୍ଥାପନା କରିଥିଲେ । ଯାହାକି ଅନଙ୍ଗଭୀମଦେବ ୩ୟଙ୍କ  ରାଜତ୍ୱରୁ ଭୀମନଗରୀ ଭାବରେ ଖ୍ୟାତି ଲାଭ କରିଥିଲା । ଭୌମକରଙ୍କ ଦ୍ୱାରା ସ୍ଥାପିତ ଏହି ଦୁର୍ଗର ଇଷ୍ଟ ଦେବୀ ଥିଲେ ରାମଚଣ୍ଡୀ । ଏହି ମୂର୍ତ୍ତି ଅଷ୍ଟଭୂଜା ମହିଷମର୍ଦ୍ଦିନୀ ତଥା ସଂପ୍ରତି ନାଧରାରାମଚଣ୍ଡୀ ନାମରେ ସୁପ୍ରସିଦ୍ଧା । ପୁରାଣ ବର୍ଣ୍ଣନାନୁସାରେ ଏହି ଦେବୀ ଭୀମାଆଖ୍ୟା ଧାରଣ ପୂର୍ବକ ଅଷ୍ଟଭୂଜା ହୋଇଛନ୍ତି । ଭୌମ ଯୁଗରୁ ଏହି ପୀଠ ଏକ ଶକ୍ତିପୀଠର ମାନ୍ୟତା ଲାଭ କରିଥିଲା । ଢେଙ୍କାନାଳ ଅଞ୍ଚଳରେ ଶାକ୍ତଧର୍ମର ପ୍ରଚାରରେ ଏହି ପୀଠର ମହିମା ଉଲ୍ଲେଖନୀୟ । ଭୌମକର ଯୁଗ ପରେ ସୋମବଂଶୀ ରାଜା ଚନ୍ଦ୍ରକେଶରୀ କପିଳାସରେ ପ୍ରଥମେ ଶିବମନ୍ଦିର ନିର୍ମାଣକରି ପାର୍ବତୀ ମୂର୍ତ୍ତି ପ୍ରତିଷ୍ଠା କଲେ । ଏହି ଦେବୀ ଚତୁର୍ଭୁଜା ମହିଷମର୍ଦ୍ଦିନୀ ଦୁର୍ଗା । ଶାକ୍ତ ପଲ୍ଲବୋକ୍ତ ବିଧିରେ ଦେବୀଙ୍କର ଦୈନନ୍ଦିନ ପୂଜା ଓ ପାର୍ବଣ ଅନୁଷ୍ଠିତ ହୋଇଥାଏ । ନାଧରାରାମଚଣ୍ଡୀ ଓ କପିଳାସ ପାର୍ବତୀଙ୍କର ଶରଦ୍‌କାଳୀନ ମହାପୂଜା ଚଣ୍ଡୀପାଠ ପୂର୍ବକ ମହାସମାରୋହରେ ପ୍ରତିଷ୍ଠାକାଳରୁ ହୋଇଆସୁଅଛି । ଗବେଷକଙ୍କ ମତରେ ରାମଚଣ୍ଡୀ ପୀଠ ଓ କପିଳାସ ପୀଠ ହେଉଛି ପ୍ରାଚୀନ ତନ୍ତ୍ରପୀଠ । ଲୋକବିଶ୍ୱାସ ରହିଛି ଯେ, ପୁଣ୍ୟପୀଠ କପିଳାସରେ ତନ୍ତ୍ରର ସକଳ ଜ୍ଞାନ ଶିବଙ୍କ ମୁଖ୍ୟନିଃସୃତ ତଥା ମହାମାୟାଶକ୍ତିଙ୍କ ଦ୍ୱାରା ଅନୁମୋଦିତ । ଏଠାରେ ପୀଠାଧିଶ୍ୱର ଚନ୍ଦ୍ରଶେଖର ପାର୍ବତୀଙ୍କୁ ତନ୍ତ୍ରର ଦିବ୍ୟଚେତନା ପରିବେଷଣ କରୁଅଛନ୍ତି । ଏହି ଦୃଷ୍ଟିରୁ ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ ଶାକ୍ତ ତନ୍ତ୍ର ପ୍ରଚାରରେ କପିଳାସର ଭୂମିକା ଅବର୍ଣ୍ଣନୀୟ । ପ୍ରାଚୀନକାଳରୁ ଏହି ପୀଠରୁ ଶାକ୍ତତନ୍ତ୍ରର ଧାରା ପ୍ରବାହିତ ହୋଇ ପୂର୍ବାଞ୍ଚଳରେ ତନ୍ତ୍ର ସାମ୍ରାଜ୍ୟ ସୃଷ୍ଟି ହୋଇଥିଲା ।

ଢେଙ୍କାନାଳର ଦକ୍ଷିଣାଞ୍ଚଳରେ ଶବରମାନଙ୍କର ଆଧିପତ୍ୟ ରହିଥିଲା । ବର୍ତ୍ତମାନ ଢେଙ୍କାନାଳ ସହରରେ ପ୍ରାଚୀନକାଳରେ ଢେଙ୍କାଶବର ରାଜତ୍ୱ କରୁଥିଲା । ତାହାର ଇଷ୍ଟଦେବୀ ଥିଲେ ଜେନାଦେଇ । ଏହି ଦେବୀ ସଂପ୍ରତି ଜର୍ଜକୋଟ ଛକର ଅନତି ଦୂରରେ ପୂଜିତା । ସେହି ସମୟରେ ଢେଙ୍କାନାଳ ଉପତ୍ୟକାରେ ସୁନ୍ଦରଶୁଣୀ, ବ୍ରାହ୍ମଣୀଦେବୀ, ବୁଢ଼ୀ ଠାକୁରାଣୀ ମଧ ପୂଜା ପାଉଥିଲେ । ଏହି ସବୁ ଦେବୀମୂର୍ତ୍ତି ପ୍ରାଚୀନ କାଳରୁ ଶବର ଆରାଧିତ ଥିଲେ ହେଁ ସଂପ୍ରତି ଆର୍ଯ୍ୟାଗୋଷ୍ଠୀ ଦ୍ୱାରା ପୂଜିତା । ଢେଙ୍କାନାଳର ଉତ୍ତରାଞ୍ଚଳରେ ବିରାଜିତା କାଲୁଣୀଠାକୁରାଣୀ ପ୍ରାଥମିକ ପର୍ଯ୍ୟାୟରେ ଗଣ୍ଡମାନଙ୍କ ଦ୍ୱାରା ପୂଜା ପାଉଥିଲେ । ପରବର୍ତ୍ତୀ କାଳରେ ଜେନା ସଂଜ୍ଞାଧାରୀ ଜନୈକ କ୍ଷତ୍ରିୟ ଜେନାଦେଶ ନାମରେ ଏକ କ୍ଷୁଦ୍ର ରାଜ୍ୟ ପ୍ରତିଷ୍ଠାକଲେ ଏବଂ କାଲୁଣୀ ଠାକୁରାଣୀଙ୍କ ବିଜେସ୍ଥଳୀ ନିକଟରେ ଶିବୁଲାପଶି ନାମକ ଗଡ଼ ନିର୍ମାଣ କଲେ । କାଲୁଣୀ ଠାକୁରାଣୀ ଏହି ଜେନା ବଂଶର ଇଷ୍ଟଦେବୀ ସ୍ୱରୂପରେ ପୂଜା ପାଇଲେ । ବର୍ତ୍ତମାନ ଏହି ଦେବୀ ଶିବୁଲାପଶି ନିକଟରେ ଆର୍ଯ୍ୟମାନଙ୍କ ଦ୍ୱାରା ପୂଜିତା । ପ୍ରାଚୀନ କାଳରେ ଢେଙ୍କାନାଳର ଅନ୍ୟ ଯେଉଁ ଦେବୀପ୍ରତିମା ପୂଜାପାଉଥିଲେ  ସେମାନେ ହେଉଛନ୍ତି ମାର୍ଥାପୁରର ବ୍ରାହ୍ମଣୀ ଦେବୀ ଓ ଶବରଶବରୁଣୀ, ବିରାଶାଳର ପୀଢ଼ଗଢ଼ା ଠାକୁରାଣୀ, କାବେରାର ସିଦ୍ଧ ବାସେଲୀ, ଜମୁନାକୋଟର ମହାପାଟ ଠାକୁରାଣୀ ଭୁବନର ଚଣ୍ଡୀ ଓ ବଣିଜାରୀ ଠାକୁରାଣୀ, ଗଙ୍ଗାଧର ପ୍ରସାଦର ମହିଷମର୍ଦ୍ଦିନୀ, ସପ୍ତଶଯ୍ୟାର ଜେନାଦେଇ ଓ ପୁରୁଣାଅମାଙ୍ଗର ଚଣ୍ଡୀ । ଏତଦଭିନ୍ନ କପିଳାସ ପୀଠରେ ଶାବରତନ୍ତ୍ରର ସପ୍ତମାତୃକା ବିଶେଷ ପ୍ରସିଦ୍ଧି ଲାଭକରିଥିଲେ । ଏହି ସପ୍ତମାତୃକା ହେଉଛନ୍ତି ତରକେଇ, ମାହାଦେଇ, ବିଷିନାହାକାଣୀ, ଛାଟଖୁମ୍ବ, ନଳୀଆ, ବାଉତି ଓ ଅଲୀ । ସୂଚନା ଯୋଗ୍ୟ ଯେ ଶାବରତନ୍ତ୍ରର ଏହି ସବୁ ଦେବୀ ସଂପ୍ରତି ଆର୍ଯ୍ୟଗୋଷ୍ଠୀ ପୂଜିତା ।

ମଧ୍ୟଯୁଗରେ ଢେଙ୍କାନାଳର ସର୍ବତ୍ର ଚଣ୍ଡୀ ଓ ମଙ୍ଗଳା ଉପାସନାର ପ୍ରାଧାନ୍ୟ ଅନୁଭୂତ ହୋଇଥିଲା । ଚଣ୍ଡୀଙ୍କ ମଧ୍ୟରେ ହଦଗଡ଼ର ଗଡ଼ଚଣ୍ଡୀ, କରମୂଳର ରାମଚଣ୍ଡୀ, ବିରାଶାଳର ଚଣ୍ଡୀ, ମାର୍ଥାପୁରର ଗଡ଼ଚଣ୍ଡୀ, ଚଣ୍ଡୀପାଳର ଚଣ୍ଡୀ ବିଶେଷ ପ୍ରସିଦ୍ଧି ଲାଭ କରିଥିଲେ । ପୂଜିତା ମଙ୍ଗଳାଙ୍କ ମଧ୍ୟର ବାଗୁଆଁର ମଙ୍ଗଳା, ଦୀଘୀ ଗ୍ରାମର ମଙ୍ଗଳା ଅରଖପାଳର  ମଙ୍ଗଳା,ତେନ୍ତୁଳିଆପଡ଼ାର ମଙ୍ଗଳା, ପ୍ରଭୃତି ମୁଖ୍ୟ ଥିଲେହେଁ ପ୍ରାୟ ପ୍ରତ୍ୟେକ ଗ୍ରାମରେ ମଙ୍ଗଳାଙ୍କ ପୂଜା ଅବ୍ୟାହତ ରହିଥିଲା ।

ସେହିକାଳରୁ ଚଣ୍ଡିଆ ନାମରେ ଏକ ଜାତି ମଙ୍ଗଳାପୂଜାକୁ କୌଳିକ ବୃତ୍ତି ଭାବରେ ଗ୍ରହଣ କରି ଗ୍ରାମେ ଗ୍ରାମେ ଘଣ୍ଟବଜାଇ ମଙ୍ଗଳାମୂର୍ତ୍ତି ମୁଣ୍ଡରେ ବା କାନ୍ଧରେ ବହନ କରି ମଙ୍ଗଳାପୂଜାର ବ୍ୟାପକ ପ୍ରସାର ଘଟାଇଥିଲେ । ଆର୍ଯ୍ୟନାରୀଗଣଙ୍କ ମଧ୍ୟରେ ନିଶାମଙ୍ଗଳବାର ଖ୍ୟାତି ବୃଦ୍ଧି ପାଇଥିଲା । ଏହି ସମୟରେ ଅନେକ ସ୍ଥାନରେ ମଙ୍ଗଳାଙ୍କର ସ୍ୱତନ୍ତ୍ର ମନ୍ଦିର ମଧ୍ୟ ନିର୍ମାଣ ହୋଇଥିଲା । ଢେଙ୍କାନାଳ ରାଜବଂଶ ମଧ୍ୟ କେତେକ ସ୍ଥାନରେ ଚଣ୍ଡୀ ଓ ମଙ୍ଗଳାଙ୍କ ନିତ୍ୟନୈମିତ୍ତିକ ପୂଜା ନିମିତ୍ତ ଭୂସଂପତି ପ୍ରଦାନକରି ଶକ୍ତି ଉପାସନାକୁ ପ୍ରୋତ୍ସାହନ ଦେଇଥିଲେ । ଗୌରବର କଥା, ମଧ୍ୟଯୁଗରେ କପିଳାସରେ ଭୁବନେଶ୍ୱରୀଙ୍କ ଉପାସନା ଆରମ୍ଭ ହେବା ସହିତ ଶ୍ରୋତ୍ରିୟ ବ୍ରାହ୍ମଣମାନେ ସ୍ୱ ସ୍ୱ ଗୃହରେ ଚଣ୍ଡୀ, କନକଦୁର୍ଗା, ଭୁବନେଶ୍ୱରୀ, ସିଦ୍ଧେଶ୍ୱରୀ, ମାହେଶ୍ୱରୀ ପ୍ରଭୃତି ପ୍ରତିମା ପୂଜା ପୂର୍ବକ ଶାରଦୀୟ ଦୁର୍ଗୋତ୍ସବରେ ବ୍ରତୀ ହୋଇଥିଲେ । ଢେଙ୍କାନାଳ ରାଜପ୍ରାସଦ ସନ୍ନିକଟରେ ସ୍ୱତନ୍ତ୍ରଭାବରେ ଦେବୀମନ୍ଦିର ନିର୍ମାଣ କରାଯାଇ ଶରତ୍‌କାଳୀନ ଦୁର୍ଗୋତ୍ସବ ମହାସମାରୋହରେ ଆରମ୍ଭ ହୋଇଥିଲା ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଢେଙ୍କାନାଳ ସହରରେ ଗଜଲକ୍ଷ୍ମୀ ପୂଜା ଆରମ୍ଭ ହୋଇ ପରବର୍ତ୍ତୀ କାଳରେ ସାର୍ବଜନୀନ ମହୋତ୍ସବର ସ୍ୱରୂପ ଧାରଣ କରିଥିଲା । ସଂପ୍ରତି ଏହା ସର୍ବଭାରତୀୟ ସ୍ତରରେ ପ୍ରସିଦ୍ଧ ଲାଭ କରିଅଛି । ଏହା ପ୍ରଭାବରେ ଭାପୁର, ଯୋରନ୍ଦା, କରମୂଳ, ଭୁବନ, ମାର୍ଥାପୁର, ଆଦିପୁରା, କାମାକ୍ଷାନଗର, ଓଡ଼ାପଡ଼ା, ବଣସିଂହ ଓ ଗୋବିନ୍ଦପୁର ପ୍ରଭୃତି ସ୍ଥାନରେ ମହାସମାରୋହରେ ମୃଣ୍ମୟୀ ଲକ୍ଷ୍ମୀପୂଜା କରାଗଲାଣି । ଏତଦ୍‌ଭିନ୍ନ ଢେଙ୍କାନାଳ, କାମାକ୍ଷାନଗର, ଭୁବନ,ମାର୍ଥାପୁର ପ୍ରଭୃତି ସ୍ଥାନରେ ମୃଣ୍ମୟୀ ଦୁର୍ଗାପୂଜା ଓ ଦଶହରା ସାର୍ବଜନୀନ ଶାକ୍ତୋତ୍ସବ ରୂପେ ପ୍ରତିଭାତ । ଶାକ୍ତ ସଂସ୍କୃତିର ଉତ୍ତରଣରେ ଢେଙ୍କାନାଳର ସର୍ବତ୍ର ଦୁର୍ଗାପୂଜା,ଲକ୍ଷ୍ମୀପୂଜା,କାଳୀପୂଜା ଓ ଖୁଦୁରୁକୁଣୀ ପୂଜାପ୍ରଭୃତି ଅନୁଷ୍ଠିତ ହେଲା ତଥା ଶାକ୍ତଧର୍ମ ଏକ ସାର୍ବଜନୀନ ଧର୍ମ ଭାବରେ ସ୍ୱୀକୃତ ଲାଭ କଲା, ଗ୍ରାମେ ଗ୍ରାମେ ଗ୍ରାମଦେବତୀ ପୀଠ ମାନଙ୍କରେ ଗ୍ରାମର ସର୍ବବିଧ ମଙ୍ଗଳ ନିମିତ୍ତ ବାର୍ଷିକ ମହୋତ୍ସବ ବା ଯନ୍ତାଳ ଅନୁଷ୍ଠିତ ହେଲା । ଗୌରବର କଥା, ବିଂଶ ଶତାବ୍ଦୀର ଶେଷ ସମୟରେ ଢେଙ୍କାନାଳର ଅନେକ ସ୍ଥାନରେ ତାରେଣୀଙ୍କର ମନ୍ଦରିମାନ ଗଢ଼ିଉଠି ଶକ୍ତିଉପାସନାର ବ୍ୟାପକ ପ୍ରସାର ଘଟିଲା । ଯେଉଁ ଶାକ୍ତ ପର୍ବସମୂହ ଢେଙ୍କାନାଳବାସୀଙ୍କୁ ପ୍ରଭାବିତ କରିଛି

ସେଗୁଡ଼ିକ ହେଉଛି ପଣାସଂକ୍ରାନ୍ତି, ରଜ ସଂକ୍ରାନ୍ତି, ଗଙ୍ଗାଦଶହରା, ଶ୍ରୀରାଧାଷ୍ଟମୀ, ଶ୍ରୀ ଦୁର୍ଗାଷ୍ଟମୀ ଦଶହରା, ଲଳିତା ସପ୍ତମୀ, କୁକ୍‌ଟୀବ୍ରତ, ଲକ୍ଷ୍ମୀପୂଜା, କାଳୀପୂଜା, ରାଇ ଦାମୋଦର ପୂଜା, ପ୍ରଥମାଷ୍ଟମୀ ଓ ମାଣବସା ଗୁରୁବାର ଇତ୍ୟାଦି ।

ମୋଟଉପରେ ଉଲ୍ଲେଖ କଲେ, ଖ୍ରୀଷ୍ଟପୂର୍ବ କାଳରୁ ଢେଙ୍କାନାଳର ଶାକ୍ତ ସଂସ୍କୃତିର ଧାରା ଅବ୍ୟାହତ । ପ୍ରାଥମିକ ପର୍ଯ୍ୟାୟରେ ଏହା ଆଦିବାସୀ ଜନଜାତିଙ୍କ ମଧ୍ୟରେ ପ୍ରତୀକାତ୍ମକ ଉପାସନା ସ୍ୱରୂପରେ ଜନ୍ମଲାଭ କରିଥିଲେହେଁ, ପରବର୍ତ୍ତୀ କାଳରେ ସାକାର ଉପାସନା ସ୍ୱରୂପରେ ପ୍ରତିଭାତ ହୋଇଥିଲା । ଉଲ୍ଲେଖଡ଼୍ୀୟ ଯେ, ଆର୍ଯ୍ୟ ପୁରୋଦୃଷ୍ଟିରେ ଢେଙ୍କାନାଳର ଶାକ୍ତ ସଂସ୍କୃତି ବୈଦିକ, ଶୈବ ଓ ବୈଷ୍ଣବ ସଂସ୍କୃତିର ସ୍ପର୍ଶରେ ଆତ୍ମିକ ସନନ୍ଦ ଭାବରେ ଜନ ଜୀବନକୁ ପ୍ରଭାବିତ କରିଥିଲା । ସଂପ୍ରତି ଢେଙ୍କାନାଳର କୋଣେ ଅନୁକୋଣେ ଅଗଣିତ ଦେବୀ ପ୍ରତିମା ଆରାଧିତା ତଥା ଶାକ୍ତଧର୍ମର ଉତ୍ତରଣରେ ଏହା ସାର୍ବଜନୀନ ଧର୍ମ ସ୍ୱରୂପରେ ପ୍ରତିହାତ ।



# ଢେଙ୍କାନାଳର ଶୈବସଂସ୍କୃତି

ଢେଙ୍କାନାଳରେ ଶୈବ ଉପାସନାର ପ୍ରାଚୀନତମ ପୀଠ ହେଉଛି କୁଆଁଳୋର ଅଷ୍ଟଶମ୍ଭୁ ମନ୍ଦିର । ଏହି ମନ୍ଦିର ସମୂହ ସପ୍ତମ ଅଷ୍ଟମ ଓ ନବମ ଶତାବ୍ଦୀରେ କୋଦାଳକ ନଗରୀରେ ରାଜତ୍ୱ କରୁଥିବା ଶୁଲ୍କୀ ବଂଶ ରାଜନ୍ୟ ବୃନ୍ଦଙ୍କ ଦ୍ୱାରା ନିର୍ମିତ । ଗବେଷକମାନଙ୍କ ମତରେ ଏହି ପୀଠରେ ପ୍ରଥମେ ଗୋଟିଏ ମନ୍ଦିର ନିର୍ମାଣ କରାଯାଇଥିଲା, ଶୈବ ଉପାସନାର ଉତ୍ତରଣରେ ପଞ୍ଚମୁଖୀଶିବ ଉପାସନା ପରଂପରାରେ କୁଆଁଳୋ ମୁଖ୍ୟ ମନ୍ଦିର ନିକଟରେ ଅନ୍ୟ ଚାରିଗୋଟି ମନ୍ଦିର ନିର୍ମିତ ହେଲା । ପରେ ପରେ ଅଷ୍ଟଶମ୍ଭୁ ଉପାସନା ପରଂପରାରେ ଆଉ ତିନିଗୋଟି ଶିବମନ୍ଦିର ନିର୍ମାଣ ହୋଇ ଏହି ପୀଠ ଅଷ୍ଟଶମ୍ଭୁ ପୀଠରେ ପରିଣତ ହେଲା । ଅତଏବ, ଅଷ୍ଟଶମ୍ଭୁ ପୀଠର ବିଭିନ୍ନ ମନ୍ଦିର ଭିନ୍ନ ଭିନ୍ନ ଶୁଲ୍କୀ ନରପତିଙ୍କ ଦ୍ୱାରା ନିର୍ମିତ । ଗୌରବର କଥା, ଏହି ମନ୍ଦିର ସମୂହ ତତ୍‌କାଳୀନ ଭାରତର ସର୍ବୋଚ୍ଚ ସୂକ୍ଷ୍ମକାରୁକାର୍ଯ ପୂର୍ଣ୍ଣ ମନ୍ଦିର ଥିଲା । ଭାରତର ପୁରୀ, କୋଣାର୍କ ଓ ଭୁବନେଶ୍ୱର ସମେତ ଅନ୍ୟାନ୍ୟ ପ୍ରସିଦ୍ଧ ମନ୍ଦିର କୁଆଁଳୋ ମନ୍ଦିର ନିର୍ମାଣର ପରବର୍ତ୍ତୀ କୀର୍ତ୍ତୀ । ଏହି ଦୃଷ୍ଟିକୋଣରୁ ଭାରତୀୟ ଶୈବ ସଂସ୍କୃତିରେ କୁଆଁଳୋ ମନ୍ଦିରର ଗୁରୁତ୍ୱ ରହିଛି । ଉଲ୍ଲେଖ ଯୋଗ୍ୟଯେ ସେହି ସମୟରେ ଭୁବନେଶ୍ୱର, ବଜ୍ରକୋଟ ପ୍ରଭୃତି ସ୍ଥାନରେ ମନ୍ଦିର ନିର୍ମାଣ ହୋଇଥିଲେ ହେଁ ସେହି ସବୁ ମନ୍ଦିର କୁଆଁଳୋ ମନ୍ଦିରଠାରୁ ଉଚ୍ଚରେ କମ୍‌ଥିଲା । ଶୁଲ୍କୀରାଜନ୍ୟ ବୃନ୍ଦ ସେମାନଙ୍କ ପ୍ରଦତ୍ତ ତାମ୍ରପତ୍ରରେ ଏହି କୀର୍ତ୍ତୀ ଅନ୍ୟରାଜାଙ୍କ କୀର୍ତ୍ତିକୁ ଧିକ୍‌କାର କରୁଛି ବୋଲି ସ୍ୱଷ୍ଟ ଉଲ୍ଲେଖକରି ଯାଇଛନ୍ତି । ନିଃ ସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ, ଢେଙ୍କାନାଳ ଶୈବସଂସ୍କୃତି ପ୍ରାଚୀନ ଓ ମହତ୍ତ୍ୱପୂର୍ଣ୍ଣ।

ଢେଙ୍କାନାଳର ବ୍ରାହ୍ମଣୀ ଅବବାହିକାରେ ଚତୁର୍ଥ-ପଞ୍ଚମ ଶତାବ୍ଦୀରେ ଲକୁଳୀଶ ସଂପ୍ରଦାୟ ଦ୍ୱାରା ଶୈବଧର୍ମର ପ୍ରସାର ଘଟିଥିଲା। ଏଥିରେ ପ୍ରଭାବିତ ହୋଇ କୋଦାଳକନଗରୀ ବା ଆଧୁନିକ କୁଆଁଳୋଠାରେ ରାଜତ୍ୱ କରୁଥିବା ଶୁଲ୍କୀ ରାଜନ୍ୟବୃନ୍ଦ ଶୈବଧର୍ମ ଗ୍ରହଣ କରିଥିଲେ । ସେମାନଙ୍କ ପ୍ରଦତ୍ତ ତାମ୍ରଶାସନରେ ବୃଷଭଲାଞ୍ଛନ ପ୍ରତୀକ ବିଦ୍ୟମାନ । ଏହି ବଂଶର ଜୟସ୍ତମ୍ଭ ଓ କୁଳସ୍ତମ୍ଭଙ୍କ ତାମ୍ରଶାସନରେ ପ୍ରଥମେ ଶିବଙ୍କରସ୍ତୁତି କରାଯାଇଛି । ପ୍ରମାଣିତ ହୋଇଛି, ଏହି

ବଂଶର ରାଜନ୍ୟବୃନ୍ଦ କୁଆଁଳୋଠାରେ ଅଷ୍ଟଶମ୍ଭୁ ମନ୍ଦିର ନିର୍ମାଣ କରିଥିଲେ । ଏହି ଅଷ୍ଟଶମ୍ଭୁ ହେଉଛନ୍ତି କନକେଶ୍ୱର, ସ୍ୱପ୍ନେଶ୍ୱର, ଐଶାନେଶ୍ୱର, କପିଳେଶ୍ୱର, ବୈଦ୍ୟନାଥେଶ୍ୱର, ପଞ୍ଚିମେଶ୍ୱର, ବାଣେଶ୍ୱର ଓ ଲୋକନାଥେଶ୍ୱର । ତନ୍ମଧ୍ୟରୁ ମୁଖ୍ୟମନ୍ଦିରରେ କନକେଶ୍ୱର ବିରାଜିତ । ସଂପ୍ରତି ଏଠାରେ ପାଞ୍ଚଗୋଟି ମନ୍ଦିରର ଭଗ୍ନାବଶେଷ ରହିଅଛି, ଯାହାକି ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସଂରକ୍ଷିତ । ମନ୍ଦିର ସମୂହର କାରୁକାର୍ଯ୍ୟ ଅତୀବ ରମଣୀୟ । ଏଗୁଡ଼ିକର ନିର୍ମାଣକାଳ ସପ୍ତମ ଶତାବ୍ଦୀ । ଏଥିରୁ ହୃଦ୍‌ବୋଧ ହୁଏ, ଭୁବନେଶ୍ୱରରେ ଶୈବ ସାମ୍ରାଜ୍ୟ ବିସ୍ତାରର ବହୁପୂର୍ବରୁ ଏହି ଅଞ୍ଚଳରେ ଶୈବସଂସ୍କୃତି ପ୍ରସାର ଲାଭ କରିଥିଲା ।

ବ୍ରାହ୍ମଣୀ ଅବବାହିକାରେ ଶୈବ ସଂସ୍କୃତି ପ୍ରସାର ପୂର୍ବରୁ ନାଗସଂସ୍କୃତିର ବ୍ୟାପକ ପ୍ରସାର ଘଟିଥିଲା । ଏହି ନାଗ ସଂସ୍କୃତିର କେନ୍ଦ୍ରବିନ୍ଦୁ ଥିଲା ନାଗନାନଗରୀ । ଲକୁଳୀଶ ସଂପ୍ରଦାୟର ଶୈବଧର୍ମ ପ୍ରଚାର ଦ୍ୱାରା ନାଗକ୍ଷେତ୍ର ନାମନା ଶୈବକ୍ଷେତ୍ରରେ ପରିଣତ ହେଲା । ନାଗନାରେ ନାଗନାମୀଙ୍କ ସହିତ ନାଗନାଥେଶ୍ୱର ଶିବଲିଙ୍ଗ ପୂଜା ପାଇଲେ ଏବଂ ଶୈବ ସଂସ୍କୃତିର ଉତ୍ତରଣରେ ଏହି ଲିଙ୍ଗ ଦ୍ୱାଦଶ ଜ୍ୟୋତିଲିଙ୍ଗର ଅନ୍ୟତମ ଜ୍ୟୋତିର୍ଲିଙ୍ଗଙ୍କର ମାନ୍ୟତା ଲାଭ କଲେ । ପରେ ପରେ ବ୍ରାହ୍ମଣୀ ନଦୀକୂଳରେ କେତେକ ଶିବଲିଙ୍ଗ ପୂଜା ପାଇଲେ । ତନ୍ମଧ୍ୟରେ ମାର୍ଥାପୁରର ବାଲୁଙ୍କେଶ୍ୱର, ଗୋରଡ଼ିଆର ଉଗ୍ରେଶ୍ୱର, ଭୁବନର ବୃଦ୍ଧେଶ୍ୱର, ବ୍ରହ୍ମପୁରର ସ୍ୱପ୍ନେଶ୍ୱର ଓ ଏକଘରିଆର କନକେଶ୍ୱର ପ୍ରଭୃତି ପ୍ରଧାନ । ସୋମବଂଶ ରାଜତ୍ୱରେ ଚନ୍ଦ୍ରକେଶରୀଙ୍କ ଦ୍ୱାରା କପିଳାସର କ୍ଷୁଦ୍ର ମନ୍ଦିରଟିଏ ନିର୍ମାଣ ହୋଇଥିଲେ ହେଁ ମନ୍ଦିରଟି ଭାଙ୍ଗିଯିବାରୁ ଗଙ୍ଗବଂଶୀ ପ୍ରଥମ ନରସିଂହ ଦେବଙ୍କ ଦ୍ୱାରା ବର୍ତ୍ତମାନର ମନ୍ଦିରଟି ତ୍ରୟୋଦଶ ଶତାବ୍ଦୀରେ ନିର୍ମାଣ ହୋଇଥିଲା । ତତ୍‌ପୂର୍ବରୁ ଅନଙ୍ଗଭୀମଦେବଙ୍କ ଦ୍ୱାରା ନାଗନାରେ ନାଗନାଥେଶ୍ୱର ମନ୍ଦିର ମଧ୍ୟ ଦ୍ୱାଦଶ ଶତାବ୍ଦୀରେ ନିର୍ମାଣ ହୋଇଥିଲା । ବର୍ତ୍ତମାନର ଗଙ୍ଗାଧର ପ୍ରସାଦସ୍ଥିତ ପଞ୍ଚିମେଶ୍ୱର ମନ୍ଦିରର ପୂର୍ବ ଦିଗରେ ଦୁଇଟି ପ୍ରାଚୀନ ଶିବ ମନ୍ଦିରର ଭଗ୍ନାବଶେଷ ପରିଦୃଷ୍ଟ ହୁଏ । ଶିଳ୍ପସ୍ଥାପତ୍ୟରୁ ପ୍ରମାଣିତ ହୁଏ ଏହି ମନ୍ଦିର ଦୁଇଟିର ନିର୍ମାଣକାଳ ଅଷ୍ଟମ-ନବମ ଶତାବ୍ଦୀ । ଏଥିରୁ ପ୍ରମାଣିତ ହୁଏ ସପ୍ତମ ଶତାବ୍ଦୀଠାରୁ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ଢେଙ୍କାନାଳରେ ଶୈବଧର୍ମ ବିକାଶର ଚରମସୀମାରେ ଉପନୀତ ହୋଇଥିଲା ତଥା ଢେଙ୍କାନାଳର କପିଳାସ, ନାଗନା ଓ କୁଆଁଳୋ ପ୍ରଭୃତି ଶୈବକ୍ଷେତ୍ର ସର୍ବ ଭାରତୀୟ ସ୍ତରରେ ପ୍ରସିଦ୍ଧି ଲାଭ କରିଥିଲା ।

ଷୋଡ଼ଶ ଶତାବ୍ଦୀରେ ଅଭିନବ ଢେଙ୍କାନାଳ ରାଜ୍ୟ ଗଠନ ହେବାପରେ କରମୂଳଠାରେ ଦୌଢ଼େଶ୍ୱର, ବାଗୁଆଁରେ ବାଲୁଙ୍କେଶ୍ୱର, ବ୍ରାହ୍ମଣଖଣ୍ଡଖୋଲରେ ବରାହ ବାଲୁଙ୍କେଶ୍ୱର, ଓଡ଼ିଶରେ ସୁରେଶ୍ୱର, ଭୁବନରେ ଭୁବନେଶ୍ୱର, ଗୋବିନ୍ଦ ବିଦ୍ୟାଧର ପୁରରେ ସ୍ୱପ୍ନେଶ୍ୱର, ଲୋକନାଥପୁରରେ ଲୋକନାଥେଶ୍ୱର, ହାଟୁଆରୀରେ କପିଳେଶ୍ୱର, ଭାଗୀରଥୀପୁରରେ କେଦାରେଶ୍ୱର, ଶିବୁଲାପଶିରେ ସ୍ୱପ୍ନେଶ୍ୱର, ସୋଗରରେ ସୋଗରେଶ୍ୱର, ବୁଢ଼ୀବିଲିରେ ନୀଳକଣ୍ଠେଶ୍ୱର, ରାୟନୃସିଂହ ପୁରରେ ନୀଳକଣ୍ଠେଶ୍ୱର, କନ୍ଦରସିଂହାରେ ରାମେଶ୍ୱର, ସରାଙ୍ଗରେ ଐଶାନ୍ୟେଶ୍ୱର, କମଳାଙ୍ଗରେ କମଳେଶ୍ୱର, ନୟାଭାଗୀରଥୀପୁରରେ ରଣେଶ୍ୱର ଓ ରାମେଶ୍ୱର, ଭୋଜଦେଇ ପୁରରେ ଭୋଳେଶ୍ୱର, ସଦାଶିବପୁରରେ ବାଲୁଙ୍କେଶ୍ୱର, ଲତାଦେଇ ପୁରରେ ଅନ୍ନକୋଟୀଶ୍ୱର, ବିଷ୍ଣୁପୁରରେ ନୀଳକଣ୍ଠେଶ୍ୱର, ଘଟିପିରିରେ ରାମେଶ୍ୱର ଓ ଗଙ୍ଗାଧର ପ୍ରସାଦରେ ପଞ୍ଚିମେଶ୍ୱର ଶିବଲିଙ୍ଗ ତଥା ମନ୍ଦିର ପ୍ରତିଷ୍ଠା ହୋଇ ଶୈବସଂସ୍କୃତିର ବ୍ୟାପକ ପ୍ରସାର ଘଟିଲା ।

ନାଗନା ସଦୃଶ ଢେଙ୍କାନାଳର ପୂର୍ବାଞ୍ଚଳରେ ନାଗସଂସ୍କୃତିର ଅନ୍ୟତମ ପୀଠ ଥିଲା ଡମରାଜାକଟକ । ଏଠାରେ ନାଗମାତା ଇଳାଙ୍କର ମୂର୍ତ୍ତି ପୂଜା ପାଉଥିଲା । ବର୍ତ୍ତମାନ ସ୍ଥାନୀୟ ଲୋକେ ଏହି ଦେବୀଙ୍କୁ ଅନନ୍ତେଶ୍ୱରୀ କହୁଛନ୍ତି। ଡମରାଜାକଟକରେ ପୂର୍ବେ ନାଗରାଜନ୍ୟ ବୃନ୍ଦ ରାଜୁତି କରୁଥିଲେ । ମଧ୍ୟଯୁଗରେ ଧୀର ବଂଶୀୟ ରାଜାଗଣ ଏଠାରେ ରାଜୁତି କରୁଥିଲେ । ଏହି ବଂଶର ଗଙ୍ଗାଧର ଧୀର ଡମରାଜାକଟକ ନିକଟସ୍ଥ ବଣିଆପଡ଼ାଠାରେ ସ୍ୱପ୍ନେଶ୍ୱରଙ୍କ ଶିବଲିଙ୍ଗ ସ୍ଥାପନ କରି ମନ୍ଦିର ନିର୍ମାଣ କରାଇଥିଲେ । କ୍ରମେ ଏହି ଶିବପୀଠଟି ପୂର୍ବାଞ୍ଚଳରେ ପ୍ରସିଦ୍ଧ ଶୈବକ୍ଷେତ୍ରର ମାନ୍ୟତା ଲାଭ କଲା । ଏପର୍ଯ୍ୟନ୍ତ ଏହି ଶୈବପୀଠରେ ଖ୍ୟାତି ରହିଅଛି । ହରିସିଂହ ବିଦ୍ୟାଧର ବଣିଆପଡ଼ା କ୍ଷୁଦ୍ର ଜନପଦଟିକୁ ଢେଙ୍କାନାଳରେ ମିଶାଇ ଦେବାପରେ ସଡଙ୍ଗୀ ଗ୍ରାମରେ ବାଲୁଙ୍କେଶ୍ୱର ଶିବଲିଙ୍ଗ ସ୍ଥାପନ କରିଥିଲେ । ଏତଦ୍‌ଭିନ୍ନ ଢେଙ୍କାନାଳର ସତାଇଶ ଗୋଟି ବ୍ରାହ୍ମଣଶାସନରେ ବିଭିନ୍ନ ନାମଧାରୀ ଶିବଲିଙ୍ଗ ମଧ୍ୟଯୁଗୀରେ ପ୍ରତିଷ୍ଠା ହୋଇଥିଲେ । ପରିଣାମ ସ୍ୱରୂପ, ଢେଙ୍କାନାଳରେ ଶୈବଧର୍ମ ଏକ ଗଣଧର୍ମର ମର୍ଯ୍ୟାଦା ଲାଭ କରିଥିଲା ।

ସ୍ୱାଧୀନତା ପରେ ଢେଙ୍କାନାଳର କୋଣେ ଅନୁକୋଣେ ଅନେକ ଶିବମନ୍ଦିର ନିର୍ମାଣ ହୋଇଛି । ତନ୍ମଧ୍ୟରେ ମଠକରଗୋଳାର ଶିବମନ୍ଦିର, ବିରଶାଳର ଶିବମନ୍ଦିର, କାମାକ୍ଷାନଗରର ଶିବମନ୍ଦିର, ଜିରାଳର ଜଳେଶ୍ୱର

ମନ୍ଦିର, ବାଇଶିଆଁରେ ଶିବମନ୍ଦିର, ଶଙ୍କର ପ୍ରତାପପୁରର ଶିବମନ୍ଦିର, ଶଙ୍କର ପୁରର ଶିବ ମନ୍ଦିର ସପ୍ତଶଯ୍ୟାରେ ଶିବମନ୍ଦିର, ଜୀବନଖୋଲର ଶିବମନ୍ଦିର, ଦେଓପଡ଼ାର ପ୍ରାଚୀନ କୁମ୍ଭେଶ୍ୱର ମହାଦେବଙ୍କ ମନ୍ଦିରର ପୁନର୍ନିର୍ମାଣ, ବଳରାମ ପୁରର ଶିବମନ୍ଦିର, ଗୋବିନ୍ଦପୁରର ଶିବମନ୍ଦିର, ସରଦେଇପୁରର ଶିବମନ୍ଦିର, ଢେଙ୍କାନାଳ କଲେଜ ବାଇପାସ୍‌ର ଶିବମନ୍ଦିର, ହରିପୁରର ମହାକାଳ ମନ୍ଦିର, ଦକ୍ଷିଣକାଳୀ ଶିବମନ୍ଦିର, ନୂଆପୋଖରୀ ହୁଡ଼ାର ଆଖଣ୍ଡଳମଣି ମନ୍ଦିର, କୋରିଆଁର ସ୍ୱପ୍ନେଶ୍ୱର ମନ୍ଦିର, ଢେଙ୍କାନାଳବସ୍ ଷ୍ଟାଣ୍ଡର ଆଖଣ୍ଡଳେଶ୍ୱର, ଅମଲାପଡ଼ାର ରାମେଶ୍ୱର, କୁଞ୍ଜକାନ୍ତର ସିଦ୍ଧେଶ୍ୱର, ଦୁର୍ଗାବଜାରର ଆଖଣ୍ଡଳେଶ୍ୱର, ମାର୍ଥାପୁର ବସ୍‌ଷ୍ଟାଣ୍ଡର ସ୍ୱପ୍ନେଶ୍ୱର, ମୋଟରିଶିବମନ୍ଦିର, ପରଜଙ୍ଗର ଶିବମନ୍ଦିର, ପଳାସୁଣୀର ଶିବମନ୍ଦିର ଓ ରତ୍ନଶଙ୍କର ପୁରର ଶିବମନ୍ଦିର ପ୍ରଭୃତି ପ୍ରଧାନ । ଏତଦ୍‌ଭିନ୍ନ ପ୍ରାୟ ପ୍ରତ୍ୟେକ ମୁଖ୍ୟ ଗ୍ରାମମାନଙ୍କରେ ଶିବମନ୍ଦିର ନିର୍ମାଣ ହୋଇ ଢେଙ୍କାନାଳମାଟି ଶୈବଧର୍ମରେ ପ୍ଳାବିତ । ସଂପ୍ରତି ନୂତନ ନୂତନ ମନ୍ଦିର ନିର୍ମାଣହୋଇ ସମଗ୍ର ଢେଙ୍କାନାଳରେ ଶୈବସଂସ୍କୃତିର ଧାରା ଅବ୍ୟାହତ ।

ଯୁଗେ ଯୁଗେ ଢେଙ୍କାନାଳରେ ଶୈବସନ୍ନ୍ୟାସୀ, ଯୋଗୀ ଓ ସାଧକବୃନ୍ଦ ପଦାର୍ପଣ କରି ଏହି ମାଟିକୁ ପୂତ ଓ ପବିତ୍ର କରିଆସିଛନ୍ତି। ଚତୁର୍ଥ ଶତାବ୍ଦୀରେ ଲକୁଳୀଶ ସଂପ୍ରଦାୟର ଶୈବାଚାର୍ଯ୍ୟବୃନ୍ଦ ଏହି ମାଟିରେ ପଦାର୍ପଣ କରି ଶୈବସଂସ୍କୃତିର ବୀଜବପନ କରିଥିଲେ । ଲକୁଳୀଶ ସଂପ୍ରଦାୟ ଶୈବସନ୍ନ୍ୟାସୀ ବୃନ୍ଦ ପୁରାଣ ପ୍ରସିଦ୍ଧ କପିଳାସ ପୀଠରେ ପଦାର୍ପଣ କରିଥିଲେ କି ନାହିଁ ସେ ସଂପର୍କର କୌଣସି ତଥ୍ୟ ମିଳିନଥିଲେ ହେଁ ପୁରାଣ ଯୁଗରେ ମାର୍କଣ୍ଡେୟ, କପିଳମୁନି, ସୌଦାସ, କାର୍ତ୍ତିକେୟ ପ୍ରଭୃତି ଶିବଉପାସକ ଗଣ କପିଳାସରେ ସାଧନାରତ ଥିଲେ । ଗୌରବର କଥା, କପିଳାସ ହେଉଛି ଶୈବପନ୍ଥୀ ନାଥଯୋଗୀଙ୍କର ଆଦିପୀଠ । ଏଠାରେ ମତ୍ସ୍ୟେନ୍ଦ୍ରନାଥ, ମଲ୍ଲୀନାଥ ଓ ଗୋରେଖନାଥ ପ୍ରଭୃତି ନାଥଯୋଗୀ ମହାତପ ସାଧନା କରିଥିଲେ । ଶୈବସନ୍ଥ ଗୋରେଖନାଥ କପିଳାସ ପୀଠରେ ଅଗଣିତ ଯୋଗୀଙ୍କୁ ଯୋଗମାର୍ଗ ଶିକ୍ଷା ଦେଇଥିଲେ । ସେହି ଯୁଗରୁ ନାଥ ଯୋଗୀଗଣ କପିଳାସ ପୀଠର ସେବକ ରହିଆସିଛନ୍ତି । ପରବର୍ତ୍ତୀ କାଳରେ ଗଜପତି ପ୍ରତାପରୁଦ୍ର ଦେବ ନାଥ ସଂପ୍ରଦାୟର ଗୁରୁ ପରଶୁରାମ ନାଥ ଗୋସ୍ୱାମୀଙ୍କୁ ସନନ୍ଦ ପ୍ରଦାନ କରିଥିଲେ। ଅଦ୍ୟାବଧି ଯୋଗୀମାନେ କପିଳାସର ଆଦ୍ୟସେବକ । ଯୁଗେ ଯୁଗେ

ଶୈବସଂପ୍ରଦାୟର ଅଗଣିତ ସାଧୁ ଏହି ପୀଠରେ ଯୋଗସାଧନା କରି ଏହାକୁ ଯୋଗପୀଠର ମର୍ଯ୍ୟାଦା ପ୍ରଦାନ କରିଅଛନ୍ତି । ସଂପ୍ରଦାୟ ନିର୍ବିଶେଷରେ ଅସଂଖ୍ୟ ସାଧୁସନ୍ଥମହାତ୍ମା ଏହି ଶୈବପୀଠରେ, ଚତୁର୍ମାସ୍ୟା ବ୍ରତ ପାଳନ କରିଥାନ୍ତି ।

ଢେଙ୍କାନାଳରେ ପାଳିତ ହେଉଥିବା ଶୈବ ପର୍ବପର୍ବାଣି ମଧ୍ୟରେ ଶିବରାତ୍ରି ପ୍ରଧାନ । କପିଳାସରେ ପୁରଣ ଯୁଗରୁ ଶିବରାତ୍ରି ପାଳିତ ହୋଇ ଆସୁଅଛି । ଶିବରାତ୍ରିର ପୁଣ୍ୟ ମୁହୂର୍ତ୍ତରେ ପ୍ରଥମେ ଶିବଲିଙ୍ଗ ପୃଥିବୀରେ ଆବିର୍ଭାବ ହୋଇଥିଲେ । ଏହି ଦିବ୍ୟଦୃଷ୍ଟିରେ ଅଗଣିତ ଶିବଭକ୍ତ ମହାଶିବରାତ୍ରି ବ୍ରତ ପାଳନ କରିଥାନ୍ତି । କପିଳାସ ପୀଠରୁ ଶିବରାତ୍ରି ବ୍ରତ ପାଳନର ପରଂପରା ଆରମ୍ଭ ହୋଇଥିଲା । ବିଶ୍ୱକଲ୍ୟାଣ କାମନାରେ ମହାଶିବରାତ୍ରିର ସନ୍ଧ୍ୟାଆରତି ପରେ ବିଶେଷ ପୂଜାର୍ଚ୍ଚନା କପିଳାସ ପୀଠରେ ଶାସ୍ତ୍ରୀୟ ବିଧିରେ ପାଳନ କରାଯାଇଥାଏ । ସନ୍ଧ୍ୟାଠାରୁ ମଧ୍ୟରାତ୍ରି ପର୍ଯ୍ୟନ୍ତ ଶ୍ରୀଚନ୍ଦ୍ରଶେଖରଙ୍କର ଷୋହଳ ପୂଜା ଅନୁଷ୍ଠିତ ହୋଇଥାଏ । ଏହାପରେ ଶୁଦ୍ଧ ପଇଡ଼ ଜଳରେ ଅଭିଷେକ ହୋଇଥାଏ । ଅଭିଷେକ ପରେ ମହାସ୍ନାନ, ପଞ୍ଚବକ୍ତ୍ରପୂଜା ଓ ଘୃତକମଳ ହୋଇ ସୁପ୍ରସିଦ୍ଧ ନାଗାଭରଣ ବେଶ ଅନୁଷ୍ଠିତ ହୋଇଥାଏ । ନାଗାଭରଣ ବେଶପରେ ମହାଦୀପକୁ ତ୍ରିବାର ମନ୍ଦିର ପରିକ୍ରମା କରାଯାଇ ଶିଖରକୁ ଉଠାଯାଏ । ଚତୁର୍ଦ୍ଦିଗରେ ଲକ୍ଷାଧିକ ଭକ୍ତ ମନ୍ଦିରକୁ ମୁହଁକରି ଘୃତଦୀପ ଜଳାଇ ନିର୍ନିଶେଷ ନୟନରେ ମହାହଦୀପକୁ ଚାହିଁ ରହିଥାନ୍ତି । ଭକ୍ତଙ୍କ ହରିବୋଲ ହୁଳହୁଳି ଧ୍ୱନିରେ କପିଳାସ ପୀଠ ପ୍ରକଂପିତ ହୋଇଉଠେ । ଅତଃପର ହରିହରଭେଟ ହୋଇ ନାଥସଂପ୍ରଦାୟର ଯୋଗୀ ମହନ୍ତଗଣ ପାରଂପରିକ ରୀତିରେ ଚନ୍ଦ୍ରଶେଖରଙ୍କ ପୂଜାକରିଥାନ୍ତି । କପିଳାସରେ ପାଳିତ ଶିବରାତ୍ରି ପ୍ରଭାବରେ ପ୍ରାଚୀନ କାଳରୁ ଢେଙ୍କାନାଳର ଅନ୍ୟାନ୍ୟ ଶିବପୀଠ ସମୂହରେ ଶିବରାତ୍ରି ପାଳନ ହୋଇ ଆସୁଅଛି । ତନ୍ମଧ୍ୟରେ ଭୁବନର ବୁଦ୍ଧେଶ୍ୱର, ମାର୍ଥାପୁର ବାଲୁଙ୍କେଶ୍ୱର, କନ୍ଦରସିଂହାର ରାମେଶ୍ୱର, କୁଆଁଳୋର ଅଷ୍ଟଶମ୍ଭୁ, ଗଙ୍ଗାଧର ପ୍ରସାଦର ପଞ୍ଚିମେଶ୍ୱର, ହରିପୁରର ମହାକାଳେଶ୍ୱର, ଜୀବନଖୋଲ, ଏକଘରିଆର କନକେଶ୍ୱର ପୀଠମାନଙ୍କରେ ପାଳିତ ଶିବରାତ୍ରି ଲୋକଖ୍ୟାତି ଲାଭକରିଅଛି । ଏତଦ୍‌ଭିନ୍ନ ପ୍ରାୟ ପ୍ରତ୍ୟେକ ମନ୍ଦିରରେ ଶିବରାତ୍ରି ପାଳନ ହୋଇଥାଏ ।

ଶିବରାତ୍ରି ସଦୃଶ ଶିବବିବାହ ମଧ୍ୟ ଢେଙ୍କାନାଳ ପ୍ରତ୍ୟେକ ଶିବମନ୍ଦିରରେ ମହାସମାରୋହରେ ଅନୁଷ୍ଠିତ ହୋଇଥାଏ । କପିଳାସ ପୀଠର ଶିବବିବାହୋତ୍ସବ

ଦେଓଗାଁସ୍ଥିତ ଶ୍ରୀବଳଦେବଜୀଉ ମନ୍ଦିରର ବିବାହ ମଣ୍ଡପରେ ଆଡ଼ମ୍ବର ସହକାରେ ଅନୁଷ୍ଠିତ ହୋଇଥାଏ । ଏହାର ମହନୀୟତା ହେଉଛି, ଶୈବ ସଂସ୍କୃତି ସହିତ ଜଗନ୍ନାଥ ସଂସ୍କୃତିର ମହାମିଳନ । କପିଳାସ ମନ୍ଦିରର ପଶ୍ଚିମ ପାର୍ଶ୍ୱ କାନ୍ଥରେ ଶ୍ରୀଜଗନ୍ନାଥଙ୍କ ପ୍ରତିମା ମଧ୍ୟ ଖୋଦିତ । ଢେଙ୍କାନାଳ ସହର, ଭାପୁର, ଜୀବନଖୋଲ, ଦେଓପଡ଼ା, ବଣିଆପଡ଼ା, ଭୁବନ, ମାର୍ଥାପୁର, ରାମେଶ୍ୱର ପ୍ରଭୃତି ମନ୍ଦିର ତଥା ପ୍ରତ୍ୟେକ ବ୍ରାହ୍ମଣଶାସନରେ ଶାସ୍ତ୍ରୀୟ ବିଧିରେ ଶିବବିବାହୋତ୍ସବ ପାଳନ କରାଯାଇଥାଏ । ଏହାବ୍ୟତୀତ, ପ୍ରତ୍ୟେକ ଶିବମନ୍ଦିରରେ ଚତୁର୍ଦ୍ଦଶୀବେଢ଼ା, ଦେବାଭିଷେକ, ମକରସଂକ୍ରାନ୍ତି, ଧନୁସଂକ୍ରାନ୍ତି, ବଡ଼ଓଷା ଓ ପଣାସଂକ୍ରାନ୍ତି ପ୍ରଭୃତି ପର୍ବ ବିଧିଅନୁଯାୟୀ ପାଳିତ ହୋଇଥାଏ । ଲୋକପ୍ରିୟ ଶିବରାତ୍ର ବଡ଼ଓଷା ଢେଙ୍କାନାଳ ଅଞ୍ଚଳରେ ଘରେ ଘରେ ପାଳନ କରାଯାଏ । ଢେଙ୍କାନାଳରେ ପାଳିତ ଶୈବ ପର୍ବପର୍ବାଣିରୁ ଅନୁଭୂତ ହୁଏ ଶୈବଧର୍ମ ହିଁ ଢେଙ୍କାନାଳର ଗଣଧର୍ମ ।

ପୁରାଣ ଯୁଗରୁ ଢେଙ୍କାନାଳରେ ଶୈବସଂସ୍କୃତିର ଉନ୍ମେଷ ଘଟି ସପ୍ତମ ଶତାବ୍ଦୀ ସମୟକୁ ଏହା ସଂପୂର୍ଣ୍ଣ ବିକାଶ ଲାଭ କରିଥିଲା । ସୋମ, ଗଙ୍ଗ ଓ ସୂର୍ଯ୍ୟବଂଶ ରାଜତ୍ୱରେ ଏହା ପ୍ରସାର ଲାଭ କରି ଢେଙ୍କାନାଳର କୋଣେ ଅନୁକୋଣେ ଅଗଣିତ ଶିବ ମନ୍ଦରି ଗଢ଼ି ଉଠିଥିଲା । ଢେଙ୍କାନାଳ ରାଜ ବଂଶ ଆନୁକୂଲ୍ୟରେ ମଧ୍ୟଯୁଗରୁ ଢେଙ୍କାନାଳରେ ଶୈବଧର୍ମ ଗଣଧର୍ମ ସ୍ୱରୂପରେ ପ୍ରତିଭାତ ହୋଇଥିଲା । ସ୍ୱାଧୀନତା ପରେ ପରେ ଢେଙ୍କାନାଳର ପ୍ରତ୍ୟେକ ମୁଖ୍ୟ ଗ୍ରାମମାନଙ୍କରେ ଶିବ ମନ୍ଦିର ନିର୍ମାଣ ହୋଇ ସର୍ବତ୍ର ଶୈବ ପର୍ବପର୍ବାଣି ମହାସମାରୋହରେ ପାଳିତ ହୋଇ ଆସୁଅଛି । ଗୌରବର କଥା, ଏହି ମାଟିରେ ପୁରାଣ ପ୍ରସିଦ୍ଧ କପିଳାସ ଶୈବକ୍ଷେତ୍ର, ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ନାଗନାଥେଶ୍ୱର, ପ୍ରାଚୀନ ଅଷ୍ଟଶମ୍ଭୁ ମନ୍ଦିର ଅବସ୍ଥିତ ଥାଇ ଶୈବ ସଂସ୍କୃତିର ଉତ୍ତରଣରେ ଭବ୍ୟ ଶୈବପରଂପରା ସୃଷ୍ଟି ହୋଇଛି ।



# ଢେଙ୍କାନାଳର ବୈଷ୍ଣବ ସଂସ୍କୃତି

ଗୁପ୍ତଯୁଗରୁ ଓଡ଼ିଶାରେ ବୈଷ୍ଣବ ସଂସ୍କୃତିର ଉନ୍ମେଷ ଘଟିଥିବା ଗବେଷକମାନେ ବିଶ୍ୱାସ କରନ୍ତି । ଢେଙ୍କାନାଳରେ ସପ୍ତମ ଅଷ୍ଟମ ଶତାବ୍ଦୀର ବୈଷ୍ଣବ ସଂସ୍କୃତିର ପ୍ରତ୍ନନିଦର୍ଶନ ଉପଲବ୍ଧ ହେଉଥିବାରୁ ଅନୁଭୂତ ହୁଏ ସପ୍ତମ ଓ ଅଷ୍ଟମ ଶତାବ୍ଦୀରୁ ଏହି ମାଟିରେ ବୈଷ୍ଣବ ସଂସ୍କୃତିର ଉନ୍ମେଷ ଘଟିଥିଲା । ଗୌରବର କଥା, ସର୍ବ ଭାରତୀୟ ସ୍ତରରେ ଢେଙ୍କାନାଳସ୍ଥିତ ବୈଷ୍ଣବୀୟ ପ୍ରତ୍ନବିଭବର ଖ୍ୟାତି ରହିଅଛି । ଏହି ପୁରୋଦୃଷ୍ଟିରୁ ବ୍ୟକ୍ତ କରାଯାଇପାରେ ଯେ, ଗୁପ୍ତଯୁଗରୁ ହିଁ, ଢେଙ୍କାନାଳମାଟିରେ ବୈଷ୍ଣବ ସଂସ୍କୃତିର ଅଭ୍ୟୁଦୟ ଘଟି ବ୍ୟାପକ ପ୍ରସାର ଫଳରେ ଏହି ବୃହତ୍‌କାୟ ବିଷ୍ଣୁମୂର୍ତ୍ତି ସପ୍ତମ ଅଷ୍ଟମ ଶତାବ୍ଦୀରେ ନିର୍ମାଣ କରାଯାଇଥିଲା । ଆଶ୍ଚର୍ଯର ବିଷୟ ବ୍ରାହ୍ମଣୀ ଉପତ୍ୟକାରେ ସେହି ସମୟରେ ଶୈବମନ୍ଦିର ପ୍ରାବଲ୍ୟ ଥିଲା, ଅଥଚ ଢେଙ୍କାନାଳ ଜିଲାନ୍ତର୍ଗତ ସରାଙ୍ଗ ଗ୍ରାମଠାରେ ବ୍ରାହ୍ମଣୀ ନଦୀ ଗର୍ଭରେ ବୃହତ୍କାୟ ଅନନ୍ତଶୟନ ବିଷ୍ଣୁମୂର୍ତ୍ତି ଏବଂ ତାଳଚେର ଉପଖଣ୍ଡ ବ୍ରାହ୍ମଣୀତଟସ୍ଥ ଭୀମକାଣ୍ଡଠାରେ ଶ୍ରୀ ବିଷ୍ଣୁଙ୍କର ବୃହତ୍‌କାୟ ଶାୟିତ ପ୍ରତିମା ଠିକ୍ ସେହି ସମୟରେ ନିର୍ମାଣ କରାଯାଇଥିଲା । ଦୀର୍ଘକାଳ ବିତିଯାଇଥିଲେ ହେ ବୈଷ୍ଣବ ସଂସ୍କୃତିର ପ୍ରାଚୀନ ବୃହତ୍‌କାୟ ପ୍ରତ୍ନବିଭାବ ଦୁଇଟି ଅଦ୍ୟାବଧି ଅକ୍ଷୁର୍ଣ୍ଣ ଅବସ୍ଥାରେ ରହିଛି । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ସପ୍ତମ ଅଷ୍ଟମ ଶତାବ୍ଦୀର ବହୁପୂର୍ବରୁ ଅର୍ଥାତ୍ ଗୁପ୍ତଯୁଗରୁ ଢେଙ୍କାନାଳ ଅଞ୍ଚଳରେ ବୈଷ୍ଣବ ସଂସ୍କୃତିର ଅନୁପ୍ରବେଶ ଘଟିଥିଲା । ତତ୍‌ପରବର୍ତ୍ତୀ କାଳରେ ଶୈବଧର୍ମ ଏହି ଅଞ୍ଚଳର ରାଜକୀୟ ପୃଷ୍ଠପୋଷକତାରେ ପ୍ରସାର ଅଭିମୁଖୀ ହୋଇଥିଲେ ହେଁ ଜନମାନସରେ ବୈଷ୍ଣବଧର୍ମ ଉଜ୍ଜୀବିତ ରହିଥିଲା । ପରିଣାମରେ ବ୍ରାହ୍ମଣୀ ଅବବାହିକାରେ ଏହି ଦୁଇଟି ବୃହତ୍‌କାୟ ବିଷ୍ଣମୂର୍ତ୍ତି ନିର୍ମାଣ ହୋଇଥିଲା ।

ଢେଙ୍କାନାଳ ଇତିହାସ ଅନୁଧ୍ୟାନ କଲେ ଜଣାଯାଏ, ସପ୍ତମ ଅଷ୍ଟମ ନବମ ଓ ଦଶମ ଶତାବ୍ଦୀରେ ଏହି ଅଞ୍ଚଳ ଗୁହେଶ୍ୱର ପାଟକରେ ରାଜତ୍ୱ କରୁଥିବା ଭୌମକର ରାଜବଂଶର ଅଧୀନରେ ରହୁଥିଲା । ଭୌମକରଙ୍କ ଅଧୀନସ୍ଥ କରମୂଳ, କୋଦାଳକ ଓ ଯମଗର୍ତ୍ତ ମଣ୍ଡଳର ଅଧିପତି ରାଣକବୃନ୍ଦ ପ୍ରତ୍ୟକ୍ଷ ଶାସନ

କରୁଥିଲେ । ଭୌମକର ରାଜା ଓ ରାଣୀ ତଥା ସେମାନଙ୍କ ଅଧୀନସ୍ଥ ମଣ୍ଡଳାଧିପତିଙ୍କର ପ୍ରାୟ ୧୮ ଗୋଟି ତମ୍ବାପଟ୍ଟା ଢେଙ୍କାନାଳ ଅଞ୍ଚଳରୁ ମିଳିଅଛି । ଏହି ରାଜା ଓ ରାଣୀମାନେ ବୈଷ୍ଣବଧର୍ମୀ ନଥିଲେ ହେଁ ବୈଦିକ ସଂସ୍କୃତିର ପୃଷ୍ଠପୋଷକ ଥାଇ ଅନେକ ବ୍ରାହ୍ମଣଙ୍କୁ ଭୂସଂପତ୍ତି ଦାନ କରିଥିଲେ । ଦାନ ଗ୍ରହଣକାରୀ ବେଦଜ୍ଞ ବ୍ରାହ୍ମଣଗଣ ଢେଙ୍କାନାଳରେ ସ୍ଥାୟୀ ବସବାସ କରି ବୈଦିକ ଧର୍ମ ଓ ପାଞ୍ଚରାତ୍ର ଉପାସନାର ପ୍ରସାର ଘଟାଇଥିଲେ । ଫଳତଃ ବୈଦିକଧର୍ମ ସଂଭୂତ ପଞ୍ଚରାତ୍ର ଓ ଉପାସନା ପଦ୍ଧତିରେ ଭକ୍ତିଧାରାରୁ ବୈଷ୍ଣବ ସଂସ୍କୃତିର ଅଭ୍ୟୁଦୟ ଘଟି ଜନମାନସରେ ବୈଷ୍ଣବଧର୍ମର ବ୍ୟାପକ ପ୍ରଚାର ଓ ପ୍ରସାର ହୋଇଥିଲା । ଏହାର ସତ୍‌ଫଳ ହେଉଛି ସରାଙ୍ଗ ଓ ଭୀମକାଣ୍ଡର ବୃହତ୍‌କାୟ ବିଷ୍ଣୁ ମୂର୍ତ୍ତି ।

ଦଶମ ଶତାବ୍ଦୀରୁ ଏହି ଅଞ୍ଚଳରେ ସୋମବଂଶୀ ରାଜନ୍ୟବୃନ୍ଦ ରାଜତ୍ୱ କରିଥିଲେ। ଏହି ବଂଶର ଚନ୍ଦ୍ରକେଶରୀ ଚାନ୍ଦପୁର ଠାରେ ହରିହର ମନ୍ଦିର ଓ କପିଳାସରେ ହରିହର ଉପାସନା ପ୍ରବର୍ତ୍ତନ କରାଇ ବ୍ରାହ୍ମଣୀ ଅବବାହିକାରେ ଶୈବ ଓ ବୈଷ୍ଣବ ସଂସ୍କୃତି ମଧ୍ୟରେ ସମନ୍ୱୟ ସ୍ଥାପନ କରିଥିଲେ । ଦ୍ୱାଦଶ ଶତାବ୍ଦୀଠାରୁ ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଗଙ୍ଗମାନେ ଏହି ଅଞ୍ଚଳରେ ରାଜତ୍ୱ କରିଥିଲେ । ଗଙ୍ଗବଂଶୀ ଅନଙ୍ଗଭୀମଦେବ ଢେଙ୍କାନାଳର ଭୀମନଗରୀ ଦଣ୍ଡପାଟ ଠାରେ ଶ୍ରୀବଳଦେବ ଜୀଉଙ୍କର ଭବ୍ୟମନ୍ଦିର ନିର୍ମାଣ କରିଥିଲେ । ସେହି ବଳଦେବ ସଂପ୍ରତି ଢେଙ୍କାନାଳର ଇଷ୍ଟ । ଅନଙ୍ଗଭୀମଙ୍କ ସୁପୁତ୍ର ଲାଙ୍ଗୁଳା ନରସିଂହ ଦେବ କପିଳାସରେ ମନ୍ଦିର ନିର୍ମାଣ କରି ମନ୍ଦିର କାନ୍ଥରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଖୋଦନ କରାଇଥିଲେ । ଫଳରେ ଶୈବସଂସ୍କୃତି ସହିତ ଜଗନ୍ନାଥ ସଂସ୍କୃତିର ସମନ୍ୱୟ ସ୍ଥାପନ ହୋଇପାରିଥିଲା । ଗଙ୍ଗବଂଶ ପରେ ଢେଙ୍କାନାଳ ସୂର୍ଯ୍ୟବଂଶ ଅଧିକାରକୁ ଗଲା । ଗଜପତି ପ୍ରତାପରୁଦ୍ର ଦେବ କପିଳାସ ପାଦଦେଶ ଦେଓଗାଁଠାରେ ବଳଦେବମନ୍ଦିର ନିର୍ମାଣ କରି ଶୈବ ସଂସ୍କୃତି ସହିତ ଜଗନ୍ନାଥ ସଂସ୍କୃତିର ସମନ୍ୱୟକୁ ସୁଦୃଢ଼ କରିଥିଲେ । ସ୍ମରଣଯୋଗ୍ୟ ଯେ, ଗଙ୍ଗଯୁଗରେ ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ କପିଳାସସ୍ଥିତ ବ୍ରହ୍ମଚାରୀମଠରେ ଅବସ୍ଥାନ କରି ଗୀତା, ଭାଗବତ, ବିଷ୍ଣୁପରାଣ ପ୍ରଭୃତି ବୈଷ୍ଣବଶାସ୍ତ୍ର ସମୂହର ଭାଷ୍ୟ ରଚନା କରିଥିଲା । ଏହାର ସୁଦୂର ପ୍ରସାରୀ ପ୍ରଭାବରେ ଢେଙ୍କାନାଳରେ ବୈଷ୍ଣବଧର୍ମର ପ୍ରସାର ଘଟିଥିଲା । ଏହି ସମୟରେ ଢେଙ୍କାନାଳର ବ୍ରାହ୍ମଣ ଓ ଅନ୍ୟାନ୍ୟ ଉଚ୍ଚସଂପ୍ରଦାୟ

ମଧ୍ୟରେ ବିଷ୍ଣୁଯାମଳ, ପାଞ୍ଚରାତ୍ର, ଶ୍ରୀରାମନବମୀ, ଶ୍ରୀଜନ୍ମାଷ୍ଟମୀ, ନୃସିଂହଜନ୍ମ, ବାମନଜନ୍ମ, ଅନନ୍ତବ୍ରତ, ବଳଭଦ୍ର ଜନ୍ମ, ଭାଗବତ ଜନ୍ମ ପ୍ରଭୃତି ବିଷ୍ଣୁବ୍ରତର ବ୍ୟାପକ ପ୍ରଚଳନ ଥିଲା ।

ମଧ୍ୟଯୁଗରେ ହରିସିଂହବିଦ୍ୟାଧର କରମୂଳ ରାଜ୍ୟ ସନନ୍ଦ ଲାଭକରି ଅଭିନବ ଢେଙ୍କାନାଳ ରାଜ୍ୟ ଗଠନ କଲେ । ସେ ଥିଲେ ଚନ୍ଦ୍ରବଂଶୀ କ୍ଷତ୍ରିୟ ଏବଂ ଶ୍ରୀ ବୃନ୍ଦାବନ ଚନ୍ଦ୍ର ଥିଲେ ତାଙ୍କର ଇଷ୍ଟଦେବତା । ରାଜାନୁଗତ ଧର୍ମ ଭାବରେ ବୈଷ୍ଣବଧର୍ମ ସେହିଦିନଠାରୁ ଢେଙ୍କାନାଳରେ ରାଜକୀୟଧର୍ମର ମର୍ଯ୍ୟାଦା ଲାଭକଲା । ହରିବିଦ୍ୟାଧର ବଂଶର ରାଜନ୍ୟବୃନ୍ଦ ରାଧାକୃଷ୍ଣ ତତ୍ତ୍ୱମୂଳକ ବୈଷ୍ଣବଧର୍ମର ପୃଷ୍ଠପୋଷକତା କରିଥିଲେ । ହରିବିଦ୍ୟାଧର ଢେଙ୍କାନାଳର ଇଷ୍ଟ ଶ୍ରୀ ବଳଦେବଜୀଉଙ୍କ ମନ୍ଦିର ନିର୍ମାଣ ଆରମ୍ଭ କରିଥିଲେହେଁ ନୃସିଂହ ଭ୍ରମବରଙ୍କ ରାଜତ୍ୱରେ ମନ୍ଦିର ନିର୍ମାଣ ଶେଷ ହୋଇଥିଲା । ସେହି ସମୟରେ ଉତ୍କଳୀୟ ବୈଷ୍ଣବଙ୍କ ଦ୍ୱାରା ଦଧିବାମନ ମନ୍ଦିର ଓ ଖୁଣ୍ଟୁଝରୀ ମଠ ସ୍ଥାପନ କରାଯାଇଥିଲା ତଥା ରାଜାନୃସିଂହ ଏହି ମନ୍ଦିର ଓ ମଠକୁ ପ୍ରଚୁର ପରିମାଣରେ ଭୂସଂପତ୍ତି ଦାନ କରିଥିଲେ । ଗୌରବର କଥା, ସେହି ସମୟରେ ଭକ୍ତ କବି ଦୀନକୃଷ୍ଣ ଦାସ ଢେଙ୍କାନାଳର ଏକ ଘରିଆ ଗ୍ରାମରେ ନିବାସ କରି ରସବିନୋଦ, ପ୍ରସ୍ତାବସିନ୍ଧୁ ଓ ନାମରତ୍ନଗୀତା ପ୍ରଭୃତି ବୈଷ୍ଣବ କାବ୍ୟମାନ ରଚନା କରି ଜନମାନସରେ ବୈଷ୍ଣବୀୟ ଚେତନା ପ୍ରସାର କରିଥିଲେ । ରାଜା ନୃସିଂହ ଓ ଜମିଦାର ବଳରାମ ସାମନ୍ତ ଦଶବୋଲି ତଥା ମଧୁପଚଉତିଶା ରଚନାକରି ବୈଷ୍ଣବୀୟ ଚେତନାକୁ ରସାଣିତ କରିଥିଲେ । ରାଜା ନୃସିଂହଙ୍କ ରାଜତ୍ୱରେ ତେନ୍ତୁଳିଆ ମଠ, ଖୋକସାମଠ, ବାଳିବୋମଠ, ଜୀରିଡ଼ାମାଳୀ ମଠ, ମଲାଙ୍ଗଡିହ ମଠ ଓ ଅଘିରାଗୋଡ଼ା ମଠ ପ୍ରତିଷ୍ଠାହୋଇ ଢେଙ୍କାନାଳର କୋଣେ ଅନୁକୋଣେ ବୈଷ୍ଣବଧର୍ମର ପ୍ରସାର ଘଟିଥିଲା । ସେହି ସମୟରେ ମଧ ଢେଙ୍କାନାଳରେ ଦଧିବାମନଙ୍କ ରଥଯାତ୍ରା ଆରମ୍ଭ ହୋଇଥିଲା । ଏହା ପ୍ରଭାବରେ କରମୂଳ, କାବେରା, ନୂଆଗଡ଼, ଗୋରଡ଼ିଆ ଗଁପୁର, ବଉଳପୁର, ଭୁବନ ପ୍ରଭୃତି ସ୍ଥାନରେ ଦଧିବାମନ ବା ତୃତୀୟାଦେବଙ୍କ ପୂଜାରମ୍ଭ କରାଯାଇ ରଥଯାତ୍ରା ପ୍ରଚଳନ କରାଯାଇଥିଲା । ନୃସିଂହଙ୍କ ପରେ କୁଞ୍ଜବିହାରୀ ଭ୍ରମରବର ରାଜପ୍ରସାଦର ଶ୍ରୀବୃନ୍ଦାବନଚନ୍ଦ୍ର ମନ୍ଦିର ଓ ଶମ୍ଭୁଗୋପାଳ ମଠ ନିର୍ମାଣ କରିଥିଲେ । ତତ୍‌କୃତ୍ ''ପ୍ରେମଶୀଳା'' କାବ୍ୟ ଏକ ବୈଷ୍ଣବକାବ୍ୟ । ବୈଷ୍ଣବୀୟ ଚେତନାର ସ୍ପର୍ଶରେ

ଭୁବନରେ ରାଧାକାନ୍ତ ମନ୍ଦିର, ଧଳପଡ଼ାରେ ରାଧାକୃଷ୍ଣ ମନ୍ଦିର, ବେଢ଼ାପାଳରେ ମଦନ ମୋହନ ମନ୍ଦିର, ଆଦିପୁରାରେ ମଦନମୋହନ ମନ୍ଦିର, ଭାପୁରର ରାଧାକାନ୍ତ ମନ୍ଦିର, ବାଲ୍ୟାମ୍ବାର ଅନନ୍ତ ଶୟନ ବିଷ୍ଣୁ, କନ୍ତି ଓ ତଥା ଢେଙ୍କାନାଳରେ ଲକ୍ଷ୍ମୀନୃସିଂହ ମନ୍ଦିର ପ୍ରତିଷ୍ଠା ହୋଇଥିଲା । ଏତଦ୍‌ଭିନ୍ନ ପ୍ରତି ଗ୍ରାମରେ ତଥା ପ୍ରତିଷ୍ଠିତ ପରିବାରରେ ଭାଗବତଟୁଙ୍ଗି ସ୍ଥାପନ କରାଯାଇଥିଲା । ଏହି ସବୁ ଭାଗବତଗାଦୀରେ ପ୍ରତ୍ୟହ ଭାଗବତ ପାଠ ହୋଇ ଭାଗବତଧର୍ମର ପ୍ରସାର ଘଟିଥିଲା । ଏହା ପ୍ରଭାବରେ ଢେଙ୍କାନାଳର କବି କୋବିନ୍ଦବୃନ୍ଦ ଅନେକ ବୈଷ୍ଣବ ସାହିତ୍ୟ ରଚନା ପୂର୍ବକ ଜନମାନସରେ ବୈଷ୍ଣବ ଚେତନା ସୃଷ୍ଟି କରିପାରିଥିଲେ । ପରିଣାମ ସ୍ୱରୂପ ସମଗ୍ର ଢେଙ୍କାନାଳରେ ବୈଷ୍ଣବ ସଂସ୍କୃତ ଏକ ଭବ୍ୟରୂପ ଧାରଣ କରିଥିଲା ।

ପ୍ରାତଃ ସ୍ମରଣୀୟ ଶ୍ରୀଚୈତନ୍ୟ ଢେଙ୍କାନାଳ ପଥଦେଇ ବୃନ୍ଦାବନ ଯାତ୍ରା କରିଥିଲେ ଏବଂ ସ୍ମୃତିସ୍ୱରୂପ କପିଳାସପୀଠର ବିଶ୍ୱନାଥ ମନ୍ଦିରରେ ପଦଚିହ୍ନ ରଖିଯାଇଛନ୍ତି । ପୁରୀ ରାଧାକାନ୍ତ ମଠର ପରମବୈଷ୍ଣବ ବକ୍ରେଶ୍ୱର ପଣ୍ଡିତ ଥିଲେ ଢେଙ୍କାନାଳ ରାଜଗୁରୁ । ଏହା ଫଳରେ ଅନେକ ଗୌଡ଼ୀୟ ଓ ଉତ୍କଳୀୟ ବୈଷ୍ଣବ ଢେଙ୍କାନାଳରେ ଆସି ବସବାସ କରିଥିଲେ । ଏତଦ୍‌ଭିନ୍ନ ବହୁସଂଖ୍ୟକ ନାଗାସନ୍ନ୍ୟାସୀ ମଧ୍ୟ ଯୁଗରେ ଢେଙ୍କାନାଳ ଆସି ମଠ ସ୍ଥାପନା କଲେ । ରାଜପ୍ରାସାଦ ସ୍ଥିତ ଶ୍ରୀରଘୁନାଥ ମନ୍ଦିର, ବାଲିବୋର ରଘୁନାଥ ମନ୍ଦିର, ସିମିଳିଆର ରଘୁନାଥ ମନ୍ଦିର ଓ ଡେଙ୍ଗବୋରେଇର ରଘୁନାଥ ମନ୍ଦିର, ଦୁର୍ଗାପ୍ରସାଦରେ ରଘୁନାଥ ମନ୍ଦିର ପ୍ରଭୃତି ନିର୍ମାଣ ହୋଇଥିଲା । ଫଳରେ ଜନସାଧାରଣଙ୍କ ମନରେ ରାମାନନ୍ଦୀତତ୍ତ୍ୱ ସଂପର୍କୀୟ ବୈଷ୍ଣବୀୟ ଚେତନାର ପ୍ରସାର ଘଟିଥିଲା । ଏହି ସମୟରେ କବି ବ୍ରଜନାଥ ବଡ଼ଜେନା ଶ୍ୟାମରାସୋତ୍ସବ, କେଳିକଳାନିଧି, ଗୋପୀବିଳାପ, ଦଶପୋଇ ଓ ଗୁଣ୍ଡିଚାବିଜେ ପ୍ରଭୃତି ରଚନା ପୂର୍ବକ ଜନଚେତନାକୁ ବ୍ୟାପକ ବୈଷ୍ଣବ ଭାବାପନ୍ନ କରିପାରିଥିଲେ । ସମର ନିପୁଣ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ବିଜୟର ସ୍ମାରକସଦୃଶ ଜୟଗୋପାଳ ମଠ ସ୍ଥାପନା କରି ପ୍ରଚୁର ଭୂସଂପତ୍ତି ଖଞ୍ଜା କରିଥିଲେ । ଏତଦ୍‌ଭିନ୍ନ ଢେଙ୍କାନାଳର କୋଣେ ଅନୁକୋଣେ ରାମାନନ୍ଦୀ, ଶ୍ୟାମଳନ୍ଦୀ, ନିମାନନ୍ଦୀ ଓ ମାଧବାନନ୍ଦୀ ସଂପ୍ରଦାୟର ସାଧୁଙ୍କ ଦ୍ୱାରା ଅନେକ ମଠ ସ୍ଥାପନା କରାଯାଇଥିଲା ଏବଂ ସମଗ୍ର ଢେଙ୍କାନାଳରେ ବୈଷ୍ଣବଧର୍ମର ସମନ୍ୱୟଧାରା ପ୍ରବାହିତ ହୋଇଥିଲା ।

ମହାରାଜା ଭଗୀରଥୀ ମହୀନ୍ଦ୍ରବାହାଦୂରଙ୍କ ଦ୍ୱାରା ଢେଙ୍କାନାଳରେ ''ଯାଉଁଳୀପୋଖରୀ ମଠ'' ସ୍ଥାପନ ହେବାପରେ ଅନେକ ବିଦେଶାଗତ ସାଧୁସନ୍ଥଙ୍କର ଢେଙ୍କାନାଳ ଆଗମନ ହୋଇଥିଲା । ଫଳରେ କପିଳାସରେ ତଳମଠ, ହରିହରମଠ, ଭୁବନରେ ଛତାମଠ, ଗଁଦିଆରେ ମଠ, ଝାରଦାରେ ମଠ, ଭାପୁରରେ ମଠ, ପରଜଙ୍ଗରେ ପତିତପାବନ ମନ୍ଦିର, ବିଷ୍ଣୁପୁରରେ ରାଧାକୃଷ୍ଣମନ୍ଦିର ପ୍ରଭୃତି ନିର୍ମାଣ ହୋଇଥିଲା । ମହାରାଜା ଭାଗୀରଥୀ ବୈଷ୍ଣବଧର୍ମର ପୃଷ୍ଠପୋଷକ ଥାଇ ଏହି ସବୁ ମଠମନ୍ଦିର ପରିଚାଳିନା ନିମିତ୍ତ ନିଷ୍କର ଲାଖରାଜ ପ୍ରଦାନ କରିଥିଲେ । ତଦୀୟ ପୁତ୍ରବଧୂ ପୁଣ୍ୟଶୀଳା ଅନ୍ନପୂର୍ଣ୍ଣାଦେବୀ କପିଳାସ ପୀଠରେ ଗଙ୍ଗାନାରାୟଣଙ୍କ ଭବ୍ୟମନ୍ଦିର ନିର୍ମାଣ ପୂର୍ବକ ବୈଷ୍ଣବ ଚେତନାକୁ ସାର୍ବଜନୀନ କରିପାରିଥିଲେ । ଢେଙ୍କାନାଳର ତତ୍‌କାଳୀନ କବିକୋବିଦଙ୍କ ମଧ୍ୟରେ ନାରୀକବି ସୁଲକ୍ଷଣା ପଟନାୟକ ପାରିଜାତମାଳା, ତଦୀୟପୁତ୍ର ଦାମୋଦର ପଟ୍ଟନାୟକ, ଶ୍ରୀଜଗନ୍ନାଥ ସଂକୀର୍ତ୍ତନ, ସଙ୍ଗୀତ ସାଗର, ସଂଗୀତ ସର୍ବସାର, ବାଲିଯାତ୍ରା, ଜୀବନ ଚମ୍ପୂ ପ୍ରଭୃତି, ପଣ୍ଡିତ ଚକ୍ରଧର ଦାଶ ହରିଲୀଳାମୃତ, ଶ୍ୟାମଲୀଳାମୃତ, ଭାଗବତ ମହାତ୍ମ୍ୟ, ବ୍ରହ୍ମବୈବର୍ତ୍ତପୁରାଣ, ମାଳତୀ ଜନ୍ମ, ସୁଭଦ୍ରା ହରଣ ପ୍ରଭୃତି, ରାଣୀ କୃଷ୍ଣଚନ୍ଦ୍ର ପ୍ରିୟା ପ୍ରେମ ସଂପୁଟ କୁଞ୍ଜକାନ୍ତ ଜଣାଣ, ପ୍ରାର୍ଥନାମୃତ ଓ ପଞ୍ଚସ୍ପୃହା ପ୍ରଭୃତି, ରାଜର୍ଷି ସୁରପ୍ରତାପ ସାକ୍ଷୀଗୋପାଳ, ପରମବୈଷ୍ଣବ, ପାର୍ବତୀଚରଣ ଦାସ ଓଡ଼ିଆକୀର୍ତ୍ତନ, ପ୍ରତାପରୁଦ୍ର ଦେବନାଟକ, ରାୟରାମାନନ୍ଦ, ପ୍ରଭୁଶ୍ୟାମାନନ୍ଦ ଭକ୍ତକଥା ଓ ଚୈତନ୍ୟ ଚରିତାମୃତ ଓଡ଼ିଆ ଅନୁବାଦ ପ୍ରଭୃତି, ମହନ୍ତି ବୈରାଗୀଚରଣ ଦାସ ବୈଷ୍ଣବ ରତ୍ନାବଳୀ ପଣ୍ଡିତ ବୈଷ୍ଣବ ଚରଣ ମହାପାତ୍ର ବୈଷ୍ଣବଗ୍ରନ୍ଥବାଳୀ ଓ ଚନ୍ଦ୍ରଶେଖର ପାଣି ଇନ୍ଦିରା ପରିଣୟ ପ୍ରଭୃତି ରଚନା ପୂର୍ବକ ବୈଷ୍ଣବୀୟ ଚେତନାର ପ୍ରସାର ଘଟାଇଥିଲେ ।

ରାଜର୍ଷି ସୁରପ୍ରତାପ ଥିଲେ ପରମବୈଷ୍ଣବ । ସେ ଆପଣାର ବୈଷ୍ଣବଗୁରୁ ବକ୍ରେଶ୍ୱର ପଣ୍ଡିତଙ୍କ ବଂଶଜ ମଧୁସୂଦନ ଗୋସ୍ୱାମୀଙ୍କ ନିର୍ଦ୍ଦେଶନାରେ ଏକ ଶହ ଆଠ ଦଳ କୀର୍ତ୍ତନ ସହ ଶ୍ରୀରାଧାକୃଷ୍ଣ ବିଗ୍ରହ ବୃନ୍ଦାବନରୁ ମହାସମାରୋହରେ ଆଣି କୁଞ୍ଜକାନ୍ତ ମନ୍ଦିରରେ ସ୍ଥାପନ କରିଥିଲେ । ଏହି ମନ୍ଦିରରେ ବୃନ୍ଦାବନର ସକଳ ଲୀଳା ବୈଷ୍ଣବୀୟ ରୀତି ଓ ପରଂପରାରେ ପାଳନ କରି ରାଜା ସୁରପ୍ରତାପ ବୈଷ୍ଣବଧର୍ମକୁ ଲୋକପ୍ରିୟ କରିପାରିଥିଲେ । ଶ୍ରୀବଳଦେବଙ୍କ ମନ୍ଦିର ପରିସରରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିବା ସହିତ ଢେଙ୍କାନାଳ ରାଜ୍ୟରେ ସଂକୀର୍ତ୍ତନର

ପ୍ରସାର ନିମିତ୍ତ ସେ କୀର୍ତ୍ତନ ଶିକ୍ଷକ ନିଯୁକ୍ତ କରିଥିଲେ । ତାଙ୍କରି ରାଜତ୍ୱରେ ଢେଙ୍କାନାଳର ଗ୍ରାମେ ଗ୍ରାମେ ଅଷ୍ଟପ୍ରହରୀ, ଚବିଶପ୍ରହରୀ, ହରିହାଟ ପ୍ରଭୃତି ଅନୁଷ୍ଠିତ ହୋଇ ବୈଷ୍ଣବ ଧର୍ମ ଲୋକଧର୍ମରେ ରୂପାନ୍ତରିତ ହୋଇଥିଲା । ଉଲ୍ଲେଖ ଯୋଗ୍ୟଯେ ଏହି ରାଜା ଢେଙ୍କାନାଳର ପ୍ରତ୍ୟେକ ବିଷ୍ଣୁମନ୍ଦିରରେ ଝୁଲଣ ଓ ରାସଲୀଳା ପ୍ରବର୍ତ୍ତନ କରିଥିଲେ ତଥା ଶ୍ରୀବଳରାମ ମନ୍ଦିର ପ୍ରାଙ୍ଗଣରେ ସାର୍ବଜନୀନ ରାସଲୀଳା ଆରମ୍ଭ କରିଥିଲେ । ଏତଦ୍‌ଭିନ୍ନ ସେ ବାବାଜୀ ରାମଦାସଙ୍କ ସମେତ ଅଗଣିତ ବୈଷ୍ଣବଙ୍କୁ ଢେଙ୍କାନାଳକୁ ଆଣିଥିଲେ । ସୁରପ୍ରତାପ ନିଷ୍ଠାପର ଉଦ୍ୟମ ଯୋଗୁ ଢେଙ୍କାନାଳରେ ବୈଷ୍ଣବ ସଂସ୍କୃତି ବିକାଶର ଚରମସୀମା ସ୍ପର୍ଶ କରିଥିଲା ।

ପ୍ରାକ୍ ସ୍ୱାଧୀନ ଓ ସ୍ୱାଧୀନତା ପରେ ଢେଙ୍କାନାଳର କୋଣେ ଅନୁକୋଣେ ଅସଂଖ୍ୟ ବୈଷ୍ଣବ ମନ୍ଦିର ଗଢ଼ି ଉଠିଥିଲା । ତନ୍ମଧ୍ୟରେ ଭୁବନର ମଦନମୋହନ ଓ ଜଗମୋହନ ମନ୍ଦିର, ମାର୍ଥାପୁରର ରାଧାକୃଷ୍ଣ ମନ୍ଦିର, କନ୍ତିଓର ରାଧାକୃଷ୍ଣ ମନ୍ଦିର, ଭାପୁରର ଗୋପୀନାଥ ଓ ରଘୁନାଥ ମନ୍ଦିର, ଜିରାଳର ରାଧାକୃଷ୍ଣମନ୍ଦିର ଓ ବିରାଶାଳର ରାଧାକୃଷ୍ଣ ମନ୍ଦିର ବିଶେଷ ପ୍ରସିଦ୍ଧି ଲାଭକରିଅଛି । ଏହାବ୍ୟତୀତ ଅନ୍ୟାନ୍ୟ ସ୍ଥାନରେ ଅଗଣିତ ବିଷ୍ଣୁମନ୍ଦିର ନିର୍ମାଣ ହୋଇଅଛି, ଯାହା ଏକ ସ୍ୱତନ୍ତ୍ର ଆଲୋଚନା ପ୍ରତୀକ୍ଷା କରେ । ଢେଙ୍କାନାଳର ଜିଲାସଦରମହକୁମା, ଭୁବନ, ମାର୍ଥାପୁର, ମଠକରଗୋଳା, ଜିରାଳ, ପିଙ୍ଗୁଆ, ମନ୍ଦାର, ବଲ୍ଲଭ, ଯୋରନ୍ଦା, ଗଙ୍ଗାଶିଳା, ସାରିଆପଡ଼ା, ଓଉଖୁମା, ଇନ୍ଦିପୁର, ଦେଓଗାଁ ଧଳପୁର ଭଗୀରଥୀପୁର, ପର୍ଜଙ୍ଗ, ଜରିଡ଼ାମାଳୀ ପ୍ରଭୃତି ମୂଖ୍ୟ ସ୍ଥାନମାନଙ୍କରେ ଭାଗବତ ସପ୍ତାହ, ଗୀତା ଜୟନ୍ତୀ ତଥା ରାମାୟଣ ଓ ଜଗନ୍ନାଥ ସଂସ୍କୃତି ମୂଳକ ପ୍ରବଚନ ଅନୁଷ୍ଠାନ ଗଢ଼ିଉଠି ବୈଷ୍ଣବଧର୍ମକୁ ବ୍ୟାପକ କରାଯାଇଅଛି। ବିଭିନ୍ନ ଗୋଷ୍ଠୀର ବୈଷ୍ଣବାଚାର୍ଯ୍ୟ ତଥା ସାଧୁସନ୍ଥ ମଣ୍ଡଳୀ ନିୟମିତ ଭାବରେ ଢେଙ୍କାନାଳରେ କୋଣେ ଅନୁକୋଣେ ବୈଷ୍ଣବଧର୍ମ ପ୍ରଚାରରେ ବ୍ରତୀରହି ବୈଷ୍ଣବୀୟ ଚେତନାରେ ଆଲୋଡ଼ନ ସୃଷ୍ଟି କରିପାରିଛନ୍ତି । ଆଧୁନିକ ଢେଙ୍କାନାଳର ସାହିତ୍ୟିକବୃନ୍ଦ ବୈଷ୍ଣବୀୟ ଚେତନାର ଉତ୍ତରଣରେ ସାରସ୍ୱତ ଆଲୋଡ଼ନ ସୃଷ୍ଟି କରିପାରିଛନ୍ତି । ପରିଣାମ ସ୍ୱରୂପ ଢେଙ୍କାନାଳର ବୈଷ୍ଣବ ସଂସ୍କୃତିରେ ନବ ଜାଗରଣର ଉନ୍ମେଷ ଘଟିଛି ।

ଢେଙ୍କାନାଳରେ ପାଳିତ ହେଉଥିବା ବୈଷ୍ଣବ ବ୍ରତ ପର୍ବପର୍ବାଣୀ ମଧ୍ୟରେ ଦୋଳଯାତ୍ରା ହୋଲି, ଜନ୍ମାଷ୍ଟମୀ, ଶ୍ରୀରାମନବମୀ, ନୃସିଂହ ଚତୁର୍ଦ୍ଦଶୀ, ବାମନ ଦ୍ୱାଦଶୀ, ଅନନ୍ତବ୍ରତ, ଭାଗବତଜନ୍ମ ଓ ରାସପୂର୍ଣ୍ଣିମା ପ୍ରଭୃତି ପ୍ରଧାନ ।

ଢେଙ୍କାନାଳର ପ୍ରାୟ ପ୍ରତ୍ୟେକ ଗ୍ରାମରେ ଦୋଳଯାତ୍ରା ଓ ହୋଲି ଅନୁଷ୍ଠିତ ହୋଇଥାଏ । ଢେଙ୍କାନାଳ ସହର, ମହୁଲପାଳ, ଗଁଦିଆ ଯୋରନ୍ଦା, ଭୁବନ, ମାର୍ଥାପୁର, ଜିରାଳ, କନ୍ଦରସିଂହା ପ୍ରଭୃତି ସ୍ଥାନମାନଙ୍କରେ ଦୋଳମେଳଣ ଆଡ଼ମ୍ବର ସହକାରେ ପାଳନ କରାଯାଏ । ପ୍ରତ୍ୟେକ ମଠମନ୍ଦିର ଓ ଗୃହମାନଙ୍କରେ ଜନ୍ମାଷ୍ଟମୀ ଅତ୍ୟନ୍ତ ନିଷ୍ଠା ଓ ଏକାଗ୍ରତାର ସହ ପାଳନ କରାଯାଏ । ସପ୍ତଶଯ୍ୟା, ଭାପୁର, ଢେଙ୍କାନାଳ, କାମାକ୍ଷାନଗର, ଭୁବନ, ମଠକରଗୋଳା, ମାର୍ଥାପୁର, ବାଲିବୋ, ଅଘିରାଗୋଡ଼ା ଓ ଜୀରିଡ଼ାମାଳୀ ଗ୍ରାମମାନଙ୍କରେ ଶ୍ରୀରାମନବମୀ ପର୍ବ ଅଭୂତପୂର୍ବ ଆନନ୍ଦ ଉଦ୍ଦୀପନା ମଧ୍ୟରେ ପାଳନ କରାଯାଏ । ଢେଙ୍କାନାଳରେ ପ୍ରତିଷ୍ଠିତ ପ୍ରତ୍ୟେକ ଭାଗବତଗାଦୀରେ ଭାଗବତଜନ୍ମ ଶାସ୍ତ୍ରୋକ୍ତ ବିଧିରେ ପାଳନ ହୁଏ । ପ୍ରତ୍ୟେକ ବ୍ରହ୍ମଣ ଶାସନରେ ଏକାଦଶୀ, ବାମନଜନ୍ମ, ନୃସିଂହ ଚତୁର୍ଦ୍ଦଶୀ ପ୍ରଭୃତି ବିଷ୍ଣୁବ୍ରତ ଷଡ଼୍‌ଜୟନ୍ତୀ ସ୍ୱରୂପରେ ପାଳନ କରାଯାଏ । ଢେଙ୍କାନାଳରେ ରାସପୂର୍ଣ୍ଣିମା ପାଳନର ପରଂପରା ବହୁପ୍ରାଚୀନ । ଏହା ପ୍ରଭାବରେ ଢେଙ୍କାନାଳ ସହରରେ ରାସଦଳଟିଏ ଗଢ଼ିଉଠିଥିଲା । ସେହି ରାସଦଳର ବାର୍ଷିକ ଅଭିନୟରୁ ଆରମ୍ଭ ହୋଇଥିଲା ଢେଙ୍କାନାଳର ଗଜଲକ୍ଷ୍ମୀ ପୂଜା । ଝୁଲଣଯାତ୍ରା ନିମିତ୍ତ ଢେଙ୍କାନାଳର ଯାଉଁଳୀ ପୋଖରୀ ମଠ, ବଳଦେବଜୀଉ ମନ୍ଦିର, କନ୍ତିଓ, ବାଲିବୋ ପ୍ରଭୃତି ସ୍ଥାନର ପ୍ରସିଦ୍ଧି ରହିଛି । ଢେଙ୍କାନାଳବାସୀ ବିଭିନ୍ନ ବୈଷ୍ଣବବ୍ରତ ଓ ପର୍ବପାଳନ ମାଧ୍ୟମରେ ବୈଷ୍ଣବୀୟଧାରା ଅବ୍ୟାହତ ରଖି ଆସିଅଛନ୍ତି ।

ଗୁପ୍ତଯୁଗରୁ ଢେଙ୍କାନାଳରେ ବୈଷ୍ଣବ ସଂସ୍କୃତିର ଉନ୍ମେଷ ଘଟି ଭୌମକରଯୁଗରେ ଏହାର ଦିବ୍ୟସ୍ୱରୂପ ଉଦ୍‌ଭାସିତ ହୋଇଥିଲା । ସୋମ, ଗଙ୍ଗ ଓ ସୂର୍ଯ୍ୟବଂଶ ରାଜତ୍ୱରେ ବୈଷ୍ଣବ ସଂସ୍କୃତିର ବ୍ୟାପକ ପ୍ରସାର ଘଟିଥିଲେ ହେଁ ଅଭିନବ ଢେଙ୍କାନାଳ ରାଜ୍ୟଗଠନ ପରେ ବୈଷ୍ଣବଧର୍ମ ରାଜକୀୟ ଧର୍ମର ମର୍ଯ୍ୟାଦା ଲାଭ କରିଥିଲା । ବୈଷ୍ଣବ ସଂସ୍କୃତିର ଉତ୍ତରଣରେ ଢେଙ୍କାନାଳର କୋଣେ ଅନୁକୋଣେ ଅଗଣିତ ବିଷ୍ଣୁମନ୍ଦିର ନିର୍ମାଣହୋଇ ବୈଷ୍ଣବଧର୍ମ ଲୋକଧର୍ମର ସ୍ୱରୂପ ଗ୍ରହଣ କରିଥିଲା ତଥା ଢେଙ୍କାନାଳର କବିକୋବିଦବୃନ୍ଦ ଓ ବୈଷ୍ଣବ ସାହିତ୍ୟ ସୃଷ୍ଟିପୂର୍ବକ ବୈଷ୍ଣବୀୟ ଚିନ୍ତା ଓ ଚେତନାରୁ ରସାଣିତ କରିପାରିଥିଲେ । ଅଧିକନ୍ତୁ, ସ୍ୱାଧୀନୋତ୍ତର ଯୁଗରେ ଢେଙ୍କାନାଳରେ ବୈଷ୍ଣବ ସଂସ୍କୃତି ଏକ ସମନ୍ୱୟାତ୍ମକ ଧାରାରେ ପ୍ରବାହିତ ହୋଇ ଅଭିନବ ରୂପ ଧାରଣ କରିଛି ।



# ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ ଢେଙ୍କାନାଳ

ଓଡ଼ିଶାର ମଧ୍ୟାଞ୍ଚଳରେ ଅବସ୍ଥିତ ପ୍ରାକୃତିକ ରୂପଲାବଣ୍ୟ ଭରା ଢେଙ୍କାନାଳ ପର୍ଯ୍ୟଟନ ମାନଚିତ୍ରରେ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିଛି । ଗିରିବନାଞ୍ଚଳ ଓ ଅନେକ ଦେବସ୍ଥଳୀ ପରିଶୋଭିତ ଢେଙ୍କାନାଳରେ ବହୁ ଦର୍ଶନୀୟ ସ୍ଥାନ ଥିଲେ ହେଁ ମାତ୍ର ଆଠଗୋଟି ପର୍ଯ୍ୟଟନସ୍ଥଳୀ ଓଡ଼ିଶା ସରକାରଙ୍କ ଦ୍ୱାରା ଉଦ୍‌ଘୋଷିତ ଏବଂ ଅନେକ ପର୍ଯ୍ୟଟନସ୍ଥଳୀ ଲୋକଲୋଚନର ଅନ୍ତରାଳରେ ବିଦ୍ୟମାନ । ଢେଙ୍କାନାଳର ଯେଉଁ ସବୁ ପ୍ରମୁଖ ଦର୍ଶନୀୟସ୍ଥାନ ପର୍ଯ୍ୟଟନସ୍ଥଳୀ ରୂପେ ଉଦ୍‌ଘୋଷିତ ସେଗୁଡ଼ିକ ହେଲା କପିଳାସ, ଢେଙ୍କାନାଳସହର, ଯୋରନ୍ଦା, ସପ୍ତଶଯ୍ୟା, ଲଦାଗଡ଼, ଦଣ୍ଡାଧାର, କୁଆଁଲୋ ଓ ସରାଙ୍ଗ । ତନ୍ମଧ୍ୟରୁ କପିଳାସ, ଯୋରନ୍ଦା ଓ ସପ୍ତଶଯ୍ୟା ଢେଙ୍କାନାଳ ପର୍ଯ୍ୟଟନର ସ୍ୱର୍ଣ୍ଣତ୍ରିଭୂଜ ରୂପେ ସୁବିଦିତ ।

**କପିଳାସ :** ଶୈଳଶୈବକ୍ଷେତ୍ର କପିଳାସ ଏକ ପୁରାଣ ପ୍ରସିଦ୍ଧ ତୀର୍ଥ ତଥା ରମଣୀୟ ସ୍ୱାସ୍ଥ୍ୟକର ଶୈଳନିବାସ । ଏହାର ସ୍ୱଚ୍ଛ ନିର୍ଝରଣୀର ଜଳ ପରମ ପାବନ ଓ ଆୟୁଷ୍ୟ । ଅଗଣିତ ଦୁର୍ଲଭ ଔଷଧୀୟ ବୃକ୍ଷ ପରିପୂରିତ କପିଳାସ ପର୍ବତଶ୍ରେଣୀ ହରଉଦ୍ୟାନ ଭାବରେ ପରିଚିହ୍ନିତ । ଢେଙ୍କାନାଳ ସହରଠାରୁ ଐଶାନ୍ୟ କୋଣରେ ୨୫ କି.ମି ଦୂରରେ ଅବସ୍ଥିତ କପିଳାସ ପର୍ବତର ଉଚ୍ଚତା ୨୨୩୯ ଫୁଟ। ଏହାର କଟିଦେଶରେ ୧୫୦୦ ଫୁଟଉଚ୍ଚରେ ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିର ଅବସ୍ଥିତ। ପୌରାଣିକ ବର୍ଣ୍ଣାନୁସାରେ ଲଙ୍କାର ଅଧୀଶ୍ୱର ରାବଣ ହିମାଳୟସ୍ଥିତ ଶିବଙ୍କ ନିବାସସ୍ଥଳୀ କୈଳାସ ପର୍ବତକୁ ନେଇଯାଉଥିବା ସମୟରେ ଏହାର ଯେଉଁ ଅଂଶ ଶିବମାୟାରେ ଭୂପତିତ ହେଲା ତାହାହିଁ କୈଳାସ ବା ଅପଭ୍ରଂଶରେ କପିଳାସ । ଏଠାରେ ଶ୍ରୀଚନ୍ଦ୍ରଶେଖରଙ୍କ ମନ୍ଦିର ସହିତ ପାର୍ବତୀ, ବିଶ୍ୱନାଥ ଓ ନାରାୟଣଙ୍କ ମନ୍ଦିର ରହିଛି । ଏତଦ୍‌ଭିନ୍ନ ବ୍ରହ୍ମଚାରୀ ମଠ, ତଳମଠ, ହରିହର ମଠ, ସୀତାରାମ ମଠ ଓ ବିଲଙ୍କାଗଡ଼ର ଧ୍ୱଂସାବଶେଷ ବିଦ୍ୟମାନ । ପର୍ବତର ବିଭିନ୍ନ ସ୍ଥାନରେ ପାଦପଦ୍ମ ଗୁମ୍ଫା କେନ୍ଦୁପାଣିଆ ଗୁମ୍ଫା, ଆତେଣ୍ଡୀ ପାଣିଆ

ଗୁମ୍ଫା ଓ ସୀତାଙ୍କ ଏନ୍ତୁଡ଼ିଶାଳ ଗୁମ୍ଫା ସମେତ ଅନେକ ପ୍ରାକୃତିକ ଗୁମ୍ଫା ରହିଅଛି । ବ୍ରହ୍ମଚାରୀ ମଠ ଠାରେ ଦଶମ ଶଙ୍କରାଚାର୍ଯ୍ୟ ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀଙ୍କ ସମାଧିପୀଠ ସହିତ ଅନ୍ୟାନ୍ୟ ମହାତ୍ମାଙ୍କ ସମାଧି ମଧ୍ୟ ବିଦ୍ୟମାନ । ପୀଠ ଉପରେ ପୟୋମୃତ କୁଣ୍ଡ, ଜମ୍ବୁକୁଣ୍ଡ, ପାପନାଶିନୀ କୁଣ୍ଡ, ମଣିକର୍ଣ୍ଣିକା କୁଣ୍ଡ, ହରିହର କୁଣ୍ଡ ଓ ମହାବୀର କୁଣ୍ଡର ଜଳ ପରମପାବନ । ପୀଠସ୍ଥିତ ଦଧିନଉତି ଶିଳାଲେଖରୁ ଜଣାଯାଏ ଗଙ୍ଗବଂଶୀ ପ୍ରଥମ ନରସିଂହଦେବ ୧୨୪୬ ଖ୍ରୀଷ୍ଟାବ୍ଦରେ ମୁଖ୍ୟମନ୍ଦିର ନିର୍ମାଣ କରିଥିଲେ । ପୀଠକୁ ପାଦଦେଶରୁ ଦୁଇଗୋଟି ରାସ୍ତା ରହିଅଛି । ପାଞ୍ଚ କିଲୋମିଟର ବ୍ୟାପୀ ବାରବାଙ୍କ ରାସ୍ତା ମଟରଯାନ ଯାତାୟତ ନିମିତ୍ତ ଏବଂ ପାବଚ୍ଛ ରାସ୍ତାରେ ୧୩୫୨ ଗୋଟି ପାବଚ୍ଛ ନିର୍ମିତ । ପୀଠଉପରେ ପୂର୍ତ୍ତବିଭାଗର ଡାକବଙ୍ଗଳା ଓ ଧର୍ମଶାଳା ରହିଅଛି । ପାଦଦେଶ ଦେଓଗାଁଠାରେ ଶ୍ରୀବଳଦେବ ମନ୍ଦିର, ମୃଗବିହାର, ବିଜ୍ଞାନ ଉପବନ, ପାନ୍ଥଶାଳା, ବିଶ୍ରାମାଗାର, ଶ୍ୟାମଳୀ କାଜୁ ବଗିଚା, ଦତ୍ତାତ୍ରେୟ ଆଶ୍ରମ ପ୍ରଭୃତି ଗୋଟିଏ ଗୋଟିଏ ଦର୍ଶନୀୟ ସ୍ଥାନ । ପ୍ରତିବର୍ଷ ଭାରତ ତଥା ଓଡ଼ିଶାର ବିଭିନ୍ନ ସ୍ଥାନରୁ ଲକ୍ଷ ଲକ୍ଷ ଦର୍ଶକ ଓ ପର୍ଯ୍ୟଟକ କପିଳାସ ଆସିଥାଆନ୍ତି । ବିଶେଷତଃ ଶିବରାତ୍ରି ଉପଲକ୍ଷେ ଏଠାରେ ଦୁଇଲକ୍ଷରୁ ଅଧିକ ଯାତ୍ରୀ ଏକତ୍ରିତ ହୋଇଥାନ୍ତି ।

**ଯୋରନ୍ଦା :** ଢେଙ୍କାନାଳ ଉତ୍ତର ଦିଗରେ ୨୫ କି.ମି. ଦୂରରେ ମହିମାଧର୍ମର ମୁଖ୍ୟପୀଠ ମହିମାଗାଦୀ ଯୋରନ୍ଦା ଗ୍ରାମ ନିକଟରେ ଅବସ୍ଥିତ । ଏଠାରେ ଗାଦୀ ମନ୍ଦିର, ସମାଧିମନ୍ଦିର, ଶୂନ୍ୟମନ୍ଦିର, ଧୂନିମନ୍ଦିର, ବଡ଼ମଠ, ସାନମଠ, ଲତାଶ୍ରମ, ସଭାଗୃହ, ଘଣ୍ଟାଘର, ଚଉମୁହାଣୀ ବାମ୍ଫୀ ଓ ବୃହତ୍ ପୁସ୍ତକାଳୟ ରହିଛି । ବର୍ଷସାରା ଏଠାକୁ ପର୍ଯ୍ୟଟକ ଓ ଯାତ୍ରୀମାନଙ୍କର ଆଗମନ ହୋଇଥାଏ । ନିକଟରେ ଯୋରନ୍ଦାଠାରେ ଗୋଟିଏ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠା କରାଯାଇଛି । ଏତଦ୍‌ଭିନ୍ନ ଯୋରନ୍ଦାର ଗୋବିନ୍ଦଜୀଉ ମନ୍ଦିର, ନାଟିମାର ଜଗନ୍ନାଥ ମନ୍ଦିର ଓ ମହିମା ମହାବିଦ୍ୟାଳୟ ଦର୍ଶକଙ୍କର ଅନ୍ୟତମ ଆକର୍ଷଣ । ମାଘ ପୂର୍ଣ୍ଣିମାର ଅବ୍ୟବହିତ ପୂର୍ବରୁ ଏଠାରେ ମହିମାମେଳା ସାତଦିନ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥାଏ । ଭାରତର ବିଭିନ୍ନ ପ୍ରାନ୍ତରୁ ମହିମାଧର୍ମୀ ସାଧୁ ଓ ଗୃହୀଙ୍କ ସମେତ ପ୍ରାୟ ତିନିଲକ୍ଷ ଯାତ୍ରୀ ଏହି ମହିମାମେଳାରେ ଏକତ୍ରିତ ହୋଇଥାନ୍ତି ।

ଏତଦୁପଲକ୍ଷେ ଅମୁହାଁ ଦେଉଳ ସନ୍ନିକଟରେ ଅଖଣ୍ଡଦୀପ ପ୍ରଜ୍ୱଳନ ସହିତ ସୁନାରଛତ୍ରୀ ଓ ଆଭୂଷଣ ପ୍ରଦର୍ଶନ ହୋଇଥାଏ ।

**ସପ୍ତଶଯ୍ୟା :** ରମଣୀୟ ରାମଧାମ ସପ୍ତଶଯ୍ୟା ଢେଙ୍କାନାଳ ସହରର ପଶ୍ଚିମ ଦକ୍ଷିଣ କୋଣରେ ୧୦ କି.ମି. ଦୂରରେ ଅବସ୍ଥିତ । ସାତଗୋଟି ପର୍ବତର ରମଣୀୟ ଶୋଭାବିମଣ୍ଡିତ ହୋଇଥିବାରୁ ଏହାର ନାମ ସପ୍ତଶଯ୍ୟା । କିମ୍ବଦନ୍ତୀ ଅନୁଯାୟୀ ଏଠାରେ ପାଣ୍ଡବମାନେ ବନବାସ କାଳରେ ସାତଦିନ ରହିଥିଲେ । ଏହାର ସ୍ୱଚ୍ଛନିର୍ଝରଣୀର ଜଳ ସ୍ୱାସ୍ଥ୍ୟକର । ସପ୍ତଶଯ୍ୟା ପୀଠରେ ଶ୍ରୀରାମ ମନ୍ଦିର, ଯଜ୍ଞମଣ୍ଡପ, ମହାବୀର କୁଣ୍ଡ ଓ ଅନେକ ଗୁମ୍ଫା ବିଦ୍ୟମାନ । ସପ୍ତଶଯ୍ୟା ପାଦଦେଶରେ ଜେନାଦେଇ ଠାକୁରାଣୀ, କଲ୍‌କୀମନ୍ଦିର, ବିଶ୍ୱନାଥ ମନ୍ଦିର, ଅନ୍ନପୂର୍ଣ୍ଣା ମନ୍ଦିର, ନବଗ୍ରହ ମନ୍ଦିର, ଫଳବଗିଚା, ଔଷଧୀୟ ବୃକ୍ଷର ଉପବନ ଓ ବଙ୍ଗଳା ରହିଛି । ବଣଭୋଜୀ ଓ ଦର୍ଶନ କରିବା ଉଦ୍ଦେଶ୍ୟରେ ଏଠାକୁ ବର୍ଷସାରା ବିଭିନ୍ନ ପ୍ରାନ୍ତରରୁ ଯାତ୍ରୀ ଓ ଦର୍ଶକଙ୍କର ଆଗମନ ହୋଇଥାଏ । ପ୍ରତିବର୍ଷ ଶ୍ରୀରାମନବମୀରେ ଏଠାରେ ଯଜ୍ଞ ଓ ଯାତ୍ରା ଅନୁଷ୍ଠିତ ହୁଏ । ଏହି ଯାତ୍ରାରେ ପ୍ରାୟ ପଚାଶହଜାର ଯାତ୍ରୀ ଯୋଗ ଦେଇଥାନ୍ତି । ଶ୍ରୀରାମନବମୀରେ ଏଠାରେ ରାମଜନ୍ମୋତ୍ସବ, ବିଶ୍ୱଶାନ୍ତି ଯଜ୍ଞ ଓ ରାମଲୀଳା ଅନୁଷ୍ଠିତ ହୋଇଥାଏ ।

**ଢେଙ୍କାନାଳ ସହର :** ବାରଶହ ବର୍ଷରେ ଐତିହ୍ୟ ବିମଣ୍ଡିତ ଢେଙ୍କାନାଳ ସହର ଏକ ସୁରମ୍ୟ ପାର୍ବତ୍ୟ ଉପତ୍ୟକାରେ ଅବସ୍ଥିତ । ଏଠାରେ ଶ୍ରୀବଳଦେବ ଜୀଉଙ୍କ ଭବ୍ୟମନ୍ଦିର, ଶ୍ରୀଜଗନ୍ନାଥ ମନ୍ଦିର, ଲକ୍ଷ୍ମୀମନ୍ଦିର, ଦଧିବାମନ ମଠ, ଯାଉଁଳୀ ପୋଖରୀ ମଠ, କୁଞ୍ଜକାନ୍ତ ମନ୍ଦିର, ଶମ୍ଭୁଗୋପାଳ ମଠ, ଜୟଗୋପାଳ ମଠ, ପ୍ରାଚୀନ ରାଜ ପ୍ରାସାଦ, ଦୂରଦର୍ଶନ ପ୍ରସାରଣ କେନ୍ଦ୍ର, ବିଜ୍ଞାନ ଉପବନ ପ୍ରଭୃତି ଅନେକ ଦର୍ଶନୀୟ ସ୍ଥାନ ରହିଛି । ଲକ୍ଷ୍ମୀପୂଜା ସମୟରେ ଦୀର୍ଘ ଏଗାରଦିନ ଧରି ଢେଙ୍କାନାଳ ସହର ସ୍ୱର୍ଗୀୟଶୋଭା ଧାରଣକରିଥାଏ। ଅନ୍ୟୁନ୍ୟ ଦଶ ଲକ୍ଷ ଯାତ୍ରୀ ଓ ଦର୍ଶକ ଲକ୍ଷ୍ମୀପୂଜାରେ ଢେଙ୍କାନାଳରେ ଏକତ୍ରିତ ହୋଇଥାନ୍ତି । ଏତଦ୍‌ଭିନ୍ନ ରଥଯାତ୍ରା, ଚନ୍ଦନ, ଦୋଳ, ନନ୍ଦୋତ୍ସବ ପ୍ରଭୃତି ଢେଙ୍କାନାଳର ପ୍ରସିଦ୍ଧ ପର୍ବ । ବର୍ଷସାରା ଢେଙ୍କାନାଳ ସହରକୁ ପର୍ଯ୍ୟଟକମାନଙ୍କର ଆଗମନ ହୋଇଥାଏ । ପର୍ଯ୍ୟଟକଙ୍କ ନିମିତ୍ତ ପାନ୍ଥନିବାସ ସମେତ ଅନେକ ବଙ୍ଗଳା ଓ ହୋଟେଲ ରହିଛି ।

**ଲଦାଗଡ଼ :** ଢେଙ୍କାନାଳ ସହରଠାରୁ ପଶ୍ଚିମ ଦିଗରେ ୩୭ କି.ମି ଦୂରରେ ଅବସ୍ଥିତ ଲଦାଗଡ଼ଠାରେ ପ୍ରାକୃତିକ ଗୁମ୍ଫା ଓ ପ୍ରାଚୀନ ଦୁର୍ଗ ରହିଅଛି । ଏହି ସ୍ଥାନରେ ଐତିହ୍ୟ ଅଦ୍ୟାବଧି ଲୋକଲୋଚନରୁ ଆସି ପାରିନଥିଲେ ହେଁ ହୃଦ୍‌ବୋଧ ହୁଏ ଯେ ଏହା କୌଣସି ପ୍ରାଚୀନ ରାଜାଙ୍କ ରାଜଧାନୀ ଥିଲା ଏବଂ ପରବର୍ତ୍ତୀ କାଳରେ ସାଧୁସନ୍ଥଙ୍କ ନିବାସସ୍ଥଳୀରେ ପରିଣତ ହୋଇଥିଲା । ଅନେକ ପର୍ଯ୍ୟଟନ ଏଠାକୁ ବୁଲିବାକୁ ଆସିଥାନ୍ତି ।

**କୁଆଁଲୋ :** ଢେଙ୍କାନାଳ ଜିଲା ପରଜଙ୍ଗ ଥାନାରେ ଅବସ୍ଥିତ କୁଆଁଲୋ ଗ୍ରାମଠାରେ ଅଷ୍ଟଶମ୍ଭୁପୀଠ ବିଦ୍ୟମାନ । ଏହି ସ୍ଥାନ ହେଉଛି ପ୍ରାଚୀନ କୋଦାଳକ ନଗରୀ ତଥା ଶୁକ୍ଳୀବଂଶୀ ରାଜାମାନଙ୍କର ରାଜଧାନୀ । ସେମାନଙ୍କ ପ୍ରଦତ୍ତ ତାମ୍ରଶାସନରୁ କୋଦାଳକ ନଗରୀର ଗୌରବୋଜ୍ଜ୍ୱଳ ଐତିହ୍ୟର ସୂଚନା ଉପଲବ୍‌ଧି ହୋଇଥାଏ । ଶିବଭକ୍ତିର ସ୍ୱାଭିମାନରେ ସ୍ତମ୍ଭନୃପତିବୃନ୍ଦ ଏହି ନଗରୀରେ ଅଗଣିତ ଶିବମନ୍ଦିର ନିର୍ମାଣ କରିଥିଲେ । ଅଷ୍ଟମ-ନବମ ଶତାବ୍ଦୀରେ ନିର୍ମିତ ଏହି ମନ୍ଦିର ସମୂହ ତତ୍‌କାଳୀନ ଭାରତର ସର୍ବୋଚ୍ଚ ମନ୍ଦିରଥିଲା। ଅଦ୍ୟାବଧି ଏଠାରେ ଆଠଗୋଟି ଭଗ୍ନ ମନ୍ଦିର ଦୃଷ୍ଟିଗୋଚର ହୋଇଥାଏ, ଯାହାକି ଅଷ୍ଟଶମ୍ଭୁପୀଠ ନାମରେ ପ୍ରସିଦ୍ଧି ଲାଭ କରିଅଛି । ଏଠାରେ ପୂଜିତ ଅଷ୍ଟଶମ୍ଭୁ ହେଉଛନ୍ତି କନକେଶ୍ୱର, ସ୍ୱପ୍ନେଶ୍ୱର, ଐଶାନ୍ୟେଶ୍ୱର, କପିଳେଶ୍ୱର, ବୈଦ୍ୟନାଥେଶ୍ୱର, ପଶ୍ଚିମେଶ୍ୱର, ବାଣେଶ୍ୱର ଓ ଲୋକନାଥେଶ୍ୱର । ପରିସରରେ ଦେବୀ କନକଦୁର୍ଗା ପୂଜିତ । କିୟତ୍ ଦୂରରେ ସ୍ତମ୍ଭେଶ୍ୱରୀ ପୂଜିତା । ବର୍ଷସାରା ଏଠାକୁ ଯାତ୍ରୀମାନଙ୍କର ଆଗମନ ହୋଇଥାଏ ।

**ସରାଙ୍ଗ :** କୁଆଁଲୋଠାରୁ ୫କି.ମି ପଶ୍ଚିମରେ ବ୍ରାହ୍ମଣୀ ନଦୀକୂଳରେ ସରାଙ୍ଗ ଗ୍ରାମ ଅବସ୍ଥିତ । ତାଳଚେର ସହରର ଅପର ପାର୍ଶ୍ୱରେ ଅବସ୍ଥିତ ଏହି ଗ୍ରାମ ସନ୍ନିକଟ ନଦୀଶଯ୍ୟାରେ ବିଶାଳ ଅନନ୍ତଶୟନ ବିଷ୍ଣୁପ୍ରତିମା ବିରାଜିତ । ମୂର୍ତ୍ତିଟିର ଲମ୍ବ ୩୨ ଫୁଟ । ଏହି ପ୍ରତିମାର ନାଭିଦେଶରେ ପଦ୍ମଉପରେ ବ୍ରହ୍ମା ଆସୀନ । ବ୍ରାହ୍ମଣୀ ନଦୀକୁ ସାଗର କଳ୍ପନା କରାଯାଇ ତହିଁରେ ଅନନ୍ତ ଶୟନ ବିଷ୍ଣୁ ତଥା ତାଙ୍କ ନାଭିଦେଶରୁ ବ୍ରହ୍ମାଙ୍କ ସୃଷ୍ଟିର ପରିକଳ୍ପନା କାଯାଇଛି । ସରାଙ୍ଗ ଅପର ପାର୍ଶ୍ୱରେ ପଶ୍ଚିମେଶ୍ୱର ମନ୍ଦିର ବିଦ୍ୟମାନ । ଏଠାରେ ଦୁଇଗୋଟି ବୁଦ୍ଧମୂର୍ତ୍ତି

ରହିଅଛି । ଗବେଷକମାନଙ୍କ ମତରେ ଏହାହିଁ ଜୟାଶ୍ରାମ ବୌଦ୍ଧବିହାର । ଅନେକ ପର୍ଯ୍ୟଟନ ଓ ଦର୍ଶକ ଏଠାକୁ ଆସିଥାଆନ୍ତି ।

**ଦଣ୍ଡାଧାର :** ଢେଙ୍କାନାଳଠାରୁ ୬୫ କି.ମି ଉତ୍ତରରେ କାମାକ୍ଷାନଗର ଉପଖଣ୍ଡରେ ଦଣ୍ଡାଧାର ଜଳସେଚନ ପ୍ରକଳ୍ପ ଏକ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ପର୍ଯ୍ୟଟନସ୍ଥଳୀ । ଏଠାରେ ରାମିଆଳ ନଦୀକୁ ବନ୍ଧ କରାଯାଇ ଜଳଭଣ୍ଡାର ସୃଷ୍ଟି ହୋଇଛି । ପ୍ରତି ବର୍ଷ ବଣଭୋଜୀ କରିବାକୁ ଅନେକବ୍ୟକ୍ତି ଏଠାକୁ ଆଗମନ କରିଥାନ୍ତି ।

ଏହି ଆଠଗୋଟି ପର୍ଯ୍ୟଟନସ୍ଥଳୀ ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନ ପାଇଥିଲେହେଁ ଢେଙ୍କାନାଳର ଅନେକ ଦର୍ଶନୀୟ ସ୍ଥାନ ଲୋକଲୋଚନର ଅନ୍ତରାଳରେ ରହିଯାଇଛି । ତନ୍ମଧ୍ୟରୁ କେତୋଟିର ବିବରଣୀ ନିମ୍ନରେ ଉପସ୍ଥାପନ କରାଗଲା ।

**ଗଣେଶଖୋଲା :** ଢେଙ୍କାନାଳର ଉତ୍ତରଦିଗରେ ୩୫କି.ମି. ଦୂରେ ଅବସ୍ଥିତ ଗଣେଶଖୋଲା ଏକ ମନୋରମ ପର୍ଯ୍ୟଟନ ସ୍ଥଳୀ । ଢେଙ୍କାନାଳର ପ୍ରାଚୀନ ରାଜଧାନୀ କରମୂଳ ନିକଟରେ ଅବସ୍ଥିତ ଏହି ସ୍ଥଳୀରେ ସ୍ୱଚ୍ଛନିର୍ଝର, ଗଣେଶ ଓ ମହବୀରଙ୍କ ମନ୍ଦିର ବିଦ୍ୟମାନ । ସନ୍ନିକଟରେ ଗିରିଦୁର୍ଗର ଭଗ୍ନାବଶେଷ ଏବଂ ନଦୀକୂଳରେ ଦୌଡ଼େଶ୍ୱର ମହାଦେବ । ବଣଭୋଜୀ ନିମିତ୍ତ ସ୍ଥାନଟି ଉତ୍କୃଷ୍ଟ । ପ୍ରତିବର୍ଷ ମକର ସଂକ୍ରାନ୍ତିରେ ଏଠାରେ ବୃହତ୍ ମେଳା ଅନୁଷ୍ଠିତ ହୋଇଥାଏ ।

**ବାଲୁଙ୍କେଶ୍ୱର ପୀଠ :** କରମୂଳରେ ଅପର ପାର୍ଶ୍ୱରେ ବ୍ରାହ୍ମଣୀ ଓ ରାମିଆଳର ମିଳନସ୍ଥଳ ପ୍ରାଚୀନ ମାର୍ଥାପୁର ଶାସନର ବାଲୁଙ୍କେଶ୍ୱର ପୀଠ ଏକ ମନୋରମ ଦର୍ଶନୀୟ ସ୍ଥାନ । ଏଠାରେ ବିଲ୍ୱବଣ ମଧ୍ୟରେ ବାଲୁଙ୍କେଶ୍ୱର ମନ୍ଦିର, ରାମମନ୍ଦିର, ତାରିଣୀମନ୍ଦିର, ଯଜ୍ଞମଣ୍ଡପ ଓ ପାର୍ବତୀ ମନ୍ଦିର ରହିଅଛି । ପ୍ରତିବର୍ଷ ରାସପୂର୍ଣ୍ଣିମାରେ ଏଠାରେ ଯାତ୍ରା ଅନୁଷ୍ଠିତ ହୋଇଥାଏ ।

**ଭୁବନ :** ପ୍ରାଚୀନ ଗ୍ରାମ ଭୁବନଠାରେ ବୁଦ୍ଧେଶ୍ୱର ମନ୍ଦିର, ଜଗମୋହନ ମନ୍ଦିର, ମଦନ ମୋହନ ମନ୍ଦିର, ରାଧାକାନ୍ତ ମନ୍ଦିର, ଜଗନ୍ନାଥ ମନ୍ଦିର ଓ ଭୁବେନଶ୍ୱର ମହାଦେବଙ୍କ ମନ୍ଦିର ବିଦ୍ୟମାନ । ନିକଟରେ ବାଲିବୋମଠ ଓ

ରକ୍ତତୀର୍ଥ ନୀଳକଣ୍ଠପୁର ଅନେକ ଦର୍ଶକଙ୍କର ଆକର୍ଷଣ । ସଂପ୍ରତି ରାଜ୍ୟ ସରକାର ବୃଦ୍ଧେଶ୍ୱର ପୀଠକୁ ପର୍ଯ୍ୟଟନସ୍ଥଳୀ ରୂପେ ଘୋଷଣା କରିଛନ୍ତି ।

**କପିଳେଶ୍ୱର ପୀଠ :** କାମାକ୍ଷାନଗର ଭୁବନ ରାସ୍ତାର ବଡ଼ଶୁଆଁଳ ଗ୍ରାମଠାରୁ ଏକ କି.ମି ଦକ୍ଷିଣରେ କପିଳେଶ୍ୱର ପୀଠ । ଏହି ମନ୍ଦରିଟି ରାମିଆଳନଦୀ ଗର୍ଭରେ ଅବସ୍ଥିତ ଏବଂ ମଧ୍ୟଯୁଗରେ ନିର୍ମିତ । ନିକଟରେ ମଲାଙ୍ଗ ଡିହର ଦଧିବାମନ ମଠ ।

**ରାମେଶ୍ୱର ପୀଠ :** କାମାକ୍ଷାନଗର ଠାରୁ ୩ କି.ମି. ପଶ୍ଚିମରେ ରାମିଆଳ ନଦୀକୂଳରେ ପ୍ରାଚୀନ ରାମେଶ୍ୱର ପୀଠ ଅବସ୍ଥିତ । ଏଠାରେ ରାମେଶ୍ୱରଙ୍କ ମନ୍ଦିର ଓ ଯଜ୍ଞମଣ୍ଡପ ରହିଅଛି । ପୀଠର ପାର୍ବତୀ ମୂର୍ତ୍ତି ଅତୀବ କମନୀୟ ।

**ଜୀବନଖୋଲ :** କଟକ ସମ୍ବଲପୁର ଜାତୀୟ ରାଜପଥର ବାମପାର୍ଶ୍ୱରେ ଢେଙ୍କାନାଳଠାରୁ ୨୦କି.ମି ପଶ୍ଚିମରେ ସୁରମ୍ୟ ଜୀବନଖୋଲ ଆଶ୍ରମ ଅବସ୍ଥିତ । ଏଠାରେ ନିର୍ଝରଣୀ ଓ ଶିବମନ୍ଦିର ବିଦ୍ୟମାନ ।

**ନାଧରାରାମଚଣ୍ଡୀ :** ଢେଙ୍କାନାଳଠାରୁ ୩୨ କି.ମି ପଶ୍ଚିମରେ ବ୍ରାହ୍ମଣୀ ନଦୀକୂଳରେ ନାଧରା ରାମଚଣ୍ଡୀ ପୀଠ । ଏହାର ପଶ୍ଚାଦ୍‌ଭାଗରେ ପ୍ରାଚୀନ ଭୀମନଗରୀ ଦୁର୍ଗର ଭଗ୍ନାବଶେଷ ଏବଂ ସନ୍ନିକଟରେ କନକେଶ୍ୱର ମହାଦେବଙ୍କ ମନ୍ଦିର ବିଦ୍ୟମାନ । ରାମଚଣ୍ଡୀ ପୀଠରେ ଜଗଜ୍ଜନନୀ ଦୁର୍ଗାଙ୍କ ଭବ୍ୟମନ୍ଦିର ଓ ନିକଟରେ ହରିହରମୂର୍ତ୍ତି ଅବସ୍ଥିତ ।

**ନାଗନା :** ଢେଙ୍କାନାଳ ସହରର ଉତ୍ତରଦିଗରେ ୨୦କି.ମି.ଦୂରରେ ବ୍ରାହ୍ମଣୀନଦୀକୂଳରେ ନାଗନା ଗ୍ରାମ ଅବସ୍ଥିତ । ଏଠାରେ ନାଗନାଥେଶ୍ୱର ମନ୍ଦିର ସମେତ ଦେବୀ ନାଗନାଇଁ ଓ ପ୍ରାଚୀନ ବାମ୍ପୀ ଅବସ୍ଥିତ । ବାମ୍ପୀଠାରେ ଏକାଦଶ ରୁଦ୍ର ମୁର୍ତ୍ତି ଖୋଦିତ । ଭାରତର ଦ୍ୱାଦଶ ଜ୍ୟୋତିର୍ଲିଙ୍ଗଙ୍କ ମଧ୍ୟରେ ନାଗନାଥେଶ୍ୱର ଅନ୍ୟତମ । ବ୍ରାହ୍ମଣୀନଦୀ ଏହିଠାରେ ଉତ୍ତରଗାମୀ । ଏହା ଗୋଟିଏ ପ୍ରାଚୀନ ତୀର୍ଥ ।

**ଅନ୍ନକୋଟୀଶ୍ୱର :** ନାଗନା ମନ୍ଦିରର ପୂର୍ବରେ ପାଞ୍ଚ କି.ମି. ଦୂରରେ ହିରଣ୍ୟଗର୍ଭ ଶିବଲିଙ୍ଗ ଅନ୍ନକୋଟୀଶ୍ୱର ବିଦ୍ୟମାନ । ଶିବଲିଙ୍ଗ ପ୍ରାଚୀନ ହେଲେହେଁ ମନ୍ଦିରଟି ପ୍ରାୟ ତିନିଶହ ବର୍ଷ ତଳେ ନିର୍ମିତ । ଏହା ଏକ ପ୍ରସିଦ୍ଧ ଶିବପୀଠ ।

**ପଣ୍ଡିମେଶ୍ୱର :** ଢେଙ୍କାନାଳ ସହରର ଦକ୍ଷିଣ ଦିଗରେ ୨୦କି.ମି ଦୂରରେ ସାପୁଆ ନଦୀ କୂଳରେ ପ୍ରାଚୀନ ପଶ୍ଚିମେଶ୍ୱର ପୀଠ ଅବସ୍ଥିତ। ନିକଟରେ ଅଷ୍ଟମ-ନବମ ଶତାବ୍ଦୀର ଦୁଇଟି ପ୍ରାଚୀନ ଶିବମନ୍ଦିର ବିଦ୍ୟମାନ । ପଣ୍ଡିମେଶ୍ୱର ଏକ ପ୍ରସିଦ୍ଧ ଶିବପୀଠ । କାର୍ତ୍ତିକ ପୂର୍ଣ୍ଣମୀରେଏଠାରେ ଯାତ୍ରା ଅନୁଷ୍ଠିତ ହୋଇଥାଏ ।

ଏହି ସବୁ ଦର୍ଶନୀୟ ସ୍ଥାନ ବ୍ୟତୀତ ହଦଗଡ଼, ଡମରାଜା କଟକ, ରଙ୍ଗଥଳୀ, ଡମଶାଳ, ଦଦରାଘାଟୀ, ଶିବୁଳାଗଡ଼, ପଥରଗଡ଼, ଉଦୟଗିରି, ସିଂହାରୀଖୋଲା ପ୍ରଭୃତି ଅନେକ ସ୍ଥାନ ରହିଛି । ଏହି ସବୁ ସ୍ଥାନକୁ ଯାତାୟତର ସୁବିଧା ନାହିଁ । ତଥାପି, ପ୍ରତିବର୍ଷ ଅନେକ ପର୍ଯ୍ୟଟକ ଏହି ସ୍ଥାନକୁ ପରିଦର୍ଶନରେ ଆସିଥାନ୍ତି । ପର୍ଯ୍ୟଟକଙ୍କର ଯାତାୟତ ଓ ରହଣୀ ନିମିତ୍ତ ବ୍ୟବସ୍ଥା ହୋଇପାରିଲେ ଅଧିକ ପର୍ଯ୍ୟଟକ ଆଗମନର ସମ୍ଭାବନା ରହିଛି ।



# ଢେଙ୍କାନାଳର ପ୍ରତ୍ନବିଭବ (ପୂର୍ବାର୍ଦ୍ଧ)

ପ୍ରତ୍ନତାତ୍ତ୍ୱିକଙ୍କ ମତରେ ଖ୍ରୀଷ୍ଟପୂର୍ବ କାଳରୁ ବ୍ରାହ୍ମଣୀ ଅବବାହିକାରେ ସଭ୍ୟତା ଓ ସଂସ୍କୃତିର ବିକାଶ ଘଟିଥିଲା । ଏପରିକି ବ୍ରାହ୍ମଣୀ ଅବବାହିକାର ବିକ୍ରମଖୋଲ ଶିଳାଲେଖରୁ ଏହି ଅଞ୍ଚଳରେ ସିନ୍ଧୁସଭ୍ୟତା କାଳୀନ ସଭ୍ୟତାର ପରିଚୟ ମିଳିଥାଏ, ଯାହାର ସବିଶେଷ ବିବରଣୀ ଏଅବଧି ଅନୁପଲବ୍ଧ । ଶଙ୍ଖ ଓ କୋଏଲ୍ ନାମକ ଦୁଇଗୋଟି ନଦୀ ଛୋଟନାଗପୁର ମାଳଭୂମିର ହଜାରିବାଗ ପର୍ବତଶ୍ରେଣୀରୁ ବାହାରି ପାନପୋଷ ନିକଟରେ ମିଳିତ ହେବାପରେ ବେଦବ୍ୟାସ ମିଳନସ୍ଥଳୀଠାରୁ ବ୍ରାହ୍ମଣୀ ନାମ ଧାରଣ କରିଥିଲେ । ଏହି ପୁରାଣ ପ୍ରସିଦ୍ଧ-ନଦୀ-ବ୍ରାହ୍ମୀ, ବ୍ରାହ୍ମଣୀ, ଶଙ୍ଖଜ୍ୟୋତି ଓ ଦଶାର୍ଣ୍ଣ ପ୍ରଭୃତି ବହୁ ନାମରେ ଯୁଗେ ଯୁଗେ ପରିଚିତ । ଗବେଷକମାନଙ୍କ ମତରେ ଓଡ୍ର ଜାତି ବିନ୍ଧ୍ୟାଞ୍ଚଳ ପାରିହେବା ପରେ ବ୍ରାହ୍ମଣୀ ନଦୀକୂଳରେ ଓଡ୍ର ସଭ୍ୟତା ସ୍ଥାପନ କରିଥିଲେ । ଗ୍ରୀକ୍ ଲେଖକ ପ୍ଲିନୀଙ୍କ ମତରେ ବ୍ରାହ୍ମଣୀ ଅବବାହିକାରେ ଓଡ୍ର ସଭ୍ୟତାର ଉନ୍ମେଷ ଓ ବିକାଶ ଘଟିଥିଲା । ପ୍ଲିନୀଙ୍କ ପରେ ଟଲେମୀ ମଧ୍ୟ ବ୍ରାହ୍ମଣୀନଦୀ ଏବଂ ଏହାର ମୁହାଣରେ ଅବସ୍ଥିତ ବନ୍ଦରକୁ ବିଶେଷ ପ୍ରାଧାନ୍ୟ ପ୍ରଦାନ କରିଛନ୍ତି । ସେହି ପୁରାଣ, ଭୂଗୋଳ ଓ ଇତିହାସ ପ୍ରସିଦ୍ଧ ବ୍ରାହ୍ମଣୀନଦୀ ଢେଙ୍କାନାଳର ମଧ୍ୟ ଭାଗରେ ପ୍ରବାହିତ । ଏଥିରୁ ହୃଦ୍‌ବୋଧ ହୁଏ, ଖ୍ରୀଷ୍ଟପୂର୍ବ କାଳରୁ ଢେଙ୍କାନାଳରେ ଓଡ୍ର ସଭ୍ୟତାର ବିକାଶ ଘଟି ସାରିଥିଲା । ମଧ୍ୟଯୁଗ ପର୍ଯ୍ୟନ୍ତ ଢେଙ୍କାନାଳରେ ଓଡ୍ର ସଂସ୍କୃତି ପ୍ରବାହର ଧାରା ସେହି ଅଞ୍ଚଳରୁ ପ୍ରାପ୍ତ ପ୍ରତ୍ନକୀର୍ତ୍ତୀ ଓ ବିଭବରୁ ପ୍ରମାଣିତ ହୁଏ । ଏହି ସବୁ ଦୁର୍ଲଭ କୀର୍ତ୍ତୀରାଜିର ଯଥାଯଥ ସଂରକ୍ଷଣ ଓ ପ୍ରତ୍ନସର୍ବେକ୍ଷଣ ନିମିତ୍ତ ଆଦୌ ଦୃଷ୍ଟି ଦିଆଯାଇନାହିଁ । ବିଶେଷତଃ ଏହି ସବୁ ଅବହେଳିତ ପ୍ରତ୍ନକୀର୍ତ୍ତୀ ସମୂହରେ ଓଡ୍ର ଜାତିର ପ୍ରାଚୀନ ଐତିହ୍ୟ ତଥା ସାଂସ୍କୃତିକ ଧାରା ଲୁକ୍‌କାୟିତ ଥିଲେ ହେଁ ଏ ଯାବତ୍ ଏହାକୁ ଲୋକଲୋଚନରୁ ଆଣିବାର ବିଧିବଦ୍ଧ ପ୍ରୟାସ ଅଥବା ଯୋଜନାବଦ୍ଧ ସର୍ବେକ୍ଷଣ ଆରମ୍ଭ କରାଯାଇନାହିଁ ।

ବ୍ରାହ୍ମଣୀର ପାର୍ବତ୍ୟାଞ୍ଚଳ ଅବବାହିକା, ବିଶେଷତଃ ଅନୁଗୁଳ ଓ ଢେଙ୍କାନାଳ ଜିଲାରେ ଅବସ୍ଥିତ ପ୍ରତ୍ନକୀର୍ତ୍ତୀ ଏପର୍ଯ୍ୟନ୍ତ ଲୋକଲୋଚନ ଅଗୋଚରରେ । ତାଳଚେର ଠାରୁ ପ୍ରାୟ ତିରିଶ କିଲୋମିଟର ପଶ୍ଚିମରେ ଅବସ୍ଥିତ ବଜ୍ରକୋଟ

ନଗରୀ ସଂପ୍ରତି ବିଧ୍ୱଂସ୍ତପ୍ରାୟ । ଏଠାରେ ସପ୍ତମ ଶତାବ୍ଦୀର ଭିଙ୍ଗେଶ୍ୱର ମନ୍ଦିର ଜରାଜୀର୍ଣ୍ଣ ଅବସ୍ଥାରେ ବିଦ୍ୟମାନ । ଚତୁଃପାର୍ଶ୍ୱରେ ଇତସ୍ତତଃ ପଡ଼ିଥିବା ଭଗ୍ନ ପ୍ରତ୍ନବିଭବରୁ ଜଣାଯାଏ ଏହା ଜିତ୍ ରାଜାମାନଙ୍କର ରାଜଧାନୀ ଥିଲା ଏବଂ ବୌଦ୍ଧ ବ୍ରଜଯାନୀ ଶାଖାର ମୂଖ୍ୟପୀଠ ଥିଲା। ନିକଟରେ ସମଲ ଗ୍ରାମ ଅବସ୍ଥିତ ଥିବାରୁ ଏହା ପ୍ରାଚୀନ ସମଲନଗରୀ ତଥା ଇନ୍ଦ୍ରଭୂତିଙ୍କ ରାଜଧାନୀ ଥିବା ଅନୁମିତ ହୁଏ । ଭୀମକାଣ୍ଡ (N.T.P.C) ଠାରେ ୪୧.ଫୁଟ ୬ ଇଞ୍ଚ ଲମ୍ବର ବିଶାଳକାୟ ବିଷ୍ଣୁପ୍ରତିମା ବିଦ୍ୟମାନ । ନିମ୍ନ ଭାଗରେ ତାଳଚେର ସହର ନିକଟରେ ପ୍ରାଚୀନ ପଣ୍ଡିମେଶ୍ୱର ମନ୍ଦିରଠାରେ ଦୁଇଗୋଟି ବୌଦ୍ଧମୂର୍ତ୍ତି ପୂଜାପାଉଛନ୍ତି । ପ୍ରମାଣିତ ହୁଏ ବ୍ରାହ୍ମଣୀ ଅବବାହିକାରେ ଚତୁର୍ଥ ପଞ୍ଚମୀ ଶତାବ୍ଦୀରୁ ଗୁପ୍ତଯୁଗୀୟ ପ୍ରତ୍ନବିଭବ ଓ ତତ୍ପରବର୍ତ୍ତୀକାଳୀନ ବୌଦ୍ଧଯୁଗୀୟ ପ୍ରତ୍ନବିଭବ ପ୍ରାପ୍ତ ।

**(୧) ସରାଙ୍ଗ ଅନନ୍ତ ଶୟନ ବିଷ୍ଣୁ :** ପଣ୍ଡିମେଶ୍ୱର ମନ୍ଦିରର ଅପରପାର୍ଶ୍ୱରେ ଢେଙ୍କାନାଳ ଜିଲା ସରାଙ୍ଗ ଗ୍ରାମଠାରେ ବ୍ରାହ୍ମଣୀ ନଦୀଗର୍ଭରେ ବିଶାଳ ଅନନ୍ତ ଶୟନ ମୂର୍ତ୍ତି ବିରାଜିତ । ସପ୍ତମ-ଅଷ୍ଟମ ଶତାବ୍ଦୀରେ ନିର୍ମିତ ଏହି ଶାୟିତ ବିଷ୍ଣୁପ୍ରତିମାଙ୍କ ଲମ୍ବ ୩୨ ଫୁଟ । ଏହାଙ୍କ ନାଭିକମଳରେ ପଦ୍ମଉପରେ ବ୍ରହ୍ମାଙ୍କ ମୂର୍ତ୍ତି ଖୋଦିତ । ବ୍ରାହ୍ମଣୀ ନଦୀକୁ ସାଗର କଳ୍ପନା କରାଯାଇ ବିଷ୍ଣୁଙ୍କର ଅନନ୍ତଶୟନ ରୂପ ଏଠାରେ ପଥର ଗାତ୍ରରେ କରାଯାଇଛି । ଅନୁମିତ ହୁଏ, କୁଆଁଳୋଠାରେ ରାଜତ୍ୱ କରୁଥିବା ଶୁଲ୍କୀବଂଶୀୟ ସ୍ତମ୍ଭ ଉପାଧିକାରୀ ରାଜନ୍ୟବୃନ୍ଦ ଏହି ମୂର୍ତ୍ତି ନିର୍ମାଣ କରାଇଥିଲେ ।

**(୨) କୁଆଁଳୋ ଅଷ୍ଟଶମ୍ଭୁ ମନ୍ଦିର :** ସରାଙ୍ଗ ଗ୍ରାମଠାରୁ ଉତ୍ତର ପୂର୍ବଦିଗରେ ୭କି.ମି. ଦୂରରେ ଢେଙ୍କାନାଳ ଜିଲା ପରଜଙ୍ଗଥାନା ଅଧୀନସ୍ଥ କୁଆଁଳୋ ଗ୍ରାମଠାରେ ଅଷ୍ଟଶମ୍ଭୁ ମନ୍ଦିର ବିଦ୍ୟମାନ । ଏହି ମନ୍ଦିରସମୂହ କୋଦାଳକ (କୁଆଁଳୋ) ଠାରେ ରାଜତ୍ୱ କରୁଥିବା ଶୁଲ୍କୀବଂଶୀ ସ୍ତମ୍ଭଉପାଧିଧାରୀ ରାଜନ୍ୟବୃନ୍ଦଙ୍କ ଦ୍ୱାରା ନିର୍ମିତ । ଏଠାରେ ଆରାଧିତ ଅଷ୍ଟଶମ୍ଭୁ ହେଉଛନ୍ତି କନକେଶ୍ୱର, ସ୍ୱପ୍ନେଶ୍ୱର, ଐଶାନ୍ୟେଶ୍ୱର, କପିଳେଶ୍ୱର, ବୈଦ୍ୟନାଥେଶ୍ୱର, ପଣ୍ଡିମେଶ୍ୱର, ବାଣେଶ୍ୱର ଓ ଲୋକନାଥେଶ୍ୱର । ତନ୍ମଧ୍ୟରୁ ମୁଖ୍ୟମନ୍ଦିରରେ ପୂଜିତ ଲିଙ୍ଗ କନକେଶ୍ୱର ଅଟନ୍ତି । ଏହି ମନ୍ଦିରର ଚତୁପାର୍ଶ୍ୱରେ ପାଞ୍ଚଗୋଟି ମନ୍ଦିରର ଭଗ୍ନାବଶେଷ ରହିଅଛି । କନକେଶ୍ୱର ମନ୍ଦିରରେ ଭୂମିପତନଠାରୁ ଆଠ ଫୁଟ ଉଚ୍ଚତା ବିଶିଷ୍ଟ ଶିବଲିଙ୍ଗ ବିଦ୍ୟମାନ ଲିଙ୍ଗ ଚତୁପାର୍ଶ୍ୱରେ ଥିବା ଶକ୍ତି

ଭାଙ୍ଗିଯାଇଥିବାରୁ ୧୯୮୦ ମସିହାରେ ନୂତନ ଶକ୍ତି ନିର୍ମାଣ କରାଯାଇଛି । ଶକ୍ତିନିର୍ମାଣ ସମୟରେ ୧୨ ଫୁଟ୍ ତଳୁ ଲିଙ୍ଗ ଫୁଟି ବାହାରିଥିବାର ଜଣାପଡ଼ିଲା । ଏହି କନକେଶ୍ୱର ମନ୍ଦିରର ଉଚ୍ଚା ୮୦ ଫୁଟ । କିନ୍ତୁ ମନ୍ଦିରର ଉପର ଅଂଶ ଭାଙ୍ଗିଯାଇଥିବାରୁ ସଠିକ୍ ଉଚ୍ଚତା ନିର୍ଣ୍ଣୟ କରି ହେଉନାହିଁ । ମନ୍ଦିରର ବାହାର ପାର୍ଶ୍ୱ ସୂକ୍ଷ୍ମ କାରୁକାର୍ଯ୍ୟ ପରିପୂର୍ଣ୍ଣ । ଏହି କାରୁକାର୍ଯ୍ୟ କୋଣାର୍କ ଓ ପୁରୀ ମନ୍ଦିରର କାରୁକାର୍ଯ୍ୟ ସହିତ ତୁଳନୀୟ ଏବଂ ପ୍ରାଚୀନ । ମନ୍ଦିର ସନ୍ନିକଟରେ ବହୁ କାରୁକାର୍ଯ୍ୟ ପୂର୍ଣ୍ଣ ପ୍ରସ୍ତର ଇତଃସ୍ତତଃ ପଡ଼ିରହିଛି । ଅଷ୍ଟଶମ୍ଭୁ ପୀଠର କାନକେଶ୍ୱର, ବୈଦ୍ୟନାଥ, ପଶ୍ଚିମେଶ୍ୱର ଓ କପିଳେଶ୍ୱର ମନ୍ଦିର ଭଗ୍ନ ଅବସ୍ଥାରେ ଥିଲେହେଁ ଲୋକନାଥେଶ୍ୱର ଓ ବାଣେଶ୍ୱରଙ୍କ ମନ୍ଦିର ସଂପୂର୍ଣ୍ଣ ଭାଙ୍ଗିଯାଇଛି । ଏହି ମନ୍ଦିର ସମୂହ ଭୁବନେଶ୍ୱରର ଶତୃଘ୍ନେଶ୍ୱର ମନ୍ଦିରର ସମସାମୟିକ । ମନ୍ଦିରର ଦ୍ୱାରବନ୍ଧରେ ଅଷ୍ଟଗ୍ରହ ମୂର୍ତ୍ତି ଖୋଦିତ ହୋଇଥିବାରୁ ହୃଦ୍‌ବୋଧ ହୁଏ ନିର୍ମାଣ କାଳରେ ନବଗ୍ରହ ଆବିଷ୍କୃତ ହୋଇ ନଥିଲେ । ମନ୍ଦିର ସନ୍ନିକଟରେ ଗୋଟିଏ ମଣ୍ଡପରେ ଦ୍ୱାଦଶପୂଜା ମହିଷମର୍ଦ୍ଦିନୀ ଦୁର୍ଗାଙ୍କ ମୂର୍ତ୍ତି ଆରାଧିତା । ଏହାକୁ କନକଦୁର୍ଗା କୁହାଯାଉଅଛି । ମନ୍ଦିରଗାତ୍ରରେ ଅର୍ଦ୍ଧନାରୀଶ୍ୱରଙ୍କ ସମେତ ଅନେକ ଦେବାଦେବୀଙ୍କ ମୂର୍ତ୍ତି ଖୋଦିତ । ଦୀର୍ଘକାଳ ଧରି ଏହି ବିରଳ ପ୍ରତ୍ନବିଭବ ସମୂହର ସଂରକ୍ଷଣ ନିମିତ୍ତ ଯଥାଯଥ ବିଧିବ୍ୟବସ୍ଥା ଗ୍ରହଣ କରାଯାଇନଥିଲା । ନିକଟରେ ସଂରକ୍ଷଣ ନିମିତ୍ତ ପ୍ରଥମପ୍ରୟାସ କରାଯାଇଥିଲେ ହେଁ ତାହା ସନ୍ତୋଷଜନକ ନୁହେଁ ।

**(୩) ପଥରଗଡ଼ ଶିବମନ୍ଦିର :** କୁଆଁଲୋଠାରୁ ଉତ୍ତରଦିଗରେ ପଥରଗଡ଼ ଶିବମନ୍ଦିର ଅବସ୍ଥିତ । ସୁରମ୍ୟ ପର୍ବତ ଉପରେ ଏହି ମନ୍ଦିର ଅବସ୍ଥିତ ଥିବାରୁ ଏହାକୁ ଦ୍ୱିତୀୟ କପିଳାସକ୍ଷେତ୍ର ବୋଲି କୁହାଯାଏ । ଏଠାରେ ପର୍ବତ ଉପରେ ନିର୍ଝରଣୀ ବିଦ୍ୟମାନ । ନିର୍ମିତ ମନ୍ଦିରଟି ସ୍ୱଳ୍ପ ଉଚ୍ଚତା ବିଶିଷ୍ଟ ଏବଂ ମଧ୍ୟଯୁଗରେ ନିର୍ମିତ । ଏକ ଆଞ୍ଚଳିକ ପର୍ଯ୍ୟଟନ ସ୍ଥଳୀ ଭାବରେ ଏହି ପୀଠଟି ସୁଖ୍ୟାତି ଲାଭକରିଅଛି । ଜନୈକ ସାଧୁ ଏଠାରେ ନିବାସ ପୂର୍ବକ ଠାକୁରଙ୍କ ସେବାପୂଜାର ସୁବନ୍ଦୋବସ୍ତ କରୁଛନ୍ତି । ପୀଠଟି ପ୍ରାଚୀନ ହେଲେହେଁ ସେଠାକୁ ଗମନାଗମନର ସୁବିଧା ନାହିଁ ।

**(୪) ଶିବୁଳାଗଡ଼ :** ଏହି ପ୍ରାଚୀନ ଗଡ଼ର ଅବସ୍ଥିତ ଢେଙ୍କାନାଳ ଜିଲ୍ଲା କାମାକ୍ଷାନଗର ଉପଖଣ୍ଡରେ । କାମାକ୍ଷାନଗର ପରଜଙ୍ଗ ରାସ୍ତାର ସିଆରିମାଳିଆ

ଛକଠାରୁ ଉତ୍ତର ଦିଗରେ ଚାରି କିଲୋମିଟର ଦୂରରେ ଶିବୁଳାଗଡ଼ ଅବସ୍ଥିତ । ବର୍ତ୍ତମାନ ଗଡ଼ର ଭଗ୍ନାବଶେଷ, ଗଡ଼ଖାଇର ଭଗ୍ନାବଶେଷ, ପ୍ରାଚୀନ କାଲୁଣୀ ଠାକୁରାଣୀ, ଭିତରଗଡ଼ର ରତ୍ନାଠାକୁରାଣୀ, ସ୍ୱପ୍ନେଶ୍ୱରଙ୍କ ପ୍ରାଚୀନ ଲିଙ୍ଗ ଏବଂ ଦୁର୍ଗର ଭଗ୍ନ ପ୍ରସ୍ତରଖଣ୍ଡ ମାନ ଏଠାରେ ରହିଅଛି । ଅନୁମିତ ହୁଏ ପ୍ରଥମେ ଏହି ଗଡ଼ କୌଣସି ଆଦିବାସୀ ରାଜାଙ୍କ ଦ୍ୱାରା ନିର୍ମାଣ କରଯାଇଥିଲା ପରବର୍ତ୍ତୀ କାଳରେ ତଳଚେର ରାଜା ଏଠାରେ ମଧ୍ୟଯୁଗୀୟ ଦୁର୍ଗ ନିର୍ମାଣ କରିଥିଲେ । ଏଠାରେ ବିରାଜିତା କାଲୁଣୀଦେବୀ ତାଳଚେର ରାଜାଙ୍କ ଇଷ୍ଟ ଦେବୀଥିଲେ । ଏହି ଦେବୀଙ୍କର ମସ୍ତକ ନାହିଁ । ପ୍ରବାଦ ଅଛି, ତାଳଚେର ରାଜା ଦେବୀଙ୍କ ମୁଣ୍ଡନେଇ ପୂଜାକରୁଛନ୍ତି । ସାଧବ ବୃନ୍ଦଙ୍କ ମତରେ ଏହି ଦେବୀ ଛିନ୍ନ ମସ୍ତା । ମଧ୍ୟଯୁଗରେ ''ଜେନା'' ସଂଜ୍ଞାଧାରୀ କ୍ଷତ୍ରିୟ ଏଠାରେ ରାଜତ୍ୱ କଲେ । ଢେଙ୍କାନାଳର ରଜା ଏହି ଜେନାମାନଙ୍କୁ ପରାସ୍ତକରି ଶିବୁଳାଗଡ଼ ଦଖଲକଲେ ଏବଂ ସେହି ଅଞ୍ଚଳର ନାମ ''ଜେନାଦେଶ ବିଷ'' ରଖିଲେ । ବର୍ତ୍ତମାନ ଏହି ପ୍ରାଚୀନ ଦୁର୍ଗଟି ପରିତାକ୍ତ ଅବସ୍ଥାରେ ତଥା ଏହାର ପ୍ରତ୍ନବିଭବ ଅସୁରକ୍ଷିତ ।

**(୫) ରାମେଶ୍ୱର ମନ୍ଦିର :** କାମାକ୍ଷାନଗରଠାରୁ ତିନି କିଲୋମିଟର ଦକ୍ଷିଣ ପୂର୍ବ ଦିଗରେ ରାମିଆଳ ନଦୀକୂଳରେ ତେନ୍ତୁଳିସିଂହା ଗ୍ରାମରେ ରାମଶ୍ୱେର ମନ୍ଦିର ଅବସ୍ଥିତ । ଏହି ମନ୍ଦିର ଏକ ମଧ୍ୟଯୁଗୀୟ ମନ୍ଦିର । ବିରାଜିତା ପାର୍ବତୀ ବିଗ୍ରହ ଅତୀବ କମନୀୟ । ପ୍ରତିଷ୍ଠିତ ଶିବଲିଙ୍ଗ ବହୁ ପ୍ରାଚୀନ ।

**(୬) କପିଳେଶ୍ୱର ମନ୍ଦିର :** ରାମେଶ୍ୱର ମନ୍ଦିର ପୂର୍ବଦିଗରେ ୫କି.ମି. ଦୂରରେ ରାମିଆଳ ଜଳାଧାର ମଧରେ ହାଟୁଆରୀ ଗ୍ରାମ ଦକ୍ଷିଣରେ କପିଳେଶ୍ୱର ମନ୍ଦିରର ଅବସ୍ଥିତ । ମନ୍ଦିରଟି ଢେଙ୍କାନାଳ ରାଜବଂଶଦ୍ୱାରା ମଧ ଯୁଗରେ ନିର୍ମିତ । ଦୀର୍ଘକାଳ ଧରି ମନ୍ଦିରଟି ନଦୀଗର୍ଭରେ ରହିଥିଲେହେ ସୁରକ୍ଷା ନିମିତ୍ତ ଯଥାଯଥ ପଦେକ୍ଷପ ନିଆଯାଇନାହିଁ । ନିକଟରେ ସାମାନ୍ୟ ମରାମତି ହୋଇଥିଲେହେଁ ମୂଳଦୁଆକୁ ସୁଦୃଢ଼ କରାଯାଇନାହିଁ ।

**(୭) ବାଲୁଙ୍କେଶ୍ୱର ମନ୍ଦିର :** କାମାକ୍ଷାନଗର ଉପଖଣ୍ଡର ପ୍ରାଚୀନ ବ୍ରାହ୍ମଣ ଶାସନ ମାର୍ଥାପୁରଠାରେ ପ୍ରାଚୀନ ଶିବଲିଙ୍ଗ ବାଲୁଙ୍କେଶ୍ୱର ବିରାଜିତ । ନବମ ଶତାବ୍ଦୀର ଏହି ଶିବଲିଙ୍ଗଙ୍କର ପ୍ରାଚୀନ ମନ୍ଦିର ଭାଙ୍ଗିଯାଇ ଥିବାରୁ ମଧ୍ୟଯୁଗରେ ନୂତନ ମନ୍ଦିର ନିର୍ମାଣ କରାଯାଇଛି । ମନ୍ଦିର ସମ୍ମୁଖରେ ପ୍ରାଚୀନ ଯଜ୍ଞମଣ୍ଡପ, ଦକ୍ଷିଣ ପାର୍ଶ୍ୱରେ ଶ୍ରୀରାମ ମନ୍ଦିର, ଉତ୍ତର ପାର୍ଶ୍ୱରେ, ପାର୍ବତୀ ଓ

ଲକ୍ଷ୍ମୀନାରାୟଣ ମନ୍ଦିର ଏବଂ ପୂର୍ବଦିଗରେ ତାରିଣୀ ମନ୍ଦିର ବିଦ୍ୟମାନ । ବିଲ୍ୱବଣ ମଧ୍ୟରେ ଅବସ୍ଥିତ ଏହି ପ୍ରାଚୀନ ପୀଠକୁ ଯାତାୟତରେ ବିଶେଷ ସୁବିଧା ନାହିଁ ।

**(୮) ବୁଦ୍ଧେଶ୍ୱର ମନ୍ଦିର :** ଭୁବନଗ୍ରାମଠାରେ ବ୍ରାହ୍ମଣୀତଟସ୍ଥ ବକୁଳ ବନରେ ପ୍ରାଚୀନ ବୁଦ୍ଧେଶ୍ୱର ଶିବଲିଙ୍ଗ ବିଦ୍ୟମାନ । ଗବେଷକଙ୍କ ମତରେ ଏହା ଏକ ପ୍ରାଚୀନ ବୌଦ୍ଧବିହାର ଥିଲା ଏବଂ ବୌଦ୍ଧସ୍ତୂପକୁ ଭଙ୍ଗାଯାଇ ଶିବଲିଙ୍ଗରେ ପରିଣତ କରାଯାଇଛି । ପ୍ରାଚୀନ ଶିବ ମନ୍ଦିରଟି ଭାଙ୍ଗିଯାଇଥିବାରୁ ମଧ୍ୟଯୁଗରେ ନୂତନ ମନ୍ଦିର ନିର୍ମାଣ କରାଯାଇଛି । ନିକଟରେ ନିର୍ମିତ ପାର୍ବତୀ ମନ୍ଦିର ସ୍ୱଳ୍ପକାଳ ମଧ୍ୟରେ ସ୍ଥାନୀୟ ଅଧିବାସୀଙ୍କ ଦ୍ୱାରା ଗଢ଼ାଯାଇଛି ।

**(୯) ବ୍ରହ୍ମେଶ୍ୱର (ସ୍ୱପ୍ନେଶ୍ୱର) ମନ୍ଦିର :** ଭୁବନଠାରୁ ଚାରି କିଲୋମିଟର ପୂର୍ବରେ ବ୍ରାହ୍ମଣୀତଟରେ ବ୍ରହ୍ମପୁର ଗ୍ରାମନିକଟରେ ପ୍ରାଚୀନ ସ୍ୱପ୍ନେଶ୍ୱର ମନ୍ଦିର ବିଦ୍ୟମାନ। ଏହି ପ୍ରାଚୀନ ମନ୍ଦିରଟି କାଳକ୍ରମେ ପୋତିହୋଇ ଯାଉଥିଲେ ମଧ୍ୟ ସୁରକ୍ଷାର ବନ୍ଦୋବସ୍ତ କରାଯାଇନାହିଁ । ପୂଜକ ଓ ଦର୍ଶକମାନେ ପାହାଚଦେଇ ନିମ୍ନକୁ ଯାଇ ପୂଜା ଓ ଦର୍ଶନ କରୁଛନ୍ତି ।

**(୧୦) ବାଲିବୋମଠ :** ଭୁବନଠାରୁ ୧୦କି.ମି ଉତ୍ତରରେ ବାଲିବୋ ଗ୍ରାମଠାରେ ମଧ୍ୟଯୁଗୀୟ ବାଲିବୋ ମଠ ବିଦ୍ୟମାନ । ଶ୍ରୀରଘୁନାଥ, ଶ୍ରୀ ସୀତା, ଶ୍ରୀଲକ୍ଷ୍ମୀଙ୍କ ପ୍ରାଚୀନ ମଣିବିଗ୍ରହହିଁ ମଠର ଆରାଧ। ମଧ୍ୟଯୁଗୀୟ ଗୃହଗୁଡ଼ିକ ଭାଙ୍ଗିଯାଉଥିଲେ ହେଁ ସୁରକ୍ଷାର ବ୍ୟବସ୍ଥା ନାହିଁ ।

**(୧୧) ପୁରୁଣାଅମାଙ୍ଗଚଣ୍ଡୀ :** ଢେଙ୍କାନାଳ ଜିଲ୍ଲା ଗଁଦିଆଥାନା ପୁରାଣଅମାଙ୍ଗ ଗ୍ରାମରେ ପ୍ରାଚୀନ ଚଣ୍ଡୀ ବିଦ୍ୟମାନ । ଏହି ଦେବୀ ମୂର୍ତ୍ତିର ଶିଳ୍ପକଳାରୁ ଜଣାଯାଏ ଏହା ଏକାଦଶ-ଦ୍ୱାଦଶ ଶତାବ୍ଦୀର । ଏହି ପ୍ରାଚୀନ ପ୍ରତ୍ନମୂର୍ତ୍ତିର ସୁରକ୍ଷା ଏକାନ୍ତ ଆବଶ୍ୟକ ।

**(୧୨) ନୂଆଗଡ଼ :** ଗଁଦିଆ ଥାନାର ମନ୍ଦାର ଗ୍ରାମ ନିକଟରେ ନୂଆଗଡ଼ ଅବସ୍ଥିତ । ଏହି ପାର୍ବତ୍ୟ ଦୁର୍ଗ ପ୍ରାଚୀନ । ମଧ୍ୟଯୁଗରେ କରମୂଳ ରାଜା ହରିବିଦ୍ୟାଧର ଏହି ଦୁର୍ଗର ରାଜାଙ୍କୁ ପରାସ୍ତ କରି ଗଡ଼କୁ ଦଖଲ କରିଥିଲେ ଏବଂ ସେହି ଦିନଠାରୁ ଏହା ପରିତ୍ୟକ୍ତ ଅବସ୍ଥାରେ ରହିଅଛି ।

**(୧୩) ଦୌଢ଼େଶ୍ୱର :** ଗଁଦିଆ ଥାନା କରମୂଳ ଗ୍ରାମ ନିକଟ ବ୍ରାହ୍ମଣୀ ନଦୀକୂଳରେ ପ୍ରାଚୀନ ଦୌଢ଼େଶ୍ୱର ଶିବଲିଙ୍ଗ ଅବସ୍ଥିତ । ପ୍ରାଚୀନ ମନ୍ଦିରଟି

ଭାଙ୍ଗିଯାଇ ପ୍ରସ୍ତରଖଣ୍ଡମାନ ଇତଃସ୍ତତଃ ପଡ଼ିରହିଛି । ବର୍ତ୍ତମାନ ପୀଠଟିର ପୁନରୁଦ୍ଧାର ନିମିତ୍ତ ସ୍ଥାନୀୟ ଅଧିକାରୀ ତତ୍ପର ।

**(୧୪) ଗଣେଶ ଖୋଲ :** କରମୂଳ ଗ୍ରାମର ଦୁଇକିଲୋମିଟର ଦୂରରେ ଗଣେଶଖୋଲା ବିଦ୍ୟମାନ । ଏଠାରେ କଳାମୁଗୁନି ପଥରରେ ନିର୍ମିତ ପ୍ରାଚୀନ ଗଣେଶମୂର୍ତ୍ତି ପୂଜିତ । ନିକଟରେ ଗିରିଦୁର୍ଗର ଭଗ୍ନାବଶେଷ ଓ ନିର୍ଝରିଣୀ ରହିଅଛି । ଢେଙ୍କାନାଳର ପ୍ରଥମରାଜା ହରିବିଦ୍ୟାଧର ଗଜପତି, ପ୍ରତାପରୁଦ୍ରଦେବଙ୍କ ଠାରୁ କରମୂଳପାଟଣା ରାଜ୍ୟ ସନନ୍ଦ ଲାଭକରି ପ୍ରଥମେ ଏଠାରେ ରାଜଗାଦୀ ସ୍ଥାପନ କରିବା ସହିତ ଗଣେଶମୂର୍ତ୍ତି ପ୍ରତିଷ୍ଠା କରିଥିଲେ । ପରବର୍ତ୍ତୀ କାଳରେ ସେ ରାଜ୍ୟ ବିସ୍ତାର କରିବା ସହିତ ସ୍ୱରାଜଧାନୀ କରମୂଳଠାରୁ ଢେଙ୍କାନାଳଗଡ଼ ସ୍ଥାନାନ୍ତର କରିଥିଲେ । ଦୀର୍ଘଦିନ ଏହି ଗିରିଦୁର୍ଗ ପରିତ୍ୟକ୍ତ ଅବସ୍ଥାରେ ରହିଛି । ନିକଟରେ ଜନୈକସାଧୁ ଏଠାରେ ମଠସ୍ଥାପନା କରିଛନ୍ତି । ଏହା ଏକ ମନୋରମ ପର୍ଯ୍ୟଟନସ୍ଥଳୀ ହେଲେହେଁ ଯାତାୟତର ସୁବିଧା ନାହିଁ ।

**(୧୫) ଅଶ୍ୱଖୋଲା :** ଗଣେଶ ଖୋଲା ନିକଟରେ ଅଶ୍ୱଖୋଲା ବିଦ୍ୟମାନ, ଏଠାରେ ପ୍ରାଚୀନ ଗୁମ୍ଫା, ଦେବୀମୂର୍ତ୍ତି ଓ ଝରଣା ରହିଅଛି । ଏହି ପ୍ରାଚୀନ ଗୁମ୍ଫାକୁ ଯାତାୟତ ସୁବିଧା ନଥିବାରୁ ଖୁବ୍ କମ୍ ଦର୍ଶକ ଯାଇଥାନ୍ତି ।

**(୧୬) ବଣିଆପଡ଼ା ଶିବମନ୍ଦିର :** ପୂର୍ବେ ଗଁଦିଆ ସନ୍ନିକଟ ବଣିଆପଡ଼ା ଧୀର ବଂଶୀୟ ରାଜାମାନଙ୍କ ରାଜଧାନୀ ଥିଲା। ଗଙ୍ଗାଧର ଧୀର ଏଠାରେ ସ୍ୱପ୍ନେଶ୍ୱର ମହାଦେବଙ୍କ ମନ୍ଦିର ନିର୍ମାଣ କରିଥିଲେ। ମନ୍ଦିରଟି ଅବ୍ୟବଧି ବିଦ୍ୟମାନ ।

**(୧୭) ଡମରାଜା କଟକ :** ବଣିଆପଡ଼ା ଗ୍ରାମର ପୂର୍ବ ଦିଗରେ ଡମରାଜ କଟକ ଅବସ୍ଥିତ । ଏହା ଏକ ପ୍ରାଚୀନ ଗିରିଦୁର୍ଗ ଏବଂ ଉପରଗଡ଼ ଓ ତଳଗଡ଼ ନାମରେ ବିଭକ୍ତ । ଏଠାରେ ପ୍ରାଚୀନ ବାମ୍ଫୀ, ଦୁର୍ଗର ଭଗ୍ନାବଶେଷ ଓ ନାଗମାତା ଇଳାଙ୍କ ପ୍ରାଚୀନ ମୂର୍ତ୍ତି ବିଦ୍ୟମାନ । ସ୍ଥାନୀୟ ଲୋକେ ନାଗମାତାଙ୍କୁ ଅନନ୍ତେଶ୍ୱରୀ କହୁଛନ୍ତି । ଗବେଷକଙ୍କ ମତର ଏହି ଗିରିଦୁର୍ଗରେ ପ୍ରାଚୀନ କାଳରେ ଡମ ରାଜନ୍ୟବୃନ୍ଦ ଶାସନ କରୁଥିଲେ । ବର୍ତ୍ତମାନ ସେମାନଙ୍କର ବଂଶଧରବୃନ୍ଦ ଗୋଦରାଭାବରେ ପରିଚିତ ଥାଇ ନିକଟବର୍ତ୍ତୀ ଗ୍ରାମମାନଙ୍କରେ ନିବାସ କରୁଛନ୍ତି । ଯାତାୟତର ସୁବିଧା ନଥିବାରୁ ଏହି ପ୍ରାଚୀନ ଗିରି ଦୁର୍ଗଟି ଲୋକଲୋଚନ ଅନ୍ତରାଳରେ ।

**(୧୮) ଅନ୍ନକୋଟୀଶ୍ୱର ଶିବଲିଙ୍ଗ :** ଯୋରନ୍ଦା ଗ୍ରାମର ପଶ୍ଚିମରେ ୬କି.ମି. ଦୂରରେ ଲତାଦେଇପୁର ଶାସନ ନିକଟରେ ହିରଣ୍ୟଗର୍ଭ ଶିବଲିଙ୍ଗ ଅନ୍ନକୋଟୀଶ୍ୱର ବିଦ୍ୟମାନ । ଏହି ଶିବଲିଙ୍ଗ ଶୁକ୍ଳପକ୍ଷରେ ବଢ଼ନ୍ତି ଓ କୃଷ୍ଣପକ୍ଷରେ କ୍ଷୟପ୍ରାପ୍ତ ହୋଇଥାନ୍ତି । ମନ୍ଦିରଟି ଢେଙ୍କାନାଳ ରାଜା ନୃସିଂହ ଭ୍ରମରବରଙ୍କ ଦ୍ୱାରା ନିର୍ମାଣ କରାଯାଇ ଥିଲେହେଁ ପାର୍ଶ୍ୱଦେବତା ଓ ଦଧିନଉତି ନାହିଁ । ସମୁଖସ୍ଥ, ବୃଷଭ ମୂର୍ତ୍ତିରେ ଓଡ଼ିଆ ଅକ୍ଷରରେ ଶିଳାଲେଖ ଉତୀର୍ଣ୍ଣ କରାଯାଇ ଦାତାଙ୍କ ନାମ ଉଲ୍ଲିଖିତ ।

**(୧୯) ନାଗନାଥେଶ୍ୱର ମନ୍ଦିର :** ଅନ୍ନକୋଟୀଶ୍ୱର ମନ୍ଦିରର ଦୁଇକିଲୋମିଟର ପଶ୍ଚିମରେ ବ୍ରାହ୍ମଣୀକୂଳରେ ନାଗନାଥେଶ୍ୱର ମନ୍ଦିର ବିଦ୍ୟମାନ । ବ୍ରାହ୍ମଣୀନଦୀ ଏଠାରେ ଉତ୍ତରଗାମୀ ଏବଂ ନାଗନାଥ ଭାରତର ପ୍ରସିଦ୍ଧ ଦ୍ୱାଦଶଜ୍ୟୋତିଲିଙ୍ଗଙ୍କ ମଧ୍ୟରେ ଅନ୍ୟତମ । ମନ୍ଦିରଟି ତୃତୀୟ ଅନଙ୍ଗଭୀମଦେବଙ୍କ ଦ୍ୱାରା ଦ୍ୱାଦଶ ଶତାବ୍ଦୀରେ ନିର୍ମିତ । ସମ୍ମୁଖସ୍ଥ ବୃଷଭରେ ଓଡ଼ିଆ ଅକ୍ଷରରେ ଶିଳାଲେଖ ଉତ୍କୀର୍ଣ୍ଣ । ମନ୍ଦିର ନିକଟରେ ପ୍ରାଚୀନ ବାମ୍ପୀରେ ଏକାଦଶ ରୁଦ୍ର ମୂର୍ତ୍ତି ଖୋଦିତ। ନିକଟରେ ତ୍ରିଫଣାବିଶିଷ୍ଟ ଦେବୀ ନାଗନାମୀ ପୂଜିତା । ଏହା ଗୋଟିଏ ପ୍ରାଚୀନ କ୍ଷେତ୍ର ଏବଂ ପୂର୍ବାଞ୍ଚଳରେ ନାଗଉପାସନାର ପ୍ରମୁଖ ପୀଠ । ସୁରକ୍ଷା ଅଭାବରୁ ମନ୍ଦିରଟି କାଳକ୍ରମେ ପୋତି ହୋଇଯାଉଛି ।

**(୨୦) ଯୋରନ୍ଦା ମହିମାଗାଦୀ :** ଏହା ମହିମାଧର୍ମର ମୁଖ୍ୟ ପୀଠ । ଏଠାରେ ଗାଦୀମନ୍ଦିର, ଶୂନ୍ୟମନ୍ଦିର, ଅଖଣ୍ଡଧ୍ୱନି ମନ୍ଦିର, ସଭାଗୃହ, ପାଠାଗାର, ଉପବନ ଓ ବିଶ୍ୱର ସର୍ବ ବୃହତ୍ ଘଣ୍ଟି ବିଦ୍ୟମାନ । ପ୍ରତିବର୍ଷ ମାଘମେଳାରେ ଏଠାରେ ଲକ୍ଷ ଲକ୍ଷ ମହିମାସନ୍ନ୍ୟାସୀ ଓ ଭକ୍ତ ଏକତ୍ରିତ ହୋଇଥାନ୍ତି । ଏହି ବିଶ୍ୱପ୍ରସିଦ୍ଧ ମହିମାମେଳାରେ ସ୍ୱର୍ଣ୍ଣଛତ୍ରୀ, ରୌପ୍ୟଛତ୍ରୀ ଗାଦୀମନ୍ଦିର ନିକଟରେ ରଖାଯାଇ ଘୃତାହୁତି ଓ ଅଖଣ୍ଡ ଭଜନକୀର୍ତ୍ତନ କରାଯାଏ ।



# ଢେଙ୍କାନାଳର ପ୍ରତ୍ନବିଭବ (ଉତ୍ତରାର୍ଦ୍ଧ)

(୨୧) କପିଳାସ ମନ୍ଦିର : ଶୈଳଶୈବପୀଠ କପିଳାସର ମୁଖ୍ୟମନ୍ଦିର ଲାଙ୍ଗୁଳା ନରସିଂହ ଦେବଙ୍କ ଦ୍ୱାରା ୧୨୪୬ ଖ୍ରୀଷ୍ଟାବ୍ଦରେ ନିର୍ମିତ । ଏହି ମନ୍ଦିରର ଗମ୍ଭୀରାରେ ସ୍ୱଂୟମ୍ଭୁଲିଙ୍ଗ ଚନ୍ଦ୍ରଶେଖରଏବଂ ବିଶ୍ୱର ବୃହତ୍ ଶାଳଗ୍ରାମ ଅନନ୍ତନାଗ ପରିବେଷ୍ଟିତ ହୋଇ ପୂଜା ପାଉଛନ୍ତି । ମନ୍ଦିରଟି ପଞ୍ଚରଥ ଶୈଳୀରେ ନିର୍ମିତ । ଏହାର ଉଚ୍ଚତା ୭୦ ଫୁଟ ଏବଂ ମନ୍ଦିରର ଶୀର୍ଷରେ ଅର୍ଦ୍ଧଚକ୍ର ପୀନାକ ବିଦ୍ୟମାନ । ପାର୍ଶ୍ୱଦେବତା ହେଉଛନ୍ତି ଗଣେଶ, କାର୍ତ୍ତିକେୟ ଓ ପାର୍ବତୀ, ମନ୍ଦିରର ପଶ୍ଚିମ ପାର୍ଶ୍ୱ କାନ୍ଥରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଖୋଦିତ । ସମ୍ମୁଖରେ ଜଗମୋହନ ଓ ଭୋଗମଣ୍ଡପ । ଭୋଗମଣ୍ଡପ ଉପରେ ଅନେକ ବୃଷଭ ବିରାଜିତ । ଗରୁଡ଼ ଓ ବୃଷଭ ମିଳିତ ଭାବରେ ରହିଥିବା ବିଗ୍ରହରେ ଚାରିଧାଡ଼ି ଶିଳାଲେଖ ରହିଅଛି । ସର ଘର ନିକଟରେ ଦଧିନଉତି ଶିଳାଲେଖ ରହିଛି । ମୋହନରେ ସ୍ୱତନ୍ତ୍ର ଭାବରେ ପୂଜିତ କୃଷ୍ଣଶିଳା ନିର୍ମିତ ଶ୍ରୀ ଗଣେଶ ଓ ଚଣ୍ଡୀ ବିଗ୍ରହ । ମନ୍ଦିରର ପୂର୍ବ ଦିଗରେ କାରୁକାର୍ଯ୍ୟପୂର୍ଣ୍ଣ କାଷ୍ଠମୋହନଟି ଭୋଗମଣ୍ଡପ ଉପରେ ସଂସ୍ଥାପିତ । ଏହା ଉତ୍କଳୀୟ ଶିଳ୍ପନୈପୁଣ୍ୟର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରିଅଛି । ମନ୍ଦିରର ଐଶାନ୍ୟ କୋଣରେ ପୟୋଃମୃତ କୁଣ୍ଡ ଓ ଦକ୍ଷିଣ ଦିଗରେ ପାପନାଶିନୀ ଜମ୍ବୁକୁଣ୍ଡ । ତାହାର କିଞ୍ଚିତ ନିମ୍ନରେ ମରୀଚୀକୁଣ୍ଡ । ଦକ୍ଷିଣ ଦିଗରେ ଥିବା ଜପମଣ୍ଡପରେ ମଧ୍ୟ କାରୁକାର୍ଯ୍ୟପୂର୍ଣ୍ଣ କାଷ୍ଠମୋହନ ବିଦ୍ୟମାନ । ଏଥିରେ ଥିବା ଦଶାବତାର ମୂର୍ତ୍ତି ଅତ୍ୟନ୍ତ ଆକର୍ଷଣୀୟ । ମନ୍ଦିରର ଉତ୍ତର ଦିଗରେ ପାର୍ବତୀଙ୍କ ମନ୍ଦିର ଓ ସରଘର । ପାର୍ବତୀ ମନ୍ଦିରରେ ସୁଚିକ୍କଣ କୃଷ୍ଣଶିଳା ନିର୍ମିତ ଚାରୁହାସିନୀ କମନୀୟ ପାର୍ବତୀ ବିଗ୍ରହ ପୂଜିତା । ପାର୍ବତୀ ମୂର୍ତ୍ତିଙ୍କ ଦକ୍ଷିଣ ପାର୍ଶ୍ୱରେ ଶିଳ୍ପନୈପୁଣ୍ୟଭରା ନୃସିଂହ ମୂର୍ତ୍ତି ପ୍ରତିଷ୍ଠିତ । ପଶ୍ଚିମ ଦିଗର ସିଂହଦ୍ୱାରରେ ଦୁଇଗୋଟି ସିଂହ ଓ ଦୁଇଗୋଟି କାଷ୍ଠନିର୍ମିତ ବିଶାଳ କବାଟ ।

**(୨୨) କପିଳାସର ନାରାୟଣ ମନ୍ଦିର :** କପିଳାସ ମୁଖ୍ୟମନ୍ଦିରର ପୂର୍ବଦିଗରେ କିଛି ଦୂର ପାବଛଶ୍ରେଣୀ ଅତିକ୍ରମ କଲେ ନାରାୟଣ ମନ୍ଦିର ପଡ଼େ । କୃଷ୍ଣଶିଳା ନିର୍ମିତ ନାରାୟଣଙ୍କ ବିଗ୍ରହ ଅତୀବ ଆକର୍ଷଣୀୟ ଓ ପ୍ରଭୁଙ୍କ ପଦତଳେ

ଝରରୂପେ ଗଙ୍ଗାବହମାନା । ମନ୍ଦିର ସମ୍ମୁଖରେ କୃଷ୍ଣଶିଳା ନିର୍ମିତ ଗରୁଡ଼ ମୂର୍ତ୍ତି ଯୋଡହସ୍ତରେ ବିଦ୍ୟମାନ । ନାରାୟଣ ମନ୍ଦିରରେ କୌଣସି ବିଶେଷ କାରୁକାର୍ଯ୍ୟ ନାହିଁ । ଏହାର ପଶ୍ଚାତ୍ ଭାଗରେ ମଣିକର୍ଣ୍ଣିକା କୁଣ୍ଡ । ଏହି ମନ୍ଦିରଟି ଢେଙ୍କାନାଳର ମହାରାଣୀ ଅନ୍ନପୂର୍ଣ୍ଣା ମହାଦେବୀଙ୍କ ଦ୍ୱାରା ନିର୍ମିତ ।

**(୨୩) ବିଶ୍ୱନାଥ ମନ୍ଦିର :** ନାରାୟଣ ମନ୍ଦିରର ଦକ୍ଷିଣ ଦିଗରେ କିୟତ୍ ଦୂରରେ ବିଶ୍ୱନାଥ ବାବୁଡ଼ାଲିଙ୍ଗଙ୍କ ମନ୍ଦିର । ଏହି ମନ୍ଦିର ଦ୍ୱାଦଶ ଶତାବ୍ଦୀର ଶେଷ ଭାଗରେ ତୃତୀୟ ଅନଙ୍ଗଭୀମଦେବଙ୍କ ଦ୍ୱାରା ନିର୍ମିତ । ମନ୍ଦିରର ଉଚ୍ଚତା ୬୦ ଫୁଟ । ବିଶ୍ୱନାଥଙ୍କ ଲିଙ୍ଗ ଓ ଶକ୍ତି ବୃହତ୍ । ମନ୍ଦିରର ମୁଖଶାଳାରେ ପାଷଣରେ ଦୁଇଗୋଟି ପଦଚିହ୍ନ ରହିଅଛି, ଯାହାକୁ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପାଦଚିହ୍ନ ବୋଲି କୁହାଯାଏ । ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିର ଅପେକ୍ଷା ବିଶ୍ୱନାଥଙ୍କ ମନ୍ଦିରଟି ପ୍ରାଚୀନ ଜଣାଯାଏ ।

**(୨୪) କପିଳାସର ଅନ୍ୟାନ୍ୟ ପ୍ରତ୍ନବାର୍ତ୍ତା :** ବିଶ୍ୱନାଥ ମନ୍ଦିର ନିକଟରେ ବ୍ରହ୍ମଚାରୀ ମଠ ଓ ଜଗଦ୍‌ଗୁରୁ ଶ୍ରୀଧରସ୍ୱାମୀଙ୍କ ସମାଧିପୀଠ ରହିଅଛି । ସିଂହଦ୍ୱାର ନିକଟରେ ଗୋଟିଏ ଉଚ୍ଚମଣ୍ଡପରେ ସୁଚିକ୍‌କଣ କଳା ମୁଗୁନି ପଥରରେ ନିର୍ମିତ ଭୈରବ ଓ ଭୈରବୀ ମୂର୍ତ୍ତି ଆରାଧିତ । ଏହାର ଅଳ୍ପଦୂରରେ ବଡ଼ଦାଣ୍ଡ ଉପରେ ସଙ୍କଟମୋଚନ ହନୁମାନଙ୍କ ମନ୍ଦିର । ଏତଦ୍‌ଭିନ୍ନ ପାବଚ୍ଛ ରାସ୍ତା ପାର୍ଶ୍ୱରେ ଧୂନିମଠ, ତମାଳ ମୂଳେ ସୀତାରାମ ମଠ ଓ କିଞ୍ଚିତ ଦୂରେ ହରିହର ମଠ ରହିଅଛି । ମଠଗୁଡ଼ିକ ବ୍ୟତୀତ କପିଳାସ ପର୍ବତରେ କେନ୍ଦୁପାଣିଆ, ଆଟେଣ୍ଡି ପାଣିଆ, ସୀତାଙ୍କ ଏନ୍ଦୁଡ଼ିଶାଳ ଓ ପାଦପଦ୍ମ ଗୁମ୍ଫାମାନ ରହିଅଛି । ସୀତାଙ୍କ ଏନ୍ଦୁଡ଼ିଶାଳ ନିକଟରେ ପ୍ରାଚୀନ ବିଲଙ୍କାଗଡ଼ର ଭଗ୍ନାବଶେଷ ଓ ନିର୍ଜଳ ଗଡ଼ଖାଇ ବିଦ୍ୟମାନ ।

**(୨୫) ଦେଓଗାଁ ବଳଦେବଜୀଉ ମନ୍ଦିର :** କପିଳାସ ପାଦଦେଶ ଦେଓଗାଁଠାରେ ଗଜପତି ପ୍ରତାପରୁଦ୍ରଦେବଙ୍କ ଦ୍ୱାରା ନିର୍ମିତ ଶ୍ରୀବଳଦେବଜୀଉ ମନ୍ଦିର ବିଦ୍ୟମାନ। ଏହି ମନ୍ଦିରର ମୁଖଶାଳା ମନ୍ଦିରଠାରୁ ବଡ଼ । ବଳଦେବ ଜୀଉ ମନ୍ଦିର ପରିସରରେ ଚନ୍ଦ୍ରଶେଖରଙ୍କ ବିବାହ ମଣ୍ଡପ ରହିଅଛି । ମନ୍ଦିର ମଧ୍ୟରେ ବଳଦେବ ଓ ଜଗନ୍ନାଥ ପୂଜିତ । ସୁଭଦ୍ରା ପୂଜା ନହୋଇ ଗୋଟିଏ କୋଣରେ ରହିଛନ୍ତି । ଅନତିଦୂରରେ କଦମ୍ବବେଢ଼ା ଓ ପ୍ରାଚୀନ ସରଘର ତଥା ଧର୍ମଶାଳା ଅବସ୍ଥିତ । ଏହାଛଡ଼ା, ଦେଓଗାଁଠାରେ ଯାତ୍ରା ପଡ଼ିଆ, ଚନ୍ଦନପୋଖରୀ,

ଗୁଣ୍ଡିଚାଘର ଓ ଜିମାଦାରଙ୍କ କାର୍ଯ୍ୟାଳୟ ରହିଅଛି । ପୂର୍ବରୁ ଏଠାରେ ଠାକୁରଙ୍କ ଆୟଅଳଙ୍କାର ଓ ଭୋଗ ସାମଗ୍ରୀ ରହୁଥିଲା ।

**(୨୬) ଶ୍ରୀ ବଳଦେବଜୀଉ ମନ୍ଦିର :** ପାଣିଓହଳା ପର୍ବତର ପାଦଦେଶରେ ନକୁଳ ଦେବଦାରୁ କୁଞ୍ଜମଧ୍ୟରେ ସିଦ୍ଧ ବଳରାମଙ୍କ ମନ୍ଦିର ଅବସ୍ଥିତ । ପଞ୍ଚରଥ ଶୈଳୀରେ ଶ୍ରୀବତ୍ସଖଣ୍ଡଶାଳ ପରଂପରାରେ ନିର୍ମିତ ଏହି ମନ୍ଦିରର ଉଚ୍ଚତା ୭୦ ଫୁଟ । ଏହି ମନ୍ଦିର ଜଗମୋହନ, ମୁଖଶାଳା ଓ ଗମ୍ଭୀରା ତିନି ଭାଗରେ ବିଭକ୍ତ । ମନ୍ଦିରର ଶୀର୍ଷ ଭାଗରେ ୫ ଫୁଟ ବ୍ୟାସର ଅଷ୍ଟଧାତୁ ନିର୍ମିତ ନୀଳଚକ୍ର ଉପରେ ଉନ୍ନନିନେତ ସୁଶୋଭିତ । ଗମ୍ଭୀରୀରେ ତିନିଫୁଟ ଉଚ୍ଚ ଓ ଦଶଫୁଟ ଲମ୍ବ ରତ୍ନସିଂହାସନରେ ବଳରାମଙ୍କ ହଳମୂଷଳ ଧାରୀ ଧବଳମୟ ମଣିବିଗ୍ରହ ସହିତ ସୁଭଦ୍ରା, ଶ୍ରୀକୃଷ୍ଣ ଓ ରୁକ୍ମଣୀଙ୍କ ଦାରୁପ୍ରତିମା ପୂଜିତ । ଜଗମୋହନରେ ପ୍ରସ୍ତରସ୍ତମ୍ଭରେ ପକ୍ଷୀରାଜ ଗରୁଡ଼ ଯୋଡ଼ହସ୍ତରେ ଦଣ୍ଡାୟମାନ । ବରାହ, ନୃସିଂହ ବାମନ ହେଉଛନ୍ତି ପାର୍ଶ୍ୱଦେବତା । ମୁଖ୍ୟ ମନ୍ଦିରର ଦକ୍ଷିଣ ଦିଗରେ ଶ୍ରୀଜଗନ୍ନାଥ ମନ୍ଦିର ଓ ରୋଷଘର, ପଶ୍ଚିମପାର୍ଶ୍ୱରେ ଶ୍ରୀ ବକୁଳେଶ୍ୱର ମହାଦେବ, ଶନି, ହନୁମାନ ଓ ସରଘର, ଉତ୍ତରପାର୍ଶ୍ୱରେ ଶ୍ରୀମହାଲକ୍ଷ୍ମୀଙ୍କ ମନ୍ଦିର ତଥା ଐଶାନ୍ୟ କୋଣରେ ସ୍ନାନମଣ୍ଡପ ଓ ନୈରତ କୋଣରେ ଝୁଲଣ ମଣ୍ଡପ । ମନ୍ଦିରବେଢ଼ା ୧୫ ଫୁଟ ଉଚ୍ଚ ପ୍ରସ୍ତର ପ୍ରାଚୀର ଦ୍ୱାରା ପରିବେଷ୍ଟିତ। ପୂର୍ବପଟେ ସିଂହଦ୍ୱାର, ଉତ୍ତରପଟେ ହସ୍ତୀଦ୍ୱାର, ପଶ୍ଚିମପଟେ ବ୍ୟାଘ୍ରଦ୍ୱାର ଓ ଦକ୍ଷିଣପଟେ ଅଶ୍ୱଦ୍ୱାର । ସିଂହଦ୍ୱାର ଗୁମୁଟିରେ ପତିତପାବନ ବିରାଜିତ । ମନ୍ଦିରର ଐଶାନ୍ୟ କୋଣରେ ଅବସ୍ଥିତବାମ୍ପୀର ଜଳ ପରମପାବନ ଓ ଆୟୁଷ୍ୟ । ବେଢ଼ା ମଧ୍ୟରେ ତୁଳସୀଚଉରା, ମଙ୍ଗଳା, ରଘୁନାଥ, ଅଷ୍ଟସଖୀ ପରିବେଷ୍ଟିତ ରାଧାକୃଷ୍ଣ ଓ ଶ୍ରୀଚୈତନ୍ୟ ମଧ୍ୟ ପୂଜିତ ।

**(୨୭) ଶ୍ରୀ ଦଧିବାମନଜୀଉ ମଠ :** ଢେଙ୍କାନାଳ ସହରର ରଥଗଢ଼ାଠାରେ ଶ୍ରୀ ଦଧିବାମନ ମନ୍ଦିର ଅବସ୍ଥିତ । ସପ୍ତଦଶ ଶତାବ୍ଦୀରେ ନିର୍ମିତ ଏହି ମନ୍ଦିରର ଉଚ୍ଚତା ୩୬ ଫୁଟ । ଗମ୍ଭୀରାରେ ଦଧିବାମନ ଓ ମୋହନରେ ଗରୁଡ଼ ବିରାଜିତ । ଦକ୍ଷିଣ ପାର୍ଶ୍ୱରେ ରୋଷଘର ଓ ଭାଗବତ ମଣ୍ଡପ ଅବସ୍ଥିତ ।

**(୨୮) ଶ୍ରୀ ଜୟଗୋପାଳମନ୍ଦିର :** ଢେଙ୍କାନାଳ ସହର ବାଜିଚୈକ ନିକଟରେ ଶ୍ରୀଜୟଗୋପାଳ ମନ୍ଦିର ଅବସ୍ଥିତ । ୪୦ ଫୁଟ ଉଚ୍ଚ ଏହି ମନ୍ଦିର ରାଜା ତ୍ରିଲୋଚନା ମହୀନ୍ଦ୍ର ବାହାଦୂରଙ୍କ ଦ୍ୱାରା ନିର୍ମିତ । ମନ୍ଦିରରେ ପ୍ରଥମେ

ଗୋପୀନାଥ (ଜୟଗୋପାଳ) ପୂଜା ପାଇଥିଲେ । ପରବର୍ତ୍ତୀ କାଳରେ ଶ୍ରୀ ରାଧାରାଣୀ ପୂଜା ପାଇଲେ ।

**(୨୯) ଶ୍ରୀ ଶମ୍ଭୁଗୋପାଳ ମଠ :** ମାଣ୍ଡପାସାହିରେ ଶ୍ରୀ ଶମ୍ଭୁଗୋପାଳ ମଠ ଅବସ୍ଥିତ । ମନ୍ଦିରର ଉଚ୍ଚତା ୪୦ ଫୁଟ । ଢେଙ୍କାନାଳ ରାଜା କୁଞ୍ଜବିହାରୀ ଭ୍ରମର ବରଙ୍କ ଦ୍ୱାରା ଏହି ମନ୍ଦିର ସପ୍ତଦଶ ଶତାବ୍ଦୀରେ ନିର୍ମିତ, ଗମ୍ଭୀରାରେ ଶ୍ରୀ ଶମ୍ଭୁଗୋପାଳ ଓ ମୋହନରେ ଗରୁଡ଼ ବିରାଜିତ । ସନ୍ନିକଟରେ ଅବସ୍ଥିତ ଚଉମୁହାଣୀ ବାମ୍ଫୀ ସୁପ୍ରସିଦ୍ଧ ।

**(୩୦) କୁଞ୍ଜକାନ୍ତ ମନ୍ଦିର :** ଢେଙ୍କାନାଳ ସହରର ପୂର୍ବପାର୍ଶ୍ୱରେ ପାଣିହେଲା ପର୍ବତର କଟିଦେଶରେ କୁଞ୍ଜକାନ୍ତ ମନ୍ଦିର ଅବସ୍ଥିତ । ମନ୍ଦିରଟି ବୃନ୍ଦାବନ ଶୈଳୀରେ ରାଜର୍ଷି ସୁରପ୍ରତାପଙ୍କ ଦ୍ୱାରା ଶହେ ବର୍ଷ ତଳେ ନିର୍ମିତ। ଏହି ମନ୍ଦିରରେ ଶ୍ରୀରାଧାକୃଷ୍ଣ ଆରାଧିତ ।

**(୩୧) ରାଜପ୍ରାସାଦ :** ପାଣି ଓ ହଳା ପର୍ବତର କଟି ଦେଶରେ ଢେଙ୍କାନାଳ ରାଜପ୍ରାସାଦ ନିର୍ମିତ । ଏହି ତ୍ରିତଳ ରାଜପ୍ରାସାଦ ସ୍ତର ସ୍ତର ହୋଇ ବିଭିନ୍ନ ରାଜାଙ୍କ ଦ୍ୱାରା ନିର୍ମିତ ହେଲେହେଁ ସାମରିକ ଦୃଷ୍ଟିକୋଣରୁ ଉନ୍ନତ । ପ୍ରାସାଦର ଚନ୍ଦ୍ରଶାଳାପୁର ଉପରୁ ଶତ୍ରୁଙ୍କ ଗତିବିଧି ସ୍ପଷ୍ଟ ଜାଣିହେବ । ପ୍ରାସାଦଟିରେ ରାଣୀହଂସପୁର, ବୈଠକଖାନା, ରଙ୍ଗମହଲ, ଉପରବଗିଚା, ତଳବଗିଚା, ପାଠଗାର, ବୃନ୍ଦାବନଚନ୍ଦ୍ରଙ୍କ ମନ୍ଦିର ଓ ରଘୁନାଥ ମନ୍ଦିର ରହିଅଛି । ଏଠାରେ ସର୍ବମୋଟ *୬୬* ବଖରା ଘର ରହିଥିଲେହେଁ ଅନେକ ଭାଙ୍ଗିରୁଜି ଗଲାଣି ।

**(୩୨) ବେଣାଳିଆ ଗଡ଼ :** ଢେଙ୍କାନାଳ ସହରର ତିନିକିଲୋମିଟର ପଶ୍ଚିମରେ ବେଣାଳିଆ ଗ୍ରାମ ଅବସ୍ଥିତ। ଏଠାରେ ପ୍ରାଚୀନ ଗଡ଼ର ଭଗ୍ନାବଶେଷ ରହିଛି ପୂର୍ବେ ଏହା ଭଞ୍ଜବଂଶୀ ରାଜାଙ୍କ ରାଜଧାନୀ ଥିଲା ।

**(୩୩) ବୋରାପଦା ପ୍ରାସାଦ :** ଢେଙ୍କାନାଳ ସହରର ଉତ୍ତରପୂର୍ବ କୋଣରେ ବୋରାପଦା ପାହାଡ଼ ଉପରେଏକ ସୁଦୃଶ୍ୟ ପ୍ରାସାଦ ଅବସ୍ଥିତ । ଏଠାରେ ରାଜଭ୍ରାତା ନିବାସ କରନ୍ତି ।

**(୩୪) ଯତନ ନଗର ପ୍ରାସାଦ :** ଢେଙ୍କାନାଳ ସହରରେ ଉତ୍ତର ଦିଗରେ ପ୍ରାୟ ପାଞ୍ଚକିଲୋମିଟର ଦୂରରେ ଯତନ ନଗର ପ୍ରାସାଦର ଭଗ୍ନାବଶେଷ ବିଦ୍ୟମାନ । ଢେଙ୍କାନାଳର ରାଜଭ୍ରାତା ପଟ୍ଟାୟତ ନୃସିଂହ ପ୍ରତାପଙ୍କ ଦ୍ୱାରା ୯୯

ବଖରା ବିଶିଷ୍ଟ ଏହି ପ୍ରାସାଦ ନିର୍ମାଣ କରାଯାଇଥିଲେହେଁ ସଂପୂର୍ଣ୍ଣ ଭଗ୍ନ ଅବସ୍ଥାରେ ସଂପ୍ରତି ବିଦ୍ୟମାନ। ପ୍ରଜାମାନଙ୍କୁ ଅତ୍ୟାଚାରିତ କରାଯାଇ ଏହି ପ୍ରାସାଦ ନିର୍ମିତ ହୋଇଥିବାରୁ କେହି ଏଠାରେ ନିବାସ କରିପାରିଲେ ନାହିଁ । କମେ ଏହା ଭାଙ୍ଗିଗଲା । ଏପରିକି କବାଟ ଓ ଲୌହକଡ଼ି ଗୁଡ଼ିକ ମଧ୍ୟ ନାହିଁ । ବର୍ତ୍ତମାନ ଏହା ଏକ ପରିତ୍ୟକ୍ତ ଭଗ୍ନ ପ୍ରାସାଦ ।

**(୩୫) ଦେଓପଡ଼ା କୁମ୍ଭେଶ୍ୱର ମନ୍ଦିର :** ଢେଙ୍କାନାଳ ସହରର ଦକ୍ଷିଣ ପୂର୍ବକୋଣରେ ପ୍ରାୟ ୧୫ କି.ମି ଦୂରରେ ଦେଓପଡ଼ା କୁମ୍ଭେଶ୍ୱର ମନ୍ଦିର ବିଦ୍ୟମାନ । ୩୬ ଫୁଟ ଉଚ୍ଚତା ବିଶିଷ୍ଟ ଏହି ଶିବମନ୍ଦିର ଷୋଡ଼ଶ ଶତାବ୍ଦୀରେ ନିର୍ମିତ । ମନ୍ଦିର ଗର୍ଭରେ ପ୍ରାଚୀନ ଶିବଲିଙ୍ଗ କୁମ୍ଭେଶ୍ୱର ପୂଜିତ । ମନ୍ଦିରର ନିର୍ମାଣଶୈଳୀ ମଧ୍ୟଯୁଗୀୟ ।

**(୩୬) ସପ୍ତଶଯ୍ୟା ଶ୍ରୀରାମ ମନ୍ଦିର :** ସପ୍ତଶଯ୍ୟା ପର୍ବତଶ୍ରେଣୀ ଢେଙ୍କାନାଳର ଦକ୍ଷିଣ ଦିଗରେ ୧୦କି.ମି ଦୂରରେ ଅବସ୍ଥିତ । ଏହି ପୁରାଣ ପ୍ରସିଦ୍ଧ ପର୍ବତରେ ଢେଙ୍କାନାଳ ରାଜମାତା ରତ୍ନପ୍ରଭାଦେବୀ ସୁଦୃଶ୍ୟ ରାମମନ୍ଦିର ନିର୍ମାଣ ପୂର୍ବକ ମାର୍ବଲ ରାମଲକ୍ଷ୍ମଣ ସୀତା ହନୁମାନ ଓ ଅନ୍ୟାନ୍ୟ ବିଗ୍ରହ ବିଜେ କରାଇଛନ୍ତି । ମନ୍ଦିର ସମ୍ମୁଖରେ ଯଜ୍ଞମଣ୍ଡପ ଓ ସପ୍ତର୍ଷିମୂର୍ତ୍ତି। ଏହି ପୀଠସ୍ଥିତ ନିର୍ଝରିଣୀର ଜଳ ପରମପାବନ ଓ ଆୟୁଷ୍ୟ ।

**(୩୭) କଲ୍‌କୀ ନାରାୟଣ ମନ୍ଦିର :** ସପ୍ତଶଯ୍ୟା ପାଦଦେଶ ବଡ଼ଗିଲାଠାରେ ହରିବାବାଙ୍କ ଆନୁକୂଲ୍ୟରେ ଉତ୍କଳ ସତ୍ୟସମାଜ ଦ୍ୱାରା କଲ୍‌କୀନାରାୟଣ ମନ୍ଦିର ନିର୍ମିତ ହୋଇ ପ୍ରଭୁଙ୍କର ଦାରୁବିଗ୍ରହ ପୂଜିତ । ମନ୍ଦିର ପରିସରରେ ଅନ୍ନପୂର୍ଣ୍ଣା, ବିଶ୍ୱନାଥ, ନୃସିଂହ ଓ ନବଗ୍ରହଙ୍କ ମନ୍ଦିର ରହିଛି ।

**(୩୮) ପଣ୍ଡିମେଶ୍ୱର ମନ୍ଦିର :** ଢେଙ୍କାନାଳର ଦକ୍ଷିଣ ଦିଗରେ ୨୦ କିଲୋମିଟର ଦୂରରେ ଗଙ୍ଗାଧର ପ୍ରସାଦ ଗ୍ରାମଠାରେ ପଣ୍ଡିମେଶ୍ୱର ମନ୍ଦିର ଅବସ୍ଥିତ । ଏହି ମନ୍ଦିର ଓ ଶିବଲିଙ୍ଗ ପଶ୍ଚିମାଭିମୁଖୀ । ନିକଟରେ ଅଷ୍ଟମ-ନବମ ଶତାବ୍ଦୀରେ ଦୁଇଟି ପ୍ରାଚୀନ ଶିବମନ୍ଦିର ବିଦ୍ୟମାନ । ପଣ୍ଡିମେଶ୍ୱର ପୀଠରେ ଯଜ୍ଞମଣ୍ଡପ, ଧ୍ୟାନଘର ଓ ବାମ୍ପୀ ରହିଅଛି ।

**(୩୯) ଭୀମନଗରୀ ଓ ନାଧରାରାମଚଣ୍ଡୀ :** ଜାତୀୟ ରାଜପଥର ଗୁଡ଼ିଆକାଟେଣୀ ଛକ ଉତ୍ତର ପାର୍ଶ୍ୱରେ ବ୍ରାହ୍ମଣୀ କୂଳରେ ନାଧରା ରାମଚଣ୍ଡୀଙ୍କ ପ୍ରାଚୀନ ମନ୍ଦିର ଅବସ୍ଥିତ । ଏହି ଦେବୀ ସପ୍ତମ ଶତାବ୍ଦୀରେ ନିର୍ମିତ ବୋଲି

ଗବେଷକଙ୍କ ମତ । ନିକଟରେ ହରିହରଙ୍କର ଏକ ପ୍ରାଚୀନ ଦୁର୍ଲଭ ମୂର୍ତ୍ତି ମୁକ୍ତାକାଶ ତଳେ ରହିଅଛି । ମନ୍ଦିରର ପୂର୍ବଦିଗରେ ପ୍ରାଚୀନ କନକେଶ୍ୱର ମହାଦେବ ଓ ପଶ୍ଚିମ ଦିଗରେ ପ୍ରାଚୀନ ଭୀମନଗରୀ ଦୁର୍ଗର ଭଗ୍ନାବଶେଷ । ଏହା ଓଡ଼ିଶାର ଏକ ପ୍ରାଚୀନ ଶକ୍ତିପୀଠ ଥିଲା ବୋଲି ମାଦଳାପାଞ୍ଜିରୁ ହୃଦ୍‌ବୋଧ ହୁଏ । ଏଠାରୁ ବହୁ ମୁଦ୍ରା ଓ ତମ୍ବାପଟା ମିଳିଅଛି ।

**(୪୦) ଶ୍ରୀ ରଣେଶ୍ୱର ମନ୍ଦିର :** ଧଳପୁର ଗ୍ରାମରେ ବ୍ରାହ୍ମଣୀ କୂଳରେ ଶ୍ରୀ ରଣେଶ୍ୱରଙ୍କ ପ୍ରାଚୀନ ମନ୍ଦିର ଅବସ୍ଥିତ । ନଦୀ ଅତଡ଼ା ଖାଇଯିବାରୁ ମନ୍ଦିର ପ୍ରତି ବିପଦ ସୃଷ୍ଟି ହେଲାଣି । ରଣେଶ୍ୱର ମନ୍ଦିରଠାରୁ ଏକ ଘରିଆର କନକେଶ୍ୱର ମନ୍ଦିର ପର୍ଯ୍ୟନ୍ତ ନଦୀ କୂଳେ କୂଳେ ସୁଦୃଢ଼ ବନ୍ଧ ନିର୍ମାଣ ନକଲେ ରଣେଶ୍ୱର, ରାମଚଣ୍ଡୀ ଓ କନକେଶ୍ୱର ମନ୍ଦିରର ସୁରକ୍ଷା ହୋଇପାରିବ ନାହିଁ ।

**(୪୧) ଯାଉଁଳୀ ପୋଖରୀ ମଠ :** ଢେଙ୍କାନାଳ ସହରରେ ରାମାନନ୍ଦୀ ସଂପ୍ରଦାୟର ଏହି ମଠଟି ଅବସ୍ଥିତ। ମହାରାଜା ଭାଗୀରଥୀ ମହୀନ୍ଦ୍ର ବାହାଦୂର ମଠଟି ନିର୍ମାଣ କରିଥିଲେ। ମଠରେ ରାମଲକ୍ଷ୍ମଣ ସୀତାଙ୍କ ସମେତ ବହୁ ଶାଳଗ୍ରାମ ପୂଜିତ । ମଠର କାଷ୍ଠନିର୍ମିତ ରାସଦୃଶ୍ୟ ଅତୀବ ମନୋହର ଓ ସମଗ୍ର ଓଡ଼ିଶାରେ ଦୁର୍ଲଭ ।

**(୪୨) ଚଢ଼େଇରଗଡ଼ା ଶୈଳନିବାସ :** ରାଜର୍ଷି ସୁରପ୍ରତାପଙ୍କ ଦ୍ୱାରା ଢେଙ୍କାନାଳ ବସ୍‌ଷ୍ଟାଣ୍ଡ ସନ୍ନିକଟ ଚଢ଼େଇରଗଡ଼ା ପାହାଡ଼ ଉପରେ ଏହି ଅତିଥି ନିବାସଟି ନିର୍ମାଣ କରାଯାଇଥିଲା । ବର୍ତ୍ତମାନ ତାହା Circruit House ଭାବରେ ବ୍ୟବହୃତ ।

**(୪୩) କଚେରୀ କୋଠା :** ଚୀନ୍‌ର ପ୍ରସିଦ୍ଧ ଇଂଜିନୀୟର ଓ ସ୍ଥପତିଙ୍କ ଦ୍ୱାରା ରାଜା ଶଙ୍କର ପ୍ରତାପ ସିଂହଦେଓ ମହୀନ୍ଦ୍ର ବାହାଦୂର ୧୯୨୮ ମସିହାର ଏହି କାର୍ଯ୍ୟାଳୟଟି ନିର୍ମାଣ କରିଥିଲେ । ସଂପ୍ରତି ଏଠାରେ ଜିଲାପାଳଙ୍କ କାର୍ଯ୍ୟାଳୟ ହେଉଅଛି ।

**(୪୪) ଆରାକ୍ଷୀ ଅଧୀକ୍ଷକଙ୍କ କାର୍ଯ୍ୟାଳୟ :** ରାଜର୍ଷି ସୁରପ୍ରତାପଙ୍କ ଦ୍ୱାରା ଏହି କୋଠାଟସି ନିର୍ମାଣ କରାଯାଇଥିଲେ । ପ୍ରଥମେ ଏଠାରେ ଢେଙ୍କାନାଳ ଉଚ୍ଚବିଦ୍ୟାଳୟ ହେଉଥିଲା । ବର୍ତ୍ତମାନ ଏହା ଆରକ୍ଷୀ ଅଧ୍ୟକ୍ଷକଙ୍କ କାର୍ଯ୍ୟାଳୟ ।

**(୪୫) ଢେଙ୍କାନାଳ ଉଚ୍ଚବିଦ୍ୟାଳୟ :** ରାଜା ସୁରପ୍ରତାପ ୧୯୦୯ ମସିହାରେ ଏହି ଦ୍ୱିତଳ ଗୃହ ନିର୍ମାଣ କରିଥିଲେ । ବର୍ତ୍ତମାନ ଏଠାରେ ବ୍ରଜନାଥ ବଡ଼ଜେନା ଉଚ୍ଚବିଦ୍ୟାଳୟ ହେଉଅଛି ।

**(୪୬) ଦେଓ୍ୟାନ୍ ପ୍ରାସାଦ :** ଢେଙ୍କାନାଳର ପୂର୍ବତନ ଦେଓ୍ୱାନ୍ ବନମାଳୀ ସିଂହଙ୍କ ଦ୍ୱାରା ରାଜପ୍ରାସାଦ ଶୈଳୀରେ ଏହି ଗୃହ ନିର୍ମାଣ ହୋଇଥିଲା । ବର୍ତ୍ତମାନ ତାଙ୍କ ବଂଶଧରମାନେ ଏଠାରେ ରହୁଅଛି ।

**(୪୭) ମିହିର ମନ୍ଦିର :** ଢେଙ୍କାନାଳ ସହର ବାଜି ଚୌକି ନିକଟରେ ଏହି ପୁରୁଣା କୋଠା ଅବସ୍ଥିତ। ଏହି ସ୍ଥାନଟି କବି ବ୍ରଜନାଥ ବଡ଼ଜନାଙ୍କ ଜନ୍ମସ୍ଥାନ । ସମୟ କ୍ରମେ କବିଙ୍କ ବଂଶଧର ଏହାକୁ ଦେଓ୍ୱାନ୍ ଚନ୍ଦ୍ରଶେଖର ପାଣିଙ୍କୁ ବିକ୍ରୀ କରିଦେଇଥିଲେ ଏବଂ ସ୍ୱର୍ଗୀୟ ପାଣି ସେହି ସ୍ଥାନରେ ମିହିରମନ୍ଦିର ନିର୍ମାଣ କରିଥିଲେ । ସଂପ୍ରତି, ଏହା ସ୍ୱାସ୍ଥ୍ୟବିଭାଗର ଅସୁରକ୍ଷିତ କୋଠା ଭାବେ ପରିଚିତ ।

**(୪୮) ମୋତିଲାଲ କୋଠା :** ଊନବିଂଶ ଶତାବ୍ଦୀରେ ଲକ୍ଷ୍ନୌରୁ ଆସିଥିବା ମୋତିଲାଲ ନାମକ ଜଣେ ମାରଓ୍ୱାଡ଼ୀ ମାର୍ଥାପୁର ଗ୍ରାମରେ ଏହି କୋଠା ନିର୍ମାଣ କରିଥିଲେ । ବର୍ତ୍ତମାନ ଏଠାରେ ମାର୍ଥାପୁର ଉଚ୍ଚ ବିଦ୍ୟାଳୟ ହେଉଅଛି ।

**(୪୯) ଫକୀରମୋହନ ବଙ୍ଗଳା :** କଥାସମ୍ରାଟ୍ ଫକୀର ମୋହନ ଢେଙ୍କାନାଳର ସହକାରୀ ମ୍ୟାନେଜର ଥିବା ସମୟରେ ଗୋଟିଏ ବାଉଁଶବଣ ସଫା କରି ନିଜ ପାଇଁ ବଙ୍ଗଳାଟିଏ ଗଢ଼ିଥିଲେ । ପରେ ଏହାକୁ ଶାଳୁଆ ବଙ୍ଗଳା କୁହାଗଲା । ବର୍ତ୍ତମାନ ତାହା ଉପଜିଲାପାଳଙ୍କ ଆବାସିକ କାର୍ଯ୍ୟାଳୟ ।

**(୫୦) ପାର୍ବତୀବାବୁଙ୍କ ବଙ୍ଗଳା :** ସ୍ୱର୍ଗୀୟ ପାର୍ବତୀ ଚରଣଦାସ ଢେଙ୍କାନାଳରେ ଦେବୋତ୍ତର ଅଧିକାରୀ ଥିବା ସମୟରେ ଶ୍ରୀଦଧିବାମନମଠ ସମ୍ମୁଖରେ ନିଜ ପାଇଁ ବଙ୍ଗଳାଟିଏ ଗଢ଼ିଥିଲେ । ଏହା ବର୍ତ୍ତମାନ ସ୍ୱାସ୍ଥ୍ୟ ବିଭାଗ ଅଧୀନରେ ।

**(୫୧) ଜିଲାକାରାଗାର :** ଢେଙ୍କାନାଳ ଜିଲାକାରଗାର ଏକ ପ୍ରାଚୀନ କୋଠା । ମହାରାଜା ଭାଗୀରଥୀଙ୍କ ଅମଳରୁ ଏହା ସ୍ତର ସ୍ତର ହୋଇ ବିଭିନ୍ନ ରାଜାଙ୍କ ଦ୍ୱାରା ପରିବର୍ଦ୍ଧିତ ।

ଏତଦ୍‌ଭିନ୍ନ ଢେଙ୍କାନାଳ ସହରରେ ଜିଲାପାଳଙ୍କ ବଙ୍ଗଳା, ଆରକ୍ଷୀ ଅଧୀକ୍ଷକଙ୍କ ବଙ୍ଗଳା, ଜିଲା ଜଙ୍ଗଲ ଅଧିକାରୀଙ୍କ ବଙ୍ଗଳା, ଖାଇରଗଡ଼ା ରାଜ ପ୍ରାସାଦ, ଓରିଆଁଖମାର ଘର, ରାଜାମହାରାଜାଙ୍କ ସମାଧି ପ୍ରଭୃତି ବହୁ ପୁରାତନ କୋଠା ରହିଅଛି । ଗ୍ରାମାଞ୍ଚଳରେ ମଧ ବିଭିନ୍ନ ସ୍ଥାନରେ ଶହେ ବର୍ଷରୁ ଅଧିକ ବହୁ ପରାତନ କୋଠା ରହିଅଛି । ଏହି ସବୁ ପ୍ରାଚୀନ ପ୍ରାସାଦ ମଧ୍ୟରୁ କେବଳ ସରାଙ୍ଗ ବିଷ୍ଣୁପ୍ରତିମା,

କୁଆଁଳୋ ଅଷ୍ଟଶମ୍ଭୁ ମନ୍ଦିର, କପିଳାସ ମୁଖ୍ୟ ମନ୍ଦିରକୁ ସଂରକ୍ଷିତ ପ୍ରତ୍ନବିଭବ ଭାବରେ ଘୋଷଣା କରାଯାଇଛି । ଅନ୍ୟାନ୍ୟ ପ୍ରତ୍ନକୀର୍ତ୍ତୀ ସଂପର୍କରେ ବିଧିବଦ୍ଧ ସର୍ବେକ୍ଷଣ ଅଦ୍ୟାବଧି ହୋଇନାହିଁ, ଏପରିକି କବି ବ୍ରଜନାଥଙ୍କ ଜନ୍ମସ୍ଥାନ ମିହିର ମନ୍ଦିରଟିକୁ ସଂସ୍କୃତିଭବନ କରିବାକୁ ବାରଂବାର ଦାବୀ ହେଉଥିଲେହେଁ କୌଣସି ପଦକ୍ଷେପ ନିଆଯାଇନାହିଁ। ଢେଙ୍କାନାଳର ଏହି ପ୍ରାଚୀନ ପ୍ରତ୍ନକୀର୍ତ୍ତୀ ମଧ୍ୟରୁ ଅନେକ ଭଗ୍ନ ଅବସ୍ଥାରେ ଓ ଅସୁରକ୍ଷିତ। ଉପଯୁକ୍ତ ରକ୍ଷଣାବେକ୍ଷଣାର ବ୍ୟବସ୍ଥା ନହେଲେ ଏହି ପ୍ରାଚୀନକୀର୍ତ୍ତୀ ସମୂହ ଭୂତକଶାୟୀ ହେବ । ପରିତ୍ୟକ୍ତ ଯତନ ନଗରକୁ ସୁଦୃଶ୍ୟ କରାଯାଇ ଏକ ଅତିଥିନିବାସ ଭାବରେ ଗଢ଼ିବାକୁମଧ୍ୟ ଦାବୀ ହେଉଛି । ପ୍ରାଚୀନ ରାଜପ୍ରାସାଦ, କୁଞ୍ଜକାନ୍ତ ମନ୍ଦିର, ଯାଉଁଳୀପୋଖରୀ ସ୍ଥିତ କେଦାରେଶ୍ୱର ମନ୍ଦିର, ଦଧିବାମନ ମଠ ପ୍ରଭୃତି ମଧ୍ୟ ଜରାଜୀର୍ଣ୍ଣ ଅବସ୍ଥାରେ ରହିଅଛି । ଫକୀରମୋହନ ଓ ପାର୍ବତୀବାବୁଙ୍କ ବଙ୍ଗଳା ଦୁଇଟିକୁ ଅଦ୍ୟାବଧି ଜାତୀୟ ସ୍ମାରକୀ ଭାବରେ ଉଦ୍‌ଘୋଷଣାକରାଯାଇନାହିଁ । ସୂଚନା ଯୋଗ୍ୟ ଯେ ଢେଙ୍କାନାଳ ସହର କପିଳାସ, ଦେଓଗାଁ, କାଇମାଟି, ଯୋରନ୍ଦା, ନାଗନା, ମାର୍ଥାପୁର ପ୍ରଭୃତି ଗ୍ରାମ ମାନଙ୍କରେ ଥିବା ପ୍ରାଚୀନ ବାଙ୍ଗୀ ଗୁଡ଼ିକରେ ରକ୍ଷଣାବେକ୍ଷଣା ନିମିତ୍ତ ପଦକ୍ଷେପ ନିଆଯାଇନାହିଁ। ସଂକ୍ଷେପରେ ଉଲ୍ଲେଖକଲେ, ଢେଙ୍କାନାଳର ପତ୍ନୀକୀର୍ତ୍ତୀ ସମୂହ ସଂପୂର୍ଣ୍ଣ ଅବହେଳିତ ।



# ଢେଙ୍କାନାଳର ପ୍ରାଚୀନ ରାଜଧାନୀ କରମୂଳନଗରୀ

ନୈସର୍ଗିକ ଶୋଭାମୟୀ ଢେଙ୍କାନାଳ ବହୁ ପ୍ରାଚୀନ କାଳରୁ ସଭ୍ୟତା ଓ ସଂସ୍କୃତି ସଂପନ୍ନ ଭୂଖଣ୍ଡ ରୂପେ ସୁପ୍ରସିଦ୍ଧ । ପ୍ରାଚୀନ ସାହିତ୍ୟ, ଶିଳାଲେଖ, ତାମ୍ରପତ୍ର ତଥା ଅନ୍ୟାନ୍ୟ ଅଭିଲେଖରେ ଏହା ସାମରିକ ଶକ୍ତି ସଂପନ୍ନ, ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ, ବିଭବଶାଳୀ ଭୂଖଣ୍ଡ ରୂପେ ଚିତ୍ରିତ । ପ୍ରାଚୀନ ଯୁଗରୁ ଏହି ଭୂଖଣ୍ଡ କରମୂଳ, କୋଦାଳକ, ଯମଗର୍ତ୍ତ, ଐରାବତ, ଢେଙ୍କାନାଳ, ବିଲଙ୍କାଗଡ଼, ଡମରାଜକଟ ଓ ଭୀମନଗରୀ ନାମରେ ପ୍ରସିଦ୍ଧି ଲାଭ ପୂର୍ବକ ନାଗ, ତୁଙ୍ଗ, ଶୁଲ୍କୀ, ନନ୍ଦୋଦ୍ଭବ, ଭୌମ, ସୋମ, ଗଙ୍ଗ, ସୂର୍ଯ୍ୟ ଓ ଚନ୍ଦ୍ରବଂଶର ବହୁନରପତିଙ୍କ ଦ୍ୱାରା ଶାସିତ ହୋଇ ମଧ୍ୟ ଯୁଗରେ ଢେଙ୍କାନାଳ ନାମରେ ପ୍ରସିଦ୍ଧି ଲାଭ କରିଥିଲା । ପ୍ରାଥମିକ ପର୍ଯ୍ୟାୟରେ ଦୀର୍ଘକାଳ ପ୍ରାଚୀନ କରମୂଳନଗରୀ ଏହାର ରାଜଧାନୀ ଥିଲେହେଁ ଷୋଡ଼ଶ ଶତାବ୍ଦୀରେ କରମୂଳ ଠାରୁ ଢେଙ୍କାନାଳକୁ ରାଜଧାନୀ ସ୍ଥାନାନ୍ତରିତ ହୋଇଥିଲା । ସଂପ୍ରତି ଢେଙ୍କାନାଳର ପ୍ରାଚୀନ ରାଜଧାନୀ କରମୂଳ ନଗରୀ ବିଧ୍ୱଂସ୍ତ ଓ ବିସ୍ମୃତ ପ୍ରାୟ କରମୂଳ ଗ୍ରାମ ରୂପେ ପରିଚିହ୍ନିତ ।

ଢେଙ୍କାନାଳ ସହରର ଉତ୍ତର ଦିଗରେ ପ୍ରାୟ ୩୨କି.ମି. ଦୂରରେ ବ୍ରାହ୍ମଣୀ ଅବବାହିକାର ଦକ୍ଷିଣପାର୍ଶ୍ୱରେ କରମୂଳ ଅବସ୍ଥିତ । ଏହା ଉତ୍ତର ପାର୍ଶ୍ୱରେ ପୂଣ୍ୟତୋୟା ବ୍ରାହ୍ମଣୀନଦୀ, ପୂର୍ବରେ ପ୍ରାଚୀନ ଶିବଲିଙ୍ଗ ସ୍ୱପ୍ନେଶ୍ୱର ଦକ୍ଷିଣରେ ଅଶ୍ୱଖୋଲା ପର୍ବତଶ୍ରେଣୀ ଅନ୍ତର୍ଗତ ବଡ଼ହୁଡ଼ି ଓ ମଧୁବନ ଏବଂ ପଶ୍ଚିମ ମହିମାଗାଦୀ ତଥା ଢେଙ୍କାନାଳକୁ ଲମ୍ୱିଯାଇଥିବା ରାଜପଥ । ବଡ଼ହୁଡ଼ି ପାହାଡ଼ର ପାଦଦେଶରେ ପ୍ରାଚୀନଗଡ଼ର ଭଗ୍ନାବଶେଷ ବିଦ୍ୟମାନ । ସ୍ଥାନୀୟ ବ୍ୟକ୍ତିଙ୍କ ଦ୍ୱାରା ଏଥିରେ କିୟଦଂଶ ଅଧିକୃତ ହେଲେହେ ଏହା ଅଦ୍ୟାବଧି ଉଆସଡ଼ିହ ନାମରେ ପରିଚିତ। ପ୍ରାଚୀନ ଦୁର୍ଗକୁ ପରିବେଷ୍ଟନ କରୁଥିବା ଗଡ଼ଖାଇ ବା ପରିଖା ନିଦର୍ଶନ ଏବେ ମଧ୍ୟ ସ୍ଥାନେ ସ୍ଥାନେ ରହିଅଛି । ସ୍ଥାନୀୟ ଅଧିବାସୀ ଏହି ପରିଖାକୁ ନାନାଦି ଆବର୍ଜନାରେ ପୂର୍ଣ୍ଣ କରୁଥିଲେହେଁ ଏ ଅବଧି ସଂପୂର୍ଣ୍ଣ ପୋତିପାରିନାହାନ୍ତି । ନିକଟରେ ପ୍ରାକ୍ତନ ରାଜାଙ୍କ ହସ୍ତୀଶାଳ ସଂପ୍ରତି ହାତୀବାରି ନାମେ ଏକ ସ୍ୱତନ୍ତ୍ର

ରାଜସ୍ୱ ଗ୍ରାମ ଭାବରେ ଏବଂ ଘୋଡ଼ାଦୌଡ଼ ସ୍ଥାନ ଦୌଡ଼େଶ୍ୱର ଭାବରେ ଅଭିଲିଖିତ । ଏତଦ୍‌ଭିନ୍ନ ପାଣପଦା, ପଠାଣପଦା ପ୍ରଭୃତି ନିକଟବର୍ତ୍ତୀସ୍ଥାନ ପ୍ରାଚୀନ ନଗରୀର ବିଶାଳତାର ପରିଚୟ ପ୍ରଦାନ କରିଥାଏ। ହୃଦ୍‌ବୋଧ ହୁଏ, ସଂପ୍ରତି ଭିନ୍ନ ଭିନ୍ନ ରାଜସ୍ୱ ଗ୍ରାମ ପରିଚିହ୍ନିତ କରମୂଳ, ଆମ୍ବପଡ଼ା, ମଝିପାଳ, ହାତୀବାରି, ଦୌଡ଼େଶ୍ୱର, ତୃଣଶ୍ୱେର, ଗୋପଳପୁର ପ୍ରଭୃତି ପ୍ରାଚୀନ କରମୂଳ ନଗରୀର ଅନ୍ତର୍ଭୁକ୍ତ ଥିଲା । ଅଶ୍ୱଖୋଲା ପର୍ବତଶ୍ରେଣୀ ଓ ବ୍ରାହ୍ମଣୀନଦୀର ମଧ ଭାଗରେ ଅବସ୍ଥିତ ଏହି ବିସ୍ତୀର୍ଣ୍ଣଅଞ୍ଚଳ ଦେଖିଲେ ପ୍ରତୀୟମାନ ହୁଏ ନଦୀ ଓ ପର୍ବତ ପରିବେଷ୍ଟିତ ଏହି ପ୍ରାଚୀନ ନଗରୀ ସାମରିକ, ସାଂସ୍କୃତିକ ଓ ବ୍ୟବସାୟିକ ଦୃଷ୍ଟିକୋଣରୁ ଥିଲା ଅନନ୍ୟ ଓ ଅନୁପମ । ପର୍ବତ ଓ ନଦୀ ଯୋଗୁ ନଗରୀ ମଧ୍ୟକୁ ବାହ୍ୟଶତ୍ରୁ ପ୍ରବେଶ ସହଜ ସାଧ ନଥିଲା। ନଗରୀ ଏବଂ କେନ୍ଦ୍ରସ୍ଥଳରେ ରାଜପ୍ରାସାଦ ବିଦ୍ୟମାନ ଥିଲା । ନଗରୀର ପୂର୍ବଦକ୍ଷିଣ ଓ ପଶ୍ଚିମ ଦିଗରେ ଜଳପୂର୍ଣ୍ଣ ସୁଗଭୀର ପରୀଖା ଏବଂ ଉତ୍ତରଦିଗରେ ବ୍ରାହ୍ମଣୀନଦୀ ରହିଥିଲା । ନଗରୀର ଯାତାୟତ ପଥହିଁ ଥିଲା ନଦୀ ।

କରମୂଳ ନଗରୀର ଉତ୍ତରରେ ବ୍ରାହ୍ମଣୀ କୂଳରେ ପ୍ରାଚୀନ ସ୍ୱପ୍ନେଶ୍ୱରଙ୍କ ସୁବୃହତ୍ ଶକ୍ତି ଓ ଲିଙ୍ଗ ସହିତ ବିଶାଳ ମନ୍ଦିର ବିଦ୍ୟମାନ ଥିଲା । ବର୍ତ୍ତମାନ ମନ୍ଦିରଟି ଭାଙ୍ଗିଯାଇ ପ୍ରସ୍ତର ସମୂହ ନଦୀଗର୍ଭରେ ତଥା ଇତସ୍ତତଃ ପଡ଼ିଅଛି । ଏହି ସ୍ୱପ୍ନେଶ୍ୱରଙ୍କୁ ସ୍ଥାନୀୟ ଅଧିବାସୀ ଦୌଡ଼େଶ୍ୱର କହିଥାନ୍ତି । ଶକ୍ତି ଓ ଲିଙ୍ଗ ଷଷ୍ଠ ସପ୍ତମ ଶତାବ୍ଦୀର ବୋଲି ହୃଦ୍‌ବୋଧ ହୁଏ । ନଗରୀର ଈଷ୍ଟଦେବୀ ରାମଚଣ୍ଡୀ ସଂପ୍ରତି କରମୂଳ ଗ୍ରାମରେ ବିରାଜିତା । ପରବର୍ତ୍ତୀ କାଳରେ ମଧ୍ୟଯୁଗରେ ଏହି ନଗରୀରେ ଦଧିବାମନ ପ୍ରତିଷ୍ଠିତ ହୋଇଥିଲେ। ବର୍ତ୍ତମାନ ଏହି ଠାକୁରଙ୍କର ମନ୍ଦିର ନାହିଁ । ବିଗ୍ରହ ଗୋଟିଏ ଅସ୍ଥାୟୀ ପୂଜାଗୃହରେ ବିରାଜିତ । ବ୍ରାହ୍ମଣୀନଦୀର ଅପରପାର୍ଶ୍ୱ ମାର୍ଥାପୁର ଶାସନର ପୂର୍ବଦିଗରେ ଗଡ଼ଚଣ୍ଡୀ ଏଅବଧି ପୂଜିତା ନିକଟରେ ପ୍ରାଚୀନ ଶିବଲିଙ୍ଗ ଶ୍ରୀ ଶ୍ରୀ ବାଲୁଙ୍କେଶ୍ୱର ବିରାଜିତ । ଗଡ଼ର ପଶ୍ଚିମରେ ହିଙ୍ଗୁଳା ଏବଂ ପୂର୍ବରେ ଗ୍ରାମଦେବତୀ । ସଂକ୍ଷେପରେ ଉଲ୍ଲେଖ କଲେ ସମଗ୍ର ନଗରୀଟି ଦେବଦେବୀ ପରିବେଷ୍ଟିତ ଥିଲା । ସମସ୍ତ ଦେବାଦେବୀଙ୍କ ପୂଜା ଉପାସନା ଓ ପର୍ବପର୍ବାଣୀ ସଂପନ୍ନ ନିମିତ୍ତ ନଗରୀର ପଶ୍ଚିମ ଦିଗରେ ଥିବା ଆମ୍ବପଡ଼ା, ମକୁନ୍ଦପୁର ଓ ଜଗାବେରେଣା ଗ୍ରାମମାନଙ୍କରେ ଭୂସଂପତ୍ତି ଖଞ୍ଜା ଯାଇଥିଲା । ଉଲ୍ଲେଖଯୋଗ୍ୟ ଯେ ପ୍ରାଚୀନ ନଗରୀ ପ୍ରଥମେ ଶୈବଧର୍ମରେ ପ୍ଲାବିତ

ହୋଇଥିଲେ ହେଁ ପରବର୍ତ୍ତୀ କାଳରେ ସଂସ୍କୃତିର ଉତ୍ତରଣରେ ବିଭିନ୍ନ ଦେବାଦେବୀ ପ୍ରତିଷ୍ଠିତ ହୋଇ ସମନ୍ୱୟର ବାର୍ତ୍ତାପ୍ରଚାର ଓ ପ୍ରସାର ଘଟିଥିଲା ।

ନଗରୀର ଦକ୍ଷିଣ ଦିଗରେ ଅଶ୍ୱଖୋଲା ପର୍ବତର ପାଦଦେଶରେ ସୁଚିକ୍କଣ କୃଷ୍ଣଶିଳା ନିର୍ମିତ ସିଦ୍ଧ ଗଣେଶ ବିଗ୍ରହପୂଜିତ । ଗଣେଶଙ୍କର ପ୍ରାଚୀନ ମନ୍ଦିରଟି ନଷ୍ଟ ହୋଇଯାଇଛି ଏବଂ ସଂପ୍ରତି ବିଗ୍ରହ ଏକ ଖୋଲାମଣ୍ଡପରେ ବିରାଜିତ । ସନ୍ନିକଟରେ ପ୍ରାଚୀନ ଗିରିଦୁର୍ଗର ଭଗ୍ନାବଶେଷ, ଧାନଘର, ହାତୀଶାଳ, ଅଶ୍ୱଶାଳ ଅଦ୍ୟାବଧି ବିଦ୍ୟମାନ । ଏହି ସ୍ଥାନକୁ କାରମୂଳ ଠାରୁ ଏକ ଗିରିଖୋଲଦେଇ ଯିବାକୁ ହୋଇଥାଏ। ପର୍ବତରୁ ନିର୍ମଳ ନିର୍ଝରଣୀ ପ୍ରବାହିତ ହୋଇ ଖୋଲର ରାସ୍ତା ପାର୍ଶ୍ୱରେ ନଦୀ ପର୍ଯ୍ୟନ୍ତ ଧାବମାନ । ଏହି ଗିରିଦୁର୍ଗ ଆର୍ଯ୍ୟଜନବସତି ସ୍ଥାପନ ପୂର୍ବରୁ ନିର୍ମିତ ଅଥବା ପରବର୍ତ୍ତୀର କାଳରେ ଏକ ସୁରକ୍ଷିତ ଦୁର୍ଗ ରୂପେ ନିର୍ମିତ । ସେହି ଗିରିପଥରେ କିୟତ୍‌ଦୂର ଗଲେ ଅନ୍ୟ ଏକ ଖୋଲା ରହିଅଛି । ଏହାକୁ ସିଂହାରୀଖୋଲା କୁହାଯାଏ । ସମଗ୍ର ପାର୍ବତ୍ୟାଞ୍ଚଳରେ ବହୁ ନିର୍ଝର ଓ ଅଶୋକବୃକ୍ଷ ରହିଅଛି । ନିକଟସ୍ଥ ମଧୁବନ ଦୁର୍ଗର ଶୋଭା ମଧ୍ୟ ଆକର୍ଷଣୀୟ । ଗଣେଶଖୋଲା ଏକ ସୁରମ୍ୟ ପର୍ଯ୍ୟଟନ ସ୍ଥଳୀ ହେଲେ ହେଁ ଅଦ୍ୟାବଧି ସେଠାରେ ରାସ୍ତା ନାହିଁ ଏବଂ ଓଡ଼ିଶାର ଏହି ପ୍ରାକୃତିକ ପର୍ଯ୍ୟଟନସ୍ଥଳୀ ଲୋକଲୋଚନର ଅନ୍ତରାଳରେ । କଥିତ ଅଛି ଏଠାରେ ପୂଜିତ ଗଣେଶ ମୂର୍ତ୍ତି କାଞ୍ଚିରୁ ଆନୀତ । ବର୍ତ୍ତମାନ ଜନୈକ ରାମାନନ୍ଦୀ ସଂପ୍ରଦାୟର ସାଧୁ ଏଠାରେ ମଠନିର୍ମାଣ ପୂର୍ବକ ଗଣେଶଙ୍କର ନିତ୍ୟନୈମିତ୍ତିକ ପୂଜା ସଂପନ୍ନ କରୁଛନ୍ତି ।

ଦ୍ୱିତୀୟ ଶତାବ୍ଦୀର ନାସିକ ଶିଳାଲେଖରୁ ଜଣାଯାଏ ସମଗ୍ର ଢେଙ୍କାନାଳ ଅଞ୍ଚଳଟି ସାତକର୍ଣ୍ଣୀ ସାମ୍ରାଜ୍ୟ ଭୁକ୍ତ ଥିଲା । ତୃତୀୟ-ଚତୁର୍ଥ ଶତାବ୍ଦୀରେ ଏହା ଗୁପ୍ତସାମ୍ରାଜ୍ୟ ଭୁକ୍ତ ହେଲେହେଁ କରମୂଳର ସେହି ସମୟର ଇତିହାସ ଅଜ୍ଞାତ । କରମୂଳରେ ପଶ୍ଚିମଦିଗରେ ବ୍ରାହ୍ମଣୀ କୂଳରେ ପ୍ରାଚୀନ ନାଗ ନାଥେଶ୍ୱର ମନ୍ଦିର ଓ ଦେବୀ ନାଗନାମୀ ବିରାଜିତା । ସନ୍ନିକଟ ରୂପାଦଳିଆ ପର୍ବତରେ ମଧ୍ୟ ଏକ ପ୍ରାଚୀନ ଗିରିଦୁର୍ଗ ରହିଅଛି । କରମୂଳ ନଗରୀର ଦକ୍ଷିଣ ଦିଗରେ ବଣିଆପଡ଼ା ସନ୍ନିବଟ ଡମରାଜ କଟକରେ ପ୍ରାଚୀନ ଦୁର୍ଗ, ବାମ୍ପୀ ଓ ନାଗମାତା ଇଳାଙ୍କ ମୂର୍ତ୍ତି ବିଦ୍ୟମାନ । ଏଥିରୁ ପ୍ରମାଣିତ ହେଉଛି ନାଗବଂଶୀୟ ରାଜାମାନେ ପ୍ରଥମେ ଏହି ଅଞ୍ଚଳରେ ରାଜ୍ୟ ପ୍ରତିଷ୍ଠା ପୂର୍ବକ ବିଭିନ୍ନ ସ୍ଥାନରେ ଗିରିଦୁର୍ଗ ଏବଂ କରମୂଳରେ ରାଜଧାନୀ ସ୍ଥାପନ କରିଥିଲେ । ବର୍ତ୍ତମାନ ମଧ୍ୟ ଏହି ଅଞ୍ଚଳରେ ବହୁ ନାଗବଂଶୀ

କ୍ଷତ୍ରିୟ ବାସ କରୁଅଛନ୍ତି । ନାଗବଂଶ ପରେ କରମୂଳଠାରେ ଶୈବ ଧର୍ମାବଲମ୍ବୀ ରାଜନ୍ୟବୃନ୍ଦ ରାଜୁତି କରିଥିଲେ । ବ୍ରାହ୍ମଣୀକୂଳରେ ଥିବା ବୃଦ୍ଧେଶ୍ୱର, ସ୍ୱପ୍ନେଶ୍ୱର, ବାଲୁଙ୍କେଶ୍ୱର, ଉଗ୍ରେଶ୍ୱର, ଅନ୍ନକୋଟୀଶ୍ୱର ପ୍ରଭୃତି ମନ୍ଦିର ଏହାର ସତ୍ୟତା ପ୍ରତିପାଦନ କରିଥାଏ । ଷଷ୍ଠ ସପ୍ତମ ଶତାବ୍ଦୀରେ ଯାଜପୁରରେ ଭୌମକର ବଂଶର ରାଜତ୍ୱ ଆରମ୍ଭ ହୋଇଥିଲା। ଏହି ସମୟରେ ଜୟସିଂହ ନାମକ ଜନୈକ ରାଜା ଯାଜପୁରର ମନ୍ଦାକିନୀ ନଦୀ କୂଳରେ ବେଦବିଦ୍ ମହେନ୍ଦ୍ରସ୍ୱାମୀ ଓ ସ୍କନ୍ଧ ସ୍ୱାମୀଙ୍କୁ କରମୂଳ ନଗରୀ ସନ୍ନିକଟ ମାର୍ଥାପୁର ଶାସନ ଦାନ ଦେଇଥିଲେ । ଏଥିରୁ ପ୍ରମାଣିତ ହେଉଛି କରମୂଳରେ ରାଜନ୍ୟବୃନ୍ଦ ଯାଜପୁର ଭୌମକର ରାଜାମାନଙ୍କ ଅଧୀନସ୍ଥ ଥିଲେ। ଭୌମବର ରାଜା ଓ ରାଣୀମାନଙ୍କ ଅନେକ ତାମ୍ରଶାସନ ଢେଙ୍କାନାଳ ଅଞ୍ଚଳରୁ ପ୍ରାପ୍ତ ହୋଇଛି । ଏଣୁ ନିଃସନ୍ଦେହରେ କୁହାଯାଇପାରେ ଯେ କରମୂଳ ରାଜା ଭୌମମାନଙ୍କ ସାମନ୍ତ ଥିଲେ । ଅଷ୍ଟମ ନବମ ଶତାବ୍ଦୀରେ ଢେଙ୍କାନାଳର ପଶ୍ଚିମାଞ୍ଚଳ କୋଦାଳକ ନଗରୀଠାରେ ଶୁଳ୍କୀବଂଶୀ ସ୍ତମ୍ଭ ରାଜାଗଣ ରାଜତ୍ୱ କରୁଥିବାର ପ୍ରମାଣ ମିଳିଛି । ଏହି ରାଜାମାନଙ୍କର ନଅ ଗୋଟି ତାମ୍ରଶାସନ ଉପଲବ୍ଧ ଏବଂ ସେଥିରୁ ପାଞ୍ଚ ପୁରୁଷର ଇତିହାସ ପ୍ରମାଣିତ । ସେମାନେ ମଧ୍ୟ ଯାଜପୁର ଭୌମରାଜାଙ୍କର ସାମନ୍ତ ଥାଇ ଶହେ ବର୍ଷରୁ ଉର୍ଦ୍ଧ୍ୱକାଳ ରାଜତ୍ୱ କରିଥିଲେ । କୁଆଁଳୋର ଅଷ୍ଟଶମ୍ଭୁ ମନ୍ଦିରଏହି ରାଜବଂଶର କୀର୍ତ୍ତୀ । ତେଣୁ ଷଷ୍ଠଶତାବ୍ଦୀ ଠାରୁ ଦଶମଶତାବ୍ଦୀ ପର୍ଯ୍ୟନ୍ତ ଚାରିଶହ ବର୍ଷ ଧରି ଢେଙ୍କାନାଳରେ ଶୈବ ସାମ୍ରାଜ୍ୟ ପ୍ରତିଷ୍ଠିତ ଥିଲା ବୋଲି ପ୍ରମାଣିତ ହୁଏ । କିନ୍ତୁ ଏହି ଚାରିଶହ ବର୍ଷ କରମୂଳ ନଗରୀରେ ରାଜତ୍ୱ କରୁଥିବା ରାଜନ୍ୟବୃନ୍ଦଙ୍କର ଧାରା ବହିବ ଇତିହାସ ଏ ପର୍ଯ୍ୟନ୍ତ ଅନୁପଲବ୍ଧ । ଏହି ସମୟରେ କରମୂଳରେ ରାଜତ୍ୱ କରୁଥିବା ବଶିଷ୍ଠ ବଂଶ ଓ ମୁଦ୍‌ଗଲ ବଂଶ କ୍ଷତ୍ରିୟମାନଙ୍କର ବଂଶଧରବୃନ୍ଦ ଅଦ୍ୟାବଧି କରମୂଳା ଅଞ୍ଚଳରେ ବାସ କରୁଅଛନ୍ତି ।

ଭୌମବର ବଂଶ ପରେ ଯାଜପୁରରେ ସୋମ ବଂଶୀ ରାଜାମାନେ ରାଜତ୍ୱ କରିଥିଲେ । ଏହି ବଂଶର ପ୍ରତିଷ୍ଠାତା ଯଯାତିକେଶରୀ କାନ୍ୟକୁବ୍‌ଜରୁ ବୈଦିକ ବ୍ରାହ୍ମଣ ନିମନ୍ତ୍ରଣରି ଯାଜପୁରଠାରେ ଦଶ୍ୱାଶ୍ୱବୋଧ ଯଜ୍ଞ କରାଇଥିଲେ । ସେହି ବ୍ରାହ୍ମଣମାନଙ୍କ ମଧ୍ୟରୁ କେତେକ କରମୂଳ ରାଜ୍ୟର ମାର୍ଥାପୁର ଶାସନରେ ଆସି ନିବାସ କଲେ । ଏଥିରୁ ଜଣାଯାଉଛି ସୋମବଂଶୀ ରାଜତ୍ୱରେ ମଧ୍ୟ କରମୂଳ ଓଡ଼ିଶାରାଜାଙ୍କ ଅଧୀନରେ ଥିଲା । ସୋମବଂଶର ଅନେକ ରାଜା ବା ସାମନ୍ତ

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ରାଜତ୍ୱ କରୁଥିଲେ । ଏହି ବଂଶର ଚନ୍ଦ୍ରକେଶରୀ କରମୂଳରେ ରାଜୁତି କରିଥିବାର ଅନୁମାନ କରାଯାଏ । କପିଳାସସ୍ଥିତ ବୃଷଭ ଶିଳାଲେଖରୁ ଜଣାଯାଏ ଚନ୍ଦ୍ରକେଶରୀ ପ୍ରଥମେ କପିଳାସରେ ମନ୍ଦିର ନିର୍ମାଣ କରାଇଥିଲେ । ସେହି ମନ୍ଦିର କୌଣସି କାରଣରୁ ଭାଙ୍ଗିଯିବାରୁ ବର୍ତ୍ତମାନର ମନ୍ଦିରଟି ୧୨୪୬ ଖ୍ରୀଷ୍ଟାବ୍ଦରେ ପ୍ରଥମ ନରସିଂହଦେବଙ୍କ ଦ୍ୱାରା ନିର୍ମିତ । ଚନ୍ଦ୍ରକେଶରୀ କପିଳାସ ମନ୍ଦିର ନିର୍ମାଣ କରିବାପରେ ତାଙ୍କ ରାଜ୍ୟର ମାଳପୁରା, ଜିନେଇଲୋ, ବେଢ଼ାପାଳ ଆଙ୍କୁର୍ଦୀ ପ୍ରଭୃତି ଗ୍ରାମ ଠାକୁରଙ୍କ ସେବା ପୂଜା ନିମିତ୍ତ, ଖଞ୍ଜାକରିଥିଲେ । କପିଳାସ ବିଶ୍ୱକର୍ମାଙ୍କ ନିବାସ କରମୂଳ ନିକଟସ୍ଥ କାବେରା ଗ୍ରାମରେ । ଏଥିରୁ ହୃଦ୍‌ବୋଧ ହେଉଛି କରମୂଳ ଅଞ୍ଚଳର ଶିଳ୍ପୀମାନଙ୍କ ଦ୍ୱାରା ପ୍ରଥମେ କପିଳାସ ମନ୍ଦିର ନିର୍ମାଣ କରାଯାଇଥିଲା । ଏହି ଚନ୍ଦ୍ରକେଶରୀଙ୍କ ସଂପର୍କରେ ଐତିହାସିକ ବୃନ୍ଦ ସଂପୂର୍ଣ୍ଣ ତଥ୍ୟ ଏପର୍ଯ୍ୟନ୍ତ ପାଇପାରିନାହାନ୍ତି । ତାଙ୍କ ପରେ ଆଉ କେତେଜଣ ସୋମବଂଶୀ ରାଜା କରମୂଳରେ ରାଜୁତି କରୁଥିଲେ ତାହା ଅଦ୍ୟାବଧି ଅଜ୍ଞାତ, ଢେଙ୍କାନାଳ ଇତିହାସ ବର୍ଣ୍ଣନାନୁସାରେ ବୃଦ୍ଧକେଶରୀ ଭୁବନର ପ୍ରାଚୀନ ବୃଦ୍ଧେଶ୍ୱର ମନ୍ଦିର ନିର୍ମାଣ କରିଥିଲେ । କିନ୍ତୁ ସୋମବଂଶ ରାଜନ୍ୟବୃନ୍ଦଙ୍କ କ୍ରମରେ ବୃଦ୍ଧକେଶରୀଙ୍କ ନାମ ଦୃଷ୍ଟିଗୋଚର ହୁଏ ନାହିଁ । ଢେଙ୍କାନାଳ ଇତିହାସରେ କନକକେଶରୀ, କୁଣ୍ଡଳ କେଶରୀ ପ୍ରଭୃତି ବହୁରାଜାଙ୍କ ନାମ ଉଲ୍ଲେଖ ଥିଲେହେଁ ଏମାନେ ଯେ କରମୂଳରେ ରାଜତ୍ୱ କରିଥିଲେ ତାହାର ପ୍ରମାଣ ମିଳିନାହିଁ ।

ସୋମବଂଶ ପରେ ଗଙ୍ଗବଂଶୀ ରାଜନ୍ୟବୃନ୍ଦ ଓଡ଼ିଶା ଅଧିକାର ପୂର୍ବକ ଚୌଦ୍ୱାରଠାରେ ରାଜଧାନୀ ସ୍ଥାପନ କଲେ । ଏହି ବଂଶର ତୃତୀୟ ଅନଙ୍ଗଭୀମଦେବ ଢେଙ୍କାନାଳର ଭୀମନଗରୀ ଠାରେ ଦୁର୍ଗସ୍ଥାପନା ପୂର୍ବକ ପଶ୍ଚିମାଞ୍ଚଳରୁ ସ୍ତମ୍ଭରାଜାମାନଙ୍କୁ ବିତାଡ଼ିତ କରିଥିଲେ । କିନ୍ତୁ କରମୂଳ ଅଧିପତିଙ୍କ ସହିତ ତାଙ୍କର ତିକ୍ତତା ଥିବାର କୌଣସି ପ୍ରମାଣ ମିଳିନାହିଁ । ଏଥିରୁ ଅନୁମିତ ହେଉଛି କରମୂଳରାଜା ମଧ୍ୟ ଗଙ୍ଗବଂଶର ଅଧୀନସ୍ଥଥିଲେ । ଅନଙ୍ଗଭୀମଦେବଙ୍କ ପୁତ୍ର ପ୍ରଥମ ନରସିଂହଦେବ କପିଳାସରେ ମନ୍ଦିର ନିର୍ମାଣ ପରେ କରମୂଳ ସନ୍ନିକଟ ଭୀମପୁର ଓ ନାଗନାଗ୍ରାମ ଠାକୁରଙ୍କୁ ଦାନ କରିଥିଲେ । ସେ ମଧ୍ୟ ଆପଣାର ସେନାପତି ତୁଳସୀଙ୍କୁ ମନ୍ଦିର ତତ୍ତ୍ୱବଧାନରେ ନିଯୁକ୍ତି ଦେଇ କରମୂଳ ସନ୍ନିକଟ ରାୟତଳା ଗ୍ରାମ ଦାନ ଦେଇଥିଲେ । ସେହି ସମୟରେ କରମୂଳରେ

କିଏ ରାଜୁତି କରୁଥିଲେ ତାହା ଏ ପର୍ଯ୍ୟନ୍ତ ଜଣାଯାଇନାହିଁ । ତୁଳସୀଙ୍କ ବଂଶଧର ଅଦ୍ୟାବଧି ରାୟତଳା ଗ୍ରାମରେ ନିବାସ କରୁଅଛନ୍ତି । ପ୍ରଥମ ନରସିଂହଦେବଙ୍କ ପୁତ୍ର ଭାନୁ ଦେବଙ୍କ ରାଜତ୍ୱରେ କପିଳାସରେ ବ୍ରହ୍ମଚାରୀ ମଠ ସ୍ଥାପନ ହେଲା ଏବଂ କରମୂଳ ନିକଟସ୍ଥ ଗ୍ରାମଟି ସେହିମଠକୁ ଦାନ ଦିଆଗଲା । ଭାନୁଦେବ ମଧ କରମୂଳ ରାଜ୍ୟାନ୍ତର୍ଗତ ମାର୍ଥାପୁର ଶାସନ ବ୍ରାହ୍ମଣ ମଣ୍ଡଳୀଙ୍କୁ ନୃସିଂହପୁର ଗ୍ରାମ ଦାନ ଦେଇଥିଲେ । ଗଙ୍ଗବଂଶ ରାଜତ୍ୱରେ କପିଳାସର ପ୍ରାଧାନ୍ୟ ବୃଦ୍ଧି ପାଇଥିଲା ଏବଂ କରମୂଳ ଅଧିପତିହିଁ ମନ୍ଦିରର ଯଥାର୍ଥ ଦାୟିତ୍ୱରେ ଥିଲେ ।

ସୂର୍ଯ୍ୟବଂଶ ରାଜତ୍ୱ ସମୟକୁ ସମଗ୍ର ଢେଙ୍କାନାଳ ଅଞ୍ଚଳ ଅନେକ କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବିଭକ୍ତ ହୋଇଯାଇଥିଲା । କରମୂଳ ଅଧିପତି କେବଳ ସାତକୋଶ ବିସ୍ତୀର୍ଣ୍ଣ ଭୂଖଣ୍ଡରେ ରାଜତ୍ୱ କରୁଥିଲେ । ଏହି ଭୂଖଣ୍ଡ ପୂର୍ବରେ କରମୂଳଠାରୁ ପଶ୍ଚିମରେ ହୃଦଗଡ଼ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । ସୂର୍ଯ୍ୟବଂଶର ଶେଷ ରାଜା ପ୍ରତାପରୁଦ୍ର ଦେବଙ୍କର କରମୂଳ ସହିତ ପ୍ରତ୍ୟକ୍ଷ ସଂପର୍କ ରହିଥିଲା । ସେ କପିଳାସ ପାଦଦେଶ ଦେଓଗାଁଠାରେ ଶ୍ରୀ ବଳଦେବଙ୍କର ମନ୍ଦିର ନିର୍ମାଣ କରିଥିଲେ । ରାଜସ୍ଥାନରୁ ସେହି ସମୟରେ ତିନିଜଣ ଚନ୍ଦ୍ରବଂଶୀ ମୁଦ୍‌ଗଲ ଗୋତ୍ରୀୟ କ୍ଷତ୍ରିୟ ପ୍ରତାପରୁଦ୍ର ଦେବଙ୍କ ନିକଟରେ ନିଯୁକ୍ତ ଥିଲେ । ଏହି ତିନିଜଣ ହେଉଛନ୍ତି ଗୋବିନ୍ଦସିଂହ ଦନାର୍ଦ୍ଦନ ସିଂହ ଓ ହରିସିଂହ । ତନ୍ମଧ୍ୟରୁ ଗୋବିନ୍ଦସିଂହ ବିଦ୍ୟାଧର ଉପାଧି ଧାରଣ ପୂର୍ବକ ପରବର୍ତ୍ତୀ କାଳରେ ଗଜପତି ପଦବୀ ଅଳଙ୍କୃତ କରିଥିଲେଏବଂ ଜନାର୍ଦ୍ଦନ ସିଂହଙ୍କ ପୁତ୍ର ରାମଚନ୍ଦ୍ର ଦେବ ମଧ ଭୋଇ ବଂଶ ପ୍ରତିଷ୍ଠା କରିଥିଲେ। ହରିସିଂହ ଦାକ୍ଷିଣାତ୍ୟ ଯୁଦ୍ଧରେ ପ୍ରତାପରୁଦ୍ରଦେବଙ୍କୁ ସାହାଯ୍ୟ କରିଥିବାରୁ ଗଜପତି ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କୁ କରମୂଳ ପାଟଣା ରାଜ୍ୟ ସହିତ ମୀନକେତନ ସନ୍ତକ ପଗଡ଼ି ଓ କଟାରି ପ୍ରଦାନ କରିଥିଲେ। ଏହା ୧୫୨୯ ଖ୍ରୀଷ୍ଟାବ୍ଦର ଘଟଣା । ହରିସିଂହ ବିଦ୍ୟାଧର ସେହି ବର୍ଷ କରମୂଳ ରାଜଗାଦୀରେ ଅଭିଷିକ୍ତ ହୋଇ କରମୂଳ ଓ ହଦଗଡ଼ ଉଭୟ ସ୍ଥାନରେ ଦୁର୍ଗ ନିର୍ମାଣ କରାଇଥିଲେ । ଅପଣା ବାହୁବଳରେ ହରିସିଂହ ରୂପାବଳିଆ ପର୍ବତର, ଅଧିପତି ଡମରାଜା କଟକର ଅଧିପତି ଏବଂ ଅନ୍ୟାନ୍ୟ ଭୂମ୍ୟାଧିକାରୀଙ୍କୁ ପରାସ୍ତ କରି ସ୍ୱରାଜ୍ୟ ବିସ୍ତାର କରିବାକୁ ଲାଗିଲେ । ସେତେବେଳକୁ ଢେଙ୍କାଶବର ଡମ୍ବରାଜାଙ୍କ ଦ୍ୱାରା ପରାସ୍ତ ହୋଇ ସାରିଥିଲା ଏବଂ ଏହି ଅଞ୍ଚଳଟି ବେଶାଳିଆର ଭଞ୍ଜସାମନ୍ତଙ୍କ ଅଧୀନସ୍ତ ଥିଲା । ହରିସିଂହ ଭଞ୍ଜରାଜାଙ୍କୁ ପରାସ୍ତ କରି ଏହି ଅଞ୍ଚଳ

ଅଧିକାର କଲେ ଏବଂ ଯୁଦ୍ଧ ସଂଘଟିତ ହେଉଥିବା ପ୍ରାନ୍ତରର ନାମ ଗୁଣ୍ଡିଚାପଡ଼ା, ରଖିଥିଲେ । ମାଦଳାପାଞ୍ଜିରୁ ଜଣାଯାଏ କରମୂଳରେ ଅଭିଷିକ୍ତ ହେବାପରେ ହରିସିଂହ ଶ୍ରୀଜଗନ୍ନାଥ ଦର୍ଶନକୁ ଯାଇ ତତ୍‌କାଳୀନ ଗଜପତି ରାମଚନ୍ଦ୍ରଦେବଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ । ହରିସିଂହ ବିଦ୍ୟାଧର ଦକ୍ଷିଣାତ୍ୟରୁ ଆଣିଥିବା ଗଣେଶ, ରାମଚଣ୍ଡୀ ଓ ଦଧିବାମନଙ୍କୁ ସ୍ୱରାଜଧାନୀରେ ପ୍ରତିଷ୍ଠା କରିଥିଲେ । କରମୂଳଠାରେ ଓ ଗଣେଶଖୋଲାରେ ଏହି ସବୁଦେବଦେବୀ ଅଦ୍ୟାବଧି ପୂଜିତ । ଅଶ୍ୱଖୋଲା ପର୍ବତର ଏକ ଗିରଗୁହା ସିଂହରାୟ ଖୋଲା ଭାବେ ପରିଚିତ ଏବଂ ଗ୍ରାମଦୁଇଟି ସିଂହା ଓ ରାୟତଏଳା ନାମରେ ଅଭିହିତ । ସେ ଆପଣାର ଜ୍ୟେଷ୍ଠଭ୍ରାତ ଓ ଖୋଝଳ ବିଦ୍ୟାଧରଙ୍କ ନାମରେ ପ୍ରାଚୀନ ମାର୍ଥାପୁର ଶାସନ ନିକଟରେ ଗୋଟିଏ ଶାସନ ବସାଇଥିଲେ ।

ରାଜ୍ୟବିସ୍ତାର ପରେ ହରିସିଂହ ବିଦ୍ୟାଧର ଆପଣାର ରାଜଧାନୀ କରମୂଳ ନଗରୀଠାରୁ ଢେଙ୍କାଶବର ପୀଡ଼କୁ ଉଠାଇ ଆଣିଲେ ଏବଂ ଢେଙ୍କା ନାମାନୁସାରେ ରାଜ୍ୟର ନାମ ଢେଙ୍କାନାଳ ରଖିଲେ । ତତ୍‌ପରେ ତାଙ୍କର କେତେକ ଭଞ୍ଜସାମନ୍ତ କରକୂଳ ନଗରୀରେ ନିବାସ କରୁଥିଲେ । କାଳର କରାଳ ଗତିରେ କର ମୂଳରାଜପ୍ରାସାଦ ଧ୍ୱଂସ ପାଇଲା ଏବଂ ଭଞ୍ଜ ସାମନ୍ତମାନେ ସଂପ୍ରତି କୀର୍ତ୍ତନପୁର ଗ୍ରାମରେ ବାସ କରୁଛନ୍ତି । କ୍ରମେ ଓ କରମୂଳର ଖ୍ୟାତି ଲୋପ ପାଇଲା ଏବଂ ଏହି ବିଶାଳ ନଗରୀ କେତେଗୋଟି ରାଜସ୍ୱ ଗ୍ରାମରେ ବିଭକ୍ତ ହୋଇଥିଲା । ପ୍ରାଚୀନ ଉଆସଡିହର ଭୂଖନନ ଓ ସର୍ବେକ୍ଷଣ କରାଗଲେ ଅନେକ ଅଜ୍ଞାତ ଐତିହ୍ୟ ଲୋକଲୋଚନକୁ ଆସିବାର ସମ୍ଭାବନା ରହିଛି । ଏତଦ୍‌ଭିନ୍ନ କରମୂଳ ସନ୍ନିକଟ ଗଣେଶଖୋଲା ଓ ସିଂହାରିଖୋଲାକୁ ପର୍ଯ୍ୟଟନ କେନ୍ଦ୍ର ଉଦ୍‌ଘୋଷଣା କରାଗଲେ ଏହି ପ୍ରାଚୀନ ନଗରୀ ଏକ ଐତିହ୍ୟବିମଣ୍ଡିତ କ୍ଷେତ୍ର ରୂପେ ଖ୍ୟାତି ଲାଭ କରିପାରିବ ।



# ଢେଙ୍କାନାଳର ଲକ୍ଷ୍ମୀନୃସିଂହ ଉପାସନା

ପରମଶାସ୍ତ୍ର ଭାଗବତରେ ନୃସିଂହ ଉପାସନାର ଆଦ୍ୟସ୍ୱରୂପ ଉପଲବ୍ଧ । ଓଡ଼ିଶାର ଆଧାତ୍ମିକ ବିଚାରବୋଧରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ଆଦ୍ୟସ୍ୱରୂପ ହେଉଛି ଶ୍ରୀନୃସିଂହ । ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ନୃସିଂହ ଉପାସନା ପୂର୍ବକ ଯଜ୍ଞ ସମାପନା କରି ମହାଦାରୁଙ୍କର ଦର୍ଶନ ଲାଭ କରିଥିଲେ ଏବଂ ଏହି ମହାଦାରୁରେ ଚତୁର୍ଦ୍ଧାମୂର୍ତ୍ତି ନିର୍ମିତ । ଏହି ପୁରୋଦୃଷ୍ଟିରେ ପବିତ୍ର ଉତ୍କଳରେ ବହୁ ପ୍ରାଚୀନ କାଳରୁ ଲକ୍ଷ୍ମୀନୃସିହ ଉପାସନାର ଧାରା ଅବ୍ୟାହତ ଓଡ଼ିଶାର ମଧ୍ୟଭାଗରେ ଅ ବସ୍ଥିତ ପ୍ରାଚୀନ ସାଂସ୍କୃତିକ ପୀଠ ଢେଙ୍କାନାଳରେ ସପ୍ତମ-ଅଷ୍ଟମ ଶତାବ୍ଦୀରୁ ଲକ୍ଷ୍ମୀନୃସିଂହ ଉପାସନାର ସୂଚନା ବିଦ୍ୟମାନ ।

ଢେଙ୍କାନାଳର ପ୍ରାଚୀନ ଐତିହ୍ୟ ଅନୁଧାନ କଲେ ଜଣାଯାଏ ସପ୍ତମ-ଅଷ୍ଟମ ଶତାବ୍ଦୀରୁ ବ୍ରାହ୍ମଣୀ ଅବବାହିକାରେ ବୈଦିକଧର୍ମ ସହିତ ଭାଗବତଧର୍ମ ରାଜକୀୟ ମାନ୍ୟତା ଲାଭ କରିଥିଲା। ଏହି ଅଞ୍ଚଳରୁ ପ୍ରାପ୍ତ ତାମ୍ରଶାସନରୁ ଅନୁଭୂତ ହୁଏ ତୋଷାଳୀର ଭୌମବଂଶୀ ରାଜା ଓ ରାଣୀ ତଥା କୋଦାଳକର ସ୍ତମ୍ଭବଂଶୀ ରାଜନ୍ୟବର୍ଗ ବହୁବେଦଜ୍ଞ ବ୍ରାହ୍ମଣଙ୍କୁ ଭୂମିଦାନ ପୂର୍ବକ ବୈଦିକ ଓ ଭାଗବତ ଧର୍ମ ପ୍ରସାର ଘଟାଇଥିଲେ । ପ୍ରାପ୍ତ ତାମ୍ରଶାସନ ମଧ୍ୟରେ ଭୌମରାଣୀ ତ୍ରିଭୁବନ ମହାଦେବୀ ୧ମଙ୍କ ପ୍ରଦତ୍ତ ତାମ୍ରଶାସନ ବିଶେଷ ପ୍ରଣିଧାନ ଯୋଗ୍ୟ । ପ୍ରୋକ୍ତ ତାମ୍ରପତ୍ରଟି ତ୍ରିଭୁବନ ମହାଦେବୀ ବେଦାଧ୍ୟାୟୀ ଜଗଦ୍ଧାରଙ୍କୁ ପ୍ରଦାନ କରିଥିଲେ (See-Orissa under Bhauma kings page 32) ଏହି ତମ୍ବାପଟ୍ଟାରେ ଜଗଦ୍ଧାର କୋନ୍ତମ୍ପରା ବା ବର୍ତ୍ତମାନର କନ୍ତିଓଗ୍ରାମ ଦାନ ପାଇଥିଲେ । ସୂଚନା ଦିଆଯାଇପାରେ ଯେ ସେହି ଅଷ୍ଟମ ଶତାବ୍ଦୀରୁ ଜଗଦ୍ଧାରଙ୍କ ଉତ୍ତରାଧିକାରୀବୃନ୍ଦ କନ୍ତିଓ ଗ୍ରାମ ନିଷ୍କର ଲାଖରାଜ ବ୍ରହ୍ମୋତ୍ତର ଗ୍ରାମ ରୂପେ ଭୋଗକରି ଲକ୍ଷ୍ମୀନୃସିଂହ ଉପାସନା କରିଆସୁଛନ୍ତି । ଏହାହିଁ ଢେଙ୍କାନାଳ ଅଞ୍ଚଳର ଆଦ୍ୟ ଲକ୍ଷ୍ମ ନୃସିଂହ ପୀଠ । ଏଥିରୁ ପ୍ରମାଣିତ ହୁଏ, ଅଷ୍ଟମ ଶତାବ୍ଦୀରୁ ଢେଙ୍କାନାଳରେ ଲକ୍ଷ୍ମୀ ନୃସିଂହ ଉପାସନାର ଧାରା ବୈଦିକ ଓ ବୈଷ୍ଣବ ଉଭୟ ମତବାଦର ସମ୍ମିଳିତ ସ୍ୱରୂପ ଭାବେ ଆତ୍ମପ୍ରକାଶ କରିଥିଲା । ଉଲ୍ଲେଖଯୋଗ୍ୟ ଯେ ଅଷ୍ଟମଶତାର୍ବ୍ଦୀରେ ନୀଳାଚଳ ଧାମରେ ଆଦି ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ଭୋଗବର୍ଦ୍ଧନପୀଠ ସଂସ୍ଥାପିତ ହୋଇ

ଓଡ଼ିଶାରେ ଅଦ୍ୱୈତବେଦାନ୍ତର ପ୍ରଚାରକଙ୍କ ଦ୍ୱାରା ଲକ୍ଷ୍ମୀ ନୃସିଂହ ଉପାସନାର ବ୍ୟାପକ ପ୍ରଚାର ଓ ପ୍ରସାର ଘଟିଥିଲା ଏବଂ ଏହାର ପ୍ରତିଫଳନରେ କନ୍ତିଓଠାରେ ଲକ୍ଷ୍ମୀନୃସିଂହ ପୀଠ ପ୍ରତିଷ୍ଠିତ ହୋଇଥିଲା ।

ପରବର୍ତ୍ତୀ କାଳରେ ବ୍ରାହ୍ମଣୀ ଉପତ୍ୟକାର ବ୍ରାହ୍ମଣ ବସତି ପ୍ରତିଷ୍ଠିତ ହୋଇ ଲକ୍ଷ୍ମୀନୃସିଂହ ଉପାସନା ଉତ୍ତରୋତ୍ତର ବିକାଶ ଘଟିଥିଲା । ତ୍ରୟୋଦଶ ଶତାବ୍ଦୀରେ ଲାଙ୍ଗୁଳା ନରସିଂହ ଦେବଙ୍କ ଦ୍ୱାରା କପିଳାସ ଶିବମନ୍ଦିର ପୁନର୍ନିର୍ମାଣ ପରେ ପୁରୀଭୋଗ ବର୍ଦ୍ଧନମଠରେ ଏକ ଶାଖା ବ୍ରହ୍ମଚାରୀମଠ ଏହି ଶିବଧାମରେ ସଂସ୍ଥାପିତ ହେଲା ଓ ଶ୍ରୀ ରାମକୃଷ୍ଣାନନ୍ଦ ଏହି ବ୍ରହ୍ମଚାରୀମଠର ତତ୍ତ୍ୱାବଧାରୀ ରୂପେ ନିଯୁକ୍ତ ହେଲେ । ଶ୍ରୀରାମ କୃଷ୍ଣାନନ୍ଦଙ୍କ ଶିଷ୍ୟ ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀ କପିଳାସ ସ୍ଥିତ ବ୍ରହ୍ମଚାରୀ ମଠରେ ନିବାସ କରି ଲକ୍ଷ୍ମୀନୃସିଂହ ଉପାସନା ପୂର୍ବକ ଗୀତା ଭାଗବତ ପ୍ରଭୃତି ଦୁର୍ଲଭ ଶାସ୍ତ୍ର ସମୂହର ଟୀକା ପ୍ରଣୟନ କଲେ । ସ୍ୱାମୀପାଦ ଶ୍ରୀଧର କପିଳାସପୀଠସ୍ଥିତ ପାର୍ବତୀଙ୍କ ଦକ୍ଷିଣପାର୍ଶ୍ୱରେ ନୃସିଂହ ମୂର୍ତ୍ତି ପ୍ରତିଷ୍ଠା ପୂର୍ବକ ଶାକ୍ତସଂସ୍କୃତି ସହିତ ବୈଷ୍ଣବ ସଂସ୍କୃତିର ସମନ୍ୱୟ ଘଟାଇଥିଲେ । ପରେ ସମଗ୍ର ଢେଙ୍କାନାଳରେ ଲକ୍ଷ୍ମୀନୃସିଂହ ଉପାସନା ଏକ ପାରଂପରିକ ରୂପ ଗ୍ରହଣ କଲା ।

ଷୋଡ଼ଶ ଶତାବ୍ଦୀରେ ଢେଙ୍କାନାଳରେ ହରିସିଂହ ବିଧ୍ୟାଧରଙ୍କ ଦ୍ୱାରା ରାଜଧାନୀ ସ୍ଥାପନା ହେବା ପରେ କନ୍ତିଓ ଲକ୍ଷ୍ମୀନୃସିଂହପୀଠର ଏକ ଶାଖା ଏଠାରେ ପ୍ରତିଷ୍ଠା ହେଲା ଏବଂ ଏହି ଶାଖା ସନ୍ନିକଟରେ ନାଗା ସଂପ୍ରଦାୟର ଲକ୍ଷ୍ମୀନୃସିଂହ ପୀଠ ସ୍ଥାପନା ହେଲା । ପରିଣାମରେ ଏହି ଉପାସନା ସାମାଜିକ ସ୍ୱୀକୃତି ଲାଭ ପୂର୍ବକ ଏଅବଧି ଏହାର ଧାରା ପ୍ରବାହିତ । ବ୍ରାହ୍ମଣୀ ଅବବାହିକାରୁ ପ୍ରାପ୍ତ ତାମ୍ରପତ୍ର ଓ ଶିଳାଲେଖ ସମୂହର ଗବେଷଣା ଅଧ୍ୟୟନ ହୋଇପାରିଲେ ଓଡ଼ିଶାର ଏହି ଗୌରବୋର ସଂସ୍କୃତି ସଂପର୍କରେ ଅଧିକ ତଥ୍ୟ ଉପଲବ୍ଧ ହୋଇପାରେ ।



# ବିଧ୍ୱଂସ୍ତପ୍ରାୟ କୋଦାଳକ ନଗରୀ

ଭୌମକର ଯୁଗ ଅର୍ଥାତ୍ ଅଷ୍ଟମନବମ ଶତାବ୍ଦୀରେ ବ୍ରାହ୍ମଣୀ ନଦୀର ପାର୍ବତ୍ୟାଞ୍ଚଳ ଅବବାହିକାରେ କୋଦାଳକ ନଗରୀ ଏକ ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ ବିଭବଶାଳୀ ତଥା ସଂସ୍କୃତି ସଂପନ୍ନ ନଗରୀରୂପେ ଖ୍ୟାତିଲାଭ କରିଥିଲା । ଏହି ଐତିହାମୟୀ ନଗରୀରେ ଶୁଳ୍କୀବଂଶୀ ସ୍ତମ୍ଭୋପାଧିଧାରୀ ରାଜନ୍ୟବୃନ୍ଦ ରାଜଧାନୀ ସ୍ଥାପନ କରିଥିଲେ । ସେମାନଙ୍କ ପ୍ରଦତ୍ତ ତାମ୍ରଶାସନରୁ କୋଦାଳକ ନଗରୀର ଶୌରବୋଜ୍ଜ୍ୱଳ ଐତିହ୍ୟର ସୂଚନା ଉପଲବ୍ଧ ହୋଇଥାଏ । ଅଷ୍ଟଶମ୍ଭୁ ମନ୍ଦିର ପରିଶୋଭିତ ସେହି ନଗରୀ ଏକ ମହିମାବନ୍ତ ଶୈବପୀଠ ରୂପେ ଆଧ୍ୟାତ୍ମିକ ମର୍ଯ୍ୟାଦା ଲାଭ କରିଥିଲା । ଢେଙ୍କାନାଳ ଜିଲା ଜାମାଖ୍ୟାନଗର ଉପଖଣ୍ଡସ୍ଥିତ କୁଆଁଲୋ ଗ୍ରାମ ସଂପ୍ରତି ବିଧ୍ୱଂସ୍ତପ୍ରାୟ କୋଦାଳକ ନଗରୀ ରୂପେ ପରିଚିହ୍ନିତ ।

ପୂଣ୍ୟତୋୟା ବ୍ରାହ୍ମଣନଦୀର ଉତ୍ତର ପାର୍ଶ୍ୱରେ ଏହି ନଗରୀ ଅବସ୍ଥିତ ଥିଲା । ସେହି ଅଞ୍ଚଳରୁ ପ୍ରାପ୍ତ ନଅଗୋଟି ଶୁଳ୍କୀବଂଶୀ ରାଜାଙ୍କ ପ୍ରଦତ୍ତ ତାମ୍ରଶାସନରେ ପ୍ରାଚୀନ କୋଦାଳକ ନଗରୀ ସଂପର୍କୀୟ ବହୁ ମହତ୍ୱପୂର୍ଣ୍ଣ ସୂଚନା ଉପଲବ୍ଧି ହୋଇଥାଏ। ରଣସ୍ତମ୍ଭଙ୍କ ପ୍ରଦତ୍ତ ତାମ୍ରଶାସନରୁ ତଥ୍ୟ ମିଳିଥାଏ ଯେ କୋଦାଳକ ନଗରୀର ନଭଶ୍ଚୁମ୍ବୀ ଦେବାଳୟ ଚତୁପାର୍ଶ୍ୱବର୍ତ୍ତୀ ରାଜନ୍ୟବୃନ୍ଦଙ୍କ କୀର୍ତ୍ତୀସମୂହକୁ ଧିକ୍କାର କରୁଅଛି । (୧) ମନେହୁଏ, କୋଦାଳକ ଏକ ମନ୍ଦିରମୟୀ ନଗରୀ ଭାବରେ ଖ୍ୟାତି ଲାଭ କରିଥିଲା । କୁଆଁଲୋ ଠାରେ ବର୍ତ୍ତମାନ ଅନେକ ପ୍ରାଚୀନ ଶିବମନ୍ଦିର, ମନ୍ଦିର ଭଗ୍ନାବଶେଷ ତଥା ଅସଂଖ୍ୟ ପୁଷ୍କରିଣୀର ଭଗ୍ନାବଶେଷ ଦୃଷ୍ଟିଗୋଚର ହୋଇଥାଏ । କିନ୍ତୁ ରାଜପ୍ରାସାଦର ଭଗ୍ନାବଶେଷ ଅଦ୍ୟାବଧି ଅନୁପଲବ୍ଧ । ସୂଚନାଯୋଗ୍ୟଯେ ଢେଙ୍କାନାଳ ଇତିହାସ ବର୍ଣ୍ଣନାନୁଯାୟୀ କୋଦାଳକ ନଗରୀରେ ଏକ ଶତ ପୁଷ୍କରିଣୀ ରହିଥିଲା ଏବଂ ସଂପ୍ରତି ଅନେକ ପୁଷ୍କରିଣୀ ପୋତିହୋଇ କୃଷିକ୍ଷେତ୍ରରେ ପରିଣତ ହୋଇଛି । ତଦନୁରୂପ ବିଶାଳ ରାଜପ୍ରାସାଦରେ ଭୂଗର୍ଭସ୍ଥ ହେବା ଅସମୀଚୀନ ବୋଧନୁହେଁ । ତାମ୍ରଶାସନରେ ‘‘କୋଦାଳକ ନଗରୀରୁ ଭଗବତୀ ସ୍ତମ୍ଭେଶ୍ୱରୀଙ୍କ କୃପାରୁ’’ ଉଲ୍ଲେଖ ଥିବାରୁ ହୃଦ୍‌ବୋଧ ହୁଏ ସେଗୁଡ଼ିକ କୋଦାଳକ ରାଜ ଦରବାରରୁ ପ୍ରଦତ୍ତ ହୋଇଥିଲା । ଏହି ପରିପ୍ରେକ୍ଷୀରେ ବିଚାର କରାଯାଇପାରେଯେ ନିଷ୍ଚିତ ଭାବେ

ଶୁକ୍ଳୀବଂଶୀ ରାଜାମାନେ କୋଦାଳକ ନଗରୀରେ ସୁରମ୍ୟ ରାଜପ୍ରାସାଦ ନିର୍ମାଣ କରିଥିଲେ । ହୁଏତ ଦିନେ ନା ଦିନେ କୁଆଁଳୋର ସେହି ଶସ୍ୟଶ୍ୟାମଳା ଭରା ପ୍ରାନ୍ତରରୁ ସେହି ରାଜପ୍ରାସାଦର ସନ୍ଧାନ ମିଳିବ ।

ଶୁକ୍ଳୀବଂଶୀ ସ୍ତମ୍ଭଉପାଧିଧାରୀ ରାଜାଙ୍କ ପ୍ରଦତ୍ତ ତାମ୍ରଶାସନରେ ଅର୍ଦ୍ଧଚନ୍ଦ୍ରଯୁକ୍ତ ଲାଞ୍ଛିତ ବୃଷଭ ଖୋଦିତ ହୋଇଥିବାରୁ ପ୍ରତୀୟମାନ ହୁଏ ଏହି ରାଜନ୍ୟବୃନ୍ଦ ଶୈବ ଥିଲେ । ପ୍ରାୟ ପ୍ରତ୍ୟେକ ତାମ୍ରପତ୍ରରେ ଶିବଙ୍କର ଜୟଗାନ ସହିତ ରାଜାମାନେ ଆପଣାକୁ ପରମ ମାହେଶ୍ୱର ରୂପରେ ପରିଚିତ କରାଇଯାଇଛନ୍ତି । ଶିବଭକ୍ତିର ସ୍ୱାଭିମାନରେ ସ୍ତମ୍ଭ ନୃପତିବୃନ୍ଦ କୋଦାଳକ ନଗରୀରେ ଅଗଣିତ ଶିବମନ୍ଦିର ନିର୍ମାଣ କରିଥିଲେ। ଅଦ୍ୟାବଧି ଏଠାରେ ଆଠ ଗୋଟି ଭଗ୍ନମନ୍ଦିର ଦୃଷ୍ଟିଗୋଚର ହୋଇଥାଏ, ଯାହାକି ସଂପ୍ରତି ଅଷ୍ଟଶମ୍ଭୁପୀଠ ନାମରେ ପ୍ରସିଦ୍ଧି ଲାଭ କରିଅଛି । ଏଠାରେ ପୂଜିତ ଅଷ୍ଟଶମ୍ଭୁ ହେଉଛନ୍ତି କନକେଶ୍ୱର, ସ୍ୱପ୍ନେଶ୍ୱର, ଐଶାନ୍ୟେଶ୍ୱର କପିଳେଶ୍ୱର, ବୈଦ୍ୟନାଥେଶ୍ୱର, ପଶ୍ଚିମେଶ୍ୱର, ବାଣେଶ୍ୱର ଓ ଲୋକନାଥେଶ୍ୱର। ତନ୍ମଧ୍ୟରୁ କନକେଶ୍ୱର ମୁଖ୍ୟମନ୍ଦିରରେ ପୂଜିତ । କନକେଶ୍ୱର ମନ୍ଦିର ଚତୁଃପାର୍ଶ୍ୱରେ ପାଞ୍ଚଗୋଟି ମନ୍ଦିରର ଭଗ୍ନାବଶେଷ ରହିଛି । କନକେଶ୍ୱରଙ୍କ ଶିବଲିଙ୍ଗ ଭୂମିପତନଠାରୁ ଆଠ ଫୁଟ ଉଚ୍ଚ। ଲିଙ୍ଗ ଚତୁଃପାର୍ଶ୍ୱରେ ଥିବା ଶକ୍ତି ନଷ୍ଟ ହୋଇଯାଇ ୧୯୮୦ ମସିହାରେ ନୂତନ ଶକ୍ତି ନିର୍ମାଣ କରାଯାଇଛି । ଶକ୍ତି ନିର୍ମାଣ ସମୟରେ ୧୨ ଫୁଟ ତଳୁ ଲିଙ୍ଗ ଫୁଟି ବାହାରିଥିବାର ଜଣାପଡ଼ିଲା (୨) କନକେଶ୍ୱର ମନ୍ଦିରର ଉଚ୍ଚତା ୮୦ ଫୁଟ ହେଲେ ହେଁ ଏହା ଭାଙ୍ଗିଯାଇଥିବାରୁ ପ୍ରକୃତ ଉଚ୍ଚତା ନିର୍ଣ୍ଣୟ ସମ୍ଭବ ନୁହେଁ । ଏହି ପୀଠର ପ୍ରତ୍ୟେକଟି ମନ୍ଦିର ସୂକ୍ଷ୍ମକାରୁକାର୍ଯ୍ୟ ପୂର୍ଣ୍ଣ । ବିଶେଷତଃ ମୂଳ ମନ୍ଦିର ଅର୍ଥାତ୍ କନକେଶ୍ୱର ମନ୍ଦିରର ଦ୍ୱାରଦେଶରେ ଥିବା ଗଙ୍ଗାଯମୁନା ମୂର୍ତ୍ତି ଓ ପଶ୍ଚିମପାର୍ଶ୍ୱ ମନ୍ଦିରକାନ୍ଥରେ ଥିବା ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ଅତୀବ ରମଣୀୟ । ପୀଠର ପୂର୍ବଦିଗରେ ଏକ ସ୍ୱତନ୍ତ୍ର ଆସ୍ଥାନରେ ଦଶଭୂଜା ମହିଷମର୍ଦ୍ଦିନୀ ଦୁର୍ଗା ବିରାଜିତ । ଏହି ଦେବୀ କନକେଶ୍ୱରୀ ବା କନକଦୁର୍ଗା ନାମରେ ଖ୍ୟାତ। ପୀଠର ଚତୁଃପାର୍ଶ୍ୱରେ ସୂକ୍ଷ୍ମକାରୁକାର୍ଯ୍ୟ ପୂର୍ଣ୍ଣ ପ୍ରତ୍ନବିଭବ ଇତସ୍ତତଃ ପଡ଼ିଅଛି ।

ପ୍ରାଚୀନ କୋଦଳକ ନଗରୀ କେବଳ ଯେ ଶୈବପୀଠ ଥିଲା ତାହା ନୁହେଁ । ଏହା ଏକ ପ୍ରାଚୀନ ଶକ୍ତିପୀଠ ରୂପେ ମାନ୍ୟତା ଲାଭ କରିଥିଲା । ଶକ୍ତିପୀଠ କୋଦାଳକ ନଗରୀର ଅଧିଷ୍ଠାତ୍ରୀ ହେଉଛନ୍ତି ସ୍ତମ୍ଭେଶ୍ୱରୀ । ଏହି ପ୍ରାଚୀନ

ଦେବୀ ମୂର୍ତ୍ତି ଶୁଲ୍କୀବଂଶ ନୃପତିଙ୍କର ଥିଲେ ଇଷ୍ଟଦେବୀ । ସ୍ତମ୍ଭେଶ୍ୱରୀ ଓଡ଼ିଶାର ସର୍ବପ୍ରାଚୀନ ଶାକ୍ତଦେବତା । (୩) ସ୍ତମ୍ଭେଶ୍ୱରୀଙ୍କର ଦାସାନୁଦାସ ଭାବେ ଶୁଲ୍କୀବଂଶର ପ୍ରତ୍ୟେକ ରାଜା ପୁରୁଷାନୁକ୍ରମେ ସ୍ତମ୍ଭଉପାଧିରେ ଭୂଷିତ ହେଉଥିଲେ । କୁଳସ୍ତମ୍ଭଙ୍କ ପ୍ରଦତ୍ତ ତାମ୍ରଶାସନରେ ''ସ୍ତମ୍ଭେଶ୍ୱରୀ ଲବ୍ଧ ବରପ୍ରାସାଦଃ ଶୁଲ୍କିକୁଳେଭୂତ୍ କ୍ଷିତିପଃ'' (୪), ରଣସ୍ତମ୍ଭଙ୍କ ପ୍ରଦର ତାମ୍ରଶାସନରେ ''ଅସ୍ୟ କୁଳଦେବତା ଭଗବତୀ ସ୍ତମ୍ଭେଶ୍ୱରୀ''(୫) ତଥା ଜୟସ୍ତମ୍ଭଙ୍କ ପ୍ରଦତ୍ତ ତାମ୍ରଶାସନରେ ''ସ୍ତମ୍ଭେଶ୍ୱରୀ ଲବ୍ଧବର ପ୍ରଭାବୋ ମହାନୁଭାବଃ ପରମ ମାହେଶ୍ୱରୋ'' (୬) ପ୍ରଭୃତି ଉଲିଖିତ ଥିବାରୁ ଏହା ସ୍ପଷ୍ଟଯେ ଶୁଲ୍କୀବଂଶର କୁଳଦେବତା ଥିଲେ ଏବଂ ସେମାନେ ସ୍ତମ୍ଭେଶ୍ୱରୀଙ୍କ କୃପାରୁ ପରମମାହେଶ୍ୱର ହୋଇପାରିଥିଲେ । ପ୍ରମାଣିତ ହେଉଛି ଶୁଲ୍କୀବଂଶୀ ନୃପତିବୃନ୍ଦ କୋଦାଳକ ଶରୀରରେ ଶିବାଳୟ ନିର୍ମାଣ କରିବା ପୂର୍ବରୁ ଭଗବତୀ ସ୍ତମ୍ଭେଶ୍ୱରୀଙ୍କର ଭବ୍ୟମନ୍ଦିର ନିର୍ମାଣ କରିଥିଲେ । ଯେଉଁ ଶୁଲ୍କୀବଂଶ ନୃପତିବୃନ୍ଦ ଅସଂଖ୍ୟ ଶିବମନ୍ଦିର ନିର୍ମାଣ କରିପାରିଥିଲେ ସେମାନଙ୍କ ପକ୍ଷରେ ଆପଣାର କୁଳଦେବୀଙ୍କ ନିମିତ୍ତ ସୁରମ୍ୟ ମନ୍ଦିର ନିର୍ମାଣ କରିବା ଅସାଧ ନଥିଲା । ଢେଙ୍କାନାଳ ଇତିହାସରେ ସ୍ତମ୍ଭେଶ୍ୱରୀଙ୍କର ମନ୍ଦିର ବହୁକାଳରୁ ଭାଙ୍ଗିଯାଇଥିବା ବର୍ଣ୍ଣନା ହୋଇଛି ।  (୭) ସଂପ୍ରତି ଭଗବତୀ ସ୍ତମ୍ଭେଶ୍ୱରୀ କୁଆଁଳୋ ଗ୍ରାମର ପୂର୍ବଦିଗରେ କଳଦା ଓ ବାଲିସାହି ଗ୍ରାମର ମଧଭାଗରେ ଏକ ବନଲତା ପରିଶୋଭିତ ମୁକ୍ତ ଆସ୍ଥାନରେ ବିରାଜିତା । ମନ୍ଦିରର କୌଣସି ଚିହ୍ନବର୍ଣ୍ଣ ନାହିଁ । ସଂକ୍ଷେପରେ କହିଲେ ଶୁଲ୍କୀବଂଶର କୁଳଦେବତୀ ସ୍ତମ୍ଭେଶ୍ୱରୀ ସଂପ୍ରତି ଶ୍ରୀହୀନ କୋଦାଳକ ନଗରୀରେ ଅନାମଧେୟା ଗ୍ରାମଦେବତୀ ରୂପେ ଆରାଧିତା । ସ୍ଥାନୀୟ ଲୋକେ ଏହାକୁ ଚଣ୍ଡୀ ବୋଲି କହୁଛନ୍ତି । ପ୍ରକୃତପକ୍ଷେ ଏହି ଦେବୀ ଚତୁର୍ଭୁଜା ମହିଷମର୍ଦ୍ଦିନୀ ଚଣ୍ଡୀମୂର୍ତ୍ତି । ପ୍ରତ୍ନତାତ୍ତ୍ୱିକ ଓ ମୂର୍ତ୍ତିକଳା ଦୃଷ୍ଟିରୁ ବିଚାରକଲେ ହୃଦ୍‌ବୋଧ ହୁଏ ଏହି ପ୍ରାଚୀନ ଦେବୀମୂର୍ତ୍ତି ଚତୁର୍ଥ ବା ପଞ୍ଚମ ଶତାବ୍ଦୀର । ପାଞ୍ଚଫୁଟ ଉଚ୍ଚତା ବିଶିଷ୍ଟ ଏହି ଦେବୀମୂର୍ତ୍ତି, ହସ୍ତରେ ଖଡ୍ଗ, ପାନପାତ୍ର ଓ ତୋମର ଧାରଣ ପୂର୍ବକ ସ୍ତମ୍ଭାକାର ଏକ ଶିଳାରୁ ଉତ୍‌ଥିତ । ଶିଳାଟି ଦେବୀଙ୍କ ପୃଷ୍ଠଦେଶରେ ବିଦ୍ୟମାନ । ସୂଚନାଯୋଗ୍ୟ ଯେ ଭଗବତୀ ସ୍ତମ୍ଭେଶ୍ୱରୀଙ୍କୁ କେନ୍ଦ୍ରକରି ସମଗ୍ର ପଶ୍ଚିମ ଓଡ଼ିଶାରେ ପ୍ରାଚୀନକାଳରୁ ଶାକ୍ତ ଉପାସନାର ଧାରା ଅବ୍ୟାହତ ରହିଥିଲା ।

ପ୍ରାଚୀନ କୋଦାଳକ ନଗରୀ ଏକ ସାମରିକ ମର୍ଯ୍ୟାଦାସଂପନ୍ନ ରାଜଧାନୀର ମାନ୍ୟତା ଲାଭ କରିଥିଲା । ପ୍ରାପ୍ତ ତାମ୍ରଶାସନ ସମୂହର ଅଧ୍ୟୟନରୁ ଉପଲବ୍ଧ ହୁଏ, ଶୁଲ୍କୀବଂଶର ପାଞ୍ଚ ଜଣ ରାଜା କୋଦଳନଗରୀରେ ଭୌମକର ରାଜମାନଙ୍କ ସାମନ୍ତ ମଣ୍ଡଳାଧିପତି ସ୍ୱରୂପରେ ରାଜତ୍ୱ କରୁଥିଲେ । ସେମାନେ ହେଉଛନ୍ତି କାଞ୍ଚନସ୍ତମ୍ଭ, କଳହସ୍ତମ୍ଭ (ବିକ୍ରମାଦିତ୍ୟ), ରଣସ୍ତମ୍ଭ (କୁଳସ୍ତମ୍ଭ, ନିଦୟସ୍ତମ୍ଭ, ଅଲାନସ୍ତମ୍ଭ), ଜୟସ୍ତମ୍ଭ (ମହାରାଜାଧିକରାଜ ଓ କୁଳସ୍ତମ୍ଭ (ମହାରାଜ) ।(୮) ପରବର୍ତ୍ତୀକାଳରେ ସେମାନେ ସ୍ୱାଧୀନ ଭାବରେ ରାଜତ୍ୱ କରିଥିବା ମଧ୍ୟ ଅନୁମିତ ହୁଏ । ଢେଙ୍କାନାଳ ଇତିହାସ ବର୍ଣ୍ଣନାନୁଯାୟୀ ଅନଙ୍ଗଭୀମଦେବଙ୍କ ଦ୍ୱାରା ଶୁଲ୍କୀମାନେ ବିତାଡ଼ିତ ହୋଇ ସଂପ୍ରତି କେନ୍ଦୁଝର ଜିଲାର କାଳିଆହତା ଗ୍ରାମରେ ନିବାସ କରୁଅଛନ୍ତି ।(୯) ତୃତୀୟ ଅନଙ୍ଗଭୀମଦେବ ଦ୍ୱାଦଶ ଶତାବ୍ଦୀରେ ଢେଙ୍କାନାଳର ଭୀମନଗରୀ ଦଣ୍ଡପାଟରେ ନିବାସ ପୂର୍ବକ ଶୁଲ୍କୀମାନଙ୍କୁ ପରାସ୍ତ କରିଥିଲେ । ଏଥିରୁ ପ୍ରମାଣିତ ହେଉଛି ଶୁଲ୍କୀବଂଶ ରାଜାମାନେ ଅଷ୍ଟମଶତାବ୍ଦୀରୁ ଦ୍ୱାଦଶଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ଚାରିଶହବର୍ଷ କୋଦାଳକ ନଗରୀରେ ରାଜତ୍ୱ କରୁଥିଲେ । କିନ୍ତୁ ସେମାନଙ୍କ ରାଜତ୍ୱର ସଂପୂର୍ଣ୍ଣ ଇତିହାସ ଏ ଅବଧି ଅନୁପଲବ୍ଧ । ଶୁଲ୍କୀସାମ୍ରାଜ୍ୟ ଉତ୍ତରରେ ପାଲଲହଡ଼ାଠାରୁ ଦକ୍ଷିଣରେ ଅନୁଗୁଳ ପର୍ଯ୍ୟନ୍ତ ଏବଂ ପୂର୍ବରେ ଢେଙ୍କାନାଳଠାରୁ ପଶ୍ଚିମରେ ତାଳଚେର ଶେଷସୀମା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେହି ସମୟରେ କୋଦାଳକନଗରୀ ଏକ ସମୃଦ୍ଧିଶାଳୀ ନଗରୀ ଭାବରେ ସାମନ୍ତ, ଅମାତ୍ୟ, କୁମାରାମାତ୍ୟ, ଅନ୍ତରଙ୍ଗ, ବିଷୟ ପତି ଦଣ୍ଡପାଶିକ, ସ୍ଥାନାନ୍ତରିକ, ଚାଟ ଓ ଭଟ୍ଟ ପରିଶୋଭିତ ଥିଲା । ଏହି ସବୁ ପ୍ରଶାସନିକ ଓ ସାମରିକ ପଦବୀରୁ ହୃଦବୋଧ ହୁଏ ଶୁଲ୍କୀ ରାଜଧାନୀ କୋଦାଳକ ଏକ ସାମରିକ ସାଂସ୍କୃତି ସଂପନ୍ନ ନଗରୀର ମାନ୍ୟତା ଲାଭ କରିଥିଲା । ଐତିହାସିକ ବୃନ୍ଦଙ୍କ ମତରେ ଶୁଲ୍କୀମାନେ ସମରନିପୁଣ ସୋଲାଙ୍କୀ ବଂଶର ଏକ ଶାଖା । ସେମାନଙ୍କ ପ୍ରଦତ୍ତ ତାମ୍ରଶାସନ ମାଳଙ୍କରେ ଖୋଦିତବିରୁଦାବଳୀ ଏହାର ସତ୍ୟତା ପ୍ରତିପାଦନ କରିଥାଏ । ସେମାନେ ରାଣକ, ମହାରାଜ, ମହାରାଜାଧିରାଜ, ପରମ ମାହେଶ୍ୱର, ପରମ ଭଟ୍ଟାରକ, ସକଳ ଗୋନ୍ଦମାଧିପତି, ବିକ୍ରମାଦିତ୍ୟ ପ୍ରଭୃତି ଉପାଧି ଭୂଷିତ ଥିଲେ । ରଣସ୍ତମ୍ଭଙ୍କର ଜରାଗ୍ରାମ ତାମ୍ରଶାସନରୁ ଜଣାଯାଏ ଯେ ଶୁଲ୍କୀ ସାମ୍ରାଜ୍ୟ ବଙ୍ଗଦେଶ ପର୍ଯ୍ୟନ୍ତ ବିସ୍ତୃତ ଥିଲା । (୧୦) ଶୁଲ୍କୀବଂଶୀ କୁଳସ୍ତମ୍ଭ ଦୁର୍ଦ୍ଦାନ୍ତ ଢେଙ୍କା ଶବରକୁ ଯୁଦ୍ଧରେ ନିହତକରି

ବିକ୍ରମାଦିତ୍ୟ ଉପାଧିରେ ଭୂଷିତ ହୋଇଥିଲେ । (୧୧) ଶୁଳ୍କୀମାନଙ୍କର ଶାସନ ପଦ୍ଧତି ଉଚ୍ଚକୋଟୀର ଥିଲା । ସେମାନେ ସମଗ୍ର ରାଜ୍ୟଟିକୁ ଖଣ୍ଡ ବା ବିଷୟରେ ବିଭକ୍ତ କରିଥିଲେ । ଖଣ୍ଡାଧିପ ବା ବିଷୟପତିଙ୍କ କାର୍ଯ୍ୟ କୁମାରାମାତ୍ୟ ଓ ସାମନ୍ତଗଣ ତଦାରଖ କରୁଥିଲେ । ଗଣ୍ଡଦଳପତିମାନଙ୍କୁ ପରାସ୍ତକରି ସେମାନେ ସକଳ ଗୋନ୍ଦମାଧିପତି ବୋଲାଇଥିଲେ । ଶୁଳ୍କୀ ରାଜତ୍ୱରେ ସୈନ୍ୟମାନେ ଚାଟ ଓ ଭଟ ଦୁଇଶ୍ରେଣୀରେ ବିଭକ୍ତ ଥିଲେ । ତାମ୍ରଶାସନରୁ ଉପଲବ୍ଧ ହୁଏ ସମଗ୍ର ରାଜ୍ୟର ଭୂବନ୍ଦୋବସ୍ତ କରାଯାଇ ପ୍ରତ୍ୟେକ ଗ୍ରାମର ସୀମା, ସରହଦ ଓ ଭୂ-ରାଜସ୍ୱ ନିର୍ଦ୍ଧାରଣ କରାଯାଇଥିଲା। ନଗର ଓ ଗ୍ରାମମାନଙ୍କରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଗୋକୁଟ, ତନ୍ତବାୟ ତଥା ଶୌଣ୍ଡିକାଦି ପ୍ରତ୍ୟେକ ସଂପ୍ରଦାୟ ନିବାସ କରୁଥିଲେ । କୁଳସ୍ତମ୍ଭଙ୍କର ତାଳଚେର ତାମ୍ରଶାସନରୁ ଜଣାଯାଏ ଶୁଳ୍କୀମାନେ ରାଜକୀୟ ସ୍ୱାଭିମାନରେ ରୂପ୍ୟନାମକ ଏକ ପ୍ରକାର ମୁଦ୍ରା ପ୍ରଚଳନ କରାଯାଇଥିଲେ (୧୨) ସଂକ୍ଷେପରେ କହିଲେ ଶୁଳ୍କୀମାନେ କୋଦାଳକରେ ପ୍ରାଚୀନ ଭାରତର ଶାସନ ବ୍ୟବସ୍ଥା ପ୍ରବର୍ତ୍ତନ କରାଇଥିଲେ ।

ଶୁଳ୍କୀରାଜତ୍ୱରେ କୋଦାଳକ ନଗରୀ ତଥା ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ବହୁ ମନ୍ଦିର, ପ୍ରାସାଦ ଓ ଦୁର୍ଗା ନିର୍ମାଣ ହୋଇଥିଲେ ଏଗୁଡ଼ିକ ନାଗର (ଉତ୍ତର ଭାରତ) ଓ ଦ୍ରାବିଡ଼ (ଦକ୍ଷିଣଭାରତ) ପ୍ରଥାର ଶିଳ୍ପୀମାନଙ୍କୁ ଅନୁସରଣ କରି ନିର୍ମାଣ କରାଯାଇଥିଲା, ଏଥିରେ ଗୁପ୍ତକାଳୀନ କଳା ଓ ସ୍ଥାପତ୍ୟ ପ୍ରତିଭାତ ହୋଇ ଆଞ୍ଚଳିକ ଓ ଲୌକିକତାର ସ୍ୱାତନ୍ତ୍ୟ ପ୍ରକଟିତ ହୋଇଥିଲା । ସେହି ସମୟରେ ନିର୍ମିତ ମନ୍ଦିରର ଅବୟବ ଓ ଦଣ୍ଡାୟମାନ ଭଙ୍ଗୀ ଦୀର୍ଘ, ସରଳ ତଥା ସ୍ଥୁଳାକୃତି । ମନ୍ଦିର କାନ୍ଥରେ ପୁରାଣବର୍ଣ୍ଣିତ ଶିବ, ପାର୍ବତୀ, ଗଣେଶ କାର୍ତ୍ତିକେୟ, ଦୁର୍ଗା ଓ ଅର୍ଦ୍ଧନାରୀଶ୍ୱର ପ୍ରତିକୃତି ବହୁଳ ଭାବେଖୋଦିତ । ଏତଦ୍‌ଭିନ୍ନ ସୂର୍ଯ୍ୟ, ଚନ୍ଦ୍ର, ଗଙ୍ଗା, ଯମୁନା, ଅଷ୍ଟଗ୍ରହ, ପୂର୍ଣ୍ଣକୁମ୍ଭ ଓ ମିଥୁନ ଚିତ୍ର ମଧ ପରିଦୃଷ୍ଟ ହୁଏ । ସାମାଜିକ ଜୀବନରେ ଧର୍ମର ପ୍ରାଧାନ୍ୟ ବୃଦ୍ଧି ନିର୍ମିତ ମନ୍ଦିରଗୁଡ଼ିକୁ ଚତୁର୍ବର୍ଗ ଫଳପ୍ରାପ୍ତିର ପ୍ରତୀକ ଭାବରେ ନିର୍ମାଣ କରାଯାଇଥିଲା । ଏହା ମାଧମରେ ଶୁଳ୍କୀନୃପତିଛନ୍ଦ ଧର୍ମର ପରିପ୍ରସାର ଘଟାଇଥିଲେ ।

ଶୁଳ୍କୀ ରାଜାମାନେ ବୈଦିକଧର୍ମର ପୃଷ୍ଟପୋଷକଥିଲେ । ସେମାନେ ବୈଦିକ ବ୍ରାହ୍ମଣ ଓ ବୈଷ୍ଣବଙ୍କୁ ଭୂସଂପତ୍ତି ଦାନ କରି କୋଦାଳକ ରାଜ୍ୟରେ ଆର୍ଯ୍ୟସଭ୍ୟତାର ବିସ୍ତାର କରିଥିଲେ । ଶୁଳ୍କୀ ରାଜତ୍ୱରେ ଢେଙ୍କାନାଳ, ତାଳଚେର

ଓ ଅନୁଗୁଳ ଅଞ୍ଚଳରେ ବହୁତ ବ୍ରାହ୍ମଣ ଶାସନ ପ୍ରତିଷ୍ଠିତ ହୋଇଥିଲା । ଏତଦ୍‌ଭିନ୍ନ କୁଳସ୍ତମ୍ଭ ବେଦବିଦ୍ ବ୍ରାହ୍ମଣ ଅନନ୍ତଙ୍କୁ ସିଙ୍ଗଡ଼ା ଗ୍ରାମ, ପରମବୈଷ୍ଣବ ବୃହସ୍ପତି ଭଟ୍ଟଙ୍କୁ ଝାରବେଡ଼ା ଗ୍ରାମ, ରଣସ୍ତମ୍ଭ ବେଦାଧାୟୀ ସୁଦର୍ଶନଙ୍କୁ ଯୋଡ଼ ଗ୍ରାମ, ବେଦଜ୍ଞ ବ୍ରାହ୍ମଣ ପାଚୁକଙ୍କୁ ଜରାଗ୍ରାମ, ଜୟସ୍ତମ୍ଭ ବେଦତତ୍ତ୍ୱ ଜ୍ଞାତା ବାମନ ଭଟ୍ଟଶର୍ମ୍ମଣଙ୍କୁ ଚାନ୍ଦପୁର ଗ୍ରାମ,ଋଷିବଙ୍କଙ୍କୁ ଲୋଳପୁର ଗ୍ରାମ ଓ ଚିତ୍ରଦୀକ୍ଷୀତଙ୍କୁ ଶ୍ରୀମୂଳା ଗ୍ରାମ ଦାନ କରିଥିଲେ । କୋଦାଳକ ରାଜସଭାରେ ବିଦ୍ୱାନମାନଙ୍କର ଆଦର ରହିଥିଲା । ସେହି ସମୟରେ ସୁପ୍ରସିଦ୍ଧ ବେଦଭାଷ୍ୟକାର ମହେନ୍ଦ୍ରସ୍ୱାମୀ ଓ ସ୍କନ୍ଦସ୍ୱାମୀ ରାଜା ଜୟସିଂହଙ୍କଠାରୁ ତାମ୍ରଶାସନ ପାଇ ଢେଙ୍କାନାଳର ମାର୍ଥାପୁର ଶାସନ ବସାଇଥିଲେ । ଏତଦ୍‌ଭିନ୍ନ ଭୌମରାଜା ଓ ରାଣୀବୃନ୍ଦ ଏହି ସମୟରେ ବ୍ରାହ୍ମଣୀ ଉପତ୍ୟକାର ଅନେକ ଗ୍ରାମ ବୈଦିକ ପଣ୍ଡିତ ଓ ବୌଦ୍ଧଶ୍ରବଣଙ୍କୁ ଦାନକରି ଏହି ଅଞ୍ଚଳରେ ବୈଦିକ ଓ ବୌଦ୍ଧ ସଂସ୍କୃତିର ପରିପ୍ରସାର ଘଟାଇଥିଲେ । ଶୁଲ୍କୀରାଜତ୍ୱରେ କେବଳ ଯେ ବୈଦିକ ସଂସ୍କୃତିର ବିକାଶ ଘଟିଥିଲା ତାହା ନୁହେଁ, ଏହି ସମୟରେ ବ୍ରାହ୍ମଣୀନଦୀ ଗର୍ଭରେ ଭୀମକାଣ୍ଡ ଓ ସରାଙ୍ଗଠାରେ ଦୁଇଟି ବୃହତ୍‌କାୟ ଅନନ୍ତଶୟନ ବିଷ୍ଣୁପ୍ରତିମା ନିର୍ମାଣ ହୋଇ ବୈଷ୍ଣବ ସଂସ୍କୃତିର ପ୍ରସାର ଘଟିଥିଲା । ଉଲ୍ଲେଖଯୋଗ୍ୟଯେ କୋଦାଳକନଗରୀ ସନ୍ନିକଟ ବ୍ରାହ୍ମଣୀନଦୀର ଦକ୍ଷିଣ ପାର୍ଶ୍ୱରେ ସେହି ସମୟରେ ଜୟାଶ୍ରମ ବୌଦ୍ଧବିହାର ପ୍ରତିଷ୍ଠିତ ହୋଇଥିବ ଯାହାକି ସଂପ୍ରତି ପଶ୍ଚିମେଶ୍ୱର ଶିବାଳୟ ଭାବରେ ପ୍ରସିଦ୍ଧି ଲାଭ କରିଅଛି । ଅନୁମିତ ହୁଏ, ସେହି ସମୟରେ ତାଳଚେର ବଜ୍ରକୋଟଠାରୁ ଢେଙ୍କାନାଳର ଶେଷସୀମା ପର୍ଯ୍ୟନ୍ତ ପାର୍ବତ୍ୟାଞ୍ଚଳ ବ୍ରାହ୍ମଣୀ ଅବବାହିକାରେ ଏକ ଉନ୍ନତ ସଭ୍ୟତାର ବିକାଶ ଘଟିଥିଲା ।

ଐତିହ୍ୟମୟୀ ପ୍ରାଚୀନ କୋଦାଳକ ନଗରୀ ସଂପ୍ରତି ବିଧ୍ୱଂସ୍ତ ପ୍ରାୟ । ଏଠାରେ ଥିବା ପ୍ରତ୍ନବିଭବ ସମୂହକୁ ବହୁକାଳ ସୁରକ୍ଷିତ ପ୍ରତ୍ନବିଭବ ଭାବରେ ଉଦ୍‌ଘୋଷଣା କରାଯାଇଥିଲେ ହେଁ ସଂରକ୍ଷଣ ନିମିତ୍ତ ସମୁଚିତ ପଦକ୍ଷେପ ନିଆଯାଇନାହିଁ । ସୂଚନାଯୋଗ୍ୟ ଯେ ଅନ୍ୟାନ୍ୟ ପ୍ରତ୍ନସଂପଦ ଆବିଷ୍କାର ନିମିତ୍ତ ଭୂଖନନ ସକାଶେ କୌଣସି ଯୋଜନା ଗ୍ରହଣ କରାଯାଇନାହିଁ । ସଂପ୍ରତି ଭଗ୍ନ ମନ୍ଦିର ସମୂହର ସ୍ଥିତି ବିପଜ୍ଜନକ । ସେଗୁଡ଼ିକ ସୁରକ୍ଷା ନିମିତ୍ତ ଅଥବା ବିକ୍ଷିପ୍ତ ଭାବରେ ପଡ଼ିରହିଥିବା ପ୍ରତ୍ନବିଭବର ସଂରକ୍ଷଣ ନିମିତ୍ତ ବିଧିବଦ୍ଧ ପଦକ୍ଷେପ ନିଆଯାଇନାହିଁ । ପ୍ରାଚୀନ କୋଦାଳକ ନଗରୀ ସମେତ ବ୍ରାହ୍ମଣୀ ପାର୍ବତ୍ୟାଞ୍ଚଳ

ଅବବାହିକାର ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଅଧ୍ୟୟନ ହୋଇପାରିଲେ ଅନେକ ଅନାଲୋଚିତ ଐତିହ୍ୟ ଲୋକଲୋଚନକୁ ଆସିପାରିବ ।



**ପାଦଟୀକା :**


୧ । J.B.O.R.S vol-II page 396-400

୨ । ପୁଣ୍ୟପୀଠ କପିଳାସ-ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର, ପ୍ରକାଶନ ବିଭାଗ ଭାରତସରକାର, ପାତିଆଲା ହାଉସ୍, ନୂଆଦିଲ୍ଲୀ ୧୯୯୫ ପୃ-୧୨୦

୩ । ଓଡ଼ିଶାର ଶାକ୍ତ ସଂସ୍କୃତି, ଗ୍ରନ୍ଥମନ୍ଦିର, ୧୯୮୩ ପୃ-୬୨

୪ । J.B.O.R.S. vol-IV page 151 to 157

୫ । J.B.O.R.S. vol -II page 396 - 400

୬ । J.B.O.R.S. vol-II page 412-417

୭ । ଢେଙ୍କାନାଳ ଇତିହାସ, ପଣ୍ଡିତ ରାମଚନ୍ଦ୍ର ନନ୍ଦ, ୧୯୨୯ ପୃ-୧୩୬

୮ । ଓଡ଼ିଶା ଇତିହାସ, ଡକ୍ଟର ହରେକୃଷ୍ଣ ମହତାବ ପୃ ୯୫

୯ । ଢେଙ୍କାନାଳ ଇତିହାସ ପୃ-୧୪୯

୧୦ । J.B.O.R.S. vol-IV page 168-171.

୧୧ । District Gazzetter, Dhenkanala page 51.

୧୨ । Epigrapica Indica Vol - XII - page 156-158.

# ଶୈଳ ଶୈବପୀଠ କପିଳାସ

ସବୁଜ ବନାନୀ, ଶସ୍ୟଶାମଳା ଭୂଖଣ୍ଡ, ପ୍ରାକୃତିକ ଶୋଭାମୟୀ ପର୍ବତ, ପୂଣ୍ୟତୋୟା ସ୍ରୋତସ୍ୱିନୀ ତଥା ନଭଶ୍ଚୁମ୍ବୀ ମନ୍ଦିର ପରିଶୋଭିତ ଓଡ଼ିଶାର ମଧ୍ୟସ୍ଥଳରେ ଶିବଙ୍କର ନିତ୍ୟନିବାସସ୍ଥଳୀ, କପିଳାସ ଗିରିଶୃଙ୍ଗ ବିଦ୍ୟମାନ । ଏହି ମହିମାବିମଣ୍ଡିତ ରମଣୀୟ ଶୈବକ୍ଷେତ୍ର ଅଗଣିତ ସିଦ୍ଧ ସାଧକ, ଯୋଗୀ ଓ ଶ୍ରଦ୍ଧାଳୁ ଭକ୍ତଙ୍କୁ ହଜାର ହଜାର ବର୍ଷ ଧରି ଆକର୍ଷଣ କରିଆସିଛି । ଗିରିତୀର୍ଥ କପିଳାସର ପବିତ୍ର କୁଣ୍ଡ ପାପନାଶିନୀ ନିର୍ଝରିଣୀର ଜଳ ପରମପାବନ ଓ ଆୟୁଷ୍ୟ । ପ୍ରାକୃତିକ ଶୋଭା ବିମଣ୍ଡିତ ପର୍ଯ୍ୟଟନ ସ୍ଥଳୀ ତଥା ସ୍ୱାସ୍ଥ୍ୟକର ଶୈଳନିବାସ ରୂପେ ସୁପ୍ରସିଦ୍ଧ କପିଳାସ ଓଡ଼ିଶାର ପର୍ଯ୍ୟଟନ ମାନଚତ୍ରରେ ସ୍ୱତନ୍ତ୍ର ମର୍ଯ୍ୟାଦାରେ ପରିଚିହ୍ନିତ ।

ଶୈଳତୀର୍ଥ କପିଳାସ ଢେଙ୍କାନାଳ ସହରଠାରୁ ୨୪ କ.ମି ଉତ୍ତର ପୂର୍ବ କୋଣରେ ଅବସ୍ଥିତ । ବିଷୁବରେଖାର ଉତ୍ତରରରେ ୨୦ ରୁ ୨୧ ଅକ୍ଷାଂଶ ଓ ୮୫ରୁ ୮୬ ଦ୍ରାଘିମା ମଧ୍ୟରେ ବିରାଜିତ ଏହି ପ୍ରାଚୀନ ତୀର୍ଥର ଦୂରତାକୋଲ୍‌କତାଠାରୁ ୫୧୨ କି.ମି. ଓ କଟକ ଠାରୁ ୭୦ କି.ମି ଓଡ଼ିଶାର ରାଜଧାନୀ ଭୁବେନଶ୍ୱର ଠାରୁ ଦୂରତା ୧୨୩ କି.ମି । ଦକ୍ଷିଣ ପୂର୍ବ ରେଳପଥରେ ଢେଙ୍କାନାଳଷ୍ଟେସନ ଏହି ପୀଠର ନିକଟବର୍ତ୍ତୀ ରେଳଷ୍ଟେସନ ହିମାଳୟ ସମ ମହିମାନ୍ୱିତ କପିଳାସ ସାତଗୋଟି ଶୃଙ୍ଗ ବିମଣ୍ଡିତ ଏକ ବିରାଟ ପର୍ବତଶ୍ରେଣୀ । ତନ୍ମଧ୍ୟରୁ ୨୨୩୯ ଫୁଟ ଉଚ୍ଚ ସର୍ବୋଚ୍ଚ ଶୃଙ୍ଗର କଟିଦେଶରେ ୧୫୦୦ ଫୁଟ ଉଚ୍ଚରେ ସୁରମ୍ୟ ରକ୍ତାଶୋକ ପରିବେଷ୍ଟିତ ଗିରିକନ୍ଦରରେ ଶିବଙ୍କର ନିତ୍ୟନିବାସସ୍ଥଳୀ । ପର୍ବତର ପାଦଦେଶରୁ ଶୈବପୀଠ ପର୍ଯ୍ୟନ୍ତ ଯିବାନିମିତ୍ତ ଦୁଇଗୋଟି ରାସ୍ତା ବିଦ୍ୟମାନ । ଗାଡ଼ିମଟରରେ ଯିବାନିମିତ୍ତ ପାଞ୍ଚ କି.ମି. ବ୍ୟାପୀ ବାରବାଙ୍କ ପକ୍କା ସଡ଼କ ଏବଂ ୧୩୫୨ ଗୋଟି ପାବଚ୍ଛମଣ୍ଡିତ ଶିଖରାସ୍ତା । ଏହି ପୁରାଣ ପ୍ରସିଦ୍ଧ ଗିରିକନ୍ଦରରେ ଚାରିଗୋଟି ମନ୍ଦିର, ଚାରିଗୋଟି ମଣ୍ଡପ, ପାଞ୍ଚଗୋଟି ପବିତ୍ର କୁଣ୍ଡ ତଥା ପାଞ୍ଚଗୋଟି ପ୍ରସିଦ୍ଧ ମଠ ରହିଅଛି । ତନ୍ମଧ୍ୟରୁ ଶ୍ରୀଚନ୍ଦ୍ରଶେଖରଙ୍କ ମନ୍ଦିରର ଉଚ୍ଚତା ୬୦ ଫୁଟ । ଏହାବ୍ୟତୀତ ପାର୍ବତୀ, ବିଶ୍ୱନାଥ

ଓ ନାରାୟଣଙ୍କ ମନ୍ଦିର ଏଠାରେ ବିଦ୍ୟମାନ । ଶ୍ରୀଚନ୍ଦ୍ରଶେଖରଙ୍କ ମୁଖ୍ୟମନ୍ଦିର ଏକ ରେଖଦେଉଳ । ଏହି ମନ୍ଦିରର ଗମ୍ଭୀରାରେ ସ୍ୱଂୟମ୍ଭୁଲିଙ୍ଗ ଚନ୍ଦ୍ରଶେଖରଙ୍କ ସହିତ ଏକ ବୃହତ୍ ଅନନ୍ତନାଗ ପରିବେଷ୍ଟିତ ଶାଳଗ୍ରାମ ବିରାଜିତ। ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଗଣେଶ, ପଶ୍ଚିମପାର୍ଶ୍ୱରେ କାର୍ତ୍ତିକେୟ ଓ ଉତ୍ତର ପାର୍ଶ୍ୱରେ ଅପର୍ଣ୍ଣା ଗୋଟିଏ ଗୋଟିଏ କ୍ଷୁଦ୍ର ମନ୍ଦିରରେ ବିରାଜିତ । ଉତ୍ତର ଦିଗରେ ସ୍ୱତନ୍ତ୍ରଭାବେ ପାର୍ବତୀ ମନ୍ଦିର ନିର୍ମିତ ଏବଂ ମନ୍ଦିରରେ ପାର୍ବତୀଙ୍କ ସହିତ ନୃସିଂହ ପୂଜିତ । ଶ୍ରୀଚନ୍ଦ୍ରଶେଖରଙ୍କ ମନ୍ଦିର ଚୂଡ଼ାରେ ଅର୍ଦ୍ଧଚକ୍ର ପୀନାକ ସୁଶୋଭିତ । ବାହନ ବୃଷଭଙ୍କ ବ୍ୟତୀତ ଭୋଗମଣ୍ଡପରେ ଗରୁଡ ବୃଷଭ ଯୁଗଳମୂର୍ତ୍ତିଙ୍କ ସମେତ ଅନେକ ବୃଷଭ ବିରାଜିତ । ମନ୍ଦିରର ପଶ୍ଚିମପାର୍ଶ୍ୱ କାନ୍ଥରେ ଶ୍ରୀଜଗନ୍ନାଥ ଚିତ୍ର ଖୋଦିତ । ଭୋଗମଣ୍ଡପ ଓ ଜଗମଣ୍ଡପର ସୂକ୍ଷ୍ମକାରୁକାର୍ଯ୍ୟ ଉତ୍କଳୀୟ ଶିଳ୍ପକଳାର ଚରମ ନିଦର୍ଶନ । ମନ୍ଦିରରେ ଶିଳ୍ପକଳା ନଥିଲେହେଁ ମୂର୍ତ୍ତିଗୁଡ଼ିକ ଶିଳ୍ପକଳା ପରିପୂର୍ଣ୍ଣ । ପୂର୍ବଦିଗରେ ବିଶ୍ୱନାଥଙ୍କ ମନ୍ଦିର ଓ ନାରାୟଣଙ୍କ ମନ୍ଦିର । ବିଶ୍ୱନାଥ ମନ୍ଦିରର ଦକ୍ଷିଣରେ ଜଗଦ୍‌ଗୁରୁ ଶ୍ରୀଧର ସ୍ୱାମୀଙ୍କ ସମାଧିପୀଠ ଏବଂ ବ୍ରହ୍ମଚାରୀ ମଠ । ନାରାୟଣଙ୍କ ପାଦତଳେ ଗଙ୍ଗା ପ୍ରବାହମାନ। । ଏହି ମନ୍ଦିରର ପୂର୍ବ ପାର୍ଶ୍ୱରେ ମଣିକର୍ଣ୍ଣିକା କୁଣ୍ଡ ଏବଂ ଉତ୍ତର ପାର୍ଶ୍ୱରେ ହରିହରମଠ ଓ ହରିହର କୁଣ୍ଡ । ଶ୍ରୀ ଚନ୍ଦ୍ରଶେଖରଙ୍କ ମନ୍ଦିରର ଈଶାନ୍ୟ କୋଣରେ ପୟୋଽମୃତ କୁଣ୍ଡ ଓ ଦକ୍ଷିଣ ଦିଗରେ ପାପନାଶିନୀ ଜମ୍ବୁକୁଣ୍ଡ । ପାବଚ୍ଛରାସ୍ତାରେ ଧୂନିମଠ ଓ ମହାବୀର କୁଣ୍ଡ । ମନ୍ଦିର ସିଂହଦ୍ୱାରରେ ଭୈରବୀ ମଣ୍ଡପରେ ଭୈରବୀ ଏବଂ ବଡ଼ଦାଣ୍ଡରେ ହନୁମାନଙ୍କ ମନ୍ଦିର । ଏତଦ୍‌ଭିନ୍ନ ପାପପଦ୍ମ ଗୁମ୍ଫା, କେନ୍ଦୁପାଣିଆ ଗୁମ୍ଫା, ଆଟେଣ୍ଡିପାଣିଆ ଗୁମ୍ଫା, ସୀତାଙ୍କ ଏନ୍ତଡ଼ିଶାଳ ଗୁମ୍ଫା, ମହିମା ତପୋବନ ଏବଂ ପ୍ରାଚୀନ ବିଲଙ୍କାଗଡ଼ର ନିର୍ଜଳ ଗଡ଼ଖାଇ ଓ ଭଗ୍ନାବଶେଷ ରହିଅଛି । କପିଳାସର ସର୍ବୋଚ୍ଚ ଶୃଙ୍ଗର ନାମ ଦେବସଭା । ପୀଠ ଉପରେ ପୂର୍ତ୍ତବିଭାଗ ଡାକବଙ୍ଗଳା ଓ ବିଶ୍ରାମାଗାର, ଧର୍ମଶାଳା ତଥା ପାଦଦେଶରେ ମୃଗବିହାର, ବିଜ୍ଞାନ ଉପବନ, ଯାତ୍ରୀ ବିଶ୍ରାମାଗାର ଓ ପାନ୍ଥଶାଳା ବିଦ୍ୟମାନ ।

ପୁରାଣ ବର୍ଣ୍ଣନାନୁଯାୟୀ କପିଳାସ ପର୍ବତ ମହାଦେବଙ୍କର ନିତ୍ୟନିବାସ ସ୍ଥଳୀ କୈଳାସର ଅଂଶବିଶେଷ ଥିଲା । ହିମାଳୟ ପର୍ବତମାଳାସ୍ଥିତ କୈଳାସଶୃଙ୍ଗକୁ ମହାପ୍ରତାପୀ ରାବଣ ଉତ୍ପାଟନ କରି ସ୍ୱରାଜ୍ୟ ଲଙ୍କାକୁ ନେଉଥିବା ସମୟରେ ଶିବଙ୍କ ଆଶ୍ରମସ୍ଥିତ ଶୃଙ୍ଗ ପବିତ୍ର ଓଡ଼ିଶାରେ ପତିତ ହୋଇ ଦ୍ୱିତୀୟ କୈଳାସ ବା

କପିଳାସ ନାମରେ ପ୍ରସିଦ୍ଧି ଲାଭ କଲା । କପିଳସଂହିତା ବର୍ଣ୍ଣନାରେ ରାଜା ସୌଦାସ ଏହି ପବିତ୍ର ଗିରିକନ୍ଦରରେ ତପସ୍ୟା କରି ସିଦ୍ଧିଲାଭ କରିଥିଲେ । ଭଗବାନ କପିଳ ଓ ମାର୍କଣ୍ଡେୟ ଋଷି ଏହି ପୀଠରେ ତପସ୍ୟା କରିଥିଲେ । ଶିବ ପୁରାଣରେ କଥିତଅଛି କାର୍ତ୍ତିକେୟ ଏହି ପୁଣ୍ୟତୀର୍ଥରେ ସ୍ନାନକରି ଶିଖରେଶ୍ୱରଙ୍କୁ ଦଶର୍ନ କରିଥିଲେ । ପୁରାଣ ମତରେ ଏହି ପବିତ୍ର ତୀର୍ଥରେ ଶିବରାତ୍ରି ବ୍ରତ ପାଳନ କଲେ ଶିବଲୋକ ପ୍ରାପ୍ତି ହୁଏ । ପ୍ରାଚୀନ ଯୁଗରେ ସ୍ୱୟଂ ଗୋରେଖନାଥ ଏହି ପୀଠରେ ଅଗଣିତ ଯୋଗୀଙ୍କୁ ଯୋଗଶିକ୍ଷା ପ୍ରଦାନ କରିଥିଲେ । ମଧ୍ୟଯୁଗରେ ମହନ୍ତ ପରଶୁନାଥ ଗୋସ୍ୱାମୀ, ସ୍ୱାମୀ ମହେଶ୍ୱରାନନ୍ଦ, ସ୍ୱାମୀ ରାମକୃଷ୍ଣାନନ୍ଦ ପ୍ରଭୃତି ଅଗଣିତ ମହାତ୍ମା ଏହି ପୀଠରେ ଯୋଗସାଧନା କରିଥିଲେ। ପୀଠସ୍ଥିତ ବ୍ରହ୍ମଚାରୀମଠରେ ଜଗଦ୍‌ଗୁରୁ ଶ୍ରୀଧରସ୍ୱାମୀ ନୃସିଂହମନ୍ତ୍ରରେ ସିଦ୍ଧି ଲାଭ କରି ଗୀତା, ଭାଗବତ ଓ ବିଷ୍ଣୁପୁରାଣ ପ୍ରଭୃତି ଦୁର୍ଲଭ ଶାସ୍ତ୍ରର ଭାଷ୍ୟ ରଚନା କରିଥିଲେ । ପ୍ରେମାବତାର ଗୌରାଙ୍ଗ ମହାପ୍ରଭୁ ବୃନ୍ଦାବନ ଯାତ୍ରାକାଳରେ ଏହି ପୀଠରେ ପଦାର୍ପଣ ପୂର୍ବକ ପଦଚିହ୍ନ ରଖିଯାଇଛନ୍ତି । ପାଦପଦ୍ମ ଗୁମ୍ଫାରେ ଦୁଇଜଣ ଉଗ୍ରତପସ୍ୱୀଙ୍କର ପଦଚିହ୍ନ ରହିଛି । ମହିମାସ୍ୱାମୀ ଏହି ପବିତ୍ର ପର୍ବତରେ ଦୀର୍ଘ ଚବିଶବର୍ଷ ତପ ଆଚରଣ କରି ସିଦ୍ଧି ଲାଭ କରିଥିଲେ । ଯୁଗେ ଯୁଗେ କପିଳାସ ମହାଯୋଗୀ ଶିବ ଓ ଅଗଣିତ ଯୋଗୀଙ୍କ ଯୋଗସ୍ଥଳୀ ରୂପେ ସୁବିଖ୍ୟାତ।

କପିଳାସ ପୀଠରେ ଦୁଇଗୋଟି ଶିଳାଲେଖ ରହିଅଛି । ସେଥିମଧ୍ୟରୁ ଗୋଟିଏ ଦଧିନଉତି ଶିଳାଲେଖ ଓ ଅପରଟି ବୃଷଭ ଶିଳାଲେଖ। ସ୍ୱର୍ଗତ ପଣ୍ଡିତ ରାମଚନ୍ଦ୍ର ନନ୍ଦ ୧୯୨୯ ମସିହାରେ ସୁରଚିତ ''ଢେଙ୍କାନାଳ ଇତିହାସ'' ରେ ପ୍ରଥମେ ଏହି ଶିଳାଲେଖ ଦୁଇଟିର ପାଠୋଦ୍ଧାର କରିଥିଲେ । ପରବର୍ତ୍ତୀ କାଳରେ ୧୯୪୮ ମସିହାରେ ଡକ୍ଟର ହରେକୃଷ୍ଣ ମହତାବ ଶ୍ରୀଯୁକ୍ତ ବିପିନ୍‌ବିହାରୀନାଥଙ୍କ ଦ୍ୱାରା ଦଧିନଉତି ଶିଳାଲେଖର ପାଠୋଦ୍ଧାର କରାଇ ଓଡ଼ିଶା ଇତିହାସରେ ଲିପିବଦ୍ଧ କରାଇଛନ୍ତି । ପୁନର୍ବାର ଦୀନେଶଚନ୍ଦ୍ର ସରକାର Epigraphica Indica Vol-XXXIII ରେ ଏହି ଦଧିନଉତି ଶିଳାଲେଖର ପାଠୋଦ୍ଧାର କରିଥିଲେ ଏବଂ ଡକ୍ଟର ସତ୍ୟନାରାୟଣ ରାଜଗୁରୁ Inscriptions of Orissa Vol-V Part I ରେ ଏହାର ଶୁଦ୍ଧ ପାଠୋଦ୍ଧାର କରିଛନ୍ତି । ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ରଙ୍କ ''ପୁଣ୍ୟପୀଠ କପିଳାସ'' ଗ୍ରନ୍ଥରେ ଏହି ଶୁଦ୍ଧ ପାଠୋଦ୍ଧାର ଓ ବୃଷଭ ଶିଳାଲେଖ ମୁଦ୍ରିତ । ଶିଳାଲେଖ ଦୁଇଟି ଅଧ୍ୟୟନରୁ ହୃଦ୍‌ବୋଧ ହୁଏ

ପ୍ରଥମେ ଚନ୍ଦ୍ରଶେଖରୀ ଏହି ପୀଠରେ ମନ୍ଦିର ନିର୍ମାଣ କରିଥିଲେ । କୌଣସି କାରଣରୁ ସେହି ମନ୍ଦିର ଭାଙ୍ଗିଯିବାରୁ ବର୍ତ୍ତମାନର ମନ୍ଦିରଟି ପ୍ରଥମ ନରସିଂହ ଦେବଙ୍କ ଦ୍ୱାରା ୧୨୪୬ ଖ୍ରୀଷ୍ଟାବ୍ଦ ଅପ୍ରେଲ୍ ୩୦ ତାରିଖ ବୈଶାଖ ଶୁକ୍ଳ ତ୍ରୟୋଦଶୀ ତିଥି ସୋମବାର ପ୍ରତିଷ୍ଠିତ । ବୃଦ୍ଧେଶ୍ୱରଙ୍କ ମନ୍ଦିର ତଦୀୟପିତା ତୃତୀୟ ଅନଙ୍ଗଭୀମଦେବଙ୍କ ଦ୍ୱାରା ନିର୍ମିତ । ପରବର୍ତ୍ତୀ କାଳରେ ଦେଓଗାଁର ବଳଦେବଜୀଉ ମନ୍ଦିର ଗଜପତି ପ୍ରତାପରୁଦ୍ରଦେବଙ୍କ ଦ୍ୱାରା ଓ ନାରାୟଣ ମନ୍ଦିର ଢେଙ୍କାନାଳର ରାଣୀ ପୁଣ୍ୟଶୀଳା ଅନ୍ନପୂର୍ଣ୍ଣା ମହାଦେବୀଙ୍କ ଦ୍ୱାରା ନିର୍ମିତ ।

କପିଳାସ ମନ୍ଦିରରେ ତିନିଧୂପ ପାଞ୍ଚ ଅବକାଶ ରୀତିରେ ଦୈନନ୍ଦିନ ନୀତି ନିଯୋଗ ଓ ସେବା ପୂଜା ସମାହିତ । ପ୍ରାତଃକାଳରେ ଶଙ୍ଖଧ୍ୱନି କରାଯାଇ ଚନ୍ଦ୍ରଶେଖରଙ୍କ ଯୋଗନିଦ୍ରା ଭଙ୍ଗହେବା ପରେ ଜୟ ମଙ୍ଗଳଆଳତି, ସ୍ନାନମାର୍ଜନା ପରେ ସୂର୍ଯ୍ୟପୂଜା ହୋଇ ବଲ୍ଲଭ ଭୋଗ, ୯ଟାରେ ସକାଳ ଧୂପ ୧୨ଟାରେ ଭୋଗମଣ୍ଡପ, ଦୁଇଟାରେ ମଧ୍ୟାହ୍ନ ଧୂପ ଓ ପହଡ଼, ଅପରାହ୍ନ ୪ଟାରେ ଟେରାପଣା, ସନ୍ଧ୍ୟାରେ ସନ୍ଧ୍ୟାଆଳତି, ରାତ୍ରି ୮ଟାରେ ଓ ପରେ ପରେ ବଡ଼ସିଂହାର ହୋଇ ଠାକୁର ଯୋଗନିଦ୍ରାଭିଭୂତ ହୋଇଥାନ୍ତି । ଦୈନିକ ଭୋଗ ମଧ୍ୟରେ ଅନ୍ନ, ଡାଲି, ବ୍ୟଞ୍ଜନ, କାନିକା, ପୁଳି, ଚକା ଓ ବଡ଼ସିଂହାର ଖଜା ପ୍ରଧାନ । ପୀଠର ପର୍ବପର୍ବାଣୀ ମଧ୍ୟରେ ଶିବରାତ୍ରି, ପଣାସଂକ୍ରାନ୍ତି, ଶିବ ବିବାହ, ଚନ୍ଦନ, ରଥଯାତ୍ରା, ଦୁର୍ଗୋତ୍ସବ, ମକର, ଦେବାଭିଷେକ, ପ୍ରଭୃତି ପ୍ରସିଦ୍ଧି ଲାଭ କରିଛି । ଶିବରାତ୍ରିରେ ଲକ୍ଷାଧିକ ଭକ୍ତ ଏହି ଏକତ୍ରିତ ହୋଇଥାନ୍ତି । ବିଶ୍ୱକଲ୍ୟାଣ କାମନାରେ ମହାଶିବରାତ୍ରିର ସନ୍ଧ୍ୟାରୁ ପୀଠରେ ବିଶେଷ ଷୋଳପୂଜାର୍ଚ୍ଚନା କରାଯାଏ । ବୈଦିକ ବିଧିର ଚାରିପ୍ରହର ନିମିତ୍ତ ଠାକୁରଙ୍କୁ ଚାରିଥର ସ୍ନାନ କରାଯାଏ । ପ୍ରତ୍ୟେକ ପ୍ରହର ନିମିତ୍ତ ଚାରିବେଦର ଚାରିଥର ଲେଖାଏ ଷୋହଳଥର ପୂଜା ହେବାପରେ ଶତରୁଦ୍ର ମନ୍ତ୍ରୋଚ୍ଚାରଣ ପୂର୍ବକ ଶୁଦ୍ଧ ପଇଡ଼ ଜଳରେ ମହାରୁଦ୍ରାଭିଷେକ ଅନୁଷ୍ଠିତ ହୁଏ । ରୁଦ୍ରାଭିଷେକ ପରେ ଠାକୁର ବହୁମୂଲ୍ୟ ସ୍ୱର୍ଣ୍ଣରତ୍ନ ବିଭୂଷିତ ନାଗାଭରଣ ବେଶ ହୁଏ । ଏହା ପରେ ହରିହର ଭେଟ ହୋଇ ମହାଦୀପ ମନ୍ଦିର ଚୂଡ଼ାକୁ ଉଠେ ମହାଦୀପ ଦର୍ଶନ କରି ହଜାର ହଜାର ଭକ୍ତ କୃତ୍ୟକୃତ୍ୟ ହୁଅନ୍ତି ତଥା ହରିବୋଲ ହୁଳୁହୁଳି ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହୁଏ । ପୀଠର ପାଦଦେଶରେ ଜାଗରଯାତ୍ରା ସପ୍ତାହବ୍ୟାପୀ ଚାଲେ ।

ସୁରମ୍ୟ ଶୈଳତୀର୍ଥ କପିଳାସ ପର୍ଯ୍ୟଟନସ୍ଥଳୀ ତଥା ଏହି ତୀର୍ଥସ୍ଥିତ ପ୍ରାଚୀନ ମନ୍ଦିର ସୁରକ୍ଷିତ ପ୍ରତ୍ନବିଭବ ଭାବରେ ଉଦ୍‌ଘୋଷିତ । ଏହି ପରମ ଯୋଗପୀଠର ପ୍ରାକୃତିକ ବିଭବ, ମଞ୍ଜୁଳପରିବେଶ ସ୍ୱଚ୍ଛନିର୍ଝରଣୀ ତଥା ନୈସର୍ଗିକ ଶୋଭା ଅନନ୍ୟ ଓ ଅନୁପମ । ସଂପ୍ରତି ଏହି ମହାନ୍ ପୀଠ ଓଡ଼ିଶା ସରକାରଙ୍କ ପରିଚାଳନାରେ ତଥା ଢେଙ୍କାନାଳ ଜିଲାପାଳଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ । ସଂକ୍ଷେପରେ କହିଲେ କପିଳାସ ଏକ ସର୍ବଜନବିଦିତ ଯୋଗୀଜନ ସେବ୍ୟ ପରମ ରମଣୀୟ ପ୍ରାଚୀନ ତୀର୍ଥ ଓ ଭାରତର ଐତିହାସିକ, ସାଂସ୍କୃତିକ ଓ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ସ୍ୱତନ୍ତ୍ର ଆସନରେ ଅଧିଷ୍ଠିତ ତଥା ଏହାର ବ୍ୟାପକତା, ବିବିଧରୂପତା ସମନ୍ୱୟତା ଓ ଉଦାରହୃଦୟତା ଅବର୍ଣ୍ଣନୀୟ ।



# ମହିମାଧର୍ମ ଓ ମହିମା ମେଳା

ମହିମାଧର୍ମର ମୁଖ୍ୟପୀଠ ମହିମାଗାଦି ଢେଙ୍କାନାଳ ସହରର ଉତ୍ତର ଦିଗରେ ୨୫ କି.ମି.ଦୂରରେ ଯୋରନ୍ଦାଗ୍ରାମ ସନ୍ନିକଟରେ ଅବସ୍ଥିତ । ଏହି ମହିମାଧାମରେ ମହିମାଧର୍ମର ପ୍ରତିଷ୍ଠାତା ମହିମାସ୍ୱାମୀଙ୍କର ସମାଧିମନ୍ଦିର ବା ଅମୁହାଁ ଦେଉଳ, ଧୂନି ମନ୍ଦିର, ଶୂନ୍ୟ ମନ୍ଦିର, ଖାଦ୍ୟ ମନ୍ଦିର, ସଭାଗୃହ, ଅନେକ ମଠ, ଚଉମୁହାଁଣୀ ବାମ୍ପୀ, ପୁସ୍ତକାଳୟ, ଉପବନ ପ୍ରଭୃତି ବିଦ୍ୟମାନ । ମହିମାଧର୍ମାବଲମ୍ବୀଙ୍କର ଏହି ମହିମାମଣ୍ଡିତ ତୀର୍ଥରେ ପ୍ରତିବର୍ଷ ମାଘ ଶୁକ୍ଳ ଚତୁର୍ଦ୍ଦଶୀଠାରୁ ଦୀର୍ଘ ସାତଦିନ ପର୍ଯ୍ୟନ୍ତ ମହିମାମେଳା ଅନୁଷ୍ଠିତ ହୋଇଥାଏ ।

ମହିମାମେଳା ଅବସରରେ ମହିମାଗାଦି ଅପରୂପ ଆକର୍ଷଣୀୟ ସୁଷମା ବିମଣ୍ଡିତ ହୋଇଥାଏ । ମେଳା ପ୍ରାଙ୍ଗଣରେ ସ୍ଥାନୀୟ ଓ ଦୂରଦେଶାଗତ ବ୍ୟବସାୟୀବୃନ୍ଦ ଭିନ୍ନ ଭିନ୍ନ କିସମର ମନୋହାରିଣୀ ବିପଣୀମାଳାରେ ସୁଶୋଭିତ କରିଥାନ୍ତି । ତତ୍‌ସହିତ ଚା,ଜଳଖିଆ, ହୋଟେଲ ପ୍ରଭୃତି ଦର୍ଶକବୃନ୍ଦଙ୍କର ଅନ୍ୟତମ ଆକର୍ଷଣ । ରଙ୍ଗବେରଙ୍ଗର କାରୁକାର୍ଯ୍ୟ ଖଚିତ ସାଜସଜ୍ଜା, ବିଚିତ୍ର ବର୍ଣ୍ଣା ବିଦ୍ୟୁତ୍ ଆଲୋକମାଳା ସହିତ ସର୍କସ୍, ମ୍ୟାଜିକ୍, ଯାତ୍ରାପାର୍ଟି, ଅପେରା ପ୍ରଦର୍ଶନୀ ପ୍ରଭୃତି ମେଳାଟିକୁ ମନୋରଞ୍ଜନ ଅଭିମୁଖୀ କରିଛି । ଏହି ମହିମାମହୋତ୍ସବରେ ହଜାର ହଜାର ମହିମାଧର୍ମାବଲମ୍ବୀଙ୍କ ସହିତ ଲକ୍ଷ ଲକ୍ଷ ଭକ୍ତ ଓ ଯାତ୍ରୀ ଏକତ୍ରିତ ହୋଇଥାନ୍ତି । ମେଳା ଉପଲକ୍ଷେ ସମାଧିମନ୍ଦିର ନିକଟରେ ସୁନା ଓ ରୂପାର ଛତ୍ରୀ, ତରାସ, ଆଡ଼େଣୀ, ଚାମର, ଡାଳ, ନାଡୁ ଲୋଟା, ଥାଳୀ, ରଖାଯାଇ ଅଖଣ୍ଡ ଦୀପ ବା ଝାଡ଼ ପ୍ରଜ୍ୱଳିତ ହୋଇଥାଏ । ଭଜନ କୀର୍ତ୍ତନ ସର୍ବୋପରି ଖଞ୍ଜଣୀ ଭଜନରେ ମହିମାଧାମ ପ୍ରକମ୍ପିତ ହୁଏ । ଧୂନି ମନ୍ଦିରରେ ଅଖଣ୍ଡ ଧୂନିରେ ମହିମାସନ୍ୟାସୀଙ୍କ ଦ୍ୱାରା ବିଶ୍ୱକଲ୍ୟାଣ କାମନାରେ ଘୃତାହୁତି ପ୍ରଦତ୍ତ କରାଯାଏ । ସଭାଗୃହରେ ମହିମାସାଧୁ ସମ୍ମିଳନୀ ଓ ଧର୍ମାଲୋଚନା ଅନୁଷ୍ଠିତ ହୁଏ । ମଠ ମନ୍ଦିର ଚତୁର୍ଦ୍ଦିଗରେ ଭକ୍ତ ଓ ଯାତ୍ରୀଙ୍କର ଅସମ୍ଭବ ଲୋକାରଣ୍ୟ ହୋଇଥାଏ । ସମଗ୍ର ମେଳାରେ ମହିମା ଭାବଧାରାର ଏକ ଉଚ୍ଛ୍ୱାସମୟ ଆବେଗ ସଂଚାରିତ ହୋଇଥାଏ ।

ମହିମା ସଂସ୍କୃତିର ଉତ୍ତରଣରେ ମହିମାମେଳା ଏକ ସୁଦୀର୍ଘ ପରଂପରା ଅତିକ୍ରମ କରି ସଂପ୍ରତି ଏକବିଂଶ ଶତାବ୍ଦୀରେ ଉପଗତ । ମହିମାଧର୍ମର ପ୍ରତିଷ୍ଠାତା ମହିମାସ୍ୱାମୀଙ୍କ ଦ୍ୱାରା ମହିମାଧର୍ମର ଏହି ବାର୍ଷିକ ମହୋତ୍ସବର ଉନ୍ମେଷ ଘଟି ପରବର୍ତ୍ତୀ କାଳରେ ମହିମାମେଳା ରୂପେ ପ୍ରସିଦ୍ଧି ଲାଭ କରିଅଛି । ମହିମାସ୍ୱାମୀ ୧୮୭୬ ଖ୍ରୀଷ୍ଟାବ୍ଦରେ ମହାସମାଧି ଗ୍ରହଣ କରିବାପରେ ତାଙ୍କ ସମାଧିପୀଠ ମହିମାଗାଦୀ ରୂପେ ବିଶ୍ୱପ୍ରସିଦ୍ଧି ଲାଭ ପୂର୍ବକ ମହିମାତୀର୍ଥର ମର୍ଯ୍ୟାଦାଲାଭ କରିଅଛି । ପ୍ରତିବର୍ଷ ଅଗଣିତ ମହିମାସନ୍ନ୍ୟାସୀ, ମହିମାଭକ୍ତ ଓ ଯାତ୍ରୀ ମହିମାମେଳାରେ ପଦାର୍ପଣ କରି ମହିମାଗାଦୀଟିକୁ ଅଧିକରୁ ଅଧିକ ମହିମାମୟ କରିବା ସହିତ ମେଳାଟିକୁ ବିଶ୍ୱପ୍ରସିଦ୍ଧ ମହିମାମହୋତ୍ସବ ରୂପେ ମହିମା ବିମଣ୍ଡିତ କରିପାରିଛନ୍ତି । ଜାତି ଧର୍ମ ବର୍ଣ୍ଣ ସଂପ୍ରଦାୟ ନିର୍ବିଶେଷରେ ପ୍ରାୟ ପାଞ୍ଚଲକ୍ଷ ଭକ୍ତ ଓ ଯାତ୍ରୀ ମହିମାମେଳାରେ ଏକତ୍ରିତ ହୋଇଥାନ୍ତି । ଯେଉଁ ବଲ୍‌କଳଧାରୀ ଓ କୌପୀନଧାରୀ ମହିମାସନ୍ନ୍ୟାସୀ ବୃନ୍ଦ ବର୍ଷସାରା ଭାରତର କୋଣେ ଅନୁକୋଣେ ମହିମାଧର୍ମ ପ୍ରଚାରରେ ବ୍ରତୀ ସେମାନେ ମଧ୍ୟ ମହିମାସ୍ୱାମୀଙ୍କୁ ଭକ୍ତି ନିବେଦନ କରିବା ନିମିତ୍ତ ମହିମାମେଳାରେ ଉପଗତ ହୁଅନ୍ତି । ଭକ୍ତ ଓ ଯାତ୍ରୀମାନେ ବିଭିନ୍ନ ଧର୍ମଶାଳା, ବିଦ୍ୟାଳୟ ଓ ମହାବିଦ୍ୟାଳୟରେ ନିବାସ କରୁଛନ୍ତି । ଜିଲା ପ୍ରଶାସନ ତରଫରୁ ଗମନାଗମନ, ସ୍ୱାସ୍ଥ୍ୟ, ପରିକାଳ ତଥା ଶାନ୍ତି ଶୃଙ୍ଖଳାର ସୁବ୍ୟବସ୍ଥା କରାଯାଇଛି ।

ଊନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟଧର୍ମ ଓ ସଂସ୍କୃତିର ପ୍ରଭାବରେ ଭାରତୀୟ ଅଧ୍ୟାତ୍ମଚେତନା ଏକ ଆତ୍ମିକ ସନନ୍ଦ ରୂପେ ପ୍ରତିଭାତ ହୋଇଥିଲା । ଏହି ମାହେନ୍ଦ୍ରବେଳାରେ ପବିତ୍ର ଉତ୍କଳଭୂମିରେ ମହିମାସ୍ୱାମୀ ମହିମାଧର୍ମ ପ୍ରବର୍ତ୍ତନ ପୂର୍ବକ ବୈଦିକ ସତ୍ୟସିଦ୍ଧାନ୍ତ ସମନ୍ୱିତ ବିଶ୍ୱାତ୍ମଚେତନାରେ ଅଗଣିତ ଦୀନହୀନ ଅକିଞ୍ଚନ ଦଳିତ ନିଷ୍ପେଷିତ ପଲ୍ଲୀବାସୀଙ୍କୁ ଉଦ୍‌ବୁଦ୍ଧ କରାଇ ପାରିଥିଲେ । ମହିମାଧର୍ମ ପ୍ରଚାର କାମନାରେ ପୁରପଲ୍ଲୀ ସର୍ବତ୍ର ପରିଭ୍ରମଣ କରି ଲୋକମାନଙ୍କୁ ମହିମାଧର୍ମରେ ଦୀକ୍ଷିତ କରିବା ସହିତ ସ୍ଥାନେ ସ୍ଥାନେ ଟୁଙ୍ଗୀ ବା ଆଶ୍ରମ ପ୍ରତିଷ୍ଠା ପୂର୍ବକ କୋଣେ କୋଣେ ମହିମାବାର୍ତ୍ତାର ପ୍ରସାର ଘଟାଇ ପାରିଥିଲେ । ସେ ସ୍ଥଳ ବିଶେଷରେ ମହିମାମହାଧିବେଶନ କରାଇ ମହିମାଧର୍ମର ବ୍ୟାପକ ପ୍ରସାର ଘଟାଇ ଭକ୍ତବୃନ୍ଦଙ୍କ ହୃଦୟରେ ଭଗବାନଙ୍କ ଆସନ ଅଳଙ୍କୃତ କରିପାରିଥିଲେ । ସଂକ୍ଷେପରେ କହିଲେ ମହିମାସ୍ୱାମୀ ଆପଣାର ମାନବବାଦୀ ଚେତନାରେ

ମହିମାଧର୍ମକୁ ଏକ ଗଣଧର୍ମରେ ପରିଣତ କରିପାରିଥିଲେ । ପୂଜ୍ୟ ମହିମାସ୍ୱାମୀ ମହିମାଧର୍ମ ସମ୍ବନ୍ଧୀୟ କୌଣସି ସାହିତ୍ୟ ରଚନା କରିନଥିଲେ ହେଁ ତାଙ୍କ ଆବିର୍ଭାବର ବହୁପୂର୍ବରୁ ପଞ୍ଚସଖାଯୁଗୀୟ ସାହିତ୍ୟରେ ଏହି ଧର୍ମର ସୂଚନା ରହିଥିଲା । ପରବର୍ତ୍ତୀକାଳରେ ମହିମାଧର୍ମ ସମ୍ବନ୍ଧୀୟ ପ୍ରମୁଖ ସାହିତ୍ୟ ସନ୍ଥକବି ଭୀମଭୋଇଙ୍କ ଦ୍ୱାରା ରଚନା ହୋଇ ଏହି ଧର୍ମକୁ ପରାଙ୍ଗପୁଷ୍ଟ କରିଥିଲା। ତାଙ୍କ ରଚିତ ସ୍ତୁତିଚିନ୍ତାମଣି, ଆଦି ଅନ୍ତଗୀତା, ଶ୍ରୁତିନିଷେଧ ଗୀତା, ନିର୍ବେଦସାଧନ ତଥା ଭଜନ, ଜଣାଣ ଓ ଚଉତିଶା ପ୍ରଭୃତି ଅଧ୍ୟୟନରୁ ମହିମାଧର୍ମର ସ୍ୱରୂପ ଓ ତତ୍ତ୍ୱ ଉପଲବ୍ଧି ହୋଇଥାଏ । ପୂଜ୍ୟ ବ୍ରହ୍ମାବଧୂତ ବିଶ୍ୱନାଥ ବାବା ସର୍ବ ବେଦବେଦାନ୍ତ ସାରତତ୍ତ୍ୱ ଶିରୋମଣି ଅଲେଖ ପରଂବ୍ରହ୍ମ ଦର୍ଶନ ପୂର୍ବାର୍ଦ୍ଧ ଓ ଉତ୍ତରାର୍ଦ୍ଧ, ସତ୍ୟ ମହିମାଧର୍ମ ପ୍ରତିପାଦକ, ସତ୍ୟ ମହିମାଧର୍ମ ଇତିହାସ, ମହିମାଗାଦୀ ମହିମାଧାମ ଇତିହାସ, ସିଦ୍ଧ ସାଧୁ ଚରିତାମୃତ ପ୍ରଭୃତି ଅନେକ ଦୁର୍ଲଭ ଶାସ୍ତ୍ରରଚନା ପୂର୍ବକ ମହିମାସାହିତ୍ୟକୁ ସମୃଦ୍ଧ କରି ଅଛନ୍ତି । ଏତାବ୍ୟତୀତ ଅଗଣିତ ସାଧୁସନ୍ଥ ମହାତ୍ମା ଓ ବିଜ୍ଞପ୍ରାଜ୍ଞ ବୃନ୍ଦ ମହିମାଧର୍ମ ସମ୍ବନ୍ଧୀୟ ଅନେକ ଶାସ୍ତ୍ର, ନିବନ୍ଧ, ପ୍ରବନ୍ଧ, ସନ୍ଦର୍ଭ ରଚନା ପୂର୍ବକ ଏହି ଧର୍ମ ଉପରେ ଯଥେଷ୍ଟ ଆଲୋକପାତ କରିଅଛନ୍ତି ।

ମହିମାଧର୍ମର ସାରବତ୍ତା ହେଉଛି ଅଲେଖ ପରଂବ୍ରହ୍ମାଙ୍କ ଠାରୁ ଆତ୍ମାକ୍ଷରିତ, ତାଙ୍କରିଠାରେ ଅର୍ପିତ ଏବଂ ପରିଶେଷରେ ତାଙ୍କରି ଶରଣ ଦର୍ଶନରେ ମୁକ୍ତି । ସର୍ବ ଶକ୍ତିମାନ ସର୍ବବ୍ୟାପକ ଅଲେଖ ପରଂବ୍ରହ୍ମାଙ୍କୁ ଏହି ଧର୍ମରେ ମହିମାମହାମେରୁ ବୋଲି ବ୍ୟକ୍ତ କରାଯାଇଛି । ଜାତି, ବର୍ଣ୍ଣ, ସଂପ୍ରଦାୟ ନିର୍ବିଶେଷରେ ବ୍ରହ୍ମୋପାସନା ଏହି ଧର୍ମକୁ ମହିମାମୟ କରିଅଛି । ମହିମାଧର୍ମ ବିଶୁଦ୍ଧ ଅଦ୍ୱୈତବାଦ ଉପରେ ଆଧାରିତ ଏବଂ ଦୟା, କରୁଣା, ପରୋପକାର, ବିଶ୍ୱପ୍ରେମ, ସରଳଜୀବନ ଓ ଉଚ୍ଚବିଚାରବୋଧ ଉପରେ ପ୍ରତିଷ୍ଠିତ। ମହିମାଧର୍ମୀ ସାଧୁ ଓ ଗୃହସ୍ଥବୃନ୍ଦ ସତ୍ୟବାଦୀ, ନିରାଡ଼ମ୍ବର, ପରୋପକାରୀ, ମିଷ୍ଟଭାଷୀ ତଥା ସଦା ପ୍ରସନ୍ନମନା । ସୂର୍ଯ୍ୟୋଦୟ ଓ ସୂର୍ଯ୍ୟୋସ୍ତରେ ଅଷ୍ଟାଙ୍ଗପ୍ରଣାମ ପୂର୍ବକ ଅଲେଖ ପରଂବ୍ରହ୍ମଙ୍କର ଶରଣାପନ୍ନ ହେବା ଏହି ଧର୍ମାବଲମ୍ବୀଙ୍କର ନିତ୍ୟ ଉପାସନା । କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମୋହର୍ଯ୍ୟ ଏହି ଷଡ଼ରିପୁ ସଂଯମ ହେଉଛି ମହିମାଧର୍ମର ଶ୍ରେଷ୍ଠ ଆଚରଣ । ସୂର୍ଯ୍ୟାସ୍ତ ପୂର୍ବରୁ ମୁକ୍ତାକାଶତଳେ ଶାକାନ୍ନ ଭୋଜନାହିଁ ମହିମାପନ୍ଥୀଙ୍କର ଆଦର୍ଶ ପରଂପରା । ସତ୍ୟ, ଶାନ୍ତି, ଦୟା, କ୍ଷମା ପ୍ରଭୃତି ସଦ୍‌ଗୁଣ ଅର୍ଜନ ହିଁ ମହିମାଧର୍ମର ମହନୀୟତା । ପରମାର୍ଥ ସତ୍ତାରୂପ

ବ୍ରହ୍ମର ଏକତା ଉପଲବ୍ଧି ନିମିତ୍ତ ବ୍ୟବହାରିକ ଧର୍ମନୀତିରେ ମହିମାଧର୍ମ ମହିମାମୟ । ଏହାକୁ ଶାଶ୍ୱତ ସନାତନ ଧର୍ମରେ ସଂସ୍କାରବାଦୀ ସଂସ୍କରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡ଼ିଶାର ସାଂସ୍କୃତିକ ପରଂପରାରେ ମହିମାଧର୍ମ ଓ ମହିମାମେଳା ଏକ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିପାରିଛି । ଅଧିକନ୍ତୁ ଭାରତୀୟ ଅଧ୍ୟାତ୍ମବିଦ୍ୟାର ମହତ୍ୱଶାଳୀ ସିଦ୍ଧାନ୍ତ ଉପରେ ପ୍ରତିଷ୍ଠିତ ଏହି ଧର୍ମ ଓ ମେଳା ଜନମାନସରେ ଅମୃତମୟ ମୂର୍ଚ୍ଛନା ସୃଷ୍ଟିପୂର୍ବକ ସଂସ୍କୃତିର ଉତ୍ତରଣରେ ମହିମା ବିମଣ୍ଡିତ ଧାର୍ମିକ ମହୋତ୍ସବ ରୂପେ ପ୍ରତିଭାତ । ସଂକ୍ଷେପରେ କହିଲେ ମହିମାଧର୍ମ ହେଉଛି ମାନବବାଦୀ ଧର୍ମ ଏବଂ ମହିମାମେଳା ହେଉଛି ମାନବଧର୍ମର ମହୋତ୍ସବ ।



# କପିଳାସରେ ମହାଶିବରାତ୍ରି

ଯସ୍ୟାଙ୍କେ ଚ ବିଭାତି ଭୂଧରସୂତା ଦେବାପଗାମସ୍ତକେ
ଭାଲେ ବାଳ ବିଧ୍ୱର୍ଗଳେ ଚ ଗରଳଂ ଯସ୍ୟୋରସି ବ୍ୟାଳରାଟ୍ ।
ସୋଽୟଂ ଭୂତି ବିଭୂଷଣଃ ସୁରବରଃ ସର୍ବାଧିପଃ ସର୍ବଦା
ସର୍ବଃ ସର୍ବଗତଃ ଶିବ ଶଶିନିଭଃ ଶ୍ରୀଶଙ୍କର ପାତୁମାମ୍ ।

ମହାଶିବରାତ୍ରି ଶୈବସଂସ୍କୃତିର ଚରମ ନିଦର୍ଶନ । ସର୍ବ ଭାରତୀୟ ସ୍ତରରେ ପ୍ରତ୍ୟେକ ଶିବପୀଠରେ ଏହି ମହାନ୍ ପର୍ବ ମହାସମାରୋହରେ ପାଳିତ ହୁଏ । ପ୍ରାଗ୍-ବୈଦିକ କାଳରୁ ଶିବ ଉପାସନା ଭାରତୀୟ ଜନମାନସକୁ ଉଦ୍‌ବୁଦ୍ଧ କରିଅଛି । ବୈଦିକ ଯୁଗରେ ଆର୍ଯ୍ୟଋଷିଗଣ ବିଶ୍ୱମଙ୍ଗଳ କାମନାରେ ଶିବଙ୍କର ବହୁବିଧ ସ୍ତୁତିଗାନ କରିଛନ୍ତି ।

ନମଃ ଶମ୍ଭବାୟଚ ମନୋଭବାୟଚ
ନମଃ ଶଙ୍କରାୟଚ ମୟସ୍କରାୟଚ
ନମଃ ଶିବାୟଚ ଶିବତରାୟଚ

ବେଦପରବର୍ତ୍ତୀ ଆରଣ୍ୟକ ଓ ପୁରାଣ ସାହିତ୍ୟରେ ଜଗତକୁ ରୁଦ୍ରମୟ କଳ୍ପନା କରାଯାଇଛି । ଈଶାନ ସଂହିତାରେ ବର୍ଣ୍ଣନା ରହିଛି ଯେ ମହାଶିବରାତ୍ରିର ମହାନିଶାରେ ପୃଥିବୀ ପୃଷ୍ଠରେ ପ୍ରଥମେ ଶିବଲିଙ୍ଗ ଆବିର୍ଭାବ ହୋଇଥିଲେ । ତେଣୁ ଏହି ପୂଣ୍ୟ ମୁହୂର୍ତ୍ତକୁ ଅଖିଳ ବିଶ୍ୱ ମହାଶିବରାତ୍ରି ରୂପେ ମାନ୍ୟତା ପ୍ରଦାନ କରିଅଛି । ଶାସ୍ତ୍ରୀୟ ମାନ୍ୟତା ଅନୁଯାୟୀ ଫାଲ୍‌ଗୁନ ମାସର କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥିର ତାମସୀ ରାତ୍ରିହିଁ ଶିବରାତ୍ରି ।

ଫାଲ୍‌ଗୁନେ କୃଷ୍ଣପକ୍ଷସ୍ୟ ଯାତିଥିସ୍ୟା ଚତୁର୍ଦ୍ଦଶୀ
ତସ୍ୟାଂ ଯା ତାମସୀ ରାତ୍ରିଃ ସୋଚ୍ୟତେ ଶିବରାତ୍ରିକା

ଭାରତୀୟ ସଂସ୍କୃତିର ସାମଗ୍ରିକ ଚେତନା ଏହି ମହାନ୍ ପର୍ବ ପାଳନରେ ଅନୁଭୂତ ହୋଇଥାଏ ।

ସମନ୍ୱୟାକ ପୀଠ କପିଳାସରେ ମହାଶିବରାତ୍ରି ପୂଜାରେ ବ୍ରାହ୍ମଣ ତନ୍ତ୍ର, ଶୈବତନ୍ତ୍ର, ବୈଷ୍ଣବ ତନ୍ତ୍ର, ଶାକ୍ତତନ୍ତ୍ରେ ଓ ଶାବର ତନ୍ତ୍ରର ଅପୂର୍ବ ସମନ୍ୱୟ ଘଟିଥାଏ ଏହି ପବିତ୍ର ପୀଠକୁ ମହାଶିବରାତ୍ରି ପାଳନ ନିମିତ୍ତ ଅଦ୍ୱୈତବାଦୀ ଦ୍ୱୈତବାଦୀ,

ଶଙ୍କରପନ୍ଥୀ, ନାଥଯୋଗୀ, ରାମାନନ୍ଦୀ, ଶ୍ୟାମାନନ୍ଦୀ, ନିମାନନ୍ଦୀ ଓ ମାଧବାନନ୍ଦୀ ପ୍ରତ୍ୟେକ ଆସିଥାନ୍ତି । ସୁଖର କଥା, ପୀଠରେ ପଦାର୍ପଣ କରିବା ପରେ ନିଜ ନିଜ ଭିତରେ ଥିବା ଭେଦଭାବ ଗୁଡ଼ିକ ଆପେ ଆପେ ଭୁଲିଯାଇଥାନ୍ତି । ସଭିଏଁ ମିଳିତ ଭାବରେ ମହାଶିବରାତ୍ରି ପାଳନ ପୂର୍ବକ ଅପାର ଆନନ୍ଦ ଅନୁଭବ କରନ୍ତି । ଚିରମଙ୍ଗଳମୟ ଚନ୍ଦ୍ରଶେଖରଙ୍କ ଅସଂଖ୍ୟ ନାଗବିଭୂଷିତ ବିଶ୍ୱକଲ୍ୟାଣକାରୀ ନାଗାଭରଣ ବେଶ ସମସ୍ତଙ୍କର ଧେୟ । ଶକ୍ତି ଓ ଲିଙ୍ଗ ସୃଷ୍ଟିର ପ୍ରତୀକ । ଏହାକୁ ସର୍ପବେଷ୍ଟନ କରି ଅଛି। ଅର୍ଥାତ୍ ସୃଷ୍ଟିକୁ କାଳବେଷ୍ଟନ କରିଅଛି । ଯାହାର ସୃଷ୍ଟି ଅଛି ତାହାର କାଳ ଅର୍ଥାତ୍ ମୃତ୍ୟୁ ଅଛି । ମୃତ୍ୟୁ ହିଁ ଅନିବାର୍ଯ୍ୟ ସତ୍ୟ । ଆମେ ସମସ୍ତେ ମୃତ୍ୟୁକୁ ଭେଟିବାକୁ ଯାଉଛେ ଏହି ଚେତନାହିଁ ନାଗାଭରଣ ବେଶ ଦର୍ଶନରୁ ମିଳିଥାଏ । ଶିବ କାଳାତୀତ, ତାଙ୍କର ମୃତ୍ୟୁଭୟ ନାହିଁ। ସେ ମହାମୃତ୍ୟୁଞ୍ଜୟ । ନାଗାଭରଣ ଚନ୍ଦ୍ରଶେଖରଙ୍କ ଭାଲପଟରେ ରହିଥାନ୍ତି ଦ୍ୱିତୀୟାଚନ୍ଦ୍ର । ପୂର୍ଣ୍ଣଚନ୍ଦ୍ର ଅପେକ୍ଷା ଦ୍ୱିତୀୟାଚନ୍ଦ୍ରଙ୍କର ମହତ୍ୱ ଅଧିକ । ପୂର୍ଣ୍ଣଚନ୍ଦ୍ର ପ୍ରତିଦିନ କମିଯାଆନ୍ତି କିନ୍ତୁ ଦ୍ୱିତୀୟାଚନ୍ଦ୍ର ପ୍ରତିଦିନ ବୃଦ୍ଧି ପାଇଥାନ୍ତି । ପୂର୍ଣ୍ଣିମା ଚନ୍ଦ୍ରଙ୍କର ବିନାଶ ଅଛି, ଅଥଚ ଦ୍ୱିତୀୟ ଚନ୍ଦ୍ରଙ୍କର ବିକାଶ ଅଛି । ଭାଲପଟରେ ଦ୍ୱିତୀୟାଚନ୍ଦ୍ରଙ୍କ ସ୍ଥାପନା ପୂର୍ବକ ଚନ୍ଦ୍ରଶେଖର ଜଗତକୁ ସୂଚାଇ ଦେଇଛନ୍ତି ଜୀବନରେ ବିକାଶର ଆବଶ୍ୟକତା ରହିଛି । ଏହି ବିକାଶ ହିଁ ଦିନେ ପୂର୍ଣ୍ଣତାରେ ପରିଣତ ହେବ । ବିକାଶ ନିମିତ୍ତ କର୍ତ୍ତବ୍ୟନିଷ୍ଠା ଏକାନ୍ତ ଭାବରେ ଆବଶ୍ୟକ । ଦ୍ୱିତୀୟା ଚନ୍ଦ୍ରହିଁ କର୍ତ୍ତବ୍ୟନିଷ୍ଠା । ଏହି ଦ୍ୱିତୀୟାଚନ୍ଦ୍ରଙ୍କୁ ମହାକାଳ ଚନ୍ଦ୍ରଶେଖର ତୃତୀୟନେତ୍ର ଉପରେ ସ୍ଥାପନ କରି ସ୍ପଷ୍ଟ କରି ଦେଇଛନ୍ତି ଯେ, ତୃତୀୟନେତ୍ର ଅର୍ଥାତ୍ ଜ୍ଞାନର ଉର୍ଦ୍ଧ୍ୱରେ ହେଉଛି କର୍ତ୍ତବ୍ୟନିଷ୍ଠା । ଏହାହିଁ ଶିବରାତ୍ରିରେ ଚନ୍ଦ୍ରଶେଖରଙ୍କ ନାଗାଭରଣ ବେଶର ତାତ୍ପର୍ଯ୍ୟ ।

କପିଳାସ ପୀଠର ପ୍ରାଧାନ୍ୟ ହେଉଛି ଏଠାରେ ନଟବର ଓ ନଟରାଜ ଏକତ୍ର ଆରାଧିତ। ନଟବର ଅନନ୍ତନାଗ ବେଷ୍ଟିତ ବୃହତ୍ ଶାଳଗ୍ରାମ ରୂପେ ଓ ନଟରାଜ କାଳନାଗ ବେଷ୍ଟିତ ସ୍ୱୟଂମ୍ଭୁଲିଙ୍ଗ ରୂପେ ମୁଖ୍ୟମନ୍ଦିରରେ ପୂଜିତ । ଭୋଗମଣ୍ଡପ ଉପରେ ଗରୁଡ଼ ଓ ବୃଷଭଙ୍କର ଯୁଗଳ ବାହନ ମୂର୍ତ୍ତି ବିଦ୍ୟମାନ । ମନ୍ଦିର ଚୂଡ଼ାରେ ତ୍ରିଶୂଳ ପରିବର୍ତ୍ତେ ଅର୍ଦ୍ଧଚକ୍ର ପୀନାକ ରହିଛି । ଏହି ପାବନ ପୀଠ ଶୈବ ଓ ବୈଷ୍ଣବ ସଂସ୍କୃତିର ମିଳନ ପୀଠ ରୂପେ ପ୍ରସିଦ୍ଧ । ଆଦିକାଳରୁ ହରିହରାତ୍ମକ ଉପାସନାହିଁ କପିଳାସ ପୀଠର ବିଶେଷତ୍ୱ । ନାଗାଭରଣ ବେଶ

ପରେ ହରିଙ୍କର ଚଳନ୍ତି ପ୍ରତିମାଙ୍କୁ ମହାସମାରୋହରେ ମନ୍ଦିର ଅଭ୍ୟନ୍ତରକୁ ବିଜେ କରାଯାଇ ପାରମ୍ପରିକ ରୀତିରେ ହରିହରଭେଟ କରାଯାଏ ।

ଦ୍ୱୌ ଦ୍ୱୌ ଶଙ୍ଖକପାଳ ଭୂଷିତ କରୌ ମୁକ୍ତାସ୍ଥିମାଳାଧରୌ
ଦେବ ଦ୍ୱାରବତୀ ଶ୍ମଶାନନିଳୟୌ ନାଗାରିଗୋବାହନୌ
ଦ୍ୱିତ୍ର୍ୟକ୍ଷୌ ବଳିଦକ୍ଷ ଯଜ୍ଞ ମଥନୌ ଶ୍ରୀଶୈଳଜାବଲ୍ଲଭୌ
ପାପାନ୍ମେ ହରଣଂ ବିଭୋ ହରିହରୌ ଶ୍ରୀବତ୍ସ ଗଙ୍ଗାଧରୌ

ମହାଶିବରାତ୍ରି ଅବସରରେ ପୀଠସ୍ଥିତ ଶାକ୍ତତନ୍ତ୍ରର ଆରାଧ୍ୟା ଜଗଜ୍ଜନନୀ ପାର୍ବତୀଙ୍କର ବିଶେଷ ପୂଜାର୍ଚ୍ଚନା ହୋଇ ଦୁର୍ଲଭ ଦର୍ଶନ ରାଜରାଜେଶ୍ୱରୀ ବେଶକରାଯାଏ । ପାର୍ବତୀଙ୍କ ଦକ୍ଷିଣ ପାର୍ଶ୍ୱରେ ବିରାଜିତ ବୈଷ୍ଣବତନ୍ତ୍ରର ଆରାଧ୍ୟ ନୃସିଂହଙ୍କୁ ମଧ୍ୟ ଠିକ୍ ସେହି ସମୟରେ ବୈଷ୍ଣବ ରୀତିରେ ଆରାଧନା କରାଯାଇ ଜଗଦୀଶ୍ୱର ବେଶ କରାଯାଏ। ଗୋଟିଏ ଆସ୍ଥାନରେ ମା ପାର୍ବତୀ ଓ ନୃସିଂହଙ୍କର ଆରାଧନା ଶାକ୍ତସଂସ୍କୃତି ସହିତ ବୈଷ୍ଣବ ସଂସ୍କୃତିର ମଧୁର ମିଳନ ।

ସିଂହଦ୍ୱାର ନିକଟରେ ବିରାଜିତା ବୌଦ୍ଧ ତନ୍ତ୍ରର ଆରାଧ୍ୟା ଗୁମ୍ଫାଣ୍ଡାଙ୍କ ନିକଟରେ ମହାଶିବରାତ୍ରିରେ ହୋମ କରାଯାଏ । ନାଥ ମହନ୍ତବୃନ୍ଦ ଏହି ହୋମକରି ସାରିବା ପରେ ହିଁ ଚନ୍ଦ୍ରଶେଖରଙ୍କ ମହାଶିବରାତ୍ରି କାଳୀନ ବିଶେଷ ପୂଜାର୍ଚ୍ଚନା କରିଥାନ୍ତି। ଏହା ବୌଦ୍ଧ ସଂସ୍କୃତି ସହିତ ନାଥ ସଂସ୍କୃତିର ମିଳନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶଙ୍କର ପନ୍ଥୀ ସନ୍ୟାସୀ ତଥା ଶ୍ରୀମଦ୍ ଭାଗବତ ଗୀତାର ବିଶ୍ୱପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀଙ୍କ ପ୍ରତିଷ୍ଠିତ ବ୍ରହ୍ମଚାରୀ ମଠ ନିକଟରେ ଥିବା ଯଜ୍ଞ ମଣ୍ଡପରେ ମହାଶିବରାତ୍ରିରେ ଅନୁଷ୍ଠିତ ହେଉଥିବା ଗୀତାଯଜ୍ଞରୁ ପୀଠର ମହନୀୟତାର ପରିଚୟ ମିଳିଥାଏ । ରାମାନନ୍ଦୀ ସଂପ୍ରଦାୟର ତଳମଠରେ ପବିତ୍ର ମହାଶିବରାତ୍ରିରେ ସାଧୁସନ୍ଥମଣ୍ଡଳୀଙ୍କ ଦ୍ୱାରା ସାମୁହିକ ଶ୍ରୀରାମଚରିତ ମାନସ ପାରାୟଣରୁ ଶୈବପନ୍ଥୀଙ୍କ ସହିତ ରାମାୟଣ ପନ୍ଥୀଙ୍କର ଅଭେଦ୍ୟ ପ୍ରୀତୀର ସୂଚନା ମିଳେ । ମହାଶିବରାତ୍ରିର ପୂଣ୍ୟ ମୁହୂର୍ତ୍ତରେ ପ୍ରେମାବତାର ଗୌରାଙ୍ଗ ମହାପ୍ରଭୁ ଏହି ପରମତୀର୍ଥରେ ପଦାର୍ପଣ ପୂର୍ବକ ସ୍ୱପଦଚିହ୍ନ ସ୍ମାରକୀ ରଖିଦେଇ ଯାଇଛନ୍ତି । ବୈଷ୍ଣବ କୁଳ ତିଳକ ଚନ୍ଦ୍ରଶେଖରଙ୍କ ପୀଠର ଏହାହିଁ ମହାନତା ।

ବୈଦିକ ରୀତିରେ ମହାଶିବରାତ୍ରି ପୂଜା ଶେଷ ହେବା ପରେ ଦିବ୍ୟଜ୍ୟୋତି ସ୍ୱରୂପ ମହାଦୀପ ମନ୍ଦିର ଶିଖରକୁ ଉଠେ । ଲକ୍ଷ ଲକ୍ଷ ଭକ୍ତ ଶିବରାତ୍ରି ଉପବାସ କରି ନିର୍ନିମେଷ ନୟନରେ ମହାଦୀପ ଉଠିବାର ସେହି ଶୁଭ ମୁହର୍ତ୍ତକୁ ପ୍ରତୀକ୍ଷା

କରିଥାଆନ୍ତି । ଭାରତୀୟ ସଂସ୍କୃତିରେ ଦୀପଜ୍ୟୋତିକୁ ପରଂବ୍ରହ୍ମ ତଥା ପାପନାଶକ ଶକ୍ତିରୂପେ ମାନ୍ୟତା ଦିଆଯାଇଛି । ମହାଦୀପହିଁ ସାକ୍ଷାତ୍ ପରଂବ୍ରହ୍ମ।

ଦୀପଂଜ୍ୟୋତି ପରଂବ୍ରହ୍ମ ଦୀପଂଜ୍ୟୋତି ଦନାର୍ଦ୍ଦନଂ
ଦୀପଂଜ୍ୟୋତି ହରମେପାପଂ ମହାଦୀପଂ ନମୋସ୍ତତେ ।

ମନ୍ଦିର ଚୂଡ଼ାରେ ମହାଦୀପ ଦର୍ଶନକରି ଅଗଣିତ ଭକ୍ତ କୃତକୃତ୍ୟ ହୁଅନ୍ତି । ହରିବୋଲ ହୁଳୁହୁଳି ଧ୍ୱନିରେ ଗଗନ ପବନ ପ୍ରକଂପିତ ହୁଏ । ଏହାର ଅ ପୂର୍ବ ଭାବୋଚ୍ଛାସରେ ମନୁଷ୍ୟ କିଛିକ୍ଷଣ ନିମିତ୍ତ ନିଜକୁ ହିଁ ଭୁଲିଯାଏ । ଅଭୂତ ପୂର୍ବ ବିଶ୍ୱାମ୍ ଭାବ, ସାର୍ବଜନୀନ ଏକତ୍ୱବୋଧ ଓ ଆନନ୍ଦରେ ବିଭୋର ହୋଇଯାଆନ୍ତି ସଭିଏଁ । ଆପେ ଆପେ ହାତ ଯୋଡ଼ି ହୋଇ ଆସେ ଓ ମଥା ନଇଁ ଆସେ ସମସ୍ତଙ୍କର ।

କପିଳାସ ପୀଠର ବୈଚିତ୍ର୍ୟ ହେଉଛି ମନ୍ଦିରର ପଶ୍ଚିମ ପାର୍ଶ୍ୱ ବା ସିଂହଦ୍ୱାର ପାର୍ଶ୍ୱରେ ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀ ଜଗନ୍ନାଥ ବିଗ୍ରହ ଖୋଦିତ । ଜାତି ଧର୍ମ ବର୍ଣ୍ଣ ସଂପ୍ରଦାୟ ନିର୍ବିଶେଷରେ ଅଗଣିତ ଭକ୍ତଙ୍କୁ ପ୍ରଭୁ ଜଗନ୍ନାଥ ବାହୁପ୍ରସାରି କୋଳାଗ୍ରତକରି ନେଉଛନ୍ତି ଏହି ପୀଠରେ । ଏଠାରେ କେହି ଶୈବ ନୁହେଁ, କେହି ବୈଷ୍ଣବ ନୁହେଁ, କେହି ବୌଦ୍ଧ ନୁହେଁ କେହି ନାଥ ନୁହେଁ ସଭିଏଁ ମଣିଷ । ସମସ୍ତଙ୍କର ମାତା ଜଗତ୍‌ଜନନୀ ପାର୍ବତୀ ଓ ପିତା ଆଶୁତୋଷ ଚନ୍ଦ୍ରଶେଖର । ସକଳ ତ୍ରିଭୁବନ ଏକାତ୍ମ ।

ମାତାଚ ପାର୍ବତୀ ଦେବୀ ପିତା ଦେବୋ ମହେଶ୍ୱରଃ
ବାନ୍ଧବାଃ ଶିବ ଭକ୍ତାଶ୍ଚ ସ୍ୱଦେଶଂ ଭୁବନତ୍ରୟମ୍ ।

ସେହିଦ୍ୱୈତାଦ୍ୱୈତ ବିବର୍ଜିତ ସର୍ବବ୍ୟାପକ ଶ୍ରୀ ଚନ୍ଦ୍ରଶେଖରଙ୍କ ଅଭୟ ଚରଣରେ ଶରଣ ।

ନମାମି ପାର୍ବତୀପତି ନମାମି ଚନ୍ଦ୍ରଶେଖରଂ
ନମାମି ଶିଖରେଶ୍ୱରଂ କପିଳାସ ଅଧୀଶ୍ୱରଂ
ଓଁ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧି ପୁଷ୍ଟିବର୍ଦ୍ଧନଂ
ଉର୍ବାରୁକ ମିବ ବନ୍ଧନାତ୍ ମୃତ୍ୟୋର୍ମୁକ୍ଷୀୟ
ମାମୃତାତ୍
ଓଁ ଶାନ୍ତି ଶାନ୍ତି ଶାନ୍ତି



# ଓଡ଼ିଶାର ସାଂସ୍କୃତିକ ଐତିହ୍ୟରେ ଢେଙ୍କାନାଳ ଲକ୍ଷ୍ମୀପୂଜା

*ଓଡ଼ିଶାର ସାଂସ୍କୃତିକ ଐତିହ୍ୟରେ ଢେଙ୍କାନାଳ ଲକ୍ଷ୍ମୀପୂଜା ଏକ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରି ସଂପ୍ରତି ଏକବିଂଶ ଶତାବ୍ଦୀରେ ଉପଗତ । ଉତ୍କଳୀୟ ସାଂସ୍କୃତିକ ଓ ଆଧ୍ୟାତ୍ମିକ ବିଚାରବୋଧର ସ୍ୱତନ୍ତ୍ର ଓ ବୈଶିଷ୍ଟ୍ୟ ବହନ ପୂର୍ବକ ଏହା ଓଡ଼ିଆ ସଂସ୍କୃତିର ସ୍ୱାଭିମାନରେ ଆତ୍ମିକ ସନନ୍ଦ ରୂପେ ପ୍ରତିଭାତ । ପରଂପରାର ପ୍ରବାହମାନ ଧାରାରେ ଢେଙ୍କାନାଳବାସୀ କୁମାରପୂର୍ଣ୍ଣିମୀ ଠାରୁ ଦୀର୍ଘ ଏକାଦଶ ଦିବସ ବ୍ୟାପୀ ଏହି ସମନ୍ୱୟାତ୍ମକ ମହୋତ୍ସବ ପାଳନ ପୂର୍ବକ ଖ୍ରୀଃପୂର୍ବ କାଳରୁ ପ୍ରଚଳିତ ଲକ୍ଷ୍ମୀପୂଜାକୁ ଏକ ଭବ୍ୟରୂପ ପ୍ରଦାନ କରି ସ୍ୱତନ୍ତ୍ର ମର୍ଯ୍ୟାଦାରେ ଅଧିଷ୍ଠିତ କରାଇପାରିଛନ୍ତି ।*

ପ୍ରାକୃତିକ ଶୋଭାମୟୀ ଢେଙ୍କାନାଳ ଆଦ୍ୟ କାର୍ତ୍ତିକରେ ବୈକୁଣ୍ଠ ଭବନର ରୂପଧାରଣ କରିଛି । ରମଣୀୟ ପୂଜାମଣ୍ଡପ ସମୂହରେ ଭିନ୍ନ ଭିନ୍ନ ବେଶରେ ଅନ୍ନଦାତ୍ରୀ ମହିମାମୟୀ ମହାଲକ୍ଷ୍ମୀ ଆରାଧିତା । ଅଲୌକିକ ଶିଳ୍ପନୈପୁଣ୍ୟ ବିମଣ୍ଡିତ ସାଜସଜା, ରଙ୍ଗବେରଙ୍ଗର ବର୍ଣ୍ଣାଢ଼୍ୟ ଆଲୋକସଜ୍ଜାଏବଂ କଳାବିଜ୍ଞାନ ସମ୍ମିଶ୍ରଣର ଅପୂର୍ବ ରୂପସଜ୍ଜା ସମଗ୍ର ସହରାଞ୍ଚଳକୁ ଦୀପ୍ତୀମନ୍ତ କରିଛି । ନୃତ୍ୟ, ସଂଗୀତ, ଲୋକନୃତ୍ୟ, ଲୋକବାଦ୍ୟ, କୀର୍ତ୍ତନ, ଭଜନ ଓ ମନ୍ତ୍ରପାଠରେ ସହରାଞ୍ଚଳ ମୁଖରିତ ଏବଂ ଦୋଳି, ପ୍ରଦର୍ଶନ, ମ୍ୟାଜିକ୍, ଚିଡ଼ିଆଖାନା ସର୍କସ, କଣ୍ଢେଇନାଚ, ପାଲା, ଯାତ୍ରାଦଳରେ ପ୍ରକଂପିତ । କଟକ ସମ୍ବଲପୁର ଜାତୀୟ ରାଜପଥ ଉପରେ ଅବସ୍ଥିତ ଢେଙ୍କାନାଳ ସହରରେ କାଠଗଡ଼ାଠାରୁ କୋରିଆ ପର୍ଯ୍ୟନ୍ତ ଦୀର୍ଘ ଆଠ କିଲୋମିଟର ନଗର ନଭଶ୍ଚୁମ୍ବୀ ତୋରଣ, ବର୍ଣ୍ଣବୈଚିତ୍ର୍ୟ ପୂର୍ଣ୍ଣ ଆଲୋକମାଳା, ଅପୂର୍ବ ଜନ ସମାବେଶ ତଥା ଅଫୁରନ୍ତ ଆନନ୍ଦରେ ହିଲ୍ଲୋଳିତ ହୋଇଉଠେ ।

ଓଡ଼ିଆ ଜାତି ଖ୍ରୀଷ୍ଟପୂର୍ବ କାଳରୁ ମହାଲକ୍ଷ୍ମୀଙ୍କର ଆରାଧନା କରିଆସିଛି । ଉଦୟଗିରି ଗୁମ୍ଫାସ୍ଥିତ ଗଜଲକ୍ଷ୍ମୀଚିତ୍ର ଏବଂ ଶ୍ରୀମନ୍ଦିର ପରିସରସ୍ଥିତ ମହାଲକ୍ଷ୍ମୀଙ୍କର ଭବ୍ୟମନ୍ଦିର ଉତ୍କଳୀୟ ସାଂସ୍କୃତିକ ସ୍ୱାଭିମାନରେ ଲକ୍ଷ୍ମୀପୂଜାର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟ

ସୂଚନାପ୍ରଦାନ କରିଥାଏ । ଓଡ଼ିଶାର ସଂସ୍କୃତି ଓ ପରଂପରାର ପ୍ରବହମାନ ଧାରାରେ ଉଦ୍‌ବୁଦ୍ଧ ହୋଇ ଢେଙ୍କାନାଳବାସୀ ଦୀର୍ଘ ଅଣାଅଶୀ ବର୍ଷ ଧରି କୁମାର ପୂର୍ଣ୍ଣମୀରେ ଗଜଲକ୍ଷ୍ମୀ ପୂଜାକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାରେ ଅଧିଷ୍ଠିତ କରାଇ ପାରିଛନ୍ତି । ମହନୀୟତା ହେଉଛି, ଏକ ଅନ୍ୟାନ୍ୟ ସ୍ଥାନରେ ଅନୁଷ୍ଠିତ ମୃଣ୍ମୟୀ ପୂଜାର ଅନୁକରଣ ସର୍ବସ୍ୱ ଅନୁଷ୍ଠାନ ନହୋଇ ଓଡ଼ିଆ ସଂସ୍କୃତିର ସ୍ୱାଭିମାନରେ ଆତ୍ମିକ ସନନ୍ଦ ରୂପେ ମର୍ଯ୍ୟାଦାବନ୍ତ । ସହରର ବିଭିନ୍ନ ବଜାର ଓ ସାହିବସ୍ତିରେ ସର୍ବମୋଟ ଛତିଶ ଗୋଟି ଲକ୍ଷ୍ମୀମେଢ଼ ନିର୍ମିତ ହୋଇଥାଏ । ପ୍ରତ୍ୟେକ ପୂଜାମଣ୍ଡପରେ ବୈଦିକ ବିଚାରରେ ପୂଜନ-ଅର୍ଚ୍ଚନ, ଶାକ୍ତ ପରଂପରାରେ ସ୍ମରଣ-ବନ୍ଦନ ଓ ବୈଷ୍ଣବୀୟ ଭାବଧାରାରେ ଭଜନକୀର୍ତ୍ତନ ଘଟି ଆଧ୍ୟାତ୍ମିକତାର ଅଭୂତପୂର୍ବ ବାତାବରଣ ସୃଷ୍ଟିହୋଇଥାଏ । ଲକ୍ଷ୍ମୀସହସ୍ରନାମ, କବଚ, ସ୍ତବ, ସ୍ତୋତ୍ର ଓ ଲକ୍ଷ୍ମୀପୁରାଣ ପାଠ ପରିବେଶକୁ ଗମ୍ଭୀର ଓ ଭକ୍ତି ରସାଣିତ କରିଥାଏ । ସ୍ଥାନେ ସ୍ଥାନେ ଏକ ଶହ ଆଠ ଅଥବା ଏକସହସ୍ର ପଦ୍ମସମର୍ପିତ ଲକ୍ଷ୍ମୀଅଭିଷେକ ମହୋତ୍ସବ ଓ ହୋମ ପୂଜାଟିକୁ ମହିମୋଜ୍ଜ୍ୱଳ କରିଥାଏ । ପୂଜା ଆସ୍ଥାନ ମାନଙ୍କରେ ରୋଗୀ ଓ ଦରିଦ୍ର ନରନାରାୟଣଙ୍କ ପ୍ରସାଦସେବା ପ୍ରଦାନ ଦ୍ୱାରା ମହୋତ୍ସବଟି ମହିମା ବିମଣ୍ଡିତ । ହରିଜନ ଓ ଆଦିବାସୀ ସାହିମାନଙ୍କରେ ଅନୁଷ୍ଠିତ ପୂଜାଆସ୍ଥାନ ମାନଙ୍କରୁ କଲ୍ୟାଣମୟ ଚେତନା ସ୍ପନ୍ଦିତ । ସତେ ଯେପରି ଜଗଜ୍ଜନନୀ ସ୍ୱୟଂ ଆବିର୍ଭୂତା ହୋଇ ଜାତି ବର୍ଣ୍ଣର ପ୍ରାଚୀର ଉଠାଇ ଦେଇଛନ୍ତି । ପ୍ରତ୍ୟେକ ପୂଜାମଣ୍ଡପ ଗୋଟିଏ ଗୋଟିଏ ଲକ୍ଷ୍ମୀମନ୍ଦିରରେ ପରିଣତ ହୋଇ ତିନିଧୂପ ଓ ପାଞ୍ଚଅବକାଶ ରୀତିରେ ପୂଜାର୍ଚ୍ଚନା ଚାଲିଛି । ପୂଜାସମୟରେ ଲୋକବାଦ୍ୟ, ଘଣ୍ଟ, ଘଣ୍ଟା, ଶଙ୍ଖ, ଭେରୀ, ତୂରୀ ପ୍ରଭୃତି ବାଦ୍ୟବାଦନ ମନରେ ଅହେତୁକୀ ଭାବ ସଂଚାର କରିଥାଏ । ସୁଖର କଥା, ସାଂପ୍ରଦାୟିକ ସଂକୀର୍ଣ୍ଣତାରୁ ଉର୍ଦ୍ଧ୍ୱରେ ରହି ସମଗ୍ର ସହରବାସୀ ଏକମନ ଏକ ପ୍ରାଣରେ ଲକ୍ଷ୍ମୀପୂଜାକୁ ଓଡ଼ିଆ ସଂସ୍କୃତିର ମହାମିଳନୋତ୍ସବ ରୂପେ ମହିମାବନ୍ତ କରିଥାନ୍ତି ।

ପୂଜାମଣ୍ଡପ ସମୂହରେ ଉତ୍କଳୀୟ ଶିଳ୍ପ,କଳା ଭାସ୍କର୍ଯ୍ୟର ସ୍ୱାକ୍ଷରରେ ମହାଲକ୍ଷ୍ମୀ ଭିନ୍ନ ଭିନ୍ନ ଭାବ ଓ ଭଙ୍ଗୀରେ ଆବିର୍ଭୂତା। କେଉଁଠାରେ ଗଜଲକ୍ଷ୍ମୀ ତ କେଉଁଠାରେ ପଦ୍ମାଳୟା, କେଉଁଠାରେ ମନ୍ଦିର ବାସିନୀ ତ କେଉଁଠାରେ ଦେବବନ୍ଦିତା, କେଉଁମଣ୍ଡପରେ ଅନ୍ନଦାତ୍ରୀ ତ କେଉଁଠାରେ ବିଷ୍ଣୁପାଟରାଣୀ । ପ୍ରତ୍ୟେକ ମୂର୍ତ୍ତି ପୌରାଣିକ ବର୍ଣ୍ଣନାରେ ନିର୍ମିତ ତଥା ଅଲୌକିକ ଆଭୂଷଣ

ଖଚିତ । ମୂର୍ତ୍ତିସହିତ ବାହନ ଓ ପାର୍ଶ୍ୱଦେବତା ଉତ୍କଳୀୟ ଶିଳ୍ପକଳାର ଚରମ ନିଦର୍ଶନ । ସ୍ଥଳବିଶେଷରେ ଅନେକ ପୌରାଣିକ ଦୃଶ୍ୟ ନିର୍ମାଣ କରାଯାଇ ଲୋକ ପରଂପରା ସାଂସ୍କୃତିକ ବୈଚିତ୍ର୍ୟ ପ୍ରତିଫଳିତ । ଅନେକ ପୂଜାମଣ୍ଡପରେ ଆଧୁନିକ ଶୈଳୀରେ ମୂର୍ତ୍ତିନିର୍ମିତ ହୋଇଥିଲେହେଁ ଏହା ଉତ୍କଳୀୟ ଶିଳ୍ପଭାସ୍କର୍ଯ୍ୟ ପରିଧିରେ ଆତ୍ମିକ ସନନ୍ଦ ରୂପେ ପ୍ରତିଭାତ। ସଂକ୍ଷେପରେ କହିଲେ, ପୂଜାଆସ୍ଥାନ ସମୂହରେ ଶିଳ୍ପଭାସ୍କର୍ଯ୍ୟ ସହିତ ପୌରାଣିକ କଳ୍ପନା ବିଳାସର ମଧୁର ସମନ୍ୱୟ ସଂଘଟିତ ହୋଇ ପୂଜାମହୋତ୍ସବଟି ଓଡ଼ିଶାର ସାଂସ୍କୃତିକ ସ୍ୱାଭିମାନ ରୂପେ ଲକ୍ଷ ଲକ୍ଷ ଦର୍ଶକ ଓ ଭକ୍ତଙ୍କର ଆକର୍ଷଣ ହୋଇ ପାରିଛି ।

ଢେଙ୍କାନାଳ ଲକ୍ଷ୍ମୀପୂଜାର ଅନ୍ୟତମ ମୁଖ୍ୟଆକର୍ଷଣ ହେଉଛି ବୈକୁଣ୍ଠ ଭବନ ସଦୃଶ ଅଲୌକିକ ସାଜସଜ୍ଜା, ବର୍ଣ୍ଣାଢ଼୍ୟ ଆଲୋକମାଳା ଓ ନଭଶ୍ଚୁମ୍ବୀ ତୋରଣରାଜି । ପ୍ରତ୍ୟେକ ପୂଜାମଣ୍ଡପରେ ଲୋକାକର୍ଷକ ଶୈଳୀରେ ଜରି, ସୋଲ, ରଙ୍ଗୀନ କାଗଜ ପ୍ରଭୃତିରେ ରସବନ୍ତ କଳାଚାତୁର୍ଯ୍ୟ ପ୍ରଦର୍ଶିତ ଏବଂ ପ୍ରଚ୍ଛଟପଦ ବିଦ୍ୟୁତ୍‌ଆଲୋକରେ ଉଦ୍‌ଭାସିତ । ଏଥିରେ ପ୍ରାକୃତିକ ଦୃଶ୍ୟ ସହିତ ବିଜ୍ଞାନର ବିସ୍ମୟ ସଂଯୋଜିତ ହୋଇ ଅଲୌକିକ ଭାବଧାରା ପରିବେଷିତ । ପ୍ରତ୍ୟେକ ବଜାରବାସୀ ସେମାନଙ୍କ ପୂଜାମଣ୍ଡପ ସହିତ ବଜାରଅଞ୍ଚଳକୁ ବର୍ଣ୍ଣାଢ଼୍ୟ ଆଲୋକମାଳରେ ଆଭୂଷିତ କରିଥାନ୍ତି । ଅଧିକନ୍ତୁ କେତେକ ସ୍ଥାନରେ ବୈଦ୍ୟୁତିକ ବିସ୍ମୟ ସମ୍ବଳିତ ଦୃଶ୍ୟ ସୃଷ୍ଟି କରାଯାଇ ଦର୍ଶକମଣ୍ଡଳୀର ବିମୋହିତ କରିବାର ପ୍ରୟାସ କରାଯାଇଥାଏ । ଆଲୋକର ବର୍ଣ୍ଣାଳୀ ସାଙ୍ଗକୁ ସୁଉଚ୍ଚ ତୋରଣ ସହରାଞ୍ଚଳରେ ଉତ୍କଳୀୟ ସଂସ୍କୃତିର ବିଜୟକେତନ ଉଡ଼ାଇଥାଏ। ତୋରଣ ସମୂହ ସ୍ମରଣୀୟ ଦୃଶ୍ୟ ସମ୍ବଳିତ, ବର୍ଣ୍ଣବିଭା ବିଭୂଷିତ ଏବଂ ଚଳିଷ୍ଣୁମାନ ବିଦ୍ୟୁତ୍ ପ୍ରଦୀପରେ ଆଲୋକିତ । ତୋରଣ ସମୂହରେ ଅଙ୍କିତ ମୟୂର, ଦେବଦେବୀ ଚିତ୍ରାବଳୀ, ପ୍ରାକୃତିକ ଦୃଶ୍ୟ ଅଧିକ ଆକର୍ଷଣୀୟ । ଆଲୋକ ତୋରଣ ଗୁଡ଼ିକ ସର୍ବାଧିକ ଦର୍ଶକଙ୍କର ମନୋରଞ୍ଜନ କରିଥାଏ । ମୋଟ ଉପରେ କହିଲେ ଢେଙ୍କାନାଳ ଲକ୍ଷ୍ମୀପୂଜାରେ ଶିଳ୍ପ, କଳା ଓ ଭାସ୍କର୍ଯ୍ୟ ସହିତ ବିଜ୍ଞାନର ମିଳନଘଟି ଅଲୌକିକ ମନୋର୍ହାରିଣୀ ଦୃଶ୍ୟାବଳୀ ସୃଷ୍ଟି ହୋଇଛି।

ଲକ୍ଷ୍ମୀପୂଜା ମହୋତ୍ସବଟିକୁ ସର୍ବାଙ୍ଗ ସୁନ୍ଦର କରିପାରିଛି ବିଭିନ୍ନ ସ୍ଥାନ ଓ ଆସ୍ଥାନ ମାନଙ୍କରେ ଅନୁଷ୍ଠିତ ସାଂସ୍କୃତିକ କାର୍ଯ୍ୟକ୍ରମ । ଷ୍ଟାଡ଼ିୟମ୍ ସନ୍ନିକଟ ଗଜଲକ୍ଷ୍ମୀ ମଣ୍ଡପରେ ପ୍ରତି ସନ୍ଧ୍ୟାରେ ଅନୁଷ୍ଠିତ ହେଉଛି ଓଡ଼ିଶୀ ନୃତ୍ୟ,

ଗୋଟିପୁଅନୃତ୍ୟ, ନୃତ୍ୟବିଚିତ୍ରା, ନୃତ୍ୟାଭିନୟ, ଏକାଙ୍କିକା, ନାଟକ ତଥା ବିଭିନ୍ନ ଲୋକନୃତ୍ୟ । ପ୍ରତ୍ୟେକ ପୂଜାମଣ୍ଡପରେ ଭଜନ, କୀର୍ତ୍ତନ, ପାଲା, ଦାସକାଠିଆ, ଘୋଡ଼ାନାଚ, ଘୁମୁରାନାଚ ପ୍ରଭୃତି ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ । ନବରଙ୍ଗ ନାଟକକୁ ରାଜରାସ୍ତାରେ ଦଣ୍ଡାୟମାନ ହୋଇ ହଜାର ହଜାର ଦର୍ଶକ ଉପଭୋଗ କରିଥାନ୍ତି । ଲକ୍ଷ୍ମୀପୂଜା ଉପଲକ୍ଷେ ସହରରେ ଯାତ୍ରାଦଳ ମଧ୍ୟ ଅଭିନୟ ପ୍ରଦର୍ଶନ କରନ୍ତି । ସହରର ପ୍ରାଚୀନ ମନ୍ଦିର ଓ ମଠ ମାନଙ୍କରେ ଲକ୍ଷ୍ମୀପୂଜା ନିମିତ୍ତ ଭଜନ ତଥା ପ୍ରବଚନ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥାଏ । ସମଗ୍ର ସହର ସାଂସ୍କୃତିକ ବିଚିତ୍ରାର ମନୋରମ ଦର୍ଶନ ସ୍ଥଳୀରେ ରୂପାନ୍ତରିତ ହୋଇ ଲକ୍ଷ ଲକ୍ଷ ଦର୍ଶକଙ୍କର ମନୋରଞ୍ଜନର ମାଧ୍ୟମ ପାଲଟିଯାଏ ।

ଲକ୍ଷ୍ମୀପୂଜା ଅବସରରେ ଚାଳିଶ ବର୍ଗ କିଲୋମିଟର ବ୍ୟାପୀ ଢେଙ୍କାନାଳ ସହରାଞ୍ଚଳ ଏକ ସୁବୃହତ୍ ବାଣିଜ୍ୟମେଳାର ରୂପଧାରଣ କରିଛି । ସ୍ଥାୟୀ ବ୍ୟବସାୟୀ ବୃନ୍ଦ ସେମାନଙ୍କର ଦୋକାନ ଓ ପ୍ରତିଷ୍ଠାନକୁ ଗ୍ରାହକବୃନ୍ଦଙ୍କ ଆକର୍ଷଣ ନିମିତ୍ତ ସୁନ୍ଦର ଭାବରେ ସଜାଇ ବିଭିନ୍ନ ରଙ୍ଗର ଆଲୋକରେ ଆଲୋକିତ କରିଛନ୍ତି । ସେମାନଙ୍କ ବ୍ୟତୀତ ଦୂରଦେଶାଗତ ବ୍ୟବସାୟୀବୃନ୍ଦ ଭିନ୍ନ ଭିନ୍ନ କିସମର ମନୋହାରିଣୀ ବିପଣୀମାଳାରେ ରାଜଦଣ୍ଡକୁ ସୁଶୋଭିତ ଓ ଆକର୍ଷଣୀୟ କରିଛନ୍ତି । ମନୋହାରିଣୀ ବିପଣୀମାଳା ସହିତ ବଜାର ମଝିରେ ଖୋଲିଥିବା ଚା, ଜଳଖିଆ, ଚାଟ୍, ଗୁପଚୁପ, ଠୁଙ୍କାପୁରୀ, ରାବିଡ଼ି, ରସାବଳୀ, ପାନଦୋକାନ ପ୍ରଭୃତି ଦର୍ଶକବୃନ୍ଦଙ୍କର ଅନ୍ୟତମ ଆକର୍ଷଣ । ଦର୍ଶକ ଓ ଭକ୍ତବୃନ୍ଦ ବିଭିନ୍ନ ପୂଜାମଣ୍ଡପରେ ଲୋକମାତାଙ୍କୁ ଦର୍ଶନକରିବା ସହିତ ଯାତ୍ରାପ୍ରାଙ୍ଗଣରେ ସୁସଜ୍ଜିତ ମନୋହାରିଣୀ ବିପଣୀମାଳାରୁ ଖେଳଣାଠାରୁ ଘରକରଣା, ନିତ୍ୟବ୍ୟବହାର୍ଯ୍ୟ ଓ ସୌଖୀନ ପଦାର୍ଥ କ୍ରୟ କରୁଛନ୍ତି । ବିଶେଷତଃ ସନ୍ଧ୍ୟାଠାରୁ ମଧ୍ୟରାତ୍ରି ପର୍ଯ୍ୟନ୍ତ ଦର୍ଶକମାନଙ୍କର ଭିଡ଼ ଲାଗିରହିଛି । ଗୌରବର କଥା, ଏତେବଡ଼ ମହୋତ୍ସବ ଓ ବାଣିଜ୍ୟମେଳାରେ କୌଣସିଠାରେ ସାମାନ୍ୟତମ ଗଣ୍ଡଗୋଳର ମଧ୍ୟ ସୂଚନା ନଥାଏ । ସତେଯେପରି ସହରଟି କଳା, ଶିଳ୍ପ, ବାଣିଜ୍ୟ ଓ ଧର୍ମର ମହାମିଳନ କ୍ଷେତ୍ର ଏବଂ ଶାନ୍ତି, ଶୃଙ୍ଖଳା ଓ ସୁବ୍ୟବସ୍ଥା ଏହାକୁ ସାଂସ୍କୃତିକ ସ୍ୱାଭିମାନରେ ମର୍ଯ୍ୟାଦାବନ୍ତ କରିଥାଏ ।

ବାରଶହବର୍ଷର ଐତିହ୍ୟ ଓ ସଂସ୍କୃତି ବିମଣ୍ଡିତ ଢେଙ୍କାନାଳ ସହରରେ ଲକ୍ଷ୍ମୀପୂଜା ଏକ ଗୌରବୋଜ୍ଜ୍ୱଳ ସାଂସ୍କୃତିକ ପରମ୍ପରା ସୃଷ୍ଟିକରିଛି । ମଧ୍ୟଯୁଗରୁ ଲକ୍ଷ୍ମୀ-ନୃସିଂହ ଉପାସନା ଢେଙ୍କାନାଳ ମାଟିରେ ବ୍ୟକ୍ତିଗତ, ପାରିବାରିକ ଓ

ସାମାଜିକ ଉପାସନାର ପାରଂମ୍ପରା ସ୍ୱରୂପ ଗ୍ରହଣ କରିଥିଲା । ପରବର୍ତ୍ତୀକାଳରେ ମହାଲକ୍ଷ୍ମୀ ଢେଙ୍କାନାଳ ରାଜବଂଶର ଇଷ୍ଟଦେବୀ ଆସନ ଅଳଙ୍କୃତ କଲେ । ଅଧିକନ୍ତୁ, ସଂସ୍କୃତିର ଉତ୍ତରଣରେ ତତ୍‌କାଳୀନ ଢେଙ୍କାନାଳ ରାଜ୍ୟର ପୂର୍ବଦିଗସ୍ଥ ପ୍ରଗଣାର ନାମ ''ଲକ୍ଷ୍ମୀପ୍ରସାଦ ବିଷ'' ପ୍ରଦାନ କରାଯାଇଥିଲା, ବିଂଶ ଶତାବ୍ଦୀରେ ପ୍ରାରମ୍ଭରେ ଢେଙ୍କାନାଳରେ କୁଞ୍ଜକାନ୍ତ ମନ୍ଦିର ପ୍ରତିଷ୍ଠିତ ହୋଇ ବୈଷ୍ଣବ ଭାବଧାରାର ପ୍ରସାର ଘଟିବା ସହିତ ନୃତ୍ୟ, ଗୀତ, କଳା ଓ ଅଭିନୟରେ ଢେଙ୍କାନାଳ ସୁଖ୍ୟାତି ଲାଭ କରିଥିଲା । ସେହି ସମୟରେ ଢେଙ୍କାନାଳର ରାସଦଳ ଓଡ଼ିଶାରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା। ଓଡ଼ିଶୀ ନୃତ୍ୟ, ସଂଗୀତ ଓ ବୈଷ୍ଣବୀୟ ଭାବଧାରାରେ ଗଠିତ ଏହି ରାସଦଳରେ ପ୍ରତିଷ୍ଠାତା, ନିର୍ଦ୍ଦେଶକ ଓ ତତ୍ତ୍ୱାଧିକାରୀ ଥିଲେ କଳାକାର ବ୍ରଜକିଶୋର ପଟ୍ଟନାୟକ ପ୍ରତିବର୍ଷ ଢେଙ୍କାନାଳର ଇଷ୍ଟଦେବୀ ମହାଲକ୍ଷ୍ମୀଙ୍କ ଜନ୍ମତିଥି ଅର୍ଥାତ୍ କୁମାର ପୂର୍ଣ୍ଣମୀର ଜ୍ୟୋସ୍ନାବିଧୌତ ରଜନୀରେ ହନୁମାନ ମନ୍ଦିର ପ୍ରାଙ୍ଗଣରେ ଏହି ରାସଦଳ ବାର୍ଷିକ ଅଭିନୟର ଶୁଭାରମ୍ଭ କରିଥାନ୍ତି । ଏହି ଅବସରରେ ୧୯୨୨ ମସିହାରେ ବ୍ରଜବାବୁ ମୃଣ୍ମୟୀ ଗଜଲକ୍ଷ୍ମୀ ପୂଜାର ଆୟୋଜନ କରିଥିଲେ । ହନୁମାନ ମନ୍ଦିର ପ୍ରାଙ୍ଗଣରେ କୁମାର ପୂର୍ଣ୍ଣମୀଠାରୁ ସାତଦିନ ପର୍ଯ୍ୟନ୍ତ ବୈଦିକବିଧିରେ ଗଜଲକ୍ଷ୍ମୀପୂଜା ହେବା ସହିତ ପ୍ରତି ରାତ୍ରିରେ ରାସଦଳ ଶରଦରାସ ପରିବେଷଣ କରିଥିଲେ । ମହନୀୟତା ହେଉଛି, ଏହି ରାସାଭିନୟ ଓ ଲକ୍ଷ୍ମୀପୂଜାରେ ହିନ୍ଦୁ ଓ ମୁସଲମାନ ଉଭୟ ସକ୍ରିୟ ଅଂଶ ଗ୍ରହଣ ପୂର୍ବକ ଓଡ଼ିଆ ସଂସ୍କୃତିର ଉଦାରତା ପ୍ରତିପାଦନ କରିଥିଲେ । ସୁଖରବିଷୟ, ସଂପ୍ରଦାୟଗତ ସଂକୀର୍ଣ୍ଣତାରୁ ଉର୍ଦ୍ଧ୍ୱରେରହି ଏହି ରାସଯାତ୍ରା ଓ ପୂଜାନୁଷ୍ଠାନ ଗଣମହୋତ୍ସବରେ ରୂପଧାରଣ କରିଥିଲା । ୧୯୨୫ରେ ମୀନାବଜାରରେ ଲକ୍ଷ୍ମୀପୂଜାର ଦ୍ୱିତୀୟ ଆସ୍ଥାନ ପ୍ରତିଷ୍ଠିତ ହେଲା। ସେଠାରେ ମଧ ଲକ୍ଷ୍ମୀପୂଜା ସହିତ ପ୍ରତି ରାତ୍ରିରେ ନାଟକ ଅନୁଷ୍ଠିତ ହେଲା । ୧୯୪୦ ମସିହାରେ ସାଆନ୍ତ ସାହି ବା ଜବାହାର ଚୌକଠାରେ ତୃତୀୟ ଅନୁଷ୍ଠାନର ଶୁଭାରମ୍ଭ ହେଲା । ଇତିମଧ୍ୟରେ ହନୁମାନ ବଜାରଠାରେ ବାରବର୍ଷ ପୂରି ପୂଜା ବନ୍ଦ ହୋଇଯାଇଥିଲା । ୧୯୪୩ ମସିହାରେ ମୀନାବଜାରରେ ଲକ୍ଷ୍ମୀପୂଜାର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୋଇ ୧୯୪୬ ମସିହାରେ ଜବାହାର ଚୌକରେ ପୁନର୍ବାର ପୂଜା ଆରମ୍ଭ ହେଲା । ସ୍ୱାଧୀନତାପରେ ୧୯୪୮ ରେ ଲକ୍ଷ୍ମୀବଜାର, ୧୯୪୯ରେ ଗଣେଶ ବଜାର, ୧୯୫୦ରେ ମହାବୀର ବଜାର, ୧୯୫୧ରେ

କାଞ୍ଚନ ବଜାର, ୧୯୫୨ରେ ଆନନ୍ଦବଜାର, ୧୯୫୩ ରେ କାରିଗର ସାହି, ୧୯୫୫ରେ ବାଜିଚୌକ ଓ ଗୁଡ଼ିଆନାଳୀ, ୧୯୫୭ ରେ ରାଧାକୃଷ୍ଣବଜାର, ୧୯୫୮ ରେ ବୁବୁଲି ଟାଉନ୍-୧, ୧୯୫୯ରେ କୈବଲ୍ୟବଜାର, ୧୯୬୦ରେ ଜୁବୁଲିଟାଉନ୍-୨, ୧୯୬୧ରେ ସିମିଳିଆନ୍ ଷ୍ଟେସନ୍‌ବଜାର ୧୯୬୩ ରେ ରନ୍‌ବଜାର, ୧୯୬୬ ଚନ୍ଦନବଜାର, ୧୯୬୭ରେ କଲେଜରୋଡ଼୍, ୧୯୬୯ରେ ବସ୍‌ଷ୍ଟାଣ୍ଡ ଓ ଗାନ୍ଧୀବଜାର, ୧୯୭୧ରେ କୋରିଆଁ, ୧୯୭୫ରେ ଦୁର୍ଗାବଜାର, ୧୯୭୬ରେ କାଳିକାନଗର, ୧୯୭୮ରେ ନେହୁରୁ ବଜାର, ୧୯୭୯ରେ ରାମେଶ୍ୱର ପୁର ଓ ଜୁବୁଲିଟାଉନ୍-୩, ୧୯୮୨ରେ ଭଗବାନପୁର ଏବଂ ୧୯୮୬ରେ ସରଜଙ୍ଗସାହି ପ୍ରଭୃତି ପୂଜାଆସ୍ଥାନ ମାନଙ୍କରେ ଲକ୍ଷ୍ମୀପୂଜା ଅନୁଷ୍ଠିତ ହୋଇ ଢେଙ୍କାନାଳର ସାଂସ୍କୃତିକ ସ୍ୱାଭିମାନ ବୃଦ୍ଧିପାଇଲା। ସୂଚନାଯୋଗ୍ୟଯେ ୧୯୪୬ ମସିହାରୁ ମିଳିତ ଭସାଣୀ ଉତ୍ସବ ଅନୁଷ୍ଠିତ ହୋଇ ଏକ ଆଦର୍ଶ ପରଂପରା ପ୍ରବାହିତ ହେଲା। ଏହି ପରଂପରାରେ ଶେଷଦିନ ସମସ୍ତମେଢ଼ ଢେଙ୍କାନାଳର ଇଷ୍ଟ ଶ୍ରୀବଳଦେବଜୀଉଙ୍କ ମନ୍ଦିର ପ୍ରାଙ୍ଗନାରେ ଏକତ୍ରିତ ହୋଇ କ୍ରମିକ ନମ୍ବର ଅନୁସାରେ ମିଳିତ ଶୋଭାଯାତ୍ରାରେ ରାଜପ୍ରାସାଦ, ଢର୍ଜକୋର୍ଟଛକ, ହନୁମାନ ଛକ ଓ ବଜାର ମଧ ଦେଇ ପରିକ୍ରମା ପୂର୍ବକ ସହର ଉପକଣ୍ଠ ନଦୀରେ ମୂର୍ତ୍ତି ବିସର୍ଜନ କରିଥାନ୍ତି । ଲକ୍ଷ୍ମୀପୂଜାର ଏହି ଶେଷ ଦୃଶ୍ୟ ଦର୍ଶନ କରିବାକୁ ପ୍ରାୟ ପାଞ୍ଚଲକ୍ଷ ଯାତ୍ରୀ ଓ ଦର୍ଶକ ଏକତ୍ରିତ ହୋଇଥାନ୍ତି । ଲକ୍ଷ୍ମୀପୂଜା ଓ ଶୋଭାଯାତ୍ରାକୁ ସରସ, ସୁନ୍ଦର ଓ ସାଫଲ୍ୟମଣ୍ଡିତ କରିବାରେ ଢେଙ୍କାନାଳବାସୀଙ୍କ ସହିତ ଜିଲା ପ୍ରଶାସନ ମହତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି ।

ସଂସ୍କୃତି ବିମଣ୍ଡିତ ଓଡ଼ିଶାର ସମଲୟାତ୍ମକ ଭାବଧାରାର ପ୍ରବାହମାନ ସ୍ରୋତରେ ଢେଙ୍କାନାଳ ଲକ୍ଷ୍ମୀପୂଜା ଦୀର୍ଘ ଅଣାଅଶୀବର୍ଷ ଅତିକ୍ରମ ପୂର୍ବକ ସଂପ୍ରତି ଏକ ବିଂଶ ଶତାବ୍ଦୀରେ ଉପଗଦ । ସଂସ୍କୃତିର ଏହି ମହାମିଳନୋତ୍ସବରେ ଓଡ଼ିଶାର ଲୋକଧର୍ମ ତଥା ସାମାଜିକ ଜୀବନର ବୈଚିତ୍ର୍ୟ ପ୍ରତିଫଳିତ ହୋଇ ଆଧ୍ୟାତ୍ମିକ ଓ ସାଂସ୍କୃତିକ ବିଚାରବୋଧର ଉତ୍ତରଣ ଘଟିଛି । ଅଧିକନ୍ତୁ ଶାନ୍ତି, ଶୃଙ୍ଖଳା ସଦ୍‌ଭାବ, ମୈତ୍ରୀ, ପ୍ରୀତି, ଭାତୃତ୍ୱ ଓ ସୌଜନ୍ୟର ମଧୁର ସମାବେଶରେ ଏହି ସାର୍ବଜନୀନ ମହୋତ୍ସବ ଓଡ଼ିଶାର ସାଂସ୍କୃତିକ ଐତିହ୍ୟରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛି ।



# ବିଶ୍ୱ ପ୍ରସିଦ୍ଧ ଟୀକାକାର ଶ୍ରୀଧରସ୍ୱାମୀ

ପ୍ରାତଃସ୍ମରଣୀୟ ମହାତ୍ମା ଶ୍ରୀଧରସ୍ୱାମୀ ଜଣେ ପ୍ରଚଣ୍ଡ ପ୍ରତିଭାଧର, ଅଲୌକିକ ମେଧାସଂପନ୍ନ ତଥା ସମନ୍ୱୟାତ୍ମକ ଦୃଷ୍ଟିକୋଣ ସଂପନ୍ନ ବେଦାନ୍ତ ଦର୍ଶନ ପ୍ରବକ୍ତା ରୂପେ ବିଶ୍ୱପ୍ରସିଦ୍ଧ । ଭାରତୀୟ ସଂସ୍କୃତି, ଧର୍ମ ଓ ଦର୍ଶନର ପ୍ରାଣସ୍ୱରୂପ ଶ୍ରୀମଦ୍ ଭଗବତଗୀତା ଓ ଶ୍ରୀମଦ୍ ଭାଗବତ ପ୍ରଭୃତି ଶାସ୍ତ୍ରସମୂହକୁ ସ୍ୱକୀୟ ଭାବବୋଧଗମ୍ୟ ବ୍ୟଞ୍ଜନା ଓ ଶୈଳୀରେ ଟୀକାକରି ସେ ସମଗ୍ର ଭାରତବାସୀଙ୍କର ଏକାନ୍ତ ଆପଣାର ହୋଇଯାଇଛନ୍ତି । ତତ୍‌କୃତ ଭାଷ୍ୟସମୂହ ଅଦ୍ୱୈତବାଦର ସିଦ୍ଧାନ୍ତ, ଉପରେ ଆଧାରିତ ହେଲେହେଁ ଦ୍ୱୈତବାଦ ଓ ଭକ୍ତିରସର ସମନ୍ୱୟରେ ଅପରୂପ ଆଧ୍ୟାତ୍ମିକ ସୌନ୍ଦର୍ଯ୍ୟରେ ବିଭୂଷିତ । ପ୍ରଜ୍ଞାର ଐଶ୍ୱର୍ଯ୍ୟମୟ ଆଭାସ ପରିପୂର୍ଣ୍ଣ ତତ୍‌ପ୍ରଣୀତ ଭାଷ୍ୟସମୂହ ଭାରତୀୟ ଅଧ୍ୟାତ୍ମଶାସ୍ତ୍ରର ମୁକୁଟମଣି ରୂପେ ସ୍ୱୀକୃତ । ଈଶ୍ୱର ସାଧନ ମାର୍ଗକୁ ସୁଗମ ଓ ସରଳ ରୀତିରେ ଦିବ୍ୟାନୁଭୂତି ସଂପନ୍ନ ନୂତନ ସ୍ୱାଦରେ ଉପସ୍ଥାପନାହିଁ ତାଙ୍କ ଭାଷ୍ୟର ଚମତ୍କାରିତା ।

ପୂଜ୍ୟ ଶ୍ରୀଧରସ୍ୱାମୀ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରାରମ୍ଭରେ ମାଘ ଶୁକ୍ଳ ସପ୍ତମୀ ତିଥିରେ ଓଡ଼ିଶା ପ୍ରଦେଶର ବାଲେଶ୍ୱର ଜିଲାନ୍ତର୍ଗତ ରେମୁଣା କ୍ଷୀରଚୋରା ଗୋପୀନାଥ ମନ୍ଦିର ନିକଟବର୍ତ୍ତୀ ମରେଇଗାଁ ବା ମୟୂରଗ୍ରାମ ବ୍ରାହ୍ମଣ ଶାସନରେ ଜନ୍ମଗ୍ରହଣ କରିଥିଲେ । ଉପନୟନ ପରେ ସେ ଗୃହରେ ରହି ପାରଂପରୀକ ରୀତିରେ ବେଦବେଦାନ୍ତ ଅଧ୍ୟୟନ କରି ଯୌବନକାଳରେ ଆତ୍ମାର ଅପରୋକ୍ଷାନୁଭୂତି ଅନୁସନ୍ଧାନରେ ଶ୍ରୀଧର ଗୃହତ୍ୟାଗ ପୂର୍ବକ ପବିତ୍ର ନୀଳାଚଳଧାମରେ ପଦାର୍ପଣ କଲେ । ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟଙ୍କ ପ୍ରତିଷ୍ଠିତ ଭୋଗବର୍ଦ୍ଧନପୀଠର ସିଦ୍ଧମହାତ୍ମା ରାମକୃଷ୍ଣାନନ୍ଦଙ୍କର ଶିଷ୍ୟତ୍ୱ ଗ୍ରହଣକଲାପରେ ସେ ସ୍ୱାମୀପାଦ ଶ୍ରୀଧର ରୂପେ ପରିଚିତ ହେଲେ । ଭୋଗବର୍ଦ୍ଧନ ମଠ ତଥା ଏହାର ଏକ ଶାଖା କପିଳାସ ପୀଠସ୍ଥିତ ବ୍ରହ୍ମଚାରୀମଠର ଗୁରୁ କ୍ରମାନ୍ୱୟରୁ ଶ୍ରୀଧରଙ୍କ ସାଧନା ଜୀବନର କିଞ୍ଚିତ ପରିଚୟ ଉପଲବ୍ଧ ହୋଇଥାଏ ।

ପୀଠେଽସ୍ୟ ଶିଷ୍ୟୋଽତ୍ରତୁ ଭୋଗବର୍ଦ୍ଧନେ
ମହେଶ୍ୱରାନନ୍ଦ ସରସ୍ୱତୀ ବସନ୍

ନୀଳାଦ୍ରିନାଥା ପଚିତିଂ ଯଥା ପୁରା
ନିରୀକ୍ଷତେସ୍ମାଃ ଶ୍ରମକୃତ୍ୟ ତତ୍ପରଃ
ଶ୍ରୀରାମକୃଷ୍ଣାନନ୍ଦୋଃ ଭୁତ୍ ଶିଷ୍ୟସ୍ତସ୍ୟ ମହାଯତିଃ
ସ୍ୱରବିଜ୍ଞାନ ନୈପୁଣ୍ୟା ପୁଣ୍ୟତେନ ମହତ୍‌ଯଶଃ
ତଦ୍‌ବେତ୍ୟ ତଦୌତସ୍ମୈ ସ୍ୱାମିବର୍ଯ୍ୟାୟ ନେତୃତାଂ
ପ୍ରତାପ ଭାନୁ ନୃପତିଃ କପିଳାସ ଶିବାଳୟେ
ତତ୍‌ଶିଷ୍ୟୋଃଭୁତ୍ ଶ୍ରୀଧର ସ୍ୱାମୀ ପାଦୋ
ଜପ୍ତ୍ୱାନିତ୍ୟଂ ମନ୍ତ୍ରରାଜଂ (ନାରସିଂହଂ) ସଭକ୍ତ୍ୟା
ବିଦ୍ୟାଚାତୁର୍ଦ୍ଦଶ୍ୟାମଭ୍ୟାସ ବଶ୍ୟଂ
ସୁସ୍ୟକ୍ଷିପ୍ରଂ ବିପ୍ରମୋକ୍ଷଂ ତତାନ
ଶ୍ରୀମଦ୍ ଭାଗବତଂ ସଚାତି ବିଷଦଂ ବ୍ୟାଖ୍ୟାୟ ସୁଖ୍ୟାତିମାନ୍
ବିଶ୍ୱସ୍ୟୋପକୃତିଂ ଚକାରନିତରାଂ ତତ୍ୱାର୍ଥ ମାଦୀପୟନ
ପ୍ରାଧାନ୍ୟଂ ଗିରିଶୋନୃସିଂହ କରୁଣା ଯତଃବ ଭାଷ୍ୟେଃସ୍ୟତୁ
ବ୍ୟାସୋ ବେତ୍ତି ନବାଃଥ ବେତ୍ତି ସକଳଂ ଶ୍ରୀ ଶ୍ରୀଧରସ୍ତେତ୍ୟପି

ଏହି ଆମ୍ନାୟରୁ ଉପଲବ୍ଧ ହୁଏ ଯେ ଭୋଗବର୍ଦ୍ଧନ ପୀଠର ମହେଶ୍ୱରୀନନ୍ଦ ସରସ୍ୱତୀ ଶିଷ୍ୟ ମହାଯତି ରାମକୃଷ୍ଣାନନ୍ଦ ଭାନୁଦେବଙ୍କଠାରୁ ସନନ୍ଦ ଲାଭ ପୂର୍ବକ କପିଳାସପୀଠରେ ବ୍ରହ୍ମଚାରୀ ମଠ ସ୍ଥାପନ କରିଥିଲେ । ସ୍ୱାମୀପାଦ ଶ୍ରୀଧର ଗୁରୁପ୍ରତିଷ୍ଠିତ କପିଳାସ ସ୍ଥିତ ବ୍ରହ୍ମଚାରୀ ମଠରେ ନିବାସ ପୂର୍ବକ କୈଳାସପତିଙ୍କ ଧାମରେ ନୃସିଂହମନ୍ତ୍ର ଜପକରି ଚତୁର୍ଦ୍ଦଶ ବିଦ୍ୟାଭ୍ୟାସ କରିଥିଲେ । ସାଧନାରେ ସିଦ୍ଧି ଲାଭ ପରେ ସେ ବିଶ୍ୱପ୍ରସିଦ୍ଧ ଭାଷ୍ୟସମୂହ ସେହି ପବିତ୍ର ପୀଠରେ ପ୍ରଣୟନ କରିଥିଲେ । ଏ ଅବଧି ଶ୍ରୀଧର ସ୍ୱାମୀଙ୍କର ସମାଧି କପିଳାସରେ ବିଦ୍ୟମାନ ।

ଯୋଗୀଜନସେବ୍ୟ କପିଳାସ ପୀଠରେ ରକ୍ତାଶୋକକୁଞ୍ଜ ମଧ୍ୟରେ ଶ୍ରୀଧରସ୍ୱାମୀ ପ୍ରଭୁନୃସିଂହଙ୍କ ପାଦପଦ୍ମତଳେ ଏକାଗ୍ରଚିତ୍ତରେ ଉପବେଶନ ପୂର୍ବକ ବିଶ୍ୱପ୍ରସିଦ୍ଧ ଟୀକାସମୂହ ରଚନା କରିଥିଲେ । ସୂଚନା ଦିଆଯାଇପାରେ ସେହି ସମୟରେ ଜନସାଧାରଣ ଶ୍ରୀମଦ୍ ଭଗବତ ଗୀତା, ଶ୍ରୀମଦ୍ ଭାଗବତ ପ୍ରଭୃତି ଦୁର୍ଲଭଶାସ୍ତ୍ର ସଂପର୍କରେ ଅନଭିଜ୍ଞ ଥିଲେ । କେବଳ ପ୍ରାଜ୍ଞ, ବିଜ୍ଞ ଓ ପଣ୍ଡିତଙ୍କ ମଧ୍ୟରେ ଏହି ସବୁ ଦୁର୍ଲଭଶାସ୍ତ୍ରର ଆଲୋଚନା ସୀମାବଦ୍ଧ ଥିଲା । ବେଦର ସମସ୍ତ

ପ୍ରଚ୍ଛନ୍ନ ତତ୍ତ୍ୱ ଏହିସବୁ ପରମଗ୍ରନ୍ଥରେ ପ୍ରତିପାଦିତ ହୋଇଥିବାରୁ ଏହାକୁ ସର୍ବବେଦାନ୍ତସାର ତଥା ଭାରତୀୟ ସଂସ୍କୃତିର ଅନୁପମରତ୍ନର ମାନ୍ୟତା ଦିଆଯାଏ । ପୂଜ୍ୟ ଶ୍ରୀଧରସ୍ୱାମୀ ଏହି ଦୁର୍ଲଭଶାସ୍ତ୍ର ସମୂହର ଯେଉଁସବୁ ଟୀକା ପ୍ରଣୟନ କରିଛନ୍ତି ତାହା ସିଦ୍ଧାନ୍ତ ରତ୍ନସମନ୍ୱିତ ସର୍ବଜନାଦୃତ ଭାଷ୍ୟ ରୂପେ ବିବେଚିତ । ଉଲ୍ଲେଖଯୋଗ୍ୟ ଯେ ଶ୍ରୀଧରଙ୍କ ଟୀକା ଅନୁକରଣରେ ସନାତନ ଗୋସ୍ୱାମୀ, ଜୀବଗୋସ୍ୱାମୀ, ବିଶ୍ୱନାଥ ଚକ୍ରବର୍ତ୍ତୀ, ବଳଦେବ ବିଦ୍ୟାଭୂଷଣ ଓ ଅତିବଡ଼ୀ ଜଗନ୍ନାଥ ଦାସ ପ୍ରଭୃତି ମହାତ୍ମାବୃନ୍ଦ ବିସ୍ତୃତ ଶାସ୍ତ୍ରମାନ ରଚନା କରିଅଛନ୍ତି ।

ଶ୍ରୀଧରସ୍ୱାମୀ ରଚନା କରିଥିବା ପରମଶାସ୍ତ୍ର ସମୂହ ହେଉଛି ଶ୍ରୀମଦ୍ ଭଗବତ ଟୀକାର ସୁବୋଧିନୀ ଟୀକା, ଶ୍ରୀମଦ୍ ଭାଗବତର ଭାବାର୍ଥ ଦୀପିକା ଟୀକା, ବିଷ୍ଣୁପୁରାଣର ଆତ୍ମ ପ୍ରକାଶ ଟୀକା, ସନତ୍ ସୁଜାତୀୟର ବାଳବୋଧିନୀ ଟୀକା ଗୀତାସାରର ବ୍ରହ୍ମସମ୍ବୋଧନୀ ଟୀକା, ଭାଗବତ ପୁରାଣ ବିଷୟକ ଦେବସ୍ତୁତି ଟୀକା, ପଦାର୍ଥ ପ୍ରକାଶିକା ପୁରାଣ ଟୀକା, ବ୍ରଜବିହାରକାବ୍ୟ, କେତେକସ୍ତୁତି ଏବଂ ଅନେକ ଉପାଦେୟ ଶ୍ଳୋକସମୂହକୁ ଏକତ୍ରିତ କରି ଶ୍ରୀପଦ୍ୟାବଳୀ । ଏହି ସମସ୍ତ ଶାସ୍ତ୍ର ସରଳ ସଂସ୍କୃତ ଭାଷାରେ ଲିଖିତ । ସେହି ସମୟରେ ଓଡ଼ିଆ ଭାଷାର ସଂପୂର୍ଣ୍ଣ ବିକାଶ ହୋଇନଥିବାରୁ ତଥା ବିଜ୍ଞ ମହଲରେ ସଂସ୍କୃତ ଭାଷାର ଆଦରଥିବାରୁ ଶ୍ରୀଧର ସଂସ୍କୃତ ଭାଷାରେ ହିଁ ଲେଖିଥିଲେ । ଉଲ୍ଲେଖଯୋଗ୍ୟଯେ ସର୍ବଭାରତୀୟ ସ୍ତରରେ ଭାବବିନିମୟ ମୁଖମାଧ୍ୟମ ସେହି ସମୟରେ ସଂସ୍କୃତ ଭାଷାହିଁ ଥିଲା । ତେଣୁ ସମଗ୍ର ଭାରତବର୍ଷରେ ଏହି ଭାଷ୍ୟସମୂହ ବିଶେଷ ଜନାଦୃତି ଲାଭ କରିଥିଲା ।

ଶ୍ରୀଧର ସ୍ୱାମୀଙ୍କ କୃତ ଶ୍ରୀମଦ୍ ଭଗବତ୍ ଗୀତାର ସୁବୋଧିନୀ ଟୀକା ବିଶ୍ୱପ୍ରସିଦ୍ଧ। ସାତଶହ ଶ୍ଳୋକ ବିଶିଷ୍ଟ ଗୀତା ସଦୃଶ ବିଶ୍ୱକୋଷର ସୁବୋଧିନୀ ଟୀକା ହେଉଛି ଏକ ସୁବୋଧ୍ୟ ଓ ସରଳ ଭାଷ୍ୟ ଏହି ଟୀକାରେ ସ୍ୱାମୀପାଦ ଶ୍ରୀଧର ମାନବଜୀବନର ପରମଲକ୍ଷ୍ୟ ଓ ନିଃଶ୍ରେୟସ ପ୍ରାପ୍ତିର ସମନ୍ୱୟାତ୍ମକ ସିଦ୍ଧାନ୍ତ ହୃଦୟସ୍ପର୍ଶୀ ଭାଷାରେ ବ୍ୟକ୍ତ କରିଛନ୍ତି । ସାର୍ବଜନୀନ ଦୃଷ୍ଟିକୋଣରୁ ଏହି ଭାଷ୍ୟ ଏକ ପୂର୍ଣ୍ଣ ବିବେଚନାତ୍ମକ ଗ୍ରନ୍ଥ । ଏହି ଟୀକାର ବୈଶିଷ୍ଟ୍ୟ ହେଉଛି ଏଥିରେ ଭାରତୀୟ ଦାର୍ଶନିକ ବିଚାରବୋଧର ବ୍ୟବହାରିକ ରୀତିନୀତି ସହଜଶୈଳୀରେ

ଅଭିବ୍ୟକ୍ତ । ସମର୍ପଣ ଭାବଧାରାରେ ଏହା ପରିବେଷିତ ହୋଇଥିବାରୁ ମାନବୀୟ ହୋଇ ମଧ୍ୟ ଦିବ୍ୟ ହୋଇଯାଇଛି । କେତେକ ଜ୍ଞାନପନ୍ଥୀ ସନ୍ୟାସୀ ଓ ପଣ୍ଡିତ ଏହି ଟୀକାରେ ସମର୍ପଣ ଭାବାପନ୍ନ ଭକ୍ତିର ପ୍ରାଧାନ୍ୟକୁ ସମର୍ଥନ ନକରିବାରୁ ସ୍ୱୟଂ କାଶୀବିଶ୍ୱନାଥ ନିମ୍ନୋକ୍ତ ଶ୍ଳୋକରେ ଏହାର ମୂଲ୍ୟ ନିର୍ଣ୍ଣୟ କରିଥିବାର ପ୍ରବାଦ ରହିଛି ।

ଅହଂ ବେତ୍ତି ଶୁକୋବେତ୍ତି ବ୍ୟାସବେତ୍ତିନ ବେତ୍ତିବୋ
ଶ୍ରୀଧରଂ ସକଳଂ ବେତ୍ତି ଶ୍ରୀନୃସିଂହ ପ୍ରସାଦତଃ

ଶ୍ରୀଧରଙ୍କ କୃତ ଶ୍ରୀମଦ୍ ଭାଗବତର ଭାବାର୍ଥ ଦୀପୀକା ଭାଷ୍ୟ ଅଖିଳବିଶ୍ୱର ଏକ ଅମୂଲ୍ୟ ବିଭବ । ଭାରତୀୟ ସଂସ୍କୃତିର ସର୍ବଶ୍ରେଷ୍ଠ ଭକ୍ତିଗ୍ରନ୍ଥ ତଥା ସକଳ ଶାସ୍ତ୍ରର ଅମୃତ ଭାଗବତ ସଂପର୍କରେ ସଂକ୍ଷିପ୍ତ ସୂଚନା ଦେବାକୁ ଯାଇ ପୂଜ୍ୟ ସ୍ୱାମୀପାଦ ଉଲ୍ଲେଖ କରିଛନ୍ତି ।

ଶ୍ରୀମଦ୍ ଭାଗବତାଭିଧଃ ସୁରତରୁସ୍ତାରଙ୍କୁର ସଜ୍ଜନିଃ
ସ୍କନ୍ଧୈର୍ଦ୍ୱାଦଶଭିସ୍ତତ୍ରଃ ପ୍ରବିଳସଦ୍ ଭକ୍ତ୍ୟାଳ ବାଳୋଦୟଃ
ଦ୍ୱାତ୍ରିଂଶ ତ୍ରିଶତଞ୍ଚ ଯସ୍ୟ ବିଳସତ୍ ଶାଖାଂ ସହସ୍ୟାଣ୍ୟଳଂ
ପର୍ଣ୍ଣ୍ୟାଶ୍ୟଷ୍ଟ ଦଶେଷ୍ଟଦୋତି ସୁଲଭୌ ବର୍ବତ୍ତି ସର୍ବୋପରି

ଶ୍ରୀଧରଙ୍କ ମତରେ ଭକ୍ତିରୂପକ ମୃତ୍ତିକାରେ ସତ୍‌ରୂପକ ବୀଜରୋପଣ ଦ୍ୱାରା ଯେଉଁ ମହାନ୍ ଦେବ ବୃକ୍ଷ ଉତ୍ପନ୍ନ ହୋଇଅଛି ତାହାହିଁ ଭାଗବତ । ଏ ପରମବୃକ୍ଷ ଦ୍ୱାଦଶ ଶାଖା,ତିନିଶହ ବତିଶି ପ୍ରଶାଖା ଓ ଅଠର ସହସ୍ର ଭକ୍ତିପୂର୍ଣ୍ଣ ପତ୍ରଦ୍ୱାରା ସୁଶୋଭିତ । ଏହି ପୁରୋଦୃଷ୍ଟିରେ ସେ ଭାବାର୍ଥଦୀପୀକା ଭାଷ୍ୟ ରଚନା କରିଥିଲେ । ଏହି ଟୀକାରେ ବେଦର ପରମତତ୍ତ୍ୱ ଭାଗବତ ଭାବଧାରାରେ ବ୍ୟକ୍ତ ହୋଇଥିବାରୁ ଏହା ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ଏହା ଶ୍ରୀଧର ସ୍ୱାମୀଙ୍କର ଏକ ସମନ୍ୱୟାତ୍ମକ ଭକ୍ତିତତ୍ତ୍ୱ ସମ୍ୱଳିତ ଟୀକା। ସମଗ୍ର ଭାରତବର୍ଷରେ ଭାଗବତର ଭାବାର୍ଥଦୀପୀକା ଟୀକା ''ଶ୍ରୀଧରୀ'' ନାମରେ ଖ୍ୟାତ । ଗୌରବର ବିଷୟ ଏହି ଟୀକାରେ ଶ୍ରୀଧରଙ୍କ ରଚିତ ପ୍ରାରମ୍ଭିକ ବନ୍ଦନା ଅଗଣିତ ବ୍ୟକ୍ତିଙ୍କର ନିତ୍ୟ ସ୍ମରଣୀୟ ଶ୍ଳୋକରୂପେ ମାନ୍ୟତା ପ୍ରାପ୍ତ ।

ନାରାୟଣଂ ନମସ୍କୃତ୍ୟଂ ନରୌଚୈବ ନରୋତ୍ତମଂ
ଦେବୀ ସରସ୍ୱତୀ ବ୍ୟାସ ତତୋଜୟ ମୁଦୀରୟେତ୍

ମୁକଂ କରୋତି ବାଚାଳଂ ପଙ୍ଗୁଂ ଲଂଘୟତେ ଗିରି
ଯତ୍‌କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।

ଏପରିକି ସ୍ୱୟଂ ପ୍ରେମାବତାର ଗୌରାଙ୍ଗ ମହାପ୍ରଭୁ ଶ୍ରୀଧରସ୍ୱାମୀଙ୍କର ଏହି ଲୋକପ୍ରିୟ ଟୀକା ଶ୍ରବଣ କରି ତାଙ୍କୁ ଗୁରୁରୂପେ ସ୍ୱୀକାର କରିଥିଲେ ।

ଶ୍ରୀଧର ସ୍ୱାମୀ ପ୍ରସାଦେ ଭାଗବତ ଜାନି
ଜଗତ୍‌ଗୁରୁ ଶ୍ରୀଧରସ୍ୱାମୀ ଗୁରୁକରି ମାନି ।

ଉଲ୍ଲେଖନୀୟ ହେଉଛି ଏହି ଟୀକା ଅନୁସରଣରେ ଜଗନ୍ନାଥ ଦାସ ଓଡ଼ିଆ ଭାଗବତ ରଚନା କରିଥିଲେ ।

ଶ୍ରୀଧରନାମେ ବିପ୍ରବର କଳିଯୁଗରେ ଜନ୍ମତାର
ଶ୍ରୀଭାଗବତଯେ ପୁରାଣ ଅଷ୍ଟାଦଶ ସସ୍ର ଶ୍ଳୋକେଣ
ତା ଟୀକା ଚଉବିଂଶ ସସ୍ର          କରଇ ଶ୍ରୀଧର ପ୍ରକାଶ
ବିପ୍ର କୁଳରେ ଜନ୍ମ ହୋଇ          ଜଗନ୍ନାଥ ଯେ ନାମ ବହି
ପ୍ରାକୃତବନ୍ଧେ ଭାଗବତ କହିଲେ ସନ୍ଥ ଜନ୍ମହିତ

ଏତଦ୍‌ଭିନ୍ନ ଶ୍ରୀଧର ସ୍ୱାମୀ ବିଷ୍ଣୁପୁରାଣରେ ସାରଗର୍ଭକ ଆତ୍ମପ୍ରକାଶ ଟୀକା, ସନତ୍ ସୁଜାତୀୟର ବାଳବୋଧିନୀ, ଗୀତାସାରର ବ୍ରହ୍ମସମ୍ବୋଧିନୀ ଟୀକା, ଭାଗବତ ପୁରାଣ ବିଷୟକ ଦେବସ୍ତୁତି ଟୀକା, ପଦାର୍ଥ ପ୍ରକାଶିକା ପୁରାଣଟୀକା, ବ୍ରଜବିହାର କାବ୍ୟ ତଥା ଶ୍ରୀପଦ୍ୟାବଳୀ ରଚନା କରିଥିଲେ, ଯାହାକି ଏକ ସ୍ୱତନ୍ତ୍ର ଆଲୋଚନା ଆବଶ୍ୟକ କରେ । ଏହି ଦୁର୍ଲଭ ଟୀକା ସମୂହରେ ଅଦ୍ୱୈତ ମତ ସହିତ ପ୍ରେମଭକ୍ତି ମୂଳକ ମତର ସମନ୍ୱୟ ପ୍ରତିଷ୍ଠା ହୋଇଅଛି । ତତ୍‌କୃତ ଭାଷ୍ୟ ସମୂହରେ ଭାବ, ଭାଷା ତଥା ଆଧ୍ୟାତ୍ମିକତାର ବହୁବର୍ଣ୍ଣ, ଆଲୋକଛଟା ବିଚ୍ଛୁରିତ । ସ୍ୱକୀୟ ରଚନାରେ ସେ ଭାରତୀୟ ଅଧ୍ୟାତ୍ମବିଦ୍ୟା ଓ ଦର୍ଶନକୁ ସୌରଭମୟ କରି ଜଗଦ୍‌ଗୁରୁ ପଦବାଚୀ ହୋଇପାରିଛନ୍ତି । ଜ୍ଞାନାଲୋକ ବିଭୂଷିତ ତାଙ୍କର ଭାଷ୍ୟସମୂହ ସାଧନାସମ୍ଭୂତ ଐଶ୍ୟବାଣୀରେ ପରିପୂର୍ଣ୍ଣ । ତାଙ୍କ ରଚନାବଳୀ ସୁବୋଧ୍ୟ, ଜ୍ଞାନ ଐଶ୍ୱର୍ଯ୍ୟ ପୂର୍ଣ୍ଣ, ଦାର୍ଶନିକ ଦୃଷ୍ଟିକୋଣ ସମନ୍ୱୟାତ୍ମକ ଏବଂ ଭକ୍ତି ଭାଗବତ୍ ପ୍ରୀତିରୂପା, ଯାହାର ଆଧ୍ୟାତ୍ମିକ ସୌନ୍ଦର୍ଯ୍ୟହିଁ ପରମାନନ୍ଦ । ପୂଜ୍ୟ ଶ୍ରୀଧରସ୍ୱାମୀ ଆପଣା ରଚନାରେ ବାରମ୍ବାର ପରମାନନ୍ଦ ଶବ୍ଦ ପ୍ରୟୋଗ ପୂର୍ବକ

ପ୍ରଚ୍ଛନ୍ନ ମାଧୁର୍ଯ୍ୟରେ ଭାଷ୍ୟସମୂହକୁ ରସାଣିତ କରି ବିଶ୍ୱବନ୍ଦନୀୟ ହୋଇପାରିଛନ୍ତି ।

ଶ୍ରୀଧରଙ୍କ ଭାଷ୍ୟର ମହନୀୟତା ହେଉଛି ଈଶ୍ୱର ସାଧନ ମାର୍ଗ ସହଜ ସୁଲଭ ରୀତିରେ ତଥା ସମର୍ପଣ ଭାବାପନ୍ନ ପରମ ଭାଗବତ ଧର୍ମ ରୂପେ ପ୍ରତିପାଦିତ । ଆପଣାର ହୃଦୟସ୍ପର୍ଶୀ ଭାଷାରେ ସେ ସକଳ କର୍ମକୁ ଭାଗବତ ଧର୍ମରେ ପରିଣତ କରିବାର ସନ୍ଦେଶହିଁ ଦେଇଯାଇଛନ୍ତି । ତାଙ୍କ କୃତୀସମୂହର ପ୍ରତ୍ୟେକଟି ପଂକ୍ତି ଭକ୍ତିମାର୍ଗର ପ୍ରାଞ୍ଜଳ ସମନ୍ୱୟାତ୍ମକ ଦିଗ୍‌ଦର୍ଶକ । ମାନବ ଜାତିର ଐହିକ ଓ ପାରଲୌକିକ କଲ୍ୟାଣ ନିମିତ୍ତ ଏହି ମହାନ୍ ଗ୍ରନ୍ଥସମୂହ ହେଉଛି ଶ୍ରୀଧର ସ୍ୱାମୀଙ୍କର ଶ୍ରେଷ୍ଠ ଅବଦାନ । ସଂକ୍ଷେପରେ କହିଲେ ଭାରତୀୟ ସଂସ୍କୃତିର ସମନ୍ୱୟାତ୍ମକ ସାମଗ୍ରିକ ଚେତନା ତାଙ୍କ ଭାଷ୍ୟସମୂହରେ ସାକାର ହୋଇଉଠିଛି । ସ୍ୱକୀୟ ଅଲୌକିକ ଲେଖନୀ ଚାଳନା ଦ୍ୱାରା ଧର୍ମକ୍ଷେତ୍ରରେ ସମନ୍ୱୟସ୍ଥାନର ସ୍ୱର୍ଣ୍ଣିମୟ ଅଙ୍କନ କରି ସେ ପ୍ରାତଃ ସ୍ମରଣୀୟ ହୋଇଯାଇଛନ୍ତି ।



# ଓଡ଼ିଆ ସାହିତ୍ୟକୁ ଢେଙ୍କାନାଳର ଦାନ

ପ୍ରାକୃତିକ ରୂପଲାବଣ୍ୟଭରା ଢେଙ୍କାନାଳ ପ୍ରାଚୀନ କାଳରୁ ବାଣୀପୀଠ ରୂପେ ମହିମାମଣ୍ଡିତ । ଓଡ଼ିଶାର ଉତ୍ତରାଞ୍ଚଳ ତଥା ବ୍ରାହ୍ମଣୀ ଓ ମହାନଦୀର ଅବବାହିକାରେ ଅବସ୍ଥିତ ଏହି ପ୍ରାଚୀନ ଭୂଖଣ୍ଡର ଉନ୍ନତ ସାମାଜିକ ଜୀବନ ଓ ସମନ୍ୱୟାତ୍ମକ ସାଂସ୍କୃତିକ ଭାବଧାରାର ବାଙ୍‌ମୟ ପରିପ୍ରକାଶ ହେଉଛି ଏହାର ମନନଶୀଳ ଜୀବନଧର୍ମୀ ସାହିତ୍ୟ । ଏ ମାଟିର ଅଗଣିତ ସ୍ରଷ୍ଟାଙ୍କ ସୃଜନଶୀଳମାନସରୁ ଅଭିଜାତ ସୌନ୍ଦର୍ଯ୍ୟ ଓ ବୌଦ୍ଧିକ ସୁଗନ୍ଧଭରା ସାହିତ୍ୟ ସୃଷ୍ଟି ହୋଇ ଓଡ଼ିଆ ବାଣୀଭଣ୍ଡାର ସମୃଦ୍ଧ ହୋଇଛି । ଯୁଗ ପରିବର୍ତ୍ତନ ପ୍ରକ୍ରିୟାରେ ସାଂପ୍ରତିକ ସମସ୍ୟାକୁ ତନ୍ନ ତନ୍ନ ଅଧ୍ୟୟନ ପୂର୍ବକ ଅନୁଭୂତିର ଗଭୀର ପରିସ୍ଫୁଟନରେ ଏମାଟିର ସ୍ରଷ୍ଟାଗଣ ଓଡ଼ିଆ ସାହିତ୍ୟର ସକଳବିଭାଗ ପ୍ରତି ଦୃଷ୍ଟିନିକ୍ଷେପ କରି ଉନ୍ନତରୁଚିର ସାହିତ୍ୟ ସୃଷ୍ଟି କରିଯାଇଛନ୍ତି । ଜୀବନର ଯଥାର୍ଥ ମୂଲ୍ୟାୟନ, ଜାତୀୟ ଜୀବନର ସ୍ୱରୂପ ଉପଲବ୍‌ଧି ଏବଂ ସତ୍ୟଶିବସୁନ୍ଦରର ଦିବ୍ୟାନନ୍ଦ ହିଁ ଢେଙ୍କାନାଳ ସାରସ୍ୱତ ସୃଷ୍ଟିର ପ୍ରଚ୍ଛନ୍ନ ମାଧୁର୍ଯ୍ୟ । ସ୍ୱକୀୟ ମୌଳିକ ରୀତିରେ ନୂତନ ରୂପରେ ଆତ୍ମପ୍ରକାଶ କରିବା ହିଁ ଏହାର ସହଜାତ ଲକ୍ଷଣ । ନୈତିକତା ଓ ଶୁଦ୍ଧମାନବିକ ମୂଲ୍ୟବୃଦ୍ଧି ପ୍ରତି ସଚେତନତା ଏହାର ସୌରଭ । ସଂକ୍ଷେପରେ ଉଲ୍ଲେଖକଲେ, ଢେଙ୍କାନାଳର ସମନ୍ୱୟାତ୍ମକ ସାଂସ୍କୃତିକ ଧାରାରେ ପରିବର୍ଦ୍ଧିତ ଏହି ସାରସ୍ୱତ ସୃଷ୍ଟି ସମୂହର ସୃଜନଶୀଳତା, ବିଷୟବିନ୍ୟାସ, ଚିତ୍ରଚାତୁରୀ, ଛନ୍ଦମାଧୁର୍ଯ୍ୟ ଭାବଗାମ୍ଭୀର୍ଯ୍ୟ, ଚରିତ୍ରଚିତ୍ରଣ ଓ ନୈତିକ ସିଦ୍ଧାନ୍ତ ଅନନ୍ୟ ଓ ଅନୁପମ ।

ଢେଙ୍କାନାଳର ଇତିହାସ ଗୌରବୋଜ୍ଜଳ । ଶିବଧାମ କପିଳାସ, ରମଣୀୟ ସପ୍ତଶଯ୍ୟା, ମହିମାଧାମ ମହିମାଗାଦୀ, ପ୍ରାଚୀନକ୍ଷେତ୍ର ନାଗନା, ଅଷ୍ଟଶମ୍ଭୁପୀଠ କୁଆଁଳୋ ଓ ପୂଣ୍ୟତୋୟା ବ୍ରାହ୍ମଣୀ ଏହାର ଗୌରବ । ଖ୍ରୀଷ୍ଟପୂର୍ବ କାଳରେ ସରସ୍ୱତୀ ନଦୀ ବିଲୁପ୍ତ ହେବାପରେ ଆର୍ଯ୍ୟଜାତିର ଏକ ଶାଖା ରାଜସ୍ଥାନରୁ ଆସି ବିନ୍ଧ୍ୟାଞ୍ଚଳ ପାରିହୋଇ ବ୍ରାହ୍ମଣୀ ଅବବାହିକାରେ ବସବାସ କଲେ। ପରବର୍ତ୍ତୀ କାଳରେ ସେହିମାନେ ଓଡ୍ର ଜାତି ଭାବରେ ପରିଚିତ ହୋଇ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବସବାସ କରିଥିଲେ । ଗ୍ରୀକ୍ ଲେଖକ ପ୍ଲିନୀଙ୍କ ମତରେ ମାଲ୍ୟଗିରି

ପର୍ବତ ଓଡ୍ରଦେଶରେ ଅବସ୍ଥିତ ଥିଲା ଏବଂ ସେଠାରେ ମୁଣ୍ଡା ଓ ଶବର ଜାତି ମଧ୍ୟ ନିବାସ କରୁଥିଲେ । ଦ୍ୱିତୀୟ ତୃତୀୟ ଶତାବ୍ଦୀରେ ଏହି ଅଞ୍ଚଳ ସାତକର୍ଣ୍ଣୀଙ୍କ ସାମ୍ରାଜ୍ୟଭୁକ୍ତ ଥିଲା । ସପ୍ତମଶତାବ୍ଦୀ ଠାରୁ ଦଶମଶତାବ୍ଦୀ ପର୍ଯ୍ୟନ୍ତ ଏହି ଭୂଖଣ୍ଡ ଭୌମକର ସାମ୍ରାଜ୍ୟଭୁକ୍ତ ଥାଇ ମଣ୍ଡଳାଧିପତି ଶୁଲ୍କୀ, ନନ୍ଦ, ତୁଙ୍ଗ, ଭଞ୍ଜ ପ୍ରଭୃତି ରାଜବଂଶାଧୀନ ହେଲା । ସେହି ସମୟର ତାମ୍ରଶାସନରୁ ଜଣାଯାଏ, ଅଗଣିତ ବୈଦିକ ପଣ୍ଡିତ, ଶୈବାଚାର୍ଯ୍ୟ, ଜ୍ଞାନୀ ଓ ଗୁଣୀ ଏଠାରେ ଭୂମିଲାଭ ପୂର୍ବକ ସ୍ଥାୟୀନିବାସ କରିଥିଲେ । ଗୌରବର କଥା, ସେହି ସମୟରେ କୁଆଁଳୋର ଅଷ୍ଟଶମ୍ଭୁପୀଠ, ସରାଙ୍ଗର ଅନନ୍ତ ଶୟନ ମୂର୍ତ୍ତି ଓ କେତେଗୋଟି ବ୍ରାହ୍ମଣଶାସନ ଏହି ଭୂଖଣ୍ଡରେ ପ୍ରତିଷ୍ଠା ହୋଇଥିଲା । ପରବର୍ତ୍ତୀ କାଳରେ ସୋମ, ଗଙ୍ଗ ଓ ସୂର୍ଯ୍ୟବଂଶୀ ନୃପତିଗଣ ଏହି ଅଞ୍ଚଳରେ ରାଜତ୍ୱ କରିଥିଲେ । ସେତେବେଳେ ଏହାର ଉତ୍ତରାଞ୍ଚଳ ଗଣ୍ଡ, ପୂର୍ବାଞ୍ଚଳ ଡମ ଓ ଦକ୍ଷିଣାଞ୍ଚଳ ଶବର ଅଧ୍ୟୁଷିତ ଥିଲେ ହେଁ ମଧ୍ୟାଞ୍ଚଳରେ ଘନ ଆର୍ଯ୍ୟବସତି ରହିଥିଲା । ପରିଣାମ ସ୍ୱରୂପ ଏହାର ସାମାଜିକ ଜୀବନ ଓ ସାଂସ୍କୃତିକ ଧାରା ଉନ୍ନତ ରହିଥିଲା । ପ୍ରାଚୀନଯୁଗରୁ ଏହି ଭୂଖଣ୍ଡରେ ସଂସ୍କୃତି ସାହିତ୍ୟର ଧାରା ପ୍ରବାହିତ ହେଲେହେଁ ପାଲି ଓ ପ୍ରାକୃତ ଲୋକଭାଷାର ଆଦର ଲାଭ କରିଥିଲା । ବିଭିନ୍ନ ଜନଜାତି ସେମାନଙ୍କ କଥିତ ଭାଷା ବ୍ୟବହାର କରୁଥିଲେ । ବିଭିନ୍ନ ଭାଷାର ମିଶ୍ରଣରେ ଏହି ମାଟିରେ କଥିତ ଲୋକସାହିତ୍ୟ, ନାଥସାହିତ୍ୟ ଓ ଚର୍ଯ୍ୟାସାହିତ୍ୟ ସୃଷ୍ଟି ହୋଇଥିଲା ତଥା ପରବର୍ତ୍ତୀ ସମୟରେ ଏହା ଓଡ଼ିଆ ସାହିତ୍ୟର ଭବ୍ୟରୂପ ଧାରଣ କରିଥିଲା । ଏହି ପୁରୋଦୃଷ୍ଟିରୁ ଢେଙ୍କାନାଳ ନାଥ ସାହିତ୍ୟର ଜନ୍ମଭୂମି, ସିଦ୍ଧାଚାର୍ଯ୍ୟଙ୍କର ଚାରଣଭୂମି ଏବଂ ଓଡ଼ିଆ ସାହିତ୍ୟର ଆଦିପୀଠ ରୂପେ ମହିମାମଣ୍ଡିତ ।

ଢେଙ୍କାନାଳ ସାରସ୍ୱତ ସୃଷ୍ଟିସମୂହର ଐତିହ୍ୟ, ସମୀକ୍ଷା, ବିଶ୍ଳେଷଣ ଓ ବୌଦ୍ଧିକ ସ୍ୱରୂପ ଅଧୟନ ନିମିତ୍ତ ଏହାକୁ କେତୋଟି ଯୁଗପର୍ଯ୍ୟାୟରେ ବିଭକ୍ତ କରିବା ସମୀଚୀନ ବୋଧହୁଏ । ପ୍ରାଚୀନଯୁଗରୁ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ଶିଳାଲେଖ, ତାମ୍ରଲେଖ, ନାଥ ସାହିତ୍ୟ ଓ ଲୋକସାହିତ୍ୟରୁ ସାରସ୍ୱତ ଚେତନାର ସ୍ୱରଝଙ୍କୃତ ହୋଇ ଭୂଖଣ୍ଡରେ ସାରସ୍ୱତ ପ୍ରଜ୍ଞାର ଐଶ୍ୱର୍ଯ୍ୟମୟ ଆଭାସ ଉଦ୍‌ଭାସିତ ହୋଇଥିବାରୁ ଏହି ଯୁଗକୁ ଅଭିଲେଖ ଯୁଗ ନାମରେ ଅଭିହିତ କରାଯାଇପାରେ । ଚତୁର୍ଦ୍ଦଶ, ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଏହି ଐଶ୍ୱର୍ଯ୍ୟମୟ ଆଭାସ ଜନମାନସରେ ଲିଖିତ ସାହିତ୍ୟର ଭବ୍ୟରୂପ ଧାରଣ କରିଥିଲା । ଏହି ସମୟହିଁ

ଢେଙ୍କାନାଳ ସାହିତ୍ୟର ପ୍ରାଚୀନଯୁଗ । ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ଗତାନୁଗତିକ ଚିନ୍ତାଧାରା ବ୍ୟତୀତ ନୂତନ ସ୍ୱାଦଯୁକ୍ତ ସାହିତ୍ୟ ସୃଷ୍ଟିରେ ଏମାଟିର ସ୍ରଷ୍ଟାଗଣ ଅଗ୍ରଣୀ ହୋଇଥିବାରୁ ଏହାକୁ ମଧ୍ୟଯୁଗ ବ୍ୟକ୍ତି କରିବା ଯୁକ୍ତିଯୁକ୍ତ ବୋଧହୁଏ । ଉନବିଂଶ ଶତାବ୍ଦୀରେ ପାଶ୍ଚାତ୍ୟଶିକ୍ଷା ପ୍ରଚଳନ ଫଳରେ ଏମାଟିର ସାରସ୍ୱତ ଓ ସାଂସ୍କୃତିକ ବିଚାର ଧାରାରେ ଅଭୂତପୂର୍ବ ପରିବର୍ତ୍ତନ ପରିଲକ୍ଷିତ ହୋଇଥିବାରୁ ଏହି ଶତାବ୍ଦୀ ନବଜାଗରଣ ଯୁଗର ମର୍ଯ୍ୟାଦା ଲାଭକରିଥିଲା । ବିଂଶ ଶତାବ୍ଦୀରେ ଏମାଟିରେ ଓଡ଼ିଆ ସାହିତ୍ୟ ଆତ୍ମିକସନନ୍ଦ ରୂପେ ପ୍ରତିଭାତ ହୋଇ ସ୍ୱାଧୀନୋତ୍ତର କାଳରେ ଅଙ୍ଗୀକାର ବଦ୍ଧତାର ଆତ୍ମପ୍ରତ୍ୟୟ ଭାବରେ ପରିଦୃଷ୍ଟ । ଏହି ପୁରୋଦୃଷ୍ଟିରୁ ବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧ ପ୍ରାକ୍-ସ୍ୱାଧୀନଯୁଗ ଏବଂ ଉତ୍ତରାର୍ଦ୍ଧ ସ୍ୱାଧୀନୋତ୍ତର ଯୁଗ ରୂପେ ପରିଚିହ୍ନିତ ।

**ଅଭିଲେଖ ଯୁଗ :** ଚତୁର୍ଥ ଶତାବ୍ଦୀଠାରୁ ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ, ନାଗ, ଭଞ୍ଜ, ଭୌମ, ତୁଙ୍ଗ, ନନ୍ଦ, ଶୁଲ୍କୀ କୁଳିକ, ସୋମ ଓ ଗଙ୍ଗବଂଶୀୟ ରାଜନ୍ୟବୃନ୍ଦ ଏହି ଭୂଖଣ୍ଡରେ ରାଜତ୍ୱ କରିଥିଲେ । ଅଦ୍ୟାବଧି ସେମାନଙ୍କ ପ୍ରଦତ୍ତ ତାମ୍ରଶାସନରୁ ପଚିଶଗୋଟି ତଥା ଉତ୍କୀର୍ଣ୍ଣ ଶିଳାଲେଖରୁ ଚାରିଗୋଟି ମିଳିଅଛି । ସେହି ଅଭିଲେଖ ସମୂହରୁ ଉପଲବ୍ଧ ହୁଏ ଏ ମାଟିରେ ଶୈବ, ଶାକ୍ତ, ବୈଦିକ, ବୈଷ୍ଣବ, ନାଗ ଓ ଜଗନ୍ନାଥ ସଂସ୍କୃତିର ସମନ୍ୱୟଘଟି ସାମାଜିକ ଓ ସାଂସ୍କୃତିକ ଜୀବନ ଉନ୍ନତ ଥିଲା । ପ୍ରାପ୍ତ ଅଭିଲେଖ ଗୁଡ଼ିକରେ ବ୍ୟବହୃତ ସଂସ୍କୃତ ଓ ପାଲିଭାଷାରେ ଲୋକପ୍ରଚଳିତ ଅନେକ ଓଡ଼ିଆଶବ୍ଦ ଖୋଦିତ ହୋଇଥିବାରୁ ପ୍ରମାଣିତ ହୁଏ ଏମାଟିରେ ସେହି ସମୟରେ କଥିତ ଓଡ଼ିଆ ଭାଷା ଭାବବିନିମୟରେ ମାଧ୍ୟମ ଥିଲା । ବିଶେଷତଃ, ସିଦ୍ଧାଚାର୍ଯ୍ୟଙ୍କ ବିରଚିତ ଗାନ ଓ ଦୋହାରୁ ଏ ମାଟିର ପ୍ରଥମ ଓଡ଼ିଆ ସାହିତ୍ୟର ପରିଚୟ ମିଳିଥାଏ, ଯାହାକି ଏଯାବଧି ଅନାଲୋଚିତ । ଏତଦ୍‌ଭିନ୍ନ ରଣସ୍ତମ୍ଭ, କୁଳସ୍ତମ୍ଭ, ଜୟସ୍ତମ୍ଭ, ତ୍ରିଭୁବନ ମହାଦେବୀ, ଶୁଭାକର ଦେବ, ଶାନ୍ତିକରଦେବ, ଦଣ୍ଡୀମହାଦେବୀ, ପ୍ରଚଣ୍ଡଦେବ, ଖଡ୍ଗତୁଙ୍ଗ, ବିନୀତ ତୁଙ୍ଗ, ଜୟସିଂହ, ଦେବାନନ୍ଦ, ଧ୍ରୁବାନନ୍ଦ ଓ ପ୍ରଥମ ନରସିଂହଦେବଙ୍କ ପ୍ରଦତ୍ତ ତାମ୍ରଶାସନ ଓ ଶିଳାଲେଖରୁ ବହୁଳ, ଦିଗ, ପ୍ରତି ବିଷୟ, ଫଳ, କାଳେ କାଳେ, ଘୋର, ଅନ୍ଧାର, ତଟ, ଖେଟ, ଘଟ, ତଣ୍ଡ, ବଳ, ପର, ବଣିକ, କରଣ, ଗ୍ରାମେ ଗୋଚର, ଦଣ୍ଡା, କୁଶଳ, ନାଥ, କଳି ପାଣି, ବେଳା, ବିଜୟୀ ଅପି, ଦେବଳକ, କଇ ପ୍ରଭୃତି କଥିତ ଓଡ଼ିଆ ଶବ୍ଦ ଉପଲବ୍ଧ

ହୋଇଥାଏ । ଏଥିରୁ ପ୍ରମାଣିତ ହୁଏ, ଢେଙ୍କାନାଳରେ ସେହିକାଳରୁ ଓଡ଼ିଆ ଭାଷାର ବିକାଶ ଆରମ ହୋଇଥିଲା ।

ଗବେଷକଙ୍କ ମତରେ ଗଙ୍ଗରାଜତ୍ୱ କାଳରୁ ହିଁ ଅଭିଲେଖ ଓଡ଼ିଶାରେ ଲେଖା ହେଲା । ଢେଙ୍କାନାଳର କପିଳାସ ଦଧିନଉତି ଶିଳାଲେଖ ଏହି ଉକ୍ତିର ସତ୍ୟତା ପ୍ରତିପାଦନ କରିଥାଏ । ଏହି ଶିଳାଲେଖଟି ୧୨୪୬ ଖ୍ରୀଷ୍ଟାବ୍ଦରେ ପ୍ରଥମ ନରସିଂହ ଦେବଙ୍କ କର୍ତ୍ତୃକ ଖୋଦିତ । ଏହି ଶିଳାଲେଖରେ ଖୋଦିତ ଲିପିସମୂହର ଉପରଭାଗକୁ ଗୋଲ କରାନଯାଇ ରେଖା ଉତ୍କୀର୍ଣ୍ଣ କରାଯାଇଛି। ଲିପିଗୁଡ଼ିକ କେତେକସ୍ଥଳରେ ତ୍ରିକୋଣାକାର ଓ ସୂକ୍ଷ୍ମକୋଣୀ । ତାଳପତ୍ର ପୋଥିରେ ଲୌହଲିଖନ ଦ୍ୱାରା ଅଙ୍କିତ ବର୍ତ୍ତୁଳାକାର ଓଡ଼ିଆ ଅକ୍ଷରର ଏହା ହେଉଛି ପ୍ରାଚୀନ ସ୍ୱରୂପ । ଏହି ପ୍ରାଚୀନ ଓଡ଼ିଆ ଅକ୍ଷରକୁ ସାଧାରଣଃ କୁଟୀଳାକ୍ଷର ତଥା ଲିପିତତ୍ତ୍ୱବିଦ୍ ଭାଷାରେ ପ୍ରତ୍ନ ଓଡ଼ିଆଲିପି କୁହାଯାଏ । ଏହି ଧରଣର ଲିପି ପରିବର୍ତ୍ତିତ ବିକାଶଧାରାରେ ପ୍ରତ୍ନ ଓଡ଼ିଆ ଲିପି ଓ ପରେ ବର୍ତ୍ତୁଳାକାର ଓଡ଼ିଆ ଲିପିରେ ପରିଣତ ହୋଇଥାଏ କପିଳାସର ଏହି ଶିଳାଲେଖଟି ଓଡ଼ିଆଲିପି ବିକାଶର ଏକ ନିଦର୍ଶନ, ଯାହା ଲିପିତାତ୍ତ୍ୱିକ ଦୃଷ୍ଟିକୋଣରୁ ଅଧିକ ଅଧ୍ୟୟନ ଓ ଅନୁଧ୍ୟାନ ପ୍ରତୀକ୍ଷା କରିଥାଏ । ଏହି ଦୁର୍ଲଭ ଶିଳାଲେଖଟି ଢେଙ୍କାନାଳ ଅଞ୍ଚଳରେ ଲିପି ବିକାଶର ସୂଚନା ପ୍ରଦାନ କରିଥାଏ ।

ଶିଳାଲେଖଟିର ଭାଷା ସଂସ୍କୃତ, ମାଗଧୀ ଓ ପ୍ରାଚୀନ ଓଡ଼ିଆ ଭାଷା ମିଶ୍ରିତ । ଉରଜାମ ଶିଳାଲେଖ, ସିଦ୍ଧେଶ୍ୱର ମନ୍ଦିର ସ୍ତମ୍ଭାଭିଲେକ ଓ ଶଙ୍କରାନନ୍ଦ ମଠ ତାମ୍ରଶାସନରେ ଯେଉଁ ପ୍ରକାର ଶବ୍ଦ ବ୍ୟବହାର କରାଯାଇଛି କପିଳାସ ଶିଳାଲେଖରେ ମଧ୍ୟ ସେହିପ୍ରକାର ଶବ୍ଦ ଖୋଦିତ । କପିଳାସ ଦଧିନଉତିରେ ଉତ୍କୀର୍ଣ୍ଣ ଦେଉଳ, ଘୀଲା, ବଇଶାଖ, ଚନ୍ଦ୍ରବାରେ, ରାଜା, ନାଗନା, ଭୀମପୁର, ଦେବକଇ ଓ ରାୟି ପ୍ରକୃତି ଶବ୍ଦ ତତ୍‌କାଳୀନ ଢେଙ୍କାନାଳର ଓଡ଼ିଆ ଭାଷା । ମନେହୁଏ, ସେ ସମୟରେ ଏହି ଅଞ୍ଚଳରେ ଓଡ଼ିଆ ଭାଷାର ସଂପୂର୍ଣ୍ଣ ବିକାଶ ହୋଇନଥିଲା । ଅପଭ୍ରଂଶ ପ୍ରାକୃତରୁ ଓଡ଼ିଆଭାଷା ରୂପ ନେବାକୁ ଆରମ୍ଭ କରିଥିଲା । କପିଳାସ ଶିଳାଲେଖଟି ରାଜକୀୟ ଘୋଷଣା ହୋଇଥିବାରୁ ସର୍ବସାଧାରଣଙ୍କ ବୋଧଗମ୍ୟ ପ୍ରଚଳିତ ଓଡ଼ିଆ ଭାଷାରେ ଖୋଦିତ ହୋଇଥିଲା । ଅବଶ୍ୟ, ଶିଳାଲିପି ଖୋଦିତ କରିଥିବା ଶିଳ୍ପୀଙ୍କର ଉନ୍ନତ ଭାଷାଜ୍ଞାନ ନଥିବାରୁ ଅନେକ ମୁଦ୍ରାପ୍ରାମାଦ ପରିଲକ୍ଷିତ ହୋଇଥାଏ । ଶିଳାଲିପିର ଭାଷାରୁ ଜଣାଯାଏ,

ସେ ସମୟରେ ବ୍ୟାକରଣକୁ ପ୍ରାଧାନ୍ୟ ଦିଆଯାଉନଥିଲା । ଏହି ଶିଳାଲେଖରୁ ତ୍ରୟୋଦଶ ଶତାବ୍ଦୀରେ ଢେଙ୍କାନାଳ ଅଞ୍ଚଳର ଭାଷାବିକାଶର ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଉପଲବ୍‌ଧି ହୋଇଥାଏ । ସେ ସମୟରେ ଢେଙ୍କାନାଳବାସୀଙ୍କର କଥିତ ଓଡ଼ିଆଭାଷା ଅପେକ୍ଷାକୃତ ଉନ୍ନତ ଥିଲା ।

ଢେଙ୍କାନାଳ ଅଞ୍ଚଳର ଅମୂଲ୍ୟ ଭାଷାବିଭବ ହେଉଛି ନାଥସାହିତ୍ୟ । ପ୍ରାଚୀନ କାଳରୁ କପିଳାସ ନାଥ ସଂପ୍ରଦାୟର ମୁଖ୍ୟପୀଠ ରୂପେ ସୁବିଦିତ । ପବିତ୍ର ଶିବରାତ୍ରିର ସକଳ ଭୋଗ ନାଥମହନ୍ତବୃନ୍ଦ ଖେଇ ଭାଗରେ ପାଇଥାନ୍ତି । ସଂପ୍ରତି ନାଥଯୋଗୀମାନେ ଢେଙ୍କାନାଳର ଅନ୍ୟୁନ୍ୟ କୋଡ଼ିଏ ଖଣ୍ଡ ଗ୍ରାମରେ ବାସ କରୁଛନ୍ତି । ସମଗ୍ର ବ୍ରାହ୍ମଣୀ ଉପତ୍ୟକା ନାଥଯୋଗୀମାନଙ୍କର ଚାରଣଭୂମି ଥିଲା । ଗୋରେଖନାଥ ସମବେତ, ଯୋଗୀଗଣଙ୍କୁ କପିଳାସ ପୀଠରେ ଯୋଗମାର୍ଗ ଶିକ୍ଷା ଦେଇଥିଲେ । ସେହି ଯୁଗରୁ ଢେଙ୍କାନାଳରେ ନାଥଯୋଗୀମାନେ ବସବାସ କରି ରହି ଆସୁଛନ୍ତି ତଥା କପିଳାସପୀଠର ମୁଖ୍ୟସେବକ ଭୂମିକା ନିର୍ବାହ କରି ଆସୁଛନ୍ତି । ସେହିମାନେ ପାରଂପରିକ ପ୍ରଥାରେ କେନ୍ଦରା ବଜାଇ ଗ୍ରାମେ ଗ୍ରାମେ ଉଚ୍ଚାଙ୍ଗ ଦର୍ଶନ ଭିତ୍ତିକ ନାଥ ସାହିତ୍ୟ ପ୍ରଚାର ଓ ପ୍ରସାରରେ ବ୍ରତୀ । ପ୍ରଥମାବସ୍ଥାରେ ଏହି ନାଥସାହିତ୍ୟ ଢେଙ୍କାନାଳରେ ପାରଂପରିକ ରୀତିରେ କଥିତ ସାହିତ୍ୟ ରୂପେ ବଞ୍ଚିରହିଥିଲା । ଏଗୁଡିକ ହେଉଛି ବଉଳାଗୀତ, ବିଶିକେଶନ ଗୀତ, ଗୋବିନ୍ଦଚନ୍ଦ୍ର ଓ ରୁଦ୍ରଗୀତା ପ୍ରଭୃତି । ଧର୍ମୀୟ ଓଷାବ୍ରତ ମଧ୍ୟରୁ ଶିବାରାତ୍ରିକଥା, କଉଡ଼ିଆ ବିନାୟକ ବ୍ରତ କଥା, ସିଦ୍ଧ ବ୍ରତ କଥା, ଷଷ୍ଠୀ ସୋମନାଥ ବ୍ରତକଥା ଢେଙ୍କାନାଳର ଲୋକମାନେ କଥିତ ଶୈଳୀରେ ମନେରଖୁଥିଲେ । ବିକାଶର ପ୍ରବହମାନ ଧାରାରେ ଲୋକ ପ୍ରଚଳିତ ଭାଷା ପ୍ରକାର ଐଶ୍ୱର୍ଯ୍ୟମୟ ଆଭାସରେ ଉଦ୍‌ଭାସିତ ହୋଇ ଢେଙ୍କାନାଳ ଅଞ୍ଚଳରେ ଲୋକସାହିତ୍ୟର ରୂପ ନେଇଥିଲା । ଅନ୍ୟଭାଷାରେ କହିଲେ, ଅପଭ୍ରଂଶ ଅବସ୍ଥାରେ ଥିବା କଥିତଭାଷା କ୍ରମବିବର୍ତ୍ତନ ଓ କ୍ରମଗଠନ ପ୍ରକ୍ରିୟାରେ ଲୋକଚେତନାରେ ବିଭିନ୍ନ ଢଗଢମାଳୀ, କଥନିକା, ରୁଢ଼ି, ପ୍ରବାଦ, ପ୍ରହେଳିକା, ପରବଗୀତ, ହଳିଆଗୀତ, ଧୋବାୟାଗୀତ, ନନାବାୟାଗୀତ, କାନ୍ଦଣା, ବୁଢ଼ୀ ଅସୁରୁଣୀ କଥା, ନାକୁଆ କଣ୍ଡରା କଥା, କଲୁରୀ ବେଣ୍ଟକଥା ପ୍ରଭୃତି ବିଭିନ୍ନ ରୂପରେ ସାରସ୍ୱତ ସ୍ୱୀକୃତି ଲାଭକରି ଲୋକସାହିତ୍ୟ ପଦବାଚ୍ୟ ହେଲା । କ୍ରମେ ଢେଙ୍କାନାଳର ଲୋକଜୀବନ ସହିତ ଏମାଟିର ଲୋକସାହିତ୍ୟ ଅଙ୍ଗାଙ୍ଗୀ ଭାବରେ

ଜଡ଼ିତ ହୋଇ ଦୃଶ୍ୟରୂପ ନେଲା ଲୋକନାଟ୍ୟ ମାଧ୍ୟମରେ । ଢେଙ୍କାନାଳ ସେହି ସବୁ ଲୋକନାଟ୍ୟ ହେଉଛି ମୁଣ୍ଡପତା ନାଚ, ଧୁଡୁକୀ ନାଚ, ଘୁମୁରାନାଚ, ଦଣ୍ଡନାଚ, ବଣ୍ଟିନାଚ ଓ ଶବରଶବରଣୀ ନାଚ ପ୍ରଭୃତି । ଢେଙ୍କାନାଳ ମାଟିର ଏହିସବୁ ଲୋକସାହିତ୍ୟ ମାନ ଉଚ୍ଚକୋଟୀର ତଥା ଏଗୁଡ଼ିକ ଓଡ଼ିଆଲୋକ ସାହିତ୍ୟର ଦୁର୍ଲଭ ରତ୍ନସଦୃଶ ।

**ପ୍ରାଚୀନଯୁଗ :** ଚତୁର୍ଦ୍ଦଶ ଶତାବ୍ଦୀରେ ଜଗଦ୍‌ଗୁରୁ ଶ୍ରୀଧରସ୍ୱାମୀ କପିଳାସର ବ୍ରହ୍ମଚାରୀ ମଠରେ ନିବାସ କରି ବିଶ୍ୱପ୍ରସିଦ୍ଧ ଭାଷ୍ୟସମୂହ ରଚନା କରିଥିଲେ । ଢେଙ୍କାନାଳ ଭୂଖଣ୍ଡସ୍ଥିତ ବିଭିନ୍ନ ବ୍ରାହ୍ମଣଶାସନରେ ବେଦବେଦାନ୍ତ, ଗୀତା, ଭାଗବତ, ଶୈବଶାସ୍ତ୍ର ଓ ଅନ୍ୟାନ୍ୟ ସଂସ୍କୃତ ଶାସ୍ତ୍ର ଚର୍ଚ୍ଚାର ଆଦର ବୃଦ୍ଧିପାଇଁ ଜନମାନସରେ ସାରସ୍ୱତ ଚେତନାର ଉତ୍ତରୋତ୍ତର ଅଭିବୃଦ୍ଧି ଘଟିଥିଲା । ପୂଜ୍ୟ ଶ୍ରୀଧର ସ୍ୱାମୀଙ୍କ ଯୋଗୁ ବିଶ୍ୱପ୍ରସିଦ୍ଧ ବାଣୀପୀଠ କାଶୀ ସହିତ କପିଳାସର ପ୍ରତ୍ୟକ୍ଷ ସଂପର୍କ ସ୍ଥାପିତ ହୋଇଥିଲା । ଫଳରେ କପିଳାସ ପୀଠକୁ ଭାରତର ବିଭିନ୍ନ ଅଞ୍ଚଳରୁ ପଣ୍ଡିତ ଓ ବିଦ୍ୱାନ୍‌ବୃନ୍ଦ ଯାତାୟତ କଲେ ଏବଂ ଦାର୍ଶନିକ ମୂଲ୍ୟବୋଧ ଭିତ୍ତିକ ସାରସ୍ୱତ ପ୍ରବାହ ସମଗ୍ର ଢେଙ୍କାନାଳ ଅଞ୍ଚଳରେ ପରିବ୍ୟାପ୍ତ ହୋଇଥିଲା । ଏହାର ପ୍ରଭାବରେ ଢେଙ୍କାନାଳ ଅଞ୍ଚଳର କବି ଗୋବିନ୍ଦବୃନ୍ଦ ସଂସ୍କୃତ ଓ ଓଡ଼ିଆରେ କାବ୍ୟକବିତା ଲେଖିଥିଲେ । ସେମାନଙ୍କ ମଧ୍ୟରେ କପିଳାସ ପୀଠରେ ସେବକ ବତ୍ସା ଦାସ ଅନ୍ୟତମ । ସ୍ୱରଚିତ କଳସା ଚଉତିଶାରେ ସେ ଶିବପାର୍ବତୀଙ୍କର ମଙ୍ଗଳମୟ ବିବାହ ଉତ୍ସବକୁ ମନୋରମ ଶୈଳୀରେ ବର୍ଣ୍ଣନା କରିଛନ୍ତି । ତତ୍‌କାଳୀନ ଓଡ଼ିଶାରେ ଏହି କଳସା ମଙ୍ଗଳାଗୀତି ରୂପେ ପ୍ରସିଦ୍ଧି ଲାଭ କରିଥିଲା ତଥା ବେଦମନ୍ତ୍ର ସ୍ୱରୂପରେ ମାନ୍ୟତା ଲାଭ କରିଥିଲା । ମାଟିର ମହାକବି ସାରଳା ଦାସଙ୍କ ଭାଷାରେ ''ବେଦମନ୍ତ୍ର ଯୁକତେ ସେ ପଢ଼ନ୍ତି କଳସା''ରୁ ପ୍ରମାଣିତ ହୁଏ, ସାରଳାଙ୍କ ପୂର୍ବରୁ କଳସା ଚଉତିଶା ରଚିତ ହୋଇ ସାରଳାଙ୍କ ସମୟକୁ ଲୋକପ୍ରସିଦ୍ଧି ଲାଭ କରିଥିଲା । ଗୌରବର କଥା, ଓଡ଼ିଆ ସାହିତ୍ୟର ଆଦିଗୀତିକା କଳସା ଚଉତିଶା କପିଳାସ ପୀଠରେ ରଚିତ । କବି ବତ୍ସା ଦାସ ଏହାର ଶେଷ ପଂକ୍ତିରେ ଲେଖିଛନ୍ତି :

କ୍ଷିତିପତି ଠାକୁର ଯେ କପିଳାସେ ସ୍ଥିତି
କ୍ଷୁଦ୍ର ବୁଦ୍ଧି ବତ୍ସା ଦାସ କଳସା ପଢ଼ନ୍ତି ।

ଏଥିରୁ ପ୍ରମାଣିତ ହୁଏ, କବି ବତ୍ସା ଦାସ କପିଳାସପତି ଶିଖରେଶ୍ୱର ବା ଚନ୍ଦ୍ରଶେଖରଙ୍କୁ କେନ୍ଦ୍ରକରି ଓଡ଼ିଆ ସାହିତ୍ୟର ପ୍ରଥମ ଚଉତିଶା ଲେଖିଥିଲେ । ଶୁଦ୍ରମୁନି ସାରଳାଦାସ ମଧ୍ୟ ସ୍ୱରଚିତ ଓଡ଼ିଆମହାଭାରତରେ କପିଳାସର ବହୁବିଧ ବର୍ଣ୍ଣନା କରିବା ସହିତ ପାଣ୍ଡବଗଣ କପିଳାସ ଆସିବା ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । ସେହି ସମୟରେ ଢେଙ୍କାନାଳର ନାଗନା ଶୈବକ୍ଷେତ୍ର ଓ କୁଆଁଳୋର ଅଷ୍ଟଶମ୍ଭୁ ପୀଠ ପ୍ରସିଦ୍ଧି ଲାଭ କରିଥିଲା । ସେହିସବୁ ସ୍ଥାନରେ ଚର୍ଚ୍ଚିତ ଶୈବସାହିତ୍ୟ ପ୍ରଭାବରେ ଢେଙ୍କାନାଳର ଅନେକ କବି, ଭଜନ, ଜଣାଣ ଓ ଚଉତିଶା ରଚନା କରିଥିଲେ । ଏଗୁଡ଼ିକର ମୁଦ୍ରିତରୂପ ନଥିଲେହେଁ ଅଦ୍ୟାବଧି ଲୋକମୁଖରେ ଜୀବିତ । ତନ୍ମଧ୍ୟରେ ଶିଖରେଶ୍ୱର ଜଣାଣ, ବାଲୁଙ୍କେଶ୍ୱର ଜଣାଣ, ବୁଦ୍ଧେଶ୍ୱର ଜଣାଣ, ଅଷ୍ଟଶମ୍ଭୁ ରହସ୍ୟ, ନାଗନାଥ ଚଉତିଶା ପ୍ରଭୃତି ପ୍ରଧାନ । କପିଳାସ ସମେତ ମାର୍ଥାପୁର ଓ ମୁଣ୍ଡଇଲୋ ଶାସନ ମାନଙ୍କରେ ସେ ସମୟରେ ନିୟମିତ ବେଦ, ଶାସ୍ତ୍ର ଓ ସଂସ୍କୃତ ସାହିତ୍ୟ ଆଲୋଚନା ହେଉଥିଲା । ଏଥିରେ ପ୍ରଭାବିତ ହୋଇ ବିଦ୍ୱାନ୍‌ବୃନ୍ଦ ଓଡ଼ିଆଭାଷାରେ ତଦନୁରୂପ ସାହିତ୍ୟ ସୃଷ୍ଟି ନିମିତ୍ତ ପ୍ରୟାସ କରିଥିଲେ। ସେହି ସମୟରେ ଅନେକ ପୋଥି ସଂଗ୍ରହ କରାଯାଇ ପାରିନାହିଁ । ଯାହା ସଂଗୃହୀତ ହୋଇଛି ତହିଁ ଉପରେ ଅଦ୍ୟାବଧି ଗବେଷଣା ମଧ୍ୟ ହୋଇନାହିଁ । ସଂକ୍ଷେପରେ ଉଲ୍ଲେଖକଲେ, ପ୍ରାଚୀନ ଯୁଗରେ ଢେଙ୍କାନାଳରେ ଓଡ଼ିଆ ଭାଷା ପୂର୍ଣ୍ଣାଙ୍ଗରୂପେ ଧାରଣ କରି, ଚଉତିଶା, ଚଉପଦୀ ଓ ଜଣାଣ ପ୍ରଭୃତି ଜନ୍ମନେଇଥିଲା । ମଧୁର ଛନ୍ଦୋବଦ୍ଧ ଓ ଲଳିତ ଭାବଧାରାରେ ପରିବେଷିତ ଏହି ଲୋକପ୍ରିୟ ସାହିତ୍ୟଗୁଡ଼ିକ ଓଡ଼ିଆ ସାହିତ୍ୟର ଅମୂଲ୍ୟ ବିଭବ । ଉପମା, ରୂପକ ଓ ବ୍ୟଙ୍ଗୋକ୍ତିର ଯଥାର୍ଥ ପ୍ରୟୋଗହିଁ ଏହି ସାହିତ୍ୟର ବିଶେଷତ୍ୱ । ଢେଙ୍କାନାଳର ରସମୟ ଓ ଭାବମୟ ମାନସର ପ୍ରତିଫଳନ ଏଥିରେ ଅନୁଭୂତ ହୋଇଥାଏ ।

**ମଧ୍ୟଯୁଗ :** ମଧ୍ୟଯୁଗ ଅର୍ଥାତ୍ ସପ୍ତଦଶ ଶତାବ୍ଦୀଠାରୁ ଢେଙ୍କାନାଳରେ ଅଗଣିତ କବି ରାଜଦତ୍ତ ବୃତ୍ତି ଲାଭ କରି ସାରସ୍ୱତ ସାଧନାରେ ବ୍ରତୀ ଥିଲେ । ସେତେବେଳକୁ ଢେଙ୍କାନାଳ ରାଜବଂଶ ପ୍ରତିଷ୍ଠିତ ହୋଇସାରିଥିଲା ତଥା ହଦ୍‌ଗଡ଼, ଦଲାର, ଗୋରଡ଼ିଆ, କରମୂଳ, ଶିବୁଲା ଓ ଭୀମନଗରୀ ପ୍ରଭୃତି ସ୍ଥାନରେ ସାମନ୍ତଗଣ ଆଧିପତ୍ୟ ବିସ୍ତାର କରିଥିଲେ । ଏହି ଯୁଗର ପ୍ରାରମ୍ଭରେ ଭକ୍ତକବି ଦୀନକୃଷ୍ଣ ଦାସ ଢେଙ୍କାନାଳର ବ୍ରାହ୍ମଣୀତଟ ଏକ ଘରିଆ ଗ୍ରାମରେ ନିବାସ କରୁଥିଲେ । ତାଙ୍କର ଜନ୍ମସ୍ଥାନ ଜଳେଶ୍ୱର ସନ୍ନିକଟରେ ହୋଇଥିଲେ ହେଁ ସେ

ପ୍ରଥମରେ ପୁରୀ ଏବଂ ପରେ ଏକଘରିଆଠାରେ ନିବାସ ପୂର୍ବକ ସାରସ୍ୱତ ସାଧନାରେ ନିମଗ୍ନ ଥିଲେ, ଯାହାକି ତାଙ୍କ ରଚନାରେ ସୁସ୍ପଷ୍ଟ ।

ସୁବର୍ଣ୍ଣରେଖା ନଦୀତୀର, କଟକ ନାମ ଜଳେଶ୍ୱର
ସପତ ପୁରୁଷ ମୋ ରହି, ଗଲାଯେ ଏତେକାଳ ବହି
ଆଠ ଯେ ଦଣ୍ଡପାଟ ମୂଳେ, ସୁବର୍ଣ୍ଣରେଖା ନଦୀକୂଳେ
ଦେଖିଲି ଶ୍ରୀ ପୁରୁଷୋତ୍ତମ, କ୍ଷେତ୍ରମାନଙ୍କ ଯେ ଉତ୍ତମ
ଏ ଗ୍ରନ୍ଥ ଯୋଡ଼ିବାର ବେଳେ, ଘର ବ୍ରାହ୍ମଣୀ ନଦୀ କୂଳେ
କନକେଶ୍ୱର ଲିଙ୍ଗ ପାଶ, ଏକଘରିଆ ନାମ ଦେଶ
ତହିଁ ମୋହର ନିଜସ୍ଥିତି, କରୁଣା କଲେ ଲକ୍ଷ୍ମୀପତି
ମଧୁସୂଦନ ଜ୍ୟେଷ୍ଠ ଶିଷ୍ୟ, ଭଣିଲେ ଦୀନକୃଷ୍ଣ ଦାସ ।

ଗବେଷକଙ୍କ ମତରେ ବୈଷ୍ଣବଧର୍ମ ଗ୍ରହଣ କଲାପରେ ଜ୍ଞାତିକୁଟୁମ୍ବ ଦ୍ୱାରା ବିତାଡ଼ିତ ହୋଇ ଦୀନକୃଷ୍ଣ ପୁରୀରେ ନିବସ କରିଥିଲେ । କିନ୍ତୁ ଗଜପତିଙ୍କ ନାମରେ ଗୀତ ଭଣିତା ନକରିବାରୁ ପୁରୀରୁ ଆସି ଢେଙ୍କାନାଳ ରାଜା ଓ ହଦଗଡ଼ ସାମନ୍ତଙ୍କ ସାହାଯ୍ୟରେ ଏକଘରିଆ ଠାରେ ନିବାସ କଲେ । ହଦଗଡ଼ର ସାମନ୍ତ ବଳରାମ ସାମନ୍ତସିଂହାର କବି ଦୀନକୃଷ୍ଣଙ୍କ ପୃଷ୍ଠପୋଷକ ଥିଲେ । ପୁରୀରହଣୀ ସମୟରେ ସେ ରସକଲ୍ଲୋଳ ରଚନା କରିଥିଲେ । ଢେଙ୍କାନାଳ ମାଟିରେ ତାଙ୍କ ଅମର ଲେଖନୀରୁ ରସବିନୋଦ, ଜ୍ଞାନସାଗର, ଗୁଣସାଗର ଅମୃତ ସାଗର, ମୁକ୍ତିସାଗର, ଭୂତକେଳି, କଳିଯୁଗଶାସ୍ତ୍ର, ପ୍ରସ୍ତାବସିନ୍ଧୁ ଓ ନାମରତ୍ନଗୀତା ପ୍ରଭୃତି ଦୁର୍ଲଭ ଗ୍ରନ୍ଥ ସୃଷ୍ଟି ହୋଇଥିଲା । ଦୀନକୃଷ୍ଣଙ୍କ ପ୍ରତ୍ୟେକଟି କୃତୀ କୃଷ୍ଣରସାଶ୍ରିତ ତଥା ସୁଲଳିତ ଛନ୍ଦ ଓ ସରଳ ଭାଷାରେ ପରିବେଷିତ । ଗୌରବର କଥା, ଏହି ସମୟରେ ଢେଙ୍କାନାଳର ଅଶ୍ୱଖୋଲା ନିବାସୀ ବଜାରୀ ଦାସ ଗୀତ ଗୋବିନ୍ଦର ପଦ୍ୟାନୁବାଦ କରିଥିଲେ । ଏହି ଶାସ୍ତ୍ରର ନାମ ଅର୍ଥଗୋବିନ୍ଦ ।

ସପ୍ତଦଶ ଶତାବ୍ଦୀରେ ଢେଙ୍କାନାଳ ମାଟିରେ ପ୍ରବାହିତ ଭକ୍ତି ରସାତ୍ମକ ଚେତନାରୁ ଅନେକ ଚଉତିଶା ଆତ୍ମପ୍ରକାଶ କରିଥିଲା । ହଦଗଡ଼ର ଜମିଦାର ବଳରାମ ସାମନ୍ତସିଂହାର, ବହୁ ଚଉତିଶା ରଚନା କରିଥିଲେ। ତନ୍ମଧ୍ୟରୁ ମଧୁପଚଉତିଶା ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା । ସେହି ସମୟରେ ଢେଙ୍କାନାଳର ରାଜା ନୃସିଂହ ଭ୍ରମରବର ବହୁ ଚଉପଦୀ, ଚଉତିଶା ଓ ବୋଲି ରଚନା କରିଥିଲେ । ତତ୍‌ପ୍ରଣୀତ ଦଶବୋଲି ଏକ କୃଷ୍ଣରସାତ୍ମକ କାବ୍ୟ ତଥା

ଓଡ଼ିଆ ବୋଲି ସାହିତ୍ୟ ମଧ୍ୟରେ ପ୍ରାଚୀନତମ । ନୃସିଂହଙ୍କ ସୁଯୋଗ୍ୟପୁତ୍ର କୁଞ୍ଜବିହାରୀ ଭ୍ରମରବରଙ୍କ ଅମରକୃତି ହେଉଛି ପ୍ରେମଶୀଳା ବାକ୍ୟ । ଏହି କାବ୍ୟ ରୀତି ଯୁଗୀୟ ଧାରାରେ ଅଠାଇଶି ଗୋଟି ଛାନ୍ଦରେ ତାଳପତ୍ର ପୋଥିରେ ଲିଖିତ ଏବଂ ସଂପ୍ରତି ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ।

କୁଞ୍ଜବିହାରୀ ନରପତିବର ପଦବୀରେ ରାୟଭ୍ରମଣବର
ବ୍ରଜବିହାରୀ ରାଜସିଂହ ଯାର ଆତ୍ମଜ ଆତ୍ମବତ୍ ପ୍ରିୟତର
ଯେ ଗ୍ରନ୍ଥ ରଚନା
କଲେ ହୋଇଣସେ କୃଷ୍ଣୈକାମନା ।

କୁଞ୍ଜବିହାରୀଙ୍କ ସୁପୁତ୍ର ରାଜାବ୍ରଜବିହାରୀ ରାଧାକୃଷ୍ଣ ପ୍ରେମ ସମ୍ବଳିତ "ପଦ୍ୟାବଳୀ" ରଚନା କରିଥିଲେ । ସେହି ସମୟରେ ଢେଙ୍କାନାଳରେ ରଚିତ ଚଉତିଶା, ଚଉପଦୀ, ବୋଲି ଓ କାବ୍ୟସମୂହର ଭାଷା ସରଳ ଓ ସାବଲୀଳ ତଥା ଭାବପ୍ରାଞ୍ଜଳ ଓ ପ୍ରାଣବନ୍ତ ।

ସପ୍ତଦଶ ଶତାବ୍ଦୀରେ ଢେଙ୍କାନାଳ ରାଜା ନୃସିଂହଭ୍ରମରବର ଓ ମଧୁପୁର ରାଜାଙ୍କ ମଧ୍ୟରେ ଏକ ଯୁଦ୍ଧ ସଂଘଟିତ ହୋଇଥିଲା ଏବଂ ଏଥିରେ ଢେଙ୍କାନାଳ ରାଜା ମଧୁପୁରର ଚାରିଗୋଟି ଦୁର୍ଗ ଅଧିକାର କରିନେଇଥିଲେ । ଏହି ଯୁଦ୍ଧର ପ୍ରତ୍ୟକ୍ଷଦର୍ଶ ବିବରଣୀ କବି ଗୋକୁଳପଟ୍ଟନାୟକ ସହଜସୁଲଭ ଶୈଳୀରେ ବର୍ଣ୍ଣନା କରିଛନ୍ତି । ସେ ସମରଗାଥାର ନାମ ମଧୁପୁରକୋଇଲି ।

ଖଣ୍ଡ ଖଣ୍ଡାଇତଙ୍କୁ ଚିଟଉ ଖବର ଦେଲା କହୁ କହୁ
ଖବର ଯେଉଁଠାରେ ହେଲା ଖଣ୍ଡିସା ଘୋଡ଼ା ବେଗେ ଚଳିଗଲା
ଖବର ଦେବାରୁ ରାଉଳ କ୍ଷଣ କ୍ଷଣକେ ଚଳେ ତତ୍‌ପର ଲୋ
ଗୁଣ୍ଡବସାଇ ଗାଡ଼ିରେ ଗଡ଼ା ଫଡ଼କା ଉପରେ
ଗନ୍ଧଚନ୍ଦନ ପୁଷ୍ପରେ ଗଜାବୋଦାପଡ଼ି ଚଳେ ଆଗରେ ଲୋ ।

ଏହା କୋଇଲି ଚଉତିଶା ରୀତିରେ ଲିଖିତ ଅଥଚ ବାତ୍ସଲ୍ୟ ବା କରୁଣ ରସସିକ୍ତ ନହୋଇ ବୀରରସାଶ୍ରୟୀ ହୋଇଅଛି । ଏଥିରୁ ତତ୍‌କାଳୀନ ଯୁଦ୍ଧ ସଂପର୍କରେ ଅନେକ ତଥ୍ୟ ଉପଲବ୍ଧ ହୋଇଥାଏ । ଯୁଦ୍ଧବର୍ଣ୍ଣନା ସମ୍ବନ୍ଧୀୟ ଏହା ସର୍ବପ୍ରାଚୀନ ଓଡ଼ିଆ ସମରକବିତା । ଏକ ଜାତୀୟଚେତନା ଦ୍ୟୋତକ ସମରକାବ୍ୟ ରୂପେ ଏହା ଓଡ଼ିଶାରେ ଲୋକପ୍ରିୟତା କରିଥିଲା । ଏହାକୁ ଓଡ଼ିଆବାଣୀ ଭଣ୍ଡାରର ଦୁର୍ଲଭ ସମର ସାହିତ୍ୟ କହିଲେଅତ୍ୟୁକ୍ତି ହେବନି ।

ଅଷ୍ଟାଦଶ ଶତାବ୍ଦୀରେ ଢେଙ୍କାନାଳର ସାରସ୍ୱତ ପରଂପରାରେ ଅଭୂତପୂର୍ବ ପରିବର୍ତ୍ତନ ଘଟିଥିଲା । ପରିବର୍ତ୍ତିତ ପ୍ରକ୍ରିୟାରେ ଢେଙ୍କାନାଳମାଟିରେ ଓଡ଼ିଆ ସାହିତ୍ୟ ନୂତନ ରୂପ ଧାରଣ କରିଥିଲା । ଏହି ନବ ପରଂପରାର ଦିଗ୍‌ଦର୍ଶକ ଥିଲେ ବହୁ ଭାଷାବିତ୍ ପ୍ରଖ୍ୟାତ କାବ୍ୟଶିଳ୍ପୀ ବ୍ରଜନାଥ ବଡ଼ଜେନା । ଛନ୍ଦମାଧୁର୍ଯ୍ୟ, ଭାବଗାମ୍ଭୀର୍ଯ୍ୟ ଅନ୍ତଃସୌନ୍ଦର୍ଯ୍ୟଭରା ତାଙ୍କର ଅମରକୃତୀସମୂହ ହେଉଛି ବିଚକ୍ଷଣା, କେଳିକଳାବିଧି ବିଦେଶାନୁଚିନ୍ତା, ଦଶପୋଇ, ଗୋପୀବିଳାସ, ଶ୍ୟାମରାସୋତ୍ସବ, ଅମ୍ବିକାବିଳାସ, ସମର ତରଙ୍ଗ, ଚଣ୍ଡୀମାଳାଶ୍ରୀ, ରାଜନୁଙ୍କ ଛଳଭକ୍ତି ଓ ରାଜସଭା ପ୍ରଭୃତି । ହିନ୍ଦୀ ଭାଷାରେ ଗୁଣ୍ଡିଚାବିଜେ ରଚନାକରି ସେ ଜଗନ୍ନାଥ ସଂସ୍କୃତିକୁ ସର୍ବଭାରତୀୟ ସ୍ତରରେ ପ୍ରସାର କରିବାର ମହତ୍ତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ । କାବ୍ୟଧାରା ବ୍ୟତୀତ ହାସ୍ୟରସାତ୍ମକ ଗଦ୍ୟଧାରା ''ଚତୁର ବିନୋଦ'' ସୃଷ୍ଟିପୂର୍ବକ ସେ ଓଡ଼ିଆ କଥା ସାହିତ୍ୟର ମୂଳଭିତ୍ତି ସ୍ଥାପନ କରିଥିଲେ । ତାଙ୍କରଚିତ ସଂସ୍କୃତକାବ୍ୟ ମନୋଦୂତମ୍ ବମ୍ବେରୁ ପ୍ରକାଶିତ । ତାଙ୍କର ପ୍ରତ୍ୟେକଟି ସୃଷ୍ଟିରେ ଭାଷା, ଭାବ ଓ ଶୈଳୀର ବହୁବର୍ଣ୍ଣ ଆଲୋଚଟା ବିଚ୍ଛୁରିତ । ସେ ହେଉଛନ୍ତି ବିଶ୍ୱର ପ୍ରଥମକବି ଯେ ଓଡ଼ିଆ, ବଙ୍ଗଳା, ହିନ୍ଦୀ, ତେଲୁଗୁ, ପ୍ରାକୃତ ଓ ସଂସ୍କୃତ ଭାଷାରେ ସାହିତ୍ୟସୃଷ୍ଟି, ପୂର୍ବକ ଷଡ଼ଭାଷା ବାରବିଳାସିନୀ ଭୂଜଙ୍ଗ ନାମରେ ଖ୍ୟାତ । ତାଙ୍କ ରଚିତ ବହୁଶାସ୍ତ୍ର ଅଦ୍ୟାବିଧି ମିଳିନଥିଲେ ହେଁ ଯାହାକିଛି ସଂଗ୍ରହ କରାଯାଇଛି ତାହା ଓଡ଼ିଶା ସାହିତ୍ୟ ଏକାଡେମୀ କର୍ତ୍ତୃକ ବ୍ରଜନାଥଗ୍ରନ୍ଥାବଳୀ ରୂପେ ପ୍ରକାଶିତ । ବ୍ରଜନାଥ ମଧ ଢେଙ୍କାନାଳ ରାଜାଙ୍କର ମରହଟ୍ଟାଙ୍କର ସହିତ ହୋଇଥିବା ଅଠରଦିନବ୍ୟାପୀ ମହାସମରର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ''ସମର ତରଙ୍ଗ'' କାବ୍ୟରେ ବର୍ଣ୍ଣନା କରିଛନ୍ତି । ମହନୀୟତା ହେଉଛି ବ୍ରଜନାଥ ବଡ଼ଜେନା ଓଡ଼ିଆ ସାହିତ୍ୟକୁ ଏକ ଶକ୍ତିଶାଳୀ ବୌଦ୍ଧିକ ମାଧମ ଭାବରେ ପ୍ରୟୋଗ କରି ସମାଜ ଓ ସଂସ୍କୃତିର କ୍ରାନ୍ତିକାରୀ ରୂପାନ୍ତର ତଥା ବୈପ୍ଳବିକ ପରିବର୍ତ୍ତନଘଟାଇ ପାରିଥିଲେ । ତାଙ୍କର ସମୟରୁ ହିଁ ଓଡ଼ିଆ ସାହିତ୍ୟରେ ସାମୁହିକ ଉପଭୋଗର ପଥ ପ୍ରଶସ୍ତ ହୋଇପାରିଥିଲା । ସମାଜର ପ୍ରତ୍ୟେକ ସ୍ତରରେ ସାହିତ୍ୟର ନିରଙ୍କୁଶ ପ୍ରବେଶ ଓ ପ୍ରଚଳନ ନିମିତ୍ତ ସେ ସତତ ପ୍ରଯତ୍ନଶୀଳ ଥିଲେ । ମୋଟ ଉପରେ କହିଲେ, ବ୍ରଜନାଥ ଓଡ଼ିଆ ସାହିତ୍ୟକୁ ଗଣସଂସ୍କୃତିର ପୃଷ୍ଠଭୂମିରେ ପ୍ରତିଷ୍ଠା ପୂର୍ବକ ନବ ଜାଗରଣର ପ୍ରବକ୍ତା ବୋଲାଇଥିଲେ ।

ବ୍ରଜନାଥଙ୍କର ଅନ୍ୟ ତିନିଭାଇ ମଧ୍ୟ ସୁକବି ଥିଲେ । ତଦୀୟ ଭ୍ରାତା ଜଗନ୍ନାଥ ବସନ୍ତରାସ ରଚନାକରି କବିଭୂଷଣ ଉପାଧିରେ ଭୂଷିତ ହୋଇଥିଲେ । ଅନ୍ୟତମ ଭ୍ରାତା ଲୋକନାଥ ଗୋପୀବିଳାସ ରଚନାକରି ରାଉତରାୟ ପଦବୀ ଲାଭ କରିଥିଲେ । ବ୍ରଜନାଥଙ୍କ ସମସାମୟିକ ଅନ୍ୟ ଜଣେ କବି କେତେଗୁଡ଼ିଏ ଡୁହା ରଚନା କରିଥିଲେ । ଏହି କବିଙ୍କର ସଂପୂର୍ଣ୍ଣ ପରିଚୟ ଅନୁପଲବ୍ଧ, ଅଥଚ ସେ କବିଚଡ଼କ ଉପାଧି ପାଇଥିଲେ । ତତ୍‌ପ୍ରଣୀତ ''କବିଚଡ଼କ ଡୁହା'' ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲା ।

ଧନ୍ୟମହାରାଜା ଓଡ଼ିଶା ମଧ୍ୟେ ଯା ଢେଙ୍କାନାଳ ମହୀପତି,
ପ୍ରଥମେ କଟକେ ଫଉଜ ଲୁଟିଲେ ରାଜାରାମଙ୍କ ସଂପତ୍ତି ।
ଦ୍ୱିତୀୟେ ଚେମଣା ସୈନ୍ୟଗଲେ ହଣା ଅଠର ଦିନ ଲଢ଼ାଇ,
କ୍ଷିତିପତି ମାନେ ଯେତେ ହାରିଗଲେ ଚାରିଯୁଗେ ନାମବହି ।

ସେହି ସମୟରେ ଆଦିକଳ ଅବଧାନ ନାମକ ଜଣେ କବି ବୈଶାଳିଆରାଜବଂଶର ଇତିହାସ ଗୀତ ଆକାରରେ ରଚନା କରିଥିଲେ । ଏହି ଖଣ୍ଡଗୀତିକାର ନାମ ''ଭଞ୍ଜବୋଲି'' । ଶ୍ରୀବଳଦେବଜୀଉଙ୍କ ଭକ୍ତ ବାବାଜୀ ରାମଦାସ ବଳରାମଙ୍କ କିମ୍ବଦନ୍ତୀ ଓ ଇତିହାସକୁ ଭିତ୍ତିକରି ବଳଭଦ୍ରବୋଲି ରଚନା କରିଥିଲେ । ସେତେବେଳେ ମୁଦ୍ରାଯନ୍ତ୍ର ନଥିବାରୁ ତାଳପତ୍ର ପୋଥିରେ ଲୌହ ଲେଖନୀ ସାହାଯ୍ୟରେ ବିଦ୍ୱାନ୍‌ମାନଙ୍କ ଦ୍ୱାରା ଗ୍ରନ୍ଥର ପ୍ରତିଲିପି ପ୍ରସ୍ତୁତ ହୋଇଥିଲା । କବି ବ୍ରଜନାଥ, ତାଙ୍କର ଭାଇମାନେ, ବାପାବଡ଼ବାପା ଓ ପୁତ୍ର ଘନଶ୍ୟାମ ଉଚ୍ଚକୋଟୀର ପୋଥିଲେଖକ ଥିଲେ । ଏତଦ୍‌ଭିନ୍ନ ବାଲିବୋମଠର ମହନ୍ତ ଶାଳାଗ୍ରାମ ଦାସ, ଖୋକସାମଠର ମହନ୍ତ ନରୋତ୍ତମ ଦାସ, ମାର୍ଥାପୁରଶାସନର ବଳଭଦ୍ର ମିଶ୍ର, ଗଦାଧର ବାହିନୀ ପତି ଓ ରାମଚନ୍ଦ୍ର ବ୍ରହ୍ମା, ଢେଙ୍କାନାଳର ଚନ୍ଦ୍ରଶେଖର ବଡ଼ପଣ୍ଡା, ଗୋପୀନାଥ ରାୟଗୁରୁ, ଚକ୍ରଧର ବ୍ରହ୍ମା, ମଧୁସୂଦନ ବାହିନୀପତି ଓ ଚିନ୍ତାମଣି ପରୀକ୍ଷା ପଟ୍ଟନାୟକ ପ୍ରଭୃତି ସୁନାମଧନ୍ୟ ପୋଥିଲେଖକ ଥିଲେ । ପୋଥିଲେଖା ଥିଲା ଢେଙ୍କାନାଳର ମହତ୍ୱପୂର୍ଣ୍ଣ ସାରସ୍ୱତ ସେବା । ଏହା ଢେଙ୍କାନାଳର ଅଣଆନୁଷ୍ଠାନିକ ସାହିତ୍ୟ ଅଧ୍ୟୟନର ସୂଚନା ପ୍ରଦାନ କରିଥାଏ । ପ୍ରମାଣିତ ହୁଏ, ମଧ୍ୟ ଯୁଗରେ ଢେଙ୍କାନାଳ ମାଟିରେ ଓଡ଼ିଆ ସାହିତ୍ୟର ସୁଦୃଢ଼ ଭିତ୍ତିପ୍ରସ୍ତର ସ୍ଥାପନ ହୋଇଥାଏ ।

**ନବଜାଗରଣ ଯୁଗ :** ଊନବିଂଶ ଶତାବ୍ଦୀରେ ଢେଙ୍କାନାଳରେ ଶିକ୍ଷା, ସାହିତ୍ୟ, ସଂସ୍କୃତି ଓ ଆଧ୍ୟାତ୍ମିକତା କ୍ଷେତ୍ରରେ ଏକ ନୂତନ ଯୁଗର ସୂତ୍ରପାତ ହୋଇଥିଲା । ସେହି ସମୟରେ ଢେଙ୍କାନାଳରେ ଇଂରାଜୀ ବିଦ୍ୟାଳୟ ଓ ଅନ୍ୟାନ୍ୟ ସ୍ଥାନରେ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ ହୋଇ ଆଧୁନିକ ଶିକ୍ଷାପ୍ରଣାଳୀର ପ୍ରସାର ଘଟିଲା । ବ୍ରାହ୍ମଣଶାସନ ଓ ମଠମାନଙ୍କରେ ଅଣଆନୁଷ୍ଠାନିକ ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ଶିକ୍ଷାର ବ୍ୟବସ୍ଥା ମଧ୍ୟ ରହିଥିଲା । ଠିକ୍ ଏହି ସମୟରେ ଢେଙ୍କାନାଳମାଟିରେ ମହିମାଧର୍ମର ଉନ୍ମେଷ ଏକ ଉଲ୍ଲେଖନୀୟ ଘଟଣା । ମହାରାଜା ଭଗୀରଥ ଜ୍ଞାନପ୍ରଚାର ଉଦ୍ଦେଶ୍ୟରେ ରାଜପ୍ରାସାଦରେଏକ ବୃହଦ୍ ପୁସ୍ତକାଳୟ ପ୍ରତିଷ୍ଠା କରିଥିଲେ ତଥା ସାନ୍ଧ୍ୟଦରବାରରେ ପ୍ରତିଦିନ ପଣ୍ଡିତମଣ୍ଡଳୀଙ୍କ ଦ୍ୱାରା ସଂସ୍କୃତ ଓ ଓଡ଼ିଆ ଶାସ୍ତ୍ର ତଥା କାବ୍ୟକବିତା ଆଲୋଚନା ହେଉଥିଲା । ରାଜା ନିଜେ ମଧ୍ୟ ଜଣେ ସୁପଣ୍ଡିତ ଥିଲେ ଏବଂ ଓଡ଼ିଆଭାଷା ବିଲୋପ ଚକ୍ରାନ୍ତ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ସେ ନିଜେ ବହୁ ଚୌପଦୀ, ଭଜନ ଓ ସଂଗୀତସାଗର ୪ ଖଣ୍ଡ ରଚନା କରିବା ସହିତ ରଚୟିତାମାନଙ୍କ ସାହାଯ୍ୟାର୍ଥେ ଗୋଟିଏ ଟ୍ରଷ୍ଟ ଗଠନ କରିଥିଲେ । ଓଡ଼ିଶାର ପ୍ରଥମ ମାଟ୍ରିକୁଲେଟ୍ ଥିଲେ ଢେଙ୍କାନାଳର ବନମାଳୀସିଂହ । ସେ କଟକର ଗୌରୀଶଙ୍କର ରାୟଙ୍କ ସହିତ ମିଳିତ ଭାବରେ କବିସମ୍ରାଟଙ୍କ ରସପଞ୍ଚକ, ପ୍ରେମ ସୁଧାନିଧି ଓ ଲାବଣ୍ୟବତୀ ସଂପ୍ରାଦନା କରିଥିଲେ । ସେ ନିଜେ ଈଶ୍ୱର ଚନ୍ଦ୍ରବିଦ୍ୟାସାଗରଙ୍କ ଶକୁନ୍ତଳା ଉପାଖ୍ୟାନ ଓଡ଼ିଆରେ ଅନୁବାଦ କରିଥିଲେ । ସେହି ସମୟରେ ଗୌରୀଶଙ୍କର ରାୟ, ବନମାଳୀସିଂହ, ବିଚିତ୍ରାନନ୍ଦ ଦାସ, ପ୍ରଭାକର ଚୂଡ଼ାମଣି ପ୍ରଭୃତି ଏକତ୍ର ଓଡ଼ିଶାର ପ୍ରଥମ ଛାପାଖାନା କଟକପ୍ରିଣ୍ଟିଂ କଂପାନୀ ଖୋଲିଥିଲେ । ଢେଙ୍କାନାଳ ମହାରାଜା ଭଗୀରଥ ଏହି କଂପାନୀର ତିନିଗୋଟି ଅଂଶ କ୍ରୟକରିବା ସହିତ ଛାପାଖାନା ଗୃହନିମିତ୍ତ ଆବଶ୍ୟକୀୟ କାଷ୍ଠ ପ୍ରଦାନ କରି ସେମାନଙ୍କୁ ଉତ୍ସାହିତ କରିଥିଲେ । ବ୍ୟାସକବି ଫକୀରମୋହନ ସ୍ୱରଚିତ ଆତ୍ମଜୀବନୀରେ ଲେଖିଛନ୍ତି, ସେହି ସମୟରେ ଢେଙ୍କାନାଳ ଜ୍ଞାନ ଓ ଭାଷାର ପ୍ରଚାର ତଥା ଇଂରାଜୀ ଶିକ୍ଷାପ୍ରଚଳନରେ ଭାଗୀରଥୀ ଥିଲେ ପ୍ରଥମ । ବ୍ୟାସକବି ନିଜେ ମଧ୍ୟ ଢେଙ୍କାନାଳରେ ସହକାରୀ ମ୍ୟାନେଜର ଥିବା ସମୟରେ ରାଜପ୍ରାସାଦ ପୁସ୍ତକାଳୟରୁ ସଂସ୍କୃତ ରାମାୟଣ ଆଣି ଅନୁବାଦ ପୂର୍ବକ ୧୮୮୦ ମସିହାରେ ପ୍ରକାଶ କରିଥିଲେ ।

ଏହି ଶତାବ୍ଦୀର ଶେଷ ପାଦରେ ନୂତନ ସ୍ୱାଦଯୁକ୍ତ କବିତା ସୃଷ୍ଟ କରି ଓଡ଼ିଶାର ନାରୀକବିଙ୍କ ମଧ୍ୟରେ ଢେଙ୍କାନାଳର ସୁଲକ୍ଷଣା ଦେବୀ ଥିଲେ ପ୍ରଥମ । ସ୍ୱରଚିତ କବିତାକୁ ଅପରୂପ ସୌନ୍ଦର୍ଯ୍ୟରେ ବିଭୂଷିତ କରି ''ପାରିବାତମାଳା'' ନାମକ କାବ୍ୟଗୁଚ୍ଛ ହୃଦୟସ୍ପର୍ଶ ଶୈଳୀରେ ପରିବେଷଣ ପୂର୍ବକ ସେ ତତ୍‌କାଳୀନ ଲବ୍ଧପ୍ରତିଷ୍ଠ ସାହିତ୍ୟକଙ୍କ ଦ୍ୱାରା ଉଚ୍ଚପ୍ରଶଂସିତ ହୋଇଥିଲେ । ସୁଲକ୍ଷଣା ଦେବୀଙ୍କର ସୁଯୋଗ୍ୟ ସନ୍ତାନଥିଲେ କବି ଦାମୋଦର ପଟ୍ଟନାୟକ । ସେ ଏକାଧାରରେ କବି, ସଂଗୀତଜ୍ଞ ଓ ଦେଓ୍ୱାନ ଥିଲେ । ପ୍ରାଚୀନ ସଂଗୀତ ମଧ୍ୟରୁ ଲୋକପ୍ରିୟ ସଂଗୀତସମୂହକୁ ସଂଗ୍ରହକରି ସେ ସଂଗୀତସାଗର ନାମକ ସାତଖଣ୍ଡ ପୁସ୍ତକ ସଙ୍କଳନ କରିଥିଲେ । ଏତଦ୍‌ଭିନ୍ନ ଦାମୋଦରଙ୍କ ଲେଖନୀରୁ କପିଳାସ, ବାଲିଯାତ୍ରା, ଜୀବନଚମ୍ପୁ, ପଦ୍ମମୁଖ, ଜାତୀୟ ସଂଗୀତ, ଶ୍ରୀଜଗନ୍ନାଥ ବଡ଼ଜେନାଙ୍କ ସମରତରଙ୍ଗ ପ୍ରକାଶନ କରିଥିଲେ । ସେ ଯୁବରାଜ ଛଦ୍ମନାମରେ ତତ୍‌କାଳୀନ ଓଡ଼ିଆ ପତ୍ରପତ୍ରିକାରେ ବହୁ ଲେଖା ପ୍ରକାଶ କରିଥିଲେ । ୧୮୮୬ ଖ୍ରୀଷ୍ଟାବ୍ଦରେ ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ର ସୁଲଳିତ ଛନ୍ଦରେ ''ଭଗୀରଥ କୀର୍ତ୍ତିକଳାପ'' ରଚନା କରିଥିଲେ । ଏହି ସମୟରେ ମାର୍ଥାପୁରଶାସନର ପଣ୍ଡିତ ଚକ୍ରଧରଦାଶ ହରିଲୀଳାମୃତ, ଶ୍ୟାମଲୀଳାମୃତ, ଭାଗବତ ମହାତ୍ମ୍ୟ, ବ୍ରହ୍ମବୈବର୍ତ୍ତ ପୁରାଣ ମାଳତୀଜନ୍ମ, ସୁଭଦ୍ରାହରଣ, ଚନ୍ଦ୍ରାବତୀ ହରଣ, ଆତ୍ମବୋଧ ଗୀତା, ବିଷମ ରହସ୍ୟ ଓ ଢେଙ୍କାନାଳ ପ୍ରାଚୀନ ଇତିହାସ ପ୍ରଭୃତି ଅଗଣିତ ଗ୍ରନ୍ଥ ରଚନା କରିଥିଲେ। ତନ୍ମଧ୍ୟରୁ ଅନେକ ଅପ୍ରକାଶିତ । ପ୍ରଫେସର କାହ୍ନୁଚରଣ ମିଶ୍ରଙ୍କ ମତରେ ଏହି ସମୟରେ ଢେଙ୍କାନାଳରେ ପଦ୍ମାବତୀହରଣ ନାଟକ ରଚନା କରିଥିଲେ ଏବଂ ତାହାହିଁ ପ୍ରଥମ ଓଡ଼ିଆ ନାଟକ । ଅଦ୍ୟାବଧି ଏହି ନାଟକର ପାଣ୍ଡୁଲିପି ମିଳିନଥିବାରୁ ''ବାବାଜୀ'' ପ୍ରଥମ ଓଡ଼ିଆ ନାଟକର ମର୍ଯ୍ୟାଦା ଲାଭ କରିଛି । ଏହି ସମୟରେ ଢେଙ୍କାନାଳର କବିଗୋବିନ୍ଦବୃନ୍ଦ ଯୁଗଚେତନାରେ ଉଦ୍‌ବୁଦ୍ଧ ହୋଇ ଓଡ଼ିଆ ସାହିତ୍ୟରେ ନବଜାଗରଣ ଆଣିପାରିଥିଲେ । ଏହି ନବଜାଗରଣ ଯୁଗରେ ଢେଙ୍କାନାଳର ସାରସ୍ୱତ ସ୍ରଷ୍ଟାଗଣ ରୁଚିରେ ଥିଲେ ପ୍ରାଚୀନ ଅଥଚ ସୃଷ୍ଟିରେ ଥିଲେ ନବୀନ ।

**ପ୍ରାକ୍ ସ୍ୱାଧୀନ ଯୁଗ :** ବିଂଶ ଶତାବ୍ଦୀରେ ପ୍ରଥମାର୍ଦ୍ଧରେ ଢେଙ୍କାନାଳ ମାଟିର ଅନେକ କୃତୀସନ୍ତାନ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ । ଏହି ଶତାବ୍ଦୀରେ ପ୍ରାରମ୍ଭରେ ସୋରରେ ଜନ୍ମଗ୍ରହଣ କରିଥିବା

ବୈଷ୍ଣବକବି ପାର୍ବତୀଚରଣ ଦାସ ଢେଙ୍କାନାଳର ନାବାଳକ ରଜା ସୁରପ୍ରତାପଙ୍କ ଗୃହଶିକ୍ଷକ ଓ ପରେ ଦେବୋତ୍ତର ଅଧିକାରୀ ରୂପେ ଢେଙ୍କାନାଳରେ ନିବାସ କରିଥିଲେ । ସୁରପ୍ରତାପଙ୍କ ମୃତ୍ୟୁପରେ ସେ ଇସ୍ତଫା ପ୍ରଦାନ କରି ପରମଧାମ ବୃନ୍ଦାବନରେ ବାବାଜୀ ପଦ୍ମଚରଣଦାସ ରୂପେ ବୈଷ୍ଣବ ଜୀବନ ଯାପନ କଲେ । ଏହି ପ୍ରଖ୍ୟାତଯଶା ବୈଷ୍ଣବକବି ଢେଙ୍କାନାଳରେ ରଚନା କରିଥିବା ଗ୍ରନ୍ଥସମୂହ ହେଉଛି ସଂଗୀତ ହାରାବଳୀ, ଓଡ଼ିଆକୀର୍ତ୍ତନ, ପ୍ରତାପରୁଦ୍ର ନାଟକ, ରାୟ ରାମାନନ୍ଦ, ପ୍ରଭୁ ଶ୍ୟାମାନନ୍ଦ ଭକ୍ତ ଗାଥା ଓ ସ୍ତ୍ରୀଶିକ୍ଷା । ଏହା ବ୍ୟତୀତ ସେ ଚୈତନ୍ୟ ଚନ୍ଦ୍ରାମୃତ ଓ ଚୈତନ୍ୟ ଚରିତାମୃତ ସୁବିସ୍ତୃତ ଟୀକା ସହ ଅନୁବାଦ କରିଥିଲେ । ସେହି ସମୟରେ ଢେଙ୍କାନାଳରେ ବୈଷ୍ଣବ ଭାବଧାରା ସମ୍ବଳିତ ସାଂସ୍କୃତିକ ଚେତନା ଜାଗରିତ ହୋଇଥିଲା । ଏଥିରେ ପ୍ରଭାବିତ ହୋଇ ଅନେକ କବି କୃଷ୍ଣରସାତ୍ମକ କାବ୍ୟ ଓ ଭଜନଜଣାଣ ରଚନା କରିଥିଲେ। ନିଜେ ରାଜା ସୁରପ୍ରତାପ ମଧ୍ୟ ଶ୍ରୀ ଶ୍ରୀ ସାକ୍ଷୀଗୋପାଳ କାବ୍ୟ ରଚନା କରିଥିଲେ । କିନ୍ତୁ ଅକାଳରେ ସେ ପରଲୋକଗମନ କରିବାରୁ ତଦୀୟ ଧର୍ମପତ୍ନୀ ରାଣୀ କୃଷ୍ଣଚନ୍ଦ୍ରପ୍ରିୟା ଏହି ଅସଂପୂର୍ଣ୍ଣ କାବ୍ୟଟିକୁ ସଂପୂର୍ଣ୍ଣ କରିଥିଲେ । ରାଣୀ କୃଷ୍ଣଚନ୍ଦ୍ର ପ୍ରିୟାଙ୍କ ଅନ୍ୟାନ୍ୟ କୃତୀ ମଧ୍ୟରେ ସଂଗୀତ ପୁଷ୍ପାଞ୍ଜଳି ବା ହାର୍‌ମୋନିୟମ୍ ଶିକ୍ଷା, ପ୍ରେମ ସଂପୁଟ, କୁଞ୍ଜକାନ୍ତ ଜଣାଣ, ବଳରାମ ଜଣାଣ, ପ୍ରାର୍ଥନାମୃତ ଓ ପଞ୍ଚସ୍ପୃହା ପ୍ରଭୃତି ବିଶେଷ ପାଠକୀୟ ଆଦୃତି ଲାଭ କରିଥିଲା । ତତ୍‌କୃତ ସଂଗୀତ ଶିକ୍ଷାପଦ୍ଧତି ସଂପର୍କୀୟ ପୁସ୍ତକ ଓଡ଼ିଆ ଭାଷାରେ ସର୍ବପ୍ରଥମ ।

ତତ୍‌କାଳୀନ ଢେଙ୍କାନାଳର ବିଶିଷ୍ଟ ନାଟ୍ୟକାର ଥିଲେ ଚନ୍ଦ୍ରଶେଖର ପାଣି । ତାଙ୍କ ରଚିତ ନାଟକ ଭକ୍ତବୀର, ବାଲୁକାପିଣ୍ଡ, ଇନ୍ଦିରା ପରିଣୟ, ରଘୁ ଅରକ୍ଷିତ, ବୀରତ୍ରିଲୋଚନ, ଚନ୍ଦ୍ରହାସ, କଳିକୁଳଚନ୍ଦ୍ରମା ପ୍ରଭୃତି ଓଡ଼ିଶାରେ ଆଲୋଡ଼ନ ସୃଷ୍ଟି କରିଥିଲା । ଶିଶୁସାହିତ୍ୟ ''ଗୁଣ୍ଡୁଚିମୂଷା'' ଚନ୍ଦ୍ରଶେଖର ପାଣିଙ୍କର ଅନ୍ୟତମ ସଫଳକୃତୀ । ବଳଭଦ୍ରପୁର ଶାସନ ନିବାସୀ ପଣ୍ଡିତ ବୈଷ୍ଣବଚରଣ ମହାପାତ୍ର ପଲ୍ଲୀପ୍ରକୃତି, ବ୍ରହ୍ମପ୍ରକୃତି ପକ୍ଷୀସନ୍ନ୍ୟାସୀ, ଭାବଲହରୀ, ଚିନ୍ତା ଲହରୀ ପ୍ରଭୃତି ଉଚ୍ଚାଙ୍ଗ ଦର୍ଶନ ଭିତ୍ତିକ କବିତା ରଚନା କରିଥିଲେ । ସେହି କବିତା ସମୂହ ଗ୍ରନ୍ଥାବଳୀ ରୂପରେ ପ୍ରକାଶିତ ହୋଇଥିଲା । ତଦୀୟ କନିଷ୍ଠଭ୍ରାତା ପଣ୍ଡିତ ନଗେନ୍ଦ୍ରନାଥ ମହାପାତ୍ର ଏକାଧାରରେ ଜଣେ କବି, ପଣ୍ଡିତ ଓ ଗବେଷକ ଥିଲେ । ତାଙ୍କର ସକଳକୃତୀ ''ନଗେନ୍ଦ୍ର ଗ୍ରନ୍ଥାବଳୀ'' ନାମରେ ପ୍ରକାଶିତ । ଧଳପୁର

ଶାସନର ପଣ୍ଡିତ ରାମଚନ୍ଦ୍ର ନନ୍ଦ ଭକ୍ତିବିନୋଦ ସେହି ସମୟର ଅନ୍ୟତମ ସାରସ୍ୱତ ପ୍ରତିଭା । ସେ ଢେଙ୍କାନାଳ ଇତିହାସ ସହିତ ରାମଚଣ୍ଡୀ ଜଣାଣ, ଅଷ୍ଟନାୟିକା, ଓ ଢେଙ୍କାନାଳ ଭୂଗୋଳ ରଚନା କରିଥିଲେ । ସେତେବେଳେ ଢେଙ୍କାନାଳ ଗୁରୁଟ୍ରେନିଂ ସ୍କୁଲର ପ୍ରଧାନ ପଣ୍ଡିତ ଥିଲେ ମାର୍ଥାପୁର ଶାସନ ନିବାସୀ ପଣ୍ଡିତ ବୈଦ୍ୟନାଥ ଦାଶ । ସେ ପ୍ରକୃତିଗାଥା ପ୍ରଥମ ଓ ଦ୍ୱିତୀୟ ଭାଗ ରଚନା କରିଥିଲେ । ସେହି ମାର୍ଥାପୁର ଶାସନର ପଣ୍ଡିତ ଜୟକୃଷ୍ଣ ମିଶ୍ର ଅମିତ୍ରାକ୍ଷରରେ "ଜୟଦ୍ରଥ ବଧ" କାବ୍ୟ ଓ କପିଳାସ ମହାତ୍ମ୍ୟ ରଚନା କରଥିଲେ । ସେହି ଶାସନର ପଣ୍ଡିତ ନିରଞ୍ଜନ ଦାଶ "ଜଣାର୍ଣ୍ଣବ" ଓ ପଣ୍ଡିତ ଯୁଧିଷ୍ଠିର ମିଶ୍ର ପୁଣ୍ୟପରୀକ୍ଷା ତଥା ସଦାଶିବ ଚଉତିଶା ରଚନା କରିଥିଲେ । ମୁକ୍ତାଦେଇ ପୁର ଶାସନର ପଣ୍ଡିତ ଗଣେଶ୍ୱର ମିଶ୍ର ମଙ୍ଗଳା ସ୍ତୁତି ଓ ଶିବରାତ୍ରିକଥା ରଚନା କରିବା ସହିତ ବ୍ରଜନାଥଙ୍କ ଗୁଣ୍ଡିଚାବିଜେ କରିଥିଲେ ।

ଏହି ସମୟରେ ଭୁବନଶାସ୍ନ ନିବାସୀ ପଣ୍ଡିତ କେଶବ ଚନ୍ଦ୍ର ମିଶ୍ର ବୈତରଣୀ କାବ୍ୟ, ଶୋଭନାନାଟକ ଓ ନାଏବବାବୁ ଉପନ୍ୟାସ ରଚନା କରି ଆପଣା ସାରସ୍ୱତ ପ୍ରତିଭାର ପରିଚୟ ପ୍ରଦାନ କରିଥିଲେ ସେହି ଶାସନର ଅନ୍ୟତମ ସାରସ୍ୱତ ପ୍ରତିଭା ପଣ୍ଡିତ ପଦ୍ମନାଭ ମିଶ୍ର ସରୋଜିନୀ, ଉଷା ପରିଣୟ, କ୍ରତୁଧ୍ୱଂସ, ଦାରୁଦେବତା, ପିତୃଭକ୍ତି ପ୍ରଭୃତି କାବ୍ୟକବିତା ଓ ପାଲାରଚନା କରି ବିଶେଷ ଲୋକପ୍ରିୟତା ଅର୍ଜନ କରିଥିଲେ । ଧଳପୁର ଶାସନରେ ଜନ୍ମଗ୍ରହଣ କରିଥିବା ବାବାଜୀ ବଳରାମ ଦାସ ସେହି ସମୟରେ ସନ୍ଥଗୋସ୍ୱାମୀ ତୁଳସୀ ଦାସଙ୍କ କୃତ ଶ୍ରୀରାମଚରିତମାନସ ଓଡ଼ିଆ ପଦ୍ୟାନୁବାଦ କରିଥିଲେ, ଯାହାକି ପରବର୍ତ୍ତୀକାଳରେ ଲକ୍ଷ୍ନୌର ଭୁବନବାଣୀଟ୍ରଷ୍ଟ ଦ୍ୱାରା ପ୍ରକାଶିତ । ଢେଙ୍କାନାଳରେ ଜନ୍ମନେଇଥିବା ପ୍ରତିଷ୍ଠିତ ସାହିତ୍ୟକ ଅନ୍ନଦା ଶଙ୍କର ରାୟ ଥିଲେ ସବୁଜ ସାହିତ୍ୟର ଅନ୍ୟତମ ସ୍ରଷ୍ଟା । ତାଙ୍କ ଲେଖନୀରୁ ପ୍ରଳୟ, ପ୍ରେରଣା, ସୃଜନସ୍ୱପ୍ନ, ମାନସୀ ଓ ମୁଁ, ପରୀମହଲ, ପ୍ରଣୟୀ, ସାଗରପ୍ରତି, ସବିତା ପ୍ରଭୃତି କବିତା ସୃଷ୍ଟି ହୋଇ ଓଡ଼ିଆ ସାହିତ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲା । ସେ ମଧ୍ୟ ଉତ୍କଳ ସାହିତ୍ୟରେ ଧାରାବାହିକ ବାସନ୍ତୀ ଉପନ୍ୟାସର ଲେଖକ ଥିଲେ ।

ଢେଙ୍କାନାଳ ଦେଉଳସାହି ନିବାସୀ ଶିକ୍ଷକ ବାସୁଦେବ ପଟ୍ଟନାୟକ ଜଣେ ସୁପଣ୍ଡିତ ଓ ସାହିତ୍ୟାନୁରାଗୀ ଥିଲେ। ସେ ବ୍ରଜନାଥଙ୍କ କେଳିକଳାବିଧିର ପାଣ୍ଡିତ୍ୟ ପୂର୍ଣ୍ଣ ଟୀକାକରିବାସହିତ ପୂଜାବଳୀ ନାମକ ପୁସ୍ତକ ରଚନା କରିଥିଲେ ।

ମୁକ୍ତାଦେଇପୁର ଶାସନ ନିବାସୀ ଲୋକନାଥ ରଥଙ୍କ ''ନବନିକୁଞ୍ଜ'' କବିତା ଲବ୍ଧ ପ୍ରତିଷ୍ଠିତ ସାହିତ୍ୟକଙ୍କ ଦ୍ୱାରା ଆଦୃତ ହୋଇଥିଲା। ଏହି ସମୟରେ ହିନ୍ଦୋଳର ପଣ୍ଡିତ ଭାଗୀରଥି ମିଶ୍ର କାବ୍ୟତୀର୍ଥ ରୀତିଯୁଗୀୟ ଧାରାରେ ଅନ୍ୟୂନ୍ୟ ଦଶଖଣ୍ଡ କାବ୍ୟ ରଚନା କରିଥିଲେ । ତନ୍ମଧ୍ୟରେ ''ଦମୟନ୍ତୀ'' ଶ୍ରୀହର୍ଷଙ୍କ ନୈଷଦଚରିତ ଅବଲମ୍ବନରେ ରଚିତ ଓ ସର୍ବୋତ୍କୃଷ୍ଟ । ରାସୋଳ ନିବାସୀ ରାମକୃଷ୍ଣସାହୁ ଅନେକ କାବ୍ୟ ରଚନା କରିଥିଲେ ହେଁ ତାଙ୍କ ରଚିତ ''ଗୀତାତତ୍ତ୍ୱ'' ଅଧିକ ଲୋକପ୍ରିୟତା ଲାଭ କରିଥିଲା । ନନ୍ଦପୁର ଶାସନ ନିବାସୀ ପଣ୍ଡିତ ମୁକୁନ୍ଦ ମହାପାତ୍ର ପୁରୀରେ ସଂସ୍କୃତ ଅଧାପକ ଥିବା ସମୟରେ ପଠାଣି ସାମନ୍ତଙ୍କ ସିଦ୍ଧାନ୍ତ ଦର୍ପଣର ଏକ ଓଡ଼ିଆଭାଷ୍ୟ ରଚନା କରିଥିଲେ। ହିନ୍ଦୋଳର ତତ୍‌କାଳୀନ ରାଜା ଦନାର୍ଦ୍ଦନ ସିଂହ ମର୍ଦ୍ଦରାଜ ଜଣେ କବି ଥିଲେ । ତାଙ୍କ ରଚିତ ରସଲତା ଓ ମାଧବାନନ୍ଦ କାବ୍ୟ ରାଜ୍ୟସଂଗ୍ରହାଳୟରେ ସଂରକ୍ଷିତ । ହିନ୍ଦୋଳ ନିବାସୀ ପଣ୍ଡିତ ଚକ୍ରଧର ଆଚାର୍ଯ୍ୟ ସଂସ୍କୃତ କାବ୍ୟ ହଂସଦୂତର ଓଡ଼ିଆ ଅନୁବାଦ କରିଥିଲେ । ତାଙ୍କର ଅନ୍ୟ କୃତୀ ହେଉଛି ଶ୍ରୀବତ୍ସ ଓ ଅକ୍ଷତ କାବ୍ୟ । ହିନ୍ଦୋଳ ପଞ୍ଚୁପଡ଼ାର କବି ଧନେଶ୍ୱର ପତି ପଲ୍ଲବୀ, ରସଧାରା, କାବ୍ୟସତୀ, କୀର୍ତ୍ତିଲତା ପ୍ରଭୃତି କାବ୍ୟରଚନା କରିଥିଲେ । ବାଲିକିଆରୀ ନିବାସୀ ଭିକାରି ଚରଣ ଦାସ କାବ୍ୟରତ୍ନ ଶକ୍ରାବତିଶ ବିଳାସ, ରତ୍ନାବଳୀ, ହିନ୍ଦୋଳଭ୍ରମଣ, ସ୍ୱଦେଶ କୋଇଲି ପ୍ରଭୃତି ପ୍ରାୟ ଏକ ଶହ କାବ୍ୟ ରଚନା କରିଥିଲେ । ନାଧରାନିବାସୀ ଶିକ୍ଷାବିତ୍ ବିଦ୍ୟାଧର ମହାନ୍ତି ଢେଙ୍କାନାଳ ଭୂଗୋଳ ଓ ଗାଁ ମଜଲିସ୍ ତଥା କୁଆଁଳୋ ନିବାସୀ ରାସବିହାରୀ ବେହେରାଙ୍କ ''ତୁଳସୀ ରାମାୟଣ'' ଏକ ସାର୍ଥକ ସୃଷ୍ଟି । କାମାକ୍ଷାନଗର ନିବାସୀ ସିକନ୍ଦର ଖାଁଙ୍କ ଲକ୍ଷ୍ମୀପୂଜା ଓ ଶ୍ରବଣକୁମାର ଦୁଇଗୋଟି ସଫଳ ନୃତ୍ୟନାଟିକା ।

ଢେଙ୍କାନାଳର ସାହିତ୍ୟରଥିମାନଙ୍କ ମଧ୍ୟରେ କବିଭୂଷଣ ରାଜକିଶୋର ପଟ୍ଟନାୟକ ସୁନାମଧନ୍ୟ । ସେ ଏକାଧାରରେ କବି, ପ୍ରାବନ୍ଧିକ, ଶିଶୁସାହିତ୍ୟକ ଓ ତତ୍ତ୍ୱଦର୍ଶୀ ଥିଲେ। ତାଙ୍କ ରଚିତ ପୁସ୍ତକ ସମୂହ ହେଉଛି ଚୈତନ୍ୟ ଚଉତିଶା, ଗୀତା ପଦ୍ୟାନୁବାଦ, ଗୀତାତତ୍ତ୍ୱ ଚିନ୍ତନ, ଗାୟତ୍ରୀ ରାମାୟଣ, ଶ୍ରୀହରି ଜନ୍ମାଷ୍ଟମୀ, ଉଦ୍ଧବ ସନ୍ଦେଶ ଓ ଭ୍ରମରଗୀତ, ଗୋପାଳ ସହସ୍ରନାମ, ଶିଶୁସଥୀ, ଶିଶୁସାଧୀ, ବାଳବୋଧ, ଆଦର୍ଶ ମାନସାଙ୍କ, ବର୍ଣ୍ଣବୋଧ, ଜୀବନୀପ୍ରବାହ ଓ ସଜପାଠ । ବ୍ରଜନାଥଙ୍କ ସାହିତ୍ୟକୃତିକୁ ଲୋକଲୋଚନକୁ ଆଣିବା ନିମିତ୍ତ ତାଙ୍କ ଭୂମିକା ଉଲ୍ଲେଖନୀୟ। ଢେଙ୍କାନାଳ ସହରର ପଣ୍ଡିତ ଗଙ୍ଗାଧର ମଣ୍ଡ ସୌଖୀନ

ସାହିତ୍ୟସେବୀ ରୂପେ ରାଜର୍ଷି ସୁରପ୍ରତାପ, ସମରକାହାଣୀ ଓ ଦେଶ ମାଆର ଡାକରା ପ୍ରଭୃତି ରଚନା କରିଥିଲେ । ମାର୍ଥାପୁରଶାସନର ସ୍ୱାଧୀନତା ସଂଗ୍ରାମୀ ସତ୍ୟବାଦୀ ମିଶ୍ର ଜୟଭାରତ ଓ ସ୍ୱାଧୀନତାର ପଥେ ଶୀର୍ଷକ ଦୁଇଟି ଦେଶାତ୍ମବୋଧକ ଗୀତିକା ରଚନାକରିଥିଲେ, ଯାହାକି ପ୍ରଜାମଣ୍ଡଳ କର୍ମୀମାନେ ଗ୍ରାମେ ଗ୍ରାମେ ବୋଲୁଥିଲେ । ଢେଙ୍କାନାଳର ରାଣୀ ରତ୍ନପ୍ରଭା ଦେବୀ ଓଡ଼ିଶାରେ ସ୍କାଉଟ୍ ଗାଇଡ୍, କୁଷ୍ଟକଲେରା ଓ ବସନ୍ତ ଚିକିତ୍ସା, ଶିଶୁପାଳନ ଓ ଅନେକ ଭଜନ ଜଣାଣ ଲେଖିଛନ୍ତି । ପରିଣତ ଜୀବନରେ ସେ ଆପଣାର ଆତ୍ମଜୀବନୀ ''୧୯୦୯ ରୁ ଏ ପର୍ଯ୍ୟନ୍ତ'' ଲେଖିଥିଲେ । ଶ୍ରୀଶେଶ ପ୍ରତାପ ସିଂହଦେବ ଶକ୍ତିପୀଠ, ଆମରଦାୟ, ଜଳାଅ ଜୀବନଜ୍ୟୋତି, ହିନ୍ଦୁଧର୍ମ ଓ ଶମ୍ଭୁକ୍ଷେତ୍ର କପିଳାସ ପ୍ରଭୃତି ରଚନା କରିବା ସହିତ ବ୍ରଜନାଥଙ୍କ ସମରତରଙ୍ଗର ଇଂରାଜୀ ଅନୁବାଦ MARWAVES ଲେଖିଥିଲେ । ୧୯୩୧ରେ ଢେଙ୍କାନାଳ ସାହିତ୍ୟ ସଂସଦ ଗଠନ କରାଯାଇ ବ୍ରଜନାଥଙ୍କ ସାହିତ୍ୟକୃତୀର ପ୍ରକାଶନ ସହିତ ଗବେଷଣା ଓ ସମାଲୋଚନା ବ୍ୟାପକ କରାଗଲା । କବିଭୂଷଣଙ୍କ ଦ୍ୱାରା ସଂଗ୍ରହ କରାଯାଇଥିବା ବ୍ରଜନାଥଙ୍କ କୃତୀ ସମୂହକୁ ପରବର୍ତ୍ତୀ କାଳରେ ସୁଧାକର ପଟ୍ଟନାୟକ ନେଇ ବ୍ରଜନାଥଗ୍ରନ୍ଥାବଳୀ ସଙ୍କଳନ କଲେ, ଯାହାକି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ । ଢେଙ୍କାନାଳ ବେବର୍ତ୍ତା ସାହି ସୂର୍ଯ୍ୟନାରାୟଣ ପଟ୍ଟନାୟକ ମଧ ବ୍ରଜନାଥଙ୍କ ସମରତରଙ୍ଗ ଓ ଚତୁରବିନୋଦ ସଂକଳନ କରିଥିଲେ । ଏତଦ୍‌ଭିନ୍ନ ଭକ୍ତନାରାୟଣ ଓ ଅନ୍ୟାନ୍ୟ ମହିମାସନ୍ୟାସୀ ଏହି ସମୟରେ ଅନେକ ମହିମା ଭଜନ ରଚନା କରିଥିଲେ । ଏହା ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଢେଙ୍କାନାଳର ସାରସ୍ୱତ କ୍ଷେତ୍ରରେ ଆଧୁନିକତା ଓ ବିକାଶ ନିମିତ୍ତ ଅନୁକୂଳ ବାତାବରଣ ସୃଷ୍ଟିହୋଇ ଏମାଟିର କବିକୋବିଦବୃନ୍ଦ ସାତସ୍ୱତ ସାଧନାରେ ବ୍ରତୀ ହୋଇଥିଲେ । ଏହି ସାରସ୍ୱତ ଧାରା ସ୍ୱାଧୀନୋତ୍ତର କାଳ ପର୍ଯ୍ୟନ୍ତ ଅବ୍ୟାହତ ରହି ଅଗଣିତ ସ୍ରଷ୍ଟାଙ୍କୁ ପ୍ରେରଣା ପ୍ରଦାନ କରିଥିଲା । ଉଲ୍ଲେଖ ଯୋଗ୍ୟଯେ, ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଢେଙ୍କାନାଳର ସୁରପ୍ରତାପ ପ୍ରିଣ୍ଟିଂ ପ୍ରେସ୍ ସ୍ଥାପନ ହୋଇ ଅନେକ ପୁସ୍ତକ ପ୍ରକାଶିତ ହେଲା ତଥା ସାହିତ୍ୟ ପ୍ରତି ସର୍ବସାଧାରଣଙ୍କ ଅନୁରାଗ ବୃଦ୍ଧି ହୋଇଥିଲା ।

**ସ୍ୱାଧୀନୋତ୍ତର ଯୁଗ :** ସ୍ୱାଧୀନତାପରେ ଢେଙ୍କାନାଳର ଅଗଣିତ ସ୍ରଷ୍ଟା ଓଡ଼ିଆ ସାହିତ୍ୟର ସକଳ ବିଭାଗକୁପରିପୁଷ୍ଟ କରିଛନ୍ତି । ଏମାନଙ୍କ ମଧ୍ୟରେ

ପ୍ରଫେସର ଗୋଲକ ବିହାରୀଧଳ ଅଗ୍ରଗଣ୍ୟ । ସେ ଭାଷାବିଜ୍ଞାନ ଓ ଧ୍ୱନିବିଜ୍ଞାନ ସଂପର୍କୀୟ ଅନେକ ଗବେଷଣାତ୍ମକ ଗ୍ରନ୍ଥ ରଚନାକରି ଆନ୍ତର୍ଜାତିକ ସୁଖ୍ୟାତି ଅର୍ଜନ କରିବା ସହିତ ଜଣେ ଉଚ୍ଚକୋଟିର ପ୍ରାବନ୍ଧିକ ତଥା ସଫଳ ଅନୁବାଦକ ରୂପେ ସୁପରିଚିତ । ତାଙ୍କ ରଚନା ମଧ୍ୟରେ ମଣିଷର ଭାଷା, ଆମେରିକା ଅନୁଭୂତି, ଲଣ୍ଡନଚିଠି, ତାଜମହଲର ଦେଶେ, ପେଟର ପବନ ପାଟିର ଭାଷା, ଧ୍ୱନିବିଜ୍ଞାନ, ଇଂରାଜୀ ଉଚ୍ଚାରଣ ଶିକ୍ଷା, ଅମରକାହାଣୀ ଓ ଅମରମଣିଷ ପ୍ରଭୃତି ମୁଖ୍ୟ । ଏତଦ୍‌ଭିନ୍ନ ସେ ପ୍ରେମଚନ୍ଦଙ୍କ ଗୋଦାନ, ଗବନ ଓ କାହାଣୀ ଓଡ଼ିଆରେ ଅନୁବାଦ କରିଛନ୍ତି । ଢେଙ୍କାନାଳର ଅନ୍ୟତମ ପ୍ରଜ୍ଞା ପ୍ରଫେସର ନୃସିଂହ ଚରଣ ପଣ୍ଡାଙ୍କର ସାର୍ଥକ ସୃଷ୍ଟି ହେଉଛି ମେଷପାଳନ, ଦଗ୍ଧଗୋଲାପର ଚିରବସନ୍ତ, ସପ୍ତସିନ୍ଧୁ, ଚଣ୍ଡାଶୋକ, ଧର୍ମାଶୋକ, ଖାରବେଳ, ଅଶାନ୍ତ ଅନଳ, ବିଜ୍ଞାନ ଓ ପ୍ରକୃତି, ବିଜ୍ଞାନ ଓ ଭଗବାନ ତଥା ଅନ୍ୟୁନ୍ୟ ଏକ ହଜାର ପ୍ରବନ୍ଧ । ସ୍ୱାଧୀନତା ସଂଗ୍ରାମୀ ଅଲେଖ ପ୍ରସାଦ ଦାସ ଅଭିମନ୍ୟୁବଧ, ଭକ୍ତକବି ମଧୁସୂଦନ ରାଓ, ବ୍ୟାସକବି ଫକୀରମୋହନ, ସାତୋଟି ସଞ୍ଜଗପ ଓ ଜୀବନର ଡାକ ପ୍ରଭୃତି ପୁସ୍ତକର ସ୍ରଷ୍ଟା । ଅନ୍ୟତମ ସଂଗ୍ରାମୀ ବ୍ରଜକିଶୋର ଧଳଙ୍କ କୃତୀ ହେଉଛି "ଭୁଲିବୁ ନାହିଁ"। ତଦୀୟ ଜ୍ୟେଷ୍ଠପୁତ୍ର ରମେଶଚନ୍ଦ୍ର ଧଳ ଉପହାର, ଅନ୍ତିମପାତ୍ର, ଆକାଶର ମୁହଁ, ପ୍ରତୀକ୍ଷାରେ, ସମୟର ରଙ୍ଗ, ଯୁଗସୌରଭ, ପ୍ରଭୃତି ରଚନା କରିବା ସହିତ ବଡ଼ଜେନା ପରିକ୍ରମା ସଂପାଦନା କରିଛନ୍ତି । ଦେବେନ୍ଦ୍ର ଶତପଥୀଙ୍କ ଶ୍ରୀଅରବିନ୍ଦ, ଗୁରୁନାନକ ଓ ସୁବ୍ରମନ୍ୟମ୍ ଭାରତୀ ବିଶେଷ ପାଠକୀୟ ଆଦୃତି ଲାଭକରିଛି। ନନ୍ଦିନୀ ଶତପଥୀ ଲଜ୍ଜା ଓ ରେଭେନ୍ୟୁଟିକଟ ଅନୁବାଦ କରିବା ସହିତ କେତୋଟି କାହାଣୀ ରଚନା କରିଛନ୍ତି । କବି ନୃସିଂହ କୁମାର ରଥଙ୍କ କବିତା ପୁସ୍ତକ ଗୁଡ଼ିକ ହେଉଛି ମରୁଦୁର୍ବା, ଶ୍ରୁୟତାମ୍, ଛବି ଓ ଛାୟା, ଦୃଷ୍ଟି ଓ ଦିଗନ୍ତ ତଥା ଉତ୍କଣ୍ଠାର ମୃତ୍ୟୁ । ପଣ୍ଡିତ ଗୌରହରି ପଣ୍ଡା, କପିଳାସ, ଭରତମିଳନ, କିଷ୍କିନ୍ଧ୍ୟା, ପବନଦୂତ, ଅଧ୍ୟାତ୍ମରାମାୟଣ ପ୍ରଭୃତି ରଚନା କରିଛନ୍ତି । କବି ଧନେଶ୍ୱର ପାଣି ପବିତ୍ରତା ସାବିତ୍ରୀ, କବିତାଞ୍ଜଳୀ, କନ୍ୟାପ୍ରତି, ଜହ୍ନାପଥର, ନେଉଳଭାଇର ବାହାଘର, ବିଶ୍ୱାସେ ମିଳଇ କୃଷ୍ଣ ରଚନା କରିବା ସହିତ ଷୋଳପାଳାର ଓଡ଼ିଆ ଅନୁବାଦ କରିଛନ୍ତି । ଶିକ୍ଷାବିତ୍ ରୁଦ୍ର ନାରାୟଣ ମିଶ୍ର ମାନସ କଥାମୃତଲହରୀ ଓ ମାନସ ରସାମୃତ ଲହରୀ ରଚନା କରିଛନ୍ତି, ନୃପାଳଜୀଙ୍କ ସୃଷ୍ଟି ହେଉଛି ପରମପୁରୁଷ, ବରଣ ଘେନବନ୍ଦନୀୟ, ଆସହେ ଫେରି, କୁମାର ଉତ୍ସବ ଓ ବାଣୀ

ଆବାହନ । ପର୍ଶୁରାମ ମହାପାତ୍ର ଭଗ୍ନକୋଣାର୍କ ଉପନ୍ୟାସ ସହିତ ଗଙ୍ଗାସାଗର ଦର୍ଶନ ଲେଖିଛନ୍ତି । କବି ଶ୍ରୀବତ୍ସନାୟକଙ୍କ ସୃଷ୍ଟି ହେଉଛି ଜଳମର୍ମର, ମୃଗନାଭି, ତୂର୍ଯ୍ୟନାଦ, ବ୍ରାହ୍ମଣୀକନ୍ୟା ଓ ଅସଂଖ୍ୟ କବିତାଗୁଚ୍ଛ । କବି ସତ୍ୟବ୍ରତ ମହାନ୍ତି ଅନାମିକାର ଅନେକ ନାମ କବିତା ସଙ୍କଳନ ସହିତ ଶତାଧିକ କବିତା ଲେଖିଯାଇଛନ୍ତି । ପଣ୍ଡିତ ନୀଳକଣ୍ଠରଥ ଶ୍ରୀମଦ୍ ଭଗବତ୍‌ଗୀତାର ସୁବିସ୍ତୃତ ଓଡ଼ିଆଭାଷ୍ୟ କରିଛନ୍ତି । ବିଶେଶ୍ୱର ଭୂତିଆଙ୍କ କୃତୀହେଉଛି ଯାଦବଗୌରବ । କବି ହରମୋହନ ଦାଶଙ୍କ କୃତୀସମୂହ ହେଉଛି ଅଭୀଷ୍ଟଚିନ୍ତାମଣି, ଲାଲଗୋଲାପ, ସ୍ୱର୍ଣ୍ଣପ୍ରଭା, ମଧୁରେଖା, ଇତିକଥାର କାବ୍ୟ, ପ୍ରଣୟତରଙ୍ଗିଣୀ ଓ କଲ୍ୟାଣୀ । କବି ଅନ୍ତର୍ଯ୍ୟାମୀ ଶତପଥୀଙ୍କ ସୃଷ୍ଟିମଧ୍ୟରେ ମାନସୀ, ଅମରଦିହୁଡ଼ି ଓ ପ୍ରିୟମ୍ବଦା ପ୍ରଭୃତି ଲୋକପ୍ରିୟ । ହାସ୍ୟବିଦୂଷୀ ପଙ୍କଜିନୀ ଦାଶ ମାରମାର ଭଣ୍ଡାରିଆକୁମାର ଲେଖିବା ସହିତ କ୍ଷୁଦ୍ରଗଳ୍ପ ଓ ବ୍ୟଙ୍ଗରଚନାରେ ସିଦ୍ଧହସ୍ତା । ପୂର୍ଣ୍ଣଚନ୍ଦ୍ର ଶତପଥୀଙ୍କ ଗଳ୍ପ ସଙ୍କଳନ ହେଉଛି ''ଜୀବନର ସ୍ୱାଦ'' । ବସନ୍ତ କୁମାର ମହାପାତ୍ର (ଶାଣ୍ଡିଲ୍ୟ) ହିନ୍ଦୁଧର୍ମର ବୈଜ୍ଞାନିକ ବାଖ୍ୟା, ମଧୁର ଆଳାପ, ଚେତନାର ଚନ୍ଦ୍ରଭାଗା, ଗଲି ଆଇଲି ଯାହା ଦେଖିଲି ରଚନା କରିବା ସହିତ ଦୁଃଖାତୀତପଥର ଓଡ଼ିଆ ଅନୁବାଦ କରିଛନ୍ତି । ମାୟାଧର ମିଶ୍ର ଚିତ୍ରକୂଟର ଓଡ଼ିଆ ଅନୁବାଦ କରିବା ସହିତ ଅହଲ୍ୟାଶାପମୋଚନ, ଶ୍ରୀରାମ ବନବାସ, ଭରତମିଳନ, ଶ୍ରୀହନୁମାନ ପ୍ରଭୃତି ରଚନା କରିଛନ୍ତି। ପଣ୍ଡିତ ରଙ୍ଗାଧର ଷଡ଼ଙ୍ଗୀଙ୍କୁ କୃତୀହେଉଛି ସତୁରୀଚାତୁରୀ, ଶୁକସପ୍ତତି ଓ ଖାଡ଼ଙ୍ଗୀ ଭାଗବତର ସଙ୍କଳନ। ଶିଶୁସାହିତ୍ୟଙ୍କ ଧ୍ରୁବଚରଣ ପଣ୍ଡା ଫୁଲଝରୀ, ମୋ ପେଁକାଳୀବାଜିଲା, କାହାଣୀ ମୁଣି ଓ ସପ୍ତକନ୍ୟା ଇତ୍ୟାଦି ରଚନା କରିଛନ୍ତି । ନୃସିଂହ ତ୍ରିପାଠୀଙ୍କ କୃତୀ ହେଉଛି ରାତିରଖରା, ପୂର୍ବଦିଗ, ହେ ଈଶ୍ୱରଉଠ ଓ ନିଦ୍ରିଦ୍ୱ ସନ୍ନ୍ୟାସ ପ୍ରଭୃତି । ସୁରେନ୍ଦ୍ର ମିଶ୍ର ସାହିତ୍ୟ ଦର୍ପଣରୁ ଢେଙ୍କାନାଳ ଇତିହାସ ଓ ବାଜିରାଉତ ରଚନା କରିଛନ୍ତି । ପ୍ରାଧ୍ୟାପକ ନିତ୍ୟାନନ୍ଦ ମିଶ୍ର ବୀରବୈଷ୍ଣବ, ପ୍ରଜାମଣ୍ଡଳର ଗୀତ ସହିତ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ନାରୀକବି ଶଶୀକଳା ମିଶ୍ର ତୁଳସୀ, ମହାଲକ୍ଷ୍ମୀ, ରାଧାଦାମୋଦର ପ୍ରଭୃତି ଲେଖିଛନ୍ତି । ଶିକ୍ଷାବିତ୍ ସନାତନ ନାଥ ସଂକ୍ଷିପ୍ତ ରାମାୟଣ, ଉଷା ପରିଣୟ, ସେ ଦିନର କବିତା ଓ ଆଞ୍ଜନେୟ ପୁରାଣ ପ୍ରଭୃତି ରଚନା କରିଥିଲେ । ପଣ୍ଡିତ ବିକ୍ରମ ପଣ୍ଡାଙ୍କର କୃତୀ ହେଉଛି ଶ୍ରୀମଦ୍‌ଭାଗବତ ଓ ଉତ୍ତରାପଥେ ପ୍ରଭୃତି । ଶିକ୍ଷାବିତ୍ ଈଶ୍ୱରଚନ୍ଦ୍ର ମହାପାତ୍ର ଗଳ୍ପଚୟନ, ମାଧ୍ୟମିକ ପ୍ରବନ୍ଧ ପ୍ରସୂନ,

ବ୍ରାହ୍ମଣୀବିଳାପ, କୁହୁକଦର୍ପଣ ଓ ଉଲ୍ଲାସ ପ୍ରଭୃତି ପୁସ୍ତକ ଓ ଅନେକ ପ୍ରବନ୍ଧ ରଚନା କରିଛନ୍ତି । ଖଣକବି ନଟବର ନାୟକଙ୍କ ସୃଷ୍ଟି ସମୂହ ହେଉଛି ମର୍ତ୍ତ୍ୟଭୁବନ, ଗାଁ ଟାଉଟର, ମୋକଦ୍ଦମା ପ୍ରଭୃତି ଅନ୍ୟୂନ୍ୟ ୫୦ ଖଣ୍ଡ । ମହମ୍ମଦ ରଫିକ୍ ଅନେକ ପ୍ରବନ୍ଧ ଲେଖିଥିଲେ ହେଁ ''ସାଧୁସାବଧାନ'' ନାମକ ଗୋଟିଏ ପ୍ରବନ୍ଧ ସଙ୍କଳନ ପ୍ରକାଶିତ ।

ସଂପ୍ରତି ଢେଙ୍କାନାଳର ଯେଉଁ କେତେଜଣ ଲେଖନୀ ଚାଳନା କରୁଛନ୍ତି ସେମାନଙ୍କ ମଧ୍ୟରେ ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର ଅନ୍ୟତମ । ତାଙ୍କ ସୃଷ୍ଟି ହେଉଛି ବ୍ରାହ୍ମଣୀ, ସପ୍ତଶଯ୍ୟା, ଅଭୁଲା ଐତିହ୍ୟ, ପୁଣ୍ୟପୀଠ କପିଳାସ, ଉପନିଷଦ୍ ବଚନାମୃତ, ପୁରାଣ ପରିଚୟ, ଦିବ୍ୟ ବଚନାମୃତ, ମୋ ଦୃଷ୍ଟିରେ ଓଡ଼ିଶା, ଭାରତୀୟ ଧର୍ମ ଓ ସଂସ୍କୃତି, ଭାରତୀୟ ସଂସ୍କୃତି ଓ ଐତିହ୍ୟ ପ୍ରଭୃତି । ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ପ୍ରାୟ ଏକ ହଜାର ପ୍ରବନ୍ଧ ପ୍ରକାଶିତ । ତାଙ୍କ ରଚିତ ଗବେଷଣାତ୍ମକ ଗ୍ରନ୍ଥ 'ପୁଣ୍ୟପୀଠ କପିଳାସ' ୧୯୯୫ ମସିହାରେ ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ । ଦୈତ୍ୟାରି ବିଶ୍ୱାଳ ପ୍ରେମ ଓ ଯମୁନାତୀରେ ପ୍ରଭୃତି ରଚନା କରିବା ସହିତ ଶ୍ରୀ ରାମଚରିତମାନସ ଓଡ଼ିଆ ପଦ୍ୟାନୁବାଦ କରିଛନ୍ତି । ଡକ୍ଟର ଉଦ୍ଧବ ଚରଣ ନାୟକ କବି ବଡ଼ଜେନା ଜୀବନୀ ଓ ସାହିତ୍ୟ, ମହିମାଧର୍ମ ଇତିହାସ, ହିନ୍ଦୁଗୃହସାଧନ, ଉତ୍କଳପ୍ରତିଭା, ପ୍ରଭୃତି ରଚନା କରିଛନ୍ତି । କୃପା ସାଗରସାହୁ ଅନେକ ରଚନା କରିଥିଲେ ହେଁ ଫର୍ଚ୍ଚା ଆକାଶ ସ୍ୱତନ୍ତ୍ର ମର୍ଯ୍ୟାଦା ସଂପନ୍ନ । କୈଳାସ ଚନ୍ଦ୍ର ମିଶ୍ର ମହାମିଳନ, ପିତୃତର୍ପଣ ପ୍ରଭୃତି ରଚନା କରି ଲୋକପ୍ରିୟତା ଲାଭ କରିଛନ୍ତି । ଉଦୟନାଥ ଶତପଥୀଙ୍କ ସୃଷ୍ଟି ହେଉଛି ନିବେଦନ ଓ ବିଳାସ । ଅନୁସୂୟାନନ୍ଦ ଭକ୍ତିଅର୍ଘ ମନବୋଧ ରାମାୟଣ ଓ ଚିଉବୋଧ ଚଉତିଶା ପ୍ରଭୃତି ଅନେକ ପୁସ୍ତକ ରଚନା କରିଛନ୍ତି ।

ପଣ୍ଡିତ କୃଷ୍ଣଚନ୍ଦ୍ର ମିଶ୍ରଙ୍କ କୃତୀ ହେଉଛି ମାରୁତିରାମାୟଣ । ଇନ୍ଦ୍ରମଣି ନାୟକ ଚାଲୁଥିବା ଲୋକମାନେ ଓ ନାଟକ ଅଭିସାରିକା ଲେଖିଛନ୍ତି । କାମିନୀରଥଙ୍କ ସୃଷ୍ଟି ହେଉଛି ଲାଲପରୀ ନୀଳଛତା, ସ୍ୱପ୍ନଭିଜା ରାତ୍ରିର ପ୍ରୀତି, ଭିନ୍ନ ସ୍ରୋତ ଓ ପ୍ରତ୍ୟୁଷର ପ୍ରଳୟ । ଗଣେଶ୍ୱର ଶତପଥୀଙ୍କ ସକଳସୃଷ୍ଟି ''ଗଣେଶ୍ୱର ଗ୍ରନ୍ଥାବଳୀ'' ରୂପେ ପ୍ରକାଶିତ । ଜୟରାମ ସାହୁ ଅନେକ ପୁସ୍ତକ ଲେଖାଥିଲେ ହେଁ ଅବ୍‌ଜାକାଦମ୍ବିନୀ, ବ୍ରଜନାଥ ଏକ ଅଧ୍ୟୟନ, ବଡ଼ଜେନା ସୃଷ୍ଟି ସମୀକ୍ଷା, ଅମ୍ବିକାବିଳାସ ଏକ ଅନୁଶୀଳନ, ପାଷାଣ ଲକ୍ଷ୍ମଣ, ମହର୍ଷିଚ୍ୟବନ, ଅଭୀଷ୍ଟ

ଚିନ୍ତାମଣି ପ୍ରଭୃତି ତାଙ୍କୁ ବିଶେଷ ଖ୍ୟାତି ପ୍ରଦାନ କରିଛନ୍ତି । ନିରଞ୍ଜନ ମାଟିଆ ମିଶ୍ରଙ୍କ କୃତୀ ହେଉଛି ଆକାଶର କୋଣାର୍କ ଓ ପାତାମହ ଭୀଷ୍ମ । ବିନୋଦବିହାରୀନନ୍ଦ ଋତୁସଂହାର ଓ ଶ୍ରୀକ୍ଷେତ୍ରବିହାର ପ୍ରଭୃତି ୩୦ ଖଣ୍ଡ ପୁସ୍ତକ ଲେଖିଛନ୍ତି । ଧ୍ରୁବଚରଣ ସ୍ୱାଇଁଙ୍କ ସୃଷ୍ଟି ହେଉଛି ସପ୍ତଶଯ୍ୟା । ପ୍ରେମାନନ୍ଦ ରାଉତଙ୍କ ରଚନା ମଧରେ ସରଗସୁନ୍ଦରୀ, ସାକ୍ଷରହେଉ ଆମରି ଗାଁ ଓ ସାକ୍ଷର ସଂଗୀତ ଲୋକପ୍ରିୟତା ଲାଭ କରିଛି । ପରେଶ ପଟ୍ଟନାୟକ ନାଟକନାଟିକା, କିଛି ଗଳ୍ପ କିଛି ସ୍ମୃତି ଓ ଅନେକ କବିତା ରଚନା କରିଛନ୍ତି । କବୟିତ୍ରୀ ପ୍ରବାସିନୀ ମହାଖୁଡ଼ ତିୱାରୀ ମୁହୂର୍ତ୍ତ ମୁହୂର୍ତ୍ତ, ଆଧାରଶିଳା, ସୁପର୍ଣ୍ଣା, ପରମା ପ୍ରଭୃତି କବିତା ସଂକଳନ ସୃଷ୍ଟି ପୂର୍ବକ ବିଶେଷ ପାଠକୀୟ ଆଦୃତି ଲାଭ କରିଛନ୍ତି । ଡକ୍ଟର ବିଧାନଚନ୍ଦ୍ର ମିଶ୍ର ଅନେକ ପୁସ୍ତକର ରଚୟିତା । କବି ବିଦ୍ୟାଧର ବାରିକଙ୍କ କୃତୀ ହେଉଛି କପିଳାସ ଭଜନମାଳା, ଭଜନ, ଅଞ୍ଜଳୀ, ତାଳନବମୀ, ନୀଳଚଳେ ନୂଆନାଗର, ଘାଟ କଉଡ଼ି ଓ ଭକ୍ତ ବିଭୀଷଣ । ଭ୍ରମରବର ବିଶ୍ୱାଳ ଅଷ୍ଟଶମ୍ଭୁ, ଦେବଦାସୀ ଓ ମହେଶ ଚନ୍ଦ୍ର ସୁବାହୁସିଂଙ୍କ ଜୀବନୀ ଚରିତ ଲେଖିଛନ୍ତି । ଈଶ୍ୱର ଚନ୍ଦ୍ର ତ୍ରୀପାଠୀଙ୍କ ସଫଳକୃତୀ ହେଉଛି ଅପରିଚିତ ସ୍ୱର । ଶିକ୍ଷାବିତ୍ ଶତ୍ରୁଘ୍ନ ଭୂତିଆ ବିଜ୍ଞାନର ଜୟଗାନ ଓ ଯାଦବଓଗାଳ ପ୍ରଭୃତି ରଚନା କରିଛନ୍ତି । ଶିକ୍ଷୟିତ୍ରୀ ସନ୍ଧ୍ୟାମହାନ୍ତିଙ୍କ କୃତୀ ହେଉଛି ପୁନରାବୃତ୍ତି, ପାଷାଣ ଆଖିରେ ଲୁହ, ସବୁଜ ସାହିତ୍ୟ, କବିତା ନିର୍ଝର, ଶ୍ରଦ୍ଧାଞ୍ଜଳି, ପିପାସା ପ୍ରକୃତିର ସନ୍ଧ୍ୟା, ଭିନ୍ନସ୍ୱର, ଫୁଲର ବିଳାପ ଓ କଥାକୁହାନଇ । ସୁକାନ୍ତି ସାହୁଙ୍କ କବିତା ସଙ୍କଳନ ହେଉଛି ଚିତ୍ରିତ ଆକାଂକ୍ଷା । କବି ମନୋରଞ୍ଜନ ନନ୍ଦଙ୍କ ସଫଳକୃତୀ ହେଉଛି ଅନ୍ତଃସ୍ୱର, ବରପୂର୍ବା ଓ ସାରସ୍ୱତ ସାଧନା । ଭିକାରି ଚରଣ ରାଉତ ସବୁଜ ବଳୟ ଓ ଆଶାର ଆକାଶ ରଚନା କରିଛନ୍ତି । ଡକ୍ଟର ରାମଚନ୍ଦ୍ର ଦାସ ସିଦ୍ଧ ବଳରାମ ଓ ଉତ୍କଳୀୟ ସଂସ୍କୃତିରେ ବଳଦେବ ଉପାସନା ଲେଖିବା ସହିତ ଅନେକ ପ୍ରବନ୍ଧର ସ୍ରଷ୍ଟା । ବ୍ୟଙ୍ଗଲେଖକ ଭବାନୀକାନ୍ତ ନନ୍ଦଙ୍କ କୃତୀ ହେଉଛି ଗଧ ଜନ୍ମରୁ ଉଦାର କର । ଯୋଗୀନାଥ ରାଉଳଙ୍କ ରଚନା ହେଉଛି ପରାଙ୍ଗ ପୁଷ୍ପ, ଉର୍ମିଳା ଓ କନିଷ୍ଟକୌରବ । ଆଶୁକବି ଯଦୁନାଥ ସାହୁ ଅନ୍ତରାଳେ ଓ ଆଲୋକରେଖା ରଚନା ପୂର୍ବକ ଲୋକପ୍ରିୟ ହୋଇପାରିଛନ୍ତି । ଇଂରୁଦ୍ର ପ୍ରାସାଦ ମହାନ୍ତି କିଚିସ୍ୱପ୍ନ କିଛିସ୍ମୃତି ଓ ଅନୁରାଗ ରଚନା କରିବା ସହିତ ବିଭିନ୍ନ ପତ୍ରପତ୍ରିକାରେ କବିତା ଓ ପ୍ରବନ୍ଧ ଲେଖିଛନ୍ତି । ରବୀନ୍ଦ୍ରକୁମାର ଦାଶ ଅମରସହୀଦ, ବାଜିରାଉତ, ମୁଁ ବିଜ୍ଞାନ କହୁଛି, ମାଆ

ଭାରତରତ୍ନସିରିଜ୍, ଅଭୁଲାକଥା ପ୍ରଭୃତି ରଚନା କରିଛନ୍ତି। ଶଙ୍କର୍ଷଣ ଜେନା ଗାଡ଼ଭାଲୁ, ଜାନୁଭଗ୍ନ, ମହିମା ଧର୍ମ ଓ ଜଟିଆବାବା ପ୍ରଭୃତି ଅନେକ ପୁସ୍ତକରେ ଲେଖକ । ପ୍ରଶାସନିକ ଅଧିକାରୀ ତପନ କୁମାର ଶତପଥୀ ବିଭିନ୍ନ ପତ୍ରପତ୍ରିକାରେ ବହୁ ଗବେଷଣାତ୍ମକ ପ୍ରବନ୍ଧ ଲେଖିଛନ୍ତି । ନବକିଶୋର ପଟ୍ଟନାୟକଙ୍କ ସୃଷ୍ଟି ହେଉଛି ନବକାକଳୀ ଓ ନବପରାଗ ପଣ୍ଡିତ ପ୍ରମୋଦ କୁମାର ମିଶ୍ର ବୈଦିକ ସାହିତ୍ୟର ଇତିହାସ, ସତୀ ଅନସୂୟା, ଶୁଣ ସୁଜନେ, ବାଜିରାଉତ, ପ୍ରଭୃତି ରଚନା କରିଛନ୍ତି ।

ଓଡ଼ିଆ ନାଟ୍ୟ ସାହିତ୍ୟରୁ ଢେଙ୍କାନାଳର ଦାନ ଅତୁଳନୀୟ । ନାଟାଭୂଷଣ ପୀତାମ୍ବର ମିଶ୍ର ଅନେକ ନାଟକରେ ରଚୟିତା । ତାଙ୍କ ରଚିତ ନାଟକ କଂସାକବାଟ ଓଡ଼ିଶାରେ ଆଲୋଡ଼ନ ସୃଷ୍ଟି କରିଥିଲା । ନାଟ୍ୟକାର ହରିହର ଜେନାଙ୍କ ସଫଳ ନାଟକ ହେଉଛି ତୁଳସୀ ଦାସ । ନାଟ୍ୟକାର ବନବିହାରୀ ପଣ୍ଡାଙ୍କ କୃତୀ ହେଉଛି ଆଜିର ସମ୍ବାଦ ରକ୍ତନଦୀ, ମୁଖ୍ୟଅତିଥି, ଅଭିନୟ, କାହାଣୀ ଦୁଇଟି ଆଖିର ପ୍ରଭୃତି ଅନେକ । ଢେଙ୍କାନାଳ ଲବ୍‌ଧପ୍ରତିଷ୍ଠା ନାଟ୍ୟକାର ହେଉଛନ୍ତି ଦିଲୀଶ୍ୱର, ମହାରଣା । ତାଙ୍କରଚିତ ନାଟକସମୂହ ହେଉଛି ରାଜାଘରଖେଳ, ଆସନ୍ତପ୍ରଳୟ, ନ୍ୟାୟ, ଦ୍ୱିତୀୟ ଈଶ୍ୱର, ଉତ୍ତର ପୁରୁଷ, ସେଦିନ ଆସୁଛି, ସିଦ୍ଧାନ୍ତ, ଭଡ଼ାଘର ସୂର୍ଯ୍ୟପରାଗ ଓ ବାଉଁଶ ଠେଙ୍ଗାରେ ସ୍ୱାଧୀନତା ପ୍ରଭୃତି । ଏ ମାଟିର ଅନ୍ୟତକ ନାଟ୍ୟକାର ଆନନ୍ଦଚନ୍ଦ୍ର ପହି ବହୁନାଟକ ରଚନା କରି ବିଶେଷ ଲୋକପ୍ରିୟତା ଲାଭ କରିଛନ୍ତି । ଏତଦ୍‌ଭିନ୍ନ ଦୋଳଗୋବିନ୍ଦ ଦାଶ, ପଦ୍ମନାଭ ଦାଶ, ପ୍ରଭାକର ମିଶ୍ର, ବ୍ରଜମୋହନ ଦାଶ, ଶରତକୁମାର ମିଶ୍ର, କୁଞ୍ଜବିହାରୀ ନନ୍ଦ, ବିପିନ୍ ବିହାରୀ ପଟ୍ଟନାୟକ ପ୍ରଭୃତି ଢେଙ୍କାନାଳର ଲୋକପ୍ରିୟ ନାଟ୍ୟକାର ।

ଢେଙ୍କାନାଳର ଅନ୍ୟ ଯେଉଁ ସ୍ରଷ୍ଟାଗଣ ଲେଖନୀ ଚାଳନାକରି ଓଡ଼ିଆ ସାହିତ୍ୟ ଅଙ୍ଗ ଓ ଆତ୍ମାରେ ପରିବର୍ତ୍ତନର ସୂତ୍ରପାତ କରିଛନ୍ତି ସେମାନେ ହେଲେ ପ୍ରାଧ୍ୟାପକ ବିରଜା ତ୍ରିପାଠୀ, ଶରତମିଶ୍ର (ଭରଦ୍ୱାଜ) ବସନ୍ତ କୁମାର ମହାପାତ୍ର (ମୁଦ୍ଗଲ), ପ୍ରେମାନନ୍ଦ ମିଶ୍ର, ବସନ୍ତ କୁମାର ନନ୍ଦ, ହରିହର ମିଶ୍ର, ହୃଷିକେଶ ମହାପାତ୍ର, ସତ୍ୟାନନ୍ଦ ମହାପାତ୍ର, ବିପିନ୍ ବିହାରୀ ମହାପାତ୍ର, ପ୍ରେମାନନ୍ଦ ପାଣିଗ୍ରାହୀ, ଜୟନ୍ତୀ ସାହୁ, ତୁଳସୀ ରାଣୀ ବେହେରା, ରବୀନ୍ଦ୍ର କୁମାର ହୋତା, ଶଙ୍କର୍ଷଣ ମିଶ୍ର, ପ୍ରଫୁଲ୍ଲ କୁମାର ଦାଶ, ଗିରୀଶ ଚନ୍ଦ୍ର ନନ୍ଦ, ବୀରକିଶୋର ସିଂହ,

ଈଶ୍ୱର ଚନ୍ଦ୍ର ପଣ୍ଡା, ଦିବାକର ପାଣି, ଜୟକୃଷ୍ଣ ସାହୁ ସଚ୍ଚିଦାନନ୍ଦ ପ୍ରଧାନ, ଦୁର୍ଯ୍ୟୋଧନ ମହାଲିକ, ବିଜୟ କୁମାର ମହାପାତ୍ର, ଶୈଳବାଳା ମିଶ୍ର, ଭବାନୀଶଙ୍କର ମିଶ୍ର, ଭରତ ଚନ୍ଦ୍ର ନାଥ, ଅଶୋକ ମହାରଣା, ପ୍ରକାଶ କୁମାର ସିଂହ, ବିନୋଦିନୀ ରାଉଳ, ରମାକାନ୍ତ ଷଡ଼ଙ୍ଗୀ, ମଧୁସୂଦନ ଦାଶ, ରମେଶ ଚନ୍ଦ୍ରଜୀ, ଓମ୍ ପ୍ରକାଶ ଦାସ, ବାହାଦୂର ପାଟରାଣୀ, ଅଜିତ୍ କୁମାର ଦାଶ, ଯଶୋଦା ତରେଇ, ଗୀତାଞ୍ଜଳି ସାହୁ, ବସନ୍ତ କୁମାର ପଟ୍ଟନାୟକ, ନିବେଦିତା ରଥ, ସୁଦର୍ଶନ ମାଟି, ପ୍ରଫୁଲ କୁମାର ଜେନା, ଶ୍ରୀପ୍ରସାଦ ମହାନ୍ତି, ବିପିନ ବିହାରୀ ପାଣି, ରମେଶ ଚନ୍ଦ୍ର କବି ଶତପଥୀ, ବିଜୟଲକ୍ଷ୍ମୀ ଦେବୀ, ବିପିନ୍ ବିହାରୀ ଖୁଣ୍ଟିଆ, ବଟକୃଷ୍ଣ ମହାନ୍ତି, ଦିପ୍ତୀମୟୀ ଲେଙ୍କା, ମାନସୀ ମିଶ୍ର, ସଂପୂର୍ଣ୍ଣ ମିଶ୍ର, ଅର୍ଚ୍ଚନା ନନ୍ଦ, ନନ୍ଦିକେଶରୀ ନାଥ, ସୁଧୀରା ପାଢ଼ୀ, ସଂଯୁକ୍ତା ଶରଣ, ସୁଶାନ୍ତ ମହାଲିକ, ଅଞ୍ଜନ ସାହୁ, ସୁକାନ୍ତି ସାହୁ, ପୁଷ୍ପଲତା, ରଥ, ରାଜକିଶୋର ମିଶ୍ର, ଶଙ୍କର୍ଷଣ ସାମଲ, ମନୋରଞ୍ଜନ ଦାସ, ହରିଶ୍ଚନ୍ଦ୍ର ପଟ୍ଟନାୟକ, ଶ୍ରୀମଦ୍ ହରିବାବା, ସୁରମା ପଟ୍ଟନାୟକ, ରମେଶ ଚନ୍ଦ୍ର ସାହୁ, ଓମ୍ ପ୍ରକାଶ ମିଶ୍ର, ପ୍ରମୋଦଚନ୍ଦ୍ର ରାୟ, ଜାହ୍ନବୀରାୟ, ନାରାୟଣ ବେହେରା, ପ୍ରଦୀପ ଜେନା, ପ୍ରଭାପଟ୍ଟନାୟକ, ପ୍ରଫୁଲ ପାଣିଗ୍ରାହୀ, ଧରଣୀଧର ପାଣିଗ୍ରାହୀ,ପୁଣ୍ୟଶ୍ଳୋକ ଦାଶ, ପ୍ରମୋଦ କୁମାର ପଣ୍ଡା, ବୈକୁଣ୍ଠ ବିହାରୀ ସ୍ୱାଇଁ, ସୁରେଶ ଚନ୍ଦ୍ର ମହାପାତ୍ର, କାଳୀ ଚରଣ ତ୍ରିପାଠୀ, ଦିବାକର ନନ୍ଦ, ମହେଶ ଚନ୍ଦ୍ରଦାଶ, ପଙ୍କଜନାୟକ ପ୍ରଭୃତି, ଯେଉଁମାନଙ୍କର କୃତୀ ଓ କୀର୍ତ୍ତି ସ୍ୱତନ୍ତ୍ର ଆଲୋଚନା ପ୍ରତୀକ୍ଷା କରିଥାଏ । ଏ ମାଟିର ଅଗଣିତ ସ୍ରଷ୍ଟା ନିରବଚ୍ଛିନ୍ନ ସାରସ୍ୱତ ସାଧନା ନିମିତ୍ତ ଅନେକ ପୁରସ୍କାର, ସମ୍ମାନ ଓ ସମ୍ବର୍ଦ୍ଧନା ଲାଭ କରିକରିବାର ଗୌରବ ଅର୍ଜନ କରିଛନ୍ତି ।

ସାରସ୍ୱତ ଚେତନା ଓ ଅନୁରାଗ ସୃଷ୍ଟି ନିମିତ୍ତ ଢେଙ୍କାନାଳର ବିଭିନ୍ନ ସାହିତ୍ୟ ସଂସଦ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛନ୍ତି । ୧୯୩୧ରେ ପ୍ରତିଷ୍ଠିତ ଢେଙ୍କାନାଳ ସାହିତ୍ୟ ସଂସଦ ହିଁ ଏହି ଅଞ୍ଚଳର ପ୍ରଥମ ସାହିତ୍ୟାନୁଷ୍ଠାନ । ପରବର୍ତ୍ତୀ କାଳରେ ଢେଙ୍କାନାଳ ସହରରେ ବ୍ରତତୀ ସାହିତ୍ୟ ସଂସଦ, ସନ୍ଧ୍ୟାତାରା ସାହିତ୍ୟ ସଂସଦ, ଜିଲାଲେଖକ ସଂସଦ, ବାଳକୃଷ୍ଣ ସାହିତ୍ୟ ସଂସଦ, ବାଣୀ ଶ୍ରୀ ସାହିତ୍ୟ ସଂସଦ, କବିଭୂଷଣ ସ୍ମୃତି ସଂସଦ, ବ୍ରଜନାଥ ସାହିତ୍ୟ ପରିଷଦ, ମାର୍ଥାପୁରର ଅଭୟା ସାହିତ୍ୟ ସଂସଦ, ଭୁବନର ବାଣୀଶ୍ରୀ ସାହିତ୍ୟ ସଂସଦ, ଗଡ଼ନାୟକ, ସାହିତ୍ୟ ସଂସଦ ଓ ବାଜିରାଉତ ସାହିତ୍ୟ ସଂସଦ କାମାଖ୍ୟାନଗରର ଅଗ୍ରଗାମୀ

ସାହିତ୍ୟ ସଂସଦ ଓ ପ୍ରବାହ ସାହିତ୍ୟ ସଂସଦ, ପରଜଙ୍ଗର ସୁବାହୁସିଂହ ସାହିତ୍ୟ ସଂସଦ ଓ ବୀରଭୂମି ସାହିତ୍ୟ ସଂସଦ, ଧଳପୁରର ଭକ୍ତିବିନୋଦ ସାହିତ୍ୟ ସଂସଦ, ହିନ୍ଦୋଳରୋଡ଼ର କଲ୍ଲୋଳ ସାହିତ୍ୟ ସଂସଦ, ଏକ ଘରିଆର ଦୀନକୃଷ୍ଣ ସାହିତ୍ୟ ସଂସଦ, ମହିମାଗାଦୀର ମହାବୀର ସାହିତ୍ୟ ସଂସଦ, ରାଧାଦେଇ ପୁରର ବଡ଼ଜେନା ସାହିତ୍ୟ ସଂସଦ, ଖଙ୍କରର ଇନ୍ଦ୍ରଧନୁ ସାହିତ୍ୟ ସଂସଦ, ଗଁଦିଆର ମହତାବ ସାହିତ୍ୟ ସଂସଦ, ବେଲଟିକିରୀର ସୁରଭି ସାହିତ୍ୟ ସଂସଦ, ସିମିନଇର କୃଷ୍ଣଚୂଡ଼ା ସାହିତ୍ୟ ସଂସଦ, କାବରାର ବଡ଼ଜେନା ସ୍ମୃତି ସଂସଦ ଓ ବଡ଼ଜେନା ସାହିତ୍ୟ ସଂସଦ, କୋଉମର ବିଶ୍ୱ ଓଡ଼ିଆ ପାଠକ ସମାଜ, ଭାପୁରର ଛଦେଶ ସାହିତ୍ୟ ସଂସଦ, ନିହଲପ୍ରସାଦର ଅରୁଣି ସାହିତ୍ୟ ସଂସଦ ପ୍ରଭୃତି ଅନେକ ସାହିତ୍ୟାନୁଷ୍ଠାନ ଗଢ଼ି ଉଠି ଓଡ଼ିଆ ସାହିତ୍ୟର ବିକାଶ ଦିଗରେ ବହୁମୁଖୀ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । ଏହି ସବୁସାହିତ୍ୟ ସଂସଦ ମୁଖପତ୍ର ବ୍ୟତୀତ ଅନେକ ପତ୍ରପତ୍ରିକା ସଙ୍କଳନ ହୋଇ ସ୍ରଷ୍ଟାଙ୍କ ମଧ୍ୟରେ ନବଉଦ୍ଦୀପନା ସୃଷ୍ଟି ହୋଇପାରିଛି । ମାସିକ, ପାକ୍ଷିକ ଓ ସାପ୍ତାହିକ ପତ୍ରପତ୍ରିକା ଭାବରେ ରକ୍ତଚାବୁକ୍ ଦେଶ ସମାଚାର, ବହ୍ନି, ବିଭାବନା, ଭାରତବାର୍ତ୍ତା, କପିଳାସ ବାର୍ତ୍ତା, ବାଇଚଢ଼େଇ, ଭୁବନ ଶ୍ରୀ ମର୍ତ୍ତ୍ୟବ୍ୟଭୁବନ, ରଣଭେରୀ, ଏତଲା, ଅଷ୍ଟକୀଳା, ଉପରାଗ, ଖଟାମିଠା, ଜଟାୟୁ, ଝଲକ, ଦେଶର ଡାକ, ଓଡ଼ିଶାପୋଷ୍ଟ, ଶତାବ୍ଦୀର ଶିଳାଲିପି, ଲାଲମାଟି, ଲୋକଶକ୍ତି, ସନ୍ଦେଶ କୋକୁଆ ଭୟ, ଭେଲିଙ୍କ, ସମ୍ଭାର, ସୁରଭି, ଖବର, ସବୁରିକଥା, ବିକାଶବାର୍ତ୍ତା, ଧୂଳିଘର, ସତ୍ୟଦୀପ, ସପ୍ତାରଣ୍ୟ, ବାଇତଙ୍କ ପ୍ରଭୃତି ପ୍ରକାଶିତ ହୋଇ ସାରସ୍ୱତ ଚେତନାକୁ ରସାଣିତ କରିପାରିଛି । ଜିଲାମହୋତ୍ସବ ଓ ପୁସ୍ତକ ମେଳା ଦ୍ୱାରା ସାରସ୍ୱତ ଚେତନାର ଦିଗଦିଗନ୍ତ ଉନ୍ମୋଚନ ହୋଇପାରିଛି ।

ସାହିତ୍ୟ ସୃଷ୍ଟି ଓ ପ୍ରକାଶନ ସହିତ ପାଠକ ସଚେତନତା ଅଭିବୃଦ୍ଧି କାମନାରେ ଢେଙ୍କାନାଳରେ ଉନବିଂଶ ଶତାବ୍ଦୀରୁ ପାଠାଗାର ଆନ୍ଦୋଳନ ଆରମ୍ଭ ହୋଇ ସଂପ୍ରତି ଗ୍ରାମେ ଗ୍ରାମେ ପାଠାଗାର ପ୍ରତିଷ୍ଠିତ । ଉନବିଂଶ ଶତାବ୍ଦୀରେ ମହାରାଜା ଭାଗୀରଥ ରାଜପ୍ରାସାଦରେ ଏକ ବୃହତ୍ ପୁସ୍ତକାଳୟ ସ୍ଥାପନ କରିଥିଲେ । ପରେ ୧୮୯୬ ମସିହାରେ ବ୍ରଜନାଥ ବଡ଼ଜେନା ଉଚ୍ଚ ବିଦ୍ୟାଳୟ ଏବଂ ବୃହତ୍ ଓ ଆଦର୍ଶ ପାଠାଗାର ସ୍ଥାପିତ ହେଲା । ଅତଃପର ୧୯୩୧ ମସିହାରେ ମାର୍ଥାପୁର ଶାସନଠାରେ ସର୍ବୋଦୟ ପୁସ୍ତକାଳୟ ପ୍ରତିଷ୍ଠିତ ହେଲା ।

ସ୍ୱାଧୀନତା ପରେ ଭୁବନର ଜୟହିନ୍ଦ୍ ପୁସ୍ତକାଳୟ,ସମାଟାଙ୍ଗୀରେ କୃଷକ ଲାଇବ୍ରେରୀ, ପୁରୁଷୋତ୍ତମ ପୁରରେ ପଲ୍ଲୀ ମଙ୍ଗଳ ପାଠାଗାର, ଗୋବିନ୍ଦପୁରରେ ପ୍ରଭାତକ୍ଲବ, କାମଗରାରେ ସିଦ୍ଧେଶ୍ୱରୀ, ପାଠାଗାର, ମୁଣ୍ଡଇଲୋରେ ଗୌରୀ ପାଠାଗାର, ପାଇକସାହିରେ ପଲ୍ଲୀସାଥୀ ପାଠାଗାର, ଆନନ୍ଦପୁରରେ ବୀଣାପାଣି ପାଠାଗାର, ପରଜଙ୍ଗରେ ତରୁଣ ଲାଇବ୍ରେରୀ, ମହୁଲପାଳରେ ଗ୍ରାମମଙ୍ଗଳ ପାଠାଗାର, କାଶୀପୁରରେ ମହାଲକ୍ଷ୍ମୀ ପାଠଗାର, କୀର୍ତ୍ତନପୁରରେ ସର୍ବୋଦୟ ପାଠାଗାର, ବଲ୍ଲଭରେ ଜ୍ୟୋତି ପାଠାଗାର, ଚଣ୍ଡିଆରେ ସର୍ବାଦୟ ପାଠାଗାର, ନାଧରାରେ ରାମଚଣ୍ଡୀ ପାଠାଗାର, ବିରାଶାଳରେ ଜୟଦୁର୍ଗାକ୍ଲବ, ନୂଆପଡ଼ାରେ ସରସ୍ୱତୀ ପାଠାଗାର, ଜଗନ୍ନାଥପୁରରେ ତରୁଣ ପାଠଗାର, ବାଇଶିଆରେ ବାପୁଜୀ ପାଠାଗାର, କଣ୍ଟାପାଳରେ ଛାତ୍ରସଂଘ ପାଠାଗାର, ରାୟନୃସିଂହ ପୁରରେ ନିତାଇ ଗୌର ପାଠାଗାର, ଏବଂ ଅଁଳାବେରେଣୀରେ ପଲ୍ଲୀମଙ୍ଗଳ ପାଠାଗାର ପ୍ରତିଷ୍ଠିତ । ୧୯୬୦ ପୂର୍ବରୁ ଏହି ସବୁ ପାଠଗାର ସ୍ଥାପିତହୋଇ ଢେଙ୍କାନାଳରେ ସାରସ୍ୱତ ଆଲୋଡ଼ନ ସୃଷ୍ଟି କରିଥିଲା । ପରବର୍ତ୍ତୀ ସମୟରେ ଯୋରନ୍ଦାରେ ମଠ ଲାଇବ୍ରେରୀ, ଢେଙ୍କାନାଳରେ ଦାମୋଦର ପାଠାଗାର, ସୁରପ୍ରତାପ ସ୍ମୃତିପୀଠ ପାଠଗାର, ପୌର ପାଠାଗାର, ମହାବୀର ପାଠାଗାର, ସୂଚନା କେନ୍ଦ୍ର ପାଠାଗାର, ଜିଲାପାଠାଗାର, ବ୍ରଜନାଥ ପାଠାଗାର, ପ୍ରତ୍ୟେକ ବିଦ୍ୟାଳୟ ମହାବିଦ୍ୟାଳୟ ଓ ସାରସ୍ୱଦ ସଂସଦର ନିଜସ୍ୱ ପାଠାଗାର ତଥା ପ୍ରାୟ ପ୍ରତ୍ୟେକ ଗ୍ରାମରେ ପାଠାଗାର ପ୍ରତିଷ୍ଠିତ ହୋଇ ଜନମାନସରେ ପୁସ୍ତକ ପଠନ ସ୍ୱତନ୍ତ୍ର ମର୍ଯ୍ୟାଦା ଲାଭକରିଛି । ସାରସ୍ୱତ ଚେତନା ସୃଷ୍ଟି ଉଦ୍ଦେଶ୍ୟରେ ଢେଙ୍କାନାଳରେ ୧୯୯୫ ଠାରୁ ପୁସ୍ତକମେଳା ଓ ସାରସ୍ୱତ ସମାରୋହ ଅନୁଷ୍ଠିତ ହେଉଛି । ବିଭିନ୍ନ ସ୍ଥାନରେ ବିଭିନ୍ନ ସମୟରେ ଅନୁଷ୍ଠିତ ସାରସ୍ୱତ ସଭା, ଲେଖକୀୟ କର୍ମଶାଳା, ଆଲୋଚନା ଚକ୍ର ଓ କବିତା ପାଠୋତ୍ସବ ସାରସ୍ୱତ ଚେତନାକୁ ରସାଣିତ କରିପାରିଛି । ବିଶେଷତଃ ଜିଲା ମହୋତ୍ସବ ପ୍ରତି ଗ୍ରାମପଞ୍ଚାୟତ, ବ୍ଲକ ଓ ଉପଖଣ୍ଡରୁ ଆରମ୍ଭ ହୋଇ ପରିଶେଷରେ ଜିଲା ସଦର ମହକୁମାରେ ମୁଖ୍ୟ ଉତ୍ସବ ଅନୁଷ୍ଠିତ ହେଉଛି । ଏଥିରେ କବିତା ପାଠୋତ୍ସବ ଓ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇ ସାରସ୍ୱତ ଚେତନାକୁ ବ୍ୟାପକ କରାଯାଇପାରିଛି । ପ୍ରତିବର୍ଷ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ଅନୁଷ୍ଠିତ ବ୍ରଜନାଥ ବଡ଼ଜେନା ଜୟନ୍ତୀ ଏବଂ ୨୦୦୭ରେ ସୁବର୍ଣ୍ଣ ଜୟନ୍ତୀ ମହୋତ୍ସବ ଲେଖକ ଓ ପାଠକଙ୍କୁ ଉତ୍ସାହିତ କରିପାରିଛି ।

ଢେଙ୍କାନାଳର ସାରସ୍ୱତ ବିକାଶ ଧାରାରୁ ଉପଲବ୍‌ଧ ହୁଏ । ଓଡ଼ିଶାର ଏହି ରମଣୀୟ ଭୂଖଣ୍ଡ ଓଡ଼ିଆ ସାହିତ୍ୟର ଆଦିପୀଠ ରୂପେ ମହିମାବନ୍ତ। ତାମ୍ରଲେଖ, ଅଭିଲେଖ ଓ ଶିଳାଲେଖ ସମୟରୁ ଏହି ଅଞ୍ଚଳରେ ସାହିତ୍ୟର ଭିତ୍ତିଭୂମି ପ୍ରତିଷ୍ଠିତ ହୋଇଥିଲା । ବିକାଶର ପ୍ରବାହମାନ ଧାରାରେ ସ୍ୱାରସ୍ୱତ ଚେତନା ପ୍ରଥମ ସନ୍ଦେଶ ନାଥସାହିତ୍ୟ ଓ ଲୋକସାହିତ୍ୟରୁ ଅନୁଭୂତ। ପରିସ୍ଥିତି ଓ ପରିବେଶର ସରହଦରୁ ଲିଖିତ ସାହିତ୍ୟ ଏ ମାଟିର ଆତ୍ମିକ ସନନ୍ଦ ଭାବରେ ପ୍ରତିଭାତ ହୋଇଥିଲା । ଫଳରେ ପ୍ରାଚୀନ କାଳରୁ ଏହି ମାଟିରେ ଲିଖିତ ସାହିତ୍ୟର ଉଚ୍ଚାଙ୍ଗ ପରଂପରାସୃଷ୍ଟି ହୋଇଥିଲା । ପରବର୍ତ୍ତୀ କାଳରେ ଅନେକ ପ୍ରତିଭାବନ୍ତ ସ୍ରଷ୍ଟା ବୌଦ୍ଧିକ ବିଚାର ସଂପନ୍ନ ସୃଜନଶୀଳ ସାହିତ୍ୟ ସୃଷ୍ଟି ପୂର୍ବକ ଓଡ଼ିଆବାଣୀ ଭଣ୍ଡାରକୁ ଅପରୂପ ସୌନ୍ଦର୍ଯ୍ୟରେ ବିଭୂଷିତ କରିଯାଇଛନ୍ତି । ଯୁଗ ପରିବର୍ତ୍ତନ ପ୍ରକ୍ରିୟାରେ ଢେଙ୍କାନାଳର ସ୍ରଷ୍ଟାଗଣ ଓଡ଼ିଆ ସାହିତ୍ୟରେ ନବଜାଗରଣ ଆଣି ପ୍ରଚ୍ଛଦୀପ୍ତ ପ୍ରତିଭାର ପରିଚୟ ପ୍ରଦାନ କରିପାରିଛନ୍ତି । ବିଂଶ ଶତାବ୍ଦୀରେ ଏ ମାଟିର ଅଗଣିତ ସ୍ରଷ୍ଟାଙ୍କ ଲେଖନୀରେ ଏକ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ଆତ୍ମପ୍ରକାଶ କରି ଓଡ଼ିଆ ସାହିତ୍ୟର ଅଙ୍ଗ ଓ ଆତ୍ମାରେ ପରିବର୍ତ୍ତନର ସୂତ୍ରପାତ ଘଟିପାରିଛି । ସଂକ୍ଷେପରେ ଉଲ୍ଲେଖ କଲେ, ଢେଙ୍କାନାଳର ସ୍ରଷ୍ଟାଗଣ ଉନ୍ନତ ରୁଚିର ସୁଯୋପଯୋଗୀ ସାହିତ୍ୟ ସାହିତ୍ୟସୃଷ୍ଟି ଦ୍ୱାରା ସାମାଜିକ ଅଙ୍ଗୀକାର ବୋଧରେ ଓଡ଼ିଆ ସାହିତ୍ୟର ସକଳ ବିଭାଗକୁ ଋଦ୍ଧିମନ୍ତ କରିପାରିଛନ୍ତି । ଯଥାର୍ଥରେ, ଓଡ଼ିଆ ସାହିତ୍ୟକୁ ଢେଙ୍କାନଳର ଦାନ ଅନନ୍ୟ ଓ ଅନୁପମ ।



# କବି ବ୍ରଜନାଥ ବଡ଼ଯେନା– ଏକ ପୁନର୍ମୂଲ୍ୟାୟନ

ରୀତିଯୁଗର ସନ୍ଧ୍ୟାରେ ଯେଉଁ କେତେଜଣ ସାରସ୍ୱତ ସାଧକ ଆପଣାର ମୌଳିକ ସୃଷ୍ଟିରେ ଓଡ଼ିଆ ସାହିତ୍ୟରେ ନବଉନ୍ମାଦନା ଜାଗ୍ରତ କରାଇ ପାରିଥିଲେ କବି ବ୍ରଜନାଥ ବଡ଼ଯେନା ସେମାନଙ୍କ ମଧ୍ୟରେ ଅନ୍ୟତମ । ଏହି ପ୍ରଖ୍ୟାତଯଶା ବହୁ ଭାଷାବିତ୍ ପ୍ରବାଦ ପୁରୁଷ ଏକାଧାରରେ କବି, ଭକ୍ତ, ପଣ୍ଡିତ, ଲେଖକ କଥାଶିଳ୍ପୀ, ସମାଲୋଚକ, କଳାକାର ଓ ସମାଜ ସଂସ୍କାରକ ଥିଲେ । ଗତାନୁଗତିକ ଚିନ୍ତାଧାରା ବ୍ୟତୀତ ନୂତନ ସ୍ୱାଦଯୁକ୍ତ ରସମୟ, ଭାବମୟ ତଥା ପ୍ରେମମୟ ସାରସ୍ୱତ ବିଭବ ଦ୍ୱାରା ସେ ଓଡ଼ିଆ ବାଣୀ ଭଣ୍ଡାକୁ ଅପରୂପ ସୌନ୍ଦର୍ଯ୍ୟରେ ବିଭୂଷିତ କରିଯାଇଛନ୍ତି । ଛନ୍ଦମାଧୁର୍ଯ୍ୟ, ଭାବଗାମ୍ଭୀର୍ଯ୍ୟ ଓ ଅନ୍ତସୌନ୍ଦର୍ଯ୍ୟ ଭରା ତାଙ୍କର ପ୍ରତ୍ୟେକଟି ଅମର କୃତିରୁ ପ୍ରଜ୍ଞାର ଐଶ୍ୱର୍ଯ୍ୟମୟ ଆଭାସ ସୁସ୍ପଷ୍ଟ । ବିଷୟ ବିନ୍ୟାସ, ଚିତ୍ରଚାତୁରୀ ତଥା ଚରିତ୍ର ଚିତ୍ରଣ ହିଁ ତାଙ୍କର ବିଶେଷ କଳାକୁଶଳ । ସେ ଥିଲେ ଓଡ଼ିଆ ସାହିତ୍ୟରେ ହାସ୍ୟରସାତ୍ମକ ଗଦ୍ୟଧାରାର ଆଦ୍ୟ ପ୍ରବର୍ତ୍ତକ । ହିନ୍ଦୀ ସାହିତ୍ୟରେ କାବ୍ୟ କବିତା ରଚନା କରିବାରେ ସେ ହେଉଛନ୍ତି ପ୍ରଥମ ଓଡ଼ିଆ କବି । ଏତଦ୍‌ଭିନ୍ନ ସେ ସଂସ୍କୃତ, ପ୍ରାକୃତ, ବଙ୍ଗଳା ଓ ତେଲୁଗୁ ଭାଷାରେ କାବ୍ୟକବିତା ରଚନା ପୂର୍ବକ "ଷଡ଼ଭାଷା ବାରବିଳାସିନୀ ଭୂଜଙ୍ଗ" ନାମରେ ମର୍ଯ୍ୟାଦାବନ୍ତ । ମହନୀୟତା ହେଉଛି ସେ ଓଡ଼ିଆ ସାହିତ୍ୟକୁ ସାମନ୍ତବାଦୀ ପରିଧିରୁ ସାଧାରଣ ସ୍ତରକୁ ଆଣି ଗଣସଂସ୍କୃତିର ପୃଷ୍ଠପଟରେ ପ୍ରତିଷ୍ଠିତ କରିପାରିଛନ୍ତି । ସଂକ୍ଷେପରେ କହିଲେ ସେ ଥିଲେ ସ୍ୱାଧୀନଚେତା ଉଦାରପନ୍ଥୀ ବହୁଭାଷା ବିଦଗ୍‌ଧ ସଂସ୍କାରଧର୍ମୀ ସାରସ୍ୱତ ସାଧକ ।

ଏହି ପ୍ରତିଭାବନ୍ତ ସାହିତ୍ୟଶିଳ୍ପୀଙ୍କର ଜନ୍ମ ୧୭୩୦ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳରେ ହୋଇଥିଲା ଏବଂ ସେ ଆପଣାର ଭାଇଙ୍କ ସହିତ ମୁକ୍ତାଦେଇପୁର ଶାସନସ୍ଥ ପଣ୍ଡିତ ଗୋବିନ୍ଦ ଦୀକ୍ଷିତଙ୍କଠାରୁ ବିଦ୍ୟାହରଣ କରିଥିଲେ । ପରିଣତ ଜୀବନରେ ଚାରିଭାଇଯାକ କବିତ୍ୱ ଲାଭ କରିଥିଲେ ହେଁ ବ୍ରଜନାଥଙ୍କର ସ୍ୱାତନ୍ତ୍ର୍ୟ ରହିଥିଲା । ବ୍ରଜନାଥ ଆପଣାର ସାଧନାମୟ ଜୀବନରେ ସମଗ୍ର ଓଡ଼ିଶା, ବଙ୍ଗଳା

ଓ ଆନ୍ଧ୍ର ପ୍ରଦେଶକୁ କର୍ମସ୍ଥଳୀ ଆଦରି ନେଇଥିଲେ। ଦାରିଦ୍ର୍ୟର କଷାଘାତରେ ଚିରଜର୍ଜରିତ ତାଙ୍କର କବିପ୍ରାଣ ନିରବିଚ୍ଛିନ୍ନ ସାରସ୍ୱତ ସାଧନାରେ ଅନନ୍ତ ସୁଖ ଲାଭ କରୁଥିଲା । ଅନ୍ନସଂସ୍ଥାନ ନିମିତ୍ତ ସେ ବିଭିନ୍ନ ରାଜାଙ୍କର ଅନୁଗ୍ରହ ପ୍ରାର୍ଥୀ ହୋଇଥିଲେ ହେଁ କୌଣସି ପରିସ୍ଥିତିରେ ଆପଣାର ବ୍ୟକ୍ତିତ୍ୱକୁ ଜଳାଞ୍ଜଳି ଦେଇନଥିଲେ । ସେ ଥିଲେ ସତ୍ୟନିଷ୍ଠ ନିର୍ଭୀକ ସାରସ୍ୱତ ସାଧକ । ଚଉପାଢ଼ୀ ଠାରୁ ମୁକ୍ତିମଣ୍ଡପ, ମନ୍ଦିରଠାରୁ ରାଜଦ୍ୱାର, କୃଷିକ୍ଷେତ୍ରରୁ ରଣକ୍ଷେତ୍ର ସକଳ ସ୍ଥାନରେ ବଡ଼ଯେନାଙ୍କର ଅବାଧ ପ୍ରବେଶ ରହିଥିଲା । ତତ୍‌କାଳୀନ ପରାଧୀନ ଓଡ଼ିଶାର ବିପର୍ଯ୍ୟୟରେ ଓଡ଼ିଆ ଜାତିକୁ ସଚେତନ କରାଇବାର ଅଭିପ୍ରାୟରେ ତାଙ୍କ ଲେଖନୀରୁ ସକଳ ପ୍ରକାର ସାରସ୍ୱତ ସୃଷ୍ଟି ନିସୃତ ହୋଇଥିଲା । ରୀତିଯୁଗୀୟ ସାରସ୍ୱତ ସ୍ରଷ୍ଟାଗଣ ସେମାନଙ୍କ ସୃଷ୍ଟି ବୁଧ, ଜ୍ଞାନୀ ଓ ପଣ୍ଡିତଙ୍କ ନିମିତ୍ତ ଉଦ୍ଦିଷ୍ଟ କରିଥିଲେ ହେଁ ବ୍ରଜନାଥ ଆପଣାର ସୃଷ୍ଟିକୁ ସର୍ବଜନହିତାର୍ଥେ ପରିବେଷଣ କରିଥିଲେ । ସାମାଜିକ ଦାୟିତ୍ୱବୋଧର ଅଙ୍ଗୀକାର ବଦ୍ଧତାରେ ସମାଜର ପ୍ରତ୍ୟେକଟି ଚିତ୍ରକୁ ସାରସ୍ୱତ ପ୍ରତିଭାର କାଉଁରୀସ୍ପର୍ଶରେ ରସୋଦୀପ୍ତ କରି ପରିବେଷଣ କରିବାରେ ସେ ଥିଲେ ସିଦ୍ଧହସ୍ତ । ମହନୀୟତା ହେଉଛି ସେ ରୀତିଯୁଗୀୟ ପରଂଶରୀର ପରିଧି ଭିତରେ ଥାଇ ମଧ ନୂତନ ସ୍ୱାଦ ସଂଯୋଗ ପୂର୍ବକ ସାହିତ୍ୟକୁ ରସାଣିତ କରି ଗଣସାହିତ୍ୟର ରୂପ ଦେଇପାରିଥିଲେ । ଜୀବନର ନିଛକ ପ୍ରତିଛବି ତଥା ସାମାଜିକ ରୀତିନୀତିର ନିଖୁଣଚିତ୍ର କାବ୍ୟକବିତାରେ ଅଙ୍କନକରି ସେ ରୀତିଯୁଗୀୟ କବିମାନଙ୍କ ଠାରୁ ଆଗକୁ ପାଦ ପକାଇଛନ୍ତି । ଅଧିକନ୍ତୁ, ଆପଣା ସାହିତ୍ୟକୁ ସମୃଦ୍ଧ କରିବା ସହିତ ସେ ପ୍ରତିବେଶୀ ସାହିତ୍ୟକୁ ସୌରଭମୟ କରି ବହୁ ଭାଷା ବିଦଗ୍‌ଧତାର ପରିଚୟ ଦେଇ ଯାଇଛନ୍ତି ।

କୁଶଳୀ ସ୍ରଷ୍ଟା ବଡ଼ଯେନାଙ୍କ ଅମର ଲେଖନୀରୁ ଯୁବକ ବୟସରେ ପ୍ରଥମେ ସୃଷ୍ଟି ହୋଇଥିଲା କାଳ୍ପନିକ କାବ୍ୟ ''ବିଚକ୍ଷଣା'' ଗବେଷକଙ୍କ ମତରେ ବିଚକ୍ଷଣାରେ ରଚନା କାଳ ୧୭୫୫ ରୁ ୧୭୬୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଅର୍ଥାତ୍ ବ୍ରଜନାଥଙ୍କୁ ୨୫ ରୁ ୩୫ ବର୍ଷ ବୟସରେ । ରୀତି ଯୁଗୀୟ କାବ୍ୟ ପରଂପରାରେ ବଡ଼ଯେନା ସୃଷ୍ଟିର ଏହି ଆଦ୍ୟ ପ୍ରୟାସଟି ଏକ ଅସଂପୂର୍ଣ୍ଣ କାବ୍ୟ ହେଲେହେଁ ପ୍ରତିଭାରେ ଉଜ୍ଜଳବନ୍ତ । କାଳ୍ପନିକ ନଗରୀ ବିଳାସବତୀ ଏବଂ ଏହାର ରାଜକନ୍ୟା ବିଚକ୍ଷଣା ଓ ବ୍ରଜସଦନ ନଗରର ରାଜକୁମାର ବ୍ରଜମୋହନଙ୍କର ପ୍ରେମପ୍ରଣୟ

ନେଇ କାବ୍ୟଟି ରଚିତ। ଲୋକାଭିମୁଖୀ ଭାଷା ତଥା ଆଳଙ୍କାରିକ ବିଦଗ୍ଧତା ଦ୍ୱାରା କବି ଆପଣାକଳ୍ପନା ବିଳାସକୁ ବହୁବର୍ଣ୍ଣ ବିଭାବିମଣ୍ଡିତ ଶାଶ୍ୱତ ରୂପ ଦେଇପାରିଛନ୍ତି ଏହି କାଳ୍ପନିକ କାବ୍ୟରେ । ବିଶେଷତଃ ଆଦିରସର ମନୋଜ୍ଞ ପରିବେଷଣ କାବ୍ୟଟିକୁ ରସବନ୍ତ କରିପାରିଛି । କିଶୋର କାଳାରୁ ପାରଂପରିକ ବୃତ୍ତିରେ ପୋଥି ଲେଖି ଆହୃତ ଅଭିଜ୍ଞତାରେ ଯୁବ କବି ବ୍ରଜନାଥ ଅଧିକ ପାଠକଙ୍କୁ ଆକର୍ଷଣ କରିବାର ସଫଳ ପ୍ରୟାସ ନେଇଛନ୍ତି ଏହି କାବ୍ୟଟିରେ । ଅନ୍ୟ ଭାଷାରେ କହିଲେ ସାହିତ୍ୟକୁ ବୌଦ୍ଧିକ ମାଧମ ରୂପେ ମର୍ଯ୍ୟାଦା ଦେବାର ଏହା ତାଙ୍କର ପ୍ରଥମ ପ୍ରୟାସ ।

ବିଚକ୍ଷଣା ରଚନା ସହିତ ଏହି ୧୭୫୫ ରୁ ୧୭୬୫ ମଧ୍ୟରେ ବ୍ରଜନାଥ ଓଡ଼ିଆ ସାହିତ୍ୟର ବିରାଟ ପରିବର୍ତ୍ତନ କାମନାରେ ଏକ ପୂର୍ଣ୍ଣାଙ୍ଗ ଗଦ୍ୟ ସାହିତ୍ୟ ରଚନା କରିଥିଲେ । ଯୁବ ବୟସରେ ତାଙ୍କ ଲେଖନୀରୁ ନିସୃତ ଏହି ଗଦ୍ୟ ସାହିତ୍ୟରେ ମୂଳଗଳ୍ପ ଗୋଟିଏ, ଉପଗଳ୍ପ ନଅଟି ଓ ଶାଖା ଗଳ୍ପ ଆଠଟି । ଏ ରୂପ ମୋଟ ଅଠର ଗୋଟି ଗଳ୍ପ ସାରସ୍ୱତ ସୌନ୍ଦର୍ଯ୍ୟରେ ଠଗ, ଢମାଳୀ, ଶ୍ଳୋକ, ବଚନିକା ଦେଇ ଅବତାରଣା କରାଯାଇଛି । ହାସ୍ୟ, ରସ, ନୀତି ଓ ପ୍ରୀତି ଏହି ଚାରିଗୋଟି ବିନୋଦ ଅବଲମ୍ବନରେ ମନୋରମ ଶିକ୍ଷଣୀୟ ଉପାଖ୍ୟାନକୁ କେନ୍ଦ୍ରକରି ଏହି ଗଦ୍ୟ ସାହିତ୍ୟ ସୃଷ୍ଟି ହୋଇଥିବାରୁ ସେ ଏହାର ନାମ ରଖିଥିଲେ ''ଚତୁର ବିନୋଦ'' । ଏହାର ଅନ୍ତର୍ନିହିତ ରସ ସୌନ୍ଦର୍ଯ୍ୟ ଏବଂ ଐକ୍ୟବୋଧର ସାର୍ଥକ ପ୍ରତିଲିପି କାବ୍ୟସାହିତ୍ୟର କଥାବସ୍ତୁ ରାଜକୀୟ, କୌଳିନ୍ୟ ଓ ଅଭିଜାତ୍ୟରେ ପରିପୂର୍ଣ୍ଣ, କିନ୍ତୁ ଚତୁର ବିନୋଦରେ ଚିତ୍ରିତ କଥାବସ୍ତୁରେ ଏପରି କୌଣସି ଆଭିଜାତ୍ୟ ନାହିଁ । ପାଠକର ରୁଚିକୁ ଆଖି ଆଗରେ ରଖି ଗଦ୍ୟସାହିତ୍ୟ ସୃଷ୍ଟିରେ ଏହା ଓଡ଼ିଆ ସାହିତ୍ୟରେ ଆଦ୍ୟପ୍ରୟାସ କହିଲେ ଅତ୍ୟୁକ୍ତି ହେବନାହିଁ । ଏଥିରେ ପରିବେଷିତ ପ୍ରତ୍ୟେକଟି ଗଳ୍ପରେ ସମାଜର ବିଭିନ୍ନ ଚିତ୍ରଚିତ୍ରିତ । ପ୍ରୀତିର ପ୍ରକାରଭେଦ, ନୀତି, ଆଦର୍ଶ ଓ ଧର୍ମୋପଦେଶରେ ଗଳ୍ପଗୁଡ଼ିକ ଭରପୁର । ଯୁଗୋପଯୋଗୀ ଚରିତ୍ର ଚିତ୍ରଣ ହିଁ ଗଳ୍ପଗୁଡ଼ିକୁ ଆକର୍ଷଣୀୟ କରିପାରିଛି । ମହନୀୟତା ହେଉଛି ବିଭିନ୍ନ ଶ୍ଳୋକ, ପଦ୍ୟ, ବଚନିକା ଓ ଢଗଢ଼ମାଳୀର ଉଦାହରଣ ଦେଇ ବଡ଼ଯେନା ଗଳ୍ପଗୁଡ଼ିକ ରସାଳ କରିବା ସହିତ ଭିନ୍ନ ଭିନ୍ନ ରସପ୍ରୟୋଗରେ ଭାବାବେଗ ସୃଷ୍ଟିକରି ପାରିଛନ୍ତି । ସଂକ୍ଷେପରେ କହିଲେ ଚତୁରବିନୋଦ ରଚନା ପୂର୍ବକ ସଂସ୍କାରବାଦୀ ସ୍ରଷ୍ଟା ବଡ଼ଯେନା ଓଡ଼ିଆ ସାହିତ୍ୟକୁ

ସାମନ୍ତବାଦୀ ପରିଧିରୁ ସାଧାରଣସ୍ତରକୁ ଆଣି ଅଭିନବ ରୂପ ଦେଇଛନ୍ତି ଏହି ଗଦ୍ୟ ସାହିତ୍ୟରେ । ଏହି ମହନୀୟକୃତିହିଁ ତାଙ୍କୁ ଓଡ଼ିଆଗଦ୍ୟ ସାହିତ୍ୟ ସ୍ରଷ୍ଟାର ମାନ୍ୟତା ପ୍ରଦାନ କରିଛି ।

୧୭୬୫ ରୁ ୧୭୭୦ ମଧ୍ୟରେ ବଡ଼ଯେନାଙ୍କ ଲେଖନୀରୁ ନିସୃତ ହୋଇଥିଲା କାଞ୍ଚନିକ କାବ୍ୟ ବିଦେଶାନୁଚିନ୍ତା । ଏହା ତାଙ୍କ କାବ୍ୟଶିଳ୍ପ ରୂପାୟନରେ ଦ୍ୱିତୀୟ ପ୍ରୟାସ । ଭାଷାଲାଳିତ୍ୟ ତଥା ସଂଯତ ରୂପଗୌରବ ହିଁ ଏହି କାବ୍ୟର ବିଶେଷତ୍ୱ । ଏହାପରେ ଜଣେ ନାମହୀନ ରାଜକୁମାରଙ୍କର ଜଣେ ନାମହୀନ ରାଜକୁମାରୀ ସହିତ ପ୍ରେମ, ପ୍ରଣୟ ଓ ବିବାହ କଥାଂବସ୍ତୁକୁ କେନ୍ଦ୍ରକରି ସେ ରଚନା କରିଥିଲେ ''କେଳିକଳାନିଧି'' । କାବ୍ୟଟି ଭଞ୍ଜଙ୍କ ପ୍ରେମସୁଧାନିଧି ଅବଲମ୍ବନରେ ଲିଖିତ ହୋଇଥିଲେ ହେଁ ବଡ଼ଯେନା ମାନସର ସ୍ୱତନ୍ତ୍ର ମୂଲ୍ୟବୋଧ ଓ ବାସ୍ତବ ଜୀବନର କଳାଗତ ରୂପାୟନରେ ଗଭୀର ଆତ୍ମବିଶ୍ୱାସ ଦୃଷ୍ଟିଗୋଚର ହୋଇଥାଏ । ଏଥିରୁ ବିଶେଷତଃ କବିତାର ଭାଷା, ଛନ୍ଦର ସୂକ୍ଷ୍ମଗୁମ୍ଫନ କୌଶଳ ତଥା କାବ୍ୟିକ ରସବୋଧର କ୍ରମୋନ୍ନତି ସ୍ପଷ୍ଟ ଅନୁଭବ କରିହୁଏ ।

୧୭୭୦ ଠାରୁ ୧୭୮୦ ମଧ୍ୟରେ ବଡ଼ଯେନା ଅନେକ ବୈଷ୍ଣବ ସାହିତ୍ୟ ସୃଷ୍ଟି ପୂର୍ବକ ବୈଷ୍ଣବ ଦର୍ଶନରେ ନୂତନ ଭାବଧାରା ସଞ୍ଚାର କରାଇ ପାରିଥିଲେ । ''ଦଶପୋଇ'' ହେଉଛି ତାଙ୍କ ବୈଷ୍ଣବସାହିତ୍ୟ ଆଦ୍ୟଉନ୍ମେଷ । ସହଜ ଭାଷା ଓ ପ୍ରକାଶ ଭଙ୍ଗୀର ସ୍ୱାଭାବିକତା କାବ୍ୟଟିକୁ ସରସ ଓ ସୁଖପାଠ୍ୟ କରିପାରିଛି । ତାଙ୍କର ପରବର୍ତ୍ତୀ ସୃଷ୍ଟି ''ଗୋପୀବିଳାପ''ର କାବ୍ୟିକ ବୈଶିଷ୍ଟ୍ୟ ହେଉଛି ଏହାର ଭାଷା ହେଉଛି, ଛାନ୍ଦ ପ୍ରକାଶଭଙ୍ଗୀ ତଥା ପରିବେଷଣର ଶିଳ୍ପନୈପୁଣ୍ୟ । ଛଅଜଣ ଗୋପୀଙ୍କର ପ୍ରଣୟାନୁଚିନ୍ତା ବୋଲି ଆକାରରେ ପରିବେଷଣ କରି ସେ କାବ୍ୟଟିର ପ୍ରତ୍ୟେକ ଛାନ୍ଦକୁ ''ବୋଲି'' ନାମରେ ଆଖ୍ୟାୟିତ କରିଛନ୍ତି । ''ଶ'' ଅନୁପ୍ରାସରେ ରଚିତ ଶ୍ୟାମରାସୋତ୍ସବ ବଡ଼ଯେନାଙ୍କର ସର୍ବୋତ୍ତମ ବୈଷ୍ଣବ ସାହିତ୍ୟ । ଦଶପୋଇ ଶ୍ରୀକୃଷ୍ଣଙ୍କ ବସନ୍ତରାସ ଉପରେ ଆଧାରିତ ହେଲେହେଁ ଶ୍ୟାମରାସୋତ୍ସବ ଶରତରାସ ଉପରେ ଅବଲମ୍ବିତ । ଏହି ସବୁ ବୈଷ୍ଣବକାବ୍ୟ ସୃଷ୍ଟିପୂର୍ବକ ଉଚ୍ଚାଙ୍ଗଦର୍ଶନ ସମ୍ବଳିତ ସମନ୍ୱୟାତ୍ମକ ଭକ୍ତିଚେତନା ସୃଷ୍ଟିହିଁ ତାଙ୍କର ଲକ୍ଷ୍ୟ ଥିଲା ।

ପୌରାଣିକ ସାହିତ୍ୟରେ ଅମ୍ବିକାବିଳାସ ହେଉଛି କବି ବଡ଼ଯେନାଙ୍କର ସର୍ବଶ୍ରେଷ୍ଠ କୃତି । ଏହି ମହନୀୟ କାବ୍ୟରେ ଭାରତୀୟ ସଂସ୍କୃତିର ଲୋକପ୍ରିୟ

ପୌରାଣିକ ଆଖ୍ୟାନ ଶିବପାର୍ବତୀ ଲୀଳାମୃତ 'ଅ' ଅନୁପ୍ରାସରେ ଆଳଙ୍କାରିକ ରୀତିରେ ହୃଦୟସ୍ପର୍ଶୀ ଛନ୍ଦରେ ପରିବେଷିତ । ବିଭିନ୍ନ ଶବ୍ଦାଳଙ୍କାର, ଆଦିରସର ଉତ୍କଟ ବର୍ଣ୍ଣନା, ବର୍ଣ୍ଣନାତ୍ମକ ଶିଳ୍ପ ପଦ୍ଧତି ତଥା କାବ୍ୟଯୁଗର ସାଧାରଣ କଳାରୀତି ଏଥିରେ ରୂପାୟିତ । ବର୍ଣ୍ଣନାବିଳାସରେ ବଡ଼ଯେନାଙ୍କର ତୀକ୍ଷ୍ଣଅନ୍ତର୍ଦୃଷ୍ଟି କାବ୍ୟଟିର ଭାବଗାମ୍ଭୀର୍ଯ୍ୟ ବୃଦ୍ଧି କରିଅଛି । କାବ୍ୟଟିରେ ସାମାଜିକ ପ୍ରଥା ପରଂପରା ଓ ଭାବାଦର୍ଶର ମନୋଜ୍ଞ ରୂପାୟନ ଘଟି ଅତ୍ୟନ୍ତ ଭାବଗର୍ଭକ ହୋଇପାରିଛି । ସର୍ବୋପରି କାବ୍ୟଟିରୁ ବଡ଼ଯେନାଙ୍କର ଉଦାର ଧର୍ମନୀତି ଓ ପ୍ରଶସ୍ତ ଦୃଷ୍ଟିଭଙ୍ଗୀର ପରିଚୟ ଉପଲବ୍ଧି ହୋଇଥାଏ । ମୋଟ ଉପରେ କହିବାଗକୁ ଗଲେ ଅମ୍ବିକା ବିଳାସ ହେଉଛି ପାରଂପରିକ ଶିକ୍ଷାଦର୍ଶ ଅନୁସରଣର ସର୍ବଶ୍ରେଷ୍ଠ ପରିରତି ଏବଂ ବଡ଼ଯେନାଙ୍କର ବହୁଶାସ୍ତ୍ରଦର୍ଶିତାର ଚରମନିଦର୍ଶନ । ସଂକ୍ଷେପରେ ଏତିକି କୁହାଯାଇପାରେ ଯେ ଏହା ଅନୁପ୍ରାସଯୁକ୍ତ, ଆଳଙ୍କାରିକ ସୌଷ୍ଠବ ବିମଣ୍ଡିତ, ଧର୍ମୀୟ ଚେତନାସମ୍ବଳିତ ବହୁଭାଷୀ ପଦଯୁକ୍ତ ପାଣ୍ଡିତ୍ୟପୂର୍ଣ୍ଣ କାବ୍ୟ । ଏତଦ୍‌ଭିନ୍ନ ଚଣ୍ଡୀମାଳାଶ୍ରୀ ଶୀର୍ଷକ କ୍ଷୁଦ୍ର କବିତାବଳୀ ମଧ୍ୟ ବଡ଼ଯେନାଙ୍କର ଅନ୍ୟତମ ସଫଳ ପୌରାଣିକ ସାହିତ୍ୟ ।

ଓଡ଼ିଆବୀରଙ୍କ ସ୍ୱାଭିମାନର ସ୍ୱାକ୍ଷର ବହନ କରି ସର୍ବଭାରତୀୟ ସ୍ତରରେ ପୂର୍ଣ୍ଣାଙ୍ଗ ସମରକାବ୍ୟ "ସମରତରଙ୍ଗ" ନିସୃତ ହୋଇଥିଲା ବଡ଼ଯେନାଙ୍କ ଲେଖନୀରୁ ୧୭୮୧ ରୁ ୧୭୮୫ ମଧ୍ୟରେ । ଢେଙ୍କାନାଳ ରାଜାଙ୍କ ଅଧକ୍ଷତାରେ ସ୍ୱଳ୍ପସଂଖ୍ୟକ ବୀର ଓଡ଼ିଆ ପାଇକଙ୍କର ଅମିତ ବିକ୍ରମଶାଳୀ ବୃହତ୍ ମରହଟ୍ଟା ଶକ୍ତି ବିରୁଦ୍ଧରେ ପ୍ରତ୍ୟକ୍ଷଦର୍ଶୀ ଯୁଦ୍ଧବିବରଣୀ ଏହି ଅନବଦ୍ୟ କୃତିରେ ବର୍ଣ୍ଣିତ। ଉଲ୍ଲେଖଯୋଗ୍ୟ ଯେ ଏହି ଯୁଦ୍ଧ ବିବରଣୀ ବୀରରସରେ ସୁଲଳିତ ଭାଷା ତଥା ଉତ୍ତେଜକ ଶବ୍ଦବିନ୍ୟାସ ସହିତ ପାରଂପରିକ ଓଡ଼ିଶାଛନ୍ଦରେ ପରିବେଷିତ । ବୀର ସୈନିକ ବୃନ୍ଦଙ୍କର ବେଶଭୂଷା, କୌଶଳପୂର୍ଣ୍ଣ ସମରସଜ୍ଜା, ଲକ୍ଷ୍ୟଭେଦୀ, ସମରକୌଶଳ, ଅବ୍ୟର୍ଥ ଅସ୍ତ୍ରପ୍ରୟୋଗାତ୍ମକ ପ୍ରଣାଳୀ ତଥା ସମରଚେତନା ଦ୍ୟୋତକ ଉକ୍ତି ପ୍ରତ୍ୟୁକ୍ତି ଗୁଡ଼ିକ ଏହି ସାମରିକ ସଂସ୍କୃତିର ସ୍ୱାକ୍ଷରବହନ କରି କାବ୍ୟରେ ଜୀବନ୍ତ ଭାବରେ ଚିତ୍ରିତ । ବୀର ଓଡ଼ିଆ ଜାତିର ଏକ ଗୌରବୋଜ୍ଜ୍ୱଳ ଐତିହାସିକ ସମର ବଡ଼ଯେନାଙ୍କ ସାରସ୍ୱତ ସାଗରରେ ତରଙ୍ଗାୟିତ ହୋଇଥିବାରୁ ସେ ଏହାର ନାମ ରଖିଥିଲେ "ସମର ତରଙ୍ଗ" । ସମର ବିଶାରଦ ଓଡ଼ିଆ ଜାତିର ସାମରିକ ପରାକାଷ୍ଠା, ସାହସ, ବୀରତ୍ୱ, ଜାତ୍ୟାଭିମାନ ଏବଂ

ଦେଶପ୍ରେମର ମର୍ଯ୍ୟାଦାବନ୍ତ ପରିଚୟ ବହନକରି ସମରତରଙ୍ଗ ଜାତୀୟ ଗୌରବରେ ଭୂଷିତ।

ଏତଦ୍‌ଭିନ୍ନ ଅନେକ ଜଣାଣ, ସଙ୍ଗୀତ, ସମାଲୋଚନା ଓ ପ୍ରଶସ୍ତିମୂଳକ କବିତାବଳୀରେ ବଡ଼ଯେନା ଆପଣା ସାହିତ୍ୟ ସୃଷ୍ଟିର ପରିଚୟ, ଦୈନ୍ୟ ବିଚାରଧାରା, ଦୁଃସହ ଦାରିଦ୍ର୍ୟ ଯନ୍ତ୍ରଣା ତଥା ନିଜସ୍ୱ ରୁଚିର ସ୍ୱାକ୍ଷର ଛାଡ଼ିଯାଇଛନ୍ତି । ଏଗୁଡ଼ିକ ହେଉଛି ବଡ଼ଯେନା ପ୍ରତିଭାର ସାମଗ୍ରିକ ରୂପବିଭବର ଉଜ୍ଜ୍ୱଳତମ ଦୃଷ୍ଟାନ୍ତ । ଓଡ଼ିଆ ବ୍ୟତୀତ ସଂସ୍କୃତ, ହିନ୍ଦୀ, ପ୍ରାକୃତ, ବଙ୍ଗଳା ଓ ତେଲୁଗୁ ଭାଷାରେ ବଡ଼ଯେନାଙ୍କର ଅସାଧାରଣ ଦକ୍ଷତା ଥିଲା । ''ମନୋଦୂତ'' ହେଉଛି ତାଙ୍କର ସଂସ୍କୃତ ସାହିତ୍ୟର ଅନବଦ୍ୟ କୃତି । ଦୁଃଖର ବିଷୟ ତାଙ୍କର ସମସ୍ତ ସାରସ୍ୱତ ସୃଷ୍ଟି ଅଦ୍ୟାବଧି ଲୋକଲୋଚନକୁ ଆସିପାରିନାହିଁ। ନିକଟ ଅତୀତରେ ଆନ୍ଧ୍ର ପ୍ରଦେଶର ଭିଲିଙ୍ଗ ଗ୍ରାମରୁ ତାଙ୍କର ସ୍ୱହସ୍ତ ଲିଖିତ ଭାଗବତ ପୋଥିଟି ପ୍ରାପ୍ତହୋଇ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶିତ ହୋଇଛି। କବି ନିଜେ ମଧ୍ୟ ସୁଦୂର କଲିକତା ଯାଇଥିବା ସ୍ୱରଚନାରେ ପ୍ରକାଶ କରିଛନ୍ତି । ଏଥିରୁ ଉପଲବ୍ଧି ହୁଏ ସମଗ୍ର ପୂର୍ବାଞ୍ଚଳରେ ଓଡ଼ିଆ ସାହିତ୍ୟର ପ୍ରଚାର ଓ ପ୍ରସାର ନିମିତ୍ତ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା ।

ଅଷ୍ଟାଦଶ ଶତାବ୍ଦୀର ଶେଷଦଶନ୍ଧି ଥିଲା ବଡ଼ଯେନାଙ୍କ ଜୀବନର ଶେଷ ଦଶନ୍ଧି। ପ୍ରଭୁ ବଳୀୟାର ଭୁଜଙ୍କ କରୁଣାରୁ କବି ବଡ଼ଯେନା ଥିଲେ ଜଣେ ଉଦାରଚେତା ସମନ୍ୱୟାତ୍ମକ ଅଧ୍ୟାତ୍ମବାଦୀ ତଥା ସଂପ୍ରଦାୟଗତ ସଂକୀର୍ଣ୍ଣତା ଠାରୁ ବହୁ ଉର୍ଦ୍ଧ୍ୱରେ । ସୌଭାଗ୍ୟକ୍ରମେ ସେ ଜୀବନର ଅନ୍ତିମକାଳ ପବିତ୍ର ନୀଳାଚଳ ଧାମରେ ହିଁ କଟାଇଥିଲେ ସେହି ସମୟରେ କବିଙ୍କ ଲେଖନୀରୁ ଅନ୍ତିମ ରଚନା ''ଗୁଣ୍ଡିଚାବିଜେ'' ନିସୃତ ହୋଇଥିଲା । ଏହି ମହନୀୟ କାବ୍ୟରେ ହିନ୍ଦୀଭାଷାରେ କବି ବଡ଼ଯେନା ସାମ୍ୟ, ମୈତ୍ରୀ, ଐକ୍ୟ ଓ ପ୍ରୀତିର ପ୍ରତୀକାତ୍ମକ ବିଗ୍ରହ ଶ୍ରୀଜଗନ୍ନାଥଙ୍କ ପବିତ୍ର ନୀଳାଚଳ ଧାମରେ ଅନୁଷ୍ଠିତ ବିଶ୍ୱପ୍ରସିଦ୍ଧ ସମନ୍ୱୟାତ୍ମକ ମହୋତ୍ସବ ଘୋଷଯାତ୍ରାରେ ସୁବିସ୍ତୃତ ବିବରଣୀ ସୁଲଳିତ ପଦ୍ୟରେ ନାଟକୀୟ ଭାବଧାରାରେ ପରିବେଷଣ କରିଛନ୍ତି । ଏହି ପରମଗ୍ରନ୍ଥଟି କ୍ଷୁଦ୍ରକାୟ ହେଲେ ମଧ୍ୟ ମହାନ୍ ଉତ୍କଳୀୟ ସଂସ୍କୃତି, ଧର୍ମ, ଐତିହ୍ୟ, ଆଚାର, ବିଚାର ତଥା ବିଶ୍ୱ ସମ୍ବିଧାନର ପ୍ରତୀକ ଶ୍ରୀ ଜଗନ୍ନାଥ ଚେତନାକୁ ସର୍ବ ଭାରତୀୟ ସ୍ତରରେ ପ୍ରତିଷ୍ଠିତ କରିପାରିଛି । ଏହି ହିନ୍ଦୀକାବ୍ୟର ଶବ୍ଦବିନ୍ୟାସ ଓ ପ୍ରୟୋଗ ପରଂପରାରେ ମଧ୍ୟ ଓ

ଉତ୍ତର ଭାରତୀୟ ପ୍ରଚଳିତ ଭାଷା ଚିତ୍ତାକର୍ଷକ ଶୈଳୀରେ ପରିବେଷଣ ପୂର୍ବକ ବଡ଼ଯେନା ସର୍ବ ଭାରତୀୟ ସ୍ତରରେ ଆପଣାର କବିତ୍ୱ ପ୍ରତିଷ୍ଠିତ କରିପାରିଛନ୍ତି ।

କଲ୍ୟାଣମୟ ଔଜ୍ଜ୍ୱଲ୍ୟ ସଂପନ୍ନ ଚେତନଶୀଳ ଯୁଗୋପଯୋଗୀ ସାହିତ୍ୟ ସୃଷ୍ଟିକରିବା ବ୍ୟତୀତ ଲଳିତକଳାରେ ତାଙ୍କର ବିଶେଷ ଦକ୍ଷତା ଥିଲା । ତାଳପତ୍ରରେ ଲୌହଲେଖନୀ ସାହାଯ୍ୟରେ ପୋଥି ଲେଖିବା ସହିତ ସେ ବଉଳମଞ୍ଜି ଓ କାଇଁଚ ଆଦି ବ୍ୟବହାର ପୂର୍ବକ ସୁନ୍ଦର ସୁନ୍ଦର ଚିତ୍ର ଅଙ୍କନ କରି ପାରୁଥିଲେ । ତଦୀୟ ପୁତ୍ର ଘନଶ୍ୟାମ ମଧ୍ୟ ଏହିପରି ପୋଥିଲେଖା ଓ ଚିତ୍ର ଆଙ୍କିବାରେ ନିପୁଣ ଥିଲେ । ତତ୍‌କାଳୀନ ଓଡ଼ିଶାରେ ମୁଦ୍ରାଯନ୍ତ୍ର ନଥିବାରୁ ପୋଥିଲେଖିବା ଏକ ମହନୀୟ ସାରସ୍ୱତ ସେବା ରୂପେ ପରିଗଣିତ ହେଉଥିଲା । ବ୍ରଜନାଥ ଓ ତଦୀୟ ପୁତ୍ର ଓଡ଼ିଶା, ବଙ୍ଗଳା ଓ ଆନ୍ଧ୍ରପ୍ରଦେଶର ବିଭିନ୍ନ ସ୍ଥାନ ପରିଭ୍ରମଣ ପୂର୍ବକ ଏତାଦୃଶ ସାରସ୍ୱତ ସେବାରେ ବ୍ରତୀ ଥିଲେ । କବି ଜଣେ ଉଚ୍ଚକୋଟୀର ଶିଳ୍ପୀ ଥାଇ ଉତ୍ତମ ମୂର୍ତ୍ତି ନିର୍ମାଣ କରୁଥିଲେ । କାବରା ଗ୍ରାମରେ କବିଙ୍କ ସ୍ୱହସ୍ତ ନିର୍ମିତ ବାରଦାୟକ ହନୁମାନ ମୂର୍ତ୍ତି ଏଅବଧି ବିରାଜିତ ।

ବହୁମୁଖୀ ପ୍ରତିଭା ସଂପନ୍ନ କବି ବ୍ରଜନାଥ ବଡ଼ଯେନା ରୀତିଯୁଗୀୟ ଶିଳ୍ପାଦର୍ଶ ଅନୁକରଣରେ କାବ୍ୟକବିତା ରଚନା କରିଥିଲେ ହେଁ ତାହା ଅନୁକରଣ ସର୍ବସ୍ୱ କଳା ନଥିଲା । ଏହା ତତ୍‌କାଳୀନ ପରିସ୍ଥିତି ଓ ପରିବେଶର ସରହଦରୁ ପ୍ରକଟିତ ହୋଇ ବଡ଼ଯେନା ସାହିତ୍ୟରେ ସାମାଜିକ ଓ ବୈକ୍ତିକ ଚିତ୍ରଣ ରୂପରେ ସାମାଜିକ ଚେତନା ସୃଷ୍ଟି କରି ପାରିଥିଲା । ଗୌରବର ବିଷୟ ବଡ଼ଯେନାଙ୍କ ଲେଖନୀରେ ଏହା ଯୁଗୋପଯୋଗୀ ସାହିତ୍ୟ ରୂପେ ପରଂପରାର ପରିଧିରୁ ଜନ୍ମନେଇ ବିକାଶର ଧାରାରେ ପ୍ରବାହିତ ହୋଇଥିଲା । କବି ସ୍ରଷ୍ଟା ଓ ଦ୍ରଷ୍ଟାର ହୃଦୟ ନେଇ ଓଡ଼ିଆ ସାହିତ୍ୟରେ ନିଜସ୍ୱ ଅଭିରୁଚିକୁ ବୌଦ୍ଧିକ ମର୍ଯ୍ୟାଦ ପ୍ରଦାନ ପୂର୍ବକ ଏ ଜାତିର ଏକାନ୍ତ ଆପଣାର ହୋଇଯାଇଛନ୍ତି । ଆପଣାର ସମନ୍ୱୟ ବିଚାର ବୋଧରେ ସାମଗ୍ରିକ ଚେତନା ସଂପନ୍ନ ସୃଜନଶୀଳ ସାହିତ୍ୟ ସୃଷ୍ଟିପୂର୍ବକ ସେ ଓଡ଼ିଆ ସାହିତ୍ୟର ପ୍ରଭୃତି କଲ୍ୟାଣ ସାଧନ କରିଯାଇଛନ୍ତି । ସେ ଥିଲେ ଓଡ଼ିଆ ସାହିତ୍ୟର ଜଣେ କ୍ରାନ୍ତିକାରୀ ସ୍ରଷ୍ଟା, ଅଥଚ ପରଂପରାର ପରିଧି ବାହାରକୁ ସେ ଚାଲିଯାଇ ନଥିଲେ । ସେ ଯଥାର୍ଥରେ ରୀତିଯୁଗୀୟ କବି ବୃନ୍ଦଙ୍କ ମଧ୍ୟରେ ଜଣେ ପ୍ରଗତିଶୀଳ ସ୍ରଷ୍ଟା ଥିଲେ । ଓଡ଼ିଆ ସାହିତ୍ୟରେ ନୂତନ ଅଧ୍ୟାୟ ସୃଷ୍ଟି କରିବାରେ ତାଙ୍କ ଲେଖନୀ ଚଳଚଞ୍ଚଳ ହୋଇଉଠିଥିଲା । ସାହିତ୍ୟ ମାଧ୍ୟମରେ ସାମାଜିକ

ଶିକ୍ଷାର ପ୍ରସାର ହିଁ ତାଙ୍କର ପରମଲକ୍ଷ୍ୟ ଥିଲା । ସମାଜର ପ୍ରତ୍ୟେକ ସ୍ତରରେ ସାହିତ୍ୟର ନିରଙ୍କୁଶ ପ୍ରବେଶ ଓ ପ୍ରଚଳନ ନିମିତ୍ତ ସେ ପ୍ରଯତ୍ନଶୀଳ ଥିଲେ । ସାହିତ୍ୟର ପୃଷ୍ଠପୋଷକତାରେ ସେ ସମାଜର ବୌଦ୍ଧିକ କାମନା କରିଥିଲେ । ତାଙ୍କରି ସମୟରୁ ହିଁ ଓଡ଼ିଆ ସାହିତ୍ୟରେ ସାମୁହିକ ଉପଭୋଗର ପଥ ପ୍ରଶସ୍ତ ହୋଇଥିଲା । ସମାଜ ଓ ସଂସ୍କୃତିର କ୍ରାନ୍ତିକାରୀ ରୂପାନ୍ତର ଓ ବୈପ୍ଳବିକ ପରିବର୍ତ୍ତନ ନିମିତ୍ତ ସେ ସାହିତ୍ୟକୁ ଗଣସାହିତ୍ୟର ରୂପଦେଇ ଏକ ଶକ୍ତିଶାଳୀ ବୌଦ୍ଧିକ ମାଧ୍ୟମ ଭାବରେ ପ୍ରୟୋଗ କରିଥିଲେ । ସଂକ୍ଷେପରେ କହିଲେ ବଡ଼ଯେନା ହିଁ ଓଡ଼ିଆ ସାହିତ୍ୟକୁ ସର୍ବପ୍ରଥମେ ଗଣସଂସ୍କୃତିର ପୃଷ୍ଠ ପଟ୍ଟରେ ପ୍ରତିଷ୍ଠିତ କରାଇଥିଲେ । ଭାଷା, ଭାବ ଓ ଶୈଳୀର ବହୁବର୍ଣ୍ଣ ଆଲୋକଛଟା ବିଚ୍ଛୁରିତ ତାଙ୍କର ଅମରସୃଷ୍ଟିସମୂହ ଓଡ଼ିଆ ସାରସ୍ୱତ ସୃଷ୍ଟି ପ୍ରକ୍ରିୟାରେ ନୂତନ ମୂର୍ଚ୍ଛନା ସୃଷ୍ଟିକରି ପାରିଥିଲା । ଅନ୍ୟ ଭାଷାରେ କହିଲେ ରୀତିଯୁଗୀୟ ପରଂପରାର ପରିଧି ଭିତରେ ଥାଇ ମଧ୍ୟ ସେ ଓଡ଼ିଆ ସାହିତ୍ୟରେ ନବଜାଗରଣର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ ।



# ଶ୍ରୀ ଶ୍ରୀ ବଳଦେବଜୀଉ ମନ୍ଦିର

ଢେଙ୍କାନାଳ ସହରର ମଧ୍ୟସ୍ଥଳରେ ତଥା ରାଜପ୍ରାସାଦର ପଶ୍ଚିମ ପାର୍ଶ୍ୱରେ ଭବ୍ୟମନ୍ଦିରରେ ସିଦ୍ଧ ବଳରାମ ବିରାଜିତ । ସିଦ୍ଧ ବଳରାମ, ବଳଭଦ୍ର, ବଳଦେବ, ହଳୀ, ମୂଷଳୀ, ରେବତୀ ରମଣ ପ୍ରଭୃତି ଅନେକ ନାମରେ ପ୍ରସିଦ୍ଧି ଲାଭ କରିଥିବା ଏହି ପ୍ରଭୁ ଦ୍ୱାପର ଯୁଗୀୟ ଲୀଳା ସଂରଚନା କରୁଛନ୍ତି । ଦିବ୍ୟନୀଳାଚଳ ଶ୍ରୀ ମନ୍ଦିର ସଦୃଶ ସିଦ୍ଧ ବଳରାମଙ୍କର ତିନିଧୂପ ପାଞ୍ଚ ଅବକାଶ ରୀତିରେ ନୀତିନିଯୋଗ ସମାହିତ । ସେ କେବଳ ଢେଙ୍କାନାଳର ଇଷ୍ଟ ନୁହନ୍ତି, ଅଗଣିତ ଭକ୍ତଙ୍କର ପ୍ରାଣର ପ୍ରାଣ । ବିଷ୍ଣୁଙ୍କର ଅଷ୍ଟମ ଅବତାର ଏହି ସିଦ୍ଧ ବଳରାମ ଅଲୌକିକ ଶକ୍ତିଧାରୀ ତଥା କୃଷି ସଂସ୍କୃତିର ପ୍ରବର୍ତ୍ତକ । ତାଙ୍କରି କୃପାରୁ ଓଡ଼ିଆ ଜାତି କୃଷି କ୍ଷେତ୍ରରେ ଯେପରି ସମର୍ଥ କୃଷକ, ଯୁଦ୍ଧ କ୍ଷେତ୍ରରେ ସେହିପରି ସାର୍ଥକ ସୈନିକ ।

ପାଣିଓହଳା ପର୍ବତର ପାଦଦେଶରେ ବକୁଳ ଦେବଦାରୁ କୁଞ୍ଜ ମଧ୍ୟରେ ସିଦ୍ଧ ବଳରାମଙ୍କ ମନ୍ଦିର ନିର୍ମିତ । ଉତ୍କଳୀୟ ସ୍ଥାପତ୍ୟ ଶୈଳୀରେ ନିର୍ମିତ ଏହି ପଞ୍ଚରଥ ମନ୍ଦିରର ଉଚ୍ଚତା ୭୦ ଫୁଟ । ପରମବିଷ୍ଣୁଙ୍କର ପ୍ରିୟ ନିବାସ ସ୍ଥଳୀ ବୈକୁଣ୍ଠସ୍ଥିତ ଶ୍ରୀବସ୍ତଖଣ୍ଡଶାଳ ରୀତିରେ ନିର୍ମିତ । ଏହି ଭବ୍ୟମନ୍ଦିର ଜଗମୋହନ, ମୁଖଶାଳ ଓ ଗମ୍ଭୀରା ତିନି ଭାଗରେ ବିଭକ୍ତ । ମନ୍ଦିରର ଶୀର୍ଷ ଭାଗରେ ୫ ଫୁଟ ବ୍ୟାସର ଅଷ୍ଟଧାତୁ ନିର୍ମିତ ନୀଳଚକ୍ର ଉପରେ ଉନ୍ନନିନେତ ସୁଶୋଭିତ । ଗମ୍ଭୀରାରେ ତିନି ଫୁଟ ଉଚ୍ଚ ଓ ଦଶ ଫୁଟ ଲମ୍ବ ରତ୍ନ ସିଂହାସନରେ ବଳରାମଙ୍କ ହଳମୂଷଳଧାରୀ ଧବଳମୟ ମଶିବିଗ୍ରହ ସହିତ ସୁଭଦ୍ରା, ଶ୍ରୀକୃଷ୍ଣ ଓ ରୁକ୍ମଣୀଙ୍କ ଦାରୁ ପ୍ରତିମା ପୂଜିତ । ଜଗମୋହନରେ ପ୍ରସ୍ତରସ୍ତମ୍ଭରେ ପକ୍ଷୀରାଜ ଗରୁଡ଼ ଯୋଡ଼ ହସ୍ତରେ ଦଣ୍ଡାୟମାନ । ବରାହ, ନୃସିଂହ ଓ ବାମନ ହେଉଛନ୍ତି ମନ୍ଦିରର ପାର୍ଶ୍ୱଦେବତା । ମୁଖ୍ୟ ମନ୍ଦିରର ଦକ୍ଷିଣ ଦିଗରେ ଶ୍ରୀଜଗନ୍ନାଥ ମନ୍ଦିର ଓ ରୋଷଘର, ପଶ୍ଚିମପାର୍ଶ୍ୱରେ ଶ୍ରୀ ବକୁଳେଶ୍ୱର ମହାଦେବ, ଶନି, ହନୁମାନ ଓ ସରଘର, ଉତ୍ତର ପାର୍ଶ୍ୱରେ ଶ୍ରୀ ମହାଲକ୍ଷ୍ମୀଙ୍କ ମନ୍ଦିର ତଥା ଐଶାନ୍ୟ କୋଣରେ ସ୍ନାନମଣ୍ଡପ ଓ ନୈରତ କୋଣରେ ଝୁଲଣ ମଣ୍ଡପ । ସିଦ୍ଧ ବଳରାମଙ୍କ ବେଢ଼ା ୧୫ ଫୁଟ ପ୍ରସ୍ତର ପ୍ରାଚୀର ଦ୍ୱାରା ପରିବେଷ୍ଟିତ । ପୂର୍ବପଟେ ସିଂହଦ୍ୱାର,

ଉତ୍ତରପଟେ ହସ୍ତିଦ୍ୱାର, ପଶ୍ଚିମପଟେ ବ୍ୟାଘ୍ରଦ୍ୱାର ଓ ଦକ୍ଷୀଣପଟେ ଅଶ୍ୱଦ୍ୱାର । ସିଂହଦ୍ୱାର ଗୁମୁଟିରେ ପତିତପାବନ ବିରାଜିତ । ମନ୍ଦିରର ଐଶାନ୍ୟ କୋଣରେ ଅବସ୍ଥିତ ବାମ୍ପୀର ଜଳ ପରମ ପାବନ ଓ ଆୟୁଷ୍ୟ । ବେଢ଼ା ମଧ୍ୟରେ ତୁଳସୀ ଚଉରା, ମଙ୍ଗଳା, ରଘୁନାଥ, ଅଷ୍ଟ ସଖୀ ପରବେଷ୍ଟିତ ରାଧାକୃଷ୍ଣ ଓ ଶ୍ରୀ ଚୈତନ୍ୟ ମଧ୍ୟ ପୂଜିତ ।

ସିଦ୍ଧ ବଳରାମଙ୍କ ଦୈନନ୍ଦିନ ସେବାପୂଜା ତିନିଧୂପ ଓ ପାଞ୍ଚ ଅବକାଶ ରୀତିରେ ହୋଇଥାଏ । ପ୍ରାତଃ କାଳରେ ଜୟମଙ୍ଗଳ ଆଳତୀ, ଦ୍ୱାରପୂଜା, ପ୍ରକ୍ଷାଳନ, ଦନ୍ତମାର୍ଜନ, ସ୍ନାନ, ଅଙ୍ଗସଜ୍ଜା, ଚନ୍ଦନ, ପୁଷ୍ପଲାଗି, ସୂର୍ଯ୍ୟପୂଜା ଓ ବଲ୍ଲଭ ଭୋଗ ହୋଇଥାଏ । ପୂର୍ବାହ୍ନ ନଅଟାରେ ରାଜଧୂପରେ ଖେଚୁଡ଼ି ଭୋଗ, ଦ୍ୱିପହରରେ ମଧ୍ୟାହ୍ନ ଧୂପରେ ଅନ୍ନ, ଡାଲି, ତରକାରୀ ଓ କାନିକା ଭୋଗ, ପରେ ପରେ ପହୁଡ଼ । ପହୁଡ଼ ଫିଟାରେ ଅପରାହ୍ନ ୪ଟାରେ ଟେରାପଣା, ସନ୍ଧ୍ୟାରେ ସନ୍ଧ୍ୟା ଆଳତୀ, ରାତ୍ର ୯ଟାରେ ରାତ୍ର ଧୂପରେ ଅନ୍ନ, ଡାଲମା, କ୍ଷୀର ପୁଳି, ବାଟୁଲା ଏବଂ ରାତ୍ର ଧୂପ ପରେ ବଡ଼ ସିଂହାର ବେଶ ହୋଇ କାକରା ପିଠା ଓ ମିଷ୍ଟାନ୍ନ ଭୋଗ ହୁଏ । ଏତଦ୍ ଭିନ୍ନ ପୁରୀ ଶ୍ରୀମନ୍ଦିର ସଦୃଶ ଏହି ମନ୍ଦିରରେ ମହାପ୍ରସାଦ ସେବାର ବିଧିବ୍ୟବସ୍ଥା ପ୍ରବର୍ତ୍ତିତ । ଏହି ଭୋଗରେ ଅନ୍ନ, ଘୃତାନ୍ନ, ଡାଲି, ସାକର, ବେସର, ମହୁର, ଶାଗ, ରସା, କ୍ଷୀରୀ ପ୍ରଭୃତି ଲାଗି ହୁଏ । ପୂଜା ଓ ପର୍ବପର୍ବାଣୀରେ ମଧ୍ୟ ଉପାଧୀ ଭୋଗ ଲାଗି କରାଯାଏ । ଠାକୁରଙ୍କ ଦୈନନ୍ଦିନ ପୂଜା ଓ ପର୍ବପର୍ବାଣୀ ସେବା ନିମିତ୍ତ ଛତିଶା ନିଯୋଗ ପ୍ରଚଳିତ । ରାଜପୁରୋଧା, ଜିମାଦାର, ପୂଜାପଣ୍ଡା, ସୁଆର, ପହଣ୍ଡିଆ, ମାଳୀ, ପାଳିଆ, ଘଣ୍ଟୁଆ, କାହାଳିଆ, ଚାମର ସେବକ, କୁମ୍ଭକାର, ପାଲିଙ୍କି ବେହେରା, ଦେଉଳାଉଠା, ନିଶାଣ ବର୍ଦ୍ଧାର, ନାଉରିଆ, ଚନ୍ଦନ ସେବକ, ବିଶ୍ୱକର୍ମା ଓ ବଢ଼େଇ ପ୍ରଭୃତି ଅନେକ ସେବକ ଠାକୁରଙ୍କ ନିତିନିଯୋଗରେ ନିଯୁକ୍ତ ।

ଏହି ସେବକମାନଙ୍କ ମଧ୍ୟରେ ଜିମାଦାର ମନ୍ଦିର ପରିଚାଳନା ଦାୟୀତ୍ୱରେ ରହନ୍ତି । ଅନ୍ୟାନ୍ୟ ସେବକଙ୍କ ମଧ୍ୟରେ ପୂଜାପଣ୍ଡା ହିଁ ମୁଖ୍ୟ । ମନ୍ଦିରରେ ତିନିଜଣ ପୂଜାପଣ୍ଡା ରହନ୍ତି ଏବଂ ପାଳିକରି ବିଭିନ୍ନ ମନ୍ଦିରର ପୂଜା ଦାୟିତ୍ୱ ନିର୍ବାହ କରନ୍ତି । ସୁଆର ଦୁଇଜଣ ଠାକୁରଙ୍କ ନୀତି ନିଯୋଗ ନିମିତ୍ତ ଅନ୍ନ ବ୍ୟଞ୍ଜନ ଓ ପିଠା ପଣା ପ୍ରସ୍ତୁତ କରନ୍ତି । ପହଣ୍ଡିଆମାନେ ଠାକୁରଙ୍କୁ ସ୍ନାନ ପୂର୍ଣ୍ଣିମା, ଶ୍ରୀ ଗୁଣ୍ଡିଚା, ବାହୁଡ଼ା ଓ ନୀଳାଦ୍ରୀ ବିଜେରେ ପହଣ୍ଡି କରନ୍ତି । ମାଳୀମାନେ ସବୁ

ଠାକୁରଙ୍କ ନିମିତ୍ତ ଫୁଲମାଳ ଓ ଚୂନା ଫୁଲ ଯୋଗାଇଥାନ୍ତି । ପାଳିଆମାନେ ପରିବା କାଟିବା, ଅମଣିଆ ଯୋଗାଇବା, ଚାଉଳ ଗଡ଼ାଇବା, ପିଠଉ ବାଟିବା ଓ ବାସନ ମାଜିବା ପ୍ରଭୃତି କାର୍ଯ୍ୟ କରିବା ସହିତ ମନ୍ଦିରର ଗର୍ଭଗୃହ ତଥା ରୋଷଘର ପରିଷ୍କାର କରିଥାନ୍ତି । ଘଣ୍ଟୁଆମାନେ ନୀତି ନିଯୋଗ ଓ ପର୍ବପର୍ବାଣୀରେ ଘଣ୍ଟ ବଜାଇଥାନ୍ତି । ଚାମର ସେବକ ଚାମର ସେବା କରିଥାନ୍ତି । ସୁଆଁସିଆ ଠାକୁରଙ୍କ ସରଘର ଓ ବଜାରରୁ ପୂଜା ସାମଗ୍ରୀ ସହିତ ଧାନ, ଚାଉଳ, ବିରି, ମୁଗ, ପ୍ରଭୃତି ଆଣି ଯୋଗାଇଥାନ୍ତି । ତଣ୍ଡକାର ସିଂହଦ୍ୱାରରେ ଜଗି ରହନ୍ତି । ଚିତ୍ରକର ଅଣସର ଓ ଅନ୍ୟାନ୍ୟ ପର୍ବପର୍ବାଣୀରେ ଠାକୁରଙ୍କ ବେଶରଞ୍ଜନ କରିଥାନ୍ତି । ଛତ୍ର ବର୍ଦ୍ଧାର ଠାକୁରଙ୍କର ବିଜେ ସମୟରେ ଛତ୍ର ଧରିଥାନ୍ତି । ମଶାଲଧାରୀ ଦୋଳଯାତ୍ରା ଓ ଚନ୍ଦନ ଯାତ୍ରାରେ ମଶାଲ ଧରନ୍ତି । କୁମ୍ଭକାର ନୀତି ନିଯୋଗ ନିମିତ୍ତ ମାଟିପାତ୍ର ଯୋଗାଇଥାନ୍ତି । ପାଲିଙ୍କି ବେହେରାମାନେ ଠାକୁରଙ୍କ ବିଜେ ପ୍ରତିମା ମଦନ ମୋହନଙ୍କୁ ଦୋଳ ଓ ଚନ୍ଦନ ଯାତ୍ରାରେ ପାଲିଙ୍କିରେ ନେଇଥାନ୍ତି । ଦେଉଳଉଠା ସେବକ ମନ୍ଦିର ଉପରକୁ ମହାଦୀପ ଉଠାନ୍ତି ଓ ନେତ ବାନ୍ଧନ୍ତି । ନିଶାଣବର୍ଦ୍ଧାର ଶ୍ରୀ ଗୁଣ୍ଡିଚା ଓ ବାହୁଡ଼ା ଯାତ୍ରାରେ ନିଶାଣ ଧରି ଠାକୁରଙ୍କ ଆଗେ ଆଗେ ଯାଆନ୍ତି । ନାଉରିଆ ଚନ୍ଦନ ଯାତ୍ରା ସମୟରେ ନୌକାଚାଳନା କରନ୍ତି । ଚନ୍ଦନ ସେବକ ସ୍ନାନ ବେଶ ନିମିତ୍ତ ଚନ୍ଦନ ଯୋଗାଇଥାନ୍ତି । ବଢ଼େଇମାନେ ବିଶ୍ୱକର୍ମାଙ୍କ ନିର୍ଦ୍ଦେଶରେ ରଥ ଓ ମୂର୍ତ୍ତୀ ନିର୍ମାଣ କରନ୍ତି । ମନ୍ଦିରର ସକଳ ନୀତିବିନିଯୋଗ ଓ ପର୍ବପର୍ବାଣୀ ରାଜପୁରୋଧାଙ୍କ ନିଷ୍ପତ୍ତି ଓ ନିର୍ଦ୍ଦେଶମତେ ସମାହିତ ହୁଏ । ଠାକୁରଙ୍କ ପର୍ବପର୍ବାଣୀ ମଧ୍ୟରେ ମହାବିଷ୍ଣୁବ ସଂକ୍ରାନ୍ତି, ମହାବୀର ଜୟନ୍ତୀ, ଅକ୍ଷୟ ତୃତୀୟା, ଚନ୍ଦନ ଯାତ୍ରା, ନୃସିଂହ ଚତୁର୍ଦ୍ଦଶୀ, ରୁକ୍ମୁଣୀବିବାହ, ଦେବସ୍ନାନ ପୂର୍ଣ୍ଣିମା, ରଥଯାତ୍ରା, ସପ୍ତପୁରୀ ଅମାବାସ୍ୟା, ବଳଭଦ୍ର ଜନ୍ମ, ଜନ୍ମାଷ୍ଟମୀ, ଭାଗବତ ଜନ୍ମ, ଦଶହରା, ବିଜୟାଦଶମୀ, ଦିପାବଳୀ, ରାସପୂର୍ଣ୍ଣିମା, ପ୍ରଥମାଷ୍ଟମୀ, ପହିଲି ଭୋଗ, ବକୁଳ ଅମାବାସ୍ୟା, ପୌଷପୂର୍ଣ୍ଣିମା, ନବାଙ୍କ, ମକର, ଗଜ ଉଦ୍ଧାରଣ, ଜାଗର ଓ ଦୋଳଯାତ୍ରା ପ୍ରଭୃତି ମୁଖ୍ୟପର୍ବ। ଧବଳମୟ ମଣିବିଗ୍ରହ ଶ୍ରୀ ବଳରାମ ସ୍ନାନଯାତ୍ରାରେ ଦେବସ୍ନାନ ମଣ୍ଡପକୁ ବିଜେ ହେଲେହେଁ ରଥକୁ ଯାଆନ୍ତି ନାହିଁ । ଅନ୍ୟ ମନ୍ଦିରରେ ବିରାଜିତ ଶ୍ରୀ ଜଗନ୍ନାଥ ରଥଯାତ୍ରାରେ ବାଜିଚୌକସ୍ଥିତ ଶ୍ରୀଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରିଥାନ୍ତି । ଚନ୍ଦନ ଓ ଦୋଳଯାତ୍ରା ପ୍ରଭୃତି ଶ୍ରୀ ବଳରାମ ଓ ଅନ୍ୟାନ୍ୟ ସମୟରେ ବିଜେ ପ୍ରତିମା ମଦନମୋହନ ରତ୍ନସିଂହାସନରେ ବିରାଜମାନ ଥାଆନ୍ତି ।

ସିଦ୍ଧ ବଳରାମଙ୍କ ନୀତିନିଯୋଗ ଓ ପର୍ବପର୍ବାଣୀ ରାଜା ନୃସିଂହ ଭ୍ରମରବରଙ୍କ ଅମଳରୁ ପ୍ରଚଳିତ । ପରବର୍ତ୍ତୀ କାଳରେ ମହାରାଜା ଭଗୀରଥ ଓ ରାଜର୍ଷି ସୁରପ୍ରତାପ ସ୍ୱତନ୍ତ୍ର ଦେବୋତ୍ତର ବିଭାଗ ଖୋଲି ରାଜପଣ୍ଡିତଙ୍କ ପରାମର୍ଶ କ୍ରମେ ପୂଜାବିଧିରେ ସଂସ୍କାର ଆଣିଥିଲେ ।

ସ୍ୱାଧୀନତା ପରେ ସିଦ୍ଧ ବଳରାମଙ୍କ ମନ୍ଦିର ଜିଲାପାଳଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଢେଙ୍କାନାଳର ଦେବୋତ୍ତର ବିଭାଗ ଦ୍ୱାରା ପରିଚାଳିତ । ଦୈନନ୍ଦିନ ନୀତି ଓ ପର୍ବପର୍ବାଣି ନିମିତ୍ତ ଅଟକଳ ପ୍ରସ୍ତୁତ କରାଯାଇ ଅନୁମୋଦିତ ହୋଇଥାଏ ଏବଂ ଏହି ଅନୁମୋଦିତ ଅଟକଳ ଅନୁଯାୟୀ ଯାବତୀୟ ଖର୍ଚ୍ଚ ନିର୍ବାହ କରାଯାଏ । ଠାକୁରଙ୍କ ସ୍ଥାବର ଅସ୍ଥାବର ସମ୍ପତ୍ତିର ଆୟରୁ ଏହି ଖର୍ଚ୍ଚ ହୁଏ । ରାଜରାଜୁଡ଼ା ଅମଳରେ ଢେଙ୍କାନାଳର ରାଜନ୍ୟବୃନ୍ଦ ସିଦ୍ଧ ବଳରାମଙ୍କୁ ପ୍ରଚୁର ପରିଣାମରେ ଭୂ-ସମ୍ପତ୍ତି ଦାନ କରିଥିଲେ । ଜମିଦାରୀ ଉଚ୍ଛେଦ ଆଇନ୍ ଓ ଭୂସଂସ୍କାର ଆଇନ୍ କାର୍ଯ୍ୟକାରୀ ହେବାରୁବହୁଳ ପରିମାଣରେ ଜମି ଚାଷୀଙ୍କ ନାମରେ ରେକର୍ଡ଼ ହୋଇଅଛି । ବର୍ତ୍ତମାନ ବିଦାବନ୍ଧ ଓ ମାଳପୁରା ଗ୍ରାମରେ ପ୍ରାୟ ୧୨୦ ଏକର ଜମି ରହିଅଛି । ଏହା ଛଡ଼ା କେତେଗୁଡ଼ିଏ ଘର ଭଡ଼ା ଦିଆଯାଇ କିଛି ପରିମାଣରେ ଆୟ ହେଉଛି । କିନ୍ତୁ, ଏହି ସ୍ୱଳ୍ପ ଆୟରୁ ଠାକୁରଙ୍କ ନୀତି ନିଯୋଗ ଓ ପର୍ବପର୍ବାଣି ନିମିତ୍ତ ଖର୍ଚ୍ଚ ନିଅଣ୍ଟ ହେବାରୁ କପିଳାସ ବିଜେ ଶ୍ରୀ ଚନ୍ଦ୍ରଶେଖରଙ୍କ ଉଦ୍‌ବୃତ୍ତ ଆୟରୁ ଖର୍ଚ୍ଚ କରାଯାଉଅଛି ।

ସିଦ୍ଧ ବଳରାମଙ୍କ ଇତିହାସ ସୁପ୍ରାଚୀନ । ଠାକୁର ପ୍ରଥମେ ଅନୁଗୁଳ ଜିଲ୍ଲା ତଳମୂଳରେ ପୂଜା ପାଇଥିଲେ । ଯେଉଁ ଦଶ ଖମ୍ବ ମଣ୍ଡପରେ ଠାକୁର ପୂଜା ପାଉଥିଲେ, ତାହା ଅଦ୍ୟାବଧି ବିଦ୍ୟମାନ । ଗବେଷକ ମାନଙ୍କ ମତରେ ବଳରାମ ପ୍ରଥମେ ସପ୍ତଫଣା ଯୁକ୍ତ ମୂର୍ତ୍ତୀ ଥିଲେ । ଅନୁମିତ ହୁଏ, ଯେଉଁ ସମୟରେ ଜଗନ୍ନାଥ ମହାନଦୀ ଅବବାହିକାରେ ପାତାଳୀ ହୋଇଥିଲେ, ସେହି ସମୟରେ ସପ୍ତଫଣା ମୂର୍ତ୍ତିଙ୍କୁ ବଜ୍ରଲେପ ଦିଆଯାଇ ଧବଳମୟ ହଳ ମୂଷକ ଧାରୀ ବିଗ୍ରହରେ ରୂପାନ୍ତରିତ କରାଯାଇଥିଲା । ପରବର୍ତ୍ତୀ କାଳରେ ସିଦ୍ଧ ବଳରାମଙ୍କୁ ତଳମୂଳଠାରୁ ହିନ୍ଦୋଳ ଅନ୍ତର୍ଗତ ଚିତ୍ତଳପୁର ଗ୍ରାମକୁ ସ୍ଥାନାନ୍ତର କରାଯାଇଥିଲା । ଚିତ୍ତଳପୁରରେ ମଧ୍ୟ ତଳମୂଳ ଅନୁରୂପ ୧୦ ଖମ୍ବ ମଣ୍ଡପଟିଏ ରହିଅଛି । ବଳରାମଙ୍କର ପରମ ଭକ୍ତ ରାମଦାସଙ୍କ ରଚିତ ''ବଳଭଦ୍ର ବୋଲି''ରୁ ଜଣାଯାଏ, ଝାଡ଼ ଖଣ୍ଡ ବା ଜଙ୍ଗଲ ପ୍ରଦେଶରେ ପ୍ରଭୁ ରହିବା ନିମିତ୍ତ ଇଚ୍ଛା ପ୍ରକାଶ କରିଥିଲେ ।

''ଏ ପ୍ରଭୂ ସିଦ୍ଧ ବଳରାମ ମୂରତି ପୂର୍ବେ ଝାଡ଼ ଖଣ୍ଡେ ଥିଲେ
ତଳମୂଳ ବୋଲି ଅନୁଗୁଳ ସୀମା ଦଶ ଖମ୍ବ ମଣ୍ଡପରେ
× × × × ×
ତହିଁ କେତେକାଳ ରହି ହଳଧର ସେଠାରୁ ବାହାର ହୋଇ
ହିନ୍ଦୋଳ ସୀମା ଚିତ୍ତଳପୁର ଠାରେ ବିଜୟ କଲେ ଗୋସାଇଁ''
ଝାଡୁଆ ଲୋକେ ସହଜେ ଜ୍ଞାନ ଥୋକେ ପ୍ରଭୁଙ୍କୁ ସେବି ରହିଲେ
ତହିଁ କେତେ କାଳ ରହି ହଳଧର ଭୀମ ନଗ୍ରୀକୁ ଅଇଲେ ।
× × × × ×
ସେଠାରେ ଅନଙ୍ଗଭୀମଦେବ ବୋଲି ରାଜାଏ ଏଥିରେ ହୋଇ
ସେଠାରେ ପଥର ମଣ୍ଡପ ତୋଳାଇ ବିଜେ କରାଇଲେ ନେଇ ।

ଏଥିରୁ ହୃଦ୍‌ବୋଧ ହୁଏ ଗଙ୍ଗବଂଶ ଅନଙ୍ଗଭୀମ ଦେବ ୩ୟ ଚିତଲପୁରରୁ ବଳରାମଙ୍କୁ ଆଣି ଭୀମନଗରୀଠାରେ ମନ୍ଦିର ତୋଳାଇ ବିଜେ କରାଇଥିଲେ। ଅନଙ୍ଗଭୀମଦେବ ହାତୀ ଉପରେ ଠାକୁରଙ୍କୁ ପୁରୀ ନେବା ସମୟରେ ଠାକୁରଙ୍କ ସ୍ୱପ୍ନାଦେଶ ହେଲା ।

''ଆମ୍ଭେ ଝାଡ଼ଖଣ୍ଡ ଛାଡ଼ିଣ ନଯିବୁ ଏଥିରେ ଆମ୍ଭର ପ୍ରିୟ
ସର୍ବ ମଙ୍ଗଳ ଶୁଭ ତୋତେ ହୋଇବ ମନରେ ଦୁଃଖ ନପାଅ ।''

ସ୍ୱପ୍ନାଦେଶ ହେବାରୁ ରାଜା ଠାକୁରଙ୍କୁ ଡେଙ୍ଗବୋରେଇ ଗ୍ରାମଠାରେ ବିଜେ କରାଇ ସମଗ୍ର ଅଞ୍ଚଳଟି ଦାନ କଲେ । ସେହିଦିନଠାରୁ ତାହା ବଳରାମପୁର ବିଷ ନାମେ ଖ୍ୟାତ ହେଲା ।

ଷୋଡ଼ଶ ଶତାବ୍ଦୀରେ କଳାପାହାଡ଼ ଆକ୍ରମଣ ଭୟରେ ସେବକମାନେ ଠାକୁରଙ୍କୁ କାଣ୍ଡବିନ୍ଧା ଗ୍ରାମର ପୋଖରୀ ହୁଡ଼ାରେ ପୋତି ପକାଇଲେ । କିଛି ବର୍ଷ ପରେ ଜଣେ ଶବର ଟୁଙ୍ଗା (ବନ୍ୟ ଆଳୁ) ଖୋଳୁ ଖୋଳୁ ତାହାର ଖଣତି ଠାକୁରଙ୍କ ମୁଣ୍ଡରେ ବାଜିଲା ଏବଂ ସେ ଏହି ପ୍ରସଙ୍ଗ ବେଶାଳିଆର ଭଞ୍ଜବଂଶୀ ରାଜା ଶ୍ରୀଧର ଭଞ୍ଜଙ୍କୁ ଜଣାଇଲା । ଶ୍ରୀଧର ଭଞ୍ଜ ଠାକୁରଙ୍କୁ ମହାସମାରୋହରେ ଆଣି ଢେଙ୍କାନାଳ ଗଡ଼ରେ ସୁରମ୍ୟ ମଣ୍ଡପରେ ବିଜେ କରାଇଲେ ।

''ଢେଙ୍କାନାଳ ଗଡ଼ ଦେଉଳ ଠାବରେ ମଣ୍ଡବ ତୋଳାଇ ରଖି,
ରାଜା ଚିହ୍ନିଣ ବଳଭଦ୍ର ମୂରତି କାଳେ ହେଲେ ମହାସୁଖୀ''

କ୍ରମେ ୧୫୮୨ ମସିହାରେ ଶ୍ରୀଧର ଭଞ୍ଜଙ୍କୁ ପରାସ୍ତ କରି ହରିସିଂହ ବିଦ୍ୟାଧର ଢେଙ୍କାନାଳ ଗଡ଼ ଦଖଲ କଲେ ଏବଂ ସେଠାରେ ରାଜାବଂଶ ପ୍ରତିଷ୍ଠା କଲେ । ହରିବିଦ୍ୟାଧର ସିଦ୍ଧ ବଳରାମଙ୍କ ମନ୍ଦିର ନିର୍ମାଣ ଆରମ୍ଭ କରିଥିଲେ ହେଁ ତଦୀୟ ପଞ୍ଚମ ପୁରୁଷ ରାଜା ନୃସିଂହ ଭ୍ରମରବରଙ୍କ ରାଜତ୍ୱରେ ୧୬୮୨ ଖ୍ରୀଷ୍ଟାବ୍ଦରେ ମନ୍ଦିର ନିର୍ମାଣ ଶେଷ ହେଲା । ସେହି ବର୍ଷ ରାଜା ନୃସିଂହ ମହାସମାରୋହରେ ମନ୍ଦିର ପ୍ରତିଷ୍ଠା କରାଇ ଠାକୁରଙ୍କୁ ବିଜେ କରାଇଲେ ଏବଂ ଶ୍ରୀ ମନ୍ଦିର ଅନୁରୂପ ତିନିଧୂପ ପାଞ୍ଚ ଅବକାଶ ଛତିଶ ନିଯୋଗ ରୀତିରେ ସେବା ପୂଜା ପ୍ରବର୍ତ୍ତନ କଲେ। ସେ ମଧ୍ୟ ରଥଯାତ୍ରା ପ୍ରଚଳନ କରାଇଥିଲେ । କିନ୍ତୁ ଏହି ରଥଯାତ୍ରାରେ ବଳରାମ ଯାତ୍ରା ନକରି ଦଧିବାମନ ଯାତ୍ରା କରୁଥିଲେ । ପରବର୍ତ୍ତୀ କାଳରେ ରାଜର୍ଷି ସୁରପ୍ରତାପ ୧୯୦୯ ମସିହାରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିବାକୁ ଜଗନ୍ନାଥ ସେହି ବର୍ଷଠାରୁ ରଥଯାତ୍ରାରେ ଯାଉଛନ୍ତି ।

ରାଜା ନୃସିଂହଙ୍କ ପାରେ ତଦୀୟପୁତ୍ର କୁଞ୍ଜବିହାରୀ ଭ୍ରମରବର ମନ୍ଦିରର ଚୂନ ପଳସ୍ତରା ଓ ମୁଖଶାଳା ନିର୍ମାଣ କରିଥିଲେ । ତତ୍‌ପରେ କୁଞ୍ଜବିହାରୀଙ୍କ ପୁତ୍ର ବ୍ରଜବିହାରୀ ଜଗମୋହନ ନିର୍ମାଣ କରିଥିଲେ । ମନ୍ଦିରର ବେଢ଼ା ପରବର୍ତ୍ତୀ ରାମଚନ୍ଦ୍ର ମହୀନ୍ଦ୍ର ବାହାଦୁରଙ୍କ କୀର୍ତ୍ତି । ପରେ ମହାରାଜା ଭାଗୀରଥ ସିଂହଦ୍ୱାର ଗୁମୁଟ ନିର୍ମାଣ କରିଥିଲେ । ରାଜର୍ଷି ସୁରପ୍ରତାପ ୧୯୦୯ ମସିହାରେ ଜଗନ୍ନାଥ ମନ୍ଦିର, ଭଣ୍ଡାରଘର ଓ ଝୁଲଣା ଘର ନିର୍ମାଣ କରିଥିଲେ । ୧୯୮୪ ମସିହାରେ ସ୍ୱର୍ଗୀୟ ନଟବର ଦେବତା ଏଠାରେ ମହାଲକ୍ଷ୍ମୀଙ୍କ ମନ୍ଦିର ନିର୍ମାଣ ପୂର୍ବକ ସେବାପୂଜାର ସୁବନ୍ଦୋବସ୍ତ କରାଇଛନ୍ତି ।

ଭାରତୀୟ ଧର୍ମ ଓ ସଂସ୍କୃତିରେ ବଳରାମଙ୍କ ଉପାସନା ବହୁ ପ୍ରାଚୀନ । ଓଡ଼ିଶାରେ ମଧ କେନ୍ଦ୍ରାପଡ଼ା, କେନ୍ଦୁଝର, ଭୁବନେଶ୍ୱର, ବାଳିଅନ୍ତା, ଜିଗ୍ନିପୁର, ତୁରିନ୍ତରା, ଲହଡ଼ା, ପ୍ରଭୃତି ସ୍ଥାନରେ ବଳଦେବ ଜୀଉଙ୍କର ସ୍ୱତନ୍ତ୍ର ମନ୍ଦିର ବିଦ୍ୟମାନ । କିନ୍ତୁ ଢେଙ୍କାନାଳରେ ସିଦ୍ଧ ବଳରାମ ଭଗ୍ନୀ ସୁଭଦ୍ରା, ଭ୍ରାତା, ଶ୍ରୀକୃଷ୍ଣ ଓ ରୁକ୍ମଣୀଙ୍କ ସହିତ ଦ୍ୱାପର ଯୁଗୀୟ ଲୀଳା ସଂରଚନା କରିଛନ୍ତି । ଶ୍ରୀ ବଳଦେବ ଜୀଉ ଉପାସନାରେ ଢେଙ୍କାନାଳ ସିଦ୍ଧ ବଳରାମଙ୍କ ପୂଜା ଅନନ୍ୟ ଓ ଅନୁପମ ।



## ସହାୟକ ଗ୍ରନ୍ଥ ଓ ଅଭିଲେଖ ସୂଚୀ


1. ବଳଭଦ୍ର ବୋଲି – ବାବାଜୀ ରାମ ଦାସ
2. ଭଞ୍ଜ ବୋଲି – ଆଦିକନ୍ଦ ଅବଧାନ
3. ଢେଙ୍କାନାଳର ପ୍ରାଚୀନ ଇତିହାସ – ପଣ୍ଡିତ ଚକ୍ରଧର ଦାଶ
4. ଢେଙ୍କାନାଳ ଇତିହାସ – ପଣ୍ଡିତ ରାମଚନ୍ଦ୍ର ନନ୍ଦ
5. ସେବ କାଳର କଥା – ପଣ୍ଡିତ ନଗେନ୍ଦ୍ରନାଥ ମହାପାତ୍ର
6. ଓଡ଼ିଶା ଇତିହାସ – ଡକ୍ଟର ହରେକୃଷ୍ଣ ମହତାବ
7. ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ (୧ମ ଓ ୨ୟ ଭାଗ) – ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ
8. ବ୍ରଜନାଥ ଗ୍ରନ୍ଥାବଳୀ – ସଂ. ସୁଧାକର ପଟ୍ଟନାୟକ
9. କପିଳ ସଂହିତା (ସଂସ୍କୃତ) ସଂ.ରତ୍ନାକର ଗର୍ଗବଟୁ
10. ନାଗନାଥ ଶତକମ୍ (ସଂସ୍କୃତ) – ପଣ୍ଡିତ ନଗେନ୍ଦ୍ରନାଥ ମହାପାତ୍ର
11. ରସବିନୋଦ – ଦୀନକୃଷ୍ଣ ଦାସ
12. ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ – ଡକ୍ଟର କରୁଣାକର କର
13. ସାଧନାର ପଥେ – ଡକ୍ଟର ହରେକୃଷ୍ଣ ମହତାବ
14. ଦଶବୋଲି – ନୃସିଂହ ଭ୍ରମରବର
15. ପ୍ରେମଶୀଳା – କୁଞ୍ଜବିହାରୀ ଭ୍ରମରବର
16. ପଦ୍ୟାବଳୀ – ବ୍ରଜବିହାରୀ ଭ୍ରମରବର
17. ଉନବିଂଶ ଶତାବ୍ଦୀର ଓଡ଼ିଶା – ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସ
18. ଅନେକ ଦିନର ଅନେକ କଥା – ଜଷ୍ଟିସ୍ ରାଜକିଶୋର ଦାସ
19. ଭଗୀରଥ କୀର୍ତ୍ତୀକଳାପ – ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମହାପାତ୍ର
20. ହିତପାଠ – ଏକ୍ସ
21 ଶମ୍ଭୁକ୍ଷେତ୍ର କପିଳାସ ଓ ଶ୍ରୀଧର ସ୍ୱାମୀ – ଶ୍ରୀଶେଶ ପ୍ରତାପ ସିଂହଦେଓ କବିଭୂଷଣ ରାଜକିଶୋର ପଟ୍ଟନାୟକ, ଗୌରେନ୍ଦ୍ର ପ୍ରତାପ ସିଂହଦେଓ

22 ୧୯୦୯ ରୁ ଏପର୍ଯ୍ୟନ୍ତ– ରାଜମାତା ରତ୍ନପ୍ରଭା ଦେବୀ
23. ମାଦଳାପାଞ୍ଜି (ଶ୍ରୀମନ୍ଦିର)
24. ମଧୁପୁର କୋଇଲି– ଗୋକୁଳ ପଟ୍ଟନାୟକ
25. ଦୀନବନ୍ଧୁ କୋଇଲି – ସୁଲକ୍ଷଣା ଦେବୀ
26. ଓଡ଼ିଆ ପ୍ରକାଶନ ଓ ପ୍ରସାରଣରେ ଇତିହାସ – ଶ୍ରୀଧର ମହାପାତ୍ର ଶର୍ମା
27. ଦେଶକାଳ ପାତ୍ର – ଜଗନ୍ନାଥ ପ୍ରସାଦ ଦାସ
28. ଆତ୍ମଜୀବନୀ ଚରିତ – ବ୍ୟାସକବି ଫକୀର ମୋହନ ସେନାପତି
29. ବୁଢ଼ାପଙ୍କ ପୋଥି – ନୃସିଂହ ରାୟଗୁରୁ
30. ସାହିତ୍ୟ ଦର୍ପଣରୁ ଢେଙ୍କାନାଳ ଇତିହାସ – ସଂ. ସୁରେନ୍ଦ୍ର ମିଶ୍ର
31. ଆମ ଘରର ଇତିହାସ – ପଣ୍ଡିତ ଗଙ୍ଗାଧର ମିଶ୍ର
32. ବଡ଼ଜେନା ପରିକ୍ରମା – ସଂ. ରମେଶ ଧଳ
33. ଓଡ଼ିଶାର ଗଡ଼ଜାତ – ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ
'34. ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନ – ହରମୋହନ ପଟ୍ଟନାୟକ
35. ଭୁଲିବୁ ନାହିଁ – ବ୍ରଜକିଶୋର ଧଳ
36. ଓଡ଼ିଆ ସାହିତ୍ୟର ଇତିହାସ – ଡକ୍ଟର ନଟବର ସାମନ୍ତରାୟ
37. ପୁଣ୍ୟପୀଠ କପିଳାସ – ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର
38. ମୋ ଦୃଷ୍ଟିରେ ଓଡ଼ିଶା ଏକ୍କ
39. District gazetteer, Dhenkanal Ed.N.Senapati & P.Tripathy.
40. Cultural Heritage of Orissa vol-VII (Dhenkanal) state level Vyasakabi Fakiramohan Smruti Sansad.
41. Orissa under Bahuma Kings - Pandit Binayak Mishra.
42. Dynastics of Medieval Orissa - Paudit Binayak Mishra.
43. Lives in Medieval Orissa - Dr. A.P. Saha.
44. History of Orissa Vol-I- W.W. Hunter.
45. Henter's Imperial gazetteer of India vol-III
46. History of Orissa-Dr. K.C. Panigrahi.
47. Hindu Temple Art of Orissa - T.E. Donaldson.
48. Early Stone Temple of Orissa - Vidya Dehejia.
49. Side lights on History and culture of Orissa - Prof M.N. Das.

50. Bengal gazetteer Feudatory state of Orissa - L.E.B. Cobdan Ramsay.
51. Final Report on settlement of Dhenkanal state 1923-29.
52. Orissa under Maratthas - Dr. B.C. Roy.
53. Unrest in Princely state of Orissa - B.Rath.
54. Agrarian & Political movements – State of Orissa Sadashiba Pradhan.
55. The story of Freedom movement in Orissa - Dr. Radhanath Rath.
56. Archaeology in Orissa vol-II Dr. R.P.Mahapatra.
57. Story of the intigation of Indian states – V.P. Menon.
58. Viceray's Ageut – Charles chenevic Trench.
59. Dhenkanal state gazetteers.
60. Orissa state enquirey committee report 1939.
61. General Review of Administration of Orissa state 1931-32.
62. Orissa under East India Company – Dr. K.M. Patra.
63. Bengal gazetter dt. 5.1.1907. – H.L. Freger.
64. The Treaty engegement between East India company and Ruler.
65. Nasik cave inscription (Epigraphica Indica vol -VII p.60f)
66. Select Inscriphsion – D.C.Sircar.
67. Terundia copper plate grant of Laxminar (E-1 Vol XXVIII p 125f)
68. Konteara (Dhenkanal) copper plate grant of Tribhuban mahadevi. (Orissa Under the Bhauna king p.32)
69. Kolampoka (Dhenkanal) Copper plate grant of Rana Stambha (J.B.O.R.S. Vol-II p-396-400)
70. Hindol copper plate grant of Rana stambha (E.1-Vol XXVIII p. 107-114)
71. Jaragram Copper plate grant of Rana stambha (J.B.O.R.S. Vol-IV p 168 to 171)
72. Puri Copper plate grant of Rana stambha (J.A.S.B. Vol-LXIV P123 to 127)
73. Jharabara copper plate grant of Kula stambha. (J.B.O.R.S. Vol IV. 151 to 157)

74. Singa grama (Dhenkanal) Copper plate grant of kula Stamba. (E.I. Vol XII p.156 to 158)
75. Dhenkanal copper plate grant of Kulastambha. (J.B.O.R.S. Vol. II p 400 to 405)
76. Chandrapur (Dhenkanal ) Copper plate grant of Jaya stambha (J.B.O.R.S. Vol-II p. 405 to 409)
77. Lolopur (Dhenkanal) Copper plate grant of Jayastamba. (J.B.O.R.S. Vol-II P-409-412)
78. Singamandal (Dhenkanal) copper plate grant of Jayastambha (J.B.O.R.S.Vol-II P.412 to 417)
79. Karyatika (Dhenkanal) Copper plate grant of Jayasingha. (J.B.O.R.S. Vol-II p.417f)
80. Dhenkanla copper plate grant of Devananda. (E.I. Vol-XXVI p 74 f)
81. Talamula copper plate grant of Dhrubauanda. ((J.B.O.R.S. Vol. XV p 87 f)
82. Jayapur copper plate grant of Dhrubanada. (J.B.O.R.S. Vol-XVI p 457 f.)
83. Talcher copper plate grant of Binit Tunga. (Archaeological survey of mayurabhaja Vol-I p 154 f)
84. Talcher copper plate grant of Gayada Tunga. (J.T. P.A.S.B. Vol. XII p 291)
85. Talcher copper plate grant of gayada Tunga) (J.T.P.A.S.B. Vol-V p. 347)
86. Sautira copper plate grant of Dandi Mahadevi. (E.I.Vol. XXIX p85)
87. Dadhinauti Inspription of Kapilash (E.I. Vol-XXX III & inscription of Orissa vol -V past I p 136)
88. Brushava inscripton of Kapilash (Punyapitha Kapilash P.47. to 48)
89. Different records available as Debottar office, Dhenkanal.
90. Different records available of District Record Room, Dhenkanal.



# ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତି

## ଚିତ୍ରପଟ


୧



## ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ପୁଣ୍ୟତୋୟା ବ୍ରାହ୍ମଣୀତଟସ୍ଥ ପ୍ରାଚୀନ ମାର୍ଥାପୁର ଶାସନରେ ୧୯୫୦ ମସିହାରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସତ୍ୟବାଦୀ ମିଶ୍ର ଓ ତଦୀୟ ଧର୍ମପତ୍ନୀ ଦୁର୍ଗାବତୀ ମିଶ୍ରଙ୍କର କୋଳ ମଣ୍ଡନ କରିଥିଲେ ପଣ୍ଡିତ ଅନ୍ତର୍ଯାମୀ ମିଶ୍ର । ଛାତ୍ରାବସ୍ଥାରୁ ଆଧ୍ୟାତ୍ମିକ ଓ ସାରସ୍ୱତ ସାଧନାରେ ବ୍ରତୀରହି ପରିଣତ ଜୀବନରେ ସେ ଜଣେ ଲବ୍ଧ ପ୍ରତିଷ୍ଠ ବାଗ୍ମୀ, ଗବେଷକ, ସ୍ତମ୍ଭକାର ଓ ସାହିତ୍ୟିକ ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ବେଦବେଦାନ୍ତ, ରାମାୟଣ, ଭାଗବତ, ଗୀତା ଓ ଜଗନ୍ନାଥ ସଂସ୍କୃତିର ସେ ଜଣେ ଲୋକପ୍ରିୟ ପ୍ରବକ୍ତା । ତାଙ୍କ ଲେଖନୀ ବିସୃତ ଦିବ୍ୟ ବଚନାମୃତ, ପୁରାଣ ପରିଚୟ, ଉପନିଷଦ୍ ବଚନାମୃତ, ସପ୍ତଶଯ୍ୟା, ଅଭୁଲା ଐତିହ୍ୟ, ଭାରତର ଐତିହ୍ୟ, ମୋ ଦୃଷ୍ଟିରେ ଓଡ଼ିଶା, ଭାରତୀୟ ଧର୍ମ ଓ ସଂସ୍କୃତି ପ୍ରଭୃତି ବିଶେଷ ପାଠକୀୟ ଆଦୃତି ଲାଭ କରିଅଛି । ତାଙ୍କ ରଚିତ ଗବେଷଣାତ୍ମକ ଗ୍ରନ୍ଥ "**ପୁଣ୍ୟପୀଠ କପିଳାସ**" ୧୯୯୫ରେ ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ । ଏତଦ୍‌ଭିନ୍ନ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଏକ ହଜାରରୁ ଅଧିକ ପ୍ରବନ୍ଧ ପ୍ରକାଶିତ । ଆଧ୍ୟାତ୍ମିକ ଓ ସାରସ୍ୱତ ସାଧନା ନିମିତ୍ତ ସେ ବହୁ ଜାତୀୟ ଓ ରାଜ୍ୟସ୍ତରୀୟ ପୁରସ୍କାର, ସମ୍ମାନ ଓ ସମ୍ବର୍ଦ୍ଧନା ଲାଭ କରିବା ସହିତ ବାଗ୍ମୀଶ୍ରୀ, ବାଣୀ ଭୂଷଣ ଓ ରାମାୟଣୀ ପ୍ରଭୃତି ଉପାଧିରେ ଭୂଷିତ ।

"**ଢେଙ୍କାନାଳର ଐତିହ୍ୟ ଓ ସଂସ୍କୃତି**" ତାଙ୍କର ଅନ୍ୟତମ ସଫଳ ସୃଷ୍ଟି । ଦୀର୍ଘ ପାଞ୍ଚବର୍ଷ ଧରି ମାସିକ ପତ୍ରିକା "ପ୍ରଜାତନ୍ତ୍ର ପ୍ରତିଭା"ରେ ଏହା ଧାରାବାହିକ ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କଲାପରେ ସଂପ୍ରତି ଏକତ୍ର ସଙ୍କଳିତ ହୋଇ ଆତ୍ମ ପ୍ରକାଶ କରୁଛି । ଅଗଣିତ ପାଠକଙ୍କ ଅନ୍ତରରେ ଜାତୀୟ ଭାବାବେଗ ସୃଷ୍ଟି ହିଁ ସଙ୍କଳନଟିର ମହତ ଲକ୍ଷ୍ୟ ।




ପ୍ରକାଶକ

**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**

ବିନୋଦ ବିହାରୀ, କଟକ-୭୫୩୦୦୨